# ପ୍ରିୟଦର୍ଶିନୀ
# ଇନ୍ଦିରା



ଶ୍ରୀ ସତ୍ୟନାରାୟଣ ମହାପାତ୍ର

ଓଡ଼ିଶା ବୁକ୍ ଷ୍ଟୋର୍

# ପ୍ରିୟଦର୍ଶିନୀ ଇନ୍ଦିରା

ଶ୍ରୀ ସତ୍ୟନାରାୟଣ ମହାପାତ୍ର



ଓଡ଼ିଶା ବୁକ୍ ଷ୍ଟୋର



# ପ୍ରିୟଦର୍ଶିନୀ ଇନ୍ଦିରା

ଲେଖକ

**ସତ୍ୟନାରାୟଣ ମହାପାତ୍ର**

ନାରାୟଣ ନଗର

ହିଞ୍ଜିଳିକାଟୁ, ଗଞ୍ଜାମ

ପ୍ରକାଶକ

ଗୋବିନ୍ଦ ଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ

୧୯୭୫

ପରିବର୍ଦ୍ଧିତ ସଂସ୍କରଣ

ବିଜୟାଦଶମୀ, ୧୯୮୫

ମୁଦ୍ରଣ

**ମେଘମାଳା ପ୍ରିଣ୍ଟର୍ସ**

କଟକ-୧

ମୂଲ୍ୟ :

ସାଧାରଣ : ଟ ୪୦-୦୦

ଶୋଭନ ଓ ସୁଦୃଢ଼ : ଟ ୫୦-୦୦

# PRIYADARSHNI INDIRA

Written by

**Satyanarayana Mahapatra**

Narayana Nagar

Hinjilicut, Ganjam

Published by

Govinda charan Patra

**Orissa Book Store**

Binodbehari, Cuttack-2

First Impression

1975

2nd Impression

1985

Printed at

**Meghamala Printers**

Cuttack-1

Price

**Rupees Fifty only**

# ମୋ କଥା



ଶ୍ରୀମତୀ ଗାନ୍ଧୀଙ୍କ ହତ୍ୟା ଉଦ୍ୟମ ସମ୍ବାଦ ପ୍ରସାରିତ ହେବା ମୁହୂର୍ତ୍ତରୁ ତାଙ୍କର ପ୍ରକୃତ ଅବସ୍ଥା ଜାଣିବା ଲାଗି ସମଗ୍ର ଦେଶର ଛନ୍ଦେ ଛନ୍ଦେ ଜନଗଣଙ୍କ ଉତ୍କଣ୍ଠା ପ୍ରକାଶ ପାଇଥିଲା । ଅନୁସନ୍ଧିତ୍ସୁ ମନନେଇ ସମ୍ବାଦପତ୍ର କାର୍ଯ୍ୟାଳୟ ଓ ସମ୍ବାଦ ସରବରାହ ସଂସ୍ଥାଗୁଡ଼ିକ ସାମନାରେ ପ୍ରବଳ ଜନସମାଗମ ହୋଇଥିଲା । ପ୍ରତି ମୁହୂର୍ତ୍ତରେ ଜନତାର ଉଦ୍‌ବେଳନ । ତାଙ୍କର ମୃତ୍ୟୁ ସମ୍ବାଦ ପ୍ରସାରିତ ହେବାକ୍ଷଣି ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଯେଉଁ ଜନଅସନ୍ତୋଷର ଉଦ୍‌ଗୀରଣ ହୋଇଥିଲା ତାହା ବାସ୍ତବିକ୍ ଅପରିକଳ୍ପନୀୟ । ଶ୍ରୀମତୀ ଗାନ୍ଧୀଙ୍କ ବିୟୋଗଜନିତ ଦୁଃଖରେ ମ୍ରିୟମାଣ ହୋଇ ଦେଶର ବିଭିନ୍ନ ପ୍ରାନ୍ତରରେ ଆତ୍ମାହୁତି ଦେବାର ଉଦାହରଣ ମଧ୍ୟ କିଛି କମ୍ ନୁହଁ । ଭାରତୀୟ ଜନଗଣଙ୍କ ଭାବପ୍ରବଣତାର ଏ ଉଦ୍‌ବେଳନ ସାମୟିକ ହେଲେ ମଧ୍ୟ ତାହାହିଁ ଦେଶରେ ପ୍ରିୟଦର୍ଶିନୀ ଇନ୍ଦିରା ଗାନ୍ଧୀଙ୍କ ଜନପ୍ରିୟତାର ପ୍ରକୃଷ୍ଟ ପ୍ରତିଫଳନ । ଠିକ୍ ସେହିଭଳି ତାଙ୍କ ମୃତ୍ୟୁଶଯ୍ୟା ନିକଟରେ ଶେଷ ଦର୍ଶନାଭିଳାଷୀ ଅନେକ ବିଦେଶୀ ରାଷ୍ଟ୍ରନାୟକ ତଥା ନେତାଙ୍କ ଅଶ୍ରୁମୋଚନ ପ୍ରମାଣ କରି ଦେଇଥିଲା—ବିଦେଶରେ ତାଙ୍କ ପ୍ରତି ଶ୍ରଦ୍ଧା, ସମ୍ମାନ, ଲୋକପ୍ରିୟତା ଓ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠା ।

ସେହିଭଳି ଜଣେ ବିଶିଷ୍ଟ ବ୍ୟକ୍ତିତ୍ୱ ସମ୍ପନ୍ନ ମହୀୟସୀ ମହିଳାଙ୍କ ଜୀବନୀମୂଳକ ଏହି ପୁସ୍ତକ ଖଣ୍ଡିକ ଯେ ତାଙ୍କର ପ୍ରକୃତ ପରିଚୟ ଦେବାପାଇଁ ସମର୍ଥ ହୋଇ ପାରିବ ତାହା ଦୃଢ଼ ଭାବରେ କୁହାଯାଇ ନ ପାରେ । ତେବେ ଏହା ନିଶ୍ଚିତ ଯେ ଏଥିରେ ସେଭଳି ଏକ ବିରାଟ ବ୍ୟକ୍ତିତ୍ୱର ବିଶିଷ୍ଟ ଦିଗ ଏବଂ

ଜୀବନର ବିଶିଷ୍ଟ ଘଟଣାଗୁଡ଼ିକର ଆଭାସ ଦିଆଯାଇଛି । ଆଉ କିଛି ନ ହେଲେ ଯଥାର୍ଥରେ ଶ୍ରୀମତୀ ଗାନ୍ଧୀଙ୍କ ଜୀବନୀର ଏକ ବିହଙ୍ଗାବଲୋକନ ରୂପେ ଏ ପୁସ୍ତକଖଣ୍ଡିକୁ ଗ୍ରହଣ କରାଯାଇପାରେ ।

ଅନ୍ୟାନ୍ୟ ଭାରତୀୟ ଭାଷାରେ ଶ୍ରୀମତୀ ଗାନ୍ଧୀଙ୍କ ଜୀବନୀ ତଥା ଚିନ୍ତାଧାରାର ବିଭିନ୍ନ ଦିଗ ଉପରେ ଅନେକଗୁଡ଼ିଏ ପୁସ୍ତକ ରଚିତ ହୋଇ ସାରିଛି । ଓଡ଼ିଆ ଭାଷାରେ ସେ ଅଭାବର ଦୂରୀକରଣ ପାଇଁ ମୁଁ ଏଇ ମାଧ୍ୟମରେ କିଛିଟା ଉଦ୍ୟମ କରିଛି ମାତ୍ର । ମୋର ଏ ଉଦ୍ୟମରେ ମୋତେ ବିଭିନ୍ନ ଦିଗରୁ ମୋର ସାହିତ୍ୟିକ ବନ୍ଧୁ ଶ୍ରୀ ସମରେନ୍ଦ୍ର ପ୍ରସାଦ ଦାସ, ଶ୍ରୀ ମହେନ୍ଦ୍ର କୁମାର ବେହେରା, ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ଅନ୍ୟମାନଙ୍କ ମଧ୍ୟରେ ମୋର ସହକର୍ମୀ ଶ୍ରୀ ମୋହିନୀ ମୋହନ ସାମଲ ଓ ଶ୍ରୀ ବିଜୟ କୁମାର ପାତ୍ର ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ପ୍ରକାଶକ ଶ୍ରୀ ଗୋବିନ୍ଦ ଚରଣ ପାତ୍ରଙ୍କ ନାମ ତ ସର୍ବାଗ୍ରେ— କାରଣ ତାଙ୍କର ଉତ୍ସାହ ଓ ପ୍ରେରଣା ଯୋଗୁଁ ହିଁ ମୋର ଏହି ଉଦ୍ୟମ—।

ଭୁବନେଶ୍ୱର
ତା ୧୦ । ୧୦ । ୮୫ } ସତ୍ୟନାରାୟଣ ମହାପାତ୍ର

# ସୂଚୀ





## ॥ ଏକ ॥

# ପ୍ରିୟଦର୍ଶିନୀ ଇନ୍ଦିରାଗାନ୍ଧୀ



ସେକ୍ସପିୟରଙ୍କ ମତରେ କେତେ ଲୋକ ମହାପୁରୁଷ ଭାବେ ଜନ୍ମଗ୍ରହଣ କରିଥାନ୍ତି ; ଆଉ କେତେଜଣ ଜୀବନର କର୍ମପଥରେ ଅଗ୍ରସର ହେବାବେଳେ ପରିସ୍ଥିତି ଓ ସମସାମୟିକ ପରିବେଶ ମହାନତା ଅର୍ଜନ କରିବାଲାଗି ସୁଯୋଗ ସୁବିଧା ଦେଇଥାଏ । ଅନ୍ୟ କେତେକଙ୍କୁ ମହାନ୍ କରାଇ ଦିଆଯାଇଥାଏ ।

ପରିସ୍ଥିତି ଓ ସମସାମୟିକ ପରିବେଶର ସୁଯୋଗ ନେଇ ପଣ୍ଡିତ ମୋତିଲାଲ ନେହେରୁ ବିଶିଷ୍ଟ ଆଇନଜୀବୀ ହିସାବରେ ଓ ସ୍ୱାଧୀନତା ସଂଗ୍ରାମୀ ହିସାବରେ ଭାରତୀୟ ଜନସାଧାରଣଙ୍କ ନିକଟରେ ପ୍ରତିଷ୍ଠିତ ହୋଇପାରିଥିଲେ । ଜବାହାରଲାଲ ନେହେରୁଙ୍କ ମହାନତା ପାଇଁ ପରିବାରର ପରମ୍ପରା ତଥା ପରିବେଶର ଦାନ ଅବିସମ୍ବାଦିତ । କିନ୍ତୁ ମହାନ୍ ନେହେରୁ ପରିବାରର ତୃତୀୟ ବ୍ୟକ୍ତି, ପୃଥିବୀର ବୃହତ୍ତମ ଗଣତନ୍ତ୍ରର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ କ୍ଷେତ୍ରରେ ଉପରୋକ୍ତ ଉକ୍ତିଟିର ପ୍ରଭାବ ସୁସ୍ପଷ୍ଟ ।

ମୋତିଲାଲଙ୍କ ସମୟରୁ ହିଁ ନେହେରୁ ପରିବାର ଭାରତରେ ସୁପ୍ରତିଷ୍ଠିତ ହୋଇ ସାରିଥିଲା । ସ୍ୱାଧୀନତା ସଂଗ୍ରାମର ଆରମ୍ଭ ପୂର୍ବରୁ ଏ ଦେଶର ଶାସନକର୍ତ୍ତା ତଥା ଭାରତର ତତ୍କାଳୀନ ବଡ଼ ବଡ଼ ରାଜା ମହାରାଜାମାନଙ୍କ ସହିତ ମୋତିଲାଲଙ୍କ ଖୁବ୍ ଘନିଷ୍ଠତା ଥିଲା ଦେଶର ଜଣେ ଶ୍ରେଷ୍ଠ ଆଇନଜୀବୀ ହିସାବରେ । ସାରା ଦିନ ଅକ୍ଳାନ୍ତ ପରିଶ୍ରମ କରିସାରିବା ପରେ ମୋତିଲାଲ ସନ୍ଧ୍ୟାବେଳେ ମନକୁ ଖୁବ୍ ହାଲୁକା କରିବାକୁ ପସନ୍ଦ କରୁଥିଲେ । ଚିତ୍ତବିନୋଦନ ଲାଗି ଖୁସିଗପ କରିବା ସଙ୍ଗେ ସଙ୍ଗେ ମଦ୍ୟପାନ କରିବାକୁ ସେ ସବୁଠାରୁ ଅଧିକ ଭଲ ପାଉଥିଲେ । ସେଥିପାଇଁ ଖରା, ବର୍ଷା ବା ଶୀତ ଋତୁ ତାଙ୍କ ଉପରେ କୌଣସି ପାର୍ଥକ୍ୟ ସୃଷ୍ଟି କରି ପାରୁ ନଥିଲା ।

ପଣ୍ଡିତ ମୋତିଲାଲ କେବଳ ଭାରତରେ ନୁହଁନ୍ତି, ଜଣେ ଖ୍ୟାତନାମା ଓକିଲ ହିସାବରେ ସୁଦୂର ବିଦେଶରେ ମଧ୍ୟ ସୁଖ୍ୟାତି ଅର୍ଜନ କରିବା ସଙ୍ଗେ ସଙ୍ଗେ ଗୋଟିଏ ସମ୍ଭ୍ରାନ୍ତ ପରିବାରର ମୁଖ୍ୟ ଭାବରେ ପରିଗଣିତ ହେଉଥିଲେ ।

କିନ୍ତୁ ୧୯୨୦ ମସିହା ପରେ ପରେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ସଙ୍ଗେ ସଙ୍ଗେ ସେ ପରିବେଶ ସମ୍ପୂର୍ଣ୍ଣରୂପେ ବଦଳିଯାଇ ମୋତିଲାଲଙ୍କ ନିବାସସ୍ଥଳ ସମଗ୍ର ଭାରତର ଆଶା ଓ ଆକାଂକ୍ଷାର କେନ୍ଦ୍ରସ୍ଥଳ ରୂପେ ପରିଣତ ହୋଇଯାଇଥିଲା । ଯେଉଁ ଘରେ ଓ ବଗିଚାରେ ମୋତିଲାଲ ତାଙ୍କର ଅସଂଖ୍ୟ ଇଂରେଜ ବନ୍ଧୁ ଓ ରାଜା ମହାରାଜାଙ୍କୁ ଚିତ୍ତବିନୋଦନ ତଥା ମଦ୍ୟପାନ କରିବା ଲାଗି ନିମନ୍ତ୍ରଣ କରୁଥିଲେ, ସେ ସ୍ଥାନ ସବୁ ପୂର୍ଣ୍ଣ ହୋଇଥିଲା ଭାରତୀୟ ଜନନେତା ଓ ଭାରତୀୟ ମୁକ୍ତିସଂଗ୍ରାମର କର୍ଣ୍ଣଧାରମାନଙ୍କଦ୍ୱାରା । ତା' ପରେ ପରେ ମୋତିଲାଲଙ୍କ ସେଇ ବାସଭବନରେ ଭାରତୀୟ ଜାତୀୟ କଂଗ୍ରେସର ମୁଖ୍ୟମାନଙ୍କଦ୍ୱାରା ଅନେକ-ଗୁଡ଼ିଏ ଐତିହାସିକ ବୈଠକ ବସିବା ସଙ୍ଗେ ସଙ୍ଗେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ମଧ୍ୟ ଗ୍ରହଣ କରାଯାଇଥିଲା ।

ପାଶ୍ଚାତ୍ୟ ଢଙ୍ଗରେ ଚିତ୍ତବିନୋଦନ, ଭୋଜିସଭା ଇତ୍ୟାଦି ପରିବର୍ତ୍ତେ ସେହି ବାସଭବନ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର କେନ୍ଦ୍ରରୂପେ ପରିଗଣିତ ହୋଇଥିଲା । ବ୍ରିଟିସ୍ ସରକାରଙ୍କ ପଦସ୍ଥ ଅଫିସର ଦେଶର ରାଜା-ମହାରାଜାମାନଙ୍କ ପରିବର୍ତ୍ତେ ସେଠାରେ ଅନେକ ସମୟରେ ଉପସ୍ଥିତ ହେଉଥିଲେ ସାଧାରଣ ବେଶ-ପୋଷାକଧାରୀ ଭାରତୀୟ ଜନଗଣଙ୍କ ନେତୃବୃନ୍ଦ ତଥା ରାଜନୈତିକ କର୍ମୀମାନେ । ପୂର୍ବାପେକ୍ଷା ସେହି ବାସଭବନର ପରିସର ଅଧିକ ଲୋକାରଣ୍ୟ ହୋଇ ଉଠିଥିଲା ।

ମୋତିଲାଲ ଆଇନ ବ୍ୟବସାୟ ପରିତ୍ୟାଗ କରି ଦେଇଥିଲେ । ତାହାଙ୍କ ସହିତ ପରିବାରର ସମସ୍ତ ସଭ୍ୟ ଏପରିକି ମହିଳାମାନେ ମଧ୍ୟ ଦଳଦଳ କରି ଜାତୀୟ ମୁକ୍ତି ସଂଗ୍ରାମରେ ନିଜକୁ ଆହୁତି ଦେଇଥିଲେ । ସେହି ମହାନ୍ ବଂଶୋଦ୍ଭବ ହେଉଛନ୍ତି ପ୍ରିୟଦର୍ଶିନୀ ଇନ୍ଦିରାଗାନ୍ଧୀ ।

ତତ୍କାଳୀନ ରାଜନୈତିକ ଓ ସାମାଜିକ ବାତାବରଣ ଅଶାନ୍ତ ଓ ଉଦ୍‌ବେଳିତ ନ ଥିଲେ ସେ ଇନ୍ଦିରାଙ୍କ ଜୀବନପ୍ରବାହର ଧାରା ଭିନ୍ନ ଦିଗ ବାଛି ନେଇଥାନ୍ତା ଏଥିରେ ସନ୍ଦେହ ନାହିଁ । ଅତି କମ୍ ବୟସରୁ ହିଁ ସେ ଦାଦୁ (ମୋତିଲାଲ)ଙ୍କ କୋଳରେ ବସି ଦେଶର ପରିସ୍ଥିତି ଓ ବିଭିନ୍ନ ରାଜନୈତିକ ଆଲୋଚନା ସଙ୍ଗେ ସଙ୍ଗେ ଇଂରେଜମାନଙ୍କ ଅତ୍ୟାଚାରର ମୁକାବିଲା କରିବା ପାଇଁ ବିଭିନ୍ନ ପରିକଳ୍ପନା ଶୁଣି ଆସିଥିଲେ । ଅଧିକାଂଶ ସମୟରେ ପାପୁ ଜବାହାରଲାଲ ଏବଂ ଦାଦୁ ମୋତିଲାଲ ଜେଲରେ କିମ୍ବା ରାଜନୈତିକ କର୍ମରେ ବ୍ୟସ୍ତ ରହି

ପରିବାରଠାରୁ ଦୂରରେ ରହୁଥିବାରୁ ଏକାକୀ ତାଙ୍କୁ ଆନନ୍ଦ ଭବନ ଭିତରେ ସମୟ ବିତାଇବାକୁ ପଡୁଥିଲା । ତେବେ ବିଭିନ୍ନ ସଭା, ଶୋଭାଯାତ୍ରା ଦେଖି ଦେଖି ସେଠାକବେଳୁ ହିଁ ସେ ଗ୍ରେଡ଼ିକର ପ୍ରଭାବରେ ସେ ପ୍ରଭାବିତ ହୋଇ ଯାଇଥିଲେ ।

କୈଶୋର ଅବସ୍ଥାରେ ସାଧାରଣ ବାଳକ ବାଳିକାଙ୍କ ପ୍ରଧାନ ପେଶା ବିଭିନ୍ନ ପ୍ରକାରର ଖେଳ । ଯଦିଓ କଣ୍ଢେଇଖେଳ ଖେଳୁଥିଲେ, ଇନ୍ଦିରାଙ୍କଠାରେ କିନ୍ତୁ ତାହା ଭିନ୍ନ ରୂପ ନେଇଥିଲା । ସେ ଘରର ସବୁ ଚାକରବାକରଙ୍କୁ ଏକାଠି କରାଇ କୌଣସି ଏକ ଟେବୁଲ ଉପରେ ଛିଡ଼ା ହୋଇ ସେମାନଙ୍କୁ ଭାଷଣ ଦେଉଥିଲେ । ତାଙ୍କ ନିଜ ଭାଷାରେ, "My public life started at the age of three I have no recollection of games or playing with other children. My favourite occupation then was to deliver thunderous speeches to the servants standing on a high table." * ବାଲ୍ୟକାଳରୁ ହିଁ ଜନ୍ ଅଫ୍ ଆର୍କ (Jeanne-d'-Arc) ହେବାର ଆଶା ସେ ପୋଷଣ କରିଥିଲେ ।

ପରିବେଶର ପ୍ରଭାବ କପରି ଭାବରେ ଇନ୍ଦିରାଙ୍କ ଉପରେ ପଡ଼ିଥିଲା, ତାହା ବର୍ଣ୍ଣନାକରି ନେହେରୁ ପରିବାରର ଜଣେ ବିଶିଷ୍ଟ ସଦସ୍ୟା କୃଷ୍ଣା ହାଥୀସିଂହ କହିଛନ୍ତି, "ଇନ୍ଦୁର ବାଲ୍ୟ ଜୀବନରେ ଅନେକ ବୈଚିତ୍ର୍ୟ ଥିଲା । ତାକୁ ମାତ୍ର ତିନି ଚାରି ବର୍ଷ ବୟସ ହେବା ପରଠାରୁ ହିଁ ସେ ଶୁଣିଥିଲା କେବଳ ରାଜନୀତି ବିଷୟକ ଆଲୋଚନା । ଯଦିଓ ସେସବୁ ଆଲୋଚନା ପୁଙ୍ଖାନୁପୁଙ୍ଖ ଭାବେ ସେ ବୁଝିପାରୁ ନ ଥିଲା, ତଥାପି ତା'ର ତୀବ୍ର ଅବଧାରଣ ଶକ୍ତି ତାକୁ ସଚେତନ କରାଇ ଦେଉଥିଲା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଘଟଣା ସମ୍ପର୍କରେ" । **

ପ୍ରାୟ ବାର ବର୍ଷ ବୟସରେ ଜାତୀୟ କଂଗ୍ରେସର ସଦସ୍ୟା ହେବାପାଇଁ ଇନ୍ଦିରା କଂଗ୍ରେସ ଅଫିସକୁ ଯାଇଥିଲେ । କିନ୍ତୁ ଉପଯୁକ୍ତ ବୟସ ହୋଇ ନ ଥିବା ଯୋଗୁଁ ତାହାଙ୍କୁ ସଭ୍ୟା ଭାବେ ଗ୍ରହଣ କରାଯାଇ ନଥିଲା । ସଭ୍ୟା ଭାବରେ ଗୃହୀତ ନ ହୋଇ କଂଗ୍ରେସ ଅଫିସରୁ ଫେରିଆସିବା ପରେ ପରେ ଭାରତରେ ବାର ଚଉଦ ବର୍ଷ ବୟସର ହଜାର ହଜାର ବାଳକ ବାଳିକାଙ୍କୁ ନେଇ ସେ ଗଠନ କରିଥିଲେ ବାନରସେନା—ଏକ ଅନୁଷ୍ଠାନ । ଉଦ୍ଦେଶ୍ୟ—ରାମଚନ୍ଦ୍ରଙ୍କ ଲକ୍ଷ୍ୟ ହାସଲ ପାଇଁ ଗୁଣ୍ଡିଚମୂଷା ପରି ଦେଶମୁକ୍ତି ଆନ୍ଦୋଳନରେ କିଞ୍ଚିତ୍ ହେଲେ ମଧ୍ୟ ସାହାଯ୍ୟ କରିବା । ଇନ୍ଦିରାଙ୍କ କୈଶୋର ଅବସ୍ଥାରେ ପରିବେଶର ପ୍ରଭାବ ସୁସ୍ପଷ୍ଟ ।

---

* J, S. Bright—Indira Gandhi, pp-226

** Krisna Hathee Singh—We Nehrus—pp-56

ଇନ୍ଦିରା ପ୍ରିୟଦର୍ଶିନୀଙ୍କ ଯୌବନ ଅବସ୍ଥାରେ ଥରେ ଇର୍ୱିଙ୍ଗ୍ କଲେଜର ଛାତ୍ରମାନେ ଅନୁରୋଧ କରିଥିଲେ ସେମାନଙ୍କ କଲେଜ ପ୍ରାଙ୍ଗଣରେ ଭାରତୀୟ ଜାତୀୟ ପତାକା ଉତ୍ତୋଳନ କରିବାପାଇଁ ଓ ଅନୁଷ୍ଠିତ ହେବାକୁ ଥିବା ଏକ ସଭାରେ ପୌରୋହିତ୍ୟ କରିବାପାଇଁ । ତା' ଫଳରେ ଗିରଫ ହେବାର ସମସ୍ତ ସମ୍ଭାବନା ସତ୍ତ୍ୱେ ଇନ୍ଦିରା ସେମାନଙ୍କ ପ୍ରସ୍ତାବରେ ସମ୍ମତ ହୋଇଥିଲେ । ଯେତେବେଳେ ସେଠାରେ ପହଞ୍ଚିଥିଲେ, ନିଜ ଆଖି ଆଗରେ ଛାତ୍ରମାନଙ୍କ ପ୍ରତି ପୋଲିସର ଅତ୍ୟାଚାର ଦେଖି ବିଚଳିତ ହୋଇ ପଡ଼ିଥିଲେ । 'ପୋଲିସ ଲାଠିରେ ରକ୍ତାକ୍ତ ଛାତ୍ରମାନଙ୍କ ହାତରୁ ଭାରତୀୟ ଜାତୀୟ ପତାକାଟି ତଳେ ପଡ଼ିଯିବା ଅବସ୍ଥାରେ ଇନ୍ଦିରା ଯେତେବେଳେ ହଠାତ୍ ସେଠାରେ ଉପସ୍ଥିତ ହୋଇ ପତାକାଟିକୁ ଉତ୍ତୋଳିତ କରି ରଖିବା ପ୍ରୟାସ କରିଥିଲେ, ଛାତ୍ରମାନେ ପୁଣି ଶତସିଂହର ବଳରେ ବଳୀୟାନ୍ ହୋଇ ଉଠିଥିଲେ । ଅନ୍ୟାନ୍ୟ ଛାତ୍ରମାନଙ୍କ ଦଶା ଭୋଗ କରିଥିଲେ ଇନ୍ଦିରା । ଲାଠି ଉପରେ ଲାଠିର ପ୍ରହାର ବର୍ଷିଥିଲା । ଇନ୍ଦିରାଙ୍କ ତାରୁଣ୍ୟ ସେସବୁକୁ ଭ୍ରୂକ୍ଷେପ କରି ନ ଥିଲା ସେତିକବେଳେ, ବରଂ ନୂତନ ଉନ୍ମାଦନାରେ ଉଲ୍ଲସିତ ହୋଇ ଉଠିଥିଲେ ସେ । ହୁଏତ ସେତିକବେଳେ ତାଙ୍କର ମନେ ପଡ଼ୁଯାଉଥିବ ନେହେରୁ ପରିବାରର ଅନ୍ୟ ସଭ୍ୟମାନଙ୍କ କଥା—ପିତାଜୀ, ଦାଦୁ, ଜେଜେମା ପ୍ରମୁଖଙ୍କ କଥା । ବିଜୟଗର୍ବରେ ଉନ୍ମତ୍ତ ହୋଇ ସେ ଘରକୁ ଫେରିଥିଲେ । ସମସାମୟିକ ପରିବେଶ ଓ ଉଦ୍‌ବେଳିତ ତରଙ୍ଗର ଆହ୍ୱାନକୁ ସେଦିନ ସେ ଏଡ଼ି ଦେଇ ପାରି ନ ଥିଲେ ।

୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହୋଇସାରିବା ପରେ ପରେ ଭାରତୀୟ କଂଗ୍ରେସର ନେତା ଓ ସାଧାରଣ ଜନତାଙ୍କ ଉପରେ ଇଂରେଜ ସରକାରଙ୍କ ଅତ୍ୟାଚାରର ସୀମା ଅତିମାତ୍ରାରେ ବୃଦ୍ଧି ପାଇଥିଲା । ପ୍ରାୟ ସମସ୍ତ ନେତାଙ୍କୁ ଗିରଫ କରାଯାଇ ବିଭିନ୍ନ ଜେଲରେ ଭର୍ତ୍ତି କରାଯାଇଥିଲା । ଅଗଷ୍ଟ ଆଠ ତାରିଖ ସନ୍ଧ୍ୟାରେ ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ଗୃହୀତ ପ୍ରସ୍ତାବକୁ କାର୍ଯ୍ୟକାରୀ କରାଇ ନ ଦେବା ଥିଲା ସରକାରଙ୍କ ଆନ୍ତରିକ କାମନା । ଅନେକ ନେତା ଓ ନେତୃସ୍ଥାନୀୟ ବ୍ୟକ୍ତି ସମ୍ମେଳନର ସେ ବାର୍ତ୍ତା ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ପାଇଁ ଆତ୍ମଗୋପନ କରିଥିଲେ । ସରକାର ସମସ୍ତ ସଭା ଓ ଶୋଭାଯାତ୍ରା ଉପରେ ବିଭିନ୍ନ ପ୍ରକାରର କଟକଣା ଜାରି କରିଥିଲେ । ସେ ସରକାରୀ ନିଷେଧାଜ୍ଞାକୁ ପ୍ରଥମେ ଭଙ୍ଗ କରିଥିଲେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ।

ଯେତେବେଳେ ବିଶ୍ୱସ୍ତ ସୂତ୍ରରୁ ଖବର ପାଇଥିଲେ ଯେ ତାହାଙ୍କୁ ଗିରଫ କରାଯିବା ପାଇଁ ପରୱାନା ଜାରି କରାଯାଇଛି, ସେ ଠିକ୍ କରିଥିଲେ ଆନନ୍ଦ ଭବନ ଭିତରେ ରହି ସାଧାସିଧା ଭାବେ ପୋଲିସ ହାତରେ ଧରା ନ ଦେଇ ଭାରତଛାଡ଼

ପ୍ରସ୍ତାବ ସମ୍ପର୍କରେ ଯେତେଦୂର ସମ୍ଭବ ଲୋକଙ୍କୁ ବୁଝାଇବା ସଙ୍ଗେ ସଙ୍ଗେ ପୋଲିସର ନିଷେଧାଜ୍ଞା ଭଙ୍ଗ କରିବେ । ସେଥିପାଇଁ ଦିନେ ସନ୍ଧ୍ୟାବେଳେ ଏକ ସାଧାରଣ ସଭାର ଆୟୋଜନ କରାଇଥିଲେ ଅତି ଗୋପନ ଭାବରେ ଏବଂ ଠିକ୍ ସମୟରେ ହଜାର ହଜାର ଜନତାଙ୍କ ସମ୍ମୁଖରେ ସରକାରଙ୍କ ଭାରତୀୟ ଜାତୀୟ ସ୍ୱାର୍ଥ ବିରୋଧୀ ମନୋଭାବ ସମ୍ପର୍କରେ ଭାଷଣ ଦେବା ଆରମ୍ଭ କରି ଦେଇଥିଲେ । ସାଧାରଣ ସଭାକୁ ବେଆଇନ ଘୋଷଣା କରିଥିବାରୁ ସରକାରଙ୍କ ନୀତିରେ ଦୃଢ଼ ନିନ୍ଦା କରିବା ସଙ୍ଗେ ସଙ୍ଗେ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନେ ଶେଷରେ ନିଶ୍ଚିତ ବିଜୟ ହାସଲ କରିବେ ବୋଲି ଘୋଷଣା କରିଥିଲେ । ସଭା ଆରମ୍ଭ ହେବାର କେତୋଟି ମିନିଟ ମଧ୍ୟରେ ପୋଲିସ ଫଉଜ ସେଠାରେ ଉପସ୍ଥିତ ହୋଇଥିଲେ ଏବଂ ସେମାନଙ୍କ ଜଣେ ଅଫିସର ଇନ୍ଦିରାଙ୍କ ନିକଟରେ ପହଞ୍ଚି ତାଙ୍କୁ ଆଦେଶ ଦେଇଥିଲେ, "Stop speaking or I fire" । ସେତେବେଳକୁ ସଙ୍ଗୀନ୍‌ର ମୂନ ଇନ୍ଦିରାଙ୍କ ଗ୍ରୀବ ପାଖରୁ ଥିଲା ପ୍ରାୟ ତିନି ଇଞ୍ଚ ଦୂରରେ ।

ଜନସାଧାରଣଙ୍କ ପ୍ରବଳ ବିରୋଧ ଓ ପୋଲିସବାହିନୀର ପ୍ରଚଣ୍ଡ ଆକ୍ରମଣ ଭିତରେ ତାଙ୍କୁ ଜେଲ ଭ୍ୟାନ୍ ଭିତରକୁ ନିଆଯାଇଥିଲା । ସେ ଥିଲା ତାଙ୍କ ଜୀବନରେ ପ୍ରଥମ ଜେଲଯାତ୍ରା । ସେତେବେଳେ ପର୍ଯ୍ୟନ୍ତ ବାହାରେ ରହିଯାଇଥିବା ନେହେରୁ ପରିବାରର ଆଉ ଜଣେ ସଦସ୍ୟ ଇନ୍ଦିରା ଜେଲର ରୁଦ୍ଧ ପାଚେରୀ ଭିତରକୁ ପ୍ରବେଶ କରିଥିଲେ ପ୍ରଥମଥର ପାଇଁ ।

ଭାରତ ସ୍ୱାଧୀନ ହେବାର ପ୍ରାକ୍‌କାଳରେ ଓ ଠିକ୍ ପରେ ପରେ ଯେଉଁ ହିନ୍ଦୁ ମୁସଲମାନ୍ ଦଙ୍ଗା ହାଙ୍ଗାମାର ସୂତ୍ରପାତ ହୋଇଥିଲା, ସେଥିରେ ଭାରତର ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତି ଆତଙ୍କିତ ହୋଇ ପଡ଼ିଥିଲେ । ପୁରୁଷାନୁକ୍ରମେ ରହି ଆସିଥିବା ମୁସଲମାନମାନଙ୍କ ଧନ ଓ ଜୀବନ ଭାରତର ରାଜଧାନୀ ଦିଲ୍ଲୀ ତଥା ଅନ୍ୟ ଅନେକ ସ୍ଥାନରେ ଆଦୌ ନିରାପଦ ନଥିଲା । ପାକିସ୍ଥାନରେ ସଂଖ୍ୟାଲଘୁ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାରର ଲୋମହର୍ଷକ କାହାଣୀ ଭାରତରେ ହିନ୍ଦୁମାନଙ୍କୁ ଅଧିକ ଉତ୍ତ୍ୟକ୍ତ କରାଇ ଦେଉଥିଲା । ବିଶେଷ କରି 'ନୂଆଖାଲି' ( ବର୍ତ୍ତମାନ ବଙ୍ଗଳା ଦେଶରେ ଅବସ୍ଥିତ ଅଞ୍ଚଳ ) ରେ ଏକସମୟରେ ଯେଉଁ ଦଙ୍ଗା ଚାଲିଥିଲା ତା'ର ନେତୃତ୍ୱ ନେଇଥିଲେ ଶେଖ୍ ମୁଜିବର ରହମନ୍ ! ବଙ୍ଗଳାଦେଶକୁ ଏକ ସ୍ୱାଧୀନ, ସାର୍ବଭୌମ, ଧର୍ମନିରପେକ୍ଷ ଗଣତନ୍ତ୍ର ରାଷ୍ଟ୍ରରୂପେ ଗଢ଼ି ତୋଳିବା ଲାଗି, ଯାହାର ଅବଦାନ ପୃଥିବୀ ଇତିହାସରେ ଏକ ସ୍ୱର୍ଣ୍ଣିମୟ ଅଧ୍ୟାୟ । ଭାରତ ସ୍ୱାଧୀନ ରାଷ୍ଟ୍ରରୂପେ ଜନ୍ମଲାଭ ନେବା ଦିନ ଜାତିର ପିତା ଗାନ୍ଧିଜୀ ଥିଲେ ନୂଆଖାଲିରେ; ସେଠିକାର ଅବସ୍ଥା ଶାନ୍ତ କରାଇବା ପାଇଁ ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କ ତିନ କୋଠରୀ-ବିଶିଷ୍ଟ ବାସଭବନରୁ ଗୋଟିଏ କୋଠରୀ ପାକସ୍ଥାନରୁ ବିତାଡ଼ିତ ହୋଇ ବା ଦିଲ୍ଲୀର ବିଭିନ୍ନ ପ୍ରାନ୍ତରୁ ଗୃହଶୂନ୍ୟ ହୋଇ ପ୍ରାଣ ଭୟରେ ଚାଲି ଆସୁଥିବା ଶରଣାର୍ଥୀମାନଙ୍କ ଲାଗି ଛାଡ଼ି ଦିଆଯାଇଥିଲା । ସେମାନେ ନିରାପଦରେ ରହିବା ଓ ଖାଇବା ବ୍ୟବସ୍ଥା କରୁଥିଲେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ତେବେ ସେତେବେଳେ ଅବସ୍ଥା ଏପରି ଅସମ୍ଭାଳ ହୋଇଉଠିଥିଲା ଯେ ଇନ୍ଦିରା ତାଙ୍କର ଦ୍ୱିତୀୟ ଶିଶୁପୁତ୍ର ସଞ୍ଜୟଙ୍କୁ ଅତି ସଙ୍କଟ ଅବସ୍ଥାରେ ଅନ୍ୟ ନିକଟରେ ସେବାଶୁଶ୍ରୂଷାର ଦାୟିତ୍ୱ ଦେଇ ନିଜର ଶାରୀରିକ ଦୁର୍ବଳତା ସତ୍ତ୍ୱେ ଦିଲ୍ଲୀ ଉପକଣ୍ଠରେ ଶାନ୍ତି ସ୍ଥାପନ ପାଇଁ ନିଜକୁ ପ୍ରସ୍ତୁତ କରିଥିଲେ । ତାଙ୍କର ଦୃଢ଼ ଆତ୍ମବିଶ୍ୱାସ ଥିଲା ଯେ ସେ ଦିଲ୍ଲୀର ପୂର୍ବାବସ୍ଥା ଫେରାଇ ଆଣିବା ଲାଗି କିଛି ନା କିଛି ସାହାଯ୍ୟ କରିପାରିବେ । ସମାଜରେ ଜଣେ ବିଶିଷ୍ଟ ବ୍ୟକ୍ତି ହିସାବରେ ଶ୍ରୀମତୀ ଗାନ୍ଧୀଙ୍କ ପ୍ରତିଷ୍ଠାପାଇଁ ଦେଶର ତତ୍କାଳୀନ ପରିବେଶ ଓ ପରିସ୍ଥିତିର ପ୍ରଭାବକୁ ଅସ୍ୱୀକାର କରି ହେବ ନାହିଁ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ପୃଥିବୀର ସର୍ବଶ୍ରେଷ୍ଠ ଶକ୍ତିମୟୀ ବ୍ୟକ୍ତି ଭାବେ ପ୍ରତିଷ୍ଠା କରାଇବା ଲାଗି ତତ୍କାଳୀନ କଂଗ୍ରେସ ସଭାପତି କାମରାଜ ନାଦରଙ୍କ ପ୍ରଚେଷ୍ଟା ତଥା ପାର୍ଲ୍ୟାମେଣ୍ଟର କଂଗ୍ରେସ ସଦସ୍ୟମାନଙ୍କ ଅଭୀପ୍ସାକୁ ଭୁଲିବାର ନୁହେଁ ।

ସ୍ୱାଧୀନ ଭାରତର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀଙ୍କ ଆକସ୍ମିକ ମୃତ୍ୟୁ ପରେ ପରେ କଂଗ୍ରେସ ଦଳଭିତରେ ଘୋର ଅନ୍ତର୍ବିବାଦ ଦେଖା ଦେଇଥିଲା । ପାର୍ଲ୍ୟାମେଣ୍ଟ ପାଇଁ ସର୍ବସମ୍ମତିକ୍ରମେ ଦଳର ନେତା ନିର୍ବାଚନ ଏକ ଦୁରୂହ ବ୍ୟାପାର ହୋଇ ପଡ଼ିଥିଲା । ସମଗ୍ର ଭାରତବାସୀ ସେ ନେତା ନିର୍ବାଚନର ଫଳାଫଳ ଜାଣିବା ପାଇଁ ଉଦ୍‌ଗ୍ରୀବ ହୋଇ ଚାହିଁ ରହିବା ସଙ୍ଗେ ସଙ୍ଗେ ସମଗ୍ର ପୃଥିବୀ ଚୁପ୍‌ଥିଲାଗି ଉତ୍କଣ୍ଠା ପ୍ରକାଶ କରିଥିଲା । ଯେଉଁମାନଙ୍କ ନାମ ଏଇ ନେତା ନିର୍ବାଚନ ପାଇଁ ପୂର୍ବରୁ ଶୁଣା ଯାଇଥିଲା, ସେମାନଙ୍କ ମଧ୍ୟରେ ଥିଲେ କଂଗ୍ରେସର ଅନେକ ପୁରୁଣା ସଭ୍ୟ ତଥା ପଣ୍ଡିତ ନେହେରୁଙ୍କ ସହକର୍ମୀମାନେ । କିନ୍ତୁ ଯେତେବେଳେ କଂଗ୍ରେସ ସଭାପତି କାମରାଜ ଇନ୍ଦିରାଙ୍କ ନାମ ପ୍ରସ୍ତାବ କରି ଦୃଢ଼ ସମର୍ଥନ କରିଥିଲେ, ବାସ୍ତବ ରଣକ୍ଷେତ୍ରକୁ ଲମ୍ଫ ପ୍ରଦାନ କରିଥିଲେ କେବଳ ଶ୍ରୀ ମୋରାରଜୀ ଦେଶାଇ ।

ଗୁପ୍ତ ଭୋଟ ମାଧ୍ୟମରେ ପାର୍ଲ୍ୟାମେଣ୍ଟର କେନ୍ଦ୍ରୀୟ ଭବନରେ କଂଗ୍ରେସ ଦଳର ନେତା ନିର୍ବାଚନ କରାଯାଇଥିଲା । ଲୋକସଭା ଓ ରାଜ୍ୟସଭାର ସଦସ୍ୟମାନେ ଜଣ ଜଣ କରି ଭୋଟ ଦେଇଥିଲେ । ଇନ୍ଦିରା ଗାନ୍ଧୀ ୩୫୫ ଭୋଟ ପାଇବା ବେଳେ ମୋରାରଜୀ ମାତ୍ର ୧୬୯ ଭୋଟ ପାଇ ପରାଜିତ ହୋଇଥିଲେ ।

ଦେଶର ଏକ ସଙ୍କଟସଙ୍କୁଳ ମୁହୂର୍ତ୍ତରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରିତ୍ୱ ଗ୍ରହଣ କରିଥିଲେ । ଜ୍ୟୋତିର୍ମୟ ଦତ୍ତଙ୍କ ଭାଷାରେ, She has filled office

as naturally as water flows into a hallow. * ସେ ଯେଉଁ ପରିସ୍ଥିତିରେ ଭାରତର ନେତ୍ରୀ ନିର୍ବାଚିତ ହୋଇଥିଲେ, ରାଜନୀତିଜ୍ଞମାନେ ଆଶା କରିଥିଲେ ଯେ ସେ କେବଳ ନାମକୁ ମାତ୍ର ପ୍ରଧାନମନ୍ତ୍ରୀ ହୋଇ ରହିବେ ଏବଂ ବାସ୍ତବରେ ଅନ୍ୟମାନଙ୍କ ନିର୍ଦ୍ଦେଶରେ ଶାସନ ଚଳାଇବ । ବିଶେଷ କରି କାମରାଜଙ୍କ ସଂପୂର୍ଣ୍ଣ ଆଶା ଏବଂ ଭରସା ଥିଲା ଯେ ପ୍ରକୃତରେ ଇନ୍ଦିରାଙ୍କୁ ସିଂହାସନରେ ବସାଇ ରାଜକାର୍ଯ୍ୟ ସେ ନିଜେହିଁ ନିର୍ବାହ କରିବେ । କିନ୍ତୁ ପରେ ପରେ ସେ ଆଶା ସମ୍ପୂର୍ଣ୍ଣ ନିରାଶାରେ ପରିଣତ ହୋଇଯାଇଥିଲା । ପ୍ରଧାନମନ୍ତ୍ରୀ ହିସାବରେ ସେ ଯେଉଁ କର୍ମ-କୁଶଳତା ଦେଖାଇଥିଲେ ତାହା ପଣ୍ଡିତ ନେହେରୁଙ୍କଠାରୁ ମଧ୍ୟ ଭିନ୍ନ ଥିଲା । ସେ ଚିନ୍ତାରେ ମୌଳିକତା ଥିଲା, ସେ ବିଚାର ଥିଲା ଅଧିକ ପ୍ରଗତିଶୀଳ ।

ଇନ୍ଦିରାଙ୍କ କଂଗ୍ରେସ ସଭାନେତ୍ରୀ ଥିବା ସମୟର କାର୍ଯ୍ୟାବଳୀ ସମ୍ପର୍କରେ ଏକ ପ୍ରଶ୍ନର ଉତ୍ତରରେ ପଣ୍ଡିତ ନେହେରୁ କାମରାଜଙ୍କୁ କହିଥିଲେ—

"Indira has a strong independent mind of her own as she should have."** ବିଶେଷକରି କଂଗ୍ରେସର ସଭାନେତ୍ରୀ ହିସାବରେ ଇନ୍ଦିରା ବେଳେବେଳେ ଅନେକ କାର୍ଯ୍ୟ କରୁଥିଲେ, ଯାହା ନେହେରୁଙ୍କ ଚିନ୍ତାଧାରାଠାରୁ ସଂପୂର୍ଣ୍ଣ ପୃଥକ୍ ଥିଲା । ସେଇଥିପାଇଁ ସେ ମତ ଦେଇଥିଲେ, "Some times she choose a line of her own against my way of thinking, which was the right thing to do."

ଶ୍ରୀମତୀ ଗାନ୍ଧୀଙ୍କ ରାଜନୈତିକ ବିଚାରଧାରା ଅନେକାଂଶରେ ତାଙ୍କ ପିତା ପଣ୍ଡିତ ନେହେରୁଙ୍କ ଚିନ୍ତାଧାରା ସହିତ ପ୍ରାୟ ସମାନ । ସେଥିପାଇଁ ଗୋଟିଏ ପତ୍ରିକାର ନେହେରୁ ଶ୍ରାଦ୍ଧବାର୍ଷିକୀ ସଂଖ୍ୟାରେ ସେ ଲେଖିଥିଲେ, "ଅମର ଦୋହୁଲିମାନ ପଦକ୍ଷେପକୁ ସୁଦୃଢ଼ କରିବାଲାଗି ଓ ଆମ୍ଭମାନଙ୍କ ଭିତରେ ଆତ୍ମପ୍ରତ୍ୟୟ ଜାଗ୍ରତ କରିବା ଉଦ୍ଦେଶ୍ୟରେ ପ୍ରେରଣା ଦେବାପାଇଁ ଆମେ ତାଙ୍କର ମୃତ୍ୟୁର ସାର୍ଥକତା ନିମିତ୍ତ ଉଦ୍ୟମ କରିବା ଉଚିତ । ଭାରତକୁ ଏକ ପ୍ରଗତିଶୀଳ ଓ ପରିଣତ ଜାତି ରୂପେ ଗଢ଼ିବା ପାଇଁ ତାଙ୍କର ଯେଉଁ ସ୍ୱପ୍ନ ରହିଥିଲା, ତାକୁ ଚରିତାର୍ଥ କରିବାପାଇଁ ସେଇ ପୁଣ୍ୟତୀର୍ଥରେ ଆମ୍ଭେମାନେ ନିଜକୁ ଉତ୍ସର୍ଗ କରିବା ଉଚିତ ।"***

ତେବେ ପ୍ରଗତିବାଦୀ ବିଚାରଧାରା ଓ କୌଣସି କାର୍ଯ୍ୟ କରିବାଲାଗି ଦୃଢ଼ତାରେହିଁ ଶ୍ରୀମତୀ ଗାନ୍ଧୀଙ୍କ ବ୍ୟକ୍ତିତ୍ୱ ନିହିତ । କୌଣସି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି

---

* Hindusthan Standard Magazine-18 March, 1973—pp-6

** R. K. Karanjia—The Philosophy of Mr. Nehru

*** Socialist Congressmen ପତ୍ରିକାର ନେହେରୁ ଶ୍ରାଦ୍ଧବାର୍ଷିକୀ ସଂଖ୍ୟା ।

ନେବାପୂର୍ବରୁ ଅନ୍ତଃରାଜ୍ୟ ଓ ଅନ୍ତର୍ଦେଶୀୟ ପରିସ୍ଥିତି ପ୍ରତି ଦୃଷ୍ଟି ରଖି ସିଦ୍ଧାନ୍ତରେ ଉପନୀତ ହେବା ବାସ୍ତବିକ ତାଙ୍କର ବିଜ୍ଞତାର ପରିଚୟ । ଅନ୍ୟମାନଙ୍କ ପରାମର୍ଶକୁ ଦେଶର ପ୍ରଗତିଦୃଷ୍ଟିରୁ ପ୍ରତିକୂଳ ମନେକଲେ ତାହା ସେ ପସନ୍ଦ କରୁ ନଥିଲେ । ଏହା ଫଳରେ ତାଙ୍କୁ ପ୍ରତିଷ୍ଠିତ କରାଇବାରେ ନେତୃତ୍ୱ ନେଇଥିବା କାମରାଜ ମଧ୍ୟ ଆହତ ଓ ବ୍ୟଥିତ ହୋଇ ପଡ଼ିଥିଲେ । ସତ୍ୟାନନ୍ଦ ସିଂହଙ୍କ ମତରେ—**"He (Kamaraj) discovered to his dismay that Mrs Gandhi had a mind of her own. She did not bother to take advise from any one—least of all the 'Pakalm' man."** *

୧୯୬୬ ମସିହାରେ ପ୍ରଧାନମନ୍ତ୍ରିତ୍ୱ ଗ୍ରହଣ କରିବା ପରେ ପରେ ଦେଶରେ ଦରଦାମ ବୃଦ୍ଧି ପରିସ୍ଥିତିର ମୁକାବିଲା କରିବା ପାଇଁ ଭାରତୀୟ ଟଙ୍କାର ମୁଦ୍ରାସ୍ଫୀତି କରାଇବା ଲାଗି ନିଷ୍ପତ୍ତି କାର୍ଯ୍ୟକାରୀ କରାଇଥିଲେ । ୧୯୬୭ ସାଧାରଣ ନିର୍ବାଚନରେ ଶ୍ରୀମତୀ ଗାନ୍ଧୀଙ୍କ ପ୍ରଗତିବାଦୀ ଚିନ୍ତାଧାରା ସହିତ ତାଳ ଦେଇ ନପାରି କଂଗ୍ରେସର ଅନେକ ପୁରୁଣା ସଭ୍ୟ ଦୂରେଇ ଯାଇଥିଲେ । ସେମାନଙ୍କ ଭିତରେ କାମରାଜ, ପାଟିଲ, ଅତୁଲ୍ୟ ଘୋଷ ପ୍ରମୁଖ ଥିଲେ । ପୁଣି ୧୯୬୯ ବାଙ୍ଗାଲୋର କଂଗ୍ରେସ ଅଧିବେଶନରେ କଂଗ୍ରେସ ବିଭକ୍ତ ହେବା ସ୍ପଷ୍ଟ ହୋଇ ଉଠିଥିଲା ଓ ଠିକ୍ ତା ପରେ ପରେ ମୋରାରଜୀଙ୍କଠାରୁ ଅର୍ଥ ବିଭାଗ ବାହାର କରି ନିଆଯିବାରେ ସେ ବିରକ୍ତ ହୋଇ ଇସ୍ତଫା ଦେଇଥିଲେ । ତାଙ୍କୁ ସମର୍ଥନ କରି ରାମସୁଭଗ ସିଂ, ଜୟସୁଖଲାଲ ହାଥୀ ଓ ସି. ଏମ୍. ପୁନାଚ୍ଚ ମନ୍ତ୍ରିମଣ୍ଡଳରୁ ମଧ୍ୟ ଇସ୍ତଫା ଦେଇଥିଲେ । ଅବିଚଳିତ ଇନ୍ଦିରା ତାପରେ ପରେ ଭାରତର ଚଉଦଟି ବଡ଼ ବଡ଼ ବ୍ୟାଙ୍କଙ୍କୁ ଜାତୀୟକରଣ କରିବା ନିଷ୍ପତ୍ତି ଘୋଷଣା କରିଥିଲେ ।

ସେ ଭାରତର ରାଷ୍ଟ୍ରପତି ଭାବେ ୬ ଭି. ଭି. ଗିରିଙ୍କୁ ଦୃଢ଼ ସମର୍ଥନ କରିଥିଲେ । ଭାରତର ରାଷ୍ଟ୍ରପତି ନିର୍ବାଚନରେ ୬ ଗିରି ଜୟଯୁକ୍ତ ହେବା ପରେ ପରେ କଂଗ୍ରେସ ଦଳ ଭିତରେ ପୁଣି ବିଭେଦ ସୃଷ୍ଟି ହେବାର ସୂଚନା ପାଇ ଦେଶକୁ ପ୍ରଗତିପଥରେ ଆଗେଇ ନେବାପାଇଁ ସେମାନଙ୍କ ସମର୍ଥନ ଲାଗି ଦକ୍ଷିଣପନ୍ଥୀ କମ୍ୟୁନିଷ୍ଟ ଦଳ ସହିତ ରାଜନୈତିକ ବୁଝାମଣା କରିଥିଲେ । ନିଜ ଉପରେ ଭରସା ରଖି ଓ ଆପଣାର କାର୍ଯ୍ୟାବଳୀ ଉପରେ ସମ୍ପୂର୍ଣ୍ଣ ଆସ୍ଥାବାନ୍ ହୋଇ ରାଜା ମହାରାଜାମାନଙ୍କ ହାତପାଣି ଉଚ୍ଛେଦ ପାଇଁ ଉପଯୁକ୍ତ କର୍ମପନ୍ଥା ଗ୍ରହଣ କରିଥିଲେ ଏକ ଗଣତାନ୍ତ୍ରିକ ରାଷ୍ଟ୍ରରୁ ସାମନ୍ତବାଦର ବିଲୋପ ପାଇଁ ।

---

* Illustrated Weekly—3rd Sept., 72—pp-25

ବିଗତ ୧୯୭୧ ସାଧାରଣ ନିର୍ବାଚନରେ କଂଗ୍ରେସ ପ୍ରତି ଭାରତର ଜନସାଧାରଣଙ୍କ ବିପୁଳ ସମର୍ଥନ ସମ୍ଭବ ହୋଇଥିଲା କେବଳ ଇନ୍ଦିରାଙ୍କ ଯୋଗୁଁ । ଦେଶର ଜନସାଧାରଣ ଇନ୍ଦିରାଙ୍କ ନେତୃତ୍ୱକୁ ଆବାହନ ଜଣାଇଥିଲେ । ଇନ୍ଦିରା ତାଙ୍କର ନିର୍ବାଚନ ଭାଷଣମାନଙ୍କରେ ନିଜ ଦଳର ପ୍ରାର୍ଥୀଙ୍କୁ ଜୟଯୁକ୍ତ କରାଇବାକୁ ଆହ୍ୱାନ ଦେଇ କହିଥିଲେ, "ଆପଣମାନେ ଯଦି ମୋର ନେତୃତ୍ୱକୁ ଗ୍ରହଣ କରୁଛନ୍ତି, ଆପଣମାନଙ୍କୁ ମୋର ପ୍ରାର୍ଥୀମାନଙ୍କୁ ମଧ୍ୟ ଗ୍ରହଣ କରିବାକୁ ପଡ଼ିବ । ମୋର ପ୍ରାର୍ଥୀମାନଙ୍କଠାରେ ମୁଁ ଆସ୍ଥା ରଖିଛି ଯେ ସେମାନେ କଂଗ୍ରେସ ନୀତି ଅନୁସରଣ କରିବେ ଓ ତାର କାର୍ଯ୍ୟକ୍ରମକୁ କର୍ମକ୍ଷେତ୍ରରେ ନିୟୋଜନ କରିବେ ।" * ତା'ର ପରିଣାମ ସ୍ୱରୂପ ଲୋକସଭାର ୫୧୮ ସ୍ଥାନ ମଧ୍ୟରୁ ଶ୍ରୀମତୀ ଇନ୍ଦିରାଙ୍କ ସମର୍ଥନରେ ପରିଚାଳିତ କଂଗ୍ରେସ ପାଇଥିଲା ୩୫୨ । ଏହା ଥିଲା ତାଙ୍କର ବ୍ୟକ୍ତିତ୍ୱ ।

ପ୍ରିୟଦର୍ଶିନୀ ଇନ୍ଦିରାଙ୍କର ଲୋକପ୍ରିୟତା ଅସମ୍ଭବ ଭାବେ ବୃଦ୍ଧି ପାଇବାର ଆଉ ଗୋଟିଏ ପ୍ରମାଣ—ସେ ଯେଉଁସ୍ଥାନକୁ ଯାଆନ୍ତୁ ନା କାହିଁକି, ତାଙ୍କୁ ଦେଖିବା ପାଇଁ ସାଧାରଣ ଜନତାର ବ୍ୟାକୁଳତା, ତାଙ୍କ ମୁହଁରୁ ଦୁଇପଦ କଥା ଶୁଣିବା ଲାଗି ଉତ୍କଣ୍ଠାର ପରିପ୍ରକାଶ । ଓଡ଼ିଶାର କୋରାପୁଟ ଭଳି ଆଦିବାସୀ ଅଞ୍ଚଳ, ଯେଉଁଠି ଆଧୁନିକ ସଭ୍ୟତା ବହୁତ ଦୂରରେ ସେଠାରେ ଥରେ ଭାଷଣ ଦେବାକୁ ଯିବାବେଳେ ଆଦିବାସୀ ମହିଳାମାନେ ସେମାନଙ୍କ ପିଲାଛୁଆଙ୍କୁ କାଖରେ ଧରି ଦୀର୍ଘ ପଚିଶ ମାଇଲ ରାସ୍ତା ଘଞ୍ଚ ଜଙ୍ଗଲରେ ଅତିକ୍ରମ କରି ଦିନକ ପୂର୍ବରୁ ଆସି ଅପେକ୍ଷା କରିଥିଲେ ଇନ୍ଦିରାଙ୍କ ଦର୍ଶନପାଇଁ । କେବଳ ଓଡ଼ିଶାର ଆଦିବାସୀ ଅଞ୍ଚଳ କୋରାପୁଟ କାହିଁକି, ବିଭିନ୍ନ ଦେଶ ମହାଦେଶ ତଥା ଭାରତର ବିଭିନ୍ନ ପ୍ରଦେଶର ଭିନ୍ନ ଭିନ୍ନ ଭାଷାଭାଷୀ ଲୋକଙ୍କ ସମାଗମ ବମ୍ବେ ମହାନଗରୀରେ ମଧ୍ୟ ତାହାଙ୍କୁ ଦର୍ଶନ ପାଇଁ ଓ ତାଙ୍କ ଭାଷଣ ଶୁଣିବା ପାଇଁ ଲୋକଙ୍କ ଆଗ୍ରହ ବର୍ଣ୍ଣନାତୀତ । କେବଳ କୋରାପୁଟ କିମ୍ବା ବମ୍ବେ ନୁହେଁ, ଭାରତର ଯେ କୌଣସି ସ୍ଥାନରେ ଅବସ୍ଥା ସେଇ ଗୋଟିଏ ପ୍ରକାରର, ସେଇ ଏକା ଧରଣର ।

ବିଗତ ବଙ୍ଗଳାଦେଶର ସ୍ୱାଧୀନତା ସଂଗ୍ରାମ ପରେ ପରେ ସ୍ୱାଧୀନ ସାର୍ବଭୌମ ପୃଥିବୀରେ ନୂତନ କରି ଜନ୍ମ ନେଇଥିବା ଏକ ଗଣତନ୍ତ୍ର ପରିଭ୍ରମଣରେ ଯାଇଥିବାବେଳେ ସେଠା ଲୋକେ ଇନ୍ଦିରାଙ୍କ ଦର୍ଶନପାଇଁ ଦିନକ ପୂର୍ବରୁ ସମବେତ ହୋଇଥିଲେ ବହୁ ଦୂରଦୂରାନ୍ତରରୁ ଆସି । ଏହାର ମୂଳରେ ନିହିତ ତାଙ୍କ ବ୍ୟକ୍ତିତ୍ୱ, ହୀରକର ଦୀପ୍ତି । ଜଣେ ସମାଲୋଚକଙ୍କ ମତରେ—'କଠିନ ଚରିତ୍ର, କଠିନ ପଥର ଖଣ୍ଡ ପରି ବ୍ୟକ୍ତିତ୍ୱ ହୀରକ ପ୍ରସ୍ତରର ଦୀପ୍ତି । ଦୁଇଟିଯାକ ଭାରି ଜଟିଳ । କିନ୍ତୁ ହୀରକ ଖଣ୍ଡ ତାର ଓଜନ ସକାଶେ ଆଦରଣୀୟ ନୁହେଁ, ତାହାର ଦୀପ୍ତି ସକାଶେ ସେ .

* ଯୁଗନେତ୍ରୀ ଇନ୍ଦିରା—ସୂର୍ଯ୍ୟନାରାୟଣ ଦାସ—ପୃ ୧୫୫

ଆଦରଣୀୟା । ସେଇ ବ୍ୟକ୍ତିତ୍ୱ ଲାଗି, ସେଇ ଦୀପ୍ତି ଲାଗି ଶ୍ରୀମତୀ ଇନ୍ଦିରା ସମସ୍ତଙ୍କର ପ୍ରିୟ ହୋଇ ପଡ଼ିଥିଲେ । ପୁଣି ସେଇ ସମାଲୋଚକଙ୍କ ମତରେ—'ଚରିତ୍ରକୁ ବୁଝିବାକୁ ସମୟ ଓ ଶକ୍ତି ଲୋଡ଼ା । କିନ୍ତୁ ବ୍ୟକ୍ତିତ୍ୱ ସ୍ୱତୋଦ୍‌ବୁଦ୍ଧ । ହାତରେ ନ ଧରିଲେ ପଥରର ଓଜନ କଳା ହେବ ନାହିଁ । କିନ୍ତୁ ହୀରକକୁ ହାତରେ ଧରିବାର ଆବଶ୍ୟକତା ନାହିଁ । ଏହାର ଦୀପ୍ତି ଦୂରରୁ ପ୍ରତ୍ୟକ୍ଷ । ଏହାର ଦ୍ୟୁତିରେ ଦିଗଦିଗନ୍ତ ଭାସ୍ୱର ।' * ଜବାହାରଲାଲ ନେହେରୁଙ୍କ ବ୍ୟକ୍ତିତ୍ୱକୁ ବିଶ୍ଳେଷଣ କରିବାକୁ ଯାଇଥିବା ଆଲୋଚକଙ୍କ ଏହି ବକ୍ତବ୍ୟ ତାଙ୍କ ରକ୍ତର ଏକ ସ୍ମାରକୀ ଶ୍ରୀମତୀ ଇନ୍ଦିରାଙ୍କ କ୍ଷେତ୍ରରେ ମଧ୍ୟ ପ୍ରୟୋଗ କରାଯିବାରେ କୌଣସି ଅସମୀଚୀନ ହେବ ନାହିଁ ।

ସ୍ୱାଧୀନ୍ ବଙ୍ଗଳାଦେଶ ଗଠନରେ ଶ୍ରୀମତୀ ଗାନ୍ଧୀଙ୍କ କର୍ମକୁଶଳତା ତଥା ରାଜନୈତିକ ଦୂରଦର୍ଶିତା ସ୍ପଷ୍ଟ ପ୍ରମାଣିତ । ବଙ୍ଗଳାଦେଶକୁ ରାଜନୈତିକ ସ୍ୱୀକୃତି ଦେବା ବିଷୟ ବିବେଚନା କରିଥିଲେ ସେ ନିଜେ । ଅନ୍ୟମାନଙ୍କ ଦୋଷାରୋପ ଓ ଶୀଘ୍ର ସ୍ୱୀକୃତି ଦେବାର କଟୁ ସମାଲୋଚନାକୁ ସେ ଭ୍ରୂକ୍ଷେପ କରି ନ ଥିଲେ । ପୁନଶ୍ଚ ପାକିସ୍ଥାନୀ ସେନାସହ ଚଉଦଦିନିଆ ଯୁଦ୍ଧ ପରେ ଯେତେବେଳେ ବଙ୍ଗଳା ଦେଶରେ ଶତ୍ରୁସୈନ୍ୟମାନେ ଆତ୍ମସମର୍ପଣ କରିଥିଲେ, ଶ୍ରୀମତୀ ଗାନ୍ଧୀଙ୍କ ଏକତରଫା ଯୁଦ୍ଧ ଘୋଷଣା ପୃଥିବୀରେ ଶିହରଣ ଖେଳାଇ ଦେଇଥିଲା । ଜଣେ ସାମ୍ବାଦିକ ଜଗତ୍‌ସିଂହ ବ୍ରାଇଟ୍‌ଙ୍କ ମତରେ—ମୁକ୍ତିକାମୀ ବଙ୍ଗଳାଦେଶରେ, ବର୍ବର ଗଣହତ୍ୟା ବନ୍ଦକରି ଜନସାଧାରଣଙ୍କର ଶାନ୍ତିପୂର୍ଣ୍ଣ ଜୀବନ ଯାପନ ପାଇଁ ଏକ ରାଜନୈତିକ ସମାଧାନ ଦିଗରେ ଶ୍ରୀମତୀ ଗାନ୍ଧୀଙ୍କ ଭୂମିକା ଥିଲା ଭାରତର କୁରୁକ୍ଷେତ୍ର ଯୁଦ୍ଧରେ ଭଗବାନ ଶ୍ରୀକୃଷ୍ଣଙ୍କର ଭୂମିକା । ବଙ୍ଗଳା ଦେଶରେ ମୁକ୍ତିସଂଗ୍ରାମ ଚାଲିଥିଲାବେଳେ ଅନ୍ୟାନ୍ୟ କାର୍ଯ୍ୟକ୍ରମ ଭିତରେ ଶ୍ରୀମତୀ ଇନ୍ଦିରା ଯୁଦ୍ଧର ଅଗ୍ରଗତି ସମ୍ପର୍କରେ ଜାଣିବା ଲାଗି ବିଶେଷ ଉଦ୍‌ଗ୍ରୀବ ରହୁଥିଲେ । ସେତେବେଳେ ଦିନରେ ଦୁଇଥର ଖବର ରଖୁଥିଲେ ମଧ୍ୟ ଡାକ୍‌କା ପତନ ହେବା ଦିନ ପ୍ରତି ପାଞ୍ଚ ମିନିଟରେ ଥରେ ଖବର ପାଇବା ପାଇଁ ଉତ୍କଣ୍ଠିତ ଥିଲେ ।

୧୯୩୧ ମସିହା ଜାନୁୟାରୀ ମାସରେ, ବାପୁ ଜବାହର ତାଙ୍କ ଐତିହାସିକ ପତ୍ରାବଳୀ ମଧ୍ୟରୁ ଗୋଟିଏ ପତ୍ରରେ ଲେଖିଥିଲେ, "ଆମେ ଅବଶ୍ୟ ସ୍ୱାଧୀନତା ଚାହୁଁ । ତାହା ସଙ୍ଗେ ସଙ୍ଗେ ଆମର ଅଧିକ କିଛି ମଧ୍ୟ ଦରକାର । ଦେଶରୁ ଦୁଃଖ, ଦାରିଦ୍ର୍ୟ ଓ ଦୁର୍ବିପାକ ଦୂର କରିବାକୁ ପଡ଼ିବ । ଆମ ସମ୍ମୁଖରେ ଥିବା ମହାନ କାର୍ଯ୍ୟରେ ସହଯୋଗ କରିବା ପାଇଁ ଜନମାନସର ସମସ୍ତ ପ୍ରତିବନ୍ଧକକୁ ଦୂର

---

* ଶ୍ରୀ ଚିନ୍ତାମଣି ଦାସ—କବି ଗୋପବନ୍ଧୁ—ପୃ—୮

କରିବାକୁ ପଡ଼ିବ ।" ଦୀର୍ଘପ୍ରାସ୍ତ ଭେପନ ବର୍ଷ ତଳେ ପ୍ରଦତ୍ତ ଚଠିର ବାସ୍ତବତା ଶ୍ରୀମତୀ ଇନ୍ଦିରା ସବୁବେଳେ ଅନୁଭବ କରୁଥିଲେ । ସେ ବ୍ୟାକୁଳ ହୋଇଉଠନ୍ତି ପିତାଙ୍କ ସେଦିନ ମହାନ୍ କାର୍ଯ୍ୟରେ ହାତ ଦେଇଥିଲେ, ସେସବୁକୁ ସଫଳ କରିବା ପାଇଁ ଓ ପୂର୍ଣ୍ଣାଙ୍ଗ କରିବା ପାଇଁ । ଆପ୍ରାଣ ଚେଷ୍ଟା କରୁଥିଲେ ଦେଶରୁ ଦୁଃଖ ଦାରିଦ୍ର୍ୟ ଦୂର କରିବାପାଇଁ, ନ୍ୟାୟିତାର ଅବସାନ ପାଇଁ, ଶାନ୍ତି, ମୈତ୍ରୀ ଓ ପ୍ରଗତି ପଥରେ ଦେଶକୁ ଆଗେଇନେବା ପାଇଁ । ତେଣୁ ଦେଶରୁ 'ଗରିବୀ ହଟାଓ'କୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ନୂତନ ବିଂଶସୂତ୍ରୀ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଅଦମ୍ୟ ଉଦ୍ୟମ କରିଥିଲେ । ୧୯୭୧ରେ ପାକିସ୍ଥାନ ଯୁଦ୍ଧରେ ଜୟଲାଭ କରିବା ପରେ ପରେ ସେ ଅନେକ ସଭାରେ ପ୍ରାୟ ସେଇ ଗୋଟିଏ କଥା ଘୋଷଣା କରିଥିଲେ ଯେ ପାକିସ୍ଥାନ ସହ ଯୁଦ୍ଧରେ ବିଜୟ ଲାଭ କରିବା ଭଳି ଆମ ଦେଶରେ ଦାରିଦ୍ର୍ୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ହେବ ଏବଂ ସେ ସଂଗ୍ରାମରେ ବିଜୟ ଲାଭ କରିବା ଆମ୍ଭମାନଙ୍କ ପାଇଁ ଏକାନ୍ତ ଭାବେ ଆବଶ୍ୟକ । ପାକିସ୍ଥାନସହ ସଂଗ୍ରାମ ସମୟରେ ଆମ୍ଭେମାନେ ଯେଉଁଭଳି ଭାବରେ ଐକ୍ୟବଦ୍ଧ ହୋଇଥିଲେ, ଦାରିଦ୍ର୍ୟ ସହିତ ସଂଗ୍ରାମ କଲାବେଳେ ମଧ୍ୟ ସେହି ଜାତୀୟ ଐକ୍ୟବଦ୍ଧ ନିଷ୍ଠିତ ଭାବେ ବଜାୟ ରଖିବାକୁ ହେବ ।

ସମଗ୍ର ଜାତି ଉଦ୍ଦେଶ୍ୟରେ ଭାଷଣ ଦେଇ ୧୯୭୧ ମସିହା ଅଗଷ୍ଟ ୧୫ତାରିଖ ଦିନ ସେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇଥିଲେ ଯେ "ବୁଭୁକ୍ଷା ଏଭଳି ଏକ ସାମାଜିକ ଅବସ୍ଥା ଯାହା ଜନଗଣଙ୍କ ମନରେ ନୈରାଶ୍ୟବାଦ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଦେଶକୁ ମଧ୍ୟ ଦୁର୍ବଳ କରି ଦେଇଥାଏ । ତେଣୁ ଦେଶରୁ ଦାରିଦ୍ର୍ୟ ଦୂରୀକରଣ ଆମ୍ଭମାନଙ୍କର ପ୍ରଥମ ଧ୍ୟେୟ ହେବା ଉଚିତ । "ବିଭିନ୍ନ ଗୋଷ୍ଠୀ ମଧ୍ୟରୁ ଅର୍ଥନୈତିକ ତଥା ସାମାଜିକ ବୈଷମ୍ୟ ଦୂର କରାଯାଇ ନ ପାରିଲେ ଦାରିଦ୍ର୍ୟ ଦୂରୀକରଣ ମଧ୍ୟ ସମ୍ଭବ ନୁହେଁ । "Poverty is a terrible condition which brings fraustration to the people and weakens the country. Therefore our first task is to remove poverty. We can remove it only when we remove social and economic disparities between one class and another "

ଏଥିରୁ ଶ୍ରୀମତୀ ଗାନ୍ଧୀଙ୍କ ଦେଶ ପ୍ରତି ମମତା, ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଚିନ୍ତାଧାରା ସୁସ୍ପଷ୍ଟ ।

ଜାତିର ଜନକ ମହାତ୍ମା ଗାନ୍ଧୀ ସବୁବେଳେ କହୁଥିଲେ, ଭାରତ କାହାର ଗୋଡ଼ାଣିଆ ହୋଇ ରହିବ ନାହିଁ । ସେହି ଆଦର୍ଶ ଗ୍ରହଣ କରି ଭାରତର ସ୍ୱାଧୀନତା

ପର ମୁହୂର୍ତ୍ତଠାରୁ ଜାତି ଗଠନ କରିବା ପାଇଁ ଅନ୍ୟ ନେତୃସ୍ଥାନୀୟ ବ୍ୟକ୍ତିବୃନ୍ଦଙ୍କ ସହିତ ଦୃଢ଼ ସଂକଳ୍ପ କରି ଦେଶର ନେତୃତ୍ୱ ନେଇଥିଲେ ପଣ୍ଡିତ ନେହେରୁ । ତାହାଙ୍କ ପରେ ଯେଉଁ ସ୍ୱଳ୍ପ କାଳ ପାଇଁ ଶାସ୍ତ୍ରୀଜୀ ଏ ଦେଶରେ ପ୍ରଧାନ ନାୟକ ହୋଇଥିଲେ ସେ ମଧ୍ୟ ସେହି ଆଦର୍ଶକୁ ନିଜର ଆଦର୍ଶ ବୋଲି ଗ୍ରହଣ କରିଥିଲେ । ଶ୍ରୀମତୀ ଗାନ୍ଧୀ ଭାରତୀୟ ଜନଗଣଙ୍କ ନେତ୍ରୀ ରୂପେ ନିର୍ବାଚିତ ହେବାପରେ ଗାନ୍ଧୀ-ନେହରୁ ଓ ଶାସ୍ତ୍ରୀଜୀଙ୍କ ଦେଶ ଗଠନର ଆଦର୍ଶ ଓ ଅନୁରୂପ ଚିନ୍ତାକୁ ହିଁ ଭାରତ ପାଇଁ ଏକ ଆବଶ୍ୟକତା ରୂପେ ଗ୍ରହଣ କରି ନେଇଥିଲେ । ତେଣୁ ପଣ୍ଡିତ ନେହରୁ ଭାରତକୁ ଆନ୍ତର୍ଜାତିକ କ୍ଷେତ୍ରରେ ଯେଉଁଭଳି ଭାବେ ପ୍ରତିଷ୍ଠିତ କରାଇଥିଲେ, ଜାତ୍ୟାଭିମାନୀ ଇନ୍ଦିରା ତାହାକୁ ବହୁଗୁଣିତ କରାଇବାରେ ସକ୍ଷମ ହୋଇଥିଲେ ଏଥିରେ ବୋଧହୁଏ ଦ୍ୱିମତ ହେବାର ନାହିଁ ।

ସ୍ୱାଭିମାନୀ ଶ୍ରୀମତୀ ଗାନ୍ଧୀଙ୍କର ସବୁବେଳେ ଚିନ୍ତାଥିଲା, ଦେଶରୁ କିପରି ଦାରିଦ୍ର୍ୟ ଲୋପ ପାଇବ । ସମଗ୍ର ଦେଶରେ ଜାତି, ଧର୍ମ, ଭାଷା ଇତ୍ୟାଦିର ସମସ୍ତ ବିଭେଦତା ସତ୍ତ୍ୱେ କିପରି ଐକ୍ୟ ଏବଂ ସଂହତି ରକ୍ଷା କରାଯାଇ ପାରିବ । ହିମାଳୟଠାରୁ କୁମାରୀକା ପର୍ଯ୍ୟନ୍ତ ଜନଗଣଙ୍କ ମଧ୍ୟରେ ଏକତା ରକ୍ଷା କରିବା ଥିଲା ତାଙ୍କର ଅହରହ ଚିନ୍ତାର ବିଷୟ ।

ଗାନ୍ଧିଜୀଙ୍କ ସ୍ୱପ୍ନର ସୁନାର ଭାରତ ଗଠନ କରିବା ତଥା କୃଷି, ଶିଳ୍ପ, ବିଜ୍ଞାନ, ବାଣିଜ୍ୟ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଦେଶକୁ ସ୍ୱାବଲମ୍ବନଶୀଳ କରାଇ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠିତ କରାଇବା ଯେମିତି ଥିଲା ତାଙ୍କ ଜୀବନର ଏକ ପରମ ବ୍ରତ । ସେଥିଲାଗି ସେ ବୁଝିଁଥିଲେ ସେ ସବୁର ମୂଳ ଦେଶର ଅର୍ଥନୈତିକ ପ୍ରଗତି ଏବଂ ସେସବୁ ଯେ ନିଷ୍ଠାପର ନେତୃତ୍ୱର ପରାକାଷ୍ଠା ବଳରେ ସମ୍ଭବ ହୋଇ ପାରିବ ସେଥିରେ ମଧ୍ୟ ସେ ସନ୍ଦିହାନ ନ ଥିଲେ । ସେଥିଲାଗି ତାହାଙ୍କର ନେତୃତ୍ୱ କାଳରେ ସବୁଠାରୁ ଅଧିକ ସମାଲୋଚିତ ସମୟ 'ଜରୁରୀ ଅବସ୍ଥା' ସମୟରେ ଦେଶର ଦ୍ରୁତ ଅର୍ଥନୈତିକ ପ୍ରଗତିପାଇଁ ଯେଉଁ ବିଂଶସୂତ୍ରୀ କାର୍ଯ୍ୟକ୍ରମର ପ୍ରଚଳନ କରାଇଥିଲେ ତାହା ଯଥାର୍ଥରେ ବିଶେଷ ଫଳପ୍ରଦ ମଧ୍ୟ ହୋଇଥିଲା । ତାହାଙ୍କର ଅନେକ କଟୁ ସମାଲୋଚକ ଜରୁରୀ କାଳରେ ଶ୍ରୀମତୀ ଗାନ୍ଧୀଙ୍କ ରାଜନୈତିକ ପଦକ୍ଷେପଗୁଡ଼ିକର ତୀବ୍ର ସମାଲୋଚନା କରିଥିଲେ ମଧ୍ୟ ଦେଶର ଅର୍ଥନୈତିକ ପ୍ରଗତି ସମ୍ପର୍କରେ ବିଶେଷ କହିବାର ନଥିଲା । ଜନତା ସରକାରଙ୍କ ଅମଳରେ କିନ୍ତୁ ଉକ୍ତ କାର୍ଯ୍ୟକ୍ରମଗୁଡ଼ିକ ପ୍ରତି ବିଶେଷ ଧ୍ୟାନ ଦିଆଯାଇ ନ ଥିଲା । ପୁଣି ଯେତେବେଳେ ୧୯୮୦ ମସିହାରେ ଶ୍ରୀମତୀ ଗାନ୍ଧୀ ପୁନର୍ବାର ଦେଶର ନେତୃତ୍ୱ ନେବାପାଇଁ ପ୍ରବଳ ଜନସମର୍ଥନ ଲାଭ କରିଥିଲେ ଠିକ୍ ସେତିକିବେଳେ ତାହାଙ୍କ ଦ୍ୱାରା ପୂର୍ବରୁ ଅନୁସୃତ ହେଉଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମକୁ ନୂତନ ରୂପ ଦେଇ ପୁନର୍ବାର

ଦେଶରେ ପ୍ରଚଳନ କରାଇଥିଲେ । ଏଥିରୁ ଦେଶର ଅର୍ଥନୈତିକ ପ୍ରଗତି ପାଇଁ ଶ୍ରୀମତୀ ଗାନ୍ଧୀଙ୍କ ବ୍ୟାକୁଳତା ଓ ଆନ୍ତରିକତା ସୁସ୍ପଷ୍ଟ ।

ଶ୍ରୀମତୀ ଗାନ୍ଧୀଙ୍କ ଦେଶପ୍ରୀତି ଯେତିକି ପରିମାଣରେ ଥିଲା ତାଠାରୁ ବହୁ ଅଧିକ ପରିମାଣରେ ଥିଲା ମାନବ ପ୍ରୀତି । ସମାଜରେ ମଣିଷକୁ ମଣିଷ ଭଳି ବଞ୍ଚିବା ଅଧିକାର ଦିଆଯିବା ଓ ଉଚିତ ସମ୍ମାନ ଦିଆଯିବା ଆବଶ୍ୟକ ବୋଲି ସେ ମତ ଘୋଷଣା କରିଥିଲେ । ସାମଗ୍ରିକ ଭାବରେ ଦେଖିବାକୁ ଗଲେ ଜବାହାରଲାଲ୍ ଜଣେ ସରଳ ନିରାଡମ୍ବର ଭାବପ୍ରବଣ ତଥା ସ୍ୱପ୍ନବିଳାସୀ ଥିଲେ । ତାଙ୍କ କନ୍ୟା ଶ୍ରୀମତୀ ଗାନ୍ଧୀ ପିତାଙ୍କର ଅନ୍ୟାନ୍ୟ ସଦ୍‌ଗୁଣର ଅଧିକାରୀ ହୋଇ ପାରିଥିଲେ ମଧ୍ୟ ସେ ପିତାଙ୍କ ଭଳି ସ୍ୱପ୍ନ ବିଳାସୀ ନ ହୋଇ ହୋଇଥିଲେ ଉଗ୍ରମାନବବାଦୀ । ସେ ଅନୁଭବ କରିଥିଲେ ଯେ ମଣିଷ ପ୍ରକୃତରେ ମଣିଷ ଭଳି ସମାଜରେ ବଞ୍ଚିବା ଆବଶ୍ୟକ । ତାହାଙ୍କର ସେହି ଦୃଷ୍ଟିକୋଣ ଯୋଗୁଁ ନିସ୍ୱାପର ଭାବେ ସେ ମଣିଷକୁ ବୁଝିବାକୁ ଚେଷ୍ଟା କରୁଥିଲେ, ସୁଖ ଦୁଃଖର ଭାଗୀଦାର ହେବାପାଇଁ ଚେଷ୍ଟା କରୁଥିଲେ ଅତି ଅନ୍ତରଙ୍ଗ ଭାବେ । ସେଥିପାଇଁ ୧୯୮୩ ନଭେମ୍ବର ୧୪ ତାରିଖରେ ପଶ୍ଚିମ ଜର୍ମାନୀର ଏକ ସମ୍ବାଦପତ୍ର 'ଆଲ୍‌ଜେମିନ୍ ଜେଇଁଙ୍ଗ୍' ତରଫରୁ ଏକ ପ୍ରଶ୍ନାବଳୀ ମଧ୍ୟରୁ ଗୋଟିଏ ପ୍ରଶ୍ନର ଉତ୍ତର ଦେଇ କହିଥିଲେ ଯେ 'ମଣିଷର ନିଷ୍ଠା, ଅପରକୁ ବୁଝିବା ଓ ସାହାଯ୍ୟ କରିବା ମନୋବୃତ୍ତି ହିଁ ମଣିଷର ସର୍ବଶ୍ରେଷ୍ଠ ଗୁଣ । ସେଥିପାଇଁ ଆବଶ୍ୟକ ସାହସ ଏବଂ ସେ ସାହସର ଅର୍ଥନୈତିକ ବୌଦ୍ଧିକ ଓ ଶାରୀରିକ ଶକ୍ତି ।' ଶ୍ରୀମତୀ ଗାନ୍ଧୀ ସାହସୀ ହେବାପାଇଁ ପିଲାଟି ଦିନରୁ ପିତା ଜବାହାରଲାଲଙ୍କ ଦ୍ୱାରା ଗଭୀର ଭାବରେ ଅନୁପ୍ରେରଣା ଲାଭ କରିଥିଲେ ଓ ପରିଣାମତଃ ସେ ସମସ୍ତ ଗୁଣର ଅଧିକାରିଣୀ ହୋଇ ପାରିଥିଲେ । ତାହାଙ୍କ ଚରିତ୍ରର ସବୁଠାରୁ ଉଲ୍ଲେଖନୀୟ ଦିଗଟି ଥିଲା ଜନଜୀବନ ସହ ନିଜକୁ ଘନିଷ୍ଠ ଭାବେ ଜଡିତ କରାଇବା । ଶ୍ରୀମତୀ ଗାନ୍ଧୀଙ୍କ ଆନ୍ତରିକ ସ୍ୱୀକାରୋକ୍ତି 'ମୁଁ ସେମାନଙ୍କୁ (ଜନସାଧାରଣଙ୍କୁ) ଠିକ୍ ମଣିଷ ପରି ଦେଖେ । ଏପରିକି ଖୋଲା ଜିପ୍‌ରେ ମୁଁ ଯାଉଥିବା ବେଳେ ଦଳ ଦଳ ହୋଇ ରାସ୍ତା କଡ଼ରେ ଛିଡ଼ା ହୋଇଥିବା ଲୋକଙ୍କୁ ବ୍ୟକ୍ତିଗତ ଭାବେ ନିରୀକ୍ଷଣ କରିବାକୁ ମୁଁ ଚେଷ୍ଟା କରିଥାଏ । ମୋତେ ସ୍ୱାଗତ କରିବାକୁ ଆସିଥିବା ବିରାଟ ଜନସମୁଦ୍ରକୁ ଦେଖି ମୁଁ ଉଲ୍ଲସିତ ହୁଏ ନାହିଁ । ମୁଁ ଚେଷ୍ଟା କରେ ଯେପରି ପ୍ରତ୍ୟେକ ବ୍ୟକ୍ତିକୁ ଦେଖିବି, ବିରାଟ ଜନସମାବେଶକୁ ନୁହେଁ ।'—ତାହାଙ୍କ ମାନବବାଦୀ ଚିନ୍ତାଧାରାକୁ ସ୍ପଷ୍ଟ ପ୍ରକାଶିତ କରିଥାଏ । ୧୯୭୭ ମସିହା ନିର୍ବାଚନରେ ପରାଜିତ ହୋଇ ତିନିବର୍ଷ କାଳ କ୍ଷମତା-ରାଜନୀତିରୁ ବାହାରେ ରହିବା କାଳରେ ଆମେରିକାର ଜଣେ ସାମ୍ବାଦିକ ସହ ସାକ୍ଷାତକାର ବେଳେ ଏକଥା ସେ ବ୍ୟକ୍ତ କରିଥିଲେ ।

ଉଲ୍ଲେଖଯୋଗ୍ୟ ଯେ ବିଭିନ୍ନ କାଳରେ ଯେଉଁ ଗୋଟିଏ କଥା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ—ତାହା ଥିଲା ମାନବପ୍ରୀତି । ସେହି କଥା ପ୍ରସଙ୍ଗରେ ସେ

ମନ୍ତବ୍ୟକ୍ତ କରିଥିଲେ ଯେ ଗାନ୍ଧୀଜୀ ଭାରତର ପ୍ରତ୍ୟେକଟି ଲୋକଙ୍କୁ ଜାଣିଥିଲେ ଏବଂ ସେମାନଙ୍କ ନାଡ଼ୀ ଠିକ୍ ଭାବେ ମାପି ପାରିଥିଲେ ବୋଲି ଭାରତବାସୀଙ୍କ ଉପରେ ଓ ନିଜ ମତ ଉପରେ ଗଭୀର ବିଶ୍ୱାସ ସ୍ଥାପନ କରିପାରୁଥିଲେ । ସେ ନିଜ ଆଦର୍ଶରେ ମଧ୍ୟ ଅଟଳ ରହୁଥିଲେ । ସେସବୁ ଗୁଣ ଗୁଡ଼ିକ ଶ୍ରୀମତୀ ଗାନ୍ଧୀ ଆହରଣ କରିଥିଲେ ବାପୁଜୀଙ୍କ ନିକଟରୁ ଓ ଦେଶର ସେବା କରିବାକୁ ହେଲେ ଜନଗଣଙ୍କ ସମସ୍ୟାକୁ ନିଜର ସମସ୍ୟାରୂପେ ଗ୍ରହଣ କରି ନେଇଥିଲେ । ସେଥିପାଇଁ ସେ ସବୁବେଳେ ଉଦ୍ୟମ କରୁଥିଲେ ସେମାନଙ୍କ ମନ ଓ ହୃଦୟସହ ନିଜ ମନ ଓ ହୃଦୟକୁ ସାମିଲ କରିବେ । ମଣିଷ ପ୍ରତି ସମ୍ବେଦନଶୀଳତା ଭାରତର ନେତ୍ରୀ ହିସାବରେ ପ୍ରକାଶଲାଭ କରୁଥିଲା ତାହାଙ୍କର ପ୍ରତ୍ୟେକ କାର୍ଯ୍ୟକଳାପରେ । ଉଲ୍ଲେଖ କରାଯାଇପାରେ ଯେ ତାହାଙ୍କର ଏ ମାନବବାଦୀ ଚିନ୍ତାଧାରା କୌଣସି ସମୟରେ କୌଣସି ଭୌଗୋଳିକ ସୀମା ସହିତ ସଂଶ୍ଳିଷ୍ଟ ନଥିଲା, ତେଣୁ ଦେଶପ୍ରୀତିର ପରିପନ୍ଥୀ ହୋଇ ପ୍ରତିବନ୍ଧକ ସୃଷ୍ଟି କରି ନଥିଲା ଏବଂ ସେହି ଚିନ୍ତାଧାରା ହିଁ ଶ୍ରୀମତୀ ଗାନ୍ଧୀଙ୍କୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରାଇବା ଦିଗରେ ଯଥେଷ୍ଟ ସହାୟକ ହୋଇଥିଲା ।

ଏହି ବ୍ୟକ୍ତିତ୍ୱ ସମ୍ପନ୍ନା ମହୀୟସୀ ମହିଳାଙ୍କ ଆନ୍ତରିକ ଅଭିଳାଷ ଥିଲା ସମ୍ମାନ-ଜନକ ମୃତ୍ୟୁ । ଶ୍ରୀମତୀ ଗାନ୍ଧୀଙ୍କୁ ଭଲ ପାଉଥିବା ଲୋକେ ତାହାଙ୍କ ମୃତ୍ୟୁଜନିତ ଦୁଃଖ ଅନୁଭବ କରନ୍ତୁ ଏହା ସେ ଚାହୁଁ ନଥିଲେ । ସେ ଇଚ୍ଛା କରି ନ ଥିଲେ ତାହାଙ୍କ ମୃତ୍ୟୁରେ ଅନ୍ୟମାନେ ଲୁହ ଢାଳନ୍ତୁ । କିନ୍ତୁ କାଳଚକ୍ରର ଗତି ବଡ଼ ନିଷ୍ଠୁର । ଭାରତର ଦ୍ୱିତୀୟ ଗାନ୍ଧୀଙ୍କୁ ଗୁଳିକରି ଅକାଳରେ ହତ୍ୟା କରାଯାଇଥିଲା ୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ଦିନ ଶ୍ରୀମତୀ ଗାନ୍ଧୀଙ୍କ ସ୍ୱାଭାବିକ ମୃତ୍ୟୁ ହୋଇଥିଲେ ତାହାଙ୍କୁ ଭଲ ପାଉଥିବା ଲୋକେ ଯେତିକି ଦୁଃଖ କରିଥାନ୍ତେ ବର୍ତ୍ତମାନ ତାହାର ସହସ୍ରାଧିକ ଅଧିକ ଗୁଣରେ ଦୁଃଖ ଅନୁଭବ କରିଥିଲେ । ଭାରତର ସ୍ୱାଧୀନତା ଓ ଅଖଣ୍ଡତାକୁ ବିପନ୍ନ କରୁଥିବା ଶକ୍ତି ଓ ଘଟଣାଗୁଡ଼ିକ ହିଁ ଶ୍ରୀମତୀ ଗାନ୍ଧୀ ଜୀବନର ସବୁଠାରୁ ଦୁର୍ଭାଗ୍ୟଜନକ ଘଟଣା ବୋଲି ମନେ କରୁଥିଲେ । ପରିଶେଷରେ ତାଙ୍କର ଜୀବନାବସାନର ଏକମାତ୍ର କାରଣ ଯେ ସେହିଭଳି କେତେକ ବିଚ୍ଛିନ୍ନତାବାଦୀ ଚିନ୍ତାଧାରାରୁ ଉଦ୍ଭବ, ଏହା ନିଃସନ୍ଦେହରେ କୁହାଯାଇପାରେ ।

ଲଣ୍ଡନର ବିଖ୍ୟାତ ଦୈନିକ 'ମିରର ପତ୍ରିକା'ର ଜଣେ ସାମ୍ବାଦିକ ଜନ୍ ପିଲ୍‌ଗାର (John Pilger) ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଙ୍କ କାର୍ଯ୍ୟକଳାପ ଦୀର୍ଘଦିନ ଧରି ଅନୁଧ୍ୟାନ କରି ଓ ତାଙ୍କ ସହିତ ଥରେ ବ୍ୟକ୍ତିଗତ ସାକ୍ଷାତ କରିବା ପରେ ଯଥାର୍ଥରେ ଲେଖିଥିଲେ, "ଶ୍ରୀମତୀ ଗାନ୍ଧୀ ହେଉଛନ୍ତି unquestionably the most powerful woman in the world. She is not only a woman of deep Indian beauty, she is also an

exponent of the tactical charm that nullifies any talk about her being astute and politically tough, which she is." *

ବାସ୍ତବିକ୍ ଶ୍ରୀମତୀ ଗାନ୍ଧୀଙ୍କର ନିରପେକ୍ଷ ଓ ସୁଦୃଢ଼ ନିଷ୍ପତ୍ତି, ସମୁନ୍ନତ ଚିନ୍ତାଧାରା, ବାସ୍ତବ ଦୃଷ୍ଟିକୋଣ ଓ ଐକାନ୍ତିକ ଦେଶସେବା ମନୋଭାବ ତାଙ୍କୁ ସୁମହାନ୍ କରି ଗଢ଼ି ତୋଳିଛି । ତେଣୁ ସେ କେବଳ ଏ ଯୁଗର ନେତ୍ରୀ, ଏ ଜନତାର ନେତ୍ରୀ ବା ପୃଥିବୀର ସର୍ବଶକ୍ତିମୟୀ ମହିଳା ନଥିଲେ—ଜବାହାରଲାଲଙ୍କ ଭଳି କୋଟି ଭାରତୀୟ ଜନଗଣଙ୍କ ପ୍ରିୟଦର୍ଶିନୀ ମଧ୍ୟ ଥିଲେ ।

* Mirror—January, 1972—pp-10.

## ॥ ଦୁଇ ॥

# ନୂତନ ଆଲୋକ



ଆଲୋକ……

ଆନନ୍ଦ ଭବନ ଆଲୋକର ପ୍ରାଚୁର୍ଯ୍ୟରେ ଉଦ୍‌ଭାସିତ ହୋଇ ଉଠୁଥିଲେ ମଧ୍ୟ ମୋତିଲାଲଙ୍କ ବୃଦ୍ଧା ମାତାଙ୍କଠାରୁ ଆରମ୍ଭ କର ମୋତିଲାଲ, ସ୍ୱରୂପରାଣୀ, ଜବାହାରଲାଲ ଓ ଏପର କ ମୃତ୍ୟୁଶଯ୍ୟାରେ ଶାୟିତ ମୁନ୍‌ସି ମୁବାରକ ଅଲ୍ଲିଙ୍କ ପର୍ଯ୍ୟନ୍ତ ସମସ୍ତେ ଅନ୍ୟ ଏକ ନୂତନ ଆଲୋକ ପାଇଁ ଉତ୍‌କଣ୍ଠିତ ଥିଲେ । ସେ ଆଲୋକ ଥିଲା ଜବାହାରଲାଲ ଓ କମଲାଙ୍କ ରକ୍ତର ସ୍ମାରକୀ, ନେହେରୁ ପରିବାରର କୁଳପ୍ରଦୀପ ।

ନିର୍ଦ୍ଦିଷ୍ଟ ସମୟରେ ସେ ଆଲୋକ ଆନନ୍ଦ ଭବନକୁ ଆଲୋକିତ କରିଥିଲା—ଆଲୋକିତ କରିଥିଲା ନେହେରୁବଂଶକୁ ।

**ଇନ୍ଦିରା : ନୂତନ ଆଲୋକ :—**

ରୋଗଶଯ୍ୟାରେ ଶାୟିତ ବୃଦ୍ଧ ମୁବାରକ୍ ଅଲ୍ଲିଙ୍କ କମ୍ପିତ ହସ୍ତକୁ ଯେତେ-ବେଳେ ନବଜାତ ଶିଶୁଟିକୁ ବଢ଼ାଇ ଦିଆଗଲା, ଅତଶୟ ଆନନ୍ଦରେ ବିଭୋର ହୋଇ ପଡ଼ିଥିଲେ ସେ । ଚକ୍ଷୁ ଯୁଗଳରୁ ଆନନ୍ଦର ଅଶ୍ରୁ ଝରି ଆସିଥିଲା । ସେଇ ଆନନ୍ଦାଶ୍ରୁ ଜର୍ଜରିତ ଚକ୍ଷୁରେ ଶିଶୁଟିକୁ ନିରେଖି ନିରେଖି ମୁନ୍‌ସିଜୀ ମୋତିଲାଲ ନେହେରୁଙ୍କୁ କହିଥିଲେ, "ମୁବାରକ ହୋ ଭାଇସାହେବ, ଏହି ଶ୍ରେଷ୍ଠ ଶିଶୁଟି ଜବାହାରଙ୍କର ଯୋଗ୍ୟ ଉତ୍ତରାଧିକାରୀ ହେଉ, ଯେପରି ଜବାହାର ଆପଣଙ୍କ ଉପଯୁକ୍ତ ଉତ୍ତରାଧିକାରୀ ବିବେଚିତ ହୋଇ ପାରିଛନ୍ତି । ଆଲ୍ଲା ଏହାକୁ ଆଶୀର୍ବାଦ କରନ୍ତୁ ।" ସେତେବେଳେ ହୁଏତ ଆନନ୍ଦର ଚରମ ସୀମାରେ ଉପନୀତ ହୋଇଥିଲେ ମୁବାରକ୍ ଅଲ୍ଲି । କିଛିକ୍ଷଣ ନିର୍ନିମେଷ ନୟନରେ ନିରୀକ୍ଷଣ କରି ଶିଶୁଟିକୁ ଧାଇ ହାତକୁ ଫେରାଇ ଦେଇ ଆଶୀର୍ବାଦ ଦେଇଥିଲେ, "ଆଲ୍ଲାକରେ, ମୋତିଲାଲକୀ ପୌତ୍ରୀ

ନେହେରୁ ଖାନ୍‌ଦାନ୍‌କା ନାମ ରୋଶନ କରେ ।' ସେ ଦିନର ସେଇ ଶ୍ରେଷ୍ଠ ଶିଶୁଟି ଭାରତର ପ୍ରଧାନମନ୍ତ୍ରୀ ହୋଇ ପାରିଥିଲା ।

ମୁନ୍‌ସି ମୁବାରକ୍ ଅଲିଙ୍କର ଧାରଣା ଥିଲା ଯେ ଜବାହାରଲାଲ ଓ କମଲାଙ୍କ ପ୍ରଥମ ଶିଶୁ ସନ୍ତାନଟି ପୁତ୍ର ଏବଂ ସେଇ ଧାରଣାକୁ ତାହାଙ୍କ ମୃତ୍ୟୁ ପୂର୍ବରୁ ସଂଶୋଧନ କରାଯାଇ ପାରି ନ ଥିଲା । କିନ୍ତୁ ଇନ୍ଦିରାଙ୍କୁ ପୁତ୍ର ସନ୍ତାନ ମନେକରି ସେ ଯେଉଁ ଆଶୀର୍ବାଦ ଦେଇଥିଲେ ତାହା ଆଜି ସଂପୂର୍ଣ୍ଣରୂପେ ସଫଳ ହୋଇଛି । ମହାନ୍ ନେହେରୁ ପରିବାରର ତୃତୀୟ ବ୍ୟକ୍ତି ଇନ୍ଦିରା ଆପଣାର ବଂଶମର୍ଯ୍ୟାଦାକୁ ଖୁବ୍ ଉଚ୍ଚ ଆସନରେ ଆସୀନ କରାଇ ପାରିଛନ୍ତି ।

ସେଦିନ ଥିଲା ୧୯୧୭ ମସିହା ନଭେମ୍ବର ମାସ ୧୯ ତାରିଖ । ସ୍ଥାନ-ଥିଲା ଭାରତର ବିଖ୍ୟାତ ସହର ଆଲାହାବାଦର ଆନନ୍ଦ ଭବନ ।

ସେଇ ଆନନ୍ଦ ଭବନର ଏକ କ୍ଷୁଦ୍ର ପ୍ରକୋଷ୍ଠ ଭିତରେ ରହୁଥିଲେ ମୁନ୍‌ସିଜୀଙ୍କ ପରିବାର, ତାଙ୍କ ସ୍ତ୍ରୀ ଓ ଗୋଟିଏ ପୁଅ । ସେତେବେଳକୁ ତାଙ୍କ ମୁହଁର ଦାଢ଼ି ଓ ମୁଣ୍ଡର ବାଳ ସଂପୂର୍ଣ୍ଣରୂପେ ସଫେଦ ହୋଇ ଯାଇଥିଲା ଓ ସେ ରୋଗଶଯ୍ୟାରେ ପଡ଼ି ରହିଥିଲେ । ପ୍ରକୃତରେ କର୍କଟ ରୋଗରେ ପୀଡ଼ିତ ଥିଲେ ମଧ୍ୟ ତାହା ତାଙ୍କୁ ଜଣାଇ ଦିଆଯାଇ ନ ଥିଲା । ସେଥିପ୍ରତି ବିଶେଷ କରି ମୋତିଲାଲ ଖୁବ୍ ସତର୍କ ଥିଲେ । ଯଦିଓ ମୁନ୍‌ସୀଜୀଙ୍କ ସମ୍ମୁଖରେ କୌଣସି ସମୟରେ କର୍କଟ ରୋଗର ନାମ ମଧ୍ୟ ଦିନେ ଉଚ୍ଚାରଣ କରାଯାଇ ନଥିଲା, ତଥାପି ସେ ନିଜେ ଜାଣୁଥିଲେ ଏବଂ ଅନୁଭବ କରୁଥିଲେ ଯେ ସେ ଆଉ ଅଧିକ ଦିନ ବଞ୍ଚି ରହିପାରିବେ ନାହିଁ । ତେବେ ମୃତ୍ୟୁ ଲାଗି ତାଙ୍କର ତିଳେମାତ୍ର ଦୁଃଖ ନ ଥିଲା, ଅନୁଶୋଚନା ନ ଥିଲା ତାଙ୍କ ନିଜର ପରିବାରର ଅନ୍ୟ ସଦସ୍ୟମାନଙ୍କ ପାଇଁ । ସେ ନିଶ୍ଚିନ୍ତ ଥିଲେ ଯେ ତାଙ୍କ ମୃତ୍ୟୁ ପରେ ତାଙ୍କ ପରିବାରର ଭାର ମୋତିଲାଲ ନିଜେ ଗ୍ରହଣ କରିବେ ।

ପ୍ରକୃତରେ ମୋତିଲାଲ ଥିଲେ ମୁବାରକ୍ ଅଲିଙ୍କର ଗୃହସ୍ୱାମୀ । ଜଣେ କର୍ମଚାରୀ ହିସାବରେ ନେହେରୁ ପରିବାରକୁ ଆସିଥିଲେ ମଧ୍ୟ ଦୀର୍ଘକାଳ ଧରି ସେ ଆନନ୍ଦ ଭବନର ପରିଚାଳକ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆନନ୍ଦ ଭବନରେ କର୍ମଚାରୀମାନଙ୍କ ସଂଖ୍ୟା ଖୁବ୍ ବେଶୀ ଥିଲା । ସେମାନଙ୍କ ମଧ୍ୟରେ ହିନ୍ଦୁ ଓ ମୁସ୍‌ଲିମ୍ ଉଭୟ ସମ୍ପ୍ରଦାୟର କର୍ମଚାରୀ ନିଯୁକ୍ତି ପାଇଥିଲେ । ବିଶେଷକରି ବିଲାତି କାଇଦାରେ ଚଳିବା ଲାଗି ନେହେରୁ ପରିବାରର ସମସ୍ତ ସଭ୍ୟ ଭଲ ପାଉଥିଲେ । ସେଥିଲାଗି ଘରେ ସପ୍ତାହରେ ଛଅଦିନ ବିଦେଶୀ ଧରଣରେ ଖାଦ୍ୟ ପ୍ରସ୍ତୁତ ହେଉଥିଲା ମାତ୍ର ଦିନେ ଭାରତୀୟ ଖାଦ୍ୟ ଖାଉଥିଲେ ନେହେରୁ ପରିବାରର ସଭ୍ୟମାନେ । ବିଲାତି କାଇଦାରେ ବେଶ ପୋଷାକ ପିନ୍ଧିବା, ଟେବୁଲ ଉପରେ ଏକାଠି ଖାଇବା,

ମଦ୍ୟପାନ କରିବା ଭଳି ଅନ୍ୟାନ୍ୟ କାର୍ଯ୍ୟ ନେହେରୁ ପରିବାର ପାଇଁ ଥିଲା ଏକ ସାଧାରଣ ଘଟଣା । କେବଳ ସେଇଥିପାଇଁ ଅଧିକ, କର୍ମଠ କର୍ମଚାରୀମାନେ ନିଯୁକ୍ତି ପାଇଥିଲେ ଓ ସେମାନଙ୍କ ସଂଖ୍ୟା ଅଧିକ ହେବାର କାରଣ ଥିଲା ବିଭିନ୍ନ ପ୍ରକାରର କାର୍ଯ୍ୟ ଲାଗି ଭିନ୍ନ ଭିନ୍ନ କର୍ମଚାରୀଙ୍କ ନିଯୁକ୍ତି । ସେମାନଙ୍କ ମଧ୍ୟରୁ ପ୍ରାୟ ପଚାଶ ଜଣଙ୍କ ମୁଖ୍ୟ ଥିଲେ ମୁବାରକ ଅଲ୍ଲି । ତାଙ୍କ ଅଧୀନରେ ବାରଟି ଘୋଡ଼ାଙ୍କ ସମେତ ପ୍ରାୟ ଷୋହଳଟି କୁକୁର ପାଳିତ ହେଉଥିଲେ । ଉକ୍ତ କୁକୁରଗୁଡ଼ିକଙ୍କ ମଧ୍ୟରେ କେତେକ ପହରା ଦେବାପାଇଁ ଓ ଆଉ କେତେକ ଶିକାର ଉଦ୍ଦେଶ୍ୟରେ ଯିବା ଲାଗି ଉପଯୁକ୍ତ ତାଲିମ୍ ପାଇଥିଲେ ।

ନେହେରୁ ପରିବାରର ସମସ୍ତେ—ମୋତିଲାଲଙ୍କଠାରୁ ଆରମ୍ଭ କରି ଜବାହାରଲାଲ, କୃଷ୍ଣା, ସ୍ୱରୂପାକୁମାରୀ ଓ କମଳା ନେହେରୁଙ୍କ ସମେତ ସମସ୍ତେ ତାହାଙ୍କୁ କେବଳ ଶ୍ରଦ୍ଧା ହିଁ କରୁ ନ ଥିଲେ, ଯଥେଷ୍ଟ ସମ୍ମାନ ମଧ୍ୟ ଦେଉଥିଲେ । କାରଣ ସେ ଥିଲେ ପରିବାରର ଜଣେ ବିଶ୍ୱସ୍ତ କର୍ମଚାରୀ । ପିଲାମାନଙ୍କ ପାଇଁ ସେ ଥିଲେ ଏକ ଗପ ଭଣ୍ଡାର । ଆନନ୍ଦ ଭବନର ସବୁପିଲା ତାହାଙ୍କୁ 'କାକା' ବୋଲି ସମ୍ବୋଧନ କରୁଥିଲେ ଏବଂ ଗ୍ରୀଷ୍ମ ସନ୍ଧ୍ୟାଗୁଡ଼ିକରେ ବିଭିନ୍ନପ୍ରକାରର ଗଳ୍ପ ଶୁଣିବାରେ ଅତିବାହିତ କରୁଥିଲେ । ସେ ଗପଗୁଡ଼ିକ ମଧ୍ୟରେ ଥିଲା ଦେଶାତ୍ମବୋଧ, ବଳିଷ୍ଠ ବ୍ୟକ୍ତିତ୍ୱର ପରାକାଷ୍ଠା, ସତ୍ୟ ଓ ନ୍ୟାୟ ଉପରେ ଆଧାରିତ ଘଟଣାବଳୀ । କୃଷ୍ଣା, ସ୍ୱରୂପା ଓ ଅନ୍ୟମାନେ ଅତି ଆଗ୍ରହରେ ସେ ଗପସବୁ ଶୁଣି ଯାଉଥିଲେ ।

ରୋଗଶଯ୍ୟାରେ ପଡ଼ି ରହିଥିବା ବେଳେ ମୋତିଲାଲ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ କୋର୍ଟରୁ ଘରକୁ ଫେରି ମୁବାରକଙ୍କ ନିକଟକୁ ଯାଉଥିଲେ , ଟିକ୍ କମ୍ ସମୟ ପାଇଁ ହେଲେ ମଧ୍ୟ । ଦିନରେ ଏକାଧିକବାର ସ୍ୱରୂପାରାଣୀ ଓ କମଳା ତାଙ୍କୁ ଦେଖିବାକୁ ରୋଗଶଯ୍ୟା ନିକଟରେ ଉପସ୍ଥିତ ହେଉଥିଲେ । ଦିନେ ସନ୍ଧ୍ୟାରେ ମୋତିଲାଲ ଯେତେବେଳେ ସେଠାରେ ଉପସ୍ଥିତ ହୋଇଥିଲେ, ମୁବାରକ ଅଲ୍ଲିଙ୍କ ଭୀଷଣ କଷ୍ଟ ହେଉଥିବା ଦେଖି ତାଙ୍କର ମୁଖମଣ୍ଡଳ ମଳିନ ପଡ଼ିଯାଇଥିଲା । ମୁନ୍‌ସିଜୀ କରୁଣ ହସି ହସି କହିଥିଲେ, "Bhai Saheb, do not worry. I am not going to die until I have seen and held Jawaharlal's child in my arms and have given it my blessing. I live only for that day."

**କମଳା କାଉଲ୍‌ରୁ କମଳା ନେହେରୁ :—**

କମଳା ବିବାହ କଲାବେଳେ ତାଙ୍କ ବୟସ ଥିଲା ସତର ବର୍ଷ । ସେତେବେଳକୁ ଛବିଶ ବର୍ଷ ବୟସ୍କ ଯୁବକ ଜବାହରଲାଲ ଶିକ୍ଷା ସମାପ୍ତ କରି ଇଂଲଣ୍ଡରୁ

ଫେରିଥିଲେ । ପିତା ମୋତିଲାଲଙ୍କ ଇଚ୍ଛା ଥିଲା ପୁଅ ତାଙ୍କର ନିଜ ଦେଶକୁ ଫେରିବା ପରେ ଓକିଲାତିରେ ଖୁବ୍ ସଫଳତା ଅର୍ଜନ କରିବ ଏବଂ ସମସ୍ତ ପ୍ରକାର ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ଐଶ୍ୱର୍ଯ୍ୟ ଭିତରେ କାଳାତିପାତ କରିବ । ଏହି ଆକାଙ୍‌କ୍ଷା ନେଇ ନିକଟ ଅତୀତରେ ଓକିଲାତି ପାସ୍ କରି ଇଂଲଣ୍ଡରୁ ଫେରିଥିବା ଜବାହରଲାଲଙ୍କୁ ବିବାହ କରାଇ ଦେଇଥିଲେ ପ୍ରସିଦ୍ଧ କାଶ୍ମୀର ବ୍ରାହ୍ମଣ କାଉଲ ପରିବାରର କନ୍ୟା କମଳାଙ୍କ ସହିତ । ଉଲ୍ଲେଖଯୋଗ୍ୟ ଯେ ମୋତିଲାଲ ମଧ୍ୟ କାଶ୍ମୀରୀ କାଉଲ ବଂଶର ବଂଶଧର ହୋଇଥିଲେ ସୁଦ୍ଧା କମଳାଙ୍କ ପରିବାର ସହ ପୂର୍ବରୁ କୌଣସି ସମ୍ପର୍କ ନ ଥିଲା ।

ସେତେବେଳକୁ କମଳାଙ୍କ ବୟସ ଥିଲା ୧୭ବର । ସେ ଅତ୍ୟନ୍ତ ଲଜ୍ଜାଶୀଳା, ଶ୍ରଦ୍ଧାଳୁ ଓ ଧାର୍ମିକ ପ୍ରକୃତିର ଥିଲେ ।

ଦିଲ୍ଲୀରେ ଖୁବ୍ ଜାକ୍‌ଜମକରେ ଜବାହରଲାଲ ଓ କମଳାଙ୍କ ବିବାହ ସମ୍ପନ୍ନ ହୋଇଥିଲା ।

ତା'ପରେ ନେହେରୁ ପରିବାରର ଜଣେ ହୋଇ ଆନନ୍ଦ ଭବନକୁ ଆସିଥିଲେ କମଳା । ସେତେବେଳେ ଆନନ୍ଦ ଭବନରେ ଥିଲେ ଅନ୍ୟମାନଙ୍କ ମଧ୍ୟରେ ଷୋହଳ ବର୍ଷ ବୟସ୍କା ସ୍ୱରୂପାକୁମାରୀ (ପରେ ବିଜୟଲକ୍ଷ୍ମୀ ପଣ୍ଡିତ) ଓ ତାଙ୍କ କନିଷ୍ଠା ଭଗ୍ନୀ କୃଷ୍ଣା (ପରେ କୃଷ୍ଣା ହାଥୀ ସିଂ) । ଜବାହରଲାଲଙ୍କ ବିବାହ ପୂର୍ବରୁ ଆନନ୍ଦ ଭବନର ସମସ୍ତେ ଭଲ ପାଉଥିଲେ ସ୍ୱରୂପାକୁମାରୀଙ୍କୁ ଓ ସ୍ନେହ ମଧ୍ୟ କରୁଥିଲେ । କିନ୍ତୁ କମଳା ସେ ଘରକୁ ବୋହୂ ହୋଇ ଆସିବା ପରେ ସେ ସମସ୍ତଙ୍କର ଆଦରଣୀୟା ହୋଇ ପଡ଼ିଥିଲେ । ମୋତିଲାଲ କମଳାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ଏଥିରେ ସ୍ୱରୂପା-କୁମାରୀ କ୍ଷୁବ୍ଧ ହୋଇପଡ଼ିବା ସ୍ୱାଭାବିକ କଥା ।

ସ୍ୱରୂପାକୁମାରୀ ଓ କୃଷ୍ଣା ବିଦେଶୀ ଡାଞ୍ଚାରେ ଗଢ଼ା ହୋଇଥିଲେ । ବିଦେଶୀ ଢଙ୍ଗଢାଙ୍ଗରେ ପୋଷାକପତ୍ର ପିନ୍ଧିବାଠାରୁ ଆରମ୍ଭ କରି ଖାଇବା ଟେବୁଲର ବ୍ୟବହାର ପର୍ଯ୍ୟନ୍ତ ସବୁ ବିଦେଶୀ କାଇଦାରେ କରିବାପାଇଁ ଖୁବ୍ ଭଲ ପାଉଥିଲେ । ବିଶେଷ କରି ସେମାନେ ସୁନ୍ଦର ଇଂରେଜୀ କହିପାରୁଥିଲେ । କିନ୍ତୁ କାଶ୍ମୀରୀ ବ୍ରାହ୍ମଣ କନ୍ୟା କମଳା ସେ ଦୃଷ୍ଟିରୁ ବହୁତ ପଛରେ ପଡ଼ିଯାଉଥିବା ଯୋଗୁଁ ନଣନ୍ଦମାନଙ୍କ-ଠାରୁ ବେଳେ ବେଳେ ସମାଲୋଚନା ଶୁଣିବାକୁ ପଡ଼ୁଥିଲା । ଅନେକ ସମୟରେ ଥଟ୍ଟା ପରିହାସର ପାତ୍ରୀ ହେଉଥିଲେ ସେ । ତେବେ ନେହେରୁ ପରିବାରର ଗ୍ଲାଲଚଳଣି ସହିତ ଖାପ ଖୁଆଇ ଚାଲିବାକୁ ତାହାଙ୍କୁ ଖୁବ୍ କମ୍ ସମୟ ଲାଗିଥିଲା ।

କମଳା ଓ ଜବାହରଲାଲଙ୍କ ମଧ୍ୟରେ ଏକ ଗଭୀର ଆକର୍ଷଣ ଥିଲା । ଉଭୟଙ୍କ ମଧ୍ୟରେ ବୟସର ପାର୍ଥକ୍ୟ ଅପେକ୍ଷା ଚିନ୍ତାଧାରାର ପାର୍ଥକ୍ୟ ଯଥେଷ୍ଟ ଅଧିକ ଥିଲା ।

ସେଇଥିପାଇଁ ଉଭୟଙ୍କ ମଧ୍ୟରେ ବେଳେବେଳେ ସାମାନ୍ୟ ମନୋମାଳିନ୍ୟ ମଧ୍ୟ ହୋଇଯାଉଥିଲା । କିନ୍ତୁ ସେ ମନୋମାଳିନ୍ୟ ସାଧାରଣତଃ ଅନ୍ୟ ପରିବାରରେ ହେଉଥିବା ମନାନ୍ତର ଭଳି ଦୀର୍ଘସ୍ଥାୟୀ ହୋଇପାରୁ ନ ଥିଲା । ବିବାହର ଏକୋଇଶ ମାସ ପରେ ଦୁହିଁଙ୍କ ଜୀବନର ସ୍ମାରକୀ ହୋଇ ଜନ୍ମ ନେଇଥିଲେ ପ୍ରିୟଦର୍ଶିନୀ ଇନ୍ଦିରା । ପଣ୍ଡିତ ନେହେରୁଙ୍କ ଭାଷାରେ, "ବାଳିକା ଚନ୍ଦ୍ରାଣୀ ଯେମିତି ନେହେରୁ ବାହାରକୁ ଯେତେ ବିଜ୍ଞ ତଥା ପ୍ରବୀଣ ଦେଖା ଯାଉଥିଲେ ମଧ୍ୟ ଅନେକ ସମୟରେ କମଳାଙ୍କ ନିକଟରେ ବାଳକ ସୁଲଭ ଚପଳତା ପ୍ରଦର୍ଶନ କରୁଥିଲେ । ସରଳ ଓ ସୁକୋମଳମତି କମଳାଙ୍କୁ ଅତି ନମ୍ର ଓ ଭଦ୍ର ବ୍ୟବହାର ଯେ ନିତାନ୍ତ ଆବଶ୍ୟକ ତାହା ଅନେକ ସମୟରେ ଅନୁଭବ ମଧ୍ୟ କରିପାରୁ ନ ଥିଲେ । ସେହି କାରଣରୁ ଯଦିଓ ଉଭୟଙ୍କ ମଧ୍ୟରେ ଗଭୀର ଆକର୍ଷଣ ଥିଲା, ତଥାପି ଉଭୟଙ୍କ ବିଗତ ପାରିପାର୍ଶ୍ୱିକ ଅବସ୍ଥାର ଭିନ୍ନତା ଯୋଗୁଁ ଉଭୟଙ୍କ ଚିନ୍ତାଧାରାରେ ଅନେକଟା ପାର୍ଥକ୍ୟ ସୃଷ୍ଟି ହେଉଥିଲା । ସେହି ମତପାର୍ଥକ୍ୟ ସାମୟିକ ମନୋମାଳିନ୍ୟ ରୂପେ ପ୍ରକାଶ ଲାଭ କରୁଥିଲା ଆନନ୍ଦ ଭବନରେ । ଉଭୟେ ଉଭୟଙ୍କ ମର୍ଯ୍ୟାଦା ବଜାୟ ରଖିବାକୁ ଚାହୁଁଥିବା ଯୋଗୁଁ ସେ ମନାନ୍ତରଗୁଡ଼ିକ କ୍ଷଣସ୍ଥାୟୀ ଥିଲା । ଯଦିଓ ଉଭୟଙ୍କ ମଧ୍ୟରେ ମାନସିକ ସ୍ତରରେ ସାଲିସ୍ କରିବାପାଇଁ ଦୀର୍ଘସମୟ ଲାଗିଥିଲା ତଥାପି ଆକର୍ଷଣ ଥିଲା ବହୁତ ବେଶୀ ।"*

ଇନ୍ଦିରା ଜନ୍ମ ହେବା ଦିନ ରାତିଟି ଖୁବ୍ ଆନନ୍ଦ କୋଳାହଳ ମଧ୍ୟରେ ଅତିବାହିତ ହୋଇଥିଲା । ସମଗ୍ର ଆନନ୍ଦ ଭବନ ଉଲ୍ଲସି ଉଠିଥିଲା ଆଲୋକର ଫୁଆରରେ । ଦାସଦାସୀମାନେ ଆଗନ୍ତୁକ ଅତିଥିମାନଙ୍କୁ ପାନୀୟଦ୍ୱାରା ଆମୋଦିତ କରାଉଥିଲେ ।

ସେ ଥିଲା ନେହେରୁ ପରିବାର ଲାଗି ଏକ ସ୍ମରଣୀୟ ତିଥି ।

ଇନ୍ଦିରାଙ୍କ ଜନ୍ମର କିଛିକ୍ଷଣ ପୂର୍ବରୁ ମୋତିଲାଲ କୌଣସି ସ୍ଥାନରେ ସ୍ଥିର ହୋଇ ବସି ପାରୁ ନ ଥିଲେ । ହୃଦ୍‌ବେଗ ବଢ଼ି ଯାଇଥିଲା । ସ୍ୱରୂପାରାଣୀ ତାଙ୍କର ବଡ଼ ଭଉଣୀ ଓ ଆନନ୍ଦ ଭବନର ଅନ୍ୟାନ୍ୟ ମହିଳାଙ୍କ ଗହଣରେ ଅନେକାଂକ୍ଷିତ ଆଗାମୀ ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରି ବସିଥିଲେ । ଜବାହରଲାଲ ନିଜକୁ ଏ ପରିସ୍ଥିତିଠାରୁ ଦୂରେଇ ରଖିବା ଛଳନା କରୁଥିଲେ । କୃଷ୍ଣା ହାଥୀ ସିଂଙ୍କ ଭାଷାରେ, "ଭାଇ ଏ ସମସ୍ତ କୋଳାହଳଠାରୁ ଜାଣି ଜାଣି ନିଜକୁ ଦୂରେଇ ରଖିବା ଲାଗି ଛଳନା କରୁଥିଲେ । ମୋତେ କିଛି ନ ଜାଣିଲା ପରି ଏକାକୀ ଛିଡ଼ା ହୋଇ ରହୁଥିଲେ । କିନ୍ତୁ ଯନ୍ତ୍ରଣା ଅନୁଭବ କରୁଥିବା କମଳାଙ୍କୁ ରଖାଯାଇଥିବା କୋଠରୀର ଦ୍ୱାର ଉପରୁ ସେ ବାରମ୍ବାର ଆଖି ବୁଲେଇ ଆଣୁଥିଲେ ।" **

---

* Jawaharlal Nehru—Autobiography.

** Krishna Hathee Sing—Dear to Behold—pp-1୪.

ସେ ଆକାଂକ୍ଷିତ ମୂହୂର୍ତ୍ତି ଅଗ୍ରନକ ଭାବେ ସମସ୍ତଙ୍କ ନିକଟରେ ପହଞ୍ଚିଥିଲା ।

କମଳାଙ୍କ ସେବା କରୁଥିବା ଡାକ୍ତର ସମସ୍ତଙ୍କୁ ଶୁଭ ଖବର ଜଣାଇ ଦେଇଥିଲେ ଯେ ଜବାହରଲାଲ ଏକ କନ୍ୟା ସନ୍ତାନର ପିତୃତ୍ୱ ଅର୍ଜନ କରି ପାରିଛନ୍ତି ।

ମୋତିଲାଲଙ୍କ ବୃଦ୍ଧା ମାତା ଶିଶୁଟିର ନାମକରଣ କରିଥିଲେ ଇନ୍ଦିରା । ସେ ନାମକୁ ସମର୍ଥନ କରିଥିଲେ ମୋତିଲାଲ ।

**ବାଲ୍ୟକାଳୀନ ସ୍ୱଭାବ :—**

ଜବାହାରଲାଲ ତାଙ୍କର ପ୍ରଥମ ସନ୍ତାନକୁ ଦେଖି ଅତ୍ୟନ୍ତ ଖୁସି ହୋଇ ଯାଇଥିଲେ । ଖୁସି ହେବା ବି ସ୍ୱାଭାବିକ କଥା । ସେ ଓ କମଳା ଏତେ ପରିମାଣରେ ଆନନ୍ଦିତ ହୋଇଯାଇଥିଲେ ଯେ ଶିଶୁ କନ୍ୟାକୁ ପ୍ରିୟଦର୍ଶିନୀ ବୋଲି ଡାକିବା ପସନ୍ଦ କରିଥିଲେ । ଯାହାକୁ ଦେଖିବାକୁ ଖୁସି ଲାଗେ ବା ଯାହାକୁ ଦେଖିଲେ ମନରେ ଆନନ୍ଦ ଜାତ ହୁଏ, ତା'ର ଅର୍ଥ ପ୍ରିୟଦର୍ଶିନୀ । ସେଦିନର ପିତାମାତାଙ୍କ ପ୍ରିୟଦର୍ଶିନୀ, ସେଦିନର ନେହେରୁ ପରିବାରର ଶିଶୁ ପ୍ରିୟଦର୍ଶିନୀ ତା' ନାମକରଣର ସାର୍ଥକତା ସମଗ୍ର ଭାରତବର୍ଷ କାହିଁକି, ସାରା ବିଶ୍ୱରେ ମଧ୍ୟ ପ୍ରମାଣିତ କରିଦେଇଛି ।

ଶିଶୁ ଇନ୍ଦିରାଙ୍କୁ ଦେଖି କବିସମ୍ରାଜ୍ଞୀ ସରୋଜିନୀ ନାଇଡୁ ତାଙ୍କୁ "ଭାରତର ଆତ୍ମା" ବୋଲି ଆଖ୍ୟା ଦେଇ କହିଥିଲେ, 'ମୁଁ ଏପରି ଆତ୍ମାଭିମାନିନୀ ଶିଶୁ ଦେଖି ନାହିଁ ।" ସେତେବେଳେ ଇନ୍ଦିରା ଥିଲେ କମଳାଙ୍କ କୋଳର ସନ୍ତାନ । ହୁଏତ ଏ ପ୍ରକାର ମନ୍ତବ୍ୟ ଦେଇଥିଲେ କବିସମ୍ରାଜ୍ଞୀ ମହୋଦୟା ଶିଶୁ ଇନ୍ଦିରାଙ୍କ ମୁହଁରେ ଅନେକଟା ଗାମ୍ଭୀର୍ଯ୍ୟ ଲକ୍ଷ୍ୟ କରି ।

କମଳା ଓ ଜବାହରଲାଲଙ୍କ ସନ୍ତାନ ଇନ୍ଦିରାଙ୍କଠାରେ ଉଭୟଙ୍କର କିଛି କିଛି ଗୁଣ ଉତ୍ତରାଧିକାରୀ ସୂତ୍ରରେ ରହିଥିଲା । କମଳାଙ୍କ ପରି ସେ ଥିଲେ ସୁନ୍ଦରୀ ଏବଂ ଲଜ୍ଜାଶୀଳା ମଧ୍ୟ । ଠିକ୍ ଯେମିତି ଜବାହାରଲାଲ ନେହେରୁଙ୍କ ଭଳି ଅସାଧାରଣ ଧୀଶକ୍ତି ଓ ପାଣ୍ଡିତ୍ୟର ସେ ସେ ଅଧିକାରିଣୀ, ଏକଥା ନିଃସନ୍ଦେହରେ କୁହା-ଯାଇପାରେ । ମା'ଙ୍କ ଭଳି ସେ ଅତ୍ୟନ୍ତ ଧୈର୍ଯ୍ୟଶୀଳା, ଏବଂ ବାପାଙ୍କ ଭଳି ଯେ କୌଣସି ପରିସ୍ଥିତିକୁ ସାହସର ସହିତ ସମ୍ମୁଖୀନ ହେବା ପାଇଁ କ୍ଷମତାଶାଳୀ— ଅନେକ କ୍ଷେତ୍ରରେ ବରଂ ତାହା ପ୍ରମାଣିତ ହୋଇସାରିଛି । ଏ ବୟସରେ ସାରାଦିନ କର୍ମବ୍ୟସ୍ତ ରହୁଥିଲେ ମଧ୍ୟ କ୍ଳାନ୍ତ ବା ଅବସାଦ ତାଙ୍କ ମୁହଁରେ ଦେଖାଯାଏ ନାହିଁ । ଫେବ୍ରୁୟାରି ଏକୋଇଶି ତାରିଖ ୧୯୭୬ ମସିହାରେ ବମ୍ବେଠାରେ ଜଣେ ସାମ୍ବାଦିକ ତାଙ୍କୁ ପ୍ରଶ୍ନ କରିଥିଲେ 'ଦିନ ତମାମ୍ ଆପଣ କାର୍ଯ୍ୟବ୍ୟସ୍ତ ରହୁଥିଲେ ମଧ୍ୟ ଏତେ

ସତେଜ ଦେଖାଯାଉଛନ୍ତ କପରି ?' ଦୃଢ଼ତାର ସହ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ହସି ହସି ଉତ୍ତର ଦେଇଥିଲେ,'ମୁଁ ଯେଉଁ କାର୍ଯ୍ୟକରେ ସେଥିରେ ଗଭୀର ଆତ୍ମବିଶ୍ୱାସ ଥାଏ ।' ଆତ୍ମବିଶ୍ୱାସ ଥିବା କାର୍ଯ୍ୟ କରୁଥିଲେ ବାସ୍ତବିକ୍ କେହି କ୍ଲାନ୍ତ ଅନୁଭବ କରେ ନାହିଁ, ଅବସାଦର ପ୍ରଶ୍ନ ତା' ନିକଟରେ ମୂଲ୍ୟହୀନ । ଇନ୍ଦିରାଙ୍କ କର୍ମକ୍ଷମତା ନେଇ ଥରେ ଜଣେ ସାମ୍ବାଦିକ ପ୍ରଶ୍ନ କରିଥିଲେ, 'ଆପଣଙ୍କ ଏତେ କର୍ମଶକ୍ତିର ଗୁପ୍ତ ତଥ୍ୟ କ'ଣ ? ଆପଣ ତ କେବେ କ୍ଲାନ୍ତ ହେବାର ଜଣା ପଡ଼ନ୍ତ ନାହିଁ । ଆଜି ଦେଶର ଗୋଟିଏ କୋଣରେ ଥିଲବେଳେ କାଲି ଆଉ ଗୋଟିଏ କୋଣରେ ପହଞ୍ଚି ଯାଉଛନ୍ତି ।' ଏହାର ଉତ୍ତର ପରିହାସ ଛଳରେ ଦେଇ ସେ କହିଥିଲେ, 'ସମ୍ଭବତଃ ବିମାନର ଗତିବେଗ ଯୋଗୁ ମୁଁ ଆଜି ଏଠି ତ କାଲି ସେଠି ପହଞ୍ଚିବା ସମ୍ଭବ ହୋଇ ପାରୁଛି ।' ତା'ପରେ ସେ କହିଥିଲେ, 'ପୃଥିବୀର ଅନ୍ୟାନ୍ୟ ସବୁ ଜିନିଷ ପରି କର୍ମଶକ୍ତି ମଧ୍ୟ ତା'ର ବ୍ୟବହାରଦ୍ୱାରା ହିଁ ଉତ୍ପାଦିତ ହୋଇଥାଏ ।' ଏହା ଥିଲି ପ୍ରିୟଦର୍ଶିନୀଙ୍କ ଉପରେ ପିତାମାତାଙ୍କ ବଂଶଗତ ପ୍ରଭାବ ।

ବଂଶଗତ ପ୍ରଭାବକୁ ବାଦ୍ ଦେଲେ ବାଲ୍ୟକାଳରେ ଇନ୍ଦିରାଙ୍କ ଉପରେ ସମଗ୍ର ଜୀବନରେ ସ୍ଥାୟୀ ହୋଇପାରିବା ଭଳି କେତେକ ପ୍ରଭାବ ପଡ଼ିଥିଲା । ଭାରତର ସାଂସ୍କୃତିକ ପରମ୍ପରା ପ୍ରତି ଅନୁରକ୍ତ ହେବା ଲାଗି କମଳାଙ୍କ ପ୍ରେରଣା ଇନ୍ଦିରା ସାରା ଜୀବନରେ ଭୁଲିବାର ନୁହେଁ । ସେଥିପାଇଁ ପାପୁ ଜବାହରଲାଲଙ୍କଠାରୁ କମଳା ଥିଲେ ଅଧିକ ଅଗ୍ରଣୀ । ମୁକ୍ତକଣ୍ଠରେ ତାହା ସ୍ୱୀକାର କରିଥିଲେ ଇନ୍ଦିରା—

"It is my mother whom I admir more than my father. He animates me to soar into the clouds; yet her ever green memory acts as a sort of lever keeping me attuned to earth's solid hold." *

ସମସ୍ତର ପ୍ରଭାବରେ ସବୁଠାରୁ ବେଶୀ ପ୍ରଭାବିତ ହୋଇଥିଲେ ଇନ୍ଦିରା । ତତ୍କାଳୀନ ସାମାଜିକ ତଥା ରାଜନୈତିକ ଅବସ୍ଥା ଥିଲା ଅତ୍ୟନ୍ତ ଅଶାନ୍ତ-ଉଦ୍ବେଳିତ । ସେ ଉଦ୍ବେଳନରେ ଅନେକେ ସେମାନଙ୍କ ଅଜାଣତରେ ବି ବିମୋହିତ ହୋଇ ପଡ଼ିଥିଲେ । ଏପରିକି ମୋତିଲାଲ ନେହେରୁ, ଯେ କି ଅତ୍ୟନ୍ତ ବିଳାସବ୍ୟସନରେ କାଳାତିପାତ କରୁଥିଲେ, ଯାହାଙ୍କ ଲୁଗା ସଫା ହେବାପାଇଁ ଉଡ଼ାଜାହାଜ ଯୋଗେ ପ୍ୟାରିସ ଯାଉଥିଲା, ସେ ମଧ୍ୟ ହାତତିଆରି ଖଦଡ଼ ଲୁଗା ପିନ୍ଧିବାକୁ ପସନ୍ଦ କରିଥିଲେ ଗାନ୍ଧିଜୀଙ୍କ କାଉଁରୀ ସ୍ପର୍ଶରେ । କଥା ପ୍ରସଙ୍ଗରେ ଥରେ ଅତି ଦୁଃଖର ସହିତ ଗାନ୍ଧିଜୀଙ୍କୁ ମୋତିଲାଲ କହିଥିଲେ, ମୁଁ ଆପଣଙ୍କ ପାଇଁ ସବୁକିଛି କରିପାରିଲି ବାପୁ , କିନ୍ତୁ ମୁଁ ଜଣେ ବୁଢ଼ା ଲୋକ । କେତେକ ନିର୍ଦ୍ଦିଷ୍ଟ ଚଳଣୀ

* M. K. Alexander—INDIRA GANDHI—pp-118.

ହୁଏତ ମୁଁ ତନ୍ମୟଭାବେ ସଂପୃକ୍ତ । ଆପଣ ଅନୁମୋଦନ କରନ୍ତୁ କି ନା, ମୁଁ ମୋର ରାତ୍ରିଭୋଜନ ପୂର୍ବରୁ ଦୁଇପେଗ୍ (ହୁଇସ୍କି ଓ ସୋଡ଼ା) ପିଇବା ନିଶାକୁ ଅଭ୍ୟାସରୁ ବାଦ୍ ଦେଇ ପାରୁନାହିଁ ।" * ଦେଶ ପାଇଁ ବାପୁଜୀଙ୍କ ପ୍ରେରଣାରେ ସମସ୍ତ ବ୍ୟସନ ତ୍ୟାଗ କରିଥିଲେ ମଧ୍ୟ ଅତି ପୁରାତନ ଖାନ୍ଦାନୀ ଅଭ୍ୟାସ ମଦ୍ୟପାନ ମୋତିଲାଲଙ୍କର ଏକ ପ୍ରକୃତିରେ ପରିଣତ ହୋଇ ଯାଇଥିଲା । ତେଣୁ ସେ ତାକୁ ସମ୍ପୂର୍ଣ୍ଣରୂପେ ତ୍ୟାଗ କରିପାରି ନଥିଲେ । ଫଳରେ ପ୍ରତିଦିନ ରାତ୍ରିଭୋଜନ କରିବା ପୂର୍ବରୁ ଦୁଇ ପେଗ୍ ନ ପିଇଲେ ତାଙ୍କୁ ଭଲ ଲାଗୁ ନଥିଲା । ତେବେ ଗାନ୍ଧୀଜୀଙ୍କ ପ୍ରେରଣା ସାଙ୍ଗକୁ ଦେଶର ତତ୍କାଳୀନ ପରିସ୍ଥିତିର ପ୍ରଭାବରେ ଅତ୍ୟନ୍ତ ପ୍ରଭାବିତ ହୋଇଥିଲା ସମଗ୍ର ନେହେରୁ ପରିବାର ।

ଜଣେ ପାଶ୍ଚାତ୍ୟ ଦାର୍ଶନିକଙ୍କ ମତରେ **'A child's mind is like a clean slate'** ଶିଶୁ ବା କିଶୋରର ସରଳ ମନରେ ସେତେବେଳେ ଯେଉଁ ଦାଗ ବସିଯାଏ, ତାହା ହୁଏତ ମୃତ୍ୟୁ ପର୍ଯ୍ୟନ୍ତ ସେମିତି ରହିଯାଏ । ସେ ସମୟର ଅନେକ କୋମଳମତି ବାଳକ-ବାଳିକାଙ୍କ ଉପରେ ଅଶାନ୍ତ ରାଜନୈତିକ ଅବସ୍ଥା ଓ ଉଦ୍‌ବେଳିତ ସାମାଜିକ ପରିସ୍ଥିତି ଯଥେଷ୍ଟ ପ୍ରଭାବ ପକାଇ ପାରିଥିଲା । ସେତେବେଳର ପରିସ୍ଥିତି ଓ ଇନ୍ଦିରାଙ୍କ ଉପରେ ତାର ପ୍ରଭାବ ସମ୍ପର୍କରେ **K. A. Abbas** ମନ୍ତବ୍ୟ କରିଥିଲେ "The biggest influence on Indira's life, as on the lives of all the chidren of her generation was that of the stirring times of political unrest and social upheaval in which they were born. The impact of history in one of its most revolutionary phases would shape and change the destiny of everyone in India—including the aristocratic and comfort loving Motilal Nehru who would soon be involved in the dust and din of politics." **

**ସାମାଜିକ ଓ ରାଜନୈତିକ ଅବସ୍ଥା :—**

ଇନ୍ଦିରା ପୃଥିବୀରେ ପ୍ରଥମ ଆଲୋକ ଦେଖିବା ବେଳକୁ ପ୍ରଥମ ପୃଥିବୀ ମହାସମରର ଅବସାନ ହୋଇଯାଇଥିଲା । କିନ୍ତୁ ପୃଥିବୀର ପ୍ରାୟ ପ୍ରତ୍ୟେକ ଅଂଶରେ

---

* K. Hathee Sing—We Nehrus—pp-51.

** K. A. Abbas—Return of the red rose—pp-34.

ରାଜନୈତିକ ବାତାବରଣ ଅଗ୍ନିର ତରଙ୍ଗ ସୃଷ୍ଟି କରି ସାରିଥିଲା ଏବଂ ଏକ ଦ୍ରୁତ ସାମାଜିକ ପରିବର୍ତ୍ତନ ଆରମ୍ଭ ହୋଇ ଯାଇଥିଲା ।

୧୯୧୮ ମସିହା ବେଳକୁ ରୁଷରେ ଲେନିନ୍‌ଙ୍କ ନେତୃତ୍ୱରେ ବିପ୍ଳବ ଆରମ୍ଭ ହୋଇଯାଇଥିଲା ଜାର୍ ଶାସକମାନଙ୍କ ବିରୁଦ୍ଧରେ । ପରେ ପରେ ସେ ବିପ୍ଳବଟି ବିଜୟୀ ହୋଇଥିଲା । ଅକ୍ଟୋବର ମାସରେ ସେ ବିପ୍ଳବ ଆରମ୍ଭ ହୋଇଥିବା ଯୋଗୁଁ ତାହା ଅକ୍ଟୋବର ବିପ୍ଳବ ରୂପେ ପ୍ରସିଦ୍ଧି ଲାଭ କରିଥିଲା । ଜବାହରଲାଲ ଇନ୍ଦିରାଙ୍କୁ ପତ୍ର ମାଧ୍ୟମରେ ବିଶ୍ୱ ରାଜନୀତି ସମ୍ପର୍କରେ ତଥା ବିଶ୍ୱ ଇତିହାସ ସମ୍ପର୍କରେ ଯେଉଁ ପତ୍ରାବଳୀ ଦେଇଥିଲେ, ତା ମଧ୍ୟରୁ ଗୋଟିକରେ ଇନ୍ଦିରାଙ୍କ ଜନ୍ମକାଳୀନ ସମୟର ଆଭାସ ଦେଇ ଲେଖିଥିଲେ, "...ଏକ ଐତିହାସିକ ବର୍ଷରେ ତୋର ଜନ୍ମ । ମହାମନା ବିପ୍ଳବୀ ଲେନିନ୍ ତାଙ୍କ ବିପ୍ଳବର ସୂତ୍ରପାତ କରିଥିଲେ ତୋର ଜନ୍ମବର୍ଷରେ । ତାରି ଫଳରେ ଅନ୍ଧକାରାଚ୍ଛନ୍ନ ରୁଷ ଓ ସାଇବେରିଆର ଆକାଶରେ ସେ ଦେଶର ଭାଗ୍ୟରବି ଉଦିତ ହୋଇ ପାରିଥିଲା । ତୁ ଆଜି ମଧ୍ୟ ଭାଗ୍ୟବତୀ, କାରଣ ଦେଶବ୍ୟାପୀ ଚାଲିଥିବା ସ୍ୱାଧୀନତା ଆନ୍ଦୋଳନ ଦେଖିବାର ସୁଯୋଗ ତତେ ମିଳୁଛି । ସବୁଦା ନିର୍ଭୟମନା ହୁଅ, ସତ୍‌ସଙ୍ଗ କର । ମନକୁ ସନ୍ଦେହର ଦୋଳାରେ ବସାଇ କାର୍ଯ୍ୟ କରିବା ଆଦୌ ସମୀଚୀନ ନୁହେଁ । ଭଗବାନ ଦୟା କରନ୍ତୁ—ଭାରତମାତାର ସେବା ଓ ସୁରକ୍ଷା ପାଇଁ ନିଜକୁ ଜଣେ ସାହସୀ ସୈନିକ ରୂପେ ଗଢ଼ିବାକୁ ଚେଷ୍ଟା କର ।"

ସେତେବେଳକୁ ପୃଥିବୀର ବିଭିନ୍ନ ଦେଶରେ ଅତୀତରେ ବିଭିନ୍ନ ସମୟରେ ତଥା ନିକଟ ଅତୀତରେ ରୁଷରେ ଘଟିଯାଇଥିବା ସ୍ୱାଧୀନତା ଆନ୍ଦୋଳନର ପ୍ରଭାବ ଭାରତୀୟ ନେତାମାନଙ୍କ ଉପରେ ପଡ଼ିଥିଲା; ତେଣୁ ଭାରତୀୟ ରାଜନୈତିକ ଆକାଶରେ ଉଜ୍ଜ୍ୱଳତମ ତାରକା ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱକୁ ଭାରତୀୟ ଜନସାଧାରଣ ସ୍ୱୀକାର କରି ନେଇ ସାରିଥିଲେ । ଜନ-ଜୀବନରେ ଲାଲ-ବାଲ-ପାଲଙ୍କ ପ୍ରଭାବ ମଧ୍ୟ ତରଙ୍ଗ ସୃଷ୍ଟି କରିବାକୁ ସମର୍ଥ ହୋଇ ପାରିଥିଲା । ଇନ୍ଦିରାଙ୍କ ପିତା ଜବାହରଲାଲ ତଥା ଜେଜେବାପା ମୋତିଲାଲ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରି ସାରିଥିଲେ । ସେମାନଙ୍କର ଘନଘନ ଗାଦିବରଣ ଏବଂ ରାଜନୈତିକ କାର୍ଯ୍ୟକଳାପ ଇନ୍ଦିରାଙ୍କ ମନରେ ଗଭୀର ରେଖାପାତ କରିବା ହେଲା ସ୍ୱାଭାବିକ କଥା ।

ପ୍ରଥମ ବିଶ୍ୱଯୁଦ୍ଧର ଅବସାନ ପୂର୍ବରୁ ଲାଲା ଲଜପତ୍ ରାୟଙ୍କୁ ଅଟକବନ୍ଦୀ ଭାବରେ ଦୀର୍ଘ ପାଞ୍ଚ ବର୍ଷ ରଖାଯାଇଥିଲା ବିଦେଶରେ । ଯୁଦ୍ଧର ପରିସମାପ୍ତି ପରେ ପରେ ସେ ନିଜ ଜନ୍ମଭୂମିକୁ ଫେରି ଆସିଥିଲେ । ସ୍ୱରାଜ୍ୟପ୍ରାପ୍ତି ପାଇଁ ମହାତ୍ମା ଗାନ୍ଧୀଙ୍କ 'ଅସହଯୋଗ ଆନ୍ଦୋଳନ' ପ୍ରସ୍ତାବର ଅନୁମୋଦନ ଲାଗି ଏକ ସ୍ୱତନ୍ତ୍ର ଅଧିବେଶନ କଲିକତାଠାରେ ଆହୂତ ହୋଇଥିଲା ଭାରତୀୟ ଜାତୀୟ କଂଗ୍ରେସର ।

ତା'ପରେ ପରେ ନାଗପୁର କଂଗ୍ରେସ ଅଧିବେଶନରେ ପୁଣି ଏହାକୁ ସଂପୂର୍ଣ୍ଣ ସମର୍ଥନ ମିଳିଥିଲା । ସେ ଆନ୍ଦୋଳନ ଏତେ ବିଶାଳବ୍ୟାପୀ ହୋଇ ଉଠିଥିଲା ଯେ, ଇଂରେଜ ସରକାର ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଥିଲେ । ଫଳରେ ସାଧାରଣ ଜନତା ଉପରେ ଅକଥନୀୟ ଅତ୍ୟାଚାର ଚାଲିଥିଲା । ସେ ଆନ୍ଦୋଳନରେ ଯୋଗ ଦେଇଥିବା ହଜାର ହଜାର ସତ୍ୟାଗ୍ରହୀଙ୍କୁ ବନ୍ଦୀ କରି ଜେଲ ହାଜତରେ ରଖାଯାଇଥିଲା । ସାଧାରଣ ସଭାସମିତିକୁ ବେଆଇନ ଘୋଷଣା କରାଯାଇଥିଲା । ସର୍ବଦିନ ବିଦେଶରେ ବନ୍ଦୀ ଭାବରେ ରହି ସ୍ୱଦେଶକୁ ଫେରିଥିବା ଲାଲଜୀ ସରକାରଙ୍କର ଏହି ଆଇନ ଅମାନ୍ୟ କରି ପୁଣି କାରାବରଣ କରିଥିଲେ ।

**ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ :—**

ସେତେବେଳର ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା ଥିଲା ଜାଲିଆନାୱାଲାବାଗ ହତ୍ୟାକାଣ୍ଡ । ଇଂରେଜ ସରକାରଙ୍କ ଏ ଅମାନୁଷିକ କାର୍ଯ୍ୟର ଆଲୋଚନା ପାଇଁ କଲିକତାଠାରେ ଜାତୀୟ କଂଗ୍ରେସର ଏକ ସ୍ୱତନ୍ତ୍ର ଅଧିବେଶନ ଆହୂତ ହୋଇଥିଲା । ଯଦିଓ ସେ ଘଟଣା ବେଳକୁ ଇନ୍ଦିରାଙ୍କୁ ମାତ୍ର ଦେଢ଼ ବର୍ଷ ବୟସ ହୋଇଥିଲା, ତଥାପି ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଯେତେବେଳେ ସେ ତାର ସମ୍ପୂର୍ଣ୍ଣ ବିବରଣୀ ଶୁଣିଥିଲେ ଓ ବୁଝି ପାରିଥିଲେ, ମନ ତାଙ୍କର ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରି ଉଠିଥିଲା । ଅନେକ ବର୍ଷ ପର୍ଯ୍ୟନ୍ତ ସେ ତାହା ଭୁଲି ପାରି ନ ଥିଲେ ।

ସେଦିନ ଥିଲା ୧୯୧୯ ମସିହା ଅପ୍ରେଲ ୧୩ ତାରିଖ ।

୧୯୧୯ ମସିହା ମାର୍ଚ୍ଚ ମାସ ୧୮ ତାରିଖ ଦିନ ରଉଲଟ ଆଇନ (Rowlat Act) ପାସ୍ ହୋଇଯିବା ପରେ ପରେ ସେଇ ମାସ ତିରିଶ ତାରିଖ ଦିନ ଗାନ୍ଧିଜୀ ଦେଶସାରା ହରତାଳ ପାଳନ କରିବା ଲାଗି ଆହ୍ୱାନ ଦେଇଥିଲେ । ତା'ର ପରିଣାମ ସ୍ୱରୂପ ଅପ୍ରେଲ ୬ ତାରିଖରେ ସମଗ୍ର ଦେଶରେ ହରତାଳ ପାଳନ କରାଯାଇଥିଲା ଖୁବ୍ ସଫଳ ଏବଂ ଶାନ୍ତିପୂର୍ଣ୍ଣ ଭାବେ । ତାକୁ ସମର୍ଥନ କରି ବାରିଷ୍ଟର ବଦରୁଲ ଇସଲାମ ଅଲି ଖାଁଙ୍କ ସଭାପତିତ୍ୱରେ ଏକ ପ୍ରତିବାଦ ସଭା ଅମୃତସରଠାରେ ଆହୂତ ହୋଇଥିଲା । ଅପ୍ରେଲ ୯ ତାରିଖରେ ସେଠାରେ ରାମନବମୀ ଉତ୍ସବ ପାଳନ କରାଯାଇଥିଲା ଓ ହିନ୍ଦୁମାନଙ୍କ ସହ ଅନେକ ମୁସଲମାନ ମଧ୍ୟ ସେଥିରେ ଯୋଗ ଦେଇଥିଲେ । ଏକ ବିରାଟ ଶୋଭାଯାତ୍ରା ସେଥିପାଇଁ ବାହାରିଥିଲା ଅମୃତସରରେ ଏବଂ ତା'ର ନେତୃତ୍ୱ ନେଉଥିବା ଦୁଇ ଜଣ ସ୍ୱାଧୀନତା ଆନ୍ଦୋଳନର ନେତା ତଥା ସତ୍ୟାଗ୍ରହୀ ସତ୍ୟପାଲ୍ ଓ କିଚଲୁଙ୍କୁ ଗିରଫ କରାଯାଇ ଏକ ଅଜ୍ଞାତସ୍ଥାନରେ ବନ୍ଦୀ କରି ରଖାଯାଇଥିଲା । ମହାତ୍ମାଗାନ୍ଧୀ ପଞ୍ଜାବ ଆସିବା ବାଟରେ ସେହିଦିନହିଁ ଠିକ୍ ପଞ୍ଜାବରେ ପହଞ୍ଚିବା ପୂର୍ବରୁ ପାଲୱାଲ ନାମକ ସ୍ଥାନରୁ ତାଙ୍କୁ ଗିରଫ କରି ବମ୍ବେକୁ ପଠାଇ ଦିଆଯାଇଥିଲା । ଜନସାଧାରଣ ଯେତେବେଳେ ଏ ଗିରଫଦାରି ଖବର

ପାଇଥିଲେ, ପଞ୍ଜାବର ଡେପୁଟି କମିଶନରଙ୍କ କୋଠିକୁ ଯାଇଥିଲେ ସେମାନଙ୍କ ନେତାମାନଙ୍କୁ ଖଲାସ କରିବା ଦାବୀ ନେଇ । କିନ୍ତୁ ସେ ଶାନ୍ତିପୂର୍ଣ୍ଣ, ନିରସ୍ତ୍ର ଜନତାର ପଛୁଆର ଉପରକୁ ଗୁଳି ଚଳାଯାଇଥିଲା ମିଲିଟାରୀ ପୋଲିସମାନଙ୍କ ଦ୍ୱାରା । ଅନେକ ଲୋକଙ୍କର ମୃତ୍ୟୁ ହୋଇଥିଲା ଓ ଅନେକ ମୃତାହତ ହୋଇଥିଲେ । ସେମାନଙ୍କ ପ୍ରତି ଯେପରି ଅମାନୁଷିକ ବ୍ୟବହାର କରାଗଲା ଏବଂ ପୋଲିସ୍ ଗୁଳିରେ ମୃତ ତଥା ଯନ୍ତ୍ରଣାରେ ଚିତ୍କାର କରୁଥିବା ଆହତ ବ୍ୟକ୍ତିଙ୍କୁ ଯେପରି ଅତି ନିଷ୍ଠୁର ଭାବରେ ବ୍ୟବହାର କରାଯାଇଥିଲା, ସେ ଦୃଶ୍ୟ ଦେଖି ଉପସ୍ଥିତ ଜନତା ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ ଉଠିଥିଲେ ।

ଏ ପରିସ୍ଥିତି କ୍ରମେ କ୍ରମେ ଜଟିଳ ହେବା ଆଶଙ୍କା କରିଥିଲେ ଇଂରେଜ ସରକାର । ତେଣୁ ସେଇ ୯ ତାରିଖ ରାତିରେ ହିଁ ଆହୁରି କେତେକ ସ୍ୱତନ୍ତ୍ର ମିଲିଟାରୀ ବାହିନୀ ଆସି ପହଞ୍ଚିଗଲେ ଅମୃତସରଠାରେ ।

ମିଲିଟାରୀ ପୋଲିସ୍ ଗୁଳିରେ ମୃତ ବ୍ୟକ୍ତିମାନଙ୍କ ଶବଗୁଡ଼ିକୁ ସତ୍କାର କରିବା ପାଇଁ ଶୋଭାଯାତ୍ରା କରି ନେବାବେଳେ ପୋଲିସ୍ ବାହିନୀ ପୁଣି ବାଧା ଦେଇଥିଲା । ସେ ଘଟଣା ଲୋକଙ୍କ ଉତ୍ତେଜନାଗ୍ନିରେ ଘୃତ ସଂଯୋଗ କରିଥିଲା ଏବଂ ତେଣେ ହରତାଳ ମଧ୍ୟ ଚାଲୁ ରହିଥିଲା । ଅପ୍ରେଲ ୧୨ ତାରିଖରେ ଡ଼ାଃ ଗୁରୁବକ୍ସ ରାୟ ଖବର ପାଇଥିଲେ ଯେ ନିକଟ ଅତୀତରେ ହିନ୍ଦୁ-ମୁସଲମାନ ଜାତିଗତ ଭେଦଭାବ ନେଇ ଗଣ୍ଡଗୋଳ ଘଟିଯାଇଥିବା ଧବ୍ କରିକାନ୍ (Dhab Kharikan) ନାମକ ସ୍ଥାନରେ ଅନେକ ଲୋକ ଜୁଟ୍ଣ ହୋଇଥିଲେ ଏକ ସଭା କରିବାପାଇଁ । ସେ ସ୍ଥାନଟି ଅମୃତସରଠାରୁ ବେଶୀ ଦୂରରେ ନ ଥିଲା । ଡାଃ ରାୟ ସେଠାକୁ ଯାଇଥିଲେ ଏବଂ ଧୀରସ୍ଥିର ଭାବେ ଲୋକମାନଙ୍କୁ ସେଠାରୁ ଚାଲିଯିବାପାଇଁ ଅନୁରୋଧ କରିଥିଲେ । ଉପସ୍ଥିତ ଜନତା କିନ୍ତୁ ତାହାଙ୍କୁ ଅସ୍ୱୀକାର କରି କହିଥିଲେ ଯେ ସେମାନେ ସେଠାରେ ଏକ ପ୍ରତିବାଦ ସଭା କରିବେ । ସେମାନଙ୍କ କଥାରେ ନିଜର ସମ୍ମତି ଜଣାଇ ସେ ଲୋକମାନଙ୍କୁ ବୁଝାଇଥିଲେ ଯେ ତା ପରଦିନ ସେମାନେ ସେହି ସଭା କରିବେ ଅପରାହ୍ଣ ଚାରିଟା ବେଳେ, କିନ୍ତୁ ସେଠାରେ ନୁହେଁ—ଜାଲିଆନାଓ୍ୱାଲା-ବାଗ୍‌ଠାରେ ।

ଅଶୀ ବର୍ଷର ବୃଦ୍ଧ ଅଥଚ ସୁସ୍ଥ, ସବଳ ଡ଼ାଃ ଗୁରୁବକ୍ସ ରାୟ ୟୁ. ଏନ୍. ଆଇ.ର ପ୍ରତିନିଧିଙ୍କ ସହିତ ସେ ଘଟଣାର ଅନେକ ପରେ ଏକ ସାକ୍ଷାତକାରରେ କହିଥିଲେ ଯେ ବୋଧେ ଭଗବାନଙ୍କ ଇଚ୍ଛା ଥିଲା ୧୯୧୯ ମସିହା ଅପ୍ରେଲ ୧୩ ତାରିଖରେ ଅନେକ ନିରୀହ, ନିରସ୍ତ୍ର ଜନତାର ସେ ନିଜେ ହିଁ ମୃତ୍ୟୁର କାରଣ ହୁଅନ୍ତୁ ।

ଅପ୍ରେଲ ୧୩ ତାରିଖ—ବୈଶାଖ ମାସର ପ୍ରଥମ ଦିବସ । ଅନେକ ସ୍ଥାନରେ ବର୍ଷର ପ୍ରଥମ ଦିବସ (ବିଷୁବ ସଂକ୍ରାନ୍ତି) ହିସାବରେ ଆଜି ମଧ୍ୟ ପାଳିତ ହୁଏ ।

ପଚ୍ଛଣ ବର୍ଷ ତଳେ ପଞ୍ଜାବର ସେଦନଟି ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଉତ୍ସବର ଦନ । ବର୍ଷର ପ୍ରଥମ ଦବସରେ ଅମୃତସର ଆନନ୍ଦ ଉତ୍ସବରେ ଉଚ୍ଛୁଳ ଉଠୁଥିଲା । ସେଇଥିପାଇଁ ହିଁ ସେ ସହରର ପ୍ରସିଦ୍ଧି ଥିଲା ।

ସେଦନ ଜେନେରାଲ ଡାୟାର (General Dyer) ଅମୃତସରଠାରେ ପହଞ୍ଚିଥିଲେ ଶାନ୍ତିଶୃଙ୍ଖଳା ରକ୍ଷା କରବାପାଇଁ ଏବଂ ଏକ ଘୋଷଣାକାରୀ କରଦେଇ ଥିଲେ ଯେ ଚ୍ଚର ଜଣରୁ ଅଧିକ ଲୋକ ସହରର କୌଣସି ସ୍ଥାନରେ ଏକାଠି ହୋଇ ପାରବେ ନାହିଁ । କନ୍ତୁ ପୂର୍ବ ନର୍ଦ୍ଧାରଣ ଅନୁଯାୟୀ ସେଦନ ଅପରାହ୍ଣରେ ଜାଲିଆନାୱାଲାବାଗ୍‌ଠାରେ ବପୁଳ ଜନସମାବେଶ ହୋଇଥିଲା । ସମସ୍ତେ ଜାଣିଥିଲେ ଯେ ଚ୍ଚର ଜଣରୁ ଅଧିକା ଏକାଠି ନ ହେବା ଲାଗି ଜେନେରାଲ ଡାୟାର ଘୋଷଣା କରଛନ୍ତି ଏବଂ ସେଥିରେ ମଧ୍ୟ ବପଦ ରହିଛି । ତଥାପି ଜୀବନର ଆଶାକୁ ଜଳାଞ୍ଜଳି ଦେଇ ତାଙ୍କ ପ୍ରିୟ ନେତାମାନଙ୍କୁ କାରାରୁଦ୍ଧ କର ରଖିଥିବା ଯୋଗୁଁ ପ୍ରତିବାଦ ସଭା କରବାପାଇଁ ପ୍ରାୟ କୋଡ଼ିଏ ହଜାର ଲୋକ ସେଠାରେ ଭୁଣ୍ଡ ହୋଇଥିଲେ ।

ଗଣହତ୍ୟାକାରୀ ଜେନେରାଲ ଡାୟର ବ୍ରିଟିଶ ରେଜିମେଣ୍ଟର ୪୫ତମ ବାହିନୀକୁ ନେଇ ହଠାତ୍ ସେଠାରେ ଉପସ୍ଥିତ ହୋଇଥିଲେ ଏବଂ ସଙ୍ଗେ ସଙ୍ଗେ ବନ୍ଧୁକ ଚଳାଇବା ଲାଗି ଆଦେଶ ଦେଇଥିଲେ । ପର ମୁହୂର୍ତ୍ତରେ ସମସ୍ତ ସିପାହିଙ୍କ ବନ୍ଧୁକ ଏକସଙ୍ଗେ ଗର୍ଜି ଉଠିଥିଲା ଓ ପରେତାପର ବାହ୍ୟ ଯେ ନଜ ନଜ ନାକଟରୁ ସମସ୍ତ ଗୁଳି ଶେଷ ନ ହେବା ପର୍ଯ୍ୟନ୍ତ ସେମାନେ ସେ କାର୍ଯ୍ୟରୁ କ୍ଷାନ୍ତ ହୋଇ ନ ଥିଲେ । ମାତ୍ର କେତୋଟି ମିନଟରେ ୧୬୫୦ ରାଉଣ୍ଡ ଗୁଳି ବଦଳରେ ପ୍ରାୟ ଚ୍ଚର ଶହ ଆବାଲବୃଦ୍ଧବନତା ସେଠି ଚରଦନ ପାଇଁ ଶୋଇ ଯାଇଥିଲେ ନଜ ମାତୃଭୂମି ଉଦ୍ଦେଶ୍ୟରେ ।

ପ୍ରତ୍ୟକ୍ଷ ଅନୁଭୂତ ଅର୍ଜନ କରଥିବା ସେଦନର ଜାଲିଆନାୱାଲାବାଗ୍‌ରେ ଅନୁଷ୍ଠିତ ସଭାର ସଭାପତି ଡାଃ ଗୁରୁବକ୍ସ ରାୟଙ୍କ ମତରେ "As the bullets flew past, I was standing on the platform with my hands folded against my chest. I took the portrait of Dr. Ketchlew ( portrait of the two departed leaders were on the platform) and jumped down from the platform and lay down on the ground. × × × The fire continued for six minutes. Terror striken, the people were not able to do anything." *

---

* J. S, Bright—Indira Gandhi—P-48.

ଅସହଯୋଗ ଆନ୍ଦୋଳନକୁ ଜାତୀୟ ସ୍ତରରେ ପ୍ରତିଷ୍ଠିତ କରାଇବାପାଇଁ, ଜନମତକୁ ସ୍ୱାଧୀନତା ସଂଗ୍ରାମ ସହିତ ଘନିଷ୍ଠ ଭାବରେ ଜଡ଼ିତ ରଖିବାପାଇଁ ଏବଂ ଭାରତୀୟ ଜନଗଣଙ୍କ ଉଷ୍ଣ ରକ୍ତପ୍ରବାହକୁ ଆଉ ଟିକିଏ ଅଧିକ ଗତିଶୀଳ କରାଇବା ପାଇଁ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ଭୂମିକା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଥିଲା । ପଞ୍ଜାବରେ ଯେଉଁ ଭୂଲ ଇଂରେଜ ସରକାରଙ୍କଦ୍ୱାରା କରାଯାଇଥିଲା, ସେଥିପାଇଁ ଗାନ୍ଧିଜୀଙ୍କ ପରାମର୍ଶକ୍ରମେ କଲିକତାଠାରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ବସି ଇଂରେଜ ସରକାରଙ୍କ ସହିତ କୌଣସି କାର୍ଯ୍ୟରେ ସହଯୋଗ ନ କରିବାକୁ ସ୍ଥିର କରାଯାଇଥିଲା ଏବଂ ତାହାକୁ ପୂର୍ଣ୍ଣ ସମର୍ଥନ ମିଳିଥିଲା ନାଗପୁର କଂଗ୍ରେସ ଅଧିବେଶନରେ ।

ତା'ର ପରିଶ ବର୍ଷ ପରେ ୧୯୬୯ ମସିହା ଅପ୍ରେଲ ୧୩ ତାରିଖ ଦିନ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡର ସୁବର୍ଣ୍ଣ ଜୟନ୍ତୀ ଅବସରରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ୧୯୧୯ ମସିହାରେ ୪୫ତମ ବ୍ରିଟିଶ୍ ରେଜିମେଣ୍ଟର ସେନାଙ୍କ ଗୁଳିରେ ଯେଉଁମାନେ ଆହତ ହୋଇଥିଲେ ସେମାନଙ୍କ ମଧ୍ୟରୁ ସାତଜଣଙ୍କୁ କାଶ୍ମୀର ଶାଲ ଦେବା ସଙ୍ଗେ ସଙ୍ଗେ ପାଞ୍ଚ ହଜାର ଲେଖାଏଁ ଟଙ୍କା ଉପହାର ଦେଇଥିଲେ ପ୍ରାୟ ତିନି ଲକ୍ଷ ଜନତାଙ୍କ ଉପସ୍ଥିତିରେ । ସେମାନଙ୍କ ମଧ୍ୟରେ ଥିଲେ କୃପିମଲ ନାନକଚାନ୍ଦ, ଦଉଲତରାମ, ପାନାଲାଲ, ମହାରାଜା କିଷ୍ଣା ଓ ଦେବସିଂ । ସେଇ ଉତ୍ସବରେ ଶ୍ରୀମତୀ ଗାନ୍ଧୀ ସମବେତ ଜନତାକୁ ଉଦ୍‌ବୋଧନ ଦେଇ କହିଥିଲେ ଯେ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ନିଶ୍ଚିତ ଭାବେ ଅତ୍ୟନ୍ତ ମର୍ମନ୍ତୁଦ । ତଥାପି ତାହା ଲୋକମାନଙ୍କ ହୃଦୟରେ ଶତସିଂହର ବଳ ଆଣି ଦେଇଥିଲା, ଯାହାର ପରିଣାମ ସ୍ୱରୂପ ଭାରତ ହେଲା ସ୍ୱାଧୀନ । ଶ୍ରୀମତୀ ଗାନ୍ଧୀ ସେଠାରେ ଘୋଷଣା କରିଥିଲେ, 'Man can kill a man but he cannot kill his ambitions and dreams"

କେବଳ ଇନ୍ଦିରା ଯେ ସେ ଘଟଣା ସମ୍ପର୍କରେ ଅଭିହିତ ହେବା ପରେ ଅଭିଭୂତ ହୋଇ ପଡ଼ିଥିଲେ ତାହା ନୁହେଁ, ବରଂ ନେହେରୁ ପରିବାରକୁ ସ୍ୱାଧୀନତା ସଂଗ୍ରାମ ସହିତ ଘନିଷ୍ଠ ଭାବେ ସମ୍ପୃକ୍ତ କରାଇବା ଲାଗି ଗାନ୍ଧିଜୀଙ୍କ ବଳିଷ୍ଠ ନେତୃତ୍ୱ ପଛକୁ ଜାଲିଆନାୱାଲା ବାଗ୍ ହତ୍ୟାକାଣ୍ଡ ଘଟଣା ଥିଲା ଅତ୍ୟନ୍ତ ପ୍ରଭାବଶାଳୀ । ପ୍ରମିଳା କଲ୍ହାନ୍ କମଳା ନେହେରୁଙ୍କ ଜୀବନୀ ଆଲୋଚନା କରି ଯଥାର୍ଥରେ ମତ ଦେଇଛନ୍ତି' "The decision of the Nehrus, father and the son, to throw in their lot with Gandhiji was made easier by a chain of events beginning with the Jallianawala Bagh tragedy." *

□□□

* Sunday World—May 6th, 1973—P-2.

## ॥ ତିନି ॥

# ଦରବିକଶିତ କୁସୁମକଳି



ଜବାହରଲାଲଙ୍କ ମାତା ସ୍ୱରୂପରାଣୀ ହୁଏତ ଅତ୍ୟନ୍ତ ଆନନ୍ଦିତ ହୋଇ ଯାଇଥାନ୍ତେ ଯଦି ଜବାହରଲାଲ କନ୍ୟାପିତା ବଦଳରେ ଏକ ପୁତ୍ର ସନ୍ତାନର ଜନକ ହୋଇଥାନ୍ତେ । କିନ୍ତୁ ମୋତିଲାଲ ପୁତ୍ର ଓ କନ୍ୟା ଭିତରେ ସେମିତି କିଛି ପାର୍ଥକ୍ୟ ଦେଖିପାରୁ ନ ଥିଲେ । ସେହି କାରଣରୁ ତାଙ୍କର ପୁତ୍ର ଜବାହରଲାଲ ଓ ଦୁଇକନ୍ୟା ସ୍ୱରୂପା କୁମାରୀ ଏବଂ କୃଷ୍ଣାଙ୍କ ମାନସିକ ବିକାଶ ତଥା ସାମାଜିକ ଶୃଙ୍ଖଳାବଳଣି ପାଇଁ ଏକପ୍ରକାର ବ୍ୟବସ୍ଥା କରିଥିଲେ । ଶିଶୁ କନ୍ୟାଟିର ଜନ୍ମ ପରେ ପରେ ସ୍ୱରୂପରାଣୀଙ୍କ ସେ ପ୍ରକାର ବିଚାରଧାରା ପାଇଁ ତାଙ୍କୁ ଥଟ୍ଟା କରି ମୋତିଲାଲ କହିଥିଲେ— This girl is going to be worth more than a thousand grandsons," ମୋତିଲାଲଙ୍କ ମାତା ଇନ୍ଦ୍ରାଣୀଙ୍କ ଦ୍ୱାରା ନାମିତ ସେଦିନର ଶିଶୁ ଇନ୍ଦିରା ଏକ ନିରାଡ଼ମ୍ବର ଶୈଶବ ଜୀବନ ଅତିବାହିତ କରିଥିଲା ଆନନ୍ଦ ଭବନ ଭିତରେ ।

**ଶିଶୁ ଇନ୍ଦିରା :—**

ଇନ୍ଦିରାଙ୍କ ଶୈଶବ ଅବସ୍ଥା ଏକ ବିଚିତ୍ର ପରିବେଶ ଭିତରେ ଅତିବାହିତ ହୋଇଥିଲା । ସେତେବେଳେ ଦେଶରେ ଯେଉଁ ପ୍ରକାର ବୈପ୍ଳବିକ-ରାଜନୈତିକ ବାତାବରଣ ଲାଗି ରହିଥିଲା, ତାର କେନ୍ଦ୍ର ଥିଲା ଆନନ୍ଦ ଭବନ । ଆନନ୍ଦ ଭବନ ହତା ମଧ୍ୟରେ ମୋତିଲାଲଙ୍କ ଦ୍ୱାରା ଏକ ସ୍ୱତନ୍ତ୍ର ଗୃହ ନିର୍ମିତ ହୋଇଥିଲା ଜବାହରଲାଲଙ୍କ ପାଇଁ । ପରେ ସେହି ଗୃହଟି ଇନ୍ଦିରାଙ୍କ ପାଇଁ [illegible] ବ୍ୟବହୃତ ହୋଇଥିଲା ।

ଭାରତର ସ୍ୱରାଜ୍ୟ ଲାଭପାଇଁ ଯେଉଁ ଆନ୍ଦୋଳନ ଚାଲିଥିଲା, ସେଥିରେ ଜବାହରଲାଲ ନିଜକୁ ସଂପୂର୍ଣ୍ଣରୂପେ ସାମିଲ କରିସାରିଥିଲେ । ସେହି କାରଣରୁ ତାହାଙ୍କୁ ଅନେକ ସମୟରେ ପରିବାରଠାରୁ ଦୂରରେ ହିଁ ରହିବାକୁ ପଡୁଥିଲା । ତେଣୁ ଇନ୍ଦିରା ଯେତିକି ପିତୃସ୍ନେହ ପାଇବାକଥା, ସେତିକି ପାଇ ନ ଥିଲେ ଶିଶୁ ଓ

କୈଶୋର ଜୀବନରେ । ପ୍ରାୟ ସବୁ ସମୟରେ ସେ ବୃଢ଼ା ଆୟା ସହିତ ହିଁ ସମୟ ଅତିବାହିତ କରୁଥିଲେ । ଅନେକ ଖେଳଣା ଶିଶୁ ଇନ୍ଦିରାଙ୍କୁ ଦେଇଥିଲେ ଆୟା ଓ ସେହି ଖେଳଣାଗୁଡ଼ିକ ସହିତ କ୍ରୀଡ଼ାରତ ରହୁଥିଲେ ଇନ୍ଦିରା ଅଧିକାଂଶ ସମୟରେ ।

ପିତାଙ୍କର ଅନୁପସ୍ଥିତିରେ ଇନ୍ଦିରା କମଳାଙ୍କ ସବୁ ସୁଖ ଦୁଃଖର ଭାଗୀଦାର ହେଉଥିଲେ ଆନନ୍ଦ ଭବନରେ । ଜବାହରଲାଲ ପ୍ରାୟ ସବୁ ସମୟରେ କେବଳ ରାଜନୈତିକ କାର୍ଯ୍ୟକଳାପରେ ବ୍ୟସ୍ତ ରହୁଥିଲେ, ଏପରି କି କମଳାଙ୍କ ବ୍ୟକ୍ତିଗତ ସୁଖ-ଦୁଃଖ, ଅଭାବ-ଅସୁବିଧା ବୁଝିବା ଲାଗି ଖୁବ୍ କମ୍ ସମୟ ପାଉଥିଲେ—ହୁଏତ ସମୟ ପାଉ ନ ଥିଲେ କହିଲେ ଭୁଲ ହେବ ନାହିଁ । ସେଥିପାଇଁ କମଳାଙ୍କ ବିଷୟ ନେଇ ମୋତିଲାଲ ବାରମ୍ବାର ଜବାହରଲାଲଙ୍କୁ ପତ୍ର ଲେଖୁଥିଲେ । ସ୍ୱାମୀଙ୍କର ବାରମ୍ବାର ଅନୁପସ୍ଥିତି ଏବଂ ସଂପୂର୍ଣ୍ଣ ବିଦେଶୀ ଛାଞ୍ଚାରେ ଚଳି ଆସୁଥିବା ନେହେରୁ ପରିବାର ଭିତରେ କମଳାଙ୍କ ଜୀବନଯାତ୍ରା ପ୍ରଥମେ କିଛି ଦିନ ଦୁର୍ବହ ହୋଇ ଉଠିଥିଲା । ସେଥିପାଇଁ ମଝିରେ ମଝିରେ ତାଙ୍କର ମୁଣ୍ଡବ୍ୟଥା ମଧ୍ୟ ହେଉଥିଲା, ତେବେ ଜବାହରଲାଲଙ୍କ ଅନୁପସ୍ଥିତିରେ ମୋତିଲାଲ କମଳାଙ୍କ ତତ୍ତ୍ୱ ନେଉଥିଲେ ସର୍ବାଧିକ । ସାମୟିକଭାବେ ମୁଣ୍ଡ ବ୍ୟଥାର କାରଣ ସଂପର୍କରେ ସେ ଗୋଟିଏ ଚିଠିରେ ଲେଖିଥିଲେ, "I have been studying Kamala's case for some days and have come to the conclusion that it is eighty percent hysteria and twenty percent other minor causes which combine to give her a headache" * ସେଇମିତି ଆଉ ଗୋଟିଏ ଚିଠିରେ ସେ ଲେଖି-ଥିଲେ, "The first thing is to strengthen her (Kamala) and make her feel so entirely at home with us so as to get rid of all nervousness. That is what I am doing now" **

ଏ ପ୍ରକାର ପରିସ୍ଥିତି ଭିତରେ କମଳା ଅନେକ ସାନ୍ତ୍ୱନା ପାଉଥିଲେ ଶିଶୁ ଇନ୍ଦିରାଠାରୁ । ଶିଶୁ ବୟସରୁ ହିଁ ସେ ବିଚକ୍ଷଣ ଥିଲେ ଏବଂ ଘର ଭିତରେ ଓ ବାହାରେ ଯାହାସବୁ ଘଟି ଯାଉଥିଲା ତା'ର ଗଭୀର ଅନୁଧ୍ୟାନ କରିପାରୁଥିଲେ । ଜଗତ୍‌ସିଂହ ବ୍ରାଇଟ୍, ଜଣେ ବିଖ୍ୟାତ ସାମ୍ବାଦିକଙ୍କ ଭାଷାରେ—"ଇନ୍ଦିରା ତାଙ୍କର ବୟସ ତୁଳନାରେ ଅତ୍ୟନ୍ତ ବିଚକ୍ଷଣ ଥିଲେ ଏବଂ ପିତା ଅଧିକାଂଶ ସମୟରେ ଘର ବାହାରେ ଅଥବା ସହର ବାହାରେ ରହୁଥିବା ଯୋଗୁଁ ପିତାଙ୍କ ଅନୁପସ୍ଥିତିରେ ମାତାଙ୍କ ପାଇଁ ସେ ଥିଲେ ଧୈର୍ଯ୍ୟ ଓ ସାହସର ଏକ ପ୍ରମୁଖ ସଦୃଶ । ***

* & ** Sunday World—May 6th, 1973—p-1 & 2.
*** J. S. Bright—Indira Gandhi—p-57.

ଅନ୍ୟ ଭାବରେ କହିବାକୁ ଗଲେ ବୟସ ଅନୁପାତରେ ସେ ଥିଲେ **ଅଧିକ** ବୁଦ୍ଧିମତୀ । ପିତା ଜବାହରଲାଲଙ୍କ ଅପେକ୍ଷା ଜେଜେବାପା ମୋତିଲାଲ ଇନ୍ଦିରାଙ୍କ ବିଷୟରେ ଅଧିକ ସଚେତନ ଥିଲେ ଓ ଦେଖାଶୁଣା ମଧ୍ୟ କରୁଥିଲେ । ଥରେ କୌଣସି ଏକ ରାଜନୈତିକ ସମ୍ମେଳନରେ ଯୋଗ ଦେବାକୁ ଯାଇ କଲିକତାରୁ ତାଙ୍କର ଦୁଇ ବର୍ଷୀୟା ନାତୁଣୀ ପାଇଁ ଏକ ପେରାମ୍ବୁଲେଟର (ହାତଠେଲା ଗାଡ଼ି) ନେଇ ଆସିଥିଲେ । ଇନ୍ଦିରା ପ୍ରିୟଦର୍ଶିନୀ ସେଇ ଖେଳଣାଟିକୁ ଖୁବ୍ ଭଲ ପାଉଥିଲେ ।

ସମଗ୍ର ଆନନ୍ଦ ଭବନରେ ସେତେବେଳକୁ ଏକମାତ୍ର ଶିଶୁ ଥିଲେ ପ୍ରିୟଦର୍ଶିନୀ । ତେଣୁ ସମସ୍ତଙ୍କର ସ୍ନେହ-ଶ୍ରଦ୍ଧା ତାଙ୍କର ଉପରେ ଥିଲା । ସେ ଥିଲେ ସମସ୍ତଙ୍କର ଅତି ପ୍ରିୟ ପାତ୍ରୀ । ସେ କେତେବେଳେ କମଳାଙ୍କୁ ଖେଳଣା ପାଇଁ ଅଳି କଲାବେଳେ ପର ମୁହୂର୍ତ୍ତରେ ଜେଜେମା'ଙ୍କ ପୂଜା ନିକଟରେ ହାଜର । କେତେବେଳେ ପାପୁ ରାଜନୈତିକ ଆଲୋଚନାରେ ବ୍ୟସ୍ତ ଥିବାବେଳେ ଏଣ୍ଡୁତେଣ୍ଡୁ କହି ବ୍ୟସ୍ତ କରୁଥିଲେ ତ ଆଉ କେତେବେଳେ ଦାଦୁ ମହକିଲମାନଙ୍କ ସହିତ ବ୍ୟସ୍ତ ଥିବାବେଳେ ତାଙ୍କ କୋଳରେ ବସିବାପାଇଁ ଅଳି କରୁଥିଲେ । ଅନେକ ସମୟରେ ମୋତିଲାଲ ଘରୁ ବାହାରକୁ ଗଲାବେଳେ ଇନ୍ଦୁକୁ ମଧ୍ୟ ସାଥିରେ ନେଇ ଯାଉଥିଲେ ।

କିନ୍ତୁ ଯେତେବେଳେ ଘରେ କେହି ରହୁନଥିଲେ ?

ଏମିତି ଅନେକ ସମୟ ଆସୁଥିଲା ଦାଦୁ ଓ ପାପୁ ଜେଲ୍‌ରେ ଏବଂ ଘରର ଅନ୍ୟ ମହିଳାମାନେ ଶୋଭାଯାତ୍ରା ବା ପିକେଟିଂ କରିବା ଲାଗି ବାହାରି ଯାଉଥିଲେ । ସେତେବେଳକୁ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନକ୍ରମେ ବିଲାତି ଜିନିଷ ବର୍ଜନ କରିବା ପାଇଁ ଆନ୍ଦୋଳନ ଚାଲିଥିଲା । ବିଦେଶୀ ଜିନିଷମାନ ବିକ୍ରି ହେଉଥିବା ଦୋକାନଗୁଡ଼ିକ ସାମ୍ନାରେ ଧାରଣା ଦେବା, ହରତାଳ କରିବା, ସାଧାରଣ ସଭା ବା ଶୋଭାଯାତ୍ରାର ଆୟୋଜନ ଇତ୍ୟାଦି କାର୍ଯ୍ୟପାଇଁ ଆନନ୍ଦ ଭବନର ମହିଳାମାନେ ମଧ୍ୟ ସହଯୋଗ କରୁଥିଲେ । ସେଥିରେ ଇନ୍ଦିରାଙ୍କ ଆଗ୍ରହ ଥିଲେ ମଧ୍ୟ, ସେ ହାତରେ ତିରଙ୍ଗା ପତାକା ନେଇ ଶୋଭାଯାତ୍ରାରେ ଯିବାଲାଗି ଇଚ୍ଛା କରୁଥିଲେ ମଧ୍ୟ କମଳା ଚାହୁଁ ନଥିଲେ କେଉଁଠି ଇନ୍ଦିରା ଏତେ କମ୍ ବୟସରୁ ସତ୍ୟାଗ୍ରହ ସହିତ ସମ୍ପୃକ୍ତ ରହନ୍ତୁ । ତେଣୁ ସେଭଳି ସବୁ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବାକୁ ତାହାଙ୍କୁ ସୁଯୋଗ ଦିଆଯାଉ ନ ଥିଲା ।

**କଣ୍ଢେଇ ବିପ୍ଳବ :—**

ଶିଶୁ ବୟସରେ ସବୁ ଝିଅ କଣ୍ଢେଇମାନଙ୍କ ସହିତ ଖେଳିବାକୁ ଭଲ ପାଇଥାନ୍ତି । ସେଇଥିପାଇଁ ଆନନ୍ଦଭବନରେ ଗୋଟିଏ ସ୍ୱତନ୍ତ୍ର କୋଠରୀରେ ଇନ୍ଦିରାଙ୍କ

ପାଇଁ ଦେଶୀ ଓ ବିଦେଶୀ କଣ୍ଢେଇମାନଙ୍କୁ ସଜାଇ ଦିଆଯାଇଥିଲା । ମୋତିଲାଲ ଅନେକ କଣ୍ଢେଇ ଇଂଲଣ୍ଡରୁ ଆଣି ଦେଇଥିଲେ । ତା ଭିତରୁ ଗୋଟିଏ ଖେଳଣାକୁ ଇନ୍ଦିରା ଅତ୍ୟନ୍ତ ଭଲ ପାଉଥିଲେ । ତେବେ ଆହୁରି ଅନେକ ଦେଶୀ ଖେଳଣା ମଧ୍ୟ କମଳା କିଣିଥିଲେ ଇନ୍ଦିରାଙ୍କ ପାଇଁ । ସାମୂହିକ ଭାବେ ସେ ଖେଳଣାଗୁଡ଼ିକୁ ଭଲ ପାଉଥିଲେ । ସେଇ କଣ୍ଢେଇମାନଙ୍କ ମଧ୍ୟରେ ଥିଲା ରାଜା-ରାଣୀ, କାଖରେ ପାଣି କଳସୀ ନେଇ ଫେରି ଆସୁଥିବା ମହିଳା, ନବବିବାହିତ ବରକନ୍ୟା, ଚନ୍ଦନ-ତିଳକ-କଣ୍ଠୀ ବ୍ରାହ୍ମଣ, ଘରୋଇ ଚାକର, ଅଫିସ୍ ପିଅନ, ଝାଡୁଦାର, ପୋଲିସ୍ ଏବଂ ଟିଣରେ ତିଆରି ସୈନ୍ୟବାହିନୀ । ସେ ସୈନ୍ୟବାହିନୀରେ ଥିଲେ ପଦାତିକ, ଅଶ୍ୱାରୋହୀ ଓ ଗଜାରୋହୀ । ବିଶେଷ କରି ଇଂରେଜ ସେନାନୀ ଯେଉଁ ପ୍ରକାର ପୋଷାକ ପିନ୍ଧୁଥିଲେ କଣ୍ଢେଇ ସୈନ୍ୟମାନେ ମଧ୍ୟ ସେ ପ୍ରକାର ପୋଷାକ ପରିଧାନ କରିଥିଲେ । ସେଇ କଣ୍ଢେଇ ଘର ଥିଲା ତାଙ୍କର ପ୍ରଧାନ ଖେଳଘର । ସମୟେ ସମୟେ ତାଙ୍କର ବାଲ୍ୟଚପଳତା ରୂପ ନେଉଥିଲା ଘରର ଚାକରମାନଙ୍କୁ ଏକାଠି କରି ନିଜେ ଗୋଟିଏ ଟେବୁଲ ଉପରେ ଦଣ୍ଡାୟମାନ ହୋଇ ଭାଷଣ ଦେବାରେ । ତାଙ୍କ ନିଜ ଭାଷାରେ, "ଗୋଟିଏ ଟେବୁଲ ଉପରେ ଛିଡ଼ାହୋଇ ଘରର ଚାକରମାନଙ୍କୁ ମୋ ଚାରିପାଖରେ ଛିଡ଼ାକରାଇ ସେମାନଙ୍କୁ ଓଜସ୍ୱିନୀ ଭାଷାରେ ରାଜନୈତିକ ଭାଷଣ ଶୁଣାଇବା ଥିଲା ମୋର ପ୍ରିୟ କାର୍ଯ୍ୟ ।" *

**ଦିନକର ଘଟଣା –**

ଅନ୍ୟାନ୍ୟ ଦିନମାନଙ୍କ ପରି ସେଦିନ ମଧ୍ୟ କଣ୍ଢେଇ ଘରେ ଖେଳିବାକୁ ଯାଇଥିଲେ ଇନ୍ଦିରା । କିନ୍ତୁ କଣ୍ଢେଇ ଘରେ ଏକ ବିରାଟ ପରିବର୍ତ୍ତନ ଆସିଥିଲା । କାଗଜର ଏକ ତ୍ରିରଙ୍ଗା ପତାକା ସେହି ଘରର ଦୁଆର ମୁହଁରେ ଲଗାଇ ଦିଆଯାଇଥିଲା । ଯେତେସବୁ ଦେଶୀୟ ଖେଳଣା ଘରର ଗୋଟିଏ ଦିଗରେ ଓ ଅନ୍ୟସବୁ ଖେଳଣା ସହିତ ପୋଲିସ୍ ତଥା ସୈନ୍ୟବାହିନୀ ରହିଥିଲେ ଅନ୍ୟ ଦିଗରେ । ତାପରେ ଦେଶୀ କଣ୍ଢେଇସବୁ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ନବବିବାହିତ ଯୁବତୀ ମଧ୍ୟ କଣ୍ଢେଇ ଘରର ଦ୍ୱାରରକ୍ଷୀ ହୋଇଥିଲା ହାତରେ ଏକ ତ୍ରିରଙ୍ଗୀ ପତାକା ନେଇ । ତାପରେ ଇନ୍ଦିରା ସେମାନଙ୍କୁ ଉଦ୍‌ବୋଧନୀ ଶୁଣାଇ କହିଥିଲେ, "ତୁମେମାନେ ଭୁଲିବାକୁ ହେବ ନାହିଁ ଯେ ତୁମ୍ଭେମାନେ ସବୁ ସତ୍ୟାଗ୍ରହୀ । ପୋଲିସମାନଙ୍କଦ୍ୱାରା ତୁମ୍ଭେମାନେ ଭୟଭୀତ ହେବ ନାହିଁ ।" ତାପରେ ସତ୍ୟାଗ୍ରହୀ କଣ୍ଢେଇ ଓ ସେନାନୀ କଣ୍ଢେଇ ଉଭୟ ଦଳ ପରସ୍ପର ଆଡ଼କୁ ଅଗ୍ରସର ହୋଇଥିଲେ । କ୍ରମେ କ୍ରମେ ଉଭୟ ଦଳଙ୍କ ଦୂରତା କମି କମି ଆସିଥିଲା । ତାପରେ

---

* M. K. Alexander—p-12,

ହଠାତ୍ ଇନ୍ଦିରା ଉତ୍ତ୍ୟକ୍ତ ହୋଇ ଉଠିଥିଲେ । ତାଙ୍କର ପାଟିରୁ ସମଗ୍ର ଦେଶରେ ଚାଲିଥିବା ସତ୍ୟାଗ୍ରହର ମୂଳ ମନ୍ତ୍ରଗୁଡ଼ିକ ମୁଖରିତ ହୋଇ ଉଠିଥିଲା—"ଭାରତ-ମାତାକୀ ଜୟ, ହିନ୍ଦୁ-ମୁସ୍‌ଲିମ୍ ଜିନ୍ଦାବାଦ, ମହାତ୍ମା ଗାନ୍ଧୀଙ୍କ ଜୟ" । ସେ ଏ ଧ୍ୱନିରେ କଣ୍ଢେଇଘରକୁ ମୁଖରିତ କରିବା ସଙ୍ଗେ ସଙ୍ଗେ ଉଭୟ ଦଳର କଣ୍ଢେଇ-ଗୁଡ଼ିକୁ ବିପକ୍ଷୀୟ ଦଳରୁ ନିକଟରୁ ନିକଟକୁ ଆଣୁଥିଲେ ଏବଂ ଶେଷରେ ସତ୍ୟାଗ୍ରହୀଙ୍କ ଜୟ ହୋଇଥିଲା । ଶତ୍ରୁସେନାମାନେ ମୃତବତ୍ ପଡ଼ି ରହିଥିଲେ କଣ୍ଢେଇଘରର ମାର୍ବଲ ଚଟାଣ ଉପରେ । ଟିଣ କଣ୍ଢେଇଗୁଡ଼ିକୁ ଚଟାଣରେ ପଡ଼ିବା ଶବ୍ଦ ଆୟା ତଥା ଆନନ୍ଦ ଭବନର ଅନ୍ୟମାନଙ୍କୁ ସେଠାକୁ ଟାଣି ଆଣିଥିଲା ।

କେବଳ ଆନନ୍ଦ ଭବନର କର୍ମଚାରୀ କାହିଁକି, ଯେତେବେଳେ ଆହ୍ଲାବାଦ୍‌ର ତତ୍‌କାଳୀନ ଗୋରା ସାହେବ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ନିକଟରେ ଏ ଖବର ପହଞ୍ଚିଥିଲା, ସେ ଏଥିରେ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ପଡ଼ିଥିଲେ ।

ସନ୍ଦର୍ଭ ରୁକ୍ଷ ପରିବେଶ ଇନ୍ଦିରାଙ୍କ ବାଲ୍ୟ ଜୀବନରେ ଅତି ସାଧାରଣ କଥା ହୋଇ ପଡ଼ିଥିଲା, ତଥାପି ସମୟେ ସମୟେ ବିଭିନ୍ନ ଉତ୍ସବ ମହୋତ୍ସବ ଥିଲା ଆନନ୍ଦଦାୟକ । ଭାରତର ସାଂସ୍କୃତିକ ପରମ୍ପରା ଅନୁଯାୟୀ ଆନନ୍ଦ ଭବନରେ ବିଭିନ୍ନ ପୂଜାପାର୍ବଣ ଆୟୋଜିତ ହେଉଥିଲା । ସେମିତି ମାଟି ଦୀପମାନଙ୍କ ସାହାଯ୍ୟରେ ଆଲୋକ ସାଜସଜ୍ଜା କରାଯାଉଥିଲା ଆନନ୍ଦ ଭବନକୁ । ଅନ୍ୟାନ୍ୟ ହିନ୍ଦୁ ପର୍ବପର୍ବାଣୀ-ମାନଙ୍କ ମଧ୍ୟରେ ଦଶହରା, ହୋଲି, ରାମନବମୀ, ଜନ୍ମାଷ୍ଟମୀ ଇତ୍ୟାଦି ଉତ୍ସବ ପାଳିତ ହେବା ସଙ୍ଗେ ସଙ୍ଗେ ମୁସଲମାନ ପର୍ବ—ବର୍ଷରେ ଦୁଇଟି ଇଦ୍ ପାଳନ କରାଯାଉଥିଲା । ଏତଦ୍‌ବ୍ୟତୀତ ଆଉ କେତେକ କାଶ୍ମୀରୀ ପର୍ବ ଯଥା ନୂତନ ବର୍ଷ ( Naoroz ) ପାଳନ କରିବାପାଇଁ ଆନନ୍ଦ ଭବନର ଲୋକେ ତତ୍ପର ହୋଇ ଉଠୁଥିଲେ । ତାହା ଥିଲା ଓଡ଼ିଶାର କୁମାର ଉତ୍ସବ ଭଳି ଏକ ଉତ୍ସବ । ସେଦିନ ଲୋକମାନେ ନୂତନ ବସ୍ତ୍ର ପରିଧାନ କରିବା ସଙ୍ଗେ ସଙ୍ଗେ କିଶୋର-କିଶୋରୀମାନେ କିଛି କିଛି ପଇସା ବା ଖେଳଣା ଇତ୍ୟାଦି ଉପହାର ପାଉଥିଲେ । ସେସବୁ ପର୍ବ-ପର୍ବାଣୀଗୁଡ଼ିକରୁ ଅତ୍ୟନ୍ତ ଆନନ୍ଦ ପାଉଥିଲେ ଇନ୍ଦିରା ।

**ଇନ୍ଦିରା ଓ ପୋଲିସ :—**

ଚାରି ବର୍ଷ ବୟସ୍କା ଇନ୍ଦିରା ପ୍ରଥମେ କଚେରୀକୁ ଯାଇଥିଲେ ଜେଜେ-ବାପାଙ୍କ ବିରୁଦ୍ଧରେ ଗୋଟିଏ ରାଜନୈତିକ କେସ୍‌ର ବିଚାର ଦେଖିବା ଲାଗି । ସେତେବେଳେ 'ଇଣ୍ଡିପେଣ୍ଡେଣ୍ଟ' ( Independent ) ନାମକ ଏକ ପତ୍ରିକା ସମ୍ପାଦନା କରୁଥିଲେ ମୋତିଲାଲ । ସେଥିରେ ଆପତ୍ତିଜନକ ସମ୍ବାଦ ପରିବେଷଣ କରିଥିବା କାରଣ ଦର୍ଶାଇ ଏକ ପରଓ୍ୱାନା ଜାରି କରିଥିଲେ ଇଂରେଜ ସରକାର ।

ତାଙ୍କର ସେ କେସ୍‌ର ବିଚାର ହେବା ନିର୍ଦ୍ଦିଷ୍ଟ ଦିନ ମୋତିଲାଲଙ୍କ ସହିତ ଇନ୍ଦିରା ମଧ୍ୟ କୋର୍ଟକୁ ଯାଇଥିଲେ । ପତ୍ରିକାରେ ପ୍ରକାଶିତ ସମ୍ବାଦଟି ଆପତ୍ତିଜନକ ନୁହେଁ ବୋଲି ପ୍ରମାଣ କରାଇବା ଲାଗି ମୋତିଲାଲଙ୍କ ପୁରାତନ ବନ୍ଧୁ ବିଶିଷ୍ଟ ଆଇନଜ୍ଞ ଶ୍ରୀଯୁକ୍ତ ବାନାର୍ଜୀଙ୍କ ସମସ୍ତ ଚେଷ୍ଟା ପଣ୍ଡ ହୋଇଥିଲା ଏବଂ ମୋତିଲାଲଙ୍କୁ ଛଅ ମାସ ଜେଲ ଦଣ୍ଡ ଭୋଗିବା ସଙ୍ଗେ ସଙ୍ଗେ ପାଞ୍ଚ ଶହ ଟଙ୍କା ଜୋରିମାନା ଦେବା ପାଇଁ ବିଚାରପତି ରାୟ ଦେଇଥିଲେ । ତାଙ୍କୁ ବିଚାରାଳୟରୁ ସିଧାସିଧା ପୋଲିସମାନେ ଜେଲ ହାଜତକୁ ନେଇଥିଲେ ଓ ଇନ୍ଦିରାଙ୍କୁ ତାଙ୍କ କୋଳରୁ ଛଡ଼ାଇ ଅଣାଯାଇଥିଲା । ଦାଦୁଙ୍କଠାରୁ ବଳାତ୍କାରରେ ଅଲଗା କରି ଅଣାସିବାରେ ଇନ୍ଦିରା ଶିଶୁସୁଲଭ ପ୍ରାଣ ନେଇ କାନ୍ଦିବାକୁ ଆରମ୍ଭ କରିଥିଲେ । କିନ୍ତୁ ଜେଜେବାପା ତାଙ୍କୁ ନ କାନ୍ଦି ସାହସୀ ହେବାକୁ ନିର୍ଦ୍ଦେଶ ଦେଇଥିଲେ । ନିରାଶ ଇନ୍ଦିରା ମନଦୁଃଖରେ ଘରକୁ ଫେରିଥିଲେ ସେଦିନ । ସେ ଘରକୁ ଫେରିବା ବେଳକୁ ପିତା ଜବାହରଲାଲଙ୍କୁ ମଧ୍ୟ ଜେଲ ହାଜତକୁ ନିଆ ହୋଇଥିଲା । ତାଙ୍କ ଅପରାଧ ଥିଲା—ହରତାଳ କରିବା ପାଇଁ ସେ ଜନସାଧାରଣଙ୍କ ମଧ୍ୟରେ ପ୍ରଚାରପତ୍ର ବାଣ୍ଟୁଥିଲେ । କେବଳ ଯେ ଜେଲଦଣ୍ଡ ଦିଆଯାଇଥିଲା ସେତିକି ନୁହେଁ, ମୋତିଲାଲଙ୍କ ଭଳି ତାଙ୍କୁ ମଧ୍ୟ ଜୋରିମାନା ଦେବାକୁ କୋର୍ଟ ନିର୍ଦ୍ଦେଶ ଦେଇଥିଲା ପାଞ୍ଚ ଶହ ଟଙ୍କା ।

ଏହି ଥିଲା ମୋତିଲାଲଙ୍କ ପ୍ରଥମ ଜେଲଯାତ୍ରା ।

ରାଜନୀତିରେ ବିଶେଷ କରି ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରିବା ସପକ୍ଷରେ ସେ ପ୍ରଥମେ ପ୍ରଥମେ ଆଦୌ ପକ୍ଷପାତୀ ନ ଥିଲେ । ତେଣୁ ବାସ୍ତବିକ୍ ସ୍ୱାଧୀନତା ସଂଗ୍ରାମ ଅନେକ ପୂର୍ବରୁ ଆରମ୍ଭ ହୋଇଥିଲେ ମଧ୍ୟ ବହୁତ ବିଳମ୍ବରେ ହିଁ ସେ ଅଂଶ ଗ୍ରହଣ କରିଥିଲେ । ତାର ପଛରେ ଥିଲା ମହାତ୍ମା ଗାନ୍ଧୀଙ୍କ ପ୍ରେରଣା । ଏପରି କି ତାଙ୍କ ପୁତ୍ର ଜବାହରଲାଲ ଅନେକ ସମୟରେ ପିତାଙ୍କ ଇଚ୍ଛା ବିରୁଦ୍ଧରେ ଯାଇଥିଲେ ଏବଂ ସେଇଥିପାଇଁ ଅନେକଥର ମୋତିଲାଲ ଓ ଜବାହର-ଲାଲଙ୍କ ମଧ୍ୟରେ ଯୁକ୍ତିତର୍କର ସୀମା ନ ଥିଲା । ତାହାକୁ କେନ୍ଦ୍ର କରି କମଳା ଓ ଜବାହରଲାଲଙ୍କ ମତ ପରିବାରର ଅନ୍ୟ ସଭ୍ୟମାନଙ୍କ ମତ ସହିତ ସମତା ରକ୍ଷା କରିପାରୁ ନ ଥିଲା କେତେ ଦିନ ପର୍ଯ୍ୟନ୍ତ । ଜବାହରଲାଲଙ୍କ ପନ୍ଥାକୁ କମଳା ସମର୍ଥନ କରୁଥିଲେ ମଧ୍ୟ ତାଙ୍କ ଶ୍ୱଶୁର ମୋତିଲାଲଙ୍କ ସାମନାରେ ସ୍ୱାମୀଙ୍କ ସପକ୍ଷରେ କହିବାକୁ ସାହସ କରୁ ନ ଥିଲେ । "ବାପ ପୁଅଙ୍କ ମଧ୍ୟରେ ଅନେକେ ବେଳେ ଦୀର୍ଘ ସମୟ ଧରି ଖୁବ୍ ଯୁକ୍ତିତର୍କ ସଙ୍ଘଟିତ ହୋଇ ଯାଉଥିଲା । ଖୋଲଖୋଲି ଭାବରେ ଶ୍ୱଶୁରଙ୍କୁ ବିରୋଧ କରିପାରୁ ନ ଥିଲେ ମଧ୍ୟ ଜବାହରଲାଲ ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ଲାଗି କମଳା ପକ୍ଷପାତୀ ଥିଲେ । ତାର କାରଣ ସମ୍ଭବତଃ କମଳା ନିଜେ ଜବାହାରଙ୍କ ଅପେକ୍ଷା ଗାନ୍ଧିଜୀଙ୍କ ଆଦର୍ଶରେ ଅଧିକ ମାତ୍ରାରେ

ପ୍ରଭାବିତ ହୋଇ ଯାଇଥିଲେ ।'' *ସ୍ୱାଧୀନତା ଆନ୍ଦୋଳନରେ ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗକରି ଦେଶ ପାଇଁ ଆତ୍ମବଳୀ ଦେବାଲାଗି ଗାନ୍ଧିଙ୍କ ଆହ୍ୱାନ କମଳାଙ୍କୁ ବେଶ୍ ପ୍ରଭାବିତ କରିଥିଲା । ସେ ବୈପ୍ଳବିକ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ଜୀବନର ଧାରା ବଦଳାଇବା ଲାଗି ସେ ଜବାହାରଲାଲଙ୍କୁ ମଧ୍ୟ ଉତ୍ସାହିତ କରିଥିଲେ ।

ଯେହେତୁ ପରିବାରର ଅନ୍ୟାନ୍ୟ ସଭ୍ୟମାନଙ୍କ ଭଳି କମଳା ମଧ୍ୟ ଗାନ୍ଧିଙ୍କ ସଂସ୍ପର୍ଶରେ ଆସିଥିଲେ ଏବଂ ମୋତିଲାଲ ବାପୁଜୀଙ୍କ ଚିନ୍ତାଧାରା ସହିତ ସାମିଲ ହେବାର ଅନେକ ପୂର୍ବରୁ ଜବାହରଲାଲଙ୍କ ସହ କମଳା ଗାନ୍ଧୀବାଦୀ ହୋଇ ସାରିଥିଲେ । ତେଣୁ ଜବାହର ଓ କମଳାଙ୍କ ମଧ୍ୟରେ ଥିବା ମତଗତ ପାର୍ଥକ୍ୟ କ୍ରମେ କ୍ରମେ ଦୂର ହୋଇପାରିଥିଲା ଅତି କମ୍ ସମୟରେ; ଖୁବ୍ କମ୍ ସମୟ ମଧ୍ୟରେ ଉଭୟଙ୍କ ଚିନ୍ତାଧାରା ନିର୍ଦ୍ଦିଷ୍ଟ ଲକ୍ଷ୍ୟ ବିନ୍ଦୁ ଆଡ଼କୁ ଧାବିତ ହୋଇଥିଲା । କିନ୍ତୁ ଯେହେତୁ ପରିବାରର ଅନ୍ୟ ସଭ୍ୟମାନେ ବିଳାସବ୍ୟସନ ତଥା ବିଦେଶୀ ଆଚାରବ୍ୟବହାର ତ୍ୟାଗ କରି ସମ୍ପୂର୍ଣ୍ଣ ଦେଶୀୟ ହେବାପାଇଁ କିଛି ଅଧିକ ସମୟ ଲାଗିଥିଲା ।

ଇନ୍ଦିରାଙ୍କ ବାବୁ ଓ ପାପୁ କେହି ଜୋରିମାନା ଦେବାକୁ ରାଜି ହୋଇ ନ ଥିଲେ; କାରଣ ସେତେବେଳେ ଜାତୀୟ କଂଗ୍ରେସ ନୀତି ନିର୍ଦ୍ଧାରଣ କରିଥିଲା ଯେ ଜୋରିମାନା ସ୍ୱରୂପ ପଇସାଟିଏ ମଧ୍ୟ ଇଂରେଜ ସରକାରଙ୍କୁ ଦେବା ଉଚିତ ହେବ ନାହିଁ । କିନ୍ତୁ ତେଣେ ସରକାରଙ୍କ କଠୋର ନୀତି । ଜୋରିମାନା ନ ଦେଲେ ଯେକୌଣସି ଉପାୟରେ ଟଙ୍କା ଆଦାୟ କରାଯିବ । ସରକାରଙ୍କ ନିର୍ଦ୍ଦେଶ ଫଳରେ ଏକ ହଜାର ଟଙ୍କାର ଜିନିଷପତ୍ର ଆନନ୍ଦ ଭବନରୁ ଜବତ୍ କରିବା ଲାଗି ପୋଲିସ ଫର୍ଣ୍ଣିଚ ଗାଡ଼ି ନେଇ ଆସି ପହଞ୍ଚି ଯାଇଥିଲେ । ସେମାନଙ୍କ ବ୍ୟବହାରରେ ଶିଶୁ ଇନ୍ଦିରା ଖୁବ୍ କ୍ଷୁବ୍ଧ ହୋଇଯାଇଥିଲେ । ମୋତିଲାଲଙ୍କ ଅତି ମୂଲ୍ୟବାନ ଆସବାବପତ୍ର, ଚଉକି, ଟେବୁଲ, ତଳେ ପଡ଼ିଥିବା ମୂଲ୍ୟବାନ କାଶ୍ମୀର ଗାଲିଚା ଇତ୍ୟାଦି ନେଇ ପୋଲିସ ଗାଡ଼ିରେ ଭରିବା ଦେଖି ଇନ୍ଦିରା ଏହାର ପ୍ରତିବାଦ କରିଥିଲେ । କିନ୍ତୁ ସେ ପ୍ରତିବାଦକୁ ସେମାନେ କାହିଁକି ବା ଭ୍ରୁକ୍ଷେପ କରନ୍ତେ ? ତେଣୁ ଆଉ କୌଣସି ଉପାୟ ନ ଦେଖି ଶେଷରେ ସେ ପୋଲିସମାନଙ୍କୁ ଗାଳିଦେବା ଆରମ୍ଭ କରି ଦେଇଥିଲେ । ପଣ୍ଡିତ ନେହେରୁ ସେ ସମ୍ପର୍କରେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, ''କଂଗ୍ରେସ ନୀତି ନିର୍ଦ୍ଧାରଣ କରିଥିଲା ଯେ ଜୋରିମାନା ସ୍ୱରୂପ ଅର୍ଥଦଣ୍ଡ ସରକାରଙ୍କୁ ଦିଆଯିବ ନାହିଁ । ତେଣୁ ଅର୍ଥଦଣ୍ଡ ଆଦାୟ କରିବାପାଇଁ ପୋଲିସ ବାରମ୍ବାର ଆମ ଘରକୁ ଆସି ମୂଲ୍ୟବାନ ଜିନିଷପତ୍ର ସବୁ ଜବତ୍ କରୁଥିଲେ ଓ ସେଗୁଡ଼ିକୁ ନେଇ ଯାଉଥିଲେ । ମୋର ଚାରି ବର୍ଷ ବୟସ୍କ କନ୍ୟା ଇନ୍ଦିରା, ବାରମ୍ବାର ସେଭଳି ଘଟୁଥିବା

* Sunday World Magazine—May 6th, 1973—P-2.

କାର୍ଯ୍ୟ ପାଇଁ ଅଡମାନ୍ତରେ ବିରକ୍ତ ହେଉଥିଲା ଏବଂ ପୋଲିସମାନଙ୍କ ନିକଟରେ ମଧ୍ୟ ସେମାନଙ୍କ ଗହିତକର କାର୍ଯ୍ୟକଳାପର ଦୃଢ଼ ପ୍ରତିବାଦ ଜଣାଉଥିଲା ।'' *

**ବିଦେଶୀ ବସ୍ତ୍ରର ବର୍ଜନ :—**

ସେତେବେଳକୁ ନେହେରୁ ପରିବାରର ପ୍ରାୟ ସମସ୍ତେ ବିଦେଶୀ ବସ୍ତ୍ରସବୁ ବର୍ଜନ କରି ହାତବୁଣା ଖଦଡ଼ ଲୁଗା ପିନ୍ଧିବା ଆରମ୍ଭ କରି ଦେଇଥିଲେ । ସ୍ୱଦେଶୀ ଆନ୍ଦୋଳନକୁ ଭିତ୍ତିକରି ଦେଶର ଗୃହଆଡ଼େ ବିଦେଶୀ ଜିନିଷ ବିକ୍ରି କରୁଥିବା ଦୋକାନମାନଙ୍କରେ ଧାଡ଼ିରେ ନିଆଁ ଲଗାଇ ଦିଆଯାଉଥିଲା । ସ୍ଥାନେ ସ୍ଥାନେ ବଡ଼ବାସ୍ତାମାନଙ୍କରେ ବିଦେଶୀ ବସ୍ତ୍ରସବୁ ଏକାଠି କରି ପୋଡ଼ି ଦିଆଯାଉଥିଲା । ଆହ୍ଲାବାଦ ଥିଲା ଏହାର କେନ୍ଦ୍ରସ୍ଥଳୀ । ଇନ୍ଦିରାଙ୍କ ମା' କମଳା, ଜେଜେମା ସ୍ୱରୂପାରାଣୀ, ପିଉସୀ କୃଷ୍ଣା ଓ ସ୍ୱରୂପାକୁମାରୀ ସମସ୍ତେ ଦାମିକା ବିଦେଶୀ ବସ୍ତ୍ରଗୁଡ଼ିକୁ ପୋଡ଼ି ପକାଉଥିଲେ । 'ସ୍ୱଦେଶୀ ଆନ୍ଦୋଳନ' ବା ବିଦେଶୀ ବସ୍ତ୍ର ବର୍ଜନର କାରଣ ନ ବୁଝିଲେ ମଧ୍ୟ ଇନ୍ଦିରା ବୁଝୁଥିଲେ ଦାଦୁ, ପାପୁ, ଜେଜେମା, ପିଉସୀମାନେ ଓ ଅନ୍ୟମାନେ ମଧ୍ୟ ବିଦେଶୀ ବସ୍ତ୍ରଗୁଡ଼ିକ ପୋଡ଼ି ପକାଉଛନ୍ତି, ବିଦେଶୀ ତିଆରି ଜିନିଷସବୁ ବର୍ଜନ କରୁଛନ୍ତି । ତାର ବଦଳରେ ସେମାନେ ବ୍ୟବହାର କରୁଛନ୍ତି ଦେଶୀ ହାତବୁଣା ଖଦଡ଼ ଲୁଗା ଓ ଭାରତରେ ତିଆରି ଅନ୍ୟାନ୍ୟ ଜିନିଷପତ୍ର ।

ଏହି ସମୟରେ ଥରେ ନେହେରୁ ପରିବାରର ଜଣେ ଘନିଷ୍ଠ ମହିଳା ଇନ୍ଦିରାଙ୍କ ଲାଗି ଗୋଟିଏ ଉପହାର ଆଣି ଦେଇଥିଲେ । ସେ ଉପହାର ଥିଲା ଏକ ଦାମିକା ପୋଷାକ । ତାହା ପ୍ୟାରିସରୁ ଅଣାଯାଇଥିଲା ଏବଂ ହାତବୁଣା କାରୁକାର୍ଯ୍ୟରେ ଚମତ୍କାର ଦେଖାଯାଉଥିଲା । କିନ୍ତୁ ନେହେରୁ ପରିବାରର ସମସ୍ତେ ସେତେବେଳକୁ ବିଦେଶୀ ବସ୍ତ୍ରସବୁ ପୋଡ଼ିବା ଆରମ୍ଭ କରି ଦେଇଥିବା ଦୃଷ୍ଟିରୁ କମଳା ତାକୁ ପସନ୍ଦ କରି ନ ଥିଲେ । ତଥାପି ମନର କଥା ମନ ଭିତରେ ଗୁପିରଖି କଣୋଣ୍ଣ ଇନ୍ଦିରା ଉପରେ ସେ ଉପହାର ଗ୍ରହଣ କରିବା ନ କରିବା ଭାର ଛାଡ଼ି ଦେଇଥିଲେ । ସତକୁ ସତ ପରିବାରର ସମସ୍ତଙ୍କୁ ଖୁସି କରାଇ ଇନ୍ଦିରା ତାହା ଗ୍ରହଣ କରି ନ ଥିଲେ; କାରଣ ତାହା ଥିଲା ଏକ ବିଦେଶୀ ଜିନିଷ । କମଳା ଏଥିରେ ଅତ୍ୟନ୍ତ ଖୁସି ହୋଇ କହିଥିଲେ—''ଆମେ କେବଳ ସ୍ୱଦେଶୀ ବସ୍ତ୍ର ପିନ୍ଧୁ ।''

ଏଥିରେ ଘନିଷ୍ଠ ମହିଳା ଜଣକର ମୁହଁ ଫିକା ପଡ଼ିଯାଇଥିଲା । ସେ ଶ୍ଳେଷକଟାକ୍ଷିତ ମନ ନେଇ ଇନ୍ଦିରାଙ୍କୁ କହିଥିଲେ, ''ଯଦି ତୁମେ ବିଦେଶୀ ବସ୍ତ୍ର ପରିଧାନ କରନାହିଁ, ବିଦେଶୀ ଖେଳଣାଗୁଡ଼ିକ ସହିତ ଖେଳୁଛ କାହିଁକି ?''

---

* Jawaharlal Nehru—Autobiography.

ଏ ପ୍ରଶ୍ନ ପ୍ରକୃତରେ କଣୋରୀ ଇନ୍ଦିରାଙ୍କ ମନ ଭିତରେ ଅନେକ ଆଲୋଡ଼ନ ସୃଷ୍ଟି କରିଥିଲା । ପ୍ରକୃତରେ କେତେକବାପାଙ୍କ ଦ୍ୱାରା ଆନୀତ କୌଣସି ଏକ ବିଦେଶୀ ଖେଳଣାକୁ ଏକାନ୍ତ ଭାବେ ଭଲ ପାଉଥିଲେ ସେ । କିନ୍ତୁ ସମ୍ପର୍କୀୟା ଜଣଙ୍କର ସେ ପ୍ରଶ୍ନ ଯେ ଏକ ନିଗୂଢ଼ ସତ୍ୟ, ଯାହାକୁ କି ସେ କୌଣସି ଦିନ ସ୍ୱୀକାର ନ ଥିଲେ, ତାହା ତାଙ୍କ ସମ୍ମୁଖରେ ଉନ୍ମୋଚିତ ହୋଇ ପଡ଼ିଥିଲା । ସେ ପ୍ରକୃତରେ ସ୍ଥିର କରିପାରି ନ ଥିଲେ କଅଣ କରିବେ; କିନ୍ତୁ ଶେଷରେ ସେ ଠିକ୍ କରିଥିଲେ ତାକୁ ଆଉ ବ୍ୟବହାର କରିବେ ନାହିଁ । ସମସ୍ତଙ୍କୁ ବିଶେଷକରି କମଳାଙ୍କୁ ବିସ୍ମୟାଭିଭୂତ କରାଇ ଦିନେ ସେ ଛାତ ଉପରେ ସେଇ ଖେଳଣାଗୁଡ଼ିକରେ ଅଗ୍ନିସଂଯୋଗ କରି ଦେଇଥିଲେ ।

କୁମାରୀ ଇନ୍ଦିରାଙ୍କ ବିଚାରବୁଦ୍ଧିର ପରିଚୟ ଏଥିରୁ ସ୍ପଷ୍ଟ ।

**ଆଶ୍ରମ ଜୀବନ :—**

ସେତେବେଳକୁ ଅହମ୍ମଦାବାଦରେ ନିଖିଳ ଭାରତ କଂଗ୍ରେସ କମିଟିର ବାର୍ଷିକ ଅଧିବେଶନ ବସିବାର ଥାଏ । ନିଜ ପରିବାରର କେତେକ ମହିଳା କର୍ମୀଙ୍କ ସହିତ ଇନ୍ଦିରା ଯାଇଥିଲେ ଗାନ୍ଧିଜୀଙ୍କ ସାବରମତୀ ଅଭିମୁଖେ । ସାବରମତୀର କଠୋର ଆଶ୍ରମ ଜୀବନ ଓ ଆନନ୍ଦ ଭବନର ବିଳାସମୟ ଜୀବନଯାପନ—ଦୁଇଟି ଥିଲା ସାମନ୍ତରାଳ ସରଳରେଖା ।

ଶିଶୁପ୍ରିୟ ଗାନ୍ଧିଜୀ କୁମାରୀ ଇନ୍ଦିରାଙ୍କୁ ଅତି ପ୍ରିୟ କରିନେଇ ପାରିଥିଲେ । ଯେଉଁ ଶିଶୁ ଦାଦୁ ଓ ପାପୁଙ୍କ ବିଚ୍ଛେଦରେ ମ୍ରିୟମାଣ ହୋଇ ପଡ଼ୁଥିଲେ, ସେ ଗାନ୍ଧିଜୀଙ୍କ ସ୍ନେହପୂର୍ଣ୍ଣ ଆଶ୍ୱାସନା ପାଇ ନିଜକୁ ଭୁଲି ପାରିଥିଲେ । ତାଙ୍କ ପିତୃସୁଲଭ ତଥା ଅକୃତ୍ରିମ ସ୍ନେହ ଇନ୍ଦୁ ମନରେ ସେତେବେଳେ ଦେଇପାରୁଥିଲା ଆଶ୍ୱାସନା ।

ଇନ୍ଦିରାଙ୍କ ବାଲ୍ୟଜୀବନ ଜନ୍ମଠାରୁ ସେତେବେଳ ପର୍ଯ୍ୟନ୍ତ ଆନନ୍ଦ ଭବନର ଐଶ୍ୱର୍ଯ୍ୟ ଭିତରେ ହିଁ କଟିଥିଲା । ଠିକ୍ ତାର ପରେ ପରେ ଆଶ୍ରମ ଜୀବନ ପ୍ରଥମେ ପ୍ରଥମେ ବିରକ୍ତିକର ବୋଧ ହୋଇଥିବ ନିଶ୍ଚୟ । କାରଣ ସେଠାରେ ଭୋର ଚାରିଟା ବେଳେ ଶଯ୍ୟାତ୍ୟାଗ କରିବାକୁ ହେଉଥିଲା । ତା ପରେ ପରେ ସାବରମତୀ କୂଳରେ ସମୂହ ପ୍ରାର୍ଥନାରେ ଯୋଗ ଦେବା, ଆତ୍ମନିର୍ଭରଶୀଳ୍ୟ, ବିନା ମସଲା ଏବଂ ସ୍ୱାଦହୀନ ଖାଦ୍ୟ ଖାଇବା, ତଳେ ଶେଯ ପାରି ଶୋଇବା, ପ୍ରତିଦିନ ନିଜ ରହିବା ଘର ଓ ନିଜେ ବ୍ୟବହାର କରୁଥିବା ବାସନକୁସନ ସଫା କରିବା ଥିଲା ଆଶ୍ରମର ନିୟମ ।

ଆଶ୍ରମର ଏ ପ୍ରକାର ସୁଶୃଙ୍ଖଳିତ ନିୟମକାନୁନ ଇନ୍ଦିରାଙ୍କ ପାଇଁ ପ୍ରଥମ ଥିଲା ଏବଂ ଖୁବ୍ ଅସ୍ୱସ୍ତିକରବୋଧ ହୋଇଥିଲା । କିନ୍ତୁ ସେ ପରେ ପରେ ଖୁବ୍ ଶୀଘ୍ର ସେ

ପ୍ରକାର ଜୀବନ ସହିତ ନିଜକୁ ସାମିଲ୍ କରାଇ ଦେଇଥିଲେ । କେବଳ ସେତିକି ନୁହେଁ, ବରଂ ଭବିଷ୍ୟତର କଠୋର ରାଜନୈତିକ ଜୀବନ ପାଇଁ ନିଜକୁ ପ୍ରସ୍ତୁତ କରାଇ ନେଇଥିଲେ । ଏ ସମ୍ପର୍କରେ କେ. ଏ. ଆବାସଙ୍କ ଉକ୍ତି ଉଦ୍ଧାର କରାଯାଇପାରେ । ତାଙ୍କ ମତରେ—"It is possible on the other hand, that even before she became aware of the implications of the life a political agitator, she was prepared and trained for it during those few days she had spent in Sabaramati. *

**ଆଶ୍ରମରୁ ଆନନ୍ଦ ଭବନ :—**

କିଛିଦିନ ପରେ ଇନ୍ଦିରା ଓ ଅନ୍ୟମାନେ ସାବରମତୀରୁ ଆହ୍ଲାବାଦକୁ ଫେରି ଆସିଥିଲେ । କିନ୍ତୁ ବିଶାଳ ଆନନ୍ଦ ଭବନ ନିରାନନ୍ଦ ମନେ ହେଉଥିଲା ଇନ୍ଦିରାଙ୍କୁ; କାରଣ ପାପୁ ଓ ଦାଦୁ ଥିଲେ ଜେଲରେ । ମା କମଳା ଓ ଜେଜେମା ସ୍ୱରୂପାରାଣୀ ସବୁବେଳେ ସଭା, ଶୋଭାଯାତ୍ରା, ପିକେଟିଂରେ ବ୍ୟସ୍ତ । ଦୁଇଜଣ ପିଉସୀ ସ୍ୱରୂପାକୁମାରୀ ଓ କୃଷ୍ଣା ସେମାନଙ୍କ ଅନୁଗାମିନୀ । ଉଭୟେ ଠିକ୍ ପୁଅ ପିଲାଙ୍କ ପରି ଖଦଡ଼ ତିଆରି କୁର୍ତ୍ତା ଓ ପାଇଜାମା ପିନ୍ଧି, ଗାନ୍ଧି ଟୋପି ମୁଣ୍ଡରେ ଲଗାଇ ରାଜନୈତିକ ପ୍ରଚାର ଉଦ୍ଦେଶ୍ୟରେ ଚାଲି ଯାଉଥିଲେ ।

ନେହେରୁ ପରିବାରର ସମସ୍ତେ ସେତେବେଳକୁ ସ୍ୱାଧୀନତା ଆନ୍ଦୋଳନର ଜଣେ ଜଣେ ପ୍ରତ୍ୟକ୍ଷ ସୈନିକ ହୋଇ ସାରିଥିଲେ । ସଂଗ୍ରାମର ଅନ୍ୟ ଏକ କେନ୍ଦ୍ର-ସ୍ଥଳ ଆହ୍ଲାବାଦ ବେଳକୁବେଳ ଅଧିକ ସରଗରମ ହୋଇ ଉଠିଥିଲା । ସହରର ଯେତେବେଳେ ଯେଉଁ ଦିଗକୁ ଚାହିଁବ ସଭା, ଶୋଭାଯାତ୍ରା କେବଳ ଦେଖାଯାଉଥିଲା—ଶୁଣାଯାଉଥିଲା ସତ୍ୟାଗ୍ରହୀମାନଙ୍କର ବିଭିନ୍ନ ଧ୍ୱନୀ । ବେଳେବେଳେ ଆନନ୍ଦ ଭବନ ହତା ଭିତରୁ ଉଚ୍ଚ ବାରଣ୍ଡା ଉପରେ ଛିଡ଼ାହୋଇ କୁମାରୀ ଇନ୍ଦିରା ଦେଖୁଥିଲେ ସ୍ୱେଚ୍ଛାସେବକମାନେ ହାତରେ ତିରଙ୍ଗା ପତାକା ଧରି ଇଂରେଜବିରୋଧୀ ଧ୍ୱନିରେ ଆକାଶ ପ୍ରକମ୍ପିତ କରି ଶୋଭାଯାତ୍ରା କରୁଥିଲେ । ବେଳେ ବେଳେ ମଧ୍ୟରାତ୍ରିରେ ଦେଖୁଥିଲେ ବିଭିନ୍ନ ସ୍ଥାନରେ ବିଦେଶୀ ବସ୍ତ୍ର ଏକାଠି କରି ସେଥିରେ ଯେଉଁ ଅଗ୍ନି ସଂଯୋଗ କରାଯାଉଥିଲା ତା'ର ଶିଖା ଅନ୍ଧାରକୁ ପରାହତ କରିବାପାଇଁ ବ୍ୟଗ୍ର । ଶିଶୁ ମନ ତାଙ୍କର ବ୍ୟାକୁଳ ହୋଇ ଉଠୁଥିଲା ସେଇ ନିକଟକୁ ଯିବାପାଇଁ ।

ଯେତେ ଇଚ୍ଛା କଲେ ମଧ୍ୟ ଇନ୍ଦିରାଙ୍କ ଅଭିଳାଷ ଅପୂର୍ଣ୍ଣ ରହୁଥିଲା । ଇନ୍ଦିରାଙ୍କ ଜିଦ୍, ସିଏ ମଧ୍ୟ ତାଙ୍କ ପିଉସୀମାନଙ୍କ ପରି ପୋଷାକ ପିନ୍ଧିବେ—ସେ ମଧ୍ୟ କଂଗ୍ରେସର ସ୍ୱେଚ୍ଛାସେବକ ଭଳି ଦେଖାଯିବେ ।

* K. A. Abbas—Return of the red rose—p-40.

ତାହା ହିଁ ହୋଇଥିଲା । କିନ୍ତୁ ଘର ଗୃହରୁ ବାହାରକୁ ଯିବା ଲାଗି ମନା । ପୁଣି ପିତା ଓ ପୁତ୍ରୀ—ଉଭୟେ ଉଭୟଙ୍କ ବିଚ୍ଛେଦରେ ମ୍ରିୟମାଣ ।

ଇନ୍ଦିରା ପ୍ରିୟଦର୍ଶିନୀ ସେତେବେଳେ ଲେଖାପଢ଼ା ଜାଣି ନ ଥିଲେ ମଧ୍ୟ ପିତା ଜବାହର ତାଙ୍କ ନିକଟକୁ ଚିଠି ଲେଖୁଥିଲେ ଜେଲ ଭିତରୁ, "ପ୍ରିୟ ଇନ୍ଦୁକୁ ପାପୁର ସ୍ନେହ । ଇନ୍ଦୁ, ତୁମେ ଖୁବ୍ ଶୀଘ୍ର ନିଜକୁ ପ୍ରସ୍ତୁତ କରିନେବାକୁ ହେବ ଏବଂ ଅକ୍ଷର ଲେଖି ପଢ଼ି ଶିକ୍ଷା କରିବାକୁ ହେବ । ମତେ ଦେଖିବାପାଇଁ ତୁମେ ଜେଲକୁ ଆସ । ତୁମକୁ ଦେଖିବାପାଇଁ ମୋର ପ୍ରବଳ ଇଚ୍ଛା ହେଉଛି । ଦାଦୁ ଦେଇଥିବା ଚରଖାରେ ସୂତା କାଟି ଶିଖିଲଣି ତ ? ଯଦି ସୂତା କାଟିଥାଅ ମୋ ପାଖକୁ ସେଥିରୁ କିଛି ପଠାଇବ । ମା'ଙ୍କ ସହିତ ପ୍ରତିଦିନ ପ୍ରାର୍ଥନାରେ ଯୋଗ ଦେଉଛ ତ ?" ଇତି

ତୁମର ପାପୁ

**ତୁଳସୀ ଦୁଇ ପତ୍ରରୁ ବାସେ :—**

ଛଅ ମାସ ହାଜତରେ ରହିବା ପରେ ସେତେବେଳେ ଦାଦୁ ଓ ପାପୁ ଜେଲରୁ ଫେରିଥିଲେ, ଇନ୍ଦିରାଙ୍କ ଆନନ୍ଦ କହିଲେ ନ ସରେ । କାରଣ ସେ ପାପୁଙ୍କ ସହିତ ଖେଳି ପାରିବେ, ବାହାରକୁ ବୁଲି ଯାଇପାରିବେ, ବିଭିନ୍ନ ପ୍ରଶ୍ନ ପଚାରି ପାରିବେ ।

କିନ୍ତୁ ଜେଲରୁ ଫେରିବା ପରେ ପରେ ସାଙ୍ଗଠନିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା କଳ୍ପନା କରିଥିଲେ ଜବାହରଲାଲ । ସେଇଥିପାଇଁ ତାଙ୍କୁ ଭାରତର ବିଭିନ୍ନ ସହର ତଥା ଦୂର ଦୂରାନ୍ତରରେ ରହିଥିବା ପଲ୍ଲୀପ୍ରାନ୍ତକୁ ମଧ୍ୟ ଯିବା ପାଇଁ ପଡ଼ୁଥିଲା । ସହର ଓ ଗ୍ରାମାଞ୍ଚଳ ଲୋକମାନଙ୍କୁ କଂଗ୍ରେସର ନୀତି ଓ ଆଦର୍ଶ ବୁଝାଇବା ଲାଗି ଏବଂ ସେମାନଙ୍କୁ ଜାତୀୟ ଜୀବନ-ଯଜ୍ଞରେ ଆହୁତି ଢାଳିବା ଲାଗି ପ୍ରେରଣା ଦେବାପାଇଁ ତାଙ୍କୁ ଅନେକ ସଭା ସମିତିରେ ବକ୍ତୃତା ଦେବାକୁ ପଡ଼ୁଥିଲା । କଂଗ୍ରେସକୁ ଜୀବନ୍ୟାସ ଦେବା କାର୍ଯ୍ୟରେ ବ୍ୟସ୍ତ ରହି ଇନ୍ଦିରାଙ୍କ ଶିକ୍ଷାର ଯତ୍ନ ସେ ନେଇପାରି ନ ଥିଲେ ।

କିଛିଦିନପାଇଁ ଦିଲ୍ଲୀର ଏକ କିଣ୍ଡରଗାର୍ଟେନ ସ୍କୁଲରେ ଶିକ୍ଷା ଲାଭ କରିଥିଲେ ଇନ୍ଦିରା । ତା'ପରେ ଆହ୍ଲାବାଦର ଏକ କୋନ୍‌ଭେଣ୍ଟ ସ୍କୁଲ ଓ ଏକ କନ୍‌ଭେଣ୍ଟ ସ୍କୁଲରେ ମଧ୍ୟ ଅଧ୍ୟୟନ କରିଥିଲେ ଅଳ୍ପକାଳ ଲାଗି । କିନ୍ତୁ କୌଣସି ସ୍କୁଲରେ ଅଧିକ କାଳ ଲାଗି ଅଧ୍ୟୟନ କରିବା ସୁଯୋଗ ସେ ପାଇ ନ ଥିଲେ । ସେ ଯେଉଁସବୁ ସ୍କୁଲରେ ଅଧ୍ୟୟନ କରିଥିଲେ ତାର ହିସାବ ରଖିବା କଷ୍ଟସାଧ୍ୟ ବୋଲି ସେ ନିଜେ ମଧ୍ୟ ମନେ କରିଥିଲେ । ତାଙ୍କ ନିଜ କହିବାନୁସାରେ "I changed schools so many times that it is difficult to keep track of all of them"

ନେହେରୁ ପରିବାରର ବିଶାଳ ରାଜପ୍ରାସାଦ ଆନନ୍ଦ ଭବନ ଭାରତୀୟ ସ୍ୱତନ୍ତ୍ରତା ଆନ୍ଦୋଳନର ମୁଖ୍ୟକେନ୍ଦ୍ର ହୋଇ ପଡ଼ିଥିଲା । ମହାତ୍ମା ଗାନ୍ଧୀ, ମଦନମୋହନ ମାଳବ୍ୟ, ଆବୁଲ କାଲାମ୍ ଆଜାଦ୍ ତଥା ଭାରତର ଅନ୍ୟାନ୍ୟ ନେତାମାନେ ପ୍ରାୟ ସେଠାକୁ ଆସୁଥିଲେ ଏବଂ ସ୍ୱାଧୀନତା ସଂଗ୍ରାମର କର୍ମପନ୍ଥା ବିଚାର କରୁଥିଲେ । ଇନ୍ଦିରାଙ୍କ ବାଲ୍ୟକାଳରୁ ହିଁ ସେହିମାନଙ୍କ ସହିତ ସମ୍ପର୍କ ବଢ଼ିବା ଯେମିତି ସ୍ୱାଭାବିକ ସେମାନଙ୍କ ବ୍ୟକ୍ତିତ୍ୱର ପ୍ରଭାବ ବାଳିକା ଇନ୍ଦିରା ଉପରେ ପଡ଼ିବା ସେମିତି ସମ୍ଭାବ୍ୟ । ପାପୁ ଓ ଦାଦୁଙ୍କ କୋଳରେ ରହି ରାଜନୈତିକ କାର୍ଯ୍ୟକଳାପଗୁଡ଼ିକର ଆଲୋଚନା ଶୁଣିବା ସୁଯୋଗ ସେ ସବୁଠାରୁ ବେଶି ପାଉଥିଲେ ।

ଇନ୍ଦିରାଙ୍କ ଯେତେବେଳେ ଛଅ ବର୍ଷ ବୟସ ସେତେବେଳେ ତାଙ୍କୁ ଅହ୍ଲାବାଦର ସେଣ୍ଟ୍ ସିସିଲିଆ ସ୍କୁଲରେ ଭର୍ତ୍ତି କରାଯାଇଥିଲା । ସେହି ସ୍କୁଲଟି ଜଣେ ୟୁରୋପୀୟ ମହିଳାଙ୍କଦ୍ୱାରା ପରିଚାଳିତ ହେଉଥିଲା । ମୋତିଲାଲଙ୍କ ଏ ପ୍ରକାର ବ୍ୟବସ୍ଥାକୁ ଜବାହରଲାଲ ପସନ୍ଦ କରି ନ ଥିଲେ । ତେଣୁ ପ୍ରିୟଦର୍ଶିନୀ ଇନ୍ଦୁର ଏ ପ୍ରକାର ଶିକ୍ଷା ବ୍ୟବସ୍ଥାରେ ପାପୁ ଜବାହରଲାଲ ଓ ଦାଦୁ ମୋତିଲାଲଙ୍କ ମଧ୍ୟରେ ମନୋମାଳିନ୍ୟ ସୃଷ୍ଟି ହୋଇଥିଲା । ବାପ ପୁଅଙ୍କର ଏ ମନାନ୍ତର ଯାଇ ପହଞ୍ଚିଥିଲା ମହାତ୍ମାଗାନ୍ଧୀଙ୍କ ନିକଟରେ । ଜବାହର ଚାହିଁଥିଲେ ଏକ ବିଦେଶୀ ମହିଳାଙ୍କ ଦ୍ୱାରା ପରିଚାଳିତ ସ୍କୁଲରେ ଇନ୍ଦୁର ଶିକ୍ଷା ଦିଆ ନ ଯାଉ । ଇନ୍ଦୁର ଶିକ୍ଷା ସମ୍ପର୍କୀୟ ଜବାହରଲାଲଙ୍କ ଏ ସଙ୍କୀର୍ଣ୍ଣ ମନୋଭାବ ମୋତିଲାଲ ଗାନ୍ଧିଜୀଙ୍କୁ ତାରବାର୍ତ୍ତା ଦ୍ୱାରା ଜଣାଇ ଦେଇଥିଲେ । ଜବାହରଲାଲ ମଧ୍ୟ ତାଙ୍କର ଯୁକ୍ତି ଗାନ୍ଧିଜୀଙ୍କ ନିକଟରେ ଉପସ୍ଥାପିତ କରିଥିଲେ । ତେବେ ଗାନ୍ଧିଜୀଙ୍କ ମଧ୍ୟସ୍ଥତା ଓ ପରାମର୍ଶ କ୍ରମେ ତା'ର ଏକ ସମାଧାନ ହୋଇଥିଲା ।

ବିଦେଶୀ ଶିକ୍ଷାନୁଷ୍ଠାନମାନଙ୍କରେ ଇନ୍ଦିରାଙ୍କ ଅଧ୍ୟୟନ ଫଳରେ ଇଂରେଜ ସାହିତ୍ୟ ପ୍ରତି ସେ ବିଶେଷ ଅନୁରକ୍ତ ହୋଇ ପଡ଼ିଥିଲେ । କୌଣସି ସ୍କୁଲରେ ଯଦିଓ ସେ ଦୀର୍ଘକାଳ ଲାଗି ଅଧ୍ୟୟନ କରି ନ ଥିଲେ, ତଥାପି ଜ୍ଞାନର ଅଭିବୃଦ୍ଧି ପାଇଁ ପ୍ରଶସ୍ତ କ୍ଷେତ୍ର ରହିଥିଲା ପାପୁ ଓ ଦାଦୁଙ୍କ ଲାଇବ୍ରେରୀ । ଅତି କମ୍ ବୟସରୁ ହିଁ ଇନ୍ଦିରା ସେକ୍ସପିୟର ଓ ବର୍ଣ୍ଣାଡ୍ ଶ'ଙ୍କ ରଚନାବଳୀ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ସବୁଠାରୁ ଅଧିକ ଉତ୍ସାହିତ ହୋଇଥିଲେ ଜନ୍ ଅଫ୍ ଆର୍କ (Joan-de-Arc)ଙ୍କ ଜୀବନ-କାହାଣୀ ପାଠ କରି । ତାଙ୍କ କିଶୋରୀ ଜୀବନରେ ଜନ୍ ଅଫ୍ ଆର୍କଙ୍କ କାର୍ଯ୍ୟକଳାପ ଓ ସେବା ମନୋଭାବ ତାଙ୍କୁ ସବୁଠାରୁ ଅଧିକ ଅନୁପ୍ରାଣିତ କରିଥିଲା ।

ଥରେ ତାଙ୍କ ଶ୍ରେଣୀରେ ଶିକ୍ଷକ ପଚାରିଥିଲେ—'ବଡ଼ ହେଲେ ସେ କ'ଣ କରିବାକୁ ଚାହାନ୍ତି ?' ସେଇ ପ୍ରଶ୍ନର ଉତ୍ତର ଦେଇ ସେହି ଶ୍ରେଣୀର ବିଭିନ୍ନ

ଛାତ୍ରଛାତ୍ରୀଙ୍କ ମଧ୍ୟରୁ ଅଧିକାଂଶ କହୁଥିଲେ—ଡାକ୍ତର, ଇଞ୍ଜିନିୟର ବା ଉଚ୍ଚପଦସ୍ଥ ସରକାରୀ ଅଫିସର ହେବା ଲାଗି ସେମାନଙ୍କ ଇଚ୍ଛା । ଶିକ୍ଷକ ମହାଶୟ ଇନ୍ଦିରାଙ୍କୁ ସେ ପ୍ରଶ୍ନ କରିବା ପରେ ଭାବୁଥିଲେ ସେ ମଧ୍ୟ ସେପରି କିଛି ଉତ୍ତର ପାଇବେ । କିନ୍ତୁ ଇନ୍ଦିରାଙ୍କ ଉତ୍ତର ଥିଲା—"ମୁଁ ଜନ୍ ଅଫ୍ ଆର୍କଙ୍କ ପରି ହେବାକୁ ଚାହେଁ ।"

ତୁଳସୀ ଦୁଇ ପତ୍ରରୁ ବାସେ—ଏ ଉକ୍ତି ସଂପୂର୍ଣ୍ଣ ସତ୍ୟ ବୋଲି ନିଃସନ୍ଦେହରେ ଇନ୍ଦିରାଙ୍କ ଉତ୍ତରରୁ ଧରି ନିଆଯାଇପାରେ ।

□□□

॥ ଚାରି ॥

# ଇଉରୋପର ଆକାଶ ତଳେ



କ୍ଷୀଣାଙ୍ଗୀ କମଳାଙ୍କ ମାନସିକ ସ୍ଥିତି ଦୃଢ଼ ରହୁଥିଲେ ମଧ୍ୟ ନିଜ ଶରୀର ଉପରେ ତାଙ୍କର କିଛି କର୍ତ୍ତୃତ୍ୱ ନ ଥିଲା । ଅଧିକାଂଶ ସମୟରେ ସେ ବିଭିନ୍ନ ରୋଗରେ ପୀଡ଼ିତ ରହୁଥିଲେ । ସ୍ୱଭାବତଃ ରୋଗିଣା କମଳାଙ୍କ ସ୍ୱାସ୍ଥ୍ୟ ଆହୁରି ଅଧିକ ଦୁର୍ବଳ ହୋଇ ପଡ଼ିଥିଲା ଇନ୍ଦିରାଙ୍କ ଜନ୍ମ ପରେ ପରେ ।

କୁମାରୀ ବୟସରେ ମା'ଙ୍କର ପ୍ରଭାବ ପ୍ରିୟଦର୍ଶିନୀଙ୍କ ଉପରେ ପଡ଼ିଥିଲା । ପରଜୀବନରେ ସେ ତାହା ନିଜେ ସ୍ୱୀକାର କରିଛନ୍ତି ଅନେକବାର । ସ୍ୱାମୀଙ୍କର ବିରାଟ ଗ୍ରନ୍ଥାଗାର ସହିତ କମଳା ପରିଚୟ କରାଇ ଦେଇଥିଲେ ଇନ୍ଦିରାଙ୍କୁ ଓ ଉତ୍କୃଷ୍ଟ ସାହିତ୍ୟ ତଥା ଭାରତୀୟ ମହାନ୍ ସଂସ୍କୃତିକୁ ନିଷ୍ଠାର ସହିତ ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ଆନ୍ତରିକ ଭାବେ ଭଲ ପାଇବାପାଇଁ ପରାମର୍ଶ ଦେଇଥିଲେ । ତତ୍ସମ୍ବନ୍ଧୀୟ ରଚନାବଳୀ ସମସ୍ତଙ୍କୁ ପାଠ କରିବାପାଇଁ ଉତ୍ସାହିତ ମଧ୍ୟ କରିଥିଲେ । ମନରେ ସାହସ ବାନ୍ଧି ଓ ଦୃଢ଼ ସଙ୍କଳ୍ପ କରି ଯେକୌଣସି କାର୍ଯ୍ୟ କରିବା ଲାଗି ଇନ୍ଦିରାଙ୍କୁ ଉତ୍ସାହ ଦେଇଥିଲେ ଠିକ୍ ଜବାହରଲାଲଙ୍କ ଭଳି । ଜବାହରଲାଲ ସବୁବେଳେ ଇନ୍ଦିରାଙ୍କୁ କହୁଥିଲେ, "Live dangerously"—ନିର୍ଭୀକ ଭାବରେ ଜୀବନ ଯାପନ କର । ତାଙ୍କର ଐତିହାସିକ ପତ୍ରାବଳୀ ଭିତରେ ଇନ୍ଦିରାଙ୍କ ନିକଟକୁ ସେ ଲେଖିଥିଲେ, "Be brave and all the rest follows. If you are brave you will not fear and will not do anything of which you are ashamed"

**ମଶୋରୀ ଯାତ୍ରା :—**

ଜବାହରଲାଲ ୧୯୨୦ ମସିହାରେ ରୋଗିଣୀ ପତ୍ନୀ କମଳା ଓ ରୋଗିଣୀ ମା'ଙ୍କୁ ନେଇ ମଶୋରୀ ଯାଇଥିଲେ ଚିକିତ୍ସାପାଇଁ ଡାକ୍ତରମାନଙ୍କ ପରାମର୍ଶ କ୍ରମେ । ସେତେବେଳକୁ ମୋତିଲାଲ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ ମଧ୍ୟ

ଓକିଲାତି ସମ୍ପୂର୍ଣ୍ଣ ରୂପେ ତ୍ୟାଗ କରି ନ ଥିଲେ । କୌଣସି ଏକ ମକଦ୍ଦମାର ଭାର ହାତକୁ ନେଇଥିବାରୁ ସେ ସ୍ତ୍ରୀ, ପୁତ୍ର ଓ ପୁତ୍ରବଧୂଙ୍କ ସହିତ ମଶୋରୀ ଯାଇପାରି ନ ଥିଲେ । ତେଣୁ ଜବାହରଲାଲଙ୍କୁ ସେ ଦାୟିତ୍ୱ ଗ୍ରହଣ କରିବାକୁ ପଡ଼ିଥିଲା । କର୍ମମୟ ଜୀବନ ଜଞ୍ଜାଳ ଓ ରାଜନୈତିକ ଝଞ୍ଜା ମଧ୍ୟରେ ରହି ଜବାହରଲାଲ ମଧ୍ୟ ଚାହୁଁଥିଲେ ଜଳବାୟୁର ପରିବର୍ତ୍ତନ; ଖୁବ୍ କମ୍ ସମୟପାଇଁ ହେଲେ ମଧ୍ୟ ।

ସେ ମଶୋରୀରେ ମାତା ଓ ସ୍ତ୍ରୀଙ୍କ ସହିତ ଯେଉଁ ହୋଟେଲରେ ରହିଥିଲେ ସେଇ ହୋଟେଲରେ ରହୁଥିଲେ ଆଫଗାନିସ୍ଥାନର ଏକ ନେତୃସ୍ଥାନୀୟ ପ୍ରତିନିଧି-ମଣ୍ଡଳ । ୧୯୧୯ ମସିହାର ଆଫଗାନ୍ ଯୁଦ୍ଧ ପରେ ସେଇ ପ୍ରତିନିଧିମଣ୍ଡଳ ଆସିଥିଲେ ବ୍ରିଟିଶ ସରକାରଙ୍କ ସହିତ ଏକ ଶାନ୍ତି ଚୁକ୍ତି କରିବାପାଇଁ । ଏକା ହୋଟେଲରେ ରହୁଥିଲେ ମଧ୍ୟ ସେମାନଙ୍କ ସହିତ କୌଣସି ମନ୍ତ୍ରଣା କରିବା ଅଭିପ୍ରାୟ ଜବାହର-ଲାଲଙ୍କର ନ ଥିଲା । ବିଶେଷ କରି ଜବାହରଲାଲ ପ୍ରଥମେ ଜାଣି ନ ଥିଲେ ଯେ ସେମିତି ଗୋଟିଏ ଦଳ ସେହି ହୋଟେଲରେ ଅବସ୍ଥାନ କରିଛନ୍ତି । କିନ୍ତୁ ଇଂରେଜ ସରକାର ଆଶଙ୍କା କରିଥିଲେ ଜବାହରଲାଲ ସେଇ ଗୋଟିଏ ସ୍ଥାନରେ ରହୁଥିବା ଯୋଗୁଁ ପ୍ରତିନିଧିମାନଙ୍କ ସହିତ ମିଳାମିଶା କରିବେ ଏବଂ ଇଂରେଜ ସରକାରଙ୍କ ବିରୁଦ୍ଧରେ କିଛି କୁମନ୍ତ୍ରଣା କରିବେ । ଭାରତର ରାଜନୈତିକ କ୍ଷେତ୍ରରେ ଯେଉଁ ନିଶଙ୍କୁ ଅବସ୍ଥା ଉପୁଜିଥିଲା ଏବଂ ଜବାହରଲାଲ ଆନ୍ଦୋଳନର ନେତୃତ୍ୱ ନେବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କର ଯେପରି ପ୍ରିୟ ହୋଇ ଉଠୁଥିଲେ ଓ ସେମାନଙ୍କ ଉପରେ ଯେଉଁ ପ୍ରକାର ପ୍ରଭାବ ପକାଇ ପାରୁଥିଲେ, ବ୍ରିଟିଶ ସରକାରଙ୍କ ଅବସ୍ଥା କ୍ରମେ କ୍ରମେ ଅସମ୍ଭାଳ ହୋଇ ଉଠୁଥିଲା । ତେଣୁ ଜବାହରଲାଲଙ୍କ ସାଧାରଣ ଗତିବିଧି ଏବଂ ବ୍ୟକ୍ତିଗତ ବା ପାରିବାରିକ କାର୍ଯ୍ୟକଳାପକୁ ମଧ୍ୟ ସରକାର ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ଜବାହରଲାଲଙ୍କ ମଶୋରୀ ରହଣି ସମ୍ପୂର୍ଣ୍ଣ ପାରିବାରିକ ହୋଇଥିଲେ ମଧ୍ୟ ବ୍ରିଟିଶ ସରକାର ଚାହିଁଥିଲେ ଆଫଗାନିସ୍ଥାନ ପ୍ରତିନିଧିମଣ୍ଡଳର କୌଣସି ସଦସ୍ୟଙ୍କ ସହିତ ଜବାହରଲାଲ ସମ୍ପର୍କ ରଖିବେ ନାହିଁ ବୋଲି ଲିଖିତ ପ୍ରତିଶ୍ରୁତି ଦିଅନ୍ତୁ । ଏହାକୁ ସମ୍ପୂର୍ଣ୍ଣ ନିରର୍ଥକ ମନେକରି ଜବାହରଲାଲ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ତା'ର ପରିଣାମ ସ୍ୱରୂପ ଚବିଶ ଘଣ୍ଟା ଭିତରେ କେବଳ ସେଇ ସ୍ଥାନ ନୁହେଁ, ସେଇ ଜିଲ୍ଲା ତ୍ୟାଗକରି ଚାଲିଯିବାପାଇଁ ତାହାଙ୍କୁ ଆଦେଶ ହୋଇଥିଲା ସରକାରଙ୍କ ତରଫରୁ ଏବଂ ବିନା ପ୍ରତିବାଦରେ ସେ ତାହା ପାଳନ କରିଥିଲେ ।

କିନ୍ତୁ ପରେ ପରେ ଇଂରେଜ ସରକାର ସେ ଧାରଣା ଭୁଲ ବୋଲି ଅନୁଭବ କରି ଜାରି କରାଇଥିବା ଆଦେଶନାମାକୁ ପ୍ରତ୍ୟାହାର କରି ନେଇଥିଲେ ।

ଇତି ମଧ୍ୟରେ ମୋତିଲାଲଙ୍କ ମକଦ୍ଦମା କାର୍ଯ୍ୟ ଶେଷ ହୋଇଥିଲା । ତେଣୁ ଜବାହରଲାଲ ପିତାଙ୍କ ସହିତ ପୁଣି ମଶୋରୀ ଫେରି ଆସିଥିଲେ । ବ୍ରିଟିଶ

ସରକାରଙ୍କର ଜବାହରଲାଲଙ୍କ ପ୍ରତି ଆଦେଶନାମା ଓ ତା'ର ପ୍ରତ୍ୟାହାର—ଉଭୟ ସମ୍ବାଦ ପ୍ରଥମେ ଆଫଗାନସ୍ଥାନର ପ୍ରତିନିଧିମାନେ ହିଁ ଖବରକାଗଜରୁ ଦେଖିବାକୁ ପାଇଥିଲେ । ତା ପୂର୍ବରୁ ସେ ସମ୍ପର୍କରେ କୌଣସି ସୂଚନା ସେମାନେ ପାଇ ନ ଥିଲେ । ଜବାହରଲାଲ ମଶୋରି ଫେରିବା ପରେ ଦେଖିଥିଲେ ଯେ ସେ ଦଳର ସଦସ୍ୟମାନେ ଇନ୍ଦିରାଙ୍କୁ ଖୁବ୍ ଆଦର କରୁଥିଲେ, କୋଳ କରୁଥିଲେ ଏବଂ କମଳାଙ୍କ ଲାଗି ପ୍ରତିଦିନ ଫୁଲତୋଡ଼ା ଇତ୍ୟାଦି ଉପହାରମାନ ପଠାଉଥିଲେ ତାଙ୍କର ଠାକୁର ପୂଜାପାଇଁ । ଇଂରେଜ ସରକାରଙ୍କ ସେ ଆଦେଶନାମା ଯୋଗୁଁ ଜବାହରଲାଲଙ୍କ କୌଣସି କ୍ଷତି ହୋଇ ନ ଥିଲା, ବରଂ ଆଫଗାନ ପ୍ରତିନିଧିମାନଙ୍କର ନେହେରୁ ପରିବାର ପ୍ରତି ଶ୍ରଦ୍ଧା ଓ ସମ୍ମାନ ବୃଦ୍ଧି ପାଇଥିଲା ।

ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱତନ୍ତ୍ରତା ସଂଗ୍ରାମ ଚାଲିଥିଲା । ୧୯୨୧ ମସିହାରେ କଂଗ୍ରେସର ସ୍ୱେଚ୍ଛାସେବକମାନେ ବ୍ୟକ୍ତିଗତ ଭାବରେ ସତ୍ୟାଗ୍ରହ କରିବା ଆରମ୍ଭ କରି ଦେଇ ଥିଲେ । ତେଣୁ ସମଗ୍ର ଦେଶରେ ସେମାନଙ୍କ ପ୍ରତି ଅତ୍ୟାଚାର କରାଯାଉଥିଲା ଏବଂ ଗିରଫ କରାଯାଉଥିଲା ବିଭିନ୍ନ କାରଣ ଦର୍ଶାଇ । ଇଂରେଜ ସରକାର ଯେତେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଥିଲେ ମଧ୍ୟ ସେ ଆନ୍ଦୋଳନ କୌଣସିମତେ ପ୍ରଶମିତ ନ ହେଉଥିବାରୁ ଯେକୌଣସି ପ୍ରକାରେ ଆନ୍ଦୋଳନକୁ ଚପାଇ ଦେବା ଲାଗି ବିଶେଷ ଚିନ୍ତିତ ଥିଲେ । ସେ ପ୍ରକାର ଅହିଂସା ସତ୍ୟାଗ୍ରହର କି ପ୍ରକାର ମୁକାବିଲା କରାଯାଇ-ପାରିବ, ତା'ର କୌଣସି ରାସ୍ତା ଖୋଜି ପାଇପାରୁ ନ ଥିଲେ । ସେ ଅଶାନ୍ତ ବାତାବରଣକୁ ସୁଧାରିବା ପାଇଁ ସରକାର ଇଂଲଣ୍ଡର ରାଜକୁମାର ପ୍ରିନ୍ସ ଅଫ୍ ୱେଲ୍ସ (Prince of Wales)ଙ୍କୁ ଭାରତ ଭ୍ରମଣରେ ଆସିବାପାଇଁ ନିମନ୍ତ୍ରଣ ଜଣାଇବାକୁ ନିଷ୍ପତ୍ତି ନେଇଥିଲେ । ଯଦିଓ Prince of Wales ପ୍ରକୃତରେ ଅତ୍ୟନ୍ତ ଲୋକପ୍ରିୟ ଥିଲେ, ତଥାପି କଂଗ୍ରେସ ନିଷ୍ପତ୍ତି ନେଇଥିଲା ଯେ ୱେଲ୍ସ ରାଜକୁମାରଙ୍କ ଭାରତ ଆଗମନକୁ କୌଣସି ମତେ ଅଭିନନ୍ଦିତ କରାଯିବ ନାହିଁ । ତାହା ପରେ ପରେ ଜବାହରଲାଲ ଓ ମୋତିଲାଲଙ୍କୁ ଗିରଫ କରାଯାଇଥିଲା । ପିତା ପାଇଥିଲେ ଛଅମାସ ଜେଲ ସଙ୍ଗେ ସଙ୍ଗେ ପାଞ୍ଚ ଶହ ଟଙ୍କା ଲେଖାଏଁ ଜୋରିମାନା ଦେବାକୁ ପଡ଼ିବ ।

ମୋତିଲାଲ ୧୯୨୨ରେ ଜେଲ୍‌ରେ ଥିବାବେଳେ ଜାତୀୟ କଂଗ୍ରେସ ଦଳ ମଧ୍ୟରେ ଗୋଟିଏ ସ୍ୱରାଜ ଗୋଷ୍ଠୀ ଗଠନ କରିଥିଲେ । ସେମାନଙ୍କର ମତ ଥିଲା ବିଧାନସଭାକୁ ନିର୍ବାଚିତ ହୋଇ ଭାରତର ସ୍ୱାଧୀନତା ସଂଗ୍ରାମକୁ ତ୍ୱରାନ୍ୱିତ କରା-ଯାଇପାରେ ଏବଂ ସେହିଠାରେ ହିଁ ସ୍ୱରାଜ୍ୟ ଅଧିକାରକୁ ଆଇନାନୁଗତ ପନ୍ଥାରେ ଦାବି କରାଯାଇପାରେ । କିନ୍ତୁ ମହାତ୍ମା ଗାନ୍ଧୀ ଏହା ସହିତ ଏକମତ ନ ଥିଲେ । ବିଧାନସଭାର ସଭ୍ୟ ନିର୍ବାଚିତ ହେବାକୁ ପସନ୍ଦ ନ କରି ସେ ଚାହୁଁଥିଲେ ସ୍ୱରାଜ୍ୟ

ପାଇବା ପାଇଁ ବାହାରେ ବାହାରେ ରହି ସଂଗ୍ରାମ କରିବାକୁ ହେବ । ଏ ସମ୍ପର୍କରେ ୧୯୨୪ ମସିହାରେ ଅନେକ ଆଲୋଚନା କରିଥିଲେ ମୋତିଲାଲ ଓ ମହାତ୍ମା ଗାନ୍ଧୀ । ତଥାପି ସେମାନେ କୌଣସି ନିର୍ଦ୍ଦିଷ୍ଟ ସମାଧାନରେ ପହଞ୍ଚି ପାରି ନ ଥିଲେ । ସେତେବେଳ ପର୍ଯ୍ୟନ୍ତ ମୋତିଲାଲଙ୍କ ବିଶ୍ୱାସ ନ ଥିଲା ଯେ କେବଳ ଅହିଂସା ନୀତି ଅନୁସରଣ କରି ଭାରତର ସ୍ୱାଧୀନତା କୌଣସି କାଳେ ଅଣାଯାଇପାରିବ ।

ଏ ପ୍ରକାର ମତପାର୍ଥକ୍ୟ ଭିତରେ ମନୋନିବେଶ କରିବାପାଇଁ ଜବାହରଲାଲ ଗୃହୀ ନ ଥିଲେ, ବରଂ ଗୃହୀ ଥିଲେ ନିଜ ପରିବାର ଭିତରେ କିଛି ସମୟ ବିତାଇ ଦେଇପାରିଲେ ଭଲ । ସେଇଥିପାଇଁ ପରିବାରର ସମସ୍ତେ ବିଶେଷକରି ଇନ୍ଦିରା ଖୁବ୍ ଖୁସି ହୋଇ ଯାଇଥିଲେ । କାରଣ ଜବାହରଲାଲଙ୍କ ଯେ ନିଷ୍ପତ୍ତି ଫଳରେ ପାପୁଙ୍କ ସହିତ ଖେଳିବା, ବୁଲିଯିବା ଓ ବିଭିନ୍ନ ବିଷୟରେ କଥାବାର୍ତ୍ତା ହେବାପାଇଁ ଇନ୍ଦିରା ଅନେକ ସମୟ ପାଉଥିଲେ ।

୧୯୨୪ ମସିହାରେ ଜବାହରଲାଲଙ୍କ ଏକ ପୁତ୍ର ସନ୍ତାନ ହୋଇଥିଲା । ଶ୍ରେଷ୍ଠ ଭାଇଟିଏ ପାଇ ଇନ୍ଦିରା ଅତ୍ୟନ୍ତ ଆନନ୍ଦିତ ହୋଇଯାଇଥିଲେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା—ସେ ଆନନ୍ଦ ଅତି ଅଳ୍ପ ସମୟ ଭିତରେ ଦୂରୀଭୂତ ହୋଇଥିଲା । ମାତ୍ର ଗୋଟିଏ ସପ୍ତାହ ପରେ ପିତା, ମାତା ଓ ପରିବାରବର୍ଗଙ୍କୁ ଦୁଃଖରେ ମ୍ରିୟମାଣ ହେବାକୁ ହୋଇଥିଲା ଶିଶୁଟିର ମୃତ୍ୟୁରେ । ଏ ଦୁର୍ଘଟଣା ପରେ ପରେ କମଳାଙ୍କ ସ୍ୱାସ୍ଥ୍ୟର ଅବନତି ଘଟିବା ଆରମ୍ଭ ହୋଇଯାଇଥିଲା ଏବଂ ତାହା ପରିଶେଷରେ ଦୁରାରୋଗ୍ୟ ଯକ୍ଷ୍ମା ରୋଗରେ ରୂପାନ୍ତରିତ ହୋଇଯାଇଥିଲା ।

• ୧୯୨୫ ମସିହା ଶରତ୍ ଋତୁ ବେଳକୁ କମଳାଙ୍କ ସ୍ୱାସ୍ଥ୍ୟର ଅବସ୍ଥା ଶୋଚନୀୟ ହୋଇଥିଲା । ସେ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଥିଲେ । ସ୍ୱାସ୍ଥ୍ୟର ଉନ୍ନତି ଲାଗି ଲକ୍ଷ୍ନୌର ଗୋଟିଏ ହସ୍ପିଟାଲରେ ପ୍ରାୟ ଏକମାସ ପର୍ଯ୍ୟନ୍ତ ଚିକିତ୍ସିତ ହୋଇଥିଲେ । ସେତେବେଳକୁ ଜବାହରଲାଲ ଥିଲେ ଜାତୀୟ କଂଗ୍ରେସର ସମ୍ପାଦକ । ଆଗାମୀ କଂଗ୍ରେସ ଅଧିବେଶନ କାନପୁରଠାରେ ଅନୁଷ୍ଠିତ ହେବାପାଇଁ ସ୍ଥିର ହୋଇଥିଲା । ସେଥିପାଇଁ ଆବଶ୍ୟକ ପ୍ରସ୍ତୁତି କରିବା ସଙ୍ଗେ ସଙ୍ଗେ ଏଣେ ରୋଗଗ୍ରସ୍ତା ପତ୍ନୀ କମଳାଙ୍କ ସ୍ୱାସ୍ଥ୍ୟର ତତ୍ତ୍ୱାବଧାନ ମଧ୍ୟ କରିବାକୁ ପଡ଼ୁଥିଲା । ସେଥିପାଇଁ ଅତ୍ୟନ୍ତ ପରିଶ୍ରମ କରୁଥିଲେ ଜବାହରଲାଲ । ସେ କାନପୁର, ଲକ୍ଷ୍ନୌ ଓ ଆହ୍ଲାବାଦକୁ ବରାବର ଯିବା ଆସିବା କରୁଥିଲେ ଅବିଶ୍ରାନ୍ତ ଭାବେ ।

**ସ୍ୱିଜରଲାଣ୍ଡରେ ଇନ୍ଦିରା :—**

କମଳାଙ୍କ ସ୍ୱାସ୍ଥ୍ୟ ତନ୍ନ ତନ୍ନ କରି ପରୀକ୍ଷା କରିବା ପରେ ଡାକ୍ତର ଆନ୍‌ସାରୀ ପରାମର୍ଶ ଦେଇଥିଲେ ଯେ ତାଙ୍କର ଚିକିତ୍ସା ପାଇଁ ତାହାଙ୍କୁ ଅତିଶୀଘ୍ର ସ୍ୱିଜରଲାଣ୍ଡ

ନେବା ଆବଶ୍ୟକ । ସେହି କାରଣରୁ ଜବାହରଲାଲ ସ୍ତ୍ରୀ କମଳା ଓ କନ୍ୟା ଇନ୍ଦିରାଙ୍କୁ ନେଇ ୧୯୨୬ ମସିହା ମାର୍ଚ୍ଚ ମାସରେ ସ୍ୱିଜରଲାଣ୍ଡ ଯାତ୍ରା କରିଥିଲେ । ଆଲ୍ଲାବାଦରୁ ବମ୍ବେ ଓ ବମ୍ବେରୁ ଜାହାଜ ଯୋଗେ ଭେନିସ୍ ଦେଇ ଜେନେଭା ଯାତ୍ରା କରିଥିଲେ । ସେମାନଙ୍କ ସହିତ ମଧ୍ୟ ଯାତ୍ରା କରିଥିଲେ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଏବଂ ତାଙ୍କ ସ୍ୱାମୀ ଆର. ଏସ୍. ପଣ୍ଡିତ । ସେ ଯାତ୍ରାରେ ସବୁଠାରୁ ବେଶୀ ଆନନ୍ଦ ପାଇଥିଲେ ଇନ୍ଦିରା । ପ୍ରିୟଦର୍ଶିନୀ ଇନ୍ଦିରା ପିତାଙ୍କ ସହିତ ଜାହାଜର ଡେକ୍ ଉପରେ ଖେଳିବାକୁ ଆନନ୍ଦ ପାଉଥିଲେ ଓ ଅଧିକାଂଶ ସମୟ ସେଠି ଖେଳ ଖେଳି ବିତାଇ ଦେଉଥିଲେ । ସନ୍ଧ୍ୟା ସମୟରେ ସମୁଦ୍ରର ଅଥଳ ଜଳରାଶି ଓ ଆକାଶର ସବୁଜିମା ବିଶେଷ ମୁଗ୍ଧ କରି ରଖୁଥିଲା ଇନ୍ଦିରାଙ୍କୁ । ଭାରତୀୟ ଇତିହାସରେ ସୁବର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବା ଅନେକ ଗଳ୍ପ ବା କାହାଣୀ ଜବାହରଲାଲ ଶୁଣାଉଥିଲେ ଇନ୍ଦିରାଙ୍କୁ । ସେମାନଙ୍କ ମଧ୍ୟରେ ଥିଲା ଅଶୋକ, ଆକବର ପ୍ରଭୃତି ଆଦର୍ଶ ରାଜାମାନଙ୍କର ରାଜତ୍ୱର କାହାଣୀ— ପ୍ରଜାମାନଙ୍କ ମଙ୍ଗଳ ଲାଗି ସେମାନଙ୍କ କାର୍ଯ୍ୟକଳାପର ଇତିହାସ । କେବଳ ସେତିକି ନୁହେଁ, ଯେଉଁମାନେ ଦେଶ ପାଇଁ ପ୍ରାଣବଳି ଦେଇଛନ୍ତି ସେମାନଙ୍କର ଜୀବନ ଇତିହାସ ତଥା ବୀରୋଚିତ କାର୍ଯ୍ୟକଳାପ ବିଷୟରେ ଶୁଣିବାକୁ ଇନ୍ଦିରା ଆଗ୍ରହ ପ୍ରକାଶ କରୁଥିଲେ ।

ସ୍ୱିଜରଲାଣ୍ଡରେ ପହଞ୍ଚିବା ପରେ ଆଲପ୍ସ ପର୍ବତମାଳାର ସ୍ୱାସ୍ଥ୍ୟକର ତଥା ଆରାମଦାୟକ ଜଳବାୟୁ ଏବଂ ତା ସଙ୍ଗକୁ ସେଠାକାର ଅଭିଜ୍ଞ ଡାକ୍ତରମାନଙ୍କ ଚିକିତ୍ସା ଫଳରେ କମଳାଙ୍କ ସ୍ୱାସ୍ଥ୍ୟର ଉନ୍ନତି ଘଟିଥିଲା । ଜବାହର, ଇନ୍ଦିରା, ବିଜୟଲକ୍ଷ୍ମୀ ପଣ୍ଡିତ ଓ ତାଙ୍କ ସ୍ୱାମୀ ସ୍ୱିଜରଲାଣ୍ଡ, ଜେନେଭା ଓ ମୋନ୍ତାନା ନାମକ ଏକ ପାର୍ବତ୍ୟ ଉପତ୍ୟକା ଅଞ୍ଚଳରେ ପ୍ରାୟ ସମସ୍ତ ସମୟ ଅତିବାହିତ କରୁଥିଲେ । କମଳା ଚିକିତ୍ସିତ ହେବାପାଇଁ ମନ୍ତେନା ଶୈଳନିବାସରେ ଅବସ୍ଥାନ କରୁଥିଲେ । ସେତେବେଳେ ଜବାହରଲାଲଙ୍କ ଜ୍ୟେଷ୍ଠ ଭଉଣୀ କୃଷ୍ଣା ମଧ୍ୟ ଯାଇ ସେମାନଙ୍କ ସହିତ ଯୋଗ ଦେଇଥିଲେ । ସ୍ୱିଜରଲାଣ୍ଡର ପାର୍ବତ୍ୟ ଅଞ୍ଚଳ ଏବଂ ଉପତ୍ୟକାଗୁଡ଼ିକ ନେହେରୁ ପରିବାରର ସମସ୍ତଙ୍କୁ ଖୁବ୍ ଆନନ୍ଦ ଦେଇଥିଲା । ସେମାନେ ସେଠାରେ କେତେବେଳେ ପର୍ବତାରୋହଣ କରୁଥିଲେ ତ ଆଉ କେତେ-ବେଳେ ବା ବରଫ ଉପରେ ସ୍କେଟିଂ ଅଥବା ସ୍କିଇଙ୍ଗ୍ ଖେଳୁଥିଲେ । ଇନ୍ଦିରା ମଧ୍ୟ ପିତାଙ୍କ ସହିତ ସେସବୁରେ ଯୋଗ ଦେଉଥିଲେ । ଫଳରେ ଇନ୍ଦିରାଙ୍କ ସମେତ ଜବାହର ମଧ୍ୟ ଆନନ୍ଦ ପାଉଥିଲେ । ପ୍ରକୃତରେ ସ୍କିଇଙ୍ଗ୍ ଖେଳିବା ଜବାହରଙ୍କୁ ଜଣା ନ ଥିଲା । ସେହିଠାରେ ହିଁ ସେ ଖେଳ ଆରମ୍ଭ କରିଥିଲେ । ତେଣୁ ଅନେକଥର ବରଫ ଉପରେ କଚାଡ଼ି ହୋଇ ପଡ଼ିଥିଲେ ମଧ୍ୟ ସେ ଖେଳ ଶିକ୍ଷା କରିବାରୁ ପଛକୁ ହଟି ନ ଥିଲେ । ତେବେ ଆସ୍ତେ ଆସ୍ତେ ତାହା ଶିକ୍ଷା କରିସାରିବା ପରେ ସେଥିରୁ ପ୍ରଚୁର ଆନନ୍ଦ ପାଇଥିଲେ ସେ ।

ସ୍ୱିଜରଲାଣ୍ଡରେ କିଛିଦିନ ଅବସ୍ଥାନ କରିବାପରେ ଯେତେବେଳେ କମଳାଙ୍କ ସ୍ୱାସ୍ଥ୍ୟର ପରିବର୍ତ୍ତନ ହେଲା ଓ କ୍ରମେ କ୍ରମେ ଅବସ୍ଥା ଭଲ ଆଡ଼କୁ ଗତି କରିଥିଲା, ଜବାହରଲାଲ କୁମାରୀ ଇନ୍ଦିରାଙ୍କୁ ନେଇ ଲଣ୍ଡନ ଯାତ୍ରା କରିଥିଲେ କିଛିଦିନ ବୁଲି ଆସିବାପାଇଁ । ସେତିକିବେଳେ ପିତାଙ୍କ ସହିତ ଇନ୍ଦିରା ପ୍ୟାରିସ, ବର୍ଲିନ ଇତ୍ୟାଦି ନଗରୀ ବୁଲି ଦେଖିଥିଲେ । ସେହି ପାଶ୍ଚାତ୍ୟ ନଗରୀ ଗୁଡ଼ିକର ସୌନ୍ଦର୍ଯ୍ୟରେ କୁମାରୀ ଇନ୍ଦିରା ବିମୁଗ୍ଧ ହୋଇପଡ଼ିଥିଲେ । ସେହି ସମୟରୁ ହିଁ ତାଙ୍କ ମନ ଭିତରେ ପ୍ରଶ୍ନ ଉଠିଥିଲା—ତାଙ୍କ ନିଜ ଦେଶର ଲୋକେ ଏହିପରି ହୀନସ୍ଥାନ ଅବସ୍ଥାରେ ପଡ଼ି ରହିଥିଲା ବେଳେ ଅନ୍ୟସବୁ ଦେଶର ଲୋକେ ଏତେ ଉନ୍ନତ ଜୀବନଯାପନ କରିବାର କାରଣ କ'ଣ ହୋଇପାରେ !

ସେତିକିବେଳେ ତାଙ୍କର ମନେ ପଡ଼ିଥିଲା ନିଜର ଜନ୍ମଭୂମି ଆହ୍ଲାବାଦ କଥା । ତାଙ୍କ ଆଖି ଆଗରେ ନାଚି ଉଠିଥିଲା ସେଠାକାର ଅନେକ ଅପ୍ରଶସ୍ତ ଗଳି ରାସ୍ତା, ଅର୍ଦ୍ଧଭଗ୍ନ ଅବସ୍ଥାରେ ଚାଲୁଥିବା ଟାଙ୍ଗା ଓ ଅର୍ଦ୍ଧନଗ୍ନ ଭାବରେ ପୋଷାକ ପରିଧାନ କରିଥିବା ସେମାନଙ୍କ ଚାଳକମାନଙ୍କ କଥା, ଚିରବ ଭିକାରୀ ତଥା ରୋଗୀ-ଦଳ ରାସ୍ତାରେ ବୁଲି ବୁଲି ସେମାନଙ୍କ ଜୀବିକା ଅର୍ଜନ କରିବା କଥା । ଅଥଚ ସେ ତାଙ୍କ ଆଖି ଆଗରେ ଦେଖୁଥିଲେ ନଗରଗୁଡ଼ିକର ପ୍ରଶସ୍ତ ରାସ୍ତାରେ ଶହଶହ ଗତିଶୀଳ ଯାନବାହନ, ଲୋକଙ୍କ ଶୃଙ୍ଖଳିତ ଜୀବନଯାପନର ଧାରା ଏବଂ ଏତେ ବଡ଼ ବଡ଼ ନଗରୀଗୁଡ଼ିକର ପରିଷ୍କାର ପରିଚ୍ଛନ୍ନତା । ତେଣୁପାଇଁ ବାସ୍ତବିକ ସେ ମୁଗ୍ଧ ହୋଇ ଯାଇଥିଲେ ଏବଂ ଭାରତ ସହିତ ବିଶେଷ କରି ତାଙ୍କର ଜନ୍ମସ୍ଥାନ ଆହ୍ଲାବାଦ ସହିତ ସେ ନଗରଗୁଡ଼ିକର ତୁଳନା କରୁଥିଲେ । ତାଙ୍କ ମନ ଭିତରେ ବାରମ୍ବାର କୁହୁଳି ଉଠୁଥିବା ପ୍ରଶ୍ନକୁ ଦୂର କରି ଜବାହରଲାଲ ବୁଝାଇ ଦେଇଥିଲେ ଯେ ତାଙ୍କ ନିଜ ଦେଶର ଲୋକଙ୍କୁ ମଧ୍ୟ ସେ କଷ୍ଟ ଆଉ ବେଶୀ ଦିନ ଭୋଗ କରିବାକୁ ପଡ଼ିବ ନାହିଁ । ଖୁବ୍ କମ୍ ଦିନ ମଧ୍ୟରେ ସେ ଦୁଃଖ ଦୂରୀଭୂତ ହେବ । ତେଣୁପାଇଁ ଦାୟୀ କେବଳ ଦେଶର ପରାଧୀନତା ଏବଂ ପରାଧୀନତା କୌଣସି ଦେଶରେ କସ୍ମିନ୍ କାଳେ ଚିରସ୍ଥାୟୀ ନୁହେଁ ।

ଜବାହରଲାଲ ସେ ସମ୍ପର୍କରେ ଏକ ସ୍ଥୂଳଧାରଣା ଝିଅର ମନରେ ଦେବା-ପାଇଁ ପୁଙ୍ଖାନୁପୁଙ୍ଖ ଭାବରେ ବୁଝାଇ ଦେଇଥିଲେ ଯେ ଯେଉଁ ପାଶ୍ଚାତ୍ୟ ଦେଶଗୁଡ଼ିକ ଅତି ବିଳାସବ୍ୟସନରେ କାଳାତିପାତ କରିବାଲାଗି ସେମାନଙ୍କ ଅଧିବାସୀମାନଙ୍କୁ ସୁଯୋଗ ଦେଉଛନ୍ତି ବା ଉନ୍ନତିର ଅନେକ ପାହାଚ ଅଗ୍ରସର ହୋଇଛନ୍ତି, ତା'ର ମୂଳରେ ନିହିତ ଅଛି ଭାରତ ଭଳି କେତେକ ଦେଶର ଅର୍ଥ । ଅନେକ ଅନୁନ୍ନତ ଦେଶରୁ ଅର୍ଥ ଟାଣିନେଇ କେତେକ ଦେଶର ଲୋକ ବିଳାସ କରୁଛନ୍ତି । ଜବାହର-ଲାଲ ଇନ୍ଦିରାଙ୍କ ମନକୁଆଁ ଭାଷାରେ ତାଙ୍କୁ ବୁଝାଇ ଦେଇଥିଲେ ଯେ ଭାରତ ଓ

ଭାରତ ଭଳି ଗରିବ ଦେଶମାନଙ୍କରେ ଯେପରି ଦାରିଦ୍ର୍ୟ ରହିଛି, ସେହିପରି ଉନ୍ନତ ଦେଶମାନଙ୍କରେ ମଧ୍ୟ ଦାରିଦ୍ର୍ୟ ରହିଛି ଏବଂ ତାହା ରହିଛି ଲୁକ୍‌କାୟିତ ଭାବେ । ଜବାହର ଇନ୍ଦିରାଙ୍କୁ କହିଥିଲେ, "ପ୍ୟାରିସ, ଲଣ୍ଡନ ଇତ୍ୟାଦି ନଗରୀଗୁଡ଼ିକରେ ମଧ୍ୟ ଦାରିଦ୍ର୍ୟ ଲୁକ୍‌କାୟିତ ଭାବେ ରହିଛି ଏବଂ ସେହିଠାରେ ମଧ୍ୟ ଆମ ଲୋକଙ୍କ ଭଳି ଦୈନ୍ୟାବସ୍ଥା ଘଟିଥାଏ ।"

ଜବାହର ଯେତେବେଳେ ଇଉରୋପର ବିଭିନ୍ନ ସହରରେ ଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ନିକଟକୁ ଯାଉଥିଲେ ତାଙ୍କ ସହିତ ଇନ୍ଦିରାଙ୍କୁ ମଧ୍ୟ ନେଇ ଯାଉଥିଲେ । ମହାନ୍ ବ୍ୟକ୍ତିମାନଙ୍କ ସମ୍ପର୍କରେ ଆସିଲେ ଯେ ସେମାନଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଅନ୍ୟମାନଙ୍କ ଉପରେ ନିଶ୍ଚିତ ଭାବରେ ପଡ଼ିଥାଏ, ଏକଥା ନିଃସନ୍ଦେହରେ କୁହାଯାଇପାରେ । ଜବାହରଲାଲ ଦେଖିପାଇଁ ଏକାନ୍ତ ଭାବେ ଇଚ୍ଛା କରୁଥିଲେ ଇନ୍ଦିରା ସେଇ କୋମଳ ବୟସରୁ ହିଁ ବିଶିଷ୍ଟ ବ୍ୟକ୍ତିବୃନ୍ଦଙ୍କ ସହିତ କଥାବାର୍ତ୍ତା କରିବା ସୁଯୋଗ ପାଉ । ସେହିଭଳି କେତେଜଣ ବ୍ୟକ୍ତି ଥିଲେ ରୋମାଁ ରୋଲା, ପୃଥିବୀ ବିଖ୍ୟାତ ବୈଜ୍ଞାନିକ ଆଲବର୍ଟ ଆଇନ୍‌ଷ୍ଟାଇନ୍, ଏର୍ଣ୍ଣେଷ୍ଟ ଟଲେର, ବିଶ୍ୱବନ୍ଦିତ ସାହିତ୍ୟିକ ଏବଂ ନାଟ୍ୟକାର ଜର୍ଜ ବର୍ଣ୍ଣାଡ୍‌ଶ, ଗ୍ଲଡ୍ ଗ୍ରପଲନ୍‌ଙ୍କ ସମେତ ଆଉ କେତେଜଣ । ଇନ୍ଦିରା ଲକ୍ଷ୍ୟ କରିଥିଲେ ଯେ ସେ ସମସ୍ତଙ୍କର ଯଥେଷ୍ଟ ସମ୍ମାନ ଥିଲା ତାଙ୍କ ପିତା ଜବାହରଲାଲଙ୍କ ପ୍ରତି ଏବଂ ସେ ସବୁଠାରୁ ଖୁସି ହୋଇଥିଲେ ଏଇଥିପାଇଁ ଯେ ତାଙ୍କ ପିତାଙ୍କ ସାଥୀମାନଙ୍କ ମଧ୍ୟରେ ଥିଲେ ବିଶ୍ୱବିଖ୍ୟାତ କଳାକାର, ବୈଜ୍ଞାନିକ, ରାଜନୈତିକ ତଥା ଅନ୍ୟାନ୍ୟ ବିଭିନ୍ନ ପ୍ରକାରର ବ୍ୟକ୍ତି ।

ଜବାହରଲାଲ ବିଶ୍ୱବିଖ୍ୟାତ ଫରାସୀ ସାହିତ୍ୟିକ ରୋମାଁରୋଲାଙ୍କ ବାସଭବନକୁ ଯେତେବେଳେ ଯାଉଥିଲେ ସେମାନଙ୍କ ଆଲୋଚନାର ବିଷୟବସ୍ତୁ ପ୍ରଧାନତଃ ଥିଲା ଭାରତର ସ୍ୱାଧୀନତା ସଂଗ୍ରାମ ଓ ତା ସହିତ ସମଗ୍ର ବିଶ୍ୱର ତତ୍କାଳୀନ ପରିସ୍ଥିତି । ଆଠ ନଅ ବର୍ଷୀୟା ବାଳିକା ଇନ୍ଦିରା ସେ ଧରଣର ଆଲୋଚନା ଆମୂଳଚୂଳ ବୁଝିପାରୁ ନ ଥିଲେ ମଧ୍ୟ ମଝିରେ ମଝିରେ କିଛି କିଛି ବୁଝି ପାରୁଥିଲେ ଏବଂ ଉତ୍କଣ୍ଠିତ ନେତ୍ରରେ ସେମାନଙ୍କ ଆଲୋଚନାଗୁଡ଼ିକୁ ମନଧ୍ୟାନ ଦେଇ ଶୁଣୁଥିଲେ । ଜବାହରଲାଲ ବୁଝି ପାରୁଥିଲେ ଯେ ଇନ୍ଦୁ ସେସବୁ କିଛି ବୁଝିପାରୁ ନ ଥିବ; ତଥାପି ସତ୍‌ସଙ୍ଗର ପ୍ରଭାବ ଯେ ଦିନେ ନା ଦିନେ ଶିଶୁମାନଙ୍କ ଉପରେ ପଡ଼ିବ ସେ କଥା ସେ ହୃଦୟଙ୍ଗମ କରିଥିଲେ । ଅନ୍ୟାନ୍ୟ ପୃଥିବୀ ପ୍ରସିଦ୍ଧ ମନୀଷୀମାନଙ୍କ ସହିତ ବିଭିନ୍ନ ସମୟରେ ସେ ଆଲୋଚନା କରୁଥିଲେ ମଧ୍ୟ ଯେତେବେଳେ ପାରୁଥିଲେ ଇନ୍ଦିରାଙ୍କୁ ସାଥିରେ ନେଇ ଯାଉଥିଲେ ।

**ସ୍ୱିଜରଲାଣ୍ଡ ସ୍କୁଲରେ :—**

ଇଉରୋପରେ ରହିବା ଭିତରେ ପ୍ରିୟଦର୍ଶିନୀ ଇନ୍ଦିରା ଅନେକଟି ବିଭିନ୍ନ ସ୍କୁଲରେ ଅଧ୍ୟୟନ କରିବା ଲାଗି ଭର୍ତ୍ତି ହୋଇଥିଲେ । ତା ଭିତରେ ଥିଲା ଜେନେଭାର ଆନ୍ତର୍ଜାତୀୟ ବିଦ୍ୟାଳୟ ଏବଂ ବେକ୍ସ୍ଥିତ ଇକ୍ଲୋନୋଭେଲ୍ । କୁମାରୀ ବୟସରେ ଇନ୍ଦିରା ଥିଲେ ଅତ୍ୟନ୍ତ ଲାଜକୁଳୀ । ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ଯେଉଁ-ବେଳେ ତାଙ୍କ ପିତା ମୋତିଲାଲ ହାରୋ ସ୍କୁଲରେ ଶିକ୍ଷା ଲାଭ କରିବାପାଇଁ ଛାଡ଼ି ଦେଇ ଆସିଥିଲେ, ଯେଉଁବେଳେ କୌଣସି ଏକ ସ୍ଥଳଭାଗରେ ପଡ଼ିରହି ବ୍ୟାକୁଳ ହେଉଥିବା ମାଛ ଭଳି ଅନୁଭବ କରିଥିଲେ ଇନ୍ଦିରାଙ୍କ ପିତାଜୀ । ଠିକ୍ ସେହି ଦଶା ମଧ୍ୟ ଭୋଗ କରିଥିଲେ ଇନ୍ଦିରା ।

ସେଠା ସ୍କୁଲମାନଙ୍କରେ ନାମ ଲେଖାଇବା ପରେ ସହପାଠିନୀମାନଙ୍କ ସମ୍ପର୍କରେ ଆସିବା ଫଳରେ ଇନ୍ଦିରା ଜାଣିବାକୁ ପାଇଥିଲେ ଯେ ସେମାନଙ୍କ ରାଜ-ନୈତିକ ଚେତନା ଅତ୍ୟନ୍ତ କମ୍ । ତେଣୁ କୌଣସି ପ୍ରକାର ରାଜନୈତିକ ଆଲୋଚନା ଲାଗି କ୍ଷେତ୍ର ସେଠାରେ ନ ଥିଲା କହିଲେ ଚଳେ । ତେବେ ସେ ଲକ୍ଷ୍ୟ କରିଥିଲେ ଯେ ଭାରତୀୟ ଜନସାଧାରଣଙ୍କ ଭଳି ଇଉରୋପରେ ଲୋକମାନେ ସେତେଟା ସମ୍ମାନପ୍ରିୟ ନୁହନ୍ତି । ପାଶ୍ଚାତ୍ୟ ଦେଶର ଲୋକମାନେ ଅତ୍ୟନ୍ତ ମେଳାପୀ ଏବଂ ଆଭିଜାତ୍ୟ ସେଠାକାର ଜନସାଧାରଣଙ୍କ ମଧ୍ୟରେ କୌଣସି ପ୍ରକାର ପ୍ରତିବନ୍ଧକ ସୃଷ୍ଟି କରିପାରେ ନାହିଁ । ଯେକୌଣସି ଲୋକ ଅନ୍ୟ ଜଣଙ୍କ ସହିତ ମିଶିବା ପାଇଁ କୌଣସି ପ୍ରକାର ଆନୁଷ୍ଠାନିକତା ତ ରଖନ୍ତି ନାହିଁ, ବରଂ ଉଭୟେ ଆନନ୍ଦ ପାଇଥା'ନ୍ତି ।

ଛୁଟି ଦିନମାନଙ୍କରେ ପିତାମାତାଙ୍କ ସାନ୍ନିଧ୍ୟ ପାଇବାପାଇଁ ଇନ୍ଦିରା ବ୍ୟାକୁଳ ହୋଇଉଠିବା ସ୍ୱାଭାବିକ । ପିତାମାତାଙ୍କ ଗହଣରେ ସେ ଅକଥନୀୟ ଆନନ୍ଦ ପାଉଥିଲେ । ତେବେ ଅନ୍ୟ ଦିନମାନଙ୍କରେ ବେଳେ ବେଳେ ଜବାହରଲାଲ ଓ କମଳା ପ୍ରିୟଦର୍ଶିନୀର ସାନିଧ୍ୟ ପାଇଁ ତାଙ୍କ ନିକଟକୁ ସ୍କୁଲକୁ ଯାଉଥିଲେ ।

ସେଠାରେ ରହଣିକାଳ ମଧ୍ୟରେ ରୁଷ ଅକ୍ଟୋବର ବିପ୍ଳବର ଦଶମ ବାର୍ଷିକୀ ଉତ୍ସବରେ ଯୋଗ ଦେବାଲାଗି ସ୍ୱତନ୍ତ୍ର ନିମନ୍ତ୍ରଣ ପାଇଥିଲେ ଜବାହରଲାଲ । କୁମାରୀ ଇନ୍ଦିରା ବିଭିନ୍ନ ଦେଶ ଭ୍ରମଣ କରିବା ସଙ୍ଗେ ସଙ୍ଗେ ନୂତନ ନୂତନ ବିଶିଷ୍ଟ ଲୋକଙ୍କ ସହିତ ମିଶିବାକୁ ଆଗ୍ରହ ପ୍ରକାଶ କରୁଥିଲେ ମଧ୍ୟ ଅଧ୍ୟୟନ ବ୍ୟାହତ ହେବା ଆଶଙ୍କା କରି ସେଥର ରୁଷ ଗଲାବେଳେ ଜବାହରଲାଲ ତାହାଙ୍କୁ ସଙ୍ଗରେ ନେଇ ନ ଥିଲେ । ପରିବାରର ଅନ୍ୟମାନଙ୍କୁ ସଙ୍ଗରେ ନେଇ ସେ ମସ୍କୋ ଯାତ୍ରା କରିଥିଲେ ରୁଷ ସରକାରଙ୍କ ନିମନ୍ତ୍ରଣ ରକ୍ଷା କରିବା ଉଦ୍ଦେଶ୍ୟରେ । ଏକ ସମାଜବାଦୀ ରାଷ୍ଟ୍ର ରୂପେ ପରିଗଣିତ ରୁଷ ଦେଶକୁ ଯାଇ ନ ପାରିବା କାରଣରୁ ଇନ୍ଦିରା ଅତ୍ୟନ୍ତ ମନଦୁଃଖ

କରିଥିଲେ । ଆହୁରି ବେଶୀ ମନ କଷ୍ଟ ହୋଇଥିଲା ଯେତେବେଳେ ତାଙ୍କର ପିତାମାତା ଓ ପିଉସୀମାନେ ସେମାନଙ୍କ ରୁଷ ଭ୍ରମଣର ବୃତ୍ତାନ୍ତ ଓ ସେଠାକାର ଅଭୂତପୂର୍ବ ସାମାଜିକ ପରିବର୍ତ୍ତନ କଥା ରୁଷରୁ ଫେରି ଇନ୍ଦିରାଙ୍କ ଆଗରେ ବର୍ଣ୍ଣନା କରୁଥିଲେ ।

ଜବାହରଲାଲ ନଭେମ୍ବର ସାତ ତାରିଖରେ ପୋଲାଣ୍ଡ ଅତିକ୍ରମ କରି ରୁଷ ସୀମାରେ ପହଞ୍ଚିବା ବେଳକୁ ହଜାର ହଜାର ଲୋକ ତାହାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେବା ପାଇଁ ଉପସ୍ଥିତ ହୋଇଥିଲେ । ପିତାଙ୍କଠାରୁ ଇନ୍ଦିରା ଶୁଣି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ଯେ ରୁଷ ପ୍ରକୃତରେ ଏକ ଆଶ୍ଚର୍ଯ୍ୟ ଦେଶ । ଅଶ୍ରାବ୍ୟ ଅଭିଯୋଗର ଚିହ୍ନ ସେଠାରେ ନ ଥିଲା—ନ ଥିଲା ଶ୍ରେଣୀଗତ ବାଦ-ବିସମ୍ବାଦର କଥା । ସମସ୍ତେ ଥିଲେ ସମସ୍ତଙ୍କର ବନ୍ଧୁ । କେହି କାହାକୁ ଡ଼ାକିବାକୁ ହେଲେ ସେ ଯେ ହୁଅନ୍ତୁ ନା କାହିଁକି ଡ଼ାକନ୍ତି କମ୍ରେଡ଼୍ । କି ସୁନ୍ଦର ସମ୍ବୋଧନ ! ଧନସମ୍ପତ୍ତି କିମ୍ବା ମୋଟା ଦରମା ନେଇ କାହାର ଯୋଗ୍ୟତା ସେଠାରେ ସ୍ଥିର ହୁଏ ନାହିଁ । ମସ୍କୋ ବିଷୟରେ ଇନ୍ଦିରାଙ୍କୁ ଧାରଣା ଦେବାକୁ ଯାଇ ଜବାହରଲାଲ କହିଥିଲେ—

"ସେଠାରେ ଚରମ ଦାରିଦ୍ର୍ୟ କିମ୍ବା ଚରମ ଭୋଗ ବିଳାସର ଚିହ୍ନ କାହାର ଦୃଷ୍ଟିଗୋଚର ହେବା ସମ୍ଭବ ନୁହେଁ । ଜାତି-ଜାତି କିମ୍ବା ଗୋଷ୍ଠୀ-ଗୋଷ୍ଠୀ ମଧ୍ୟରେ ମଧ୍ୟ ସେହିଭଳି ଉଚ୍ଚ, ନୀଚ ଭେଦଭାବର ପ୍ରଶ୍ନ ସେଠାରେ ନ ଥିଲା । ରେଳ ଷ୍ଟେସନର କୁଲି କିମ୍ବା ଜଳଖିଆ ଦୋକାନର ଚାକର-ବାକରଙ୍କଠାରୁ ଆରମ୍ଭ କରି ଉଚ୍ଚପଦସ୍ଥ କର୍ମଚାରୀ ଓ ମାନ୍ୟଗଣ୍ୟ ସମସ୍ତେ ସମସ୍ତଙ୍କୁ ସେହି ଏକାପ୍ରକାର ସମ୍ବୋଧନ କରୁଥିଲେ "କମ୍ରେଡ୍" । *

ଶିଳ୍ପ କ୍ଷେତ୍ରରେ, ବିଜ୍ଞାନର ବିଭିନ୍ନ ଉଦ୍ଭାବନ କ୍ଷେତ୍ରରେ ତଥା ବୈଜ୍ଞାନିକ ଉଦ୍ଭାବନର ଉପଯୁକ୍ତ ବିନିଯୋଗ କ୍ଷେତ୍ରରେ ବା ଶିକ୍ଷା ଦୀକ୍ଷା କ୍ଷେତ୍ରରେ ସବୁଥିରେ ପୃଥିବୀରେ ପ୍ରଥମ ହେବାର ଯୋଗ୍ୟତା ସମାଜବାଦୀ ରୁଷକୁ ଦିଆଯାଇପାରେ ବୋଲି କନ୍ୟା ଇନ୍ଦିରାଙ୍କ ନିକଟରେ ମତବ୍ୟକ୍ତ କରିଥିଲେ ଜବାହରଲାଲ ।

ରୁଷର ବଲସାଇ ଥିଏଟର ଆଜିଭଳି ସେତେବେଳେ ମଧ୍ୟ ସମଗ୍ର ପୃଥିବୀରେ ବିଶେଷ ସୁନାମ ଅର୍ଜନ କରିଥିଲା । ସେ ସମ୍ପର୍କରେ ପିଉସୀ କୃଷ୍ଣାଙ୍କଠାରୁ ସେ ଶୁଣିଥିଲେ । ବିଶେଷ କରି ଇନ୍ଦିରା ବାଲ୍ୟ ବୟସରୁ ନୃତ୍ୟପ୍ରିୟା ଥିବାରୁ କୃଷ୍ଣା ସେ ବିଷୟରେ ତାହାଙ୍କୁ କହିବା ପାଇଁ ସେହିଠାରୁ ହିଁ ମନସ୍ଥ କରିଥିଲେ । ଇନ୍ଦିରା ଯେତେବେଳେ ଶୁଣିଥିଲେ ଯେ ରୁଷରେ ତାଙ୍କରି ବୟସରେ ପୁଅ ଝିଅମାନେ ମିଶି ଖୁବ୍ ସୁନ୍ଦର, ମନୋମୁଗ୍ଧକର ନୃତ୍ୟ ପରିବେଷଣ କରିପାରନ୍ତି, ସେ ଅତ୍ୟନ୍ତ ଆନନ୍ଦିତ ହୋଇଯାଉଥିଲେ । ସେ ନୃତ୍ୟ ଅନ୍ତତଃ ଥରୁଟିଏ ଦେଖିବାକୁ କୁମାରୀସୁଲଭ

* Jawaharlal Nehru—Soviet Russia.

ଚପଳତା ତାଙ୍କର ବ୍ୟଗ୍ର ହୋଇ ଉଠିଥିଲା । ସେଇସବୁ ଶୁଣି ଶୁଣି ରୁଷ ଯାଇ ନ ପାରିଥିବା ଓ ନିଜ ଆଖିରେ ସେଇ ଜନଜୀବନକୁ ଦେଖି ନ ପାରିଥିବା କାରଣରୁ ସେ ଅନେକ ମନସ୍ତାପ କରିଥିଲେ । ଜବାହରଲାଲ ରୁଷର ବିଭିନ୍ନ ଦର୍ଶନୀୟ ସ୍ଥାନଗୁଡ଼ିକ ପରିଦର୍ଶନ କଲାବେଳେ ଅନେକଗୁଡ଼ାଏ ଆଲୋକଚିତ୍ର ଗ୍ରହଣ କରିଥିଲେ ଏବଂ ସେହି ଆକର୍ଷଣୀୟ ଆଲୋକଚିତ୍ରଗୁଡ଼ିକୁ ଇନ୍ଦିରାଙ୍କୁ ଦେଇଥିଲେ ରୁଷ ଭ୍ରମଣରୁ ଫେରିବା ପରେ । ସେସବୁ ଆଲୋକଚିତ୍ର ଇନ୍ଦିରାଙ୍କୁ ଅମାପ ଆନନ୍ଦ ଦେଇଥିଲା । ଏପରି କି ସେଗୁଡ଼ିକୁ ସେ ଆଜି ପର୍ଯ୍ୟନ୍ତ ଆଲବମ୍‌ରେ ସାଇତି ରଖିଛନ୍ତି ।

**ବ୍ରସେଲ୍‌ସ ସମ୍ମେଳନ :**

ରୁଷ ଯାତ୍ରାର ପ୍ରାୟ ଆଠ ମାସ ପୂର୍ବରୁ, ପୃଥିବୀରୁ ସାମ୍ରାଜ୍ୟବାଦ ବିଲୋପ କରିବା ଉଦ୍ଦେଶ୍ୟରେ ଏକ ସ୍ଥାୟୀ ସଂସ୍ଥା ଗଠନ କରାଯିବା ପାଇଁ ଉଦ୍ୟମ ହୋଇଥିଲା ବ୍ରସେଲ୍‌ସ ସମ୍ମେଳନ ପରେ ପରେ । ବିପ୍ଳବ ମାଧ୍ୟମରେ ସାମ୍ରାଜ୍ୟବାଦକୁ ଶୀଘ୍ର ହଟାଇ ଦିଆଯାଇପାରେ ବୋଲି ଏ ସଂସ୍ଥା ବିଶ୍ୱାସ କରୁଥିଲା । ଜବାହରଲାଲ ଓ ତାଙ୍କର ଦଶବର୍ଷୀୟା କନ୍ୟା ଇନ୍ଦିରା ଏ ପ୍ରକାର ସିଦ୍ଧାନ୍ତରେ ଉତ୍ସାହିତ ହୋଇଥିଲେ । ଏ ସଙ୍ଗଠିତ ସଂସ୍ଥାର ଅଧ୍ୟକ୍ଷ ଥିଲେ ଲାନ୍ସବୁରି । କିନ୍ତୁ କିଛିଦିନ ପରେ ସେ ନିଜ ଦାୟିତ୍ୱରୁ ଇସ୍ତଫା ଦେଇଥିଲେ । ତେବେ ସେ ସଙ୍ଗଠନର ସଂରକ୍ଷକ ଭାବରେ ଥିଲେ ଶ୍ରୀମତୀ ସନ୍‌ୟାତ୍‌ସେନ୍, ଆଲବର୍ଟ ଆଇନ୍ ଷ୍ଟାଇନ୍ ଏବଂ ରୋମାଁ ରୋଲାଁ ।

୧୯୨୭ ମସିହାର ପ୍ରାୟ ଶେଷ ବେଳକୁ ଜବାହରଲାଲ ବର୍ଲିନରେ ଥିବାବେଳେ ଖବର ପାଇଥିଲେ ଯେ ସେତେବେଳେ ପୃଥିବୀର ଦଳିତ ଜାତିମାନଙ୍କର ଏକ ବଡ଼ଧରଣର ସମ୍ମେଳନର ଆୟୋଜନ ଚାଲିଥିଲା । ସ୍ଥାନ ସେଇଥିପାଇଁ ନିରୂପିତ ହୋଇଥିଲା ବ୍ରସେଲ୍‌ସ । ଏ ଖବର ପାଇବା ପରେ ପରେ ଜବାହରଲାଲ ଭାରତର ନେତୃବୃନ୍ଦଙ୍କୁ ଚିଠି ଲେଖି ଜଣାଇଥିଲେ ଯେ ସେପ୍ରକାର ଆୟୋଜିତ ସମ୍ମେଳନରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିନିଧିତ୍ୱ କରିବା କଥା । ଜବାହରଲାଲଙ୍କର ସେ ପ୍ରସ୍ତାବ ଜାତୀୟ କଂଗ୍ରେସରେ ଆଲୋଚିତ ହୋଇଥିଲା ଏବଂ ଗୃହୀତ ମଧ୍ୟ ହୋଇଥିଲା । ବ୍ରସେଲ୍‌ସ ସମ୍ମେଳନରେ ଭାରତୀୟ ଜାତୀୟ କଂଗ୍ରେସ ତରଫରୁ ପ୍ରତିନିଧିତ୍ୱ କରିବା ପାଇଁ ଜବାହରଲାଲଙ୍କୁ କ୍ଷମତା ଦିଆଯାଇଥିଲା ଏବଂ ସେ ବିଷୟ ତାହାଙ୍କୁ ଜଣାଇ ଦେଇଥିଲେ କଂଗ୍ରେସ କର୍ତ୍ତୃପକ୍ଷ ।

ଫେବୃୟାରୀ ୧୯୨୭ ମସିହାରେ ବ୍ରସେଲ୍‌ସଠାରେ ବିଶ୍ୱର ଦଳିତ ଜାତି-ମାନଙ୍କର ପୂର୍ବ ନିରୂପିତ ଅଧିବେଶନ ବସିଥିଲା । ସେଥିରେ ପଣ୍ଡିତ ଜବାହରଲାଲ ଥିଲେ ଭାରତୀୟ ଜାତୀୟ କଂଗ୍ରେସ ତଥା ଭାରତୀୟ ଜନଗଣଙ୍କର ପ୍ରତିନିଧି । ପ୍ରକୃତରେ ଏ ପ୍ରକାର ସମ୍ମେଳନ ଆୟୋଜନର ମୂଳ ଲକ୍ଷ୍ୟ କ'ଣ ଥିଲା ଜବାହରଲାଲ ଜାଣି

ନ ଥିଲେ । ତେବେ ପରେ ପରେ ସେ ଜାଣିବାକୁ ପାଇଥିଲେ ଯେ କେତେକ କମ୍ୟୁନିଷ୍ଟ ରାଷ୍ଟ୍ର ସେଇ ସମ୍ମେଳନ ଆୟୋଜନର କର୍ତ୍ତା ଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ସେମାନଙ୍କର ପ୍ରଭାବ ନୂତନ ଭାବରେ ଗଠିତ ହୋଇଥିବା ସଂସ୍ଥା ଉପରେ ବିଶେଷ ପରିମାଣରେ ପଡ଼ିପାରି ନ ଥିଲା ।

ବ୍ରସେଲସ୍ ସମ୍ମେଳନରେ ଇଣ୍ଡୋଚୀନ, ପାଲେଷ୍ଟାଇନ, ଜାଭା, ସିରିଆ, ଇଜିପ୍ଟ, ଉତ୍ତର ଆମେରିକା, ଆରବ, ଆଫ୍ରିକା ନିଗ୍ରୋମାନଙ୍କ ପ୍ରତିନିଧି ତଥା ଆନ୍ତର ଅନେକ ଶ୍ରମିକ ସଂସ୍ଥାର ପ୍ରତିନିଧି ଯୋଗ ଦେଇଥିଲେ । ତା ବ୍ୟତୀତ ଅନେକ ବାମପନ୍ଥୀ ଦଳ ମଧ୍ୟ ସେମାନଙ୍କ ପ୍ରତିନିଧି ପଠାଇଥିଲେ । ଶ୍ରମିକ ଦଳର ପ୍ରତିନିଧି ଭାବେ ଅନେକ କମ୍ୟୁନିଷ୍ଟ ରାଷ୍ଟ୍ର ସେ ସମ୍ମେଳନରେ ଯୋଗ ଦେଇଥିଲେ । ତାହାର ଅଧ୍ୟକ୍ଷତା କରିଥିଲେ ଜର୍ଜ ଲାନ୍ସବରି । ସେହି ସମ୍ମେଳନ ହିଁ ଏକ ସ୍ଥାୟୀ ସାମ୍ରାଜ୍ୟବାଦ ବିରୋଧୀ ସଂସ୍ଥା ରୂପେ ଗଠିତ ହୋଇଥିଲା ଜର୍ଜ ଲାନ୍ସବରିଙ୍କ ଅଧ୍ୟକ୍ଷତାରେ । ପଣ୍ଡିତ ନେହେରୁ ଉକ୍ତ ସମ୍ମିଳନୀରେ ଏବଂ ସ୍ଥାୟୀ ସଂସ୍ଥାର ବୈଠକରେ ସାମ୍ରାଜ୍ୟବାଦ ଉପନିବେଶଗୁଡ଼ିକର କେତେକ ପ୍ରଧାନ ସମସ୍ୟା ଉପରେ ଆଲୋକପାତ କରିଥିଲେ । ତାହା ଉଚ୍ଚ ପ୍ରଶଂସିତ ହୋଇଥିଲା । ତେଣୁ ତା ପରେ ପରେ ପୁଣି କୋଲନ୍‌ଠାରେ ଅନୁଷ୍ଠିତ ହୋଇଥିବା ସ୍ଥାୟୀ ସାମ୍ରାଜ୍ୟବାଦୀ ବିରୋଧୀ ସଂସ୍ଥାର ବୈଠକରେ ଯୋଗ ଦେବାପାଇଁ ସେ ସୁଯୋଗ ପାଇଥିଲେ ।

□□□

॥ ପାଞ୍ଚ ॥

# ବାନରସେନାର ସେନାପତି



ନେହେରୁ ପରିବାର ୧୯୨୭ ମସିହା ଡିସେମ୍ବର ମାସରେ ଇଉରୋପରୁ ଭାରତକୁ ଫେରି ଆସିଥିଲେ । ସେତେବେଳକୁ କମଳାଙ୍କ ସ୍ୱାସ୍ଥ୍ୟର ଯଥେଷ୍ଟ ଉନ୍ନତି ହୋଇସାରିଥିଲା । ଭାରତକୁ ଫେରି ଆସିବା ପରେ ରାଜନୀତିରେ ପୁଣି ପ୍ରତ୍ୟକ୍ଷ ସଂଗ୍ରାମୀ ସାଜିବାରେ ଆଉ କୌଣସି ପ୍ରତିବନ୍ଧକ ନ ଥିଲା ଜବାହରଲାଲଙ୍କର ।

ସେତେବେଳକୁ ଇନ୍ଦିରାଙ୍କ ବୟସ ଥିଲା ପ୍ରାୟ ଦଶ ବର୍ଷ । ସେତିକିବେଳୁ ହିଁ ସେ ବିଭିନ୍ନ ସାମାଜିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବାରେ ଆନନ୍ଦ ପାଉଥିଲେ । ଆନନ୍ଦ ଭବନଠାରୁ ପ୍ରାୟ ୭ ମାଇଲ ଦୂରବର୍ତ୍ତୀ ନୈନୀକୁ ସାଇକେଲ ଚଳାଇ ଯାଉଥିଲେ ପ୍ରତି ରବିବାର ଦିନ ସକାଳବେଳା ଏବଂ ସେଠାରେ କୁଷ୍ଠରୋଗୀମାନଙ୍କ ସେବାରେ ନିଜକୁ ନିୟୋଜିତ କରୁଥିଲେ । ସେତେବେଳେ ଆହ୍ଲାବାଦରେ ଥିବା ଏକ ଆମେରିକାନ୍ ମିଶନାରୀ ଦଳ ସହିତ ଯୋଗ ଦେଇ ସେ ଦୁଃଖୀ ଦରିଦ୍ରମାନଙ୍କର ସେବା ମଧ୍ୟ କରୁଥିଲେ । ପ୍ରିୟଦର୍ଶିନୀ ଇନ୍ଦୁର ସେପ୍ରକାର ମନୋଭାବ ଦେଖି ଏପରିକି ଜବାହରଲାଲ ଓ କମଳା ମଧ୍ୟ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ।

**ଇଉରୋପରୁ ପ୍ରତ୍ୟାବର୍ତ୍ତନ :—**

ଜବାହରଲାଲଙ୍କ ବିଦେଶଯାତ୍ରା ତାଙ୍କ ମନରେ ଧାରଣା ସୃଷ୍ଟି କରିଥିଲା ଯେ ଭାରତର ଭବିଷ୍ୟତ ଦିନେ ନା ଦିନେ ନିଶ୍ଚୟ ସୁଧୁରିଯିବ । ତେଣୁ ରାଜନୈତିକ ତଥା ସାମାଜିକ ପରିବର୍ତ୍ତନ ଆଣିବାପାଇଁ ଅଧିକରୁ ଅଧିକ ଉତ୍ସାହରେ ସେ ଉତ୍ସାହିତ ହୋଇ ଯାଇଥିଲେ । ସେ ସେତେବେଳେ କହୁଥିଲେ ଯେ ଦୁଇଟି କଥା ତାଙ୍କ ସମ୍ମୁଖରେ ସ୍ପଷ୍ଟ ଭାବେ ଉଦ୍ଭାସିତ ହେଉଥିଲା । ପ୍ରଥମଟି ଥିଲା—ଯେ କୌଣସି ମତେ ଦେଶକୁ ସ୍ୱାଧୀନ କରିବାକୁ ହେବ ଏବଂ ଦ୍ୱିତୀୟଟି—ପ୍ରତ୍ୟେକ ମଣିଷ ଅନ୍ୟମାନଙ୍କ ସହିତ ଉଚିତ ବ୍ୟବହାର କରିବାଲାଗି ଶିକ୍ଷାକରିବା ଅତ୍ୟନ୍ତ ଆବଶ୍ୟକ । ତାଙ୍କର

ଦ୍ୱିତୀୟ ଧାରଣାଟି ବଳବତ୍ତର ହୋଇଥିଲା ୧୯୨୭ ମସିହା ଶେଷରେ ରୁଷ ଅକ୍ଟୋବର ବିପ୍ଳବର ଦଶମ ବାର୍ଷିକ ଉତ୍ସବରେ ଯୋଗଦେବାକୁ ଯାଇ ଫେରିବା ପରେ । ଯଦିଓ ଅତି ଅଳ୍ପ ସମୟ ଲାଗି ଜବାହରଲାଲ ରୁଷ ଯାଇଥିଲେ, ତଥାପି ସେଠାକାର ରାଜନୈତିକ ସଙ୍ଗଠନ ପ୍ରଣାଳୀ ତାହାଙ୍କୁ ଅତ୍ୟଧିକ ପରିମାଣରେ ଆକୃଷ୍ଟ କରିଥିଲା । ସେଠାରେ ସମାଜବାଦୀ ଢାଞ୍ଚାରେ ଶାସନ ଯୋଗୁଁ ଦେଶର ଅର୍ଥନୈତିକ ବିକାଶ ଜବାହରଲାଲଙ୍କୁ ଯେତିକି ଆକୃଷ୍ଟ କରିଥିଲା, ତା'ଠାରୁ ଅଧିକ ପ୍ରେରଣା ଯୋଗାଇଥିଲା ଶାସନ ପ୍ରଣାଳୀ । ସେ ସମାଜ ପ୍ରତି ଉଦାରଭାବ ପୋଷଣ କରିଥିଲେ ତା'ପରଠାରୁ । ତାହା ତାଙ୍କର ପରବର୍ତ୍ତୀ କାର୍ଯ୍ୟକଳାପରେ ସ୍ପଷ୍ଟ ପ୍ରତିଫଳିତ ହୋଇଥିଲା । ପଣ୍ଡିତ ନେହେରୁ ରୁଷ ଯିବା ସମୟରେ ଯେତିକି ଜାତୀୟବାଦୀ ଥିଲେ, ସେଠାରୁ ଫେରି ଆସିବା ବେଳକୁ ତା'ଠାରୁ ଅଧିକ ସମାଜବାଦୀ ହୋଇଯାଇଥିଲେ ।

୧୯୨୮ ମସିହାରେ ହିନ୍ଦୁ-ମୁସଲମାନ ଐକ୍ୟ ପ୍ରତିଷ୍ଠା ପାଇଁ ବମ୍ବେଠାରେ ଏକ ସର୍ବଦଳୀୟ ସମ୍ମିଳନୀ ଆହୂତ ହୋଇଥିଲା ଏବଂ ତା ପରେ ପରେ କମଳା ଓ ଇନ୍ଦିରାଙ୍କ ସହ କିଛିଦିନ ପାଇଁ ମସୌରୀର ସ୍ୱାସ୍ଥ୍ୟକର ଜଳବାୟୁରେ ସମୟ ଅତିବାହିତ କରିବାକୁ ଚାଲିଯାଇଥିଲେ । ସେତେବେଳେ ବ୍ରିଟେନ୍‌ରେ କନ୍‌ଜର-ଭେଟିଭ ପାର୍ଟି ଶାସନ କରୁଥିଲା ଏବଂ ପ୍ରଧାନମନ୍ତ୍ରୀ ଥିଲେ ବାଲ୍‌ଡୱିନ୍ । ସେ ସାର୍ ସାଇମନ୍‌ଙ୍କ ନେତୃତ୍ୱରେ ଏକ ସାତଜଣିଆ କମିଶନ୍ ଭାରତର ସାମ୍ବିଧାନିକ ପରିବର୍ତ୍ତନ ଆଣିବାପାଇଁ ଏକ ରିପୋର୍ଟ ଦେବା ଉଦ୍ଦେଶ୍ୟରେ ଭାରତକୁ ପଠାଇ ଥିଲେ । କିନ୍ତୁ ଭାରତର ଜାତୀୟ କଂଗ୍ରେସ ତାହାକୁ ସମର୍ଥନ କରୁ ନ ଥିଲା; କାରଣ ତାହାର ସମସ୍ତ ସଦସ୍ୟ ବିଦେଶୀ ଥିଲେ ଏବଂ ଭାରତର ସ୍ୱାଧୀନତା ସଂଗ୍ରାମ ପ୍ରତି ସେମାନଙ୍କ ସହାନୁଭୂତି ନ ଥିଲା । ତେଣୁ ପ୍ରଥମ ଦିନରୁ ହିଁ କମିଶନ୍ ଯେତେବେଳେ ଯେଉଁଠାକୁ ଯାଇଥିଲା, କେବଳ ଗୋଟାଏ ଧ୍ୱନି ଲୋକଙ୍କ ମୁଖରୁ ଶୁଣିବାକୁ ପାଉଥିଲା—"ସାଇମନ୍, ଫେରିଯାଅ," **(Simon, go back)** ।

ଜବାହରଲାଲ ୧୯୨୯ ମସିହାରେ କଂଗ୍ରେସର ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ ପିତା ମୋତିଲାଲଙ୍କଠାରୁ ଐତିହାସିକ ଲାହୋର ଅଧିବେଶନଠାରେ । ଉକ୍ତ ଅଧିବେଶନ ଡିସେମ୍ବର ଶେଷ ସପ୍ତାହରେ ଲାହୋରର ରାବୀ ନଦୀକୂଳରେ ଅନୁଷ୍ଠିତ ହୋଇଥିଲା । ସେଥିପାଇଁ ଏକ ବିରାଟ ମଞ୍ଚ ନିର୍ମାଣ କରାଯାଇଥିଲା । ସେହି ଅଧିବେଶନରେ ଯୋଗ ଦେଇଥିଲେ ପ୍ରାୟ ତିନି ଲକ୍ଷ ଭାରତବାସୀ । ଭାରତର ପୂର୍ଣ୍ଣ ସ୍ୱତନ୍ତ୍ରତା ପାଇଁ ବ୍ରିଟିଶ ସରକାର ବିରୁଦ୍ଧରେ ସଂଗ୍ରାମ କରିବା ଭାରତୀୟ ଜାତୀୟ କଂଗ୍ରେସର ଚରମ ଲକ୍ଷ୍ୟ ବୋଲି ପ୍ରସ୍ତାବ ଗୃହୀତ ହୋଇଥିଲା ସେହି ଅଧିବେଶନରେ ଏବଂ ୧୯୩୦ ମସିହା ଜାନୁୟାରୀ ୨୬ ତାରିଖକୁ ସ୍ୱତନ୍ତ୍ରତା ଦିବସ ରୂପେ ଗ୍ରହଣ କରିବାକୁ ସ୍ଥିର କରାଯାଇ ଭାରତୀୟମାନଙ୍କ ସେଦିନ ପୂର୍ଣ୍ଣ ସ୍ୱତନ୍ତ୍ରତାର ଶପଥ ଗ୍ରହଣ

କରିବା ପାଇଁ ଆହ୍ୱାନ ଦିଆଯାଇଥିଲା । ସେହିଦିନଠାରୁ ଆମେ ପ୍ରତିବର୍ଷ ଜାନୁଆରୀ ଛବିଶ ତାରିଖକୁ ସ୍ୱତନ୍ତ୍ରତା ଦିବସ ରୂପେ ପାଳନ କରିଆସୁଛେ ଏବଂ ତାହା ଆଜି ଆମର ଏକ ଜାତୀୟ ଦିବସ ରୂପେ ପରିଗଣିତ ହୋଇଆସୁଛି ।

**ସ୍ୱତନ୍ତ୍ର ଦିବସର ଶପଥ :**

ସେଦିନର ଶପଥ ପ୍ରସ୍ତୁତ କରିଥିଲେ ନିଜେ ଜବାହରଲାଲ ଓ ସେ ଶପଥ ପ୍ରଥମେ ଗ୍ରହଣ କରିଥିଲେ ଆମର ଜନନେତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ । *

୧୯୩୦ ମସିହା ଜାନୁୟାରୀ ଛବିଶ ତାରିଖକୁ ଭାରତରେ ପୂର୍ଣ୍ଣ ସ୍ୱରାଜ୍ୟ ଦିବସ ରୂପେ ପାଳନ କରିବାଲାଗି ଓ ସେହି ଉପଲକ୍ଷେ ଏକ ଶପଥ ଗ୍ରହଣ କରିବାଲାଗି ଯେଉଁ ଶପଥ ପାଠ କରିବା କଥା ତାହା ନିଜେ ପ୍ରସ୍ତୁତ କରିଥିଲେ ଜବାହରଲାଲ । ଶପଥପତ୍ରଟି ପ୍ରସ୍ତୁତ କରିସାରିବା ପରେ ଜବାହରଲାଲ ତାଙ୍କ କନ୍ୟା ଇନ୍ଦିରାଙ୍କୁ କହିଥିଲେ ତାହା ପାଠ କରିବା ପାଇଁ ।

ଇନ୍ଦିରା ତାହାକୁ ସମସ୍ତ ଦୃଢ଼ତା ଓ ନିଷ୍ଠାର ସହିତ ପାଠ କରିଥିଲେ ।

ପାଠ କରିସାରିବା ପରେ ଜବାହରଲାଲ ଗର୍ବିତ ହୋଇଥିଲେ ଇନ୍ଦିରାଙ୍କ ପଠନଶୈଳୀ ଲାଗି ଏବଂ ତାଙ୍କୁ କହିଥିଲେ, "You read it well Indu. But do you realise that by reading it aloud you too are now pledged ?"

କୌଣସି ଶପଥକୁ ପାଟିକରି ପଢ଼ିବା ଅର୍ଥ—ଶପଥ ଗ୍ରହଣ କରିବା ।
ସମସ୍ତ ଦୃଢ଼ତାର ସହିତ ଇନ୍ଦିରା ସେଥିରେ ସମ୍ମତ ହୋଇଥିଲେ ।
ସ୍ୱତନ୍ତ୍ର ଦିବସର ଶପଥ ପାଠ କରିବାରେ ଇନ୍ଦିରା ଥିଲେ ପ୍ରଥମ ବ୍ୟକ୍ତି ।

---

* "We believe that it is the inalienable right of the Indian people, as of any other people, to have freedom and to enjoy the fruits of their toil and have necessities of life so that they may have full opportunities of growth, We believe also that if any Government deprives the people of these rights and oppresses them, the people have a further right to alter it or to abolish it The British Government in India has not only deprived the Indian people of their freedom, but has based itself on the exploitation of masses and has ruined India economically, politically, culturally and spiritually. We believe therefore that India must serve the British connection and attain purna Swaraj..."

ଜାନୁୟାରୀ ଛବିଶ ତାରିଖ ୧୯୩୦ ମସିହାରେ ପ୍ରତୀକ ସ୍ୱରୂପ ସମଗ୍ର ଦେଶରେ ସ୍ୱାଧୀନତା ଦିବସ ପାଳନ କରାଯାଇଥିଲା । ଇନ୍‌କିଲାବ ଜିନ୍ଦାବାଦ ଧ୍ୱନିରେ ସାରା ଦେଶର ଆକାଶ-ପାତାଳ ପ୍ରକମ୍ପିତ ହୋଇ ଉଠିଥିଲା ଏବଂ ତା'ସାଥେ ସାଥେ ବ୍ରିଟିଶ୍ ସରକାରର ପିତ୍ତରାହାଡ଼ ମଧ୍ୟ । ଦେଶର ଛକେ ଛକେ ସଭା ସମିତିମାନ ଆହୂତ ହୋଇଥିଲା ଏବଂ ସାଧାରଣ ଜନତା ସମସ୍ତ ଉତ୍ସାହର ସହିତ ଦେଶର ସ୍ୱାଧୀନତା ଆଣିବା ଲାଗି ପ୍ରାଣବଳି ଦେବାକୁ ଦୃଢ଼ପ୍ରତିଜ୍ଞ ହୋଇ ଶପଥ ଗ୍ରହଣ କରିଥିଲେ ।

ଜବାହରଲାଲ ଲୋକଙ୍କର ଏତେ ପ୍ରିୟ ହୋଇ ଉଠିଥିଲେ ଯେ ପ୍ରତିଦିନ ବିଭିନ୍ନ ପ୍ରାନ୍ତରୁ ଶହ ଶହ ଲୋକ ଦଳ ଦଳ ହୋଇ କେବଳ ତାଙ୍କର ଦର୍ଶନ ଟିକିଏ ଲାଗି ବ୍ୟାକୁଳ ହୋଇ ଉଠିଥିଲେ । ଆନନ୍ଦ ଭବନରେ ସକାଳୁ ସନ୍ଧ୍ୟାବେଳ ପର୍ଯ୍ୟନ୍ତ ଲୋକଙ୍କ କୋଳାହଳ ଲାଗି ରହୁଥିଲା । ପଣ୍ଡିତ ଜବାହରଲାଲ ନେହେରୁଙ୍କ ମୁହଁରୁ ପଦଟିଏ କଥା ଶୁଣିବାଲାଗି ଲୋକେ ଉତ୍କଣ୍ଠିତ ହୋଇ ଅପେକ୍ଷା କରୁଥିଲେ । ଦିନକୁଦିନ ଅବସ୍ଥା ଏତେ ଅସମ୍ଭାଳ ହୋଇ ପଡ଼ୁଥିଲା ଯେ ଜବାହରଲାଲ ଲୋକଙ୍କ ସମ୍ମୁଖକୁ ଆସି କେବଳ ଯୋଡ଼ହସ୍ତରେ ନମସ୍କାରଟିଏ କରି ଫେରିଯିବାକୁ ବାଧ୍ୟ ହେଉଥିଲେ । ଦିନକୁଦିନ ଅଧିକରୁ ଅଧିକ ଲୋକେ ତାଙ୍କୁ ଦେଖା କରିବାକୁ ଆସିବା ଯୋଗୁଁ ଜବାହରଲାଲ ଠିକ୍ କରିଥିଲେ ଆଉ ସେମାନଙ୍କ ସମ୍ମୁଖକୁ ଆଦୌ ଯିବେ ନାହିଁ । କିନ୍ତୁ ତାହା ସମ୍ଭବ ହୋଇ ନ ଥିଲା ।

ଦେଶର ଜନସାଧାରଣ ହୁଏତ ଅନେକ ଦୂରଦୂରାନ୍ତରୁ ଆସୁଥିଲେ ତାଙ୍କର ଦର୍ଶନ ପାଇଁ । ସେ ନିରୀହ ଜନତା ସମଗ୍ର ଆନନ୍ଦ ଭବନର ହତା ଭିତରେ, ବାରଣ୍ଡାରେ ଓ ଝରକାମାନଙ୍କ ନିକଟରେ ପୂରି ରହୁଥିଲେ । ବିଭିନ୍ନ ପ୍ରକାରର ସ୍ୱାଧୀନତା ଆନ୍ଦୋଳନ ସମ୍ପର୍କୀୟ ଧ୍ୱନି କ୍ରମେ କ୍ରମେ ସମଗ୍ର ସ୍ଥାନକୁ ଅସ୍ଥିର କରି ପକାଉଥିଲା । ଝରକା ଓ ଦ୍ୱାର ଫାଙ୍କ ଦେଇ ଲୋକେ ଘର ଭିତରକୁ ଚାହୁଁଥିଲେ ଅତି ଉଦ୍‌ଗ୍ରୀବ ହୋଇ । ସେ ପ୍ରକାର ପରିସ୍ଥିତି ଭିତରେ ଜବାହରଲାଲ ଘର ଭିତରେ ରହି ଖାଇବା-ପିଇବା କିମ୍ବା କୌଣସି ପ୍ରକାର କାର୍ଯ୍ୟ କରିବାପାଇଁ ସମ୍ପୂର୍ଣ୍ଣ ଅସମର୍ଥ ହୋଇ ପଡ଼ୁଥିଲେ । ସରଳମନା ଲୋକଙ୍କୁ ସାମାନ୍ୟ ଆନନ୍ଦ ଦେବାରୁ ବଞ୍ଚିତ କରାଇ ପାରିବେ କେମିତି ? *

କୁମାରୀ ଇନ୍ଦିରା ଏ ଦୃଶ୍ୟ ଦେଖି ପାପୁଙ୍କ ପରି ଅନେକ ସମୟରେ ଅତ୍ୟନ୍ତ ବିବ୍ରତ ହୋଇ ପଡ଼ୁଥିଲେ ।

ବାସ୍ତବିକ୍ ସେତେବେଳକୁ ଜବାହରଲାଲ ଭାରତୀୟ ଜନସାଧାରଣଙ୍କର ହୃଦୟର ସମ୍ରାଟ ହୋଇସାରିଥିଲେ । ତାହାଙ୍କୁ କେନ୍ଦ୍ର କରି ଅନେକ ଗଳ୍ପ-କବିତା

* ଜବାହରଲାଲ ନେହେରୁଙ୍କ ଆତ୍ମଜୀବନୀ ।

ଲେଖା ଯାଉଥିଲା । ଅନେକେ ତାଙ୍କ ନାମ ବ୍ୟବହାର କରିବା ପୂର୍ବରୁ 'ତ୍ୟାଗମୂର୍ତ୍ତି', 'ଭାରତଭୂଷଣ' ଇତ୍ୟାଦି ବିଶେଷଣମାନ ଯୋଗ କରୁଥିଲେ । ତେଣୁ ନେହେରୁ ପରିବାର ଭିତରେ ତାଙ୍କ ସ୍ତ୍ରୀ କମଳା ଓ ଭଉଣୀ କୃଷ୍ଣା ବେଳେ ବେଳେ ମୃଦୁ ପରିହାସ ମଧ୍ୟ କରୁଥିଲେ ବିଶେଷ କରି ଖାଇ ବସିବା ବେଳେ—"ଓ ଭାରତର ଜବାହର ମହାଶୟ, ମକ୍ଖନ ଟିକିଏ ଏ ଆଡ଼କୁ ଦେବେ କି ?"—ଏ ପ୍ରକାର ପରିହାସ କରିବାରୁ ଇନ୍ଦିରା ମଧ୍ୟ ବାଦ୍ ଯାଉ ନ ଥିଲେ । ସୁଯୋଗ ନେଇ ସେ କହୁଥିଲେ, "ଓ ତ୍ୟାଗମୂର୍ତ୍ତିଜୀ—ଜେମ୍‌ଗୁଡ଼ିକ ଟେବୁଲ୍ କ୍ଲଥ ଉପରେ ଢାଳି ଦେଉଛନ୍ତି ଯେ—" ଏଥିରୁ ସ୍ପଷ୍ଟ ଅନୁମାନ କରାଯାଇପାରେ ଯେ, ଜବାହରଲାଲ ଖାଇ ବସିବାବେଳେ ମଧ୍ୟ ଅନ୍ୟମନସ୍କ ରହୁଥିଲେ । ବୋତଲରୁ ଜେମ୍ ନିଜ ପ୍ଲେଟକୁ ଢାଳିବା ବେଳେ ତାହା ପ୍ଲେଟରେ ନ ପଡ଼ି ଟେବୁଲ୍ ଉପରେ ପଡ଼ୁଥିଲା । କେବଳ ଚିନ୍ତା—ଚିନ୍ତା—ଚିନ୍ତା । ଦେଶ ପାଇଁ—ଦଶ ପାଇଁ—ଜାତି ପାଇଁ ଓ ଭାରତ ପାଇଁ ।

**ଲବଣ ସତ୍ୟାଗ୍ରହ :**

୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ଗାନ୍ଧିଜୀ ସାବରମତୀଠାରୁ ଦାଣ୍ଡି ପର୍ଯ୍ୟନ୍ତ ପ୍ରାୟ ୩୯ କିଲୋମିଟର ପଦଯାତ୍ରା ଆରମ୍ଭ କରିଥିଲେ । ରାସ୍ତାରେ ଯିବାବେଳେ ପ୍ରତିଦିନ ହେ ଶହ ଲୋକ ତାଙ୍କ ସହ ଯୋଗ ଦେଉଥିଲେ । ଦାଣ୍ଡି ନିକଟରେ ପହଞ୍ଚିବା ବେଳକୁ ସେ ଶୋଭାଯାତ୍ରାରେ ଏତେ ଲୋକ ଏକାଠି ହୋଇ ଯାଇଥିଲେ ଯେ ତାହା ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଥିଲା । ସେତେ-ବେଳେ ଜନସାଧାରଣଙ୍କ ମନରେ ଉଗ୍ର ଜାତୀୟଭାବର ଉଦ୍ରେକ କରିବା ପାଇଁ ଜବାହରଲାଲ ଆହ୍ୱାନ ଦେଇ କହିଥିଲେ, "ସୌଭାଗ୍ୟପୂର୍ଣ୍ଣ ଆନ୍ଦୋଳନରେ ଆପଣ-ମାନେ କଣ କେବଳ ଦର୍ଶକ ହୋଇ ରହିଯିବେ ? ଆପଣମାନଙ୍କ ସମ୍ମୁଖରେ ସଂଗ୍ରାମ ଭୂମି । ଭାରତୀୟ ଜାତୀୟ ପତାକା ଆପଣମାନଙ୍କ ଆଗମନକୁ ସ୍ୱାଗତ ଜଣାଇବା ପାଇଁ ଅପେକ୍ଷାରତ······ଭାରତର ଯଦି ପରାଜୟ ହୁଏ ଆପଣମାନେ କାହା ପାଇଁ ବଞ୍ଚିବେ—Who lives if India dies and who dies if India lives." *

ଏ ଅଗ୍ନି ସ୍ଫୁଲିଙ୍ଗର ସ୍ଫୁରଣରେ ନିଜକୁ ଝାସ ନ ଦେବ ବା କିଏ ?

ଅପ୍ରେଲ ୬ ତାରିଖରେ ଗାନ୍ଧିଜୀ ଦାଣ୍ଡିଠାରେ ଲବଣ ଆଇନ ଭଙ୍ଗ କରିଥିଲେ । ସେହିଦିନ ମୋତିଲାଲ ତାଙ୍କ ପୁରୁଣା ଘରକୁ ସ୍ୱରାଜ୍ୟ ଭବନ ନାମରେ ନାମିତ କରିଥିଲେ ଓ ଭାରତୀୟ ଜାତୀୟ କଂଗ୍ରେସକୁ ତାହା ଦାନ କରି ଦେଇଥିଲେ । ସେତେବେଳର କଂଗ୍ରେସ ସଭାପତି ଜବାହରଲାଲ କଂଗ୍ରେସ ଅନୁଷ୍ଠାନ ପାଇଁ ଓ ତା'ର ତରଫରୁ ସେ ଦାନ ଗ୍ରହଣ କରିଥିଲେ ।

* J. S. Bright—Indira Gandhi.

ଲବଣ ଆଇନକୁ ବିରୋଧ କରିବାର ପ୍ରାୟ ଏକ ମାସ ପରେ ଗାନ୍ଧିଜୀ, ମୋତିଲାଲ ଓ ଜବାହରଲାଲଙ୍କୁ ଗିରଫ କରାଯାଇଥିଲା । ଏମାନଙ୍କୁ ଯେତେ-ବେଳେ ଇଚ୍ଛା ସେତେବେଳେ ଜେଲ ହାଜତକୁ ନେବାଲାଗି ସରକାରଙ୍କ ନିକଟରେ ମିଥ୍ୟା ଅପରାଧର ଗୋଟାଏ ଗୋଟାଏ ବଡ଼ ତାଲିକା ରହିଥିଲା ଯେମିତି ।

ଜବାହରଲାଲ ଗିରଫ ହୋଇଯିବା ପରେ ତାଙ୍କ ସ୍ତ୍ରୀ କମଳା ନେହେରୁ ଆହ୍ଲାବାଦଠାରେ କଂଗ୍ରେସର ସମସ୍ତ କାର୍ଯ୍ୟ ଚଳାଇ ନେବାପାଇଁ ଯଥାସାଧ୍ୟ ଚେଷ୍ଟା କରିଥିଲେ ଓ ସଫଳ ମଧ୍ୟ ହୋଇଥିଲେ । ସଙ୍ଗଠନ କରିବା ତଥା ସଭା ସମିତିରେ ବକ୍ତୃତା ଦେବାରେ ଅତି କମ୍ ଦିନ ଭିତରେ ସେ ଯଥେଷ୍ଟ ଖ୍ୟାତି ଲାଭ କରିପାରି-ଥିଲେ ।

ତାଙ୍କର ସଙ୍ଗଠନ ଶକ୍ତି ବିଷୟରେ ଜବାହରଲାଲ ସେ ପର୍ଯ୍ୟନ୍ତ କୌଣସି ଆଭାସ ପାଇ ନ ଥିଲେ । ଯେତେବେଳେ ସେ ଖବରଟି ପାଇଥିଲେ, ଜବାହରଲାଲ ଯେତିକି ଆଶ୍ଚର୍ଯ୍ୟ ହୋଇଥିଲେ ସେତିକି ଆନନ୍ଦିତ ମଧ୍ୟ ହୋଇଥିଲେ ।

**ବାନରସେନାର ସେନାପତି :**

ବାରବର୍ଷୀୟା ଇନ୍ଦିରା ସେତେବେଳେ ସ୍ୱାଧୀନତା ସଂଗ୍ରାମର ଜଣେ ମୌନ ଦର୍ଶକ ହୋଇ ରହି ନ ଥିଲେ । ପିତାମାତାଙ୍କର ସଙ୍ଗଠନ ଶକ୍ତିର ପ୍ରବାହ ମଧ୍ୟ ତାଙ୍କ ନିକଟରେ ଥିଲା । ଅସହଯୋଗ ଆନ୍ଦୋଳନରେ କଂଗ୍ରେସ ଦଳକୁ ସାହାଯ୍ୟ କରିବା ଲାଗି ପ୍ରାୟ ଛଅ ହଜାର ବାଳକ-ବାଳିକାଙ୍କୁ ନେଇ ସେ ଏକ ସଙ୍ଗଠନ କରିଥିଲେ ଓ ତାର ନାମକରଣ କରିଥିଲେ—"ବାନରସେନା" । ସେ ଥିଲା ୧୯୩୦ ମସିହାର କଥା ।

ଯେତେବେଳେ ଏ ସଙ୍ଗଠନ ଆରମ୍ଭ କରିବା ଉଦ୍ଦେଶ୍ୟରେ ପ୍ରଥମ ସଭାର ଖବର ଚାରିଆଡ଼େ ପ୍ରଚାରିତ ହୋଇଥିଲା, ହଜାର ହଜାର ସଂଖ୍ୟାରେ ବାର ଚଉଦ ବର୍ଷର ବାଳକ-ବାଳିକା ସେଥିରେ ଯୋଗ ଦେଇଥିଲେ । ସଭାକାର୍ଯ୍ୟ ଆରମ୍ଭରେ ଇନ୍ଦିରା ସେମାନଙ୍କ ମଧ୍ୟରେ ଛିଡ଼ାହୋଇ ସେ ସଙ୍ଗଠନ ସମ୍ପର୍କରେ ସମବେତ ସେନାମାନଙ୍କୁ ବୁଝାଇବା ପ୍ରୟାସ କରିଥିଲେ । କିନ୍ତୁ ଏତେ ସଂଖ୍ୟାରେ ପିଲାମାନେ ତଥା ସେମାନେ କଣ ସବୁ ଆଲୋଚନା କରୁଛନ୍ତି ତାହା ଶୁଣିବା ଲାଗି ବଡ଼ ଲୋକ-ମାନେ ଯୋଗ ଦେଇଥିଲେ ଯେ ଇନ୍ଦିରାଙ୍କ କଣ୍ଠସ୍ୱର ସମସ୍ତଙ୍କୁ ଶୁଣାଯିବା କାଠିକର ପାଠ ହୋଇ ପଡ଼ିଥିଲା । ତେଣୁ ମଝିରେ ମଝିରେ ଅନ୍ୟମାନେ ଛିଡ଼ାହୋଇ ଇନ୍ଦିରା ଯାହା କହୁଥିଲେ ତାହା ପୁଣି ପ୍ରଚାର କରୁଥିଲେ । ଏହିପରି ଭାବରେ ସଭା କାର୍ଯ୍ୟ ସମାପନ ହୋଇଥିଲା ।

ଇନ୍ଦିରା ଯେତେବେଳେ ସେ ସଙ୍ଗଠନ ସମ୍ପର୍କରେ କମଳାଙ୍କୁ କହିଥିଲେ ଓ ତା'ର ଉପଯୁକ୍ତ ନାମକରଣ କରିବାଲାଗି କହିଥିଲେ, କମଳା ଉପଦେଶ

ଦେଇଥିଲେ ସଙ୍ଗଠନର ନାମ "ବାନରସେନା" ରଖିବା ପାଇଁ । ତାଙ୍କୁ ବୁଝାଇ ଦେଇଥିଲେ ଯେ, ରାମ ଏକ ଅସୁରପୁରୀ ରାବଣର ରାଜ୍ୟ ଲଙ୍କାରୁ ସୀତାଙ୍କୁ ଉଦ୍ଧାର କରିବାପାଇଁ ଯେଉଁ ତୁମୁଳ ସଂଗ୍ରାମ କରିଥିଲେ, ବାନରସେନା ତାହାଙ୍କୁ ସେଥିରେ ଯଥେଷ୍ଟ ସାହାଯ୍ୟ କରିଥିଲେ ଏବଂ ସେ ସହାୟତା ରାମଙ୍କ ଲାଗି ବିଶେଷ ଫଳପ୍ରଦ ହୋଇଥିଲା ।

ବାସ୍ତବିକ୍ କୁମାରୀ ଇନ୍ଦିରାଙ୍କ ଦ୍ୱାରା 'ବାନରସେନା'ର କାର୍ଯ୍ୟକଳାପ କଂଗ୍ରେସର ଲକ୍ଷ୍ୟ ହାସଲପାଇଁ ଅନେକ ଉପାଦେୟ କାର୍ଯ୍ୟ କରୁଥିଲା । ସେ ସେନାମାନେ ଅଫିସ କାର୍ଯ୍ୟରେ ସହାୟତା କରିବା ସଙ୍ଗେ ସଙ୍ଗେ ଦରକାର ପଡ଼ିଲେ ଖାଦ୍ୟ ପ୍ରସ୍ତୁତ କରୁଥିଲେ, ପ୍ରାଥମିକ ଚିକିତ୍ସା କରୁଥିଲେ, ଅନେକ ସମୟରେ ଇସ୍ତାହାର ବାଣ୍ଟୁଥିଲେ ଏବଂ ତ୍ରିରଙ୍ଗ ପତାକା ଧାରଣ କରୁଥିଲେ ।

ବିଶେଷ କରି ଯେତେବେଳେ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଉପରେ ପୋଲିସ ବା ସୈନ୍ୟବାହିନୀ ତରଫରୁ ଲାଠିଚାଳନା ବା ଗୁଳିଚାଳନା କରାଯାଉଥିଲା, ସେତେବେଳେ ବାନରସେନାର ସେବାକାର୍ଯ୍ୟ ଅନେକ ଗୁଣରେ ବଢ଼ିଯାଉଥିଲା । ଡାକ୍ତରମାନେ ଦିନର ଆଲୋକରେ ଆହତ ବ୍ୟକ୍ତିମାନଙ୍କର ଚିକିତ୍ସାପାଇଁ ଆସୁ ନ ଥିଲେ, ବାନରସେନା ଅଣ୍ଟା ଭିଡ଼ୁଥିଲା ସେତିକବେଳେ । ସେତେବେଳର ପରିସ୍ଥିତି ସମ୍ପର୍କରେ ଇନ୍ଦିରା ମତ ଦେଇ କହିଥିଲେ, "ମୁଁ ଯେଉଁ ସମୟର କଥା କହୁଛି (୧୯୨୯—୩୧ ମସିହା ବେଳେ) ସେତେବେଳେ ପୋଲିସ ଗୁଳିରେ କ୍ଷତବିକ୍ଷତ ଲୋକଙ୍କ ନିକଟକୁ ଡାକ୍ତରମାନେ ମଧ୍ୟ ଭୟରେ ଆସୁ ନ ଥିଲେ । କେବଳ ରାତିର ଅନ୍ଧକାର ଭିତରେ ସେମାନେ ଆସୁଥିଲେ ଚିକିତ୍ସା କରିବା ପାଇଁ । କାରଣ ସେମାନଙ୍କର ଭୟ ଥିଲା ଦିବାଲୋକରେ ସରକାରୀ ବିରୋଧୀ ଲୋକଙ୍କ ନିକଟରେ ସେମାନଙ୍କୁ ଦେଖି କାଳେ ଅନ୍ୟ କେହି ସରକାରଙ୍କୁ ରିପୋର୍ଟ କରିଦେବେ !" ଥରକର ସେଭଳି ଏକ ଘଟଣାର ଅଭିଜ୍ଞତା ବର୍ଣ୍ଣନା କରି ଶ୍ରୀମତୀ ଗାନ୍ଧୀ ମତ ଦେଇଥିଲେ ଯେ ଥରେ ନିକଟବର୍ତ୍ତୀ ଏକ ଗ୍ରାମରେ ସେଭଳି ଏକ ଗୁଳିକାଣ୍ଡ ଘଟଣା ହୋଇଥିଲା । ସେହି ଦୁର୍ଘଟଣାରେ ଆହତ ବ୍ୟକ୍ତିମାନଙ୍କୁ ଚିକିତ୍ସା କରିବାପାଇଁ କୌଣସି ଡ଼ାକ୍ତର ଯାଇ ନ ଥିଲେ । ତେଣୁ ସ୍ୱେଚ୍ଛାସେବୀ ଯୁବକମାନେ ଆହତମାନଙ୍କୁ ସେହିଭଳି ରକ୍ତାକ୍ତ ଅବସ୍ଥାରେ ହିଁ ଅଣାଇବାକୁ ହୋଇଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ୧୪ରୁ ୧୭ ବର୍ଷର ଯୁବକ । *

ବାନରସେନାର ସଦସ୍ୟମାନେ ଯେତେସବୁ ଖବର ନେବା ଆଣିବା କରିବା ସଙ୍ଗେ ସଙ୍ଗେ ଅନେକ ସମୟରେ ଗୁପ୍ତ ତଥ୍ୟମାନ ଆଣି ନେତାମାନଙ୍କ ନିକଟରେ ପହଞ୍ଚାଇ ଦେଉଥିଲେ । ଛୋଟ ଛୋଟ ବାଳକ-ବାଳିକାମାନେ ପୋଲିସ ଅଫିସର

* M. K. Alexander—Indira Gandhi—P-91.

ଏବଂ ପୋଲିସ ଷ୍ଟେସନମାନଙ୍କର ପାଖେ ପାଖେ ନିରାପଦରେ ରହିପାରୁଥିଲେ ଏବଂ ସେହିସବୁ ସ୍ଥାନରୁ ଖବର ସଂଗ୍ରହ କରୁଥିଲେ । ପୋଲିସମାନଙ୍କର ଗତିବିଧିର ସୂଚନା ଦେବା ସଙ୍ଗେ ସଙ୍ଗେ କାହାକୁ କାହାକୁ ଗିରଫ କରିବାପାଇଁ ଯୋଜନା ଚାଲିଛି ସେ ଖବରମାନ ନେଇ ଆସୁଥିଲେ ଏବଂ ବଡ଼ମାନଙ୍କ ପାଖରେ ପହଞ୍ଚାଇ ଦେଉଥିଲେ । ସେମାନେ ଯେଉଁଠାରୁ ଯେଉଁ ଖବର ପାଉଥିଲେ କଂଗ୍ରେସ କର୍ତ୍ତୃପକ୍ଷଙ୍କ ନିକଟରେ ତାହା ଅବିଲମ୍ବେ ପହଞ୍ଚାଇ ଦେଉଥିଲେ । ସେମାନେ ସମସ୍ତେ ହାତବୁଣା ଲୁଗା ପିନ୍ଧିବା ସଙ୍ଗେ ସଙ୍ଗେ ସ୍ୱଦେଶୀ ଜିନିଷ ବ୍ୟବହାର କରିବା-ପାଇଁ ପ୍ରଚାର କରୁଥିଲେ ।

ଇନ୍ଦିରାଙ୍କ ଦାଦୁ ଓ ପାପୁ ପ୍ରାୟତଃ ଜେଲ୍‌ରେ ହିଁ ରହୁଥିଲେ । ଜେଲ ହାଜତରେ ରହୁଥିବା ବେଳେ ଦାଦୁ ମୋତିଲାଲ ଖବର ପାଇଥିଲେ ଯେ ତାଙ୍କର ବାରବର୍ଷ ବୟସ୍କା ନାତୁଣୀ କଂଗ୍ରେସକୁ ସାହାଯ୍ୟ କରିବାପାଇଁ ଓ ଜନତାର ସେବା କରିବାପାଇଁ ଏକ 'ବାନରସେନା' ଗଠନ କରିଛି । ଏ ଖବରରେ ସେ ଉତ୍ଫୁଲ୍ଲ ହୋଇଥିଲେ ଓ ପରିହାସ କରି ଜେଲରୁ ଇନ୍ଦୁ ନିକଟକୁ ଚିଠି ଲେଖିଥିଲେ, ''ବାନରସେନାର ଖବର କ'ଣ ? ମୋ ମତରେ ବାନର ସେନାର ପ୍ରତ୍ୟେକ କର୍ମୀଙ୍କ ଲାଞ୍ଜର ଲମ୍ବା ସେମାନଙ୍କ ପଦବୀ ଅନୁଯାୟୀ ଦୀର୍ଘ ହେବା ଉଚିତ ।'' *

କିଛିଦିନ ଅଲଗା ଅଲଗା ରହିବା ପରେ ମୋତିଲାଲଙ୍କ ଜେଲ୍‌କୁ ଜବାହରଲାଲଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା । ସେତେବେଳକୁ ମୋତିଲାଲଙ୍କ ସ୍ୱାସ୍ଥ୍ୟ ଠିକ୍ ରହୁ ନ ଥିଲା । ସେ ଥିଲେ ଜଣେ ଶ୍ୱାସରୋଗୀ । ଏଣେ ଜେଲ୍ ରହଣୀ କାଳରେ କୌଣସି କାର୍ଯ୍ୟରେ ସମସ୍ତାନୁବର୍ତ୍ତିତା ରକ୍ଷା କରାଯାଇପାରୁ ନ ଥିଲା । ତେଣୁ ଶ୍ୱାସ ରୋଗ ବଢି ଯାଇଥିଲା । ତେବେ ଜବାହରଲାଲ ତାଙ୍କ ନିକଟରେ ରହିବା ପରେ ସେ ସମସ୍ତ ପ୍ରକାର ସେବା ଶୁଶ୍ରୂଷାର ସୁଯୋଗ ପାଇଥିଲେ । ନିଜ ସ୍ୱାସ୍ଥ୍ୟ ସମ୍ପର୍କରେ ସେ ଆନନ୍ଦ ଭବନକୁ ଚିଠି ଲେଖିଥିଲେ, ''ମୋର ଯାହା ଯେତେବେଳେ ଆବଶ୍ୟକ ଜବାହର ସମସ୍ତ ପ୍ରସ୍ତୁତକରି ଆଗରୁ ରଖୁଛି ଓ ମୋତେ ଆଦୌ କିଛି କରିବା ଲାଗି ପଡ଼ୁନାହିଁ । —I wish there were many fathers to boast of such sons.'' **

ତଥାପି ସ୍ୱାସ୍ଥ୍ୟର କୌଣସି ଉନ୍ନତି ନ ହେବା ଦୃଷ୍ଟିରୁ ତାହାଙ୍କୁ ଜେଲ୍‌ରୁ ଖଲାସ କରି ଦିଆଯାଇଥିଲା ୧୯୩୦ ମସିହା ସେପ୍‌ଟେମ୍ବର ୧୧ ତାରିଖରେ । ଜେଲ୍‌ରୁ ଖଲାସ ହେବା ପରେ ପତ୍ନୀ ସ୍ୱରୂପାରାଣୀ ଓ ନାତୁଣୀ ଇନ୍ଦିରାଙ୍କ ସହ ସେ ମଶୋରୀ ଯାତ୍ରା କରିଥିଲେ । କମଳା ରହିଥିଲେ ଆନନ୍ଦ ଭବନ ଦାୟିତ୍ୱରେ ।

* ଶ୍ରୀ ଅରୁଣ କୁମାରଙ୍କ ଲିଖିତ ହିନ୍ଦି ପୁସ୍ତକ 'ଇନ୍ଦିରା ଗାନ୍ଧୀ'ର୪୫ ପୃଷ୍ଠା ଦ୍ରଷ୍ଟବ୍ୟ ।
** K. A. Abbas—Return of the red rose.

ଘର ଖବର ବୁଝିବା ସଙ୍ଗେ ସଙ୍ଗେ ସ୍ୱାମୀଙ୍କ ଅନୁପସ୍ଥିତିରେ କମଳା କଂଗ୍ରେସର ଅଫିସ୍ କାର୍ଯ୍ୟ ମଧ୍ୟ ବୁଝୁଥିଲେ । ସେ ସ୍ୱରାଜ୍ୟ ଭବନର ସମସ୍ତ ଅଫିସ କାର୍ଯ୍ୟ ସମ୍ପାଦନ କରୁଥିବାରୁ ପୋଲିସ୍‌ର କୁଟ କଟାକ୍ଷ ମଧ୍ୟ ତାଙ୍କ ଉପରେ ପଡ଼ିବା ସ୍ୱାଭାବିକ । ଜବାହରଲାଲ ଜେଲରୁ ମୁକ୍ତ ହେବା ସମୟ ପାଖେଇ ଆସୁଥିଲେ ମଧ୍ୟ ସେ ପ୍ରତି ମୁହୂର୍ତ୍ତରେ ଆଶଙ୍କା କରୁଥିଲେ ଜବାହରଲାଲ ଜେଲ୍‌ରୁ ମୁକ୍ତ ହେବା ଆଗରୁ ନିଜେ ଜେଲ ଯିବାର ସମସ୍ତ ସମ୍ଭାବନା ଅଛି । ମୂଳତଃ ଜବାହରଲାଲଙ୍କୁ ଜେଲରୁ ଖଲାସ କରିବା ସମ୍ପର୍କରେ ସେ ସନ୍ଦିହାନ ଥିଲେ । ତେଣୁ ଏକ ପତ୍ରରେ ସେ ଜବାହରଲାଲଙ୍କୁ ଲେଖିଥିଲେ, "ଜବାହର ! ମୁଁ ତୁମର ପତ୍ର ପାଇଛି । ତୁମେ ଜେଲ୍‌ରୁ ମୁକ୍ତ ପାଇବାର ଦିନ ପାଖେଇ ଆସୁଛି । କିନ୍ତୁ ତଥାପି ତୁମେ ଯେ ମୁକ୍ତ ପାଇବ ଏଥିରେ ମୁଁ ସନ୍ଦିହାନ । ଯଦିବା ତୁମେ ଜେଲମୁକ୍ତ ହୁଅ ତଥାପି ପୁଣି ଥରେ ତୁମକୁ ବନ୍ଦୀ କରି ନିଆଯିବ ବୋଲି ମୋର ଆଶଙ୍କା । ସେସବୁ ପାଇଁ ମୁଁ ପ୍ରସ୍ତୁତ ଅଛି । ପୁଣି ମୁଁ ମଧ୍ୟ ଆଶଙ୍କା କରୁଛି ତୁମେ ମୁକ୍ତହେବା ପୂର୍ବରୁ ମୁଁ ହୁଏତ ଗିରଫ ହୋଇ ସାରିଥିବ ।" *

ତା'ର ପ୍ରାୟ ମାସକ ପରେ ଜବାହରଲାଲ କାରାମୁକ୍ତ ହୋଇଥିଲେ ।

ପାରିବାରିକ ଜୀବନ ଭିତରକୁ ଫେରିଆସିବା ପରେ ସ୍ତ୍ରୀ କମଳାଙ୍କ ସହିତ ସେ ମଶୋରୀ ଯାତ୍ରା କରିଥିଲେ ପୀଡ଼ିତ ପିତାଙ୍କ ନିକଟକୁ । ସେଠାରେ କିଛିଦିନ ଅବସ୍ଥାନ କାଳରେ କନ୍ୟା ଇନ୍ଦିରା ଓ ଭଉଣୀ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତଙ୍କର ତିନି ଗ୍ରେଟ ଗ୍ରେଟ ଝିଅଙ୍କ ସହ ଖେଳିବାରେ ଅନେକ ଆନନ୍ଦ ପାଉଥିଲେ ଜବାହରଲାଲ । ପିଲାମାନେ ଏକାଠି କଂଗ୍ରେସ ପତାକା ଉଡ଼ାଇ ଘରର ଏ କୋଣରୁ ସେ କୋଣ ପର୍ଯ୍ୟନ୍ତ କପରି ଶୋଭାଯାତ୍ରା କରୁଥିଲେ, ତାହା ନେହେରୁ ଲକ୍ଷ୍ୟ କରୁଥିଲେ ଅଧିକାଂଶ ସମୟରେ ।

**ମୋତିଲାଲଙ୍କ ମହାପ୍ରୟାଣ :—**

ବାପୁଜୀ ଥରେ ରୋଗଶଯ୍ୟାରେ ଶାୟିତ ମୋତିଲାଲଙ୍କ ସହିତ କଥାବାର୍ତ୍ତା କରୁ କରୁ ମୋତିଲାଲ କହିଥିଲେ ଯେ, ତାଙ୍କର ଶେଷ ସମୟ ନିକଟ ହୋଇ ଆସୁଛି । ସ୍ୱାଧୀନ ଭାରତ ନ ଦେଖି ପାରିବାର ଅବଶୋଷ ସେ ବାପୁଙ୍କ ନିକଟରେ ପ୍ରକାଶ କରିଥିଲେ ସେତିକିବେଳେ ଏବଂ ଆଶା କରିଥିଲେ ଯେ ଅତି ନିକଟ ଭବିଷ୍ୟତରେ ବାପୁ ତାକୁ ଆଣିବା ଲାଗି ଯେପରି ଚେଷ୍ଟା କରିବେ । ବାପୁ ତାହାଙ୍କୁ ଆଶ୍ୱାସନା ଶୁଣାଇ କହିଥିଲେ, "ଆମେ ଏକାଠି ସେହି ଥିପର୍ଯ୍ୟ କାର୍ଯ୍ୟ କରୁଥାଉଁ । ମୁଖ୍ୟତଃ ସେଇ କାରଣରୁ ସେ (ମୋତିଲାଲ) ଆଜି ରୋଗ ଶଯ୍ୟାରେ ଶାୟିତ ।" ଗାନ୍ଧିଜୀ ମଧ୍ୟ ଆଶା କରିଥିଲେ ଯେ ଶୀଘ୍ର ଦେଶ ସ୍ୱାଧୀନ ହେବ ।

---

* M. K. Alexander—Indira Gandhi—P.-29.

୧୯୩୧ ମସିହା ଫେବୃୟାରୀ ୬ ତାରିଖ ଦିନ ଇନ୍ଦିରାଙ୍କ ପ୍ରିୟ ଦାଦୁ ମୋତିଲାଲ ହଠାତ୍ ଇହଧାମ ତ୍ୟାଗ କରି ଚାଲିଯାଇଥିଲେ । ତାଙ୍କ ଶବ ଶୋକ-ଯାତ୍ରାଦିନ ରାଷ୍ଟ୍ରୀୟ ଶୋକଦିବସ ପାଳିତ ହୋଇଥିଲା । ପଣ୍ଡିତ ନେହେରୁଙ୍କ ଭାଷାରେ, "ମୋତିଲାଲଙ୍କ ମୃତ୍ୟୁରେ, ଇନ୍ଦିରା ଅତ୍ୟନ୍ତ ଏକାକୀ ଅନୁଭବ କରିଥିଲା ଏବଂ ଖୁବ୍ ଦୁଃଖୀ ଥିଲା । କାରଣ ସେ ଦାଦୁଙ୍କର ନୟନପିତୁଳୀ ଥିଲା ଏବଂ ଦାଦୁ ମଧ୍ୟ ତାକୁ ସର୍ବାଧିକ ଆଦର କରୁଥିଲେ ।" * ପିତାଙ୍କ ମୃତ୍ୟୁରେ ଜବାହରଲାଲ ନେହେରୁ ମଧ୍ୟ ହତୋତ୍ସାହ ହୋଇ ପଡ଼ିଥିଲେ । କିନ୍ତୁ ପିତୃପ୍ରତିମ ଗାନ୍ଧିଜୀଙ୍କ ଆଶ୍ୱାସନା ତାଙ୍କୁ ପୁଣି ପାରିବାରିକ ତଥା କର୍ମକ୍ଷେତ୍ରରେ ନୂତନ ପ୍ରେରଣା ଦେଇଥିଲା ।

ଘନଘନ କାରାବରଣ ଯୋଗୁଁ ପଣ୍ଡିତ ନେହେରୁଙ୍କ ସ୍ୱାସ୍ଥ୍ୟ ମଧ୍ୟ ଭାଙ୍ଗି ପଡ଼ିଥିଲା । ଏଣେ ଘରର ଦାୟିତ୍ୱ, ରୋଗିଣୀ କମଳାଙ୍କ ସ୍ୱାସ୍ଥ୍ୟ, ଇନ୍ଦୁର ଶିକ୍ଷା ଓ ସର୍ବୋପରି ପିତାଜୀଙ୍କ ବିଚ୍ଛେଦ—ଯେତେ ଧୈର୍ଯ୍ୟବାନ୍ ଲୋକ ହେଲେ ବି ହତୋତ୍ସାହ ହୋଇପଡ଼ିବା ସ୍ୱାଭାବିକ । ଡାକ୍ତରମାନେ ଜବାହରଲାଲଙ୍କ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ପରାମର୍ଶ ଦେଇଥିଲେ—ଅନ୍ତତଃ କିଛିଦିନ ପାଇଁ ବିଶ୍ରାମ ଦରକାର । ସେଇ ପରାମର୍ଶ ଜବାହରଲାଲ ଗ୍ରହଣ କରିଥିଲେ । କମଳା ଓ ଇନ୍ଦିରାଙ୍କୁ ସାଥିରେ ନେଇ ମାସକ ଲାଗି ସେ ସିଂହଳ ପରିଭ୍ରମଣରେ ଯାଇଥିଲେ ।

ସେହି ପରିଭ୍ରମଣ ସମୟରେ ସେ ଦକ୍ଷିଣରେ କେପ୍ କାମୋରିନ୍ ପର୍ଯ୍ୟନ୍ତ ଯିବାପାଇଁ ଇଚ୍ଛା ପ୍ରକାଶ କରିଥିଲେ ଓ ଯାଇଥିଲେ ମଧ୍ୟ । ସେଠାରୁ ତ୍ରିବାଙ୍କୁଡ଼, କୋଚିନ୍, ମହୀଶୂର, ମାଲବାର ଓ ହାଇଦରାବାଦ ଇତ୍ୟାଦି ଅଞ୍ଚଳ ମଧ୍ୟ ପରିଦର୍ଶନ କରିଥିଲେ । ତ୍ରିବାଙ୍କୁଡ଼ର ଚିରହରିତ୍ ବୃକ୍ଷରାଜି ତଥା ଚିରପ୍ରବହମାନ ନଦୀସମୂହ ଯୋଗୁଁ ତାକୁ ଭାରତର ଉଦ୍ୟାନ କୁହାଯାଇଥାଏ । ବାସ୍ତବିକ୍ ସେଠାରେ ନେହେରୁ ପରିବାର ଅନେକ ଶାନ୍ତି ପାଇଥିଲେ । ସେ ହାଇଦରାବାଦଠାରେ ସରୋଜିନୀ ନାଇଡୁଙ୍କର ଅତିଥି ହୋଇ କିଛିଦିନ ଅତିବାହିତ କରିଥିଲେ ।

ପ୍ରକୃତରେ ମାସକ ଲାଗି ଯାଇଥିଲେ ମଧ୍ୟ ସେ ପରିଭ୍ରମଣକାଳ ପ୍ରାୟ ସାତ ସପ୍ତାହକୁ ଲମ୍ବି ଯାଇଥିଲା । ସେ ଯାତ୍ରା ଇନ୍ଦିରାଙ୍କୁ ଅନେକଟା ଆନନ୍ଦ ଦେବା ସଙ୍ଗେ ସଙ୍ଗେ କେତେକ ନୂତନ ସ୍ଥାନ ଦେଖିବାର ସୁଯୋଗ ମଧ୍ୟ ଦେଇଥିଲା ।

□□□

* ଜବାହରଲାଲ ନେହେରୁଙ୍କ ଆତ୍ମଜୀବନୀ ।

## ॥ ଛଅ ॥

# ବିଶ୍ୱ ଇତିହାସର ଝଲକ



ଇନ୍ଦିରାଙ୍କ ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ତାହାଙ୍କ ଉପଯୁକ୍ତ ଶିକ୍ଷା ଦେବା ବିଷୟ ନେଇ ତାଙ୍କର ବାପା, ମା ତଥା ଜେଜେବାପା ଖୁବ୍ ଚିନ୍ତିତ ହୋଇ ପଡ଼ିଥିଲେ । ସେତେବେଳକୁ ସମଗ୍ର ଦେଶରେ ବିଦେଶୀ ବସ୍ତୁଗୁଡ଼ିକର ବର୍ଜନ ଚାଲିଥାଏ ଗାନ୍ଧିଜୀଙ୍କ ଆହ୍ୱାନରେ । ସେହି କାରଣରୁ ଜବାହରଲାଲ ଚାହିଁ ନ ଥିଲେ କୌଣସି ଏକ ଇଂରେଜୀ ସ୍କୁଲରେ ଇନ୍ଦୁ ଶିକ୍ଷାଲାଭ କରୁ । ବିଶେଷ କରି ଯେଉଁ ପ୍ରକାର ଶିକ୍ଷାରେ ପ୍ରିୟଦର୍ଶିନୀ ଇନ୍ଦୁକୁ ସେ ଶିକ୍ଷିତ କରାଇବାକୁ ଚାହିଁଥିଲେ, ସେ ପ୍ରକାର ଶିକ୍ଷା ସାଧାରଣ ସ୍କୁଲମାନଙ୍କରେ ଯେ ଇନ୍ଦୁ ପାଇପାରିବ, ତାହା ସେ ଉପଲବ୍ଧି କରିପାରି ନ ଥିଲେ । ତେଣୁ ପତ୍ର ମାଧ୍ୟମରେ କିଛି କିଛି ଶିକ୍ଷା ଦେବା ଲାଗି ସେ ମନସ୍ଥ କରିଥିଲେ । ରାଜନୈତିକ କାର୍ଯ୍ୟକଳାପ ଯୋଗୁଁ ଅନେକ ସମୟରେ କେବଳ ବାହାରେ ବାହାରେ ସମୟ ଅତିବାହିତ କରୁଥିବାରୁ ଏ ପ୍ରକାର ସିଦ୍ଧାନ୍ତରେ ଉପନୀତ ହେବା ବ୍ୟତୀତ ଅନ୍ୟ ଉପାୟ କିଛି ତାଙ୍କର ନ ଥିଲା ।

**ଚିଠି ନୁହେଁ : ବିଶ୍ୱର ସଂକ୍ଷିପ୍ତ ଇତିହାସ :—**

ପ୍ରାୟ ଏଗାର ବର୍ଷ ବୟସବେଳକୁ ପାପୁଙ୍କଠାରୁ ଅନେକଗୁଡ଼ିଏ ଚିଠି ପାଇବା ଆରମ୍ଭ ହୋଇଥିଲା । ସେ ଚିଠିଗୁଡ଼ିକ ଯେକୌଣସି ସାଧାରଣ ଚିଠିଠାରୁ ସମ୍ପୂର୍ଣ୍ଣ ପୃଥକ ଥିଲା । ରାଜନୈତିକ କାର୍ଯ୍ୟକଳାପରେ ବ୍ୟସ୍ତ ରହୁଥିବାରୁ ଜବାହରଲାଲଙ୍କ ନିକଟରେ ଗ୍ରୀଷ୍ମ, ବର୍ଷା ବା ଶୀତ ଋତୁ ମଧ୍ୟରେ କୌଣସି ପ୍ରଭେଦ ହେଉ ନ ଥିଲା । ଥରେ ଇନ୍ଦିରା ମଶୋରୀରେ ଥିବାବେଳେ ଜବାହରଲାଲ ଆହ୍ଲାବାଦଠାରେ ପ୍ରଚଣ୍ଡ ଗ୍ରୀଷ୍ମ ଅନୁଭବ କରୁଥିଲେ । ନେହେରୁ ସେତେବେଳେ ଇନ୍ଦିରାଙ୍କ ନିକଟକୁ ଖଣ୍ଡିଏ ଚିଠି ଲେଖିଥିଲେ, ଯେଉଁଥିରେ କି ତାଙ୍କ ଭବିଷ୍ୟତ୍ ପତ୍ରାବଳୀ ସମ୍ପର୍କରେ ସୂଚନା ଥିଲା । ସେଥିରେ ସେ ଲେଖିଥିଲେ, "ତୁ ମୋ ନିକଟରେ ରହୁଥିଲୁ ବେଳେ ମତେ ଅନେକ ପ୍ରଶ୍ନ ପଚାରୁଥିଲୁ ଓ ଯଥାଶକ୍ତି ମୁଁ ସେଗୁଡ଼ିକର ଉତ୍ତର ଦେବାପାଇଁ ଚେଷ୍ଟା

କରୁଥିଲୁ । ବର୍ତ୍ତମାନ ତୁ ମଶୋରୀରେ ଏବଂ ମୁଁ ଆହ୍ଲାବାଦରେ । ଆମେ କଥାବାର୍ତ୍ତା ହେବା ସମ୍ଭବ ନୁହେଁ । ତେଣୁ ମଝିରେ ମଝିରେ ମୁଁ ତୋ ନିକଟକୁ ଚିଠି ଲେଖିବି । ଭାରତ ତଥା ଅନ୍ୟ ଦେଶର ଶ୍ରେଷ୍ଠ ଶ୍ରେଷ୍ଠ କାହାଣୀ ମୁଁ ସେଥିରେ ଲେଖିବି ।" କିନ୍ତୁ ପ୍ରକୃତରେ ଜବାହରଲାଲ ସେଇ ପତ୍ରାବଳୀ ମାଧ୍ୟମରେ କେବଳ ଶ୍ରେଷ୍ଠ ଶିଶୁଙ୍କ ମନୋରଞ୍ଜନ ଲାଗି ଆଇମା କାହାଣୀ କିମ୍ବା ବୁଢ଼ୀ ଅସୁରୁଣୀ ଗଳ୍ପ ଲେଖି ନ ଥିଲେ, ଲେଖିଥିଲେ ଜ୍ଞାନ ଆହରଣପାଇଁ ନିଜ ଦେଶ ତଥା ଅନ୍ୟ ଦେଶମାନଙ୍କର ବିଜ୍ଞାନ, ଭୂତତ୍ତ୍ୱ, ଇତିହାସ ଏବଂ ପ୍ରାଗ୍‌ଐତିହାସିକ ମଣିଷ ବିଷୟରେ ସାଧାରଣ କଥା । ଅନ୍ୟ ଭାଷାରେ କହିବାକୁ ଗଲେ ପିତା ଜବାହରଲାଲ ପୁତ୍ରୀ ଇନ୍ଦିରା ନିକଟକୁ ଯେଉଁ ପତ୍ରାବଳୀ ଲେଖିଥିଲେ ସେଥିରେ ଥିଲା ବିଶ୍ୱ ଇତିହାସର ସଂକ୍ଷିପ୍ତ ପରିଚୟ । ସେଭଳି ପତ୍ରାବଳୀର ସଂଖ୍ୟା ଥିଲା ଏକ ଶହ ଛୟାନବେ ।

ସେତେବେଳର ସେଇ ଚିଠିଗୁଡ଼ିକ ମଧ୍ୟରେ ଭାରତୀୟ ସ୍ୱତନ୍ତ୍ରତା ଆନ୍ଦୋଳନ ସମ୍ପର୍କରେ ଏକ ସ୍ଥୂଳ ଧାରଣା ଦେବାପାଇଁ ମଧ୍ୟ ଚେଷ୍ଟା କରିଥିଲେ ନେହେରୁ । ସେଇ ଆନ୍ଦୋଳନରେ ଅଂଶଗ୍ରହଣ କରି ଆବଶ୍ୟକ ପଡ଼ିଲେ ଜୀବନକୁ ବଳିଦାନ ଦେବାପାଇଁ ମଧ୍ୟ ପ୍ରେରଣା ଦେଇଥିଲେ । କିଶୋରୀ ଇନ୍ଦିରା ସେଇ ପତ୍ରାବଳୀ ମଧ୍ୟରୁ କେବଳ ଭାରତର ସ୍ୱାଧୀନତା ସଂଗ୍ରାମ ବିଷୟରେ ଯେ ଧାରଣା କରିପାରିଥିଲେ ସେତିକି ନୁହେଁ, ଜଣେ ବୀର ସୈନିକ ରୂପେ ନିଜକୁ ପ୍ରସ୍ତୁତ କରିବା ପାଇଁ ମଧ୍ୟ ଯଥେଷ୍ଟ ପ୍ରେରଣା ପାଇଥିଲେ ଏବଂ ଜୀବନବ୍ୟାପୀ ସେ ପତ୍ରାବଳୀ ପ୍ରଭାବରେ ପ୍ରଭାବିତ ହୋଇଥିଲେ । ଜବାହରଲାଲ ଇନ୍ଦିରାଙ୍କୁ ପତ୍ର ମାଧ୍ୟମରେ ଲେଖିଥିଲେ ଯେ ଭାରତର ଗାରିମାକୁ ପୃଥିବୀରେ ବଜାୟ ରଖିବାକୁ ହେଲେ ସ୍ୱାଧୀନତା ସଂଗ୍ରାମର ଏକ କୁଶଳୀ ସିପାହୀ ହେବାକୁ ହେବ ଏବଂ ଦେଶକୁ ପବିତ୍ରପୀଠ ମନେକରି ଦରକାର ହେଲେ ସେଥିପାଇଁ ଜୀବନ ଉତ୍ସର୍ଗ କରିବାକୁ ପଡ଼ିବ । ଅନେକ ସମୟରେ ଆମମାନଙ୍କ ମନ ଭିତରେ ପ୍ରଶ୍ନ ଉଠିଆଏ ଯେ ଆମେ କ'ଣ କରିବା ଉଚିତ ଓ କ'ଣ ନ କରିବା ଉଚିତ । ସେ ପ୍ରକାର ଦ୍ୱିଧାରୁ ମୁକ୍ତି ପାଇବା ପାଇଁ ଉପଯୁକ୍ତ ପଥ ବାଛିନେବା ନିମନ୍ତେ ଜବାହରଲାଲ ଏକ କଷଟିର ସନ୍ଧାନ ଦେଇଥିଲେ ଇନ୍ଦିରାଙ୍କୁ । ସେ କଷଟି ଥିଲା, କୌଣସି କାଳେ କୌଣସି କାର୍ଯ୍ୟ ଲୁକ୍‌କାୟିତ ଭାବେ ନ କରିବା ।

ପରିସ୍ଥିତି ଯେତେ ଗୁରୁତର ହେଉନା କାହିଁକି, ଇନ୍ଦିରାଙ୍କୁ କୌଣସି ମୁହୂର୍ତ୍ତରେ ପରିସ୍ଥିତିରେ ଦୁର୍ବଳମନା ନ ହେବା ପାଇଁ ଉପଦେଶ ଦେଇଥିଲେ । ଗୋଟିଏ ଚିଠିରେ ସେ ଲେଖିଲେ, "ତୁ ଜାଣୁ ଯେ ଏ ମହାନ୍ ସ୍ୱତନ୍ତ୍ରତା ଆନ୍ଦୋଳନ ଆମ୍ଭେମାନେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଚଳାଇଛେ । କୌଣସି କାର୍ଯ୍ୟ ଲୁଚାଇ ରହସ୍ୟମୟ କରିରଖିବା ଆମ୍ଭମାନଙ୍କର ଆଦୌ ଆବଶ୍ୟକ ନାହିଁ । ଯାହାକିଛି କହୁଛେ ବା କରୁଛେ ସେଥିରେ ଆମ୍ଭମାନଙ୍କର ତିଳେମାତ୍ର ଭୟ ନାହିଁ । ଦିବସର

ସୂର୍ଯ୍ୟାଲୋକ ତଳେ ଆମେ ଆମର କାର୍ଯ୍ୟ କରୁଛେ ।" ଏପରି କି ବ୍ୟକ୍ତିଗତ ଜୀବନରେ ମଧ୍ୟ କୌଣସି କାର୍ଯ୍ୟ ଲୁଚାଇ ଛପାଇ ନ କରିବା ଫଳରେ କୌଣସି କାଳେ କୌଣସି ପ୍ରକାରର ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ଭୟ ରହିବ ନାହିଁ ବୋଲି ଲେଖି-ଥିଲେ । ସେ ଲେଖିଥିଲେ, "Even so (Nothing hiding) in our private lives, let us make friends with the sun and work in the light and do nothing, and do secretly or furtively. Privacy, of course, we may have and should have, but that is a very different thing from secrecy.

And if you do so (do nothing secretly), my dear, you will grow up a child of light, unafraid and serene and unruffled what ever may happen."

ପଣ୍ଡିତ ନେହେରୁ ଲେଖିଥିଲେ ଯେ ପ୍ରକୃତରେ ଇନ୍ଦିରା ଭାଗ୍ୟବତୀ; କାରଣ ଭାରତର ସ୍ୱାଧୀନତା ସଂଗ୍ରାମ ସେ ନିଜ ଆଖି ଆଗରେ ଦେଖିପାରୁଛନ୍ତି । କନ୍ୟାକୁ ଆଶୀର୍ବାଦ ଦେଇ ଚିଠି ଶେଷ କରୁଥିଲେ, "ଭଗବାନ କରନ୍ତୁ, ତୁ ବଡ଼ ହୋଇ ଦେଶମାତୃକାର ସେବା ପାଇଁ ନିଜକୁ ଜଣେ ବୀର ସାହସୀ ସୈନିକ ରୂପେ ଗଢ଼ିବାକୁ ଚେଷ୍ଟା କର ।"

ଇନ୍ଦିରା ପାପୁଙ୍କ ନିକଟରୁ ଏ ପ୍ରକାର ଶିକ୍ଷାପ୍ରଦ ଓ ଉତ୍ସାହ ତଥା ପ୍ରେରଣା-ଦାୟକ ଚିଠି ପ୍ରାୟ ଚାରି ବର୍ଷଯାଏ ପାଇଥିଲେ । ଜବାହରଲାଲ ଯେତେବେଳେ ସମୟ ପାଉଥିଲେ ଇନ୍ଦିରାଙ୍କ ନିକଟକୁ ଚିଠି ଲେଖିବା ଆରମ୍ଭ କରି ଦେଉଥିଲେ । ତେବେ ସେଥିରୁ ଅଧିକାଂଶ ଚିଠି ବିଭିନ୍ନ ଜେଲରେ ବନ୍ଦୀ ଥିବାବେଳେ ହିଁ ଲେଖା ହୋଇଥିଲା । ବେଳେବେଳେ ଏକାସାଙ୍ଗରେ ତିନି ଚାରୋଟି ପତ୍ର ଇନ୍ଦିରା ପାଉଥିଲେ । ତା'ର କାରଣ ଥିଲା ଜେଲ କର୍ତ୍ତୃପକ୍ଷ ସମସ୍ତ ସମୟରେ ପନ୍ଦର ଦିନରେ ଥରେ ମାତ୍ର ଚିଠି ଲେଖିବା ପାଇ ସୁଯୋଗ ଦେଉଥିଲେ ଜବାହରଲାଲଙ୍କୁ । ତେଣୁ ଯେତେବେଳେ ସୁଯୋଗ ପାଉଥିଲେ ଏକା ସାଙ୍ଗରେ ତିନି ଚାରୋଟି ଚିଠି ଡାକରେ ପଠାଉଥିଲେ ଜବାହରଲାଲ । ଏତେଗୁଡ଼ାଏ ଚିଠି ଏକା ସାଙ୍ଗରେ ପଠାଇବାର ବିଶେଷ କାରଣ ଥିଲା—ସେଗୁଡ଼ିକ ଇନ୍ଦିରାଙ୍କ ଶିକ୍ଷାଲାଭର ଏକ ଅଂଶ ଥିଲା ।

ସତ କହିବାକୁ ଗଲେ କାରାଗାରରୁ ମୁକ୍ତ ହୋଇ ଚାଲିଆସିବା ପରେ ଜବାହରଲାଲ ସେ ପ୍ରକାର ଚିଠି ଲେଖିବା ପାଇଁ ସମୟ ପାଉ ନ ଥିଲେ । ତେଣୁ ଅଧିକାଂଶ ଚିଠି ଜେଲର ରୁଦ୍ଧ କୋଠରୀରୁ ହିଁ ଲେଖାଯାଉଥିଲା । ଥରେ ଜେଲରୁ ମୁକ୍ତ ହୋଇ ଖୁବ୍ କମ୍ ସମୟ ପରେ ପୁଣି ଗିରଫ ହୋଇ ଜେଲ ଯାଇଥିଲେ । ଥରେ ଜେଲରୁ ସେ ଲେଖିଥିଲେ, "ଶୀଘ୍ର ହେଉ ବା ବିଳମ୍ବରେ ହେଉ, ଆଜି ଭାରତର ସମସ୍ତ ରାସ୍ତାର ମିଳନସ୍ଥଳ ହେଲା କାରାଗାର ଓ ସମସ୍ତ ଯାତ୍ରୀଙ୍କର ଯାତ୍ରା

ପଥର ଶେଷବନ୍ଧୁ ସ୍ୱପ୍ନରେ ହେଉ ବା ବାସ୍ତବରେ ହେଉ ବନ୍ଦୀଶାଳା । ତେଣୁ ମୁଁ ଆଜ ମୋର ସେଇ ପୂର୍ବପରିଚିତ ବନ୍ଦୀଶାଳା ଭିତରକୁ ଫେରିଆସିଛୁ । ବର୍ତ୍ତମାନ ତୋ କଥା ଚିନ୍ତା କରିବାପାଇଁ ଏବଂ ତୋ ନିକଟକୁ ଚିଠି ଲେଖିବା ପାଇଁ ଯଥେଷ୍ଟ ସମୟ ପାଉଛୁ । ସଂଗ୍ରାମ ଚାଲିଛି । ଆମ ଲୋକେ-ନରନାରୀ, ବାଳକ, ବାଳିକା ସମସ୍ତେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଛନ୍ତି ଏବଂ ଦେଶକୁ ଦାରିଦ୍ର୍ୟର ଅଭିଶାପରୁ ମୁକ୍ତ କରିବା ପାଇଁ ଲାଗି ପଡ଼ିଛନ୍ତି । ସ୍ୱାଧୀନତା ହେଉଛି ଏକ ଦେବୀ । ତାର ଆଶୀର୍ବାଦ ପାଇବାପାଇଁ ସେବକମାନଙ୍କୁ ପ୍ରାଣବଳି ଦେବାକୁ ପଡ଼ିବ ।''

ଏ ଥିଲା ଏକ ଜାତୀୟତାବାଦୀ ପିତାର ପୁତ୍ରୀ ନିକଟକୁ ପତ୍ର ।

ଇନ୍ଦିରାଙ୍କ ବାଲ୍ୟ ଜୀବନ ବିକାଶରେ ଅନେକ ପ୍ରତିବନ୍ଧକ ସୃଷ୍ଟି ହୋଇଥିଲା । ସେ ସମସ୍ତଙ୍କୁ ଖୁବ୍ ସାହସର ସହିତ ପାର କରିବାକୁ ଦୃଢ଼ମନା ଇନ୍ଦୁ ସମର୍ଥ ହୋଇଥିଲେ । ବୋଧହୁଏ ସେଇଥିରେ ହିଁ ତାଙ୍କ ବ୍ୟକ୍ତିତ୍ୱ ନିହିତ । ବିଭିନ୍ନ ପ୍ରତିବନ୍ଧକ ମଧ୍ୟରେ ପ୍ରଥମ ଥିଲା ପିତା ଜବାହରଲାଲ ବାରମ୍ବାର ଜେଲ ଯାଉଥିଲେ । କାରଣ ସେ ଥିଲେ ସ୍ୱାଧୀନତା ଆନ୍ଦୋଳନର ଜଣେ ସାରଥି । ପୁନଶ୍ଚ ମାତା କମଳା ପ୍ରଥମତଃ ଥିଲେ ରୁଗ୍ଣା, ପୁଣି ସେ ଥିଲେ ପିତାଙ୍କ ପଥର ଅନୁଗାମିନୀ । ସେ ପ୍ରକାର ପରିସ୍ଥିତିରେ ପରିବାରର ସୁଖଶାନ୍ତି କଥା ସ୍ପଷ୍ଟ ଅନୁମେୟ ।

କିଛିଦିନ ଗୃହଶିକ୍ଷକଙ୍କ ଦ୍ୱାରା ନିଜ ଗୃହରେ ଶିକ୍ଷା ଲାଭ କରିବା ପରେ ଯେତେବେଳେ ସ୍କୁଲ ଶିକ୍ଷାର ପ୍ରଶ୍ନ ଉଠିଥିଲା, ପ୍ରଥମେ ଦିଲ୍ଲୀର ଏକ କିଣ୍ଡର-ଗାର୍ଟନରେ ଇନ୍ଦିରାଙ୍କୁ ଭର୍ତ୍ତି କରାଯାଇଥିଲା । ତାପରେ ଆହ୍ଲାବାଦର ଏକ କନ୍‌ଭେଣ୍ଟ ଓ ପରେ ପରେ ଏକ ବୋର୍ଡ଼ିଂ ସ୍କୁଲରେ ତାଙ୍କ ନାମ ଲେଖାଯାଇଥିଲା ।

ଛଅ ବର୍ଷ ବୟସରେ ଯେତେବେଳେ ଆହ୍ଲାବାଦର ଜଣେ ଇଉରୋପୀୟ ମହିଳାଙ୍କ ଦ୍ୱାରା ପରିଚାଳିତ ସ୍କୁଲରେ ଇନ୍ଦୁର ନାମ ଲେଖାଇବା ଲାଗି ପ୍ରସ୍ତାବ ହୋଇଥିଲା, ଜବାହରଲାଲ ତାର ବିରୋଧ କରିଥିଲେ । ଦେଶରେ ସ୍ୱଦେଶୀ ଆନ୍ଦୋଳନ ପ୍ରବଳରୁ ପ୍ରବଳତର ହୋଇଉଠୁଥିବା ବେଳେ ତାଙ୍କ ପ୍ରିୟଦର୍ଶିନୀ ଇନ୍ଦୁ ଜଣେ ବିଦେଶୀ ମହିଳାଙ୍କଠାରୁ ଶିକ୍ଷାଲାଭ କରିବା ଲାଗି ମୋତିଲାଲଙ୍କ ବିବେଚନାକୁ ଜବାହରଲାଲ ପସନ୍ଦ କରିପାରି ନ ଥିଲେ । କିନ୍ତୁ ମୋତିଲାଲ ଚାହିଁଥିଲେ ଇନ୍ଦୁ ତା ବୟସର ଅନ୍ୟାନ୍ୟ ପିଲାଙ୍କ ସହିତ ମିଶୁ । ଏ ବିଷୟ ନେଇ ମୋତିଲାଲ ଓ ଜବାହରଲାଲଙ୍କ ମଧ୍ୟରେ ମତପାର୍ଥକ୍ୟ ଅତି ସ୍ପଷ୍ଟ ହୋଇଉଠିଥିଲା ।

ଇନ୍ଦିରାଙ୍କ ଜେଜେ ମୋତିଲାଲ ଯେତେବେଳେ ଥିଲେ ଜଣେ ପ୍ରସିଦ୍ଧ ଆଇନ-ଜୀବୀ । ତାଙ୍କର ଆୟ ମଧ୍ୟ କମ୍ ନ ଥିଲା । ସେ ଭାବୁଥିଲେ, ଶିକ୍ଷା ପାଇଁ ଇଉରୋପୀୟ ମିଶନାରୀମାନଙ୍କ ଦ୍ୱାରା ପରିଚାଳିତ ସ୍କୁଲଗୁଡ଼ିକ ସବୁଠାରୁ ଉତ୍କୃଷ୍ଟ । କାରଣ ଧନୀ,

ସମ୍ଭ୍ରାନ୍ତ ଓ ଉଚ୍ଚଶ୍ରେଣୀୟ ଲୋକମାନଙ୍କର ସନ୍ତାନମାନେ ଯେ ପ୍ରକାର ସ୍କୁଲଗୁଡ଼ିକରେ ଶିକ୍ଷାଲାଭ କରୁଥିଲେ । ସେହି କାରଣରୁ ସେ ଚାହିଁଥିଲେ ଇନ୍ଦୁ ମଧ୍ୟ ସେମିତି ଏକ ସ୍କୁଲରେ ଶିକ୍ଷାଲାଭ କରିବ । କିନ୍ତୁ ଜବାହରଲାଲ ଥିଲେ ସେ ପ୍ରକାର ଶିକ୍ଷାର ଘୋର ବିରୋଧୀ । ସମାଜବାଦୀ ବିଚାରଧାରାରେ ପ୍ରଭାବିତ ହୋଇ ସେ ଚାହିଁଥିଲେ ଦେଶର ମଧ୍ୟବିତ୍ତ ଶ୍ରେଣୀୟ ଲୋକମାନଙ୍କର ସନ୍ତାନମାନେ ଯେଉଁ ପ୍ରକାର ଶିକ୍ଷାଲାଭ କରୁଛନ୍ତି, ସେ ପ୍ରକାର ବାତାବରଣ ଭିତରେ ଇନ୍ଦିରାଙ୍କ ବୌଦ୍ଧିକ ବିକାଶ ହେବା ଆବଶ୍ୟକ ।

ରାଜନୈତିକ କାରଣରୁ ସମଗ୍ର ନେହେରୁ ପରିବାରର ପାରିବାରିକ ଶୃଙ୍ଖଳାରେ ବିଭ୍ରାଟ ସୃଷ୍ଟି ହୋଇଥିଲା । ଗୋଟିଏ ଗୋଟିଏ କରି ଅନେକ ସ୍କୁଲ ବଦଳାଇବାକୁ ପଡ଼ିଥିଲା ଇନ୍ଦିରାଙ୍କୁ । ତାଙ୍କ ଭାଷାରେ, "ମୁଁ ଏତେଗୁଡ଼ାଏ ସ୍କୁଲ ବଦଳାଇଥିଲି ଯେ କେଉଁ କେଉଁ ସ୍କୁଲରେ ଶିକ୍ଷାଲାଭ କରିଥିଲି ତାହା ମନେରଖିବା ଏକ କଠିନ ବ୍ୟାପାର ।" ପ୍ରଥମେ ଦିଲ୍ଲୀର ଏକ କିଣ୍ଡରଗାର୍ଟେନ, ଛଅ ବର୍ଷ ବୟସରେ ଆଲ୍ଲାହାବାଦର ଏକ କନ୍‌ଭେଣ୍ଟ ଓ ତାପରେ ଆନା ବୋର୍ଡ଼ିଂ ସ୍କୁଲରେ କିଛିଦିନ ପାଇଁ ନାମ ଲେଖାଇଥିଲେ । ତାପରେ ୧୯୩୧ ମସିହା ମଇ ମାସରୁ ୧୯୩୪ ମସିହା ପର୍ଯ୍ୟନ୍ତ ପୁନାର "ପ୍ୟୁପିଲ୍‌ସ ଓନ୍ ସ୍କୁଲ"ରେ ଛାତ୍ରୀ ଥିଲେ । ୧୯୩୪ରୁ ୧୯୩୫ ମଧ୍ୟରେ ଥିଲେ କବିଗୁରୁ ରବୀନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ଶାନ୍ତିନିକେତନର ପରିସର ଭିତରେ । ୧୯୩୫ରୁ ୧୯୩୭ରେ ସେ ସ୍ୱିଜରଲାଣ୍ଡ ବେକ୍‌ସ ନଗରରେ କିଛିଦିନ ପାଇଁ ଶିକ୍ଷା ଗ୍ରହଣ କରିଥିଲେ । ତାପରେ ଅକ୍‌ସଫୋର୍ଡ଼ର ସମରଭିଲେ କଲେଜରେ ଅଧ୍ୟୟନ କରିଥିଲେ । ଇନ୍ଦିରାଙ୍କ ସ୍କୁଲ ଶିକ୍ଷାକାଳରେ ଏ ଯେଉଁ ବିଭିନ୍ନ ପ୍ରତିବନ୍ଧକ ସୃଷ୍ଟି ହେଉଥିଲା, ତାହା ଦୂର କରିଥିଲା ପାପୁଙ୍କ ପତ୍ରାବଳୀ ଓ ତାଙ୍କର ବିରାଟ ଗ୍ରନ୍ଥାଗାର ।

ଆନନ୍ଦ ଭବନ ସାରା ଖାଲି ବହି···ବହି··· ବହି । ବିଶେଷକରି ଏପରି କି ଜବାହରଲାଲଙ୍କ ଶୟନ କକ୍ଷରେ ମଧ୍ୟ ଅସଂଖ୍ୟ ବହି ପୂରି ରହିଥିଲା । ସୁବିଶାଳ ଆନନ୍ଦ ଭବନ ଭିତରେ ଜବାହରଲାଲ ନିଜ ଲାଗି ବ୍ୟବହାର କରୁଥିବା ଅଂଶଟି ଥିଲା ଦୁଇଟି କୋଠରି ବିଶିଷ୍ଟ । ସେଥିମଧ୍ୟରୁ ଗୋଟିଏ ଥିଲା ତାଙ୍କର ଶୟନକକ୍ଷ । ତେବେ ଉଭୟ କୋଠରି ସୁନିର୍ବାଚିତ ପୁସ୍ତକାବଳୀରେ ଭରପୂର ହୋଇ ରହିଥିଲା ।*

ବାଲ୍ୟ ବୟସରୁ ହିଁ ଇନ୍ଦିରା ଅସାମାନ୍ୟ ରୂପେ ଅଧ୍ୟୟନ କରୁଥିଲେ ।

---

* Hindustan Standard Magazine—Nov. 12, 1972ରେ ସୁରେଶଚନ୍ଦ୍ରଙ୍କ ଲିଖିତ Red rose buds still bloom at Anand Bhawan.

**ଜନ୍ମଦିନର ଉପହାର :—**

ଜବାହରଲାଲ ଇନ୍ଦିରାଙ୍କୁ ଭଲ ଭଲ ପୁସ୍ତକଗୁଡ଼ିକ ପଢ଼ିବାକୁ ଉପଦେଶ ଦେଉଥିଲେ ଏବଂ ପାଠ କରିବା ଶୈଳୀ ସମ୍ପର୍କୀୟ ପରାମର୍ଶମାନ ମଧ୍ୟ ଦେଉଥିଲେ । ନୂତନ ବର୍ଷ ଏବଂ ଅନ୍ୟାନ୍ୟ ଉପହାର ଦେବା ଦିନ ବିଶେଷକରି ଇନ୍ଦିରାଙ୍କ ଜନ୍ମ-ଦିନମାନଙ୍କରେ ଯେଉଁ ଉପହାର ଦେଉଥିଲେ, ସେଥିରେ ପ୍ରଧାନତଃ ଥିଲା ପୃଥିବୀର ଭଲ ଭଲ ଲେଖକଙ୍କ ସାହିତ୍ୟ କୃତି । ସେମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ ଥିଲା ସାଇନ୍‌ସ ଅଫ୍ ଲାଇଫ୍ (Science of Life) ଭଳି ପୁସ୍ତକ ଏବଂ ଏଚ. ଜି. ଓ୍ୱେଲ୍‌ସ, ଜୁଲିଆନ୍ ହକ୍‌ସଲେ, ଜି. ପି. ଓ୍ୱେଲ୍‌ସ (H. G. Wells, Jullian Hauxlay, G. P. Wells) ପ୍ରମୁଖ ଲେଖକଙ୍କ ପ୍ରସିଦ୍ଧ ରଚନାବଳୀ ।

ସେଦିନ ଥିଲା ନଭେମ୍ବର ୧୯ ତାରିଖ, ୧୯୩୦ ମସିହା ।

ପ୍ରିୟଦର୍ଶିନୀ ଇନ୍ଦିରାଙ୍କ ତ୍ରୟୋଦଶ ଜନ୍ମବାର୍ଷିକୀ ।

ଏକ ନିରାନନ୍ଦ ପରିବେଶ ଭିତରେ ବସି ଇଂରାଜୀ ଖବରକାଗଜ ଉପରେ ଆଖି ବୁଲାଇ ଆଣୁଥିଲେ ଇନ୍ଦିରା । ଡାକବାଲା ଚିଠି ଦେଇଯାଇଥିଲା । ସେଥିରେ ଥିଲା ପାପୁଙ୍କ ହସ୍ତାକ୍ଷର । ସମସ୍ତ ବ୍ୟଗ୍ରତାର ସହିତ ଇନ୍ଦୁ ତାକୁ ଖୋଲି ପକାଇଥିଲେ ।

ଚିଠିର ପ୍ରାରମ୍ଭରେ ଲେଖାଥିଲା—

"ତ୍ରୟୋଦଶ ଜନ୍ମ ଉତ୍ସବରେ ଇନ୍ଦିରା ପ୍ରିୟଦର୍ଶିନୀ ପାଇଁ ଉପହାର ।"

"ତୋର ବିଗତ ଜନ୍ମ ବାର୍ଷିକୀ ଦିବସଗୁଡ଼ିକରେ ତୁ ଶୁଭେଚ୍ଛା ଓ ଉପହାର-ମାନ ପାଇ ଆସୁଥିଲୁ । ଏଥର ମଧ୍ୟ ପୂର୍ବଭଳି ପ୍ରଚୁରମାତ୍ରାରେ ଶୁଭେଚ୍ଛା ତୁ ପାଇପାରିବୁ ନିଶ୍ଚୟ । କିନ୍ତୁ ନୈନୀ ଜେଲରୁ ମୁଁ ତୋ ପାଇଁ କି ଉପହାର ପଠାଇ ପାରିବି ? ମୋ ଉପହାରଗୁଡ଼ିକ କୌଣସି ବସ୍ତୁ କିମ୍ବା ପାର୍ଥିବ ହୋଇପାରିବ ନାହିଁ । ସେଗୁଡ଼ିକ କେବଳ ହୃଦୟର ଶୁଭ ଚିନ୍ତନ ବ୍ୟତୀତ ଆଉ କ'ଣ ଅବା ହୋଇପାରନ୍ତା !" ଜେଲ୍‌ର ରୁଦ୍ଧ କୋଠରୀ ଭିତରୁ ମାନସିକ ତଥା ଆନ୍ତରିକ ଉପହାର ପତ୍ର ମାଧ୍ୟମରେ ପଠାଇ ଦେବାପାଇଁ ସେଥର ଜବାହର ବାଧ୍ୟ ହୋଇଥିଲେ । ତେବେ ଜବାହର ପ୍ରିୟ ଇନ୍ଦୁ ନିକଟକୁ ଯେଉଁ ଆନ୍ତରିକ ଶୁଭେଚ୍ଛା ପ୍ରେରଣ କରିବାକୁ ଇଚ୍ଛା କରିଥିଲେ ଓ ପ୍ରେରଣ ମଧ୍ୟ କରିଥିଲେ ତାହାକୁ ଜେଲ୍‌ର ସୁ-ଉଚ୍ଚ ପାଚେରୀ ମଧ୍ୟ ଅଟକାଇ ରଖିବାପାଇଁ ସମର୍ଥ ନ ଥିଲା ।

ନୈନୀ ଜେଲରୁ ଏ ଆଶୀର୍ବାଦ—ଜନ୍ମଦିନର ଉପହାରଟି ପଠାଇଥିଲେ ଜବାହରଲାଲ । ଯଦିଓ ନୈନୀ ଜେଲ ଆହ୍ଲାବାଦଠାରୁ ଅତି ନିକଟରେ, ତଥାପି

ପିତା ଓ ପୁତ୍ରୀଙ୍କ ମଧ୍ୟରେ ରହିଥିଲା ଅନେକ ଦୂରତ୍ୱ । ପ୍ରତିବର୍ଷ ଇନ୍ଦିରାଙ୍କ ଜନ୍ମଦିନ ଉପହାର ଭଳି ସେବର୍ଷ ସେ ଉପହାର ଦେଇପାରି ନ ଥିଲେ ମଧ୍ୟ ନିଜ ଅନ୍ତରର ଶୁଭେଚ୍ଛା ଏବଂ ଆଶୀର୍ବାଦ ଅଜାଡ଼ି ହୋଇ ପଡ଼ିଥିଲା ଇନ୍ଦିରାଙ୍କ ଉପରେ । ତାହାକୁ ନୈନି କାରାଗାରର ସୁ-ଉଚ୍ଚ ପ୍ରାଚୀର ଅଟକାଇ ପାରି ନ ଥିଲା ।

ସେ ପତ୍ର ଥିଲା ଜବାହରଲାଲଙ୍କର ଇନ୍ଦିରାଙ୍କୁ ପ୍ରଦତ୍ତ ଐତିହାସିକ ପତ୍ରାବଳୀର ପ୍ରଥମ ପତ୍ର ।

**ପୁନାରେ ତିନି ବର୍ଷ :—**

ଜବାହରଲାଲ ଚାହିଁଥିଲେ ଇନ୍ଦିରାଙ୍କୁ ଡ଼ାକ୍ତରୀ ବିଦ୍ୟା ଅଧ୍ୟୟନ କରାଇବା-ପାଇଁ । ତେବେ ଜାତୀୟ ଭାବଧାରା ଉପରେ ପ୍ରତିଷ୍ଠିତ ଏବଂ ଶ୍ରୀମତୀ କୁମୁଦବାଈ ଜାହାଙ୍ଗୀର ଭକିଲଙ୍କ ଦ୍ୱାରା ପରିଚାଳିତ ଏକ ଘରୋଇ ବିଦ୍ୟାଳୟ ବିଷୟରେ ଶୁଣି ଥିଲେ ଜବାହରଲାଲ । ଶିକ୍ଷା ସମ୍ବନ୍ଧୀୟ ନିଜ ମତ ସହିତ ସେମାନଙ୍କ ମତ ଠିକ୍ ମେଳ ଖାଉଥିଲା । ପ୍ରିୟଦର୍ଶିନୀ ଇନ୍ଦୁଙ୍କୁ ସେହିଠାରେ ଶିକ୍ଷା ଦେବାପାଇଁ ଇଚ୍ଛା କରୁଥିବା କଥା ପଣ୍ଡିତ ନେହେରୁ ଗାନ୍ଧିଜୀଙ୍କୁ ଜଣାଇବା ସଙ୍ଗେ ସଙ୍ଗେ ତାଙ୍କର ପରାମର୍ଶ ମଧ୍ୟ ଚାହିଁଥିଲେ । ମହାତ୍ମା ଗାନ୍ଧୀ ସେତେବେଳେ ଅନୁଭବ କରିଥିଲେ ଯେ କୁମାରୀ ଇନ୍ଦିରା ପ୍ରକୃତରେ ସ୍ୱାଧୀନତା ସଂଗ୍ରାମର ସୈନିକ ସାଜି ଜେଲ ଯିବା ଅପେକ୍ଷା ସ୍କୁଲକୁ ଯାଇ ଶିକ୍ଷାଲାଭ କରିବା ବାଞ୍ଛନୀୟ । ତେଣୁ ସେ ନିଜ ମନର କଥା ଜବାହରଲାଲଙ୍କୁ ଜଣାଇ ଦେଇଥିଲେ ।

ଶେଷରେ ତାହା ହିଁ ହୋଇଥିଲା । ୧୯୩୨ ମସିହାରୁ ୧୯୩୪ ମସିହା ପର୍ଯ୍ୟନ୍ତ କୁମାରୀ ଇନ୍ଦିରା ନେହେରୁ ପୁନାର ଶ୍ରୀମତୀ ଭକିଲଙ୍କ ଦ୍ୱାରା ପରିଚାଳିତ ପ୍ୟୁପିଲ୍‌ସ ଓନ୍ ସ୍କୁଲ (Pupil's Own School)ର ଅନ୍ୟାନ୍ୟ ଛାତ୍ରଛାତ୍ରୀ-ମାନଙ୍କ ସହିତ ଏକ ହୋଇ ଯୋଗ ଦେଇଥିଲେ ।

ସ୍କୁଲ୍ ଜୀବନରେ ଇଂରାଜୀ ଓ ଇତିହାସରେ ଅତି ଭଲ କରୁଥିଲେ ଇନ୍ଦିରା । ତେବେ ଗଣିତ ଓ ସାହିତ୍ୟରେ ମଧ୍ୟ ଶ୍ରେଣୀରେ ପ୍ରଥମ ହେଉଥିଲେ । ତାଙ୍କର ପ୍ରବନ୍ଧ ଲେଖା ଶୈଳୀ ଅତି ଚମତ୍କାର ଥିଲା ଏବଂ ପ୍ରବନ୍ଧଗୁଡ଼ିକର ବିଷୟବସ୍ତୁ ପ୍ରାୟତଃ ରାଜନୈତିକ ଚିନ୍ତାଧାରା ଉପରେ ଆଧାରିତ ଥିଲା । ଫରାସୀ ଭାଷା ଶିକ୍ଷା କରିବା ଲାଗି ସେ ଆଗ୍ରହୀ ଥିବାଯୋଗୁଁ ଅତି କମ୍ ସମୟ ମଧ୍ୟରେ ତାକୁ ସେ ଆୟତ୍ତ କରିପାରିଥିଲେ ।

ବାଲ୍ୟକାଳରୁ ହିଁ ତାଙ୍କର ରାଜନୈତିକ ଚେତନା ଖୁବ୍ ପ୍ରଖର ଥିଲା ଏବଂ ଶ୍ରେଣୀର ନିର୍ଦ୍ଧାରିତ ପାଠ୍ୟକ୍ରମ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ସେ ପ୍ରତିଦିନ ଖବରକାଗଜ ମଧ୍ୟ ପାଠ କରୁଥିଲେ ।

ସ୍କୁଲର ସାହିତ୍ୟିକ, ସାଂସ୍କୃତିକ ତଥା ଅନ୍ୟାନ୍ୟ ସାଙ୍ଗଠନିକ ଓ ସାମୂହିକ କାର୍ଯ୍ୟକଳାପ ତଥା ଖେଳ କସରତ୍ ପ୍ରଭୃତିରେ ଆନନ୍ଦର ସହିତ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ଇନ୍ଦିରା । ସ୍କୁଲରେ ପ୍ରତିବର୍ଷ ମକ୍ ପାର୍ଲ୍ୟାମେଣ୍ଟ (Mock Parliament) ଆୟୋଜିତ ହେଉଥିଲା ଏବଂ ସେତେବେଳର କୁମାରୀ ପ୍ରିୟଦର୍ଶିନୀ ଇନ୍ଦିରା ସେଥିରେ ପ୍ରଧାନମନ୍ତ୍ରୀ ପଦ ପାଇଁ ନିର୍ବାଚିତ ହେଉଥିଲେ । ତାହା ଆଜି ବାସ୍ତବରେ ପରିଣତ ହୋଇଯାଇଛି । ସେତେବେଳେ ସ୍କୁଲର ଛାତ୍ରଛାତ୍ରୀମାନେ ଯାହାଙ୍କୁ ନେତ୍ରୀ ହିସାବରେ ନିର୍ବାଚନ କରୁଥିଲେ, ବାରମ୍ବାର ସମଗ୍ର ଭାରତର ଜନତା ତାଙ୍କୁ ହିଁ ଭାରତର ନେତ୍ରୀ ନିର୍ବାଚନ କରିବାରେ ଭୁଲ କରିନାହାନ୍ତି ।

ସାହିତ୍ୟ-ସଂସଦର ସେ ଥିଲେ ପରିଚାଳିକା । ସ୍କୁଲରେ ହେଉଥିବା ବ୍ୟାଡ୍‌ମିଣ୍ଟନ୍, ହୁଡୁ ଓ କବାଡ଼ି ଖେଳରେ ସେ ଅଂଶ ଗ୍ରହଣ କରୁଥିଲେ । ଇନ୍ଦିରା ଲାଠି ଚଳାଇବା ଶିକ୍ଷା କରିଥିଲେ ଏବଂ ଲେଜିମ୍‌ରେ ସଙ୍ଗୀତର ଝଙ୍କାର ତୋଳି ପାରୁଥିଲେ ମଧ୍ୟ । ପାପୁ ଜବାହରଲାଲଙ୍କ ପରି ପର୍ବତାରୋହଣ କରିବାରେ ତାଙ୍କର ବିଶେଷ ଆଗ୍ରହ ଥିଲା ଏବଂ ସ୍କୁଲର ସହପାଠୀ ଓ ସହପାଠିନୀମାନଙ୍କ ସହ ଗୁଲି ଗୁଲି ବଣଭୋଜି ଲାଗି ଯିବାପାଇଁ ସେ ଭଲ ପାଉଥିଲେ । ଏସବୁ ସତ୍ତ୍ୱେ କୁମାରୀ ବୟସରେ ଇନ୍ଦିରା ଥିଲେ ଖୁବ୍ ଲାଜକୁଳୀ । ସେଇଥିପାଇଁ ବକ୍ତୃତା ପ୍ରତିଯୋଗୀତାରେ ଅଂଶ ଗ୍ରହଣ କରିବାପାଇଁ ସେ କୁଣ୍ଠାବୋଧ କରୁଥିଲେ । କିନ୍ତୁ ଯେଉଁ କେତୋଟିରେ ଅଂଶ ଗ୍ରହଣ କରୁଥିଲେ, ବିଷୟବସ୍ତୁ ପ୍ରତି ଅଧିକ ସଚେତନ ରହି ସେ ସମ୍ପର୍କରେ ସୁନ୍ଦର ଏବଂ ଦୃଢ଼ ଭାବରେ ନିଜ ପକ୍ଷ ସମର୍ଥନ କରୁଥିଲେ ।

ସ୍କୁଲରେ ଅଧ୍ୟୟନ କରୁଥିବାବେଳେ କୌଣସି ନା କୌଣସି କାର୍ଯ୍ୟରେ ଇନ୍ଦିରା ତାଙ୍କର ସମସ୍ତ ସମୟ ଅତିବାହିତ କରୁଥିଲେ । ନିଜ ରହିବା କୋଠରି ସଫା କରିବାଠାରୁ ଆରମ୍ଭ କରି ନିଜର ସମସ୍ତ କାମ ନିଜେ ହିଁ କରିବା ଲାଗି ସେ ଭଲ ପାଉଥିଲେ । କୌଣସି କାର୍ଯ୍ୟ ପାଇଁ କୁଣ୍ଠା ବା ଅସୂୟା ଭାବ ନ ଥିଲା । ତେଣୁ ଶ୍ରୀମତୀ ଭକିଲ ତାଙ୍କ ଚରିତ୍ର ଓ କାର୍ଯ୍ୟକଳାପ ଉପରେ ମନ୍ତବ୍ୟ ଦେଇଥିଲେ, "Indira never felt any shame to work with her hands." * ତାଙ୍କ ଭାଷାରେ ଇନ୍ଦିରା ଥିଲେ " very active, very conscientious, accomodating with a good and peacable temperament " *

ଖାଦ୍ୟପେୟ ଦୃଷ୍ଟିରୁ ଇନ୍ଦିରା ଥିଲେ ଅତ୍ୟନ୍ତ ସୁକୁମାରୀ । ସେ ପ୍ରଥମେ ପ୍ରଥମେ ଦୁଧ ପିଇବାକୁ ଆଦୌ ପସନ୍ଦ କରୁନଥିଲେ । କିନ୍ତୁ ଶ୍ରୀମତୀ ଭକିଲ୍ ତାହାଙ୍କୁ

* ଓ ** K. A. Abbas—Return of the red rose.

ବାଧ କରିଥିଲେ ପ୍ରଥମ କଚ୍ଛୁଦାନ—ଅନ୍ୟତମ ତାଙ୍କର ଦୁର୍ବଳ ସ୍ୱାସ୍ଥ୍ୟ ଦୃଷ୍ଟିରୁ ସେ କଚ୍ଛୁଦାନ ଦୁଗ୍ଧ ପାନ କରିବାକୁ ହେବ । କଚ୍ଛୁଦାନ ସେମିତି ବାଧ୍ୟବାଧକତାରେ ଗ୍ରହିବା ପରେ ତାହା କ୍ରମେ ଅଭ୍ୟାସରେ ପରିଣତ ହୋଇଯାଇଥିଲା ।

ପ୍ୟୁପିଲ୍‌ସ ଓନ୍ ସ୍କୁଲରେ ଇନ୍ଦିରା ଅନ୍ୟାନ୍ୟ ସହପାଠୀମାନଙ୍କଠାରୁ ବୟସରେ ବଡ଼ ହୋଇଥିବାରୁ ଅନ୍ୟମାନେ ଇନ୍ଦିରାଙ୍କୁ ଦିଦି ବୋଲି ସମ୍ବୋଧନ କରୁଥିଲେ ଏବଂ ସମ୍ମାନ ମଧ୍ୟ ଦେଉଥିଲେ । କମ୍ ବୟସର ଛୋଟ ଛୋଟ ସହପାଠିନୀମାନଙ୍କ ପ୍ରତି ଇନ୍ଦିରାଙ୍କର ବିଶେଷ ଆଦର ଥିଲା । ସେ ଗୁହାଳି ଜନାଦର ଅନେକ ଛୋଟ ଛୋଟ ବାଳିକାଙ୍କ ବେଣୀ ବାନ୍ଧି ଦେଉଥିଲେ, ସୁନ୍ଦର କରି ବେଶ ପିନ୍ଧାଇ ଦେଉଥିଲେ ଏବଂ ବେଳେ ବେଳେ ସେମାନଙ୍କୁ ପାଠ ମଧ୍ୟ ବୁଝାଇ ଦେଉଥିଲେ । ସେହି ସ୍କୁଲର ପରିଚାଳିକା ତଥା ଅଧ୍ୟାପିକା ଶ୍ରୀମତୀ ଭକିଲଙ୍କ ଭାଷାରେ—"ସେମାନେ ସମସ୍ତେ ଇନ୍ଦିରାଙ୍କୁ ଦିଦି ବୋଲି ସମ୍ବୋଧନ କରୁଥିଲେ । ଇନ୍ଦିରାଙ୍କ ସଙ୍ଗଠନଶକ୍ତି ଅତି ଉତ୍ତମ ଥିଲା । ସବୁ ଖେଳ, ବଣଭୋଜି, ଆନନ୍ଦଦାୟକ ଯାତ୍ରା, ସଭାସମିତି ଓ ବାଦାନୁବାଦ ପ୍ରତିଯୋଗିତା ଇନ୍ଦିରାଙ୍କ ଦ୍ୱାରା ହିଁ ଆୟୋଜନ କରାଯାଉଥିଲା ।" କିନ୍ତୁ ରାତିରେ ଯେତେବେଳେ ସବୁ ସାଙ୍ଗସାଥୀ ଶୋଇ ଯାଉଥିଲେ ଇନ୍ଦିରାଙ୍କ ମନେ ପଡ଼ୁଥିଲା ଘର, ପରିବାର, ବାପା, ମା ଏବଂ ଅନ୍ୟର ଅନେକ କଥା । ଅଧିକାଂଶ ସମୟ ପାପୁ ଜେଲରେ, ମା ବେମାର । ଅନ୍ୟାନ୍ୟ ଅନେକ ଚିନ୍ତାରେ ସେ ଉଦ୍‌ବିଗ୍ନ ହୋଇ ଉଠୁଥିଲେ । ଗୃହଅନ୍ତର ଆଲୁଅ ଲିଭିସାରିବା ପରେ ସ୍ମୃତିତଳର ଉଦ୍‌ବେଗ କୋହକୁ ଚାପିରଖିବା ପ୍ରୟାସ ବ୍ୟର୍ଥ ହେଉଥିଲା । ବେଳେ ବେଳେ ରାତିର ଅନ୍ଧକାର ମଧ୍ୟରେ ସହପାଠିନୀମାନେ ଶୁଣୁଥିଲେ ଇନ୍ଦିରାଙ୍କ ଧକେଇ ହୋଇ କାନ୍ଦିବାର ଶବ୍ଦ ।

ତେବେ ମଝିରେ ମଝିରେ ଜେଲ ଭିତରୁ ପାପୁଙ୍କର ଶିକ୍ଷାପ୍ରଦ ଚିଠି ସାନ୍ତ୍ୱନା ଦେଉଥିଲା ଇନ୍ଦିରାଙ୍କୁ—ଆଶ୍ୱାସନା ଆଣି ଦେଉଥିଲା ଏକ କୋମଳ ସନ୍ତାପିତ ପ୍ରାଣରେ ।

୧୯୩୧ ମସିହାରେ ଇନ୍ଦିରା ସେହି ସ୍କୁଲରେ ନାମ ଲେଖାଇଥିଲେ ମଧ୍ୟ ମାତ୍ର ତିନି ବର୍ଷରେ ଚାରି ବର୍ଷର ପାଠ୍ୟକ୍ରମ ଶେଷ କରି ବମ୍ବେ ବିଶ୍ୱବିଦ୍ୟାଳୟରୁ ୧୯୩୪ ମସିହା ଅପ୍ରେଲ ମାସରେ ଦ୍ୱିତୀୟ ସହକାରେ ମାଟ୍ରିକ୍ ପାସ୍ କରିଥିଲେ । ସେତେବେଳକୁ ତାଙ୍କ ବୟସ ଥିଲା ଷୋହଳ ବର୍ଷ ।

**ବାପୁଙ୍କର ଯଦି ମୃତ୍ୟୁ ହୁଏ ?**

ଗାନ୍ଧୀ-ଇର୍‌ୱିନ୍ ଚୁକ୍ତି ହେବାର ଖୁବ୍ କମ୍ ଦିନ ପରେ ଭାରତରେ ନୂତନ ବଡ଼ଲାଟ ହୋଇ ଆସିଥିଲେ ଲର୍ଡ଼ ଓ୍ୱେଲିଙ୍ଗ୍‌ଟନ୍ । ୧୯୩୧ ମସିହାରେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ସରକାରଙ୍କ ନୂତନ ଷଡ଼ଯନ୍ତ୍ର—ସଂଖ୍ୟାଲଘୁ

ସମ୍ପ୍ରଦାୟମାନଙ୍କ ପାଇଁ ସ୍ୱତନ୍ତ୍ର ମତଦାନ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ଆଲୋଚନା ହୋଇଥିଲା । କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ସେମାନେ ଉପନୀତ ହୋଇପାରି ନ ଥିଲେ । ସେଥିରେ ନିରାଶ ହୋଇ ଗାନ୍ଧିଜୀ ବମ୍ବେ ଫେରିଥିଲେ । ସେପ୍ରକାର ଅମୀମାଂସିତ ଅବସ୍ଥା ରେ କିଛୁଦିନ ବିତିଯିବା ପରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଏକତରଫା ଭାବେ ଘୋଷଣା କରିଥିଲେ ଯେ, ଦଳିତ ଜାତିମାନଙ୍କୁ କୋଡ଼ିଏ ବର୍ଷ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀର ସୁବିଧା ଦିଆଯିବ । ତତ୍ସଙ୍ଗେ ସଙ୍ଗେ ସାଧାରଣ ନିର୍ବାଚନ-ମଣ୍ଡଳୀମାନଙ୍କରୁ ମଧ୍ୟ ସେମାନେ ପ୍ରତିନିଧିତ୍ୱ କରିପାରିବେ ।

କିନ୍ତୁ ଗାନ୍ଧିଜୀ ଏହାକୁ ହିନ୍ଦୁସମାଜ ପ୍ରତି ଏକ ଅମଙ୍ଗଳସୂଚକ ପଦକ୍ଷେପ ବୋଲି ପ୍ରତିବାଦ କରିଥିଲେ । ସେ ମନେ କରିଥିଲେ ଯେ ହିନ୍ଦୁ ସମ୍ପ୍ରଦାୟକୁ ଭାଗ ଭାଗ କରିବା ଓ ହରିଜନ ତଥା ତଥାକଥିତ ଅସବର୍ଣ୍ଣ ଲୋକଙ୍କୁ ହିନ୍ଦୁ ସମ୍ପ୍ରଦାୟ ଭିତରୁ ବହିର୍ଭୂତ କରାଇ ନେବା ତାହାର ପ୍ରଧାନ ଉଦ୍ଦେଶ୍ୟ । ତେଣୁ ସେ ସ୍ପଷ୍ଟ-ଚୋଟ୍ ଭାବେ ଜଣାଇ ଦେଇଥିଲେ ଯେ ହରିଜନମାନେ ହିନ୍ଦୁ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ଏବଂ ସେମାନଙ୍କୁ ଅଲଗା କରିବାର ଅର୍ଥ ଅସ୍ପୃଶ୍ୟତାକୁ ଦୀର୍ଘଜୀବୀ କରାଇବା ।

ଅବହେଳିତ ଜାତିଙ୍କୁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀର ସୁବିଧା ଦିଆଯିବା ସମ୍ବନ୍ଧୀୟ ଘୋଷଣାକୁ ପ୍ରତ୍ୟାହାର କରିନେବା ପାଇଁ ଗାନ୍ଧିଜୀ ଅଗଷ୍ଟ ମାସ ତାରିଖରେ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କ ନିକଟକୁ ଏକ ଚିଠି ଲେଖିଥିଲେ । ସେଥିରେ ସେ ଲେଖିଥିଲେ, ଯଦି ସେ ଘୋଷଣା ପ୍ରତ୍ୟାହାର କରି ନିଆ ନ ଯାଏ, ତେବେ ସେପ୍ଟେମ୍ବର କୋଡ଼ିଏ ତାରିଖରୁ ସେ ଆମରଣ ଅନଶନ ଆରମ୍ଭ କରିବେ । କିନ୍ତୁ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କ ନିକଟରୁ କୌଣସି ଆଶାଜନକ ଉତ୍ତର ସେ ପାଇ ନ ଥିଲେ ।

ଇଂରେଜ ସରକାରଙ୍କ ନିଷ୍କ୍ରିୟତା ଦେଖି ଗାନ୍ଧିଜୀ ୟାରବାଡ଼ା କାରାଗାରରେ ଆମରଣ ଅନଶନ ଆରମ୍ଭ କରିଥିଲେ ପୂର୍ବନିର୍ଦ୍ଧାରିତ ଦିବସରେ । ମହାତ୍ମା ଗାନ୍ଧୀଙ୍କ ଏ ପ୍ରକାର କାର୍ଯ୍ୟକଳାପ ପାଇଁ ଜବାହରଲାଲ ନେହେରୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରି ପାରୁ ନ ଥିଲେ । ସେ ମନେ କରିଥିଲେ ଯେ ସେଭଳି ଛୋଟ ଛୋଟ କଥାରେ ବାପୁଜୀଙ୍କ ଭଳି ଲୋକ ନିଜ ଜୀବନକୁ ବଳିଦାନ ଦେବାପାଇଁ ନିଷ୍ପତ୍ତି ନେବା ଆଦୌ ଠିକ୍ ହେଉ ନ ଥିଲା । ଅତି ଧର୍ମାନ୍ଧ ଓ ଭାବପ୍ରବଣ ହୋଇ ପ୍ରତି କଥାରେ ଭଗବାନଙ୍କ ନାମକୁ ଯୋଗ କରୁଥିବାରୁ ଗାନ୍ଧିଜୀଙ୍କ ପ୍ରତି ବେଳେ ବେଳେ ଜବାହର କ୍ରୁଦ୍ଧହୋଇ ଉଠୁଥିଲେ । ତଥାପି ଭାରତର ତଥା ସ୍ୱାଧୀନତା ଆନ୍ଦୋଳନର ଅଦ୍ୱିତୀୟ ନେତା ଭାବରେ ତାହାଙ୍କୁ ସ୍ୱୀକାର କରୁଥିବାରୁ ତାହାଙ୍କ ଜୀବନ କପରି ରକ୍ଷା କରାଯାଇ-ପାରିବ, ସେଥିପାଇଁ ଉଦ୍‌ବିଗ୍ନ ହୋଇ ପଡ଼ୁଥିଲେ । ଜନସାଧାରଣ କପରି ଗାନ୍ଧିଜୀଙ୍କ ଅନଶନର ଗୁରୁତ୍ୱ ବୁଝିପାରିବେ ସେଥିପାଇଁ ଦେଶର ଅନ୍ୟ ନେତୃବୃନ୍ଦଙ୍କ ସହିତ

ଅଦମ୍ୟ ଉଦ୍ୟମ କରୁଥିଲେ । ବେଳେବେଳେ ଦେଶବାସୀଙ୍କ ଉପରେ ମଧ୍ୟ କ୍ରୁଦ୍ଧ ହୋଇ ଉଠୁଥିଲେ ଏଇଥିପାଇଁ ଯେ, ଏ ପ୍ରକାର ଅବସ୍ଥା ସୃଷ୍ଟି କରିବା ମୂଳରେ ଥିଲା ଆମ ସାମାଜିକ ଜୀବନରେ ଜାତିଭେଦ । ମାନସିକ ସଂଘର୍ଷର ଏକ ଦୋଳାୟମାନ ପରିସ୍ଥିତି ଭିତରେ ଇନ୍ଦିରାଙ୍କ ନିକଟକୁ ପତ୍ର ଲେଖିଥିଲେ ଜବାହରଲାଲ, "If Bapu Bapu died ? What would India be like then ?......Oh India is a hurried country to allow her great man to die; and the people of India are slaves and have the minds of slaves to bicker and quarrel about trival things and forget freedom itself." *

ପଣ୍ଡିତ ନେହେରୁ ଲେଖିଥିଲେ, ବାପୁଙ୍କର ଯଦି ମୃତ୍ୟୁ ହୁଏ ତା'ହେଲେ ଭାରତର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିବ । ଭାରତ ଏକ ଅଜବ ଦେଶ, ଯେଉଁଠି ଜଣେ ନିଜର ମହାନ୍ ଲୋକର ମୃତ୍ୟୁ ଲାଗି କ୍ଷେତ୍ର ଆପେ ଆପେ ପ୍ରସ୍ତୁତ ହୋଇପାରୁଛି । ଏଠି ଲୋକଙ୍କ ଦାସତ୍ୱ ଅସ୍ଥି ମଜ୍ଜାଗତ ହୋଇସାରିଛି । ନିଜର ଚରମ ଲକ୍ଷ୍ୟ ସ୍ୱତନ୍ତ୍ରତା କଥା ଭୁଲିଯାଇ ଲୋକେ ଅତି ଶ୍ରେଷ୍ଠ କଥାଗୁଡ଼ିକରେ ଅଯଥା ଗୁରୁତ୍ୱ ଆରୋପ କରୁଛନ୍ତି ।

"ବାପୁଙ୍କର ଯଦି ମୃତ୍ୟୁ ହୁଏ···?"
"ବାପୁଙ୍କର ଯଦି ମୃତ୍ୟୁ ହୁଏ···?"

ପାପୁଙ୍କର ଗଭୀର ଆଶଙ୍କାପୂର୍ଣ୍ଣ ପତ୍ର କୁମାରୀ ଇନ୍ଦିରାଙ୍କ ମନରେ ମଧ୍ୟ ଠିକ୍ ସେହିଭଳି ଆଲୋଡ଼ନ ସୃଷ୍ଟି କରିଥିଲା । ସବୁବେଳେ ଦୃଢ଼ ଆତ୍ମପ୍ରତ୍ୟୟ ଥିବା ପିତାଙ୍କ ଆଶଙ୍କାର ଘନକୁହୁଡ଼ି ଭିତରେ ଆଚ୍ଛନ୍ନ ହୋଇ ପଡ଼ିଥିବାରୁ ଇନ୍ଦିରା ବିଚଳିତ ହୋଇ ପଡ଼ିବା ସ୍ୱାଭାବିକ ।

ସେତେବେଳେ ପୁନାରେ ଅଧ୍ୟୟନରତ ଥିବା ଶ୍ରୀମତୀ କୁମାରୀ ଇନ୍ଦିରା ନିଜର ଶିକ୍ଷୟିତ୍ରୀ ଶ୍ରୀମତୀ ଭକିଲଙ୍କୁ ସାଙ୍ଗରେ ନେଇ ଗାନ୍ଧିଜୀଙ୍କ ସହିତ ସାକ୍ଷାତ ପାଇଁ ଯାଇଥିଲେ ୟାରବାଡ଼ା କାରାଗାରକୁ । ସେଠାରୁ ଫେରିବା ପରେ ଶ୍ରୀମତୀ ଭକିଲ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ତାହାଙ୍କର ବିଭିନ୍ନ କାର୍ଯ୍ୟକ୍ରମରେ ସହଯୋଗ କରିବାପାଇଁ ସଙ୍କଳ୍ପ କରିଥିଲେ । ସେତେବେଳେ ଦେଶର ବିଭିନ୍ନ ପ୍ରାନ୍ତର ଲୋକେ ଗାନ୍ଧିଜୀଙ୍କ ନେତୃତ୍ୱକୁ ସମର୍ଥନ କରିବା ଆରମ୍ଭ କରି ଦେଇଥିଲେ ହରିଜନ ଅନଶନ କରିବା ମାଧ୍ୟମରେ । ସ୍ୱଦେଶପ୍ରେମୀ ଅଗଣିତ ନରନାରୀଙ୍କ ମଧ୍ୟରେ ଥିଲେ ଶ୍ରୀମତୀ ଭକିଲ ଇନ୍ଦିରାଙ୍କ ଶିକ୍ଷୟିତ୍ରୀ ଏବଂ ସେ ମଧ୍ୟ ହରିଜନ ଲାଗି ଅନଶନ କରି ଗାନ୍ଧିଜୀଙ୍କ ପ୍ରତି ସମର୍ଥନ ପ୍ରକାଶ କରିଥିଲେ । କୁମାରୀ ଇନ୍ଦିରା ତାଙ୍କର ଶିକ୍ଷୟିତ୍ରୀଙ୍କ ସହିତ ହରିଜନ ପାଇଁ ପ୍ରତୀକ ଅନଶନ ପାଳନ କରିଥିଲେ ।

---

* K. A. Abbas—Return of the red rose.

ଶ୍ରୀ ଚମ୍ପୂକା ରାମଚନ୍ଦ୍ରଙ୍କ ସେତୁବନ୍ଧ ବାନ୍ଧିବାରେ ସାହାଯ୍ୟ କରିଥିଲା । କେବଳ ଦିନକ ପାଇଁ ପ୍ରତୀକ ଅନଶନ କରିଦେଇ ସନ୍ତୁଷ୍ଟ ରହିପାରି ନ ଥିଲେ ଇନ୍ଦିରା । ସ୍କୁଲ ନିକଟରେ ବାସ କରୁଥିବା ଲୋକମାନଙ୍କ ମନରୁ ଛୁଆଁ ଅଛୁଆଁ ଭେଦଭାବ ଦୂରକରି ହୃଦୟ ପରିବର୍ତ୍ତନ କରିବାପାଇଁ ସେ ନିଜ ସାମର୍ଥ୍ୟ ଅନୁସାରେ ଗାନ୍ଧିଜୀଙ୍କୁ ସମର୍ଥନ ଓ ସାହାଯ୍ୟ କରିବା ଚେଷ୍ଟା ଆରମ୍ଭ କରି ଦେଇଥିଲେ । ତା ଭିତରେ ଅନ୍ତର୍ଭୁକ୍ତ ଥିଲା ତାଙ୍କର ରଚନାତ୍ମକ କାର୍ଯ୍ୟକ୍ରମ । ଅସ୍ପୃଶ୍ୟତାକୁ ବିରୋଧ କରି ସେ ଗୋଟିଏ ପ୍ରବନ୍ଧ ଲେଖିଥିଲେ, ଯେଉଁଥିରେ କି ପ୍ରମାଣ କରାଇ ଦେଇଥିଲେ ଯେ ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବା ଦିଗରେ ତାହା ହିଁ ଥିଲା ପ୍ରଧାନ ପ୍ରତିବନ୍ଧକ ।

ସ୍କୁଲ୍‌ଙ୍କ ପରି ଅଟଳପ୍ରତିଜ୍ଞ ଆମରଣ ଅନଶନରତ ବାପୁଜୀଙ୍କ ଜୀବନ ରକ୍ଷା ପାଇଁ ଦେଶର ସର୍ବତ୍ର ସଭାସମିତିମାନ ଆହୂତ ହେଉଥିଲା । ସମଗ୍ର ହିନ୍ଦୁ ଜାତିର ଲୋକମାନଙ୍କ ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା କରାଇ, ସବର୍ଣ୍ଣ ଓ ଅସବର୍ଣ୍ଣ ଭେଦଭାବ ଭୁଲିଯିବାପାଇଁ ଅନୁରୋଧ କରାଯାଉଥିଲା । ସେ ପ୍ରକାର ଓ ହେଥିଲାଗି ଆୟୋଜିତ ଏକ ସଭାରେ ଆଲୋଚନା କରି କୁମାରୀ ଇନ୍ଦିରା ନେହେରୁ କହିଥିଲେ ଯେ ଗାନ୍ଧିଜୀଙ୍କ କାମ୍ୟ ତାଙ୍କର ଚିନ୍ତାଧାରାକୁ କାର୍ଯ୍ୟରେ ପରିଣତ କରାଇବା । କେବଳ ସଭାସମିତି ବା ମିଳିତ ପ୍ରାର୍ଥନାକୁ ସେ ପସନ୍ଦ କରୁ ନ ଥିଲେ । ସେ କହିଥିଲେ, ଗାନ୍ଧିଜୀଙ୍କ ଜୀବନ ରକ୍ଷା କରିବାକୁ ହେଲେ ତାଙ୍କର ନୀତିକୁ କାର୍ଯ୍ୟରେ ପରିଣତ କରାଇବାକୁ ହେବ । ସେ ସଭାରେ ଅତି ନମ୍ର ଭାବରେ ଘୋଷଣା କରିଥିଲେ, "ବାପୁ ଆମ୍ଭମାନଙ୍କର ଏଭଳି ପ୍ରାର୍ଥନାସଭା ସବୁ ଚାହାଁନ୍ତି ନାହିଁ—ଚାହାନ୍ତି କାର୍ଯ୍ୟ । ତେଣୁ ତାହାଙ୍କୁ ବଞ୍ଚାଇ ରଖିବାଲାଗି ଆମ୍ଭମାନଙ୍କୁ କିଛିନା କିଛି କରିବାକୁ ପଡ଼ିବ ।" *

ଗାନ୍ଧିଜୀଙ୍କ ନୀତିକୁ କାର୍ଯ୍ୟରେ ପରିଣତ କରିବା ପାଇଁ ସଭାରେ ଘୋଷଣା କରି ଆସିବା ପରେ ପ୍ରଥମେ ସେ ନିଜେ ତାହା ପାଳନ କରିବା ଲାଗି ସଙ୍କଳ୍ପ କରିଥିଲେ । ତା ପରଦିନ ସକାଳୁ ସ୍କୁଲ ମେହେନ୍ତରାଣୀର ଛୋଟ ଝିଅଟିକୁ ନିଜ ପାଖକୁ ଆଣି, ନିଜ ହାତରେ ଗାଧୋଇ ଦେଇ ସଫାସୁତୁରା କରି ଦେଇଥିଲେ ଏବଂ ନିଜ ପଇସାରେ ତା ଲାଗି ବଜାରରୁ ନୂଆ ଜାମାପଟା ଆଣି ତାକୁ ପିନ୍ଧାଇ ଦେଇଥିଲେ । ଅନ୍ୟାନ୍ୟ ସହପାଠିନୀମାନଙ୍କୁ ଆଶ୍ଚର୍ଯ୍ୟାଭିଭୂତ କରାଇ ସେଇ ଝିଅଟିକୁ ରାତିରେ ନିଜ ପାଖରେ ଓ ନିଜ ଶେଯରେ ଶୁଆଇଥିଲେ ଇନ୍ଦିରା । କିଶୋରୀ ବୟସର ହେଲେ ମଧ୍ୟ ସେ ଅନ୍ୟମାନଙ୍କୁ ଦେଖାଇ ଦେବାକୁ ଚାହିଁଥିଲେ ଯେ ତଥାକଥିତ ହରିଜନମାନେ ଠିକ୍ ଅନ୍ୟମାନଙ୍କ ଭଳି ମଣିଷ । ତେଣୁ ସବର୍ଣ୍ଣ ଓ ଅସବର୍ଣ୍ଣ ବୋଲି କୌଣସି ସାମାଜିକ ବ୍ୟବସ୍ଥା ରହିବା ଉଚିତ ନୁହେଁ ।

---

* J. S. Bright—Indira Gandhi. p-67

ଏ ଆଦର୍ଶ କାର୍ଯ୍ୟକଳାପରେ କେବଳ ସେ ସ୍କୁଲର ଛାତ୍ରଛାତ୍ରୀ କାହିଁକି, ଶିକ୍ଷୟିତ୍ରୀମାନେ ମଧ୍ୟ ଆକୃଷ୍ଟ ହୋଇପଡ଼ିଥିଲେ । ବାସ୍ତବରେ ସେଥିରେ ଇନ୍ଦିରା ପାଇଥିଲେ ଅପରିସୀମ ଆନନ୍ଦ; କାରଣ ସେ ବାପୁଙ୍କ ପାଇଁ ଅତି ନଗଣ୍ୟ ହେଲେ ମଧ୍ୟ କିଛିଟା କରିପାରିଥିଲେ । ସେହି ଦିନରୁ ହିଁ ତାଙ୍କର ବିଶ୍ୱାସ ଦୃଢ଼ ହୋଇଥିଲା ଯେ ବିଭିନ୍ନ ଜାତି, ସମ୍ପ୍ରଦାୟ, ଭାଷାଭାଷୀ ଓ ସଂସ୍କୃତି ମଧ୍ୟରେ ଏକ ମଧୁର ସମନ୍ୱୟ ହେଲେ ଯାଇ ଭାରତ ଏକ ରାଷ୍ଟ୍ରରୂପେ ପ୍ରତିଷ୍ଠା ଲାଭ କରିପାରିବ । ତାଙ୍କ ବ୍ୟକ୍ତିତ୍ୱର ପ୍ରତିଟି ବିନ୍ଦୁରେ ଭାରତୀୟତାର ସ୍ୱାକ୍ଷର ସୁସ୍ପଷ୍ଟ ।

ଅନ୍ୟ ପକ୍ଷରେ ବାପୁଜୀଙ୍କର ସେ ଅନଶନ ହରିଜନମାନଙ୍କ ଉପରେ ସୁଦୂର ପ୍ରଭାବ ପକାଇ ପାରିଥିଲା । ସେମାନେ ପ୍ରଥମରୁ ହିଁ ଅନୁଭବ କରିଥିଲେ ଯେ ଗାନ୍ଧିଜୀ ହେଉଛନ୍ତି ସେମାନଙ୍କର ସମସ୍ତ ଆଶା-ଭରସାର କେନ୍ଦ୍ରବିନ୍ଦୁ । ତେଣୁ ତାଙ୍କ ଜୀବନକୁ ରକ୍ଷା କରିବା ଲାଗି ଯେକୌଣସି କାର୍ଯ୍ୟ କରିବାକୁ ସେମାନେ ପ୍ରସ୍ତୁତ ହୋଇଥିଲେ । ସମଗ୍ର ଦେଶର ବିଭିନ୍ନ ପ୍ରାନ୍ତରୁ ପଣ୍ଡିତ ନେହେରୁ ଖବର ପାଇଥିଲେ ଯେ ଭାରତର ହିନ୍ଦୁମାନଙ୍କ ମଧ୍ୟରେ ଯେଉଁ ଭେଦଭାବ ରହିଥିଲା ତାହା କ୍ରମେ ଦୂର ହେବାରେ ଲାଗିଛି ଏବଂ ଐକ୍ୟ ଭାବ ବା ଏକତା ରକ୍ଷାଲାଗି ଅଦମ୍ୟ ଉତ୍ସାହର ଢେଉ କ୍ରମେ କ୍ରମେ ଦୂରନ୍ତପ୍ରସାରୀ ହେଉଛି—ଏ ପ୍ରକାର ଖବରରେ ଜବାହରଲାଲ ଆନନ୍ଦର ଚରମ ସୀମାରେ ଉପନୀତ ହୋଇଥିଲେ । ସେ ସମୟରେ ଗୋଟିଏ ଚିଠିରେ ସେ ଇନ୍ଦିରାଙ୍କୁ ଲେଖିଥିଲେ, "ମୋର ମନେ ହେଉଛି ୟାରବାଡ଼ା କାରାଗାରର ରୁଦ୍ଧକୋଠରୀ ଭିତରେ ବସିଥିବା କ୍ଷୁଦ୍ର ମଣିଷଟି କେତେ ବଡ଼ କୁଶଳୀ ଯାଦୁକର ସତେ ! ଲୋକଙ୍କ ହୃଦୟକୁ କିପରି ଭାବରେ ବିଗଳିତ କରିବାକୁ ହେବ ତାର ସୂତ୍ର ଅତି ନିର୍ଭୁଲ ଭାବରେ ସେ ଜାଣିଛନ୍ତି ।" *

ଡଃ ଆମ୍ବେଦକର ଓ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କ ସ୍ୱାକ୍ଷରରେ ଏକ ସମାଧାନ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ବ୍ରିଟିଶ ପ୍ରଧାନମନ୍ତ୍ରୀ ପରାଜୟ ସ୍ୱୀକାର କରିଥିଲେ । ଦଳିତ ଓ ଅବହେଳିତ ଜାତିମାନଙ୍କ ଲାଗି ସ୍ୱାକ୍ଷରିତ ହୋଇଥିବା ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ସଂକ୍ରାନ୍ତ ଘୋଷିତ ଆଦେଶନାମା ପ୍ରତ୍ୟାହୃତ ହୋଇଥିଲା । ସେପ୍ଟେମ୍ବର ୨୬ ତାରିଖରେ ଗାନ୍ଧିଜୀ ଅନଶନ ଭଙ୍ଗ କରିଥିଲେ ।

ଯେତେସବୁ ଦୁର୍ଦ୍ଦିନ ଓ ଦୁଃସମୟ ତଥା ସଙ୍କଟମୟ ପରିସ୍ଥିତିଗୁଡ଼ିକରେ ଜବାହରଲାଲଙ୍କ ମତାମତ ପ୍ରତି ଗାନ୍ଧିଜୀ ସଚେତନ ରହୁଥିଲେ । ସବୁବେଳେ ଉଭୟ ନେତାଙ୍କର ମତର ଐକ୍ୟ ରହୁ ନ ଥିଲେ ମଧ୍ୟ ଗାନ୍ଧିଜୀ ଯଥେଷ୍ଟ ସମ୍ମାନ ଦେଉଥିଲେ ପଣ୍ଡିତ ନେହେରୁଙ୍କ ମତାମତ ପ୍ରତି । ସେ ଅନଶନ ସମୟରେ ଜବାହରଲାଲଙ୍କୁ

* ଜବାହରଲାଲଙ୍କ ଆତ୍ମଜୀବନୀ ।

ଏକ ତାରବାର୍ତ୍ତାରେ ଜଣାଇଥିଲେ, "ଏଭଳି ବିଷାଦଗ୍ରସ୍ତ ସମୟ ଭିତରେ ମୁଁ ତୁମ କଥା ସବୁବେଳେ ମନେ ମନେ ଚିନ୍ତା କରୁଛି । ତୁମର ମତାମତ ଜାଣିବାପାଇଁ ମୁଁ ଅତିମାତ୍ରାରେ ଉତ୍କଣ୍ଠିତ । କାରଣ ତୁମେ ଜାଣ ତୁମ ମତାମତ ପ୍ରତି ମୁଁ କେଭଳି ଗୁରୁତ୍ୱ ଦିଏ । ଇନ୍ଦୁ ଓ ସ୍ୱରୂପାର ପିଲମାନଙ୍କୁ ଦେଖିଥିଲି । ଇନ୍ଦୁର ଦେହ ସୁସ୍ଥ, ସବଳ ଥିଲା ଏବଂ ଆନନ୍ଦିତ ମଧ୍ୟ ଜଣାପଡ଼ୁଥିଲା । ଭଲରେ ଅଛି । ଟେଲିଗ୍ରାମ ଦ୍ୱାରା ଉତ୍ତର ଜଣାଇବ । ସ୍ନେହ ସହ ରହୁଛି । *

ପ୍ରକୃତରେ କୁମାରୀ ଇନ୍ଦିରା ନେହେରୁ ସେ ଦୁର୍ଦ୍ଦିନଗୁଡ଼ିକରେ ସୁସ୍ଥ, ସବଳ ତଥା ଖୁବ୍ ଆନନ୍ଦିତ ଦେଖାଯାଉଥିଲେ ମଧ୍ୟ ପିତାଜୀଙ୍କ ସେଇ ଚିଠି—ଯେଉଁ ଚିଠିରେ ବାପୁଜୀଙ୍କ ଜୀବନ ପ୍ରତି ଆଶଙ୍କା କରାଯାଇଥିଲା, ସେଥିରେ ସେ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଥିଲେ ଏବଂ ତାଙ୍କ ମନ ମଧ୍ୟ ଖୁବ୍ ଭାରାକ୍ରାନ୍ତ ହୋଇଯାଇଥିଲା । କେଉଁ କେଉଁ କାର୍ଯ୍ୟ କରି ବାପୁଙ୍କ ଜୀବନର ଅବସାନ ହେବାକୁ ଦିଆ ନ ଯାଏ, ତାହା ଥିଲା ସେତେବେଳେ ତାଙ୍କର ଏକମାତ୍ର ଚିନ୍ତା । ତେଣୁ ବେଳେ ବେଳେ ସେ ସ୍କୁଲରୁ ଛୁଟି ନେଇ ବାପୁଜୀଙ୍କ ମନ ଆନନ୍ଦ କରାଇବା ପାଇଁ ୟାରବାଡ଼ା ଜେଲ୍‌କୁ ଯାଉଥିଲେ ।

ଅତି ଅଳ୍ପ ଦିନ ମଧ୍ୟରେ ତାଙ୍କର ସେ ଆଶଙ୍କା ଦୂର ହୋଇଥିଲା । ବାପୁ ଅନଶନ ଭଙ୍ଗ କରିବା ଖବରରେ ଇନ୍ଦିରା ତାଙ୍କ ଅଫୁରନ୍ତ ଆନନ୍ଦର ଢେଉ ମାପି ପାରୁ ନ ଥିଲେ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କର ନେତୃତ୍ୱ ନେଉଥିବା ଜନନାୟକ-ମାନଙ୍କ ପ୍ରତି ଇନ୍ଦିରାଙ୍କ ପ୍ରଗାଢ଼ ଭକ୍ତି ଥିଲା—ବିଶେଷ କରି ଗାନ୍ଧିଜୀଙ୍କ ପ୍ରତି । ତାଙ୍କର ରାଜନୈତିକ ଚେତନାକୁ ଆହୁରି ଅଧିକ ପ୍ରଖର କରି ଦେଉଥିଲା ପାପୁଙ୍କର ଚିନ୍ତାଧାରା ଓ ତଥ୍ୟସମ୍ବଳିତ ପତ୍ରାବଳୀ । ୧୯୩୧ ମସିହା ଜାନୁୟାରୀ ୭ ତାରିଖରେ ପଣ୍ଡିତ ନେହେରୁ ନୈନୀ ଜେଲରୁ ଇନ୍ଦିରାଙ୍କ ନିକଟକୁ ଗୋଟିଏ ଚିଠି ଲେଖିଥିଲେ—

"ପ୍ରିୟଦର୍ଶିନୀ, ସବୁବେଳେ ତୁ ମୋର ଅତି ପ୍ରିୟ । ମୁଁ ଆଜି ତୋ ନିକଟକୁ ଚିଠି ଲେଖିବା ଆରମ୍ଭ କରିବା ବେଳକୁ କିଛିଟା ଅସ୍ପଷ୍ଟ କୋଳାହଳ ମତେ ଶୁଣାଗଲା । ପ୍ରଥମେ ପ୍ରଥମେ ତାର କୌଣସି ସୂତ୍ର ଧରିପାରି ନ ଥିଲି । କିନ୍ତୁ କ୍ରମେ କ୍ରମେ ସେ ସ୍ୱର ଯେତେ ନିକଟବର୍ତ୍ତୀ ହୋଇଆସିଲା ସେତିକି ସେତିକି ସ୍ପଷ୍ଟ ଶୁଣାଗଲା ଓ ମୋର ସମସ୍ତ ସନ୍ଦେହ ଦୂରୀଭୂତ ହେଲା । ସେ ହେଲା ଆମ ସଂଗ୍ରାମର ପ୍ରିୟ ଧ୍ୱନି 'ଇନ୍‌କିଲବ-ଜିନ୍ଦାବାଦ' । ଇନ୍‌କିଲବ-ଜିନ୍ଦାବାଦ ଧ୍ୱନି କାରାଗାରରେ ପ୍ରତିଧ୍ୱନିତ

* K. A. Abbas—Return of the red rose. p—63.

ହେଉଥିଲା ବେଳେ ଅମ୍ଭ (ରାଜନୈତିକ ବନ୍ଦୀ)ମାନଙ୍କ ହୃଦୟ ଅପାର ଆନନ୍ଦରେ ପୂର୍ଣ୍ଣ ହେଉଛି । ଏ ଧ୍ୱନିର ସୃଷ୍ଟିକର୍ତ୍ତା—ନାରୀ କି ପୁରୁଷ, ଏ ନଗରବାସୀ କି କୌଣସି ଦୂରାଗତ ଗ୍ରାମବାସୀ ମୁଁ ଜାଣେନା । ମୁଁ ଜାଣେନା ଜେଲ୍ ନିକଟରେ କାହିଁକି ସେପ୍ରକାର ଧ୍ୱନିମାନ ଦିଆଯାଉଛି । କିନ୍ତୁ ସେମାନେ ଯେ କେହି ହୁଅନ୍ତୁ ନା କାହିଁକି, ଆମ୍ଭମାନଙ୍କୁ ଯଥେଷ୍ଟ ଉତ୍ସାହ ଦେଇଛନ୍ତି ଏବଂ ଆମେ ସେମାନଙ୍କୁ ନୀରବ ସମର୍ଥନ ତଥା ଶୁଭେଚ୍ଛା ଜଣାଇଛୁ ।''

ପ୍ରକାରାନ୍ତରେ ଏ ଚିଠିର ଉଦ୍ଦେଶ୍ୟ ଥିଲା ଇନ୍ଦିରାଙ୍କୁ ଦେଶମାତୃକାର ସେବା ଲାଗି ପ୍ରେରଣା ଦେବା ।

ବାସ୍ତବିକ୍ ଜବାହରଲାଲଙ୍କ ଚିଠିଗୁଡ଼ିକ ତାଙ୍କ ପ୍ରିୟଦର୍ଶିନୀ ଇନ୍ଦିରାଙ୍କୁ ସମଗ୍ର ବିଶ୍ୱର ଇତିହାସ ସହିତ ପରିଚିତ କରାଇଦେବା ସଙ୍ଗେ ସଙ୍ଗେ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରାଇ ଦେଶର ଏକ ବୀର, ସାହସୀ ସୈନିକ ଓ ସେବକ ରୂପେ ଗଢ଼ି ତୋଳିବାରେ ଯଥେଷ୍ଟ ପ୍ରେରଣା ଯୋଗାଇ ପାରିଥିଲା ।

□□□

॥ ପାଞ୍ଚ ॥

# ବିଶ୍ୱକବିଙ୍କ ପଦତଳେ



ନିଜେ ଜବାହରଲାଲ ବିଦେଶୀ ଢଙ୍ଗରେ ସଂପୂର୍ଣ୍ଣରୂପେ ଶିକ୍ଷାଲାଭ କରିଥିଲେ । ତାଙ୍କ ପିତା ମୋତିଲାଲ ଚାହିଁଥିଲେ ପୁଅ ଜବାହରଲାଲ କିପରି ଏକ ଉନ୍ନତ ରୁଚିସମ୍ପନ୍ନ ଗୋରା ଓକିଲମାନଙ୍କ ସହିତ ଟକ୍କର ଦେବା ଭଳି ଖ୍ୟାତନାମା ଆଇନଜୀବୀ ହୁଅନ୍ତୁ । ସେଇଥିପାଇଁ ଆବଶ୍ୟକ ଶିକ୍ଷା ଦରକାର । ବୋଧହୁଏ ତାହା ହିଁ ପ୍ରଧାନ କାରଣ ଥିଲା, ଯେଉଁଥିପାଇଁ ମୋତିଲାଲ ଜବାହରଲାଲଙ୍କ ଲାଗି ବିଦେଶୀ ଗୃହଶିକ୍ଷକ ନିଯୁକ୍ତ କରିଥିଲେ ଓ ଉଚ୍ଚଶିକ୍ଷାପାଇଁ ଖର୍ଚ୍ଚ ବହୁଳ ଲଣ୍ଡନର ହାରୋରେ ଅଧ୍ୟୟନ କରିବ'ପାଇଁ ଉପଯୁକ୍ତ ସ୍ଥାନ ମନେ କରିଥିଲେ । ଗୋଟିଏ କଥାରେ କହିବାକୁ ଗଲେ ସମ୍ପୂର୍ଣ୍ଣ ବିଦେଶୀ ଛାଞ୍ଚରେ ଶିକ୍ଷାପ୍ରାପ୍ତ ହୋଇଥିଲେ ଜବାହରଲାଲ । କିନ୍ତୁ ସେ ଯେତେବେଳେ ପିତୃତ୍ୱ ଅର୍ଜ୍ଜନ କରିଥିଲେ, ସେ ଚାହିଁଥିଲେ ଯେ ତାଙ୍କ ସନ୍ତାନ ସମ୍ପୂର୍ଣ୍ଣ ଜାତୀୟ ଭାବଧାରା ଉପରେ ଆଧାରିତ ସ୍କୁଲମାନଙ୍କରେ ଅଧ୍ୟୟନ କରିବା ଆବଶ୍ୟକ । ନିଜ ଜାତି, ନିଜ ଦେଶ ଓ ନିଜ ଲୋକଙ୍କ ପ୍ରତି ମମତାପୂର୍ଣ୍ଣ ହେବାପାଇଁ । ତେଣୁ ଅନେକଥର ଇନ୍ଦୁର ଶିକ୍ଷା ସମ୍ପର୍କୀୟ ଆଲୋଚନା ହିଁ ଥିଲା ଜବାହରଲାଲ ଓ ତାଙ୍କ ପିତା ମୋତିଲାଲଙ୍କ ମଧ୍ୟରେ ମତାନ୍ତରର କାରଣ । ଜବାହରଲାଲ ସେଇଥିପାଇଁ ଶ୍ରୀମତୀ ଭକିଲଙ୍କ ସ୍କୁଲରେ ଶିକ୍ଷା ଲାଭ କରିବା ପାଇଁ ଇଚ୍ଛା କରିଥିଲେ ଓ ଅଗ୍ରାଧିକାର ଦେଇଥିଲେ କବିଗୁରୁଙ୍କ ଶାନ୍ତିନିକେତନକୁ ଅନ୍ୟାନ୍ୟ କଲେଜମାନଙ୍କ ତୁଳନାରେ ।

**ଶାନ୍ତିନିକେତନ :—**

ସ୍କୁଲ ଶିକ୍ଷା ପରିସମାପ୍ତି ପରେ ଇନ୍ଦିରାଙ୍କୁ କଲେଜ ଶିକ୍ଷା ଦେବା ଲାଗି ଜବାହରଲାଲ ଇଚ୍ଛା କରିଥିଲେ । କିନ୍ତୁ ସେତେବେଳେ କଲେଜଗୁଡ଼ିକର ଅସ୍ଥିର ବାତାବରଣ ଅନେକ ସମୟରେ ଜବାହରଲାଲଙ୍କ ଚିନ୍ତାରେ ବିଭ୍ରାଟ ସୃଷ୍ଟି କରୁଥିଲା । ସେ ରବୀନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ଶାନ୍ତିନିକେତନ ସହିତ ପୂର୍ବରୁ ପରିଚିତ ଥିଲେ । ରବୀନ୍ଦ୍ରନାଥ ଓ ତାଙ୍କ ସେକ୍ରେଟାରୀଙ୍କ ସହିତ ପ୍ରେଠାରେ ପ୍ରିୟଦର୍ଶିନୀ ଇନ୍ଦିରାଙ୍କ ଲାଗି ଶିକ୍ଷାର କି ବ୍ୟବସ୍ଥା କରାଯାଇପାରିବ ତାହା ଆଲୋଚନା କରିଥିଲେ । ସେ ଇଚ୍ଛା କରିଥିଲେ ଇନ୍ଦୁ କିଛିଦିନ ପାଇଁ—ଅନ୍ତତଃ ଏକବର୍ଷ ପାଇଁ ଶାନ୍ତି-ନିକେତନରେ ଶିକ୍ଷା ଲାଭ କରୁ । ତେବେ ସେ ବିଷୟରେ ଶେଷ ନିଷ୍ପତ୍ତି ସେ ନେଇ

ନ ଥିଲେ । ରବୀନ୍ଦ୍ରନାଥଙ୍କ ନିକଟକୁ ଚିଠି ଲେଖି ଜଣାଇ ଦେଇଥିଲେ ଯେ ଇନ୍ଦିରାଙ୍କ ସହିତ ଆଲୋଚନା କରିବା ପରେ ହିଁ ତାଙ୍କର ଶେଷ ନିଷ୍ପତ୍ତି ଜଣାଇବେ । ୧୯୩୪ ମସିହା ଅପ୍ରେଲ ୬୨ ତାରିଖରେ ସେ ରବୀନ୍ଦ୍ରନାଥଙ୍କ ସେକ୍ରେଟାରୀ ଅନିଲ କୁମାର ଚନ୍ଦଙ୍କୁ ତାଙ୍କ ମନର କଥା ଲେଖିଥିଲେ, "ଜଣେ ଆଧୁନିକ। ବୁଝଣୀଳା କନ୍ୟା ଉପରେ କୌଣସି ନିଷ୍ପତ୍ତି ଜୋରକରି ଜାହିର କରିବା ଅନୁଚିତ ବୋଲି ମୁଁ ମନେକରେ । ତେଣୁ ତା (ଇନ୍ଦିରା) ସହିତ ସେ ବିଷୟରେ ଆଲୋଚନା କରିବି । ସେ କେଉଁ ବିଷୟ ଅଧ୍ୟୟନ କରିବାକୁ ଚାହେଁ ତା ସହିତ କଥାବାର୍ତ୍ତା କରିସାରିବା ପରେ ମୁଁ ଆପଣଙ୍କୁ ଜଣାଇବି ।" *

ଜବାହରଲାଲଙ୍କ ଇଚ୍ଛା ଥିଲା କୌଣସି ମତକୁ ଆଧୁନିକ ଓ ଶିକ୍ଷିତ ଯୁବକ-ଯୁବତୀଙ୍କ ଉପରେ ଜବରଦସ୍ତ ଲଦି ଦିଆଯିବା ଉଚିତ ନୁହେଁ—ବିଶେଷ କରି ଯାହା ସେମାନଙ୍କ ବ୍ୟକ୍ତିଗତ ଜୀବନ ଉପରେ ପ୍ରଭାବ ପକାଇବ । ସେଥିପାଇଁ ଶାନ୍ତି-ନିକେତନରେ ଅଧ୍ୟୟନ କରିବାଠାରୁ ଆରମ୍ଭ କରି କେଉଁ କେଉଁ ପାଠ୍ୟ ବିଷୟ ପ୍ରତି ସେ ଆଗ୍ରହୀ ଏବଂ କେଉଁ କେଉଁ ବିଷୟ ପଢ଼ିବା ଉଚିତ ସେ ସମ୍ପର୍କରେ ଇନ୍ଦିରାଙ୍କ ସହିତ ଆଲୋଚନା କରୁଥିଲେ । ଇନ୍ଦିରା କବିଗୁରୁଙ୍କ ସାନ୍ନିଧ୍ୟ ପାଇବାପାଇଁ ସମ୍ମତ ହୋଇଥିଲେ । ତେଣୁ ୧୯୩୪ ମସିହା ଶିକ୍ଷାବର୍ଷ ଆରମ୍ଭରେ ଇନ୍ଦିରା ଶାନ୍ତି-ନିକେତନରେ ପାଦ ଦେଇଥିଲେ ଉଚ୍ଚଶିକ୍ଷା ଲାଭ କରିବାପାଇଁ ।

କଲିକତା ମହାନଗରୀଠାରୁ କୋଡ଼ିଏ କିଲୋମିଟର ଦୂରରେ ଅବସ୍ଥିତ ଶାନ୍ତିନିକେତନ ଥିଲା ଏକ ଅତ୍ୟନ୍ତ ସୁନ୍ଦର ସ୍ଥାନ । ସେଠିକାର ବାତାବରଣରେ ପ୍ରକୃତରେ ଶାନ୍ତିର ପ୍ରାଚୂର୍ଯ୍ୟ ପୁରି ରହିଥିଲା—ଠିକ୍ ତାର ନାମ ପରି । ସମଗ୍ର ଦେଶରେ ସେତେବେଳେ ଚାଲିଥିବା ତୁମୁଳ ସ୍ୱାଧୀନତା ସଂଗ୍ରାମଠାରୁ ଦୂରରେ ରହି ସାହିତ୍ୟ ଓ କଳା କ୍ଷେତ୍ରରେ ଛାତ୍ରମାନଙ୍କ ବୌଦ୍ଧିକ ବିକାଶ ଲାଗି ସେ ଅନୁଷ୍ଠାନଟି ଯତ୍ନଶୀଳ ହୋଇଉଠିଥିଲା । ତା'ର କେନ୍ଦ୍ରାଧିପତି ଏକାଧାରରେ କବି, ଲେଖକ, ସଙ୍ଗୀତଜ୍ଞ, ଚିତ୍ରଶିଳ୍ପୀ ଏବଂ ସମସ୍ତ ମାନବିକ ସଦ୍‌ଗୁଣର ଅଧିକାରୀ ରବୀନ୍ଦ୍ରନାଥ ଠାକୁର ସେଠାକୁ ଆସୁଥିବା ଶିଷ୍ୟମାନଙ୍କୁ ସେସବୁ ଦିଗରେ ପ୍ରଭାବିତ କରୁଥିଲେ । ଭାରତର ବିଖ୍ୟାତ ସାହିତ୍ୟିକ ଖ୍ୱାଜା ଅହମଦ ଆବାସଙ୍କ ଭାଷାରେ, "Far from the social and political turmoil of the cities, Shantiniketana provided a peaceful, atmosphere conducive to intellectual and artistic developement of the student's personality. Rabindranath Tagore was the genial presiding deity of the place and his multifaced genius as a poet, writer, musician, artist and humanist subtly influenced all who come to Shantiniketana." *

---

* K. A. Abbas—Return of the red rose—p-66.

ଭାରତର ମହାନ୍ ଐତିହ୍ୟ ତଥା ସାଂସ୍କୃତିକ ପରମ୍ପରାକୁ ଉଜ୍ଜୀବିତ କରିବା ଲାଗି ବିଶ୍ୱକବି ଶାନ୍ତିନିକେତନର ପରିକଳ୍ପନା କରିଥିଲେ । ଅନ୍ୟାନ୍ୟ ୟୁରୋପୀୟ ସଭ୍ୟତା ତଥା ସଂସ୍କୃତିରେ ପ୍ରଭାବିତ ହୋଇ ଭାରତୀୟମାନେ ନିଜସ୍ୱ ହରାଇ ବସୁଥିବା କଥା ସେ ଲକ୍ଷ୍ୟ କରିଥିବାରୁ ସେ ଚାହିଁଥିଲେ, ଯେ କୌଣସି ଉପାୟରେ ହେଉନା କାହିଁକି ଜାତିକୁ ଉଚିତ୍ ମାର୍ଗରେ ପରିଚାଳିତ କରିବାକୁ ହେବ, ବିପଥରୁ ଫେରାଇ ଆଣିବାକୁ ହେବ । ସେଥିପାଇଁ ଶାନ୍ତିନିକେତନର ପ୍ରତିଷ୍ଠା ହୋଇଥିଲା ନିଛକ ଭାରତୀୟ ପରମ୍ପରାକୁ ଆଖି ଆଗରେ ରଖି । ତାଙ୍କର ପ୍ରେରଣାରେ ଅନୁପ୍ରାଣିତ ହୋଇ ଅନେକ ପ୍ରତିଭାଶାଳୀ ଲେଖକ, ସଙ୍ଗୀତଜ୍ଞ ଏବଂ କଳାକାର ସେହି ଶାନ୍ତିନିକେତନ ପ୍ରତି ଆକୃଷ୍ଟ ହୋଇଥିଲେ । କବିଗୁରୁଙ୍କ ଆଦର୍ଶରେ ଯେଉଁମାନେ ପରିଚାଳିତ ହୋଇ-ଥିଲେ ସେମାନେ ଭାରତର ଯୁବଶକ୍ତିକୁ ଉଚିତ ମାର୍ଗରେ ପରିଚାଳିତ କରିବାପାଇଁ ନିଜ ନିଜକୁ ନିୟୋଜିତ କରିଥିଲେ ।

ସେଠାକାର ଅନ୍ତେବାସୀଗଣ ଅତି ସରଳ ତଥା କଠୋର ଛାତ୍ର ଜୀବନ ଯାପନ କରୁଥିଲେ ଏବଂ ସମସ୍ତ କାର୍ଯ୍ୟ ଚତୁରତାର ସହ ତଥା ଆନ୍ତରିକତାର ସହ ସମ୍ପାଦନ କରିବା ସେମାନଙ୍କର ଲକ୍ଷ୍ୟ ଥିଲା । ସେଠାରେ ସମସ୍ତଙ୍କର ହୃଦୟ ସରଳ ଥିଲା । ସେଠାରେ ପ୍ରବେଶ କରିବା ଲାଗି କୌଣସି ପ୍ରକାର ବାଧା ନ ଥିଲା । କୁଳୀନ ଏବଂ ଉଚ୍ଚବଂଶୀୟ ପିଲାମାନେ ମଧ୍ୟ ଅଧ୍ୟୟନ ଲାଗି ସେଠାକୁ ଆସୁଥିଲେ । ରବୀନ୍ଦ୍ରନାଥ ଚାହୁଁଥିଲେ ଶାନ୍ତିନିକେତନର ଛାତ୍ରମାନେ ବାସ୍ତବ କର୍ମମୟ ଜୀବନରେ ଯେପରି କୌଣସି ପ୍ରକାର ପ୍ରତିବନ୍ଧକକୁ ଖାତିର୍ କରିବେ ନାହିଁ, ସେପରି ଭାବରେ ଶିକ୍ଷିତ ହେବା ଆବଶ୍ୟକ । ତାଙ୍କର ମତ ଥିଲା, ସେଠାକାର ଛାତ୍ରମାନେ ଭାରତର ସାଧାରଣ ଜନତା ଅନୁଭବ କରୁଥିବା ସମସ୍ତ ପ୍ରକାରର ବାଧା, ବନ୍ଧନ ଏବଂ ଜୀବନର ଜଟିଳତା ଠିକ୍ ଭାବରେ ଅନୁଭବ କରିବେ ଓ ତାର ନିରାକରଣର ଉପାୟ ନିଜେ ଉଦ୍ଭାବନ କରିବେ । ଏ ପ୍ରକାର ପରିକଳ୍ପନା ମହାତ୍ମା ଗାନ୍ଧୀ ଓ ଜବାହରଲାଲଙ୍କ ଚିନ୍ତାଧାରା ସହିତ ଏକାନ୍ତ ଭାବେ ସମତା ରଖି ପାରୁଥିଲା । ତେବେ ରବୀନ୍ଦ୍ରନାଥ ଚାହୁଁଥିଲେ ପ୍ରତ୍ୟେକ ମଣିଷ ସେମାନଙ୍କ ଜୀବନରେ ସତ୍ୟ, ଶିବ ଓ ସୁନ୍ଦରର ଅନୁଭବ କରିବା ଉଚିତ୍ । ଏତଦ୍‌ବ୍ୟତୀତ ସେଠାକାର ଛାତ୍ରମାନେ ଯେପରି ଆତ୍ମନିର୍ଭରଶୀଳ ହୋଇ ପାରିବେ, ସେଥିପ୍ରତି ବିଶେଷ ଦୃଷ୍ଟି ଦିଆଯାଉଥିଲା ।

**ଖୋଲାମନ, ଖାଲି ପାଦ :—**

ଶାନ୍ତିନିକେତନର ଛାତ୍ରୀମାନଙ୍କ ମଧ୍ୟରେ ସେଦିନ ଜାଗି ଉଠିଥିଲା ଅସୀମ ଉତ୍କଣ୍ଠା । ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ—ମୋତିଲାଲ ନେହେରୁଙ୍କ ନାତୁଣୀ ତଥା ଜବାହରଲାଲଙ୍କ ଏକମାତ୍ର ଅଲିଅଳ କନ୍ୟା ଇନ୍ଦିରା ସେମାନଙ୍କ ସହିତ ପାଦ ମିଳାଇ ଚାଲିପାରିବେ ତ ?

ପଣ୍ଡିତ ମୋତିଲାଲଙ୍କ ପରିଧେୟ ଯେ ଭାରତରୁ ପ୍ୟାରିସ୍ ଯାଉଥିଲା ସଫା-ହୋଇ ଆସିବାପାଇଁ, ଏକଥା କାହାରିକୁ ଅବିଦିତ ନ ଥିଲା । ଆନନ୍ଦ ଭବନର ପ୍ରାଶ୍ଚାତ୍ୟଧର୍ମୀମୟ ପରିବେଶ ବିଷୟରେ ଅନେକଙ୍କର ଖୁବ୍ ଧାରଣା ହୋଇଯାଇଥିଲା ସେତେବେଳକୁ । ସେଇ ନେହେରୁ ପରିବାରର କନ୍ୟା ଇନ୍ଦିରାଙ୍କ ବିଷୟରେ ସେମାନେ ସେଇଥିପାଇଁ ବିଭିନ୍ନ ପ୍ରକାରର କଳ୍ପନା ଜଳ୍ପନା କରୁଥିଲେ । ସେମାନଙ୍କ ମଧ୍ୟରୁ କିଏ ତାଙ୍କର ପରିଧେୟ ଶାଢ଼ୀ କଥା ଚିନ୍ତା କଲାବେଳେ କହୁଥିଲା ହୁଏତ ସେ ଫ୍ରାନ୍‌ସରୁ ଆସିଥିବା ଫେସନ୍ ଶାଢ଼ୀ ପରିହିତା ହୋଇଥିବେ । ଆଉ କିଏ ବା ପରିକଳ୍ପନା କରୁଥିଲା ହାଇହିଲ୍ ଯୋତା ଲାଗିରହିଥିବ ତାଙ୍କ ପଦଯୁଗଳରେ । ଆଉ କେତେକଙ୍କ ସନ୍ଦେହ ଥିଲା—ବିଦେଶରେ ସ୍କୁଲ ଶିକ୍ଷା ଖୁବ୍ କମ୍ ଦିନ ପାଇଁ ଅର୍ଜନ କରିଥିଲେ ମଧ୍ୟ ଇନ୍ଦିରାଙ୍କ ଚାଲିଚଲଣିରେ ନିଶ୍ଚିତଭାବେ ପାଶ୍ଚାତ୍ୟ ଢଙ୍ଗ ପୂରି ରହିଥିବ ଏବଂ ଆହୁରି ସେହିଭଳି ଅନେକ କିଛି··· ।

କିନ୍ତୁ ସେମାନଙ୍କ ଚିନ୍ତାଧାରାର ସୂତ୍ର ସମ୍ପୂର୍ଣ୍ଣ ବିଭ୍ରାଟ ହୋଇ ଯାଇଥିଲା ଯେତେବେଳେ ସେମାନେ ଦେଖିଥିଲେ ଯେ କୁମାରୀ ଇନ୍ଦିରା ନିଜର ସୁଟ୍‌କେଶ ଓ ବିଛଣା ନିଜ ହାତରେ ନେଇ ଛାତ୍ରୀନିବାସ ଆଡ଼କୁ ମାଡ଼ି ଆସୁଥିଲେ । ପାଦ ତାଙ୍କର ମୁକୁଳା ଥିଲା । ସେ ସାଧାରଣ ଚପଲ ମଧ୍ୟ ପରିଧାନ କରି ନ ଥିଲେ । ସେମାନେ କିଛି ସମୟ ଲାଗି ନିଜକୁ ବିଶ୍ୱାସ କରିପାରି ନ ଥିଲେ ଯେ ପ୍ରକୃତରେ ସିଏ ହିଁ ଇନ୍ଦିରା ନେହେରୁ ହୋଇପାରନ୍ତି । ଛାତ୍ରୀମାନଙ୍କ ମନର ଉତ୍କଣ୍ଠା ଅପସାରିତ ହୋଇଥିଲା ଓ ସେମାନେ ଆଶ୍ଚର୍ଯ୍ୟାନ୍ୱିତ ହେଲେ ମଧ୍ୟ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ, ଯେତେବେଳେ ସେମାନେ ଦେଖିଥିଲେ ଯେ ବାସ୍ତବିକ୍ ଇନ୍ଦିରାଙ୍କ ବେଶ, ପରିପାଟୀ, କଥାବାର୍ତ୍ତା, ଚାଲିଚଲଣରେ ଡିଲେମାଟ ଆଭିଜାତ୍ୟର ଚିହ୍ନ ବିନ୍ଦୁ ନ ଥିଲା । ତାଙ୍କ ପରିଧାନ ଥିଲା ସରଳ ଓ ନିରାଡ଼ମ୍ବର । ପିନ୍ଧିଥିଲେ ଖଣ୍ଡିଏ ମୋଟା ଖଦଡ଼ର ଶାଢ଼ୀ । ପାଦ ଦୁଇଟି ଖାଲି ଥିଲା । ସେ ସନ୍ଧ୍ୟାରେ ଶାନ୍ତି ନିକେତନର ଛାତ୍ରୀନିବାସରେ ପ୍ରବେଶ କଲାବେଳକୁ ତାଙ୍କର ଏକ ହାତରେ ଥିଲା ଗୋଟାଏ ପୁରୁଣା ଚମଡ଼ା ସୁଟକେଶ୍ ଓ ଅନ୍ୟ ହାତରେ ଥିଲା ନିଜର ବିଛଣା ।

ଶାନ୍ତିନିକେତନର ଅନ୍ୟମାନଙ୍କ ମଧ୍ୟରେ ସେହିଦିନଠାରୁ ଜଣେ ହୋଇଥିଲେ ଇନ୍ଦିରା ।

ଶାନ୍ତିନିକେତନର ଛାତ୍ରୀନିବାସ "ଶ୍ରୀଭବନ ଆଶ୍ରମ"ର ସମବୟସୀ ଅନ୍ୟାନ୍ୟ ଅନ୍ତେବାସୀମାନଙ୍କ ପରି ଇନ୍ଦିରା ମଧ୍ୟ ସମସ୍ତ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଥିଲେ । ସେଠାରେ କୌଣସି ଚାକର ବାକର ରଖାଯିବାର ବ୍ୟବସ୍ଥା ନ ଥିଲା । କାରଣ ଆତ୍ମସାହାଯ୍ୟ ଏବଂ ସମସ୍ତ ଅନ୍ତେବାସୀ ପରସ୍ପର ସାହାଯ୍ୟ କରି ଜୀବନ ନିର୍ବାହ କରିବାକୁ ରବୀନ୍ଦ୍ରନାଥ ଉଚିତ୍ ଏବଂ ଏକ ଆବଶ୍ୟକତା ବୋଲି ମନେ କରିଥିଲେ । ଏହା ଫଳରେ ପ୍ରତ୍ୟେକେ ଅନ୍ୟମାନଙ୍କୁ ଠିକ୍ ଭାବରେ ବୁଝିପାରିବେ

ଏବଂ ସହୃଦୟତା ସେମାନଙ୍କ ଜୀବନ ଗଠନ କରିବାରେ ବିଶେଷ ସାହାଯ୍ୟ କରିବ ବୋଲି ସେ ହୃଦୟଙ୍ଗମ କରିଥିଲେ । ତେଣୁ ଛାତ୍ରୀନିବାସର ଅନ୍ତେବାସୀଗଣ ସେଠାକାର ସମସ୍ତ କାର୍ଯ୍ୟ ନିଜେ ନିଜେ ହିଁ ସମାପନ କରୁଥିଲେ । ନିଜ ଲୁଗା ନିଜେ ସଫା କରିବାଠାରୁ ଆରମ୍ଭ କରି ଛାତ୍ରୀନିବାସ ସଫାକରିବା, ଖାଦ୍ୟ ପ୍ରସ୍ତୁତ କରିବା ଏବଂ ସମସ୍ତଙ୍କୁ ଖାଦ୍ୟ ପରିବେଷଣ କରିବା ଇତ୍ୟାଦି କାର୍ଯ୍ୟ ସେମାନେ ପ୍ରତ୍ୟେକେ ପାଳି କରି ସମ୍ପାଦନ କରୁଥିଲେ ।

ପାହାନ୍ତି ତାରାର ଆଲୋକ ଲିଭିଯିବା ପୂର୍ବରୁ ଶାନ୍ତିନିକେତନର ସମସ୍ତଙ୍କୁ ଶଯ୍ୟା ତ୍ୟାଗ କରିବାକୁ ପଡ଼ୁଥିଲା ଭୋର ସାଢ଼େ ଚାରିଟା ବେଳେ । ଶେଯରୁ ଉଠି ଶୋଇବା ଘର ସଫାସୁତୁରା କରିସାରିବା ପରେ ଗ୍ରୀଷ୍ମ, ବର୍ଷା କିମ୍ବା ଶୀତ ଋତୁ ହେଉ ପଛକେ, ଥଣ୍ଡା ପାଣିରେ ସ୍ନାନ କାର୍ଯ୍ୟ ସମାପନ କରିବାକୁ ପଡ଼ୁଥିଲା । ସକାଳ ଜଳଖିଆ ପରେ ପରେ ଠିକ୍ ଛଅଟା ବେଳେ ଶ୍ରେଣୀରେ ଯୋଗଦେବା ଥିଲା ସେମାନଙ୍କ କାର୍ଯ୍ୟ । ଦିନକର ପାଠ୍ୟକ୍ରମ ଶେଷ କରି ଫେରିବା ପରେ ଛାତ୍ରୀମାନେ ପାଳି କରି ସମସ୍ତଙ୍କ ଲାଗି ଖାଦ୍ୟ ପାକ କରୁଥିଲେ ମଧ୍ୟ । ପାକ ହୋଇଥିବା ପାତ୍ରଗୁଡ଼ିକୁ ସେଇମାନେ ହିଁ ଘଷି ମାଜି ସଫା କରୁଥିଲେ ।

ସମସ୍ତଙ୍କ ମନ ପ୍ରାଣ କୁତୂହଳରେ ଆଚ୍ଛନ୍ନ ହୋଇ ଯାଇଥିଲା, ଇନ୍ଦିରା ନେହେରୁ ଏସବୁ କାର୍ଯ୍ୟ କରିବେ ତ ? କିନ୍ତୁ ଯେତେବେଳେ ଇନ୍ଦିରାଙ୍କ ପାଳି ପଡ଼ୁଥିଲା ମୁହୂର୍ତ୍ତିକପାଇଁ ମଧ୍ୟ ଏସବୁ କାର୍ଯ୍ୟ କରିବାକୁ ସେ କୁଣ୍ଠାପ୍ରକାଶ କରି ନ ଥିଲେ କିମ୍ବା ସାମାନ୍ୟତମ ପଶ୍ଚାତ୍‌ପଦ ହୋଇ ନ ଥିଲେ । ପରିସ୍ଥିତିର ମୁକାବିଲା କରିବାପାଇଁ ତାଙ୍କର ଯଥେଷ୍ଟ ଆତ୍ମବିଶ୍ୱାସ ଥିଲା । କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେଉଥିଲା ପ୍ରିୟ ପାପୁଙ୍କ ସେଇ ବାର୍ତ୍ତା, "Be brave and all the rest follows—Live dangerously."

ଏ ପ୍ରକାର ଏକ କଠିନ ଜୀବନର କାର୍ଯ୍ୟନିର୍ଘଣ୍ଟ ରବୀନ୍ଦ୍ରନାଥଙ୍କ ଇଚ୍ଛାକୃତ ଥିଲା । ସେ ଚାହୁଁଥିଲେ ଯେ, ଯେତେ ଧନୀକ ସମ୍ପ୍ରଦାୟ ବା ଉଚ୍ଚବଂଶୀୟ ସନ୍ତାନ ହୁଅନ୍ତୁ ନା କାହିଁକି, ଅତି ସାଧାରଣ ଜନତାର ଜୀବନନିର୍ବାହ ଧାରା ସହିତ ସମସ୍ତେ ଅବଗତ ହେବା ଆବଶ୍ୟକ । ସେ ଛାତ୍ରାବାସରେ ବିଦ୍ୟୁତ୍‌ଶକ୍ତି ନ ଥିଲା ବା ନ ଥିଲା ଗ୍ରୀଷ୍ମକାଳୀନ ପ୍ରଚଣ୍ଡ ଉତ୍ତାପରୁ ରକ୍ଷା ପାଇବା ପାଇଁ କୌଣସି ସୁବ୍ୟବସ୍ଥା । ଅନ୍ତେବାସୀଗଣ କିରୋସିନ୍ ଲଣ୍ଠନ ସାହାଯ୍ୟରେ ଅଧ୍ୟୟନ କରୁଥିଲେ । ଏ ପରିସ୍ଥିତିରେ ମଧ୍ୟ କୌଣସି ଦିନ ନିଜର ଚଳିବାରେ ଅସୁବିଧାଜନିତ ତ୍ରୁଟି ଦେଖାଇ ଇନ୍ଦିରା ଅଭିଯୋଗ କରି ନ ଥିଲେ । ସେଇଠି ରହିବା ଭିତରେ ସେ କୌଣସି ଦିନ ଆନନ୍ଦ ଭବନର ପ୍ରାଣପ୍ରାଚୁର୍ଯ୍ୟମୟ ପରିବେଶ ସହିତ ତାର ତୁଳନା କରି ନ ଥିଲେ ।

ସବୁବେଳେ ଇନ୍ଦିରାଙ୍କ ପରିଧାନ ଥିଲା ମୋଟା ଖଦଡ଼ ଶାଢ଼ୀ । ଯେଉଁଦିନ ରୋଷେଇ କରିବା ପାଳି ପଡ଼ୁଥିଲା, ସେ ଖୁବ୍ ଆଗ୍ରହରେ—ରୋଷେଇଶାଳ ସହିତ ସତେ ଯେମିତ ଅନେକ ଆଗରୁ ପରିଚିତ ଥିବା ଭଳି କର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ସେସବୁ କାର୍ଯ୍ୟରେ ତାଙ୍କର ଦ୍ୱିଧା ନ ଥିଲା—ଥିଲା ଅପାର ଆନନ୍ଦ, ମନରେ ଅନେକ ଫୁର୍ତ୍ତି । ସମସ୍ତଙ୍କ ଖିଆ ସରିବାପରେ ସେ ଖାଉଥିଲେ । ତା ପରେ ପାକ କରାଯାଇଥିବା ପାତ୍ରସବୁକୁ ସଫାସୁତୁରା କରି ରୋଷେଇଶାଳ ସଫା କରୁଥିଲେ ଓ ତାପରେ ଯାଇ ଶୋଇବାକୁ ଯାଉଥିଲେ ।

ସେତେବେଳକୁ ସହପାଠିନୀମାନେ ହୁଏତ ନିଦରେ ଶୋଇ ସ୍ୱପ୍ନ ଦେଖୁଥିଲେ ।

**ଏକ ମୂଲ୍ୟବାନ ଚିଠି :—**

ବେଳେ ବେଳେ ଗ୍ରନ୍ଥିର ଗମ୍ଭୀରତା ସହିତ ଇନ୍ଦିରାଙ୍କ ମନର କପୋତ ଉଡ଼ିଯାଉଥିଲା ଜେଲସ୍ଥିତ ପିତାଙ୍କ ନିକଟକୁ ଓ ଚିକିତ୍ସିତ ହେଉଥିବା ମାତା କମଳାଙ୍କ ନିକଟକୁ । ତେବେ ପାପୁ ଓ ମାମିଙ୍କ ଚିଠି ମଝିରେ ମଝିରେ ତାଙ୍କୁ ସାନ୍ତ୍ୱନା ଦେଉଥିଲା । କିନ୍ତୁ ପ୍ରକୃତରେ ସେତେବେଳକୁ ଜବାହରଲାଲଙ୍କ ଐତିହାସିକ ପତ୍ରାବଳୀ, ଯାହାର ଲକ୍ଷ୍ୟ ଥିଲା ପତ୍ର ମାଧ୍ୟମରେ ଇନ୍ଦିରାଙ୍କୁ କିଛି ଶିକ୍ଷା ଦେବା, ତାହା ଶେଷ ହୋଇ ଯାଇଥିଲା । ଜବାହରଲାଲଙ୍କ ପ୍ରଥମ ଚିଠିଟି ଭଳି ଶେଷ ଚିଠିଟି ମଧ୍ୟ ଇନ୍ଦିରାଙ୍କ ପାଇଁ ମୂଲ୍ୟବାନ ଥିଲା । ପ୍ରକୃତରେ ଶେଷ ଚିଠିଟି ଜବାହରଲାଲଙ୍କ ଚିନ୍ତା ଓ ଚେତନାର ପ୍ରତୀକ ଥିଲା । ସେ ସେଥିରେ ଲେଖିଥିଲେ ଯେ, ସେ ଇନ୍ଦିରାଙ୍କୁ ଯେଉଁ ଚିଠିଗୁଡ଼ିକ ଗତ ଦୁଇ ବର୍ଷ ଭିତରେ ଲେଖିଥିଲେ, ସେଥିରେ ଯେଉଁ ଯେଉଁ ବିଷୟ ବର୍ଣ୍ଣନା କରିଥିଲେ ସେଗୁଡ଼ିକ ଇନ୍ଦିରାଙ୍କୁ ପ୍ରକୃତରେ ଉତ୍ସାହିତ କରୁ ବା ନ କରୁ, ସେଥିରୁ ସେ କିଛି ପ୍ରେରଣା ପାଆନ୍ତୁ ବା ନ ପାଆନ୍ତୁ, ସେ ନିଜେ (ଜବାହରଲାଲ) ସେଥିରୁ ଅନେକ ଆନନ୍ଦ ପାଇଛନ୍ତି । ସେ ପୁଣି ସେଥିରେ ଲେଖିଥିଲେ ଯଦି ଇନ୍ଦିରାଙ୍କୁ ଗୋଟିଏ ପ୍ରଶ୍ନ ପଚରାଯାଏ ଯେ ସେ ଚିଠିଗୁଡ଼ିକ ତାଙ୍କୁ ଆନନ୍ଦ ଦେଇଛି କି ନାହିଁ, ଇନ୍ଦିରା ହୁଏତ ଆନନ୍ଦିତ ହୋଇଛନ୍ତି ବୋଲି ଉତ୍ତର ଦେବେ । କାରଣ ମନାକଲେ ପିତାଜୀଙ୍କ ମନରେ କଷ୍ଟ ହେବ ବୋଲି ସେ ହୁଏତ ମନେ କରିବେ । କିନ୍ତୁ ସେଭଳି ଉତ୍ତରରେ ପ୍ରକୃତରେ ଜବାହରଲାଲ ସେଥିରେ ମୋଟେ ଦୁଃଖିତ ହୋଇ ନ ଥାନ୍ତେ । ସେଥିରେ ସେ ଲେଖିଥିଲେ—

"What a mountain of letters I have written ! Will all this paper and ink convey any message to you that will interest you ? You will say yes, of course, for you will feel that any other answer might hurt me, and you are too partial to me

to take such a risk. But whether you care for them or not you cannot grudge me the joy of having written them day after day during these two years...you must not take what I have written in these letters as the final authority on any subject. A politician wants to have a say on every subject and he always pretends to know much more than he actually does, he has to be watched carefully perhaps occasionally you may find my letters difficult to follow; skip those parts, do not mind them. The grownup in me got the letter of me sometimes and I wrote as I should not have written. *

ପିତା ଜବାହରଲାଲ ତାଙ୍କ କନ୍ୟା ଇନ୍ଦିରାଙ୍କୁ ଲେଖିଥିଲେ ଯେ ବିଗତ ଚିଠିଗୁଡ଼ିକରେ ଯାହାସବୁ ଲେଖା ଯାଇଥିଲା ସେଗୁଡ଼ିକ ଏକାନ୍ତ ନିର୍ଭୁଲ ଭାବେ ଗ୍ରହଣ କରାଯିବା ଉଚିତ ନୁହେଁ । କାରଣ ସବୁ ବିଷୟରେ ତାଙ୍କର ପାଣ୍ଡିତ୍ୟ ନ ଥିଲା । ବିଶେଷକରି ସେ ଥିଲେ ଜଣେ ରାଜନୀତିଜ୍ଞ । ରାଜନୈତିକ ନେତାମାନେ ସାଧାରଣତଃ ପ୍ରକୃତରେ ଯେତିକ ଜାଣିଥାନ୍ତି ତାଠାରୁ ଯଥେଷ୍ଟ ଅଧିକ ଜାଣିଥିବା ଛଳନା କରିଥାନ୍ତି । ସେମାନେ ପୃଥିବୀର ସମସ୍ତ ବିଷୟରେ ଦକ୍ଷ ବୋଲି ନିଜକୁ ପରିଚୟ ଦେଇଥାନ୍ତି । ତେଣୁ ଅତି ସତର୍କତାର ସହିତ ସେମାନଙ୍କୁ ଅନୁଧ୍ୟାନ କରାଯିବା ଉଚିତ ।

ସେଇ ଶେଷ ଚିଠିଟି ସମାପ୍ତ ହୋଇଥିଲା ବିଶ୍ୱକବି ରବୀନ୍ଦ୍ରନାଥଙ୍କ ବିଖ୍ୟାତ ନୋବେଲ ପୁରସ୍କାରପ୍ରାପ୍ତ ଗୀତାଞ୍ଜଳିର ଗୋଟିଏ କବିତାର କେତୋଟି ଧାଡ଼ିରେ । ସେହି କବିତାଂଶଟି ଇନ୍ଦିରା ଅନେକଥର ପଢ଼ି ତୃପ୍ତି ପାଉଥିଲେ ଏବଂ ସେହି ଐତିହାସିକ ଶେଷ ଚିଠିଟି ବାରମ୍ବାର ପଢ଼ିବାକୁ ତାଙ୍କୁ ଭଲ ଲାଗୁଥିଲା ।

ଶାନ୍ତିନିକେତନର ଛାତ୍ରୀନିବାସରେ ବା ଅନ୍ୟ କୌଣସି ସ୍ଥାନରେ ତାହାଙ୍କୁ ସ୍ୱତନ୍ତ୍ର ସୁବିଧା ଦିଆଯାଇ ନ ଥିଲା । ସେ ସମ୍ପର୍କରେ ଜବାହରଲାଲ ରବୀନ୍ଦ୍ରନାଥଙ୍କୁ ପୂର୍ବରୁ ହିଁ ଚିଠି ଲେଖି ଜଣାଇ ଦେଇଥିଲେ । ନିଜେ ପ୍ରତ୍ୟେକ ସ୍ଥାନରେ ସ୍ୱତନ୍ତ୍ର ସୁବିଧା ସୁଯୋଗ ପାଇ ଅଧ୍ୟୟନ କରି ଆସିଥିବାରୁ ସେ ଅନୁଭବ କରିଥିଲେ ଯେ ପ୍ରକୃତରେ ଦେଶର ସବୁ ଶ୍ରେଣୀର ଲୋକମାନଙ୍କ ସହିତ ଏକ ହୋଇ ନ ଚଳିଲେ ସେମାନଙ୍କ ସମ୍ପର୍କରେ ଜାଣିବା କଷ୍ଟକର ହେବ—ସେମାନଙ୍କର ଅବସ୍ଥା ସଠିକ୍ ରୂପେ ଅନୁଭବ କରିହେବ ନାହିଁ । ତେଣୁ ସର୍ବସାଧାରଣଙ୍କ ସହିତ ଇନ୍ଦିରା ମଧ୍ୟ ଏକ ହୋଇ ଚଳିବା ଲାଗି ନିଜର ଇଚ୍ଛା ପ୍ରକାଶ କରିଥିଲେ । ମୂଳତଃ ଶାନ୍ତିନିକେତନର ଧର୍ମ ହିଁ ସେଇଆ ଥିଲା । ସମସ୍ତ ଛାତ୍ରଛାତ୍ରୀଙ୍କୁ ଏକ ପ୍ରକାର ଚଳଣି ଭିତରେ ହିଁ ରହିବାକୁ ପଡ଼ୁଥିଲା ।

---

* Jawaharlal Nehru—Glimpses of World History.

ଶ୍ରୀମତୀ ଅଶୋକା ସିହ୍ନା ଥିଲେ ଶାନ୍ତିନିକେତନର ଜଣେ ଛାତ୍ରୀ ତଥା ଇନ୍ଦିରାଙ୍କ ସହପାଠିନୀ । ଛାତ୍ରୀନିବାସରେ ଉଭୟେ ପାଖାପାଖି ରହୁଥିଲେ । ତାଙ୍କ ମତରେ ଇନ୍ଦିରା ଯଦିଓ ଖୁବ୍ ସରଳ, ଶାନ୍ତ ଓ ଲଜ୍ଜାଶୀଳା ଥିଲେ, ତଥାପି ପ୍ରତ୍ୟେକ କାର୍ଯ୍ୟ ଲାଗି ସେ ଅତ୍ୟନ୍ତ ଆଗ୍ରହୀ ଥିଲେ । ଶିକ୍ଷା ପ୍ରତି ତାଙ୍କର ଥିଲା ପ୍ରଗାଢ଼ ମମତା, ଅପରସୀମ ଉତ୍କଣ୍ଠା । ସେ ଶ୍ରେଣୀର ନିର୍ଦ୍ଧାରିତ ପାଠ୍ୟନିର୍ଘଣ୍ଟ ବ୍ୟତୀତ ଚିତ୍ରକଳା, ସଙ୍ଗୀତ ଓ ନୃତ୍ୟଶିକ୍ଷା କରିବା ଲାଗି ମଧ୍ୟ ବଳବତ୍ତର ଇଚ୍ଛା ପୋଷଣ କରିଥିଲେ । ଶାନ୍ତିନିକେତନର ଚିତ୍ରକଳା କେନ୍ଦ୍ର କଳାଭବନରେ ସେ ଅନେକ ଅବସର ସମୟ ବ୍ୟୟିତ କରୁଥିଲେ ଚିତ୍ରକଳା ଶିକ୍ଷା କରିବାଲାଗି । ସେ ଶ୍ରେଣୀରେ ଯେତେ ଗମ୍ଭୀର ହୋଇ ଉଠୁଥିଲେ, ଠିକ୍ ତାର ବିପରୀତ ଜଣାପଡ଼ୁଥିଲେ ଶ୍ରେଣୀ ବାହାରେ ସାଙ୍ଗସାଥୀମାନଙ୍କ ଗହଣରେ ହସ ଖୁସି କରିବା ସମୟରେ । ଅନେକ ସମୟରେ ଥଟ୍ଟା ପରିହାସରେ ସକ୍ରିୟ ଅଂଶ ଗ୍ରହଣକରି ସେ ଅନ୍ୟମାନଙ୍କୁ ଆଶ୍ଚର୍ଯ୍ୟ କରାଇ ଦେଉଥିଲେ ।

ଇନ୍ଦିରାଙ୍କ ବ୍ୟକ୍ତିତ୍ୱର ଦୁଇଟି ଦିଗ ପ୍ରତି ଆଲୋକପାତ କରିଥିଲେ ଶ୍ରୀମତୀ ସିହ୍ନା ଶାନ୍ତିନିକେତନ ଛାତ୍ରୀନିବାସର ଦୁଇଟି ଘଟଣାକୁ ଭିତ୍ତିକରି ।

ସେହି ସମୟରେ ଜଣେ ଗୁଜରାଟୀ ମହିଳା ସେଇ ଛାତ୍ରୀନିବାସରେ ରହୁଥିଲେ ଓ ହସ୍ତକର୍ମର ନୈପୁଣ୍ୟ ତାହାଙ୍କୁ ଶାନ୍ତିନିକେତନର ଅନ୍ୟମାନଙ୍କ ସହିତ ସୁପରିଚିତ କରାଇ ଦେଇପାରିଥିଲା । ସମସ୍ତ ଅଭାବରୁ ହେଉ ବା ଅଧ୍ୟବସାୟ ଲାଗି ହେଉ, ସେ ସେଠାକାର ଅନ୍ୟମାନଙ୍କ ସହିତ ମିଳାମିଶା କରିବା ଲାଗି ଭଲ ପାଉ ନ ଥିଲେ । ତେଣୁ ଛାତ୍ରୀନିବାସର ଅନ୍ତେବାସୀମାନଙ୍କର କ୍ରମେ କ୍ରମେ ଧାରଣା ହୋଇଥିଲା ଯେ ପ୍ରକୃତରେ ଗୁଜରାଟୀ ମହିଳା ଜଣକ ତାଙ୍କର ହସ୍ତକର୍ମ କାରୁକାର୍ଯ୍ୟ ପାଇଁ ଯେଉଁ ପରିମାଣରେ ସମ୍ମାନ ପାଉଥିଲେ, ସେ ତାର ଯୋଗ୍ୟ ନ ଥିଲେ; କାରଣ ସେ କାରୁକାର୍ଯ୍ୟଗୁଡ଼ିକୁ ବଜାରରୁ କିଣି ନେଇଆସି ପ୍ରକୃତରେ ନିଜେ ନିଜ ହାତରେ ପ୍ରସ୍ତୁତ କରିଥିବା କଥା ଦର୍ଶାଉଥିଲେ ।

ଗୁଜରାଟୀ ମହିଳା ଜଣକ ସମଗ୍ର ଛାତ୍ରୀନିବାସ ମଧ୍ୟରୁ କେବଳ ଜଣଙ୍କୁ ଭଲ ପାଉଥିଲେ ଏବଂ ସେ ଜଣକ ଥିଲେ ଇନ୍ଦିରା । ସେ କେବଳ ଇନ୍ଦିରାଙ୍କୁ ତାଙ୍କ କୋଠରୀକୁ ଡାକି ନେଉଥିଲେ ଏବଂ କୋଠରୀର ସମସ୍ତ ଦ୍ୱାର ଓ ଝରକା ବନ୍ଦ କରି ସେହି ରୁଦ୍ଧ କୋଠରୀରେ ତାଙ୍କର ହସ୍ତକର୍ମର କୁଶଳତାଗୁଡ଼ିକୁ ଦେଖାଉଥିଲେ । ସେସବୁ ଦେଖି ଇନ୍ଦିରା ତାଙ୍କୁ ଉପରେ ଅତ୍ୟନ୍ତ ପ୍ରୀତ ହୋଇ ତାଙ୍କର ହସ୍ତ-ନୈପୁଣ୍ୟର ଭୂରି ଭୂରି ପ୍ରଶଂସା କରୁଥିଲେ । ସମସ୍ତ ହସ୍ତକର୍ମ ଭିତରେ ତାହାଙ୍କୁ ଉତ୍କୃଷ୍ଟ ବିବେଚିତ ହୋଇଥିବା ଖଣ୍ଡିଏ ବ୍ୟାଗ୍ ସେ ମହିଳା ଜଣକ ବାଛିତ

ସହକାରେ ରଖିଥିଲେ 'କଳାଭବନ'ର ମୁଖ୍ୟ ତଥା ଭାରତର ଜଣେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ଶ୍ରୀ ନନ୍ଦଲାଲ ବୋଷଙ୍କୁ ଉପହାର ଦେବା ଲାଗି ।

ଏ ଖବର ଜାଣିବା ପରେ ଛାତ୍ରୀନିବାସର ଅନ୍ୟାନ୍ୟ ଛାତ୍ରୀମାନେ ଚାହିଁଥିଲେ ସେ ବ୍ୟାଗ୍‌ଟିକୁ କୌଣସି ମତେ ତାଙ୍କ କଠୋରୀରୁ ଲୁଚାଇ ଆଣିବେ ଏବଂ ସେହିଭଳି ଆଣିବା ଭାର ନ୍ୟସ୍ତ ହୋଇଥିଲା ତାଙ୍କ କୋଠରୀକୁ ପ୍ରବେଶ ଅଧିକାର ମିଳିଥିବା ଏକମାତ୍ର ବ୍ୟକ୍ତି କୁମାରୀ ଇନ୍ଦିରାଙ୍କ ଉପରେ । ପରିଣାମତଃ ଉକ୍ତ ମହିଳା ଜଣଙ୍କର ପ୍ରତିକ୍ରିୟା ଜାଣିବା ଥିଲା ସେମାନଙ୍କର ଉଦ୍ଦେଶ୍ୟ ।

ଠିକ୍ ସମୟରେ ବ୍ୟାଗ୍ ଖଣ୍ଡିକ ଚୋରି ଯାଇଥିଲା ।

ଏଥିରେ ଭଦ୍ରମହିଳା ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ିଥିଲେ ଏବଂ ଶେଷରେ ବ୍ୟାଗ୍ ନ ମିଳିଲେ ଅନଶନ ଧର୍ମଘଟ କରିବାପାଇଁ ମଧ୍ୟ ଧମକ ଦେଇଥିଲେ । ଇତି ମଧ୍ୟରେ ଥରେ ନୁହେଁ, ଅନେକବାର ଭଦ୍ରମହିଳା ବିଭିନ୍ନ କଥା ପ୍ରସଙ୍ଗରେ ସ୍ୱୀକାର କରିଥିଲେ ଯେ ସେ ଉକ୍ତ ବ୍ୟାଗ୍‌ଟିକୁ କିଣି ଆଣିଥିଲେ । ଘଟଣା ଯେତେବେଳେ ଟିକିଏ ଅଧିକ ଜଟିଳ ହେବାକୁ ଆରମ୍ଭ କରିଥିଲା, ତାକେ ଇନ୍ଦିରା ସେ ବ୍ୟାଗ୍‌ଟିକୁ ଛାତ୍ରୀନିବାସର କୌଣସି ଏକ ଗଛତଳେ ପଡ଼ିଥିଲା ବୋଲି କହି ଆଣି ଦେଇଥିଲେ । ମହିଳା ଜଣକ ସହଜରେ ଅନ୍ୟମାନଙ୍କ ନିକଟରେ ଧରା ପଡ଼ିଯାଇଥିବାରୁ ସବୁଠାରୁ ବେଶୀ କ୍ରୋଧାନ୍ୱିତ ହୋଇଥିଲେ ଇନ୍ଦିରାଙ୍କ ଉପରେ ।

ସେମିତି ଆଉ ଗୋଟିଏ ଘଟଣା ।

ଥରେ ଛାତ୍ରୀନିବାସର ଆଉ ଜଣେ ଅନ୍ତେବାସୀ ତାଙ୍କର କେତେକ ଅଳଙ୍କାର ଚୋରି ଯାଇଥିଲା ବୋଲି ଅଭିଯୋଗ କରିଥିଲେ ତତ୍ତ୍ୱାବଧାରିକାଙ୍କ ନିକଟରେ । ଏହାକୁ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟ ମନେକରି ତତ୍ତ୍ୱାବଧାରିକା ମହୋଦୟା ଛାତ୍ରୀନିବାସରେ ରହୁଥିବା ସମସ୍ତ ଛାତ୍ରୀଙ୍କର ବାକ୍ସ (ସୁଟକେଶ) ସବୁ ଯାଞ୍ଚ କରାଯିବା କଥା କହିଥିଲେ ଏବଂ ନିର୍ଦ୍ଦିଷ୍ଟ ଭାବେ କହିଥିଲେ ଯେ କେବଳ ଇନ୍ଦିରାଙ୍କ ବାକ୍ସ ଯାଞ୍ଚ କରାଯିବ ନାହିଁ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ ଇନ୍ଦିରାଙ୍କ ଉପରେ ସମସ୍ତଙ୍କ ଅତୁଟ ବିଶ୍ୱାସ ଥିଲା । କିନ୍ତୁ ଛାତ୍ରୀନିବାସର ଜଣେ ଅନ୍ତେବାସୀ ହିସାବରେ ଇନ୍ଦିରା ସେ ସୁବିଧା, ସେଇ ସ୍ୱତନ୍ତ୍ର ଅଧିକାର ଉପଭୋଗ କରିବା ଲାଗି ଇଚ୍ଛା କରି ନ ଥିଲେ । ଯେତେବେଳେ ଟ୍ରଙ୍କସବୁ ଯାଞ୍ଚ ହେବା କାର୍ଯ୍ୟ ଆରମ୍ଭ ହେଲା, ସର୍ବପ୍ରଥମେ ଇନ୍ଦିରା ନିଜ ଟ୍ରଙ୍କ ଖୋଲି ସମସ୍ତ ଜିନିଷପତ୍ର ତନଖି କରାଇ ନେଇ-ଥିଲେ । ସମସ୍ତଙ୍କର ଟ୍ରଙ୍କ ଠିକ୍‌ଠାକ୍ ଭାବେ ତନଖି କରାଯାଇଥିଲେ ମଧ୍ୟ କୌଣସି-ଠାରେ ସେ ଅଳଙ୍କାରର ଚିହ୍ନ ନ ଥିଲା । ସବୁ ସରିବା ପରେ ଅଳଙ୍କାରଗୁଡ଼ିକ ମିଳିଥିଲା ଗାଧୁଆ ଘରୁ । ଛାତ୍ରୀ ଜଣକ ଗାଧୋଇବା ବେଳେ ତାହା ବାହାର କରି

ସେଇଠି ରଖି ଦେଇଥିଲେ ଓ ଗାନ୍ଧୀଆ ଶେଷରେ ଆଶିବା ଲାଗି ସମ୍ପୂର୍ଣ୍ଣ ଭୁଲି ଯାଇଥିଲେ ।

**କବିଗୁରୁଙ୍କ ପଦତଳେ :—**

କବିଗୁରୁ ରବୀନ୍ଦ୍ରନାଥଙ୍କ କୁଟୀର ସାମନା ଦେଇ ଦିନେ ସନ୍ଧ୍ୟାବେଳେ ବୁଲି ଯାଉଥିବା ବେଳେ ଇନ୍ଦିରାଙ୍କୁ ଡାକିଥିଲେ ରବୀନ୍ଦ୍ରନାଥ ଏବଂ ପଚାରିଥିଲେ ସେ କାହିଁକି ତାହାଙ୍କ ନିକଟକୁ ଯାଉନାହାନ୍ତି ! ତାର ଉତ୍ତରରେ ଇନ୍ଦିରା କହିଥିଲେ ଯେ କବିଗୁରୁଙ୍କ କାର୍ଯ୍ୟରେ ବାଧାସୃଷ୍ଟି କରିବା ଲାଗି ସେ ଚାହୁଁ ନ ଥିଲେ । କିନ୍ତୁ ବିଶ୍ୱକବି ଯେତେବେଳେ କହିଥିଲେ ବେଳେବେଳେ ତାଙ୍କ କଳାକେନ୍ଦ୍ରକୁ ଆସିବା ଲାଗି, ତାପରେ ପ୍ରାୟ ଅଧିକାଂଶ ଦିନ ଇନ୍ଦିରା ସେ ସୁଯୋଗ ନେଉଥିଲେ ଏବଂ ସେଠାକୁ ଯାଇ ନୀରବରେ କବିଗୁରୁ କାର୍ଯ୍ୟରତ ଥିବାବେଳେ ଆତ୍ମାଭିଭୂତ ହୋଇ ଲକ୍ଷ୍ୟ କରୁଥିଲେ ଏବଂ ଅନୁଧ୍ୟାନ କରୁଥିଲେ ମହାମାନବଙ୍କ କୃତସମୂହକୁ । ଅନେକ ସମୟରେ ଇନ୍ଦିରା ଅନୁଭବ କରୁଥିଲେ ଯେ ଆନନ୍ଦ ଭବନର ଉତ୍ତେଜନାମୟ ବାତାବରଣଠାରୁ ଶାନ୍ତିନିକେତନ ଥିଲା ଅତି ଉତ୍କୃଷ୍ଟ ସ୍ଥାନ । କବିଗୁରୁଙ୍କ ପ୍ରଭାବରେ ସେ ପ୍ରଭାବିତ ହୋଇ ପଡ଼ିଥିଲେ । ତାଙ୍କ ନିଜ ଭାଷାରେ—"ମୁଁ ଠାକୁରଙ୍କ ପ୍ରଭାବରେ ଅଧିକ ମାତ୍ରାରେ ପ୍ରଭାବିତ ହୋଇ ପଡ଼ିଥିଲି । ଆମ ଘରେ ସବୁବେଳେ ଏକପ୍ରକାର ଅସ୍ଥିରତା ଲାଗି ରହିଥିଲା । ପରିବାରର ସଭ୍ୟମାନଙ୍କୁ ଗିରଫ କରିବା-ପାଇଁ ପ୍ରାୟ ସବୁବେଳେ ପୋଲିସ ଆମ ଘରକୁ ଆସୁଥିଲେ । କିନ୍ତୁ ଠାକୁରଙ୍କ ଶାନ୍ତିନିକେତନରେ ଏକ ଶାନ୍ତ ବାତାବରଣ ମୁଁ ଅନୁଭବ କରୁଥିଲି ।" *

ମଣିପୁରୀ ନାଚ ପ୍ରତି ରବୀନ୍ଦ୍ରନାଥଙ୍କ ଆଗ୍ରହ ଥିଲା । ତାଙ୍କରି ପ୍ରେରଣାରେ ଇନ୍ଦିରା ମଣିପୁରୀ ନାଚ ଶିକ୍ଷା କରିବା ଲାଗି ଆଗ୍ରହ ପ୍ରକାଶ କରିଥିଲେ । ପ୍ରଥମେ ପ୍ରଥମେ ଲଜ୍ଜାଶୀଳା ଇନ୍ଦିରା କବିଗୁରୁଙ୍କ ଉପଦେଶକୁ ଆଦେଶ ବୋଲି ଗ୍ରହଣ କରିନେଇ ନାଚ ଶିକ୍ଷା କରିବାକୁ ଗଲାବେଳେ ଖୁବ୍ ସଙ୍କୋଚ ମନେ କରିଥିଲେ । କିନ୍ତୁ କମ୍ ଦିନର ପରିସର ମଧ୍ୟରେ ସେ ସେଥିରେ ଯଥେଷ୍ଟ ପାରଦର୍ଶିତା ଅର୍ଜନ କରିପାରିଥିଲେ ।

ମଣିପୁରୀ ନାଚର ଅଭ୍ୟୁତ୍ଥାନ ଲାଗି ରବୀନ୍ଦ୍ରନାଥ ଏକାନ୍ତ ଭାବେ ପ୍ରୟାସୀ ଥିଲେ ଏବଂ ତାଙ୍କ ନିଜ ରଚିତ କେତୋଟି ଏକାଙ୍କିକାକୁ ସେହି ନାଚ ମାଧ୍ୟମରେ ଅଭିନୟ କରାଇବା ଲାଗି ପ୍ରୟାସ କରିଥିଲେ । ସେଗୁଡ଼ିକ ମଧ୍ୟରେ ଥିଲା "ଶାପ-ମୋଚନ", "ନଟୀର ପୂଜା" ଇତ୍ୟାଦି । ସେ ଶାନ୍ତିନିକେତନର ଛାତ୍ରୀମାନଙ୍କୁ ନୃତ୍ୟକଳା ଶିକ୍ଷା ଦେବାପାଇଁ ଭାରତର ତତ୍କାଳୀନ ପ୍ରସିଦ୍ଧ ନୃତ୍ୟଶିଳ୍ପୀ

---

* M. K. Alexander—Indira Gandhi p-44

ଶ୍ରୀ ନବକୁମାରଙ୍କୁ ନିମନ୍ତ୍ରଣ କରିଥିଲେ । ଶାନ୍ତିନିକେତନରେ ଶ୍ରୀ ନବକୁମାରଙ୍କ ଅନ୍ୟାନ୍ୟ ଶିଷ୍ୟ-ଶିଷ୍ୟାମାନଙ୍କ ମଧ୍ୟରେ ଥିଲେ କୁମାରୀ ଇନ୍ଦିରା ନେହେରୁ ।

ପାଠ୍ୟକ୍ରମ-ବହିର୍ଭୂତ ଅନ୍ୟାନ୍ୟ ଆନୁଷଙ୍ଗିକ କାର୍ଯ୍ୟାବଳୀ ମଧ୍ୟରେ ଇନ୍ଦିରା ସବୁଠାରୁ ଭଲ ପାଉଥିଲେ ମଣିପୁରୀ ନୃତ୍ୟ ଶିକ୍ଷା କରିବାପାଇଁ । ୧୯୩୫ ମସିହାର ଏକ ବସନ୍ତକାଳୀନ ଉତ୍ସବରେ ଇନ୍ଦିରା ଅନ୍ୟାନ୍ୟମାନଙ୍କ ସହିତ ଦୁଇଟି ମଣିପୁରୀ ନୃତ୍ୟନାଟିକାରେ ଅଂଶ ଗ୍ରହଣ କରି ବେଶ୍ ସୁନାମ ଅର୍ଜନ କରିଥିଲେ । ସେ ଦର୍ଶକ-ମଣ୍ଡଳୀ ମଧ୍ୟରେ ଥିଲେ ତାଙ୍କ ପିଉସୀ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ । ଇନ୍ଦିରା ନିଜେ ସ୍ୱୀକାର କରିଥିଲେ ଯେ ତାଙ୍କର ଲଜ୍ଜାଶୀଳତା ହିଁ ନୃତ୍ୟଶିକ୍ଷା କ୍ଷେତ୍ରରେ ଅନେକ ଅନ୍ତରାୟ ସୃଷ୍ଟି କରିଥିଲା, ନଚେତ୍ ସେ ସେଇ କ୍ଷେତ୍ରରେ ଅନ୍ତତଃ ଅଧିକ ପାରଦର୍ଶିତା ଅର୍ଜନ କରି ପାରିଥାଆନ୍ତେ । ସେ କ୍ଷମତା ତାଙ୍କ ନିକଟରେ ଥିଲା ଓ ସେ ସୁଯୋଗ ହାତମୁଠାରେ ପାଇଥିଲେ ।

ଶାନ୍ତିନିକେତନରେ ଇନ୍ଦିରାଙ୍କ ଅଧ୍ୟୟନ କାଳରେ ରବୀନ୍ଦ୍ରନାଥ ଏକ ମଣିପୁରୀ ନୃତ୍ୟଦଳକୁ ନେଇ ସମଗ୍ର ଭାରତ ଭ୍ରମଣ କରିବାପାଇଁ ମନସ୍ଥ କରିଥିଲେ । ଯେଉଁ ଦଳ ସେ ନେବାପାଇଁ ସ୍ଥିର କରିଥିଲେ ସେହି ଦଳ ମଧ୍ୟରେ ଇନ୍ଦିରା ଅନ୍ତର୍ଭୁକ୍ତ ଥିଲେ । ନିଜେ ରବୀନ୍ଦ୍ରନାଥ ସେ ଦଳର ନେତୃତ୍ୱ ନେବା ଲାଗି ସ୍ଥିର ହୋଇଥିଲା । ଉଦ୍ଦେଶ୍ୟ ଥିଲା, ଭାରତର ବିଭିନ୍ନ ପ୍ରାନ୍ତରେ ମଣିପୁରୀ ନୃତ୍ୟର ପ୍ରଚାର ସଙ୍ଗେ ସଙ୍ଗେ ଶାନ୍ତିନିକେତନ ପରିଚାଳନା ପାଇଁ କିଛି ଅର୍ଥ ସଂଗ୍ରହ କରିବେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା—ଇନ୍ଦିରା ସେ ଦଳରେ ଯାଇପାରି ନ ଥିଲେ । ବିଭିନ୍ନ ସ୍ଥାନରେ ଶାନ୍ତିନିକେତନର ଛାତ୍ରୀମାନଙ୍କ ଦ୍ୱାରା ମଣିପୁରୀ ନୃତ୍ୟ ପ୍ରଦର୍ଶିତ ହେବା ବେଳେ ସେ ସୁଦୂର ସ୍ୱିଜରଲାଣ୍ଡର କୌଣସି ଏକ ଚିକିତ୍ସାଳୟରେ ରୁଗ୍‌ଣା ମାତାଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ ।

ସମଗ୍ର ବଙ୍ଗଳାରେ ନବବର୍ଷ ଉତ୍ସବର ଆୟୋଜନ ହେଉଥିଲା । ଅନୁରୂପ ଆୟୋଜନ ଶାନ୍ତିନିକେତନରେ ମଧ୍ୟ ଚାଲିଥିଲା । ସେଦିନ ସନ୍ଧ୍ୟାରେ ସୋଲୋ ଏବଂ ମଣିପୁରୀ ନୃତ୍ୟ ପ୍ରଦର୍ଶିତ ହେବାଲାଗି ଖୁବ୍ ଜୋରସୋରରେ ପ୍ରସ୍ତୁତି ଚାଲିଥିଲା । ସେଥିରେ ଜଣେ ଅଂଶୀଦାର ଭାବେ ଇନ୍ଦିରା ସମସ୍ତ ମନପ୍ରାଣ ଢାଳି ନୃତ୍ୟ ଅଭ୍ୟାସ କରିବାପାଇଁ ତତ୍ପର ହୋଇ ଉଠିଥିଲେ । ତା'ର ବିଶେଷ କାରଣ ଥିଲା ସେ ପ୍ରଥମ-ଥରପାଇଁ ମଞ୍ଚ ଉପରେ ସୋଲୋ ଅଭିନୟ କରିବେ; ଦ୍ୱିତୀୟତଃ ତାଙ୍କର ଗୋଟିଏ ବର୍ଷ ସମ୍ପୂର୍ଣ୍ଣ ହେବ ଶାନ୍ତିନିକେତନରେ । କିନ୍ତୁ ସେ ମୁଖ୍ୟତଃ ଆନନ୍ଦିତ ଥିଲେ ପ୍ରଥମ କାରଣପାଇଁ ।

କଳାଭବନରେ ଲହରୀ ତୋଳୁଥାଏ ବିଶ୍ୱକବିଙ୍କ ଅନିନ୍ଦ୍ୟ ସଙ୍ଗୀତ "ରେ ପଥିକ, ନିବାସ କେଉଁଠି ତୋର" (ତୋମାର ବାସ୍ କୋଥାଏ ଯେ ପଥିକ୍) ଏବଂ

ତା ସହିତ ବାଦ୍ୟଯନ୍ତ୍ରର ସମ୍ମିଶ୍ରିତ ମଧୁର ଲହରୀ । ସେ ସଙ୍ଗୀତର ତାଳେ ତାଳେ ନାଚ ଉଠୁଥିଲା ଇନ୍ଦିରାଙ୍କ ଅଙ୍ଗପ୍ରତ୍ୟଙ୍ଗ ।

ହଠାତ୍ ଗୁରୁଦେବଙ୍କ ନିକଟରୁ ଖବର ଆସିଲା ଯେ ସେ ଇନ୍ଦିରାଙ୍କ ସହିତ ଜରୁରୀ ଦେଖା କରିବାକୁ ଚାହୁଁଥିଲେ । ତତ୍‌କ୍ଷଣାତ୍ ଇନ୍ଦିରା କବିଗୁରୁଙ୍କ ନିକଟରେ ଉପସ୍ଥିତ ହୋଇଥିଲେ । ରବୀନ୍ଦ୍ରନାଥ ଗୋଟିଏ ଟେଲିଗ୍ରାମ୍ ତାହାଙ୍କୁ ଦେଖାଇଥିଲେ; ତାହା ଜବାହରଲାଲ ଜେଲ୍‌ରୁ ପଠାଇଥିଲେ । କମଳାଙ୍କ ସ୍ୱାସ୍ଥ୍ୟର ଉଦ୍‌ବେଗଜନକ କାରଣ ଯୋଗୁ ଇନ୍ଦିରା ଯାଇ ତାହାଙ୍କର ସେବା କରିବାପାଇଁ ଜବାହରଲାଲ ଇନ୍ଦିରାଙ୍କୁ ଟେଲିଗ୍ରାମ କରିଥିଲେ ।

ଇନ୍ଦିରାଙ୍କ ମନ-ଆକାଶରେ କଳାବାଦଲର ଛାଇ ଘନେଇ ଆସିଥିଲା । ତତ୍‌କ୍ଷଣାତ ସେଠାରୁ ଯିବା ଲାଗି ପ୍ରସ୍ତୁତ ହେବାପାଇଁ ସିଧା ଗୃହୀନିବାସକୁ ଯାଇଥିଲେ । ରବୀନ୍ଦ୍ରନାଥଙ୍କ ଇଚ୍ଛା ଥିଲା ଜଣେ ଅଧ୍ୟାପକଙ୍କୁ ଇନ୍ଦିରାଙ୍କ ସହିତ ଆହ୍ଲାବାଦ ଯାଏଁ ପଠାଇବେ; କିନ୍ତୁ ଇନ୍ଦିରା ଅତି ନମ୍ରଭାବରେ ଗୁରୁଦେବଙ୍କୁ କହିଥିଲେ, "My father has trained me to travel alone." ଏକାକୀ ଯାତ୍ରା କରିବା ଲାଗି ସେ ପିତାଙ୍କଠାରୁ ତାଲିମ୍ ପାଇଛନ୍ତି । ତେଣୁ ଯାତ୍ରା ଲାଗି ବିବ୍ରତ ହେବାର କୌଣସି କାରଣ ନାହିଁ ।

**ଶାନ୍ତିନିକେତନ ଓ ଇନ୍ଦିରା :—**

ଇନ୍ଦିରା ପିତାଙ୍କୁ ଥରେ କହିଥିଲେ, "ମୁଁ ଶାନ୍ତିନିକେତନରେ ଥିବାବେଳେ ଖୁବ୍ ଆନନ୍ଦିତ ଥିଲି । ତାର ପ୍ରଧାନ କାରଣ ଥିଲେ ଖୋଦ୍ ଗୁରୁଦେବ । ସେଠାକାର ସମଗ୍ର ବାୟୁମଣ୍ଡଳରେ ଗୁରୁଦେବଙ୍କ ସ୍ନେହଶୀଳ ଓ ଉଦାର ଆତ୍ମା ଅନୁଭୂତ ହେଉଥିଲା ଏବଂ ସେ ଆମ୍ଭମାନଙ୍କର ଗତିବିଧି ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ । ମୁଁ ଅନୁଭବ କରୁଛି, ମୋର ଜୀବନ ଏବଂ ଚିନ୍ତାଧାରା ତାହାଙ୍କ ପ୍ରଭାବରେ ଅତ୍ୟନ୍ତ ପ୍ରଭାବିତ ହୋଇଛି" । * ପ୍ରକୃତରେ ଇନ୍ଦିରା ପାପୁଙ୍କ ପତ୍ରାବଳୀ ଓ ଅନ୍ୟାନ୍ୟ ପୁସ୍ତକ ପଢ଼ି ବିଶ୍ୱ ଇତିହାସ ତଥା ବିଶ୍ୱ ସାହିତ୍ୟ ସହିତ ପରିଚିତ ଥିଲେ ମଧ୍ୟ ଶାନ୍ତିନିକେତନରେ କବିଗୁରୁଙ୍କ ସାନ୍ନିଧ୍ୟ ପାଇବା ପରେ ହିଁ ସେ ଚିତ୍ରକଳା ଏବଂ ନୃତ୍ୟ ପ୍ରତି ବିଶେଷ ଆଗ୍ରହୀ ହୋଇ ଉଠିଥିଲେ । ପୂର୍ବେ ଇନ୍ଦିରାଙ୍କ ଧାରଣା ଥିଲା କବିତା ଓ ମଣିଷର ବାସ୍ତବ ଜୀବନ ଭିତରେ ତଫାତ୍ ଅନେକ କିଛି । କିନ୍ତୁ କବିଗୁରୁ ତାଙ୍କର ସେ ପ୍ରକାର ଭ୍ରାନ୍ତ ଧାରଣାର ଅପସାରଣ କରି ଦେଇଥିଲେ ଓ ଜୀବନ ସହିତ କବିତା ତଥା ସାହିତ୍ୟର ନିବିଡ଼ ସମ୍ପର୍କ ସମ୍ବନ୍ଧରେ ସ୍ପଷ୍ଟ ଧାରଣା କରାଇ ଦେଇପାରିଥିଲେ ।

---

* ଜଗତସିଂହ ବ୍ରାଇଟଙ୍କ ରଚିତ ଗ୍ରନ୍ଥ—ଇନ୍ଦିରା ଗାନ୍ଧୀ ।

ତାପରେ ଇନ୍ଦିରାଙ୍କ ଆତ୍ମପ୍ରତ୍ୟୟ ହୋଇଥିଲା ଯେ ବାସ୍ତବିକ୍ ଜୀବନ ଓ କବିତା ମଧ୍ୟରେ ସମ୍ପର୍କ ଅବିଚ୍ଛେଦ୍ୟ ।

ପିଲାଟି ଦିନରୁ ହିଁ ନୃତ୍ୟ ପ୍ରତି ଇନ୍ଦିରାଙ୍କ ଆଗ୍ରହ ଥିଲା । ତେଣୁ ସେ ଯେତେବେଳେ ରୁଷରୁ ଫେରି ଆସିଥିବା ପିଉସୀଙ୍କଠାରୁ ସେଠାକାର ବାଲ୍‌ସାମ୍ମ ଥିଏଟର କଥା ଶୁଣିଥିଲେ, ସେଇ ଥିଏଟର ଦେଖିବା ଲାଗି ମନ ତାଙ୍କର ବ୍ୟଗ୍ର ହୋଇ ଉଠିଥିଲା । ତେବେ ଲଜ୍ଜାଶୀଳତା ତାହାଙ୍କୁ ସେ ଦିଗରେ ଅଧିକ ଦୂର ଅଗ୍ରସର କରାଇପାରି ନ ଥିଲା । କିନ୍ତୁ ଶାନ୍ତିନିକେତନରେ କବିଗୁରୁଙ୍କ ପ୍ରେରଣା ଓ ଉପଦେଶକୁ ଆଦେଶ ବୋଲି ଧରି ନେଉଥିବା ଦୃଷ୍ଟିରୁ ସେ ଅନେକାଂଶରେ ଲଜ୍ଜା ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ଥରେ ତାଙ୍କ ଜୀବନୀ ରଚୟିତା ଖ୍ୱାଜା ଅହମ୍ମଦ ଆବାସଙ୍କ ସହିତ ଏକ ସାକ୍ଷାତ୍‌କାରରେ ତାଙ୍କୁ କହିଥିଲେ, "Thanks to my father, I was already familiar with the world of literature, but it was only when I went to Shantiniketana that Tagore opened for me the facinating world of art." *

ଶାନ୍ତିନିକେତନରୁ ବିଦାୟ ନେଇଯିବାର ବର୍ଷକ ପରେ ବିଶ୍ୱକବି ରବୀନ୍ଦ୍ରନାଥ ଗୋଟିଏ ଚିଠିରେ ଜବାହରଲାଲଙ୍କୁ ଲେଖିଥିଲେ ଯେ ଇନ୍ଦିରାଙ୍କୁ ତାଙ୍କର ଶୁଭେଚ୍ଛା ଜଣାଇ ଦେବେ । ସେହି ଚିଠିରେ ସେ ଆଶା କରିଥିଲେ ଯେ ଇନ୍ଦିରା ନିଶ୍ଚୟ ତାଙ୍କ ଗୁରୁଜୀ ଜୀବନର ଘଟଣାବଳୀ ମନଭିତରେ ଉଜ୍ଜୀବିତ କରାଇବା ଲାଗି ଦିନେନା ଦିନେ ଶାନ୍ତିନିକେତନ ଆସିବା ସୁଯୋଗ ନେବେ । କବିଗୁରୁଙ୍କ ଭାଷାରେ—"ମୋ ବିଷୟରେ ଇନ୍ଦିରାଙ୍କୁ ମନେ ପକାଇ ଦେବେ । ମୁଁ ଆଶାକରେ ସେ ଦିନେ ନା ଦିନେ ଆମ ଆଶ୍ରମକୁ ପରିଭ୍ରମଣ କରିବାପାଇଁ ଆସିବ ଏବଂ ଏଠାରେ ବିତାଇଥିବା କେତୋଟି ମାସର ସ୍ମୃତି ପୁଣି ଥରେ ରୋମନ୍ଥନ କରିବା ସୁଯୋଗ ନେବ । ସେ ଯେଉଁ କେତୋଟି ମାସ ଏଠାରେ ରହିଥିଲା ସେ ମଧ୍ୟରେ ଆମ୍ଭମାନଙ୍କୁ ସନ୍ତୁଷ୍ଟ କରାଇ ପାରିଥିଲା ।"

ଶାନ୍ତିନିକେତନରେ ଶିକ୍ଷା ଦେଇଥିବା ଜଣେ ଅଧ୍ୟାପକଙ୍କ ମତରେ, "ଇନ୍ଦିରା ପରିସ୍ଥିତିର ମୁକାବିଲା କରିପାରିବାପାଇଁ ବେଶ୍ ଦୃଢ଼ତା ଅବଲମ୍ବନ କରିପାରୁଥିଲେ । ...ତାଙ୍କର ଶାଳୀନ ଓ ଅତି ଭଦ୍ରୋଚିତ ବ୍ୟବହାରରେ ମୁଁ ଅତ୍ୟନ୍ତ ପ୍ରୀତ ହୋଇଥିଲି । ସେ ଅଧିକାଂଶ ସମୟ ନୀରବ ଓ ଗମ୍ଭୀର ରହିବାର କାରଣ ଥିଲା— ପିତାମାତାଙ୍କ ଲାଗି ଚିନ୍ତା । ତେଣେ ପ୍ରିୟ ପାପୁ ତାଙ୍କର ଅଧିକାଂଶ କାର୍ଯ୍ୟକ ପ୍ରାୟ ସବୁବେଳେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରି ଜେଲ୍ ଜୀବନଯାପନ

* K. A. Abbas—Return of the red rose—p-66

କରିବା ବେଳେ ମାତା କମଳା ରୋଗରେ ପଡ଼ି ପଡ଼ି ଅନବରତ ମୃତ୍ୟୁ ସହିତ ସଂଗ୍ରାମରତ ଥିଲେ । ସେ ଥିଲେ ଦୀର୍ଘକାୟୀ । ପତଳା ଚେହେରା ଥିଲା ତାଙ୍କ ପିତା ଜବାହରଲାଲଙ୍କ ଚେହେରା ଭଳି । ଶାନ୍ତିନିକେତନରେ କୌଣସି ସ୍ୱତନ୍ତ୍ର ସୁବିଧା ତାହାଙ୍କୁ ଦିଆଯାଇ ନ ଥିଲା । ଅନ୍ୟାନ୍ୟ ସାଧାରଣ ଛାତ୍ରୀମାନଙ୍କ ସହିତ ଠିକ୍ ପାଦ ମିଳାଇ ସେମାନଙ୍କ ଜୀବନ ଜିଇବାହିର ଧାରାକୁ ନିଜ ଧାରା ସହିତ ଏକାକାର କରି ସମସ୍ତଙ୍କ ସହିତ ଏକାଠି ଚାଲିବାକୁ ଆଦୌ ଦ୍ୱିଧା ନ ଥିଲା ତାଙ୍କର । ଅନ୍ୟାନ୍ୟ ମାନଙ୍କ ଭଳି ତାହାଙ୍କୁ ମଧ୍ୟ ଛାତ୍ରୀନିବାସର ଗୋଟିଏ କୋଠରି ଦିଆଯାଇଥିଲା । ସେ ନିଜ ହାତରେ ନିଜ ଲୁଗା ସଫା କରୁଥିଲେ, ବିଛଣା ପକାଉଥିଲେ ଓ ଝାଡ଼ୁଝାଡ଼ି ମଧ୍ୟ କରୁଥିଲେ । ଛାତ୍ରୀ ହିସାବରେ ସେ ଥିଲେ ସଚ୍ଚରିତ୍ରା । କୌଣସି ଦିନ ନିହାର ପାଠ୍ୟକ୍ରମ ନ କରି ଶ୍ରେଣୀକୁ ଆସିବା ଥିଲା ତାଙ୍କ ଲାଗି ଏକ ନିୟମବିରୁଦ୍ଧ କାର୍ଯ୍ୟ । ପ୍ରତି ପରୀକ୍ଷାରେ ସେ ସବୁଠାରୁ ଅଧିକ ନମ୍ବର ରଖୁଥିଲେ । ବିଶେଷ କରି ତାଙ୍କର ଉତ୍ତରଗୁଡ଼ିକ ଅତି ସଂକ୍ଷିପ୍ତ ଥିଲା ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ଅକ୍ଷରଗୁଡ଼ିକ ଠିକ୍ ତାଙ୍କ ପିତା ଜବାହରଲାଲଙ୍କ ଅକ୍ଷର ଭଳି ଥିଲା । *

ଶାନ୍ତିନିକେତନରେ ରହିବା କାଳରେ ପ୍ରିୟଦର୍ଶିନୀ ଇନ୍ଦିରାଙ୍କ ବ୍ୟବହାରରେ ସମସ୍ତେ ତାଙ୍କର ଅତି ଆପଣାର ହୋଇଯାଇଥିଲେ । ତେଣୁ ବିଦାୟ ବେଳାରେ ସମସ୍ତଙ୍କ ଆଖିରେ ଲୁହର ଶ୍ରାବଣୀ ସୃଷ୍ଟି ହୋଇଥିଲା । ତାଙ୍କ ବ୍ୟବହାରରେ କେବଳ ଛାତ୍ରୀନିବାସର ଛାତ୍ରୀମାନେ ନୁହନ୍ତି, ଶାନ୍ତିନିକେତନର ଅଧ୍ୟାପକବୃନ୍ଦ ନୁହନ୍ତି, ଆଶ୍ରମର ପ୍ରତିଷ୍ଠାତା ମଧ୍ୟ ଆତ୍ମୀୟତା ଲକ୍ଷ୍ୟ କରିପାରିଥିଲେ । ସେଥିପାଇଁ ତାହାଙ୍କୁ ସେଠାରୁ ବିଦାୟ ଦେବାର କେତେଦିନ ପରେ ରବୀନ୍ଦ୍ରନାଥ ୧୯୩୫ ମସିହା ଅପ୍ରେଲ କୋଡ଼ିଏ ତାରିଖରେ ଜବାହରଲାଲଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ,"ମୁଁ ଭାରାକ୍ରାନ୍ତ ହୃଦୟରେ ଇନ୍ଦିରାଙ୍କୁ ବିଦାୟ ଦେଇଛୁ । ତାଙ୍କୁ ଅତି ନିକଟରୁ ଯଥାର୍ଥଭାବେ ଅନୁଧ୍ୟାନ କରି ଜାଣିପାରିଛୁ । ଆପଣ ତାଙ୍କୁ ଯେପରି ଭାବେ ଗଢ଼ି ତୋଳିଛନ୍ତି ତାର ପ୍ରଶଂସା ନ କରି ରହିପାରୁ ନାହିଁ । ତାଙ୍କର ଚାଲିଚଳଣି ତଥା ପ୍ରତ୍ୟେକ କାର୍ଯ୍ୟକଳାପ ନିର୍ଭୁଲ । ଆପଣଙ୍କ ଚିନ୍ତାଧାରା ଓ ଚାରିତ୍ରିକ ଦୃଢ଼ତା ତାଙ୍କ ନିକଟରେ ବିଦ୍ୟମାନ ।" ** ଇନ୍ଦିରାଙ୍କ ଶିକ୍ଷକଗଣ ସମସ୍ୱରରେ ତାଙ୍କର ପ୍ରଶଂସା କରୁଥିଲେ ଓ ସହାଧ୍ୟାୟୀଙ୍କ ଗହଣରେ ସେ ଅତ୍ୟନ୍ତ ପ୍ରିୟ ହୋଇ ଉଠିଥିଲେ । ଶାନ୍ତିନିକେତନର ପ୍ରତିଷ୍ଠାତା କବିଗୁରୁ ରବୀନ୍ଦ୍ରନାଥଙ୍କ ଭାଷାରେ, "ସେ ଆମ୍ଭମାନଙ୍କ ପାଇଁ ଥିଲା ଏକ ସମ୍ପଦ । ଅତି ଅନ୍ତରଙ୍ଗ ଭାବେ ଅନୁଧ୍ୟାନ କରି ମୁଁ ଜାଣିପାରିଛୁ ଯେ ଆପଣ ଅତି

---

* ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼ — ୧୯୬୬ ଜୁନ୍ ୨୦ ତାରିଖରେ ପ୍ରକାଶିତ ବାଣୀକଣ୍ଠଙ୍କ "ଶାନ୍ତିନିକେତନରେ ଇନ୍ଦିରା" ।

** କୃଷ୍ଣା ହାଠୀ ସିଂହଙ୍କ We Nehrus ; p-148

ଉତ୍ତମ ଭାବରେ ତାହାଙ୍କୁ ଗଢ଼ି ତୋଳି ପାରିଛନ୍ତି । ଶିକ୍ଷକ ବୃନ୍ଦ ସମସ୍ୱରରେ ତାହାଙ୍କ ପ୍ରଶଂସା କରୁଛନ୍ତି ଏବଂ ମୁଁ ମଧ୍ୟ ଜାଣେ ସେ ଗୁରୁଗୃହିଣୀମାନଙ୍କ ଗହଣରେ ଅତି ଜଣାଶୁଣା ଓ ପ୍ରିୟ । ସମସ୍ତ ବିଷୟ ଉତ୍ତମ ଦାଗରେ ଗଢ଼ କରିବ ଏବଂ ପୂର୍ଣ୍ଣରୂପେ ସମ୍ପାଦିତ ହୋଇ ସେ ଶୀଘ୍ର ଏଠାକୁ ପୁଣି ଫେରି ଆସିବ ଏବଂ ପୁଣି ଅଧ୍ୟୟନରେ ବ୍ରତୀ ହେବ ବୋଲି ମୁଁ ଆଶା କରୁଛି ।"

କବିଗୁରୁ ଆଶା କରିଥିଲେ କିଛିଦିନ ପରେ ଇନ୍ଦିରା ପୁଣି ଶାନ୍ତିନିକେତନ ଫେରି ଆସିବେ—ଅଧ୍ୟାପନାରେ ପୁଣି ଯୋଗ ଦେବେ ।

କିନ୍ତୁ ସେ ଆଉ ଶାନ୍ତିନିକେତନକୁ ଫେରି ନ ଥିଲେ ।

□□□

## ॥ ଆଠ ॥

# ବିପଦସଂକୁଳ ଚଲାପଥ



ବାଲ୍ୟ ବୟସରୁ ହିଁ ଇନ୍ଦିରା ନମନୀୟ ଦୃଢ଼ତା ପ୍ରବଳ ସଂଗ୍ରାମ କରିବା ଆରମ୍ଭ କରି ଦେଇଥିଲେ । ବାଲ୍ୟ ବୟସରେ ପାପୁ, ଦାଦୁ ଓ କମଳାଙ୍କ ପାରିବାରିକ ଶିକ୍ଷା, କିଶୋର ବୟସରେ ପାପୁଙ୍କ ଐତିହାସିକ ପତ୍ରାବଳୀ ତଥା ତାଙ୍କର ମାନସିକ ଦୃଢ଼ତା—ପ୍ରତି କ୍ଷେତ୍ରରେ ତାହାଙ୍କୁ ପ୍ରତିଷ୍ଠିତ କରାଇ ଦେଇ ପାରିଥିଲା । ଯେକୌଣସି ପରିସ୍ଥିତିର ସମ୍ମୁଖୀନ ହେବା ଲାଗି ତାଙ୍କ ନିକଟରେ ଯଥେଷ୍ଟ ସାହସ, ଧୈର୍ଯ୍ୟ, ସମ୍ବଳ ରହିଥିଲା ଓ ଯାହା ଥିଲା ତାହାଙ୍କ ସାରା ଜୀବନ ପାଇଁ ପାଥେୟ ।

ଇନ୍ଦିରା ଅଳ୍ପବୟସ୍କା ଥିବାବେଳୁ ହିଁ ପାପୁ ଓ ଦାଦୁଙ୍କର ବାରମ୍ବାର କାରାବରଣ ତାଙ୍କ ବାଲ୍ୟଜୀବନକୁ ନୀରସ କରି ଦେଇଥିଲେ ମଧ୍ୟ ମନରେ ଯଥେଷ୍ଟ ଦୃଢ଼ତା ଆଣିଦେଇ ପାରିଥିଲା । ତାଙ୍କୁ ମାତ୍ର ଚାରିବର୍ଷ ବୟସରେ ଦାଦୁ ମୋତିଲାଲ ପ୍ରଥମ ଥର ପାଇଁ ଜେଲ ଯାଇଥିଲେ; ସେତେବେଳେ ସେ ସମ୍ପାଦନା କରୁଥିବା ଇଣ୍ଡିପେଣ୍ଡେଣ୍ଟ (Independent) ପତ୍ରିକାରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଏକ ଆପତ୍ତିଜନକ ଲେଖା ପ୍ରକାଶ କରିଥିବା ଯୋଗୁଁ ଓ ପାପୁ ଜବାହରଲାଲ ଏକ ପ୍ରଚାରପତ୍ର ବଣ୍ଟନ କରି ଜନସାଧାରଣଙ୍କ ମନରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସାମାଜିକ ବିଶୃଙ୍ଖଳା ସୃଷ୍ଟି କରିଥିବା ଯୋଗୁଁ । ତତ୍‌ସଙ୍ଗେ ସଙ୍ଗେ ଉଭୟଙ୍କ ଉପରେ ପାଞ୍ଚଶହ ଟଙ୍କା ଲେଖାଏଁ ଜୋରିମାନା ହୋଇଥିଲା, ଯାହାକି ଉଭୟେ ଦେବା ପାଇଁ ସମ୍ମତ ହୋଇ ନ ଥିଲେ । ପରିଣାମ ସ୍ୱରୂପ ଦାଦୁ ଓ ପାପୁଙ୍କୁ ଜେଲ ହାଜତକୁ ପଠାଇ ଦେଇ ଦୁଇଟି ବିରାଟ ପୋଲିସ ଭ୍ୟାନ୍ ଆସି ପହଞ୍ଚି ଯାଇଥିଲା ଆନନ୍ଦ ଭବନ ଦୁଆର ସମ୍ମୁଖରେ ।

ପୋଲିସ ବଳାତ୍କାରରେ ପ୍ରବେଶ କରିଥିଲା ସୁସଜ୍ଜିତ ଆନନ୍ଦ ଭବନ ଭିତରେ । ସେମାନଙ୍କ ଆଖି ଆଗରେ ଯାହା ସୁନ୍ଦର, ଦାମୀ ଜିନିଷ ପଡ଼ିଥିଲା ସେଇ ଜିନିଷକୁ ନେଇ ଭର୍ତ୍ତି କରିଥିଲେ ଭ୍ୟାନ୍ ଭିତରେ । ମାତ୍ର ଏକ ହଜାର ଟଙ୍କା

ବିଜନମଣ୍ଡରେ କେତେ ହଜାର ଟଙ୍କାର ଜିନିଷ ଲୁଟ୍ କରାଯାଇଥିଲା ତାର ହିସାବ କେହି ରଖି ନ ଥିଲେ ଅଥବା ଜିନିଷପତ୍ର ଘରୁ ନେବାବେଳେ କାହାର କଣ୍ଠରୁ ପ୍ରତିବାଦର ସ୍ୱର ଉଠି ନ ଥିଲା; ଉଠିଥିଲା ଚାରି ବର୍ଷର ଶିଶୁ ଇନ୍ଦିରାଙ୍କ କଣ୍ଠରେ— "ସେ ମୋ ଦାଦୁଙ୍କର ଗାଲିଚା, ତାକୁ ତମେମାନେ ନେଇପାରିବ ନାହିଁ", "ସେଇଠି ପାପୁ ବସନ୍ତି, ସେ ଚଉକି ତମେ କାହିଁକି ନେଉଛ" ଇତ୍ୟାଦି । କିନ୍ତୁ କିଏ ଶୁଣିବ ଛୋଟ ଝିଅ କଥାକୁ ସମୟରେ କିଏ ?

ସେମିତି ଥରେ ନୁହେଁ, ତା ପରେ ପରେ ସେ ଦୃଶ୍ୟର ପୁନରାବୃତ୍ତି ହୋଇଥିଲା ଅନେକ ଥର । କେତେବେଳେ ପାପୁଙ୍କ ସହିତ ଖେଳିଲା ବେଳେ ପୋଲିସ ଆସି ତାହାଙ୍କୁ ଜେଲ ଭ୍ୟାନ୍‌ରେ ବସିବାକୁ କହୁଥିଲା ତ ଆଉ କେତେବେଳେ ସଭା ସମିତିରୁ ଘରକୁ ଫେରିବାକୁ ଅନୁମତି ମଧ୍ୟ ଦିଆଯାଉ ନ ଥିଲା । ବିଭିନ୍ନ ପ୍ରକାରର ପରିସ୍ଥିତି ସହିତ ବେଶ୍ ଖାପ ଖୁଆଇ ଚଳି ପାରୁଥିଲେ ଇନ୍ଦିରା ।

**କମଳାଙ୍କ ସେବାରେ ଇନ୍ଦିରା :—**

ଶାନ୍ତିନିକେତନରୁ ଫେରିବା ପରେ ପରେ ଇନ୍ଦିରା ରୁଗ୍‌ଣା ମାତାଙ୍କ ସେବାରେ ନିଜକୁ ସମ୍ପୂର୍ଣ୍ଣ ରୂପେ ନିୟୋଜିତ କରିଥିଲେ ଅଲ୍ଲାହାବାଦଠାରେ । ନିଜେ ସୁସ୍ଥ ରହୁଥିଲେ ମଧ୍ୟ ମାନସିକ ଯନ୍ତ୍ରଣାରେ ଅନେକ ସମୟରେ ସେ ବ୍ୟଥିତ ହେଉଥିବା ସ୍ୱାଭାବିକ । ସେତେବେଳେ ଜବାହରଲାଲ ରହୁଥିଲେ ଡେରାଡୁନ ଜେଲରେ । ଜେଲ ଜୀବନର ମିଆଦ ଶେଷ ହେବା ପୂର୍ବରୁ ହଠାତ୍ ୧୯୩୪ ମସିହା ଅଗଷ୍ଟ ୧୧ ତାରିଖରେ ପୋଲିସ ପହରାରେ ଆଲ୍ଲାହାବାଦ ପର୍ଯ୍ୟନ୍ତ ତାହାଙ୍କୁ ଅଣାଯାଇଥିଲା । ଆଲ୍ଲାହାବାଦଠାରେ ପହଞ୍ଚିବା ପୂର୍ବରୁ ପ୍ରୟାଗ ରେଳ ଷ୍ଟେସନରେ ଜଣେ ମାଜିଷ୍ଟ୍ରେଟ୍ ତାହାଙ୍କୁ ଜଣାଇ ଦେଇଥିଲେ ଯେ ତାଙ୍କର ଧର୍ମପତ୍ନୀ କମଳାଙ୍କ ଦେହ ଅସୁସ୍ଥ ଥିବା ଯୋଗୁଁ ତାଙ୍କ ସହିତ ସାକ୍ଷାତ କରିବାପାଇଁ ଅସ୍ଥାୟୀ ଭାବରେ ଜବାହରଙ୍କୁ ମୁକ୍ତ ଦିଆଯାଇଥିଲା ।

ଜବାହରଲାଲ ଯେତେବେଳେ ଆନନ୍ଦ ଭବନରେ ଅକସ୍ମାତ୍ ପହଞ୍ଚିଥିଲେ ସମସ୍ତଙ୍କର ଆନନ୍ଦର ସୀମା ରହି ନ ଥିଲା । ଇନ୍ଦିରା ଓ କମଳା ଉଭୟେ ଅନ୍ତତଃ ମାନସିକ ଶାନ୍ତି ପାଇଥିଲେ । ପୂର୍ବପରି ଜନସାଧାରଣ ନିରନ୍ତର ଆନନ୍ଦ ଭବନକୁ ଆସୁଥିଲେ ଜବାହରଲାଲଙ୍କୁ ଦେଖିବା ଲାଗି । ଅନେକେ ସେତେବେଳେ ଇନ୍ଦିରାଙ୍କୁ ଦେଖି ମଧ୍ୟ ସନ୍ତୋଷ ଲାଭ କରୁଥିଲେ । ତେବେ ସେତେବେଳେ ସମଗ୍ର ଆନନ୍ଦ ଭବନର ବାୟୁମଣ୍ଡଳ ଯେମିତି ଚିନ୍ତାଗ୍ରସ୍ତ ହୋଇପଡ଼ିଥିଲା କମଳାଙ୍କ ସ୍ୱାସ୍ଥ୍ୟପାଇଁ ।

ଅସ୍ଥାୟୀ ଭାବେ ପଣ୍ଡିତ ନେହେରୁ ଜେଲରୁ କିଛି ଦିନପାଇଁ ମୁକ୍ତ ହୋଇ କମଳାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । କମଳାଙ୍କ ପୂର୍ବ ସ୍ୱାସ୍ଥ୍ୟ ଆଦୌ ନ

ଥିଲା । ଜୀବନ ସହିତ ଓ ବିଭିନ୍ନ ପ୍ରକାରର ରୋଗ ସହିତ ନିରନ୍ତର ସଂଗ୍ରାମ କରି ସେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲେ । ତେଣୁ ଜବାହରଲାଲ ଅନେକ ଦୁଶ୍ଚିନ୍ତା ଭିତରେ ମ୍ରିୟମାଣ ହୋଇ ପଡ଼ିଥିଲେ । ସେତେବେଳର ପରିସ୍ଥିତି ସମ୍ପର୍କରେ ନିଜେ ଜବାହରଲାଲ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି—"There she lay frail and utterly weak, a shadow, a shadow of herself struggling freely with her illness and the thought that she might leave became untolerable". * ପଣ୍ଡିତ ନେହେରୁ ଓ କମଳାଙ୍କୁ ଏକାଠି ଦେଖି ଅନେକ ମନେ କରୁଥିଲେ ସେମାନେ ସ୍ୱାମୀ ଓ ସ୍ତ୍ରୀ ନୁହନ୍ତି—ପିତା ଓ ପୁତ୍ରୀ । ଯେତେବେଳେ ଏକାଠି ତିନିହେଁ ବୁଲି ଯାଉଥିଲେ ଲୋକଙ୍କର ଭ୍ରମ ହେଉଥିଲା କମଳାଙ୍କୁ ଇନ୍ଦିରା ଓ ଇନ୍ଦିରାଙ୍କୁ କମଳା ଭାବେ । ଏତେଟା ଭଗ୍ନ ସ୍ୱାସ୍ଥ୍ୟ ଭିତରେ ମଧ୍ୟ ଜବାହରଲାଲଙ୍କ ଉପସ୍ଥିତି କମଳାଙ୍କୁ ଅନେକ ଆମୋଦ ଦେଉଥିଲା । ତାଙ୍କର ମାନସିକ ଶାନ୍ତି ପ୍ରକୃତରେ ଶାରୀରିକ ଦୁର୍ବଳତାକୁ ଅନେକାଂଶରେ ଦୂର କରିପାରିଥିଲା ।

କିନ୍ତୁ ତାହା ବେଶୀ ଦିନ ସ୍ଥାୟୀ ହୋଇପାରି ନ ଥିଲା । ଜବାହରଲାଲ କାରାଗାରରୁ ମୁକ୍ତ ପାଇବାର ୧୧ ଦିନ ପରେ ଅଗଷ୍ଟ ୨୩ ତାରିଖ ଦିନ ଗୋଟିଏ ପୋଲିସ କାର ପହଞ୍ଚିଥିଲା ଆନନ୍ଦ ଭବନ ନିକଟରେ । ଜଣେ ପୋଲିସ ଅଫିସର ଜବାହରଲାଲଙ୍କୁ ସୂଚନା ଦେଇଥିଲେ ଯେ ସାମୟିକ ମୁକ୍ତ ପାଇବାର ସମୟ ତାଙ୍କର ଶେଷ ହୋଇଯାଇଛି ଏବଂ ତାହାଙ୍କୁ ନୈନୀ ଜେଲକୁ ଫେରିବାକୁ ପଡ଼ିବ । ଠିକ୍ ସେହି ମୁହୂର୍ତ୍ତରେ ଜବାହରଲାଲଙ୍କ କିଛି ଲୁଗାପଟା ନେଇ କମଳା ଉପର ମହଲା ଘରକୁ ଯାଇଥିଲେ । ଜବାହରଲାଲ ବିଦାୟ ନେବା ପାଇଁ ମଧ୍ୟ ସଙ୍ଗେ ସଙ୍ଗେ ଉପର ମହଲାକୁ ଉଠି ଯାଇଥିଲେ । ଜବାହରଲାଲଙ୍କଠାରୁ ତାଙ୍କର ପ୍ରିୟ ପରିଚିତ ନୈନୀ ଜେଲକୁ ସେତେବେଳେ ହିଁ ପୁଣି ଫେରିଯିବା କଥା ଶୁଣିବା ମାତ୍ରେ କମଳା ଜବାହରଲାଲଙ୍କୁ ଅତି ନିବିଡ଼ ଭାବରେ କାବୁଡ଼ି ଧରିଥିଲେ ଏବଂ ସଙ୍ଗେ ସଙ୍ଗେ ବେହୋସ ହୋଇ ପଡ଼ିଥିଲେ । ସେ ଥିଲା ଉଭୟଙ୍କ ପାଇଁ ଏକ ସ୍ମରଣୀୟ ଘଟଣା । କାରଣ ଜେଲ ଯିବା ସେମାନଙ୍କ ନିକଟରେ ଏକ ସାମାନ୍ୟ ତଥା ଏକ ସାଧାରଣ ଘଟଣା ଥିଲା । ସେମାନେ ସେ ସମ୍ପର୍କରେ କୌଣସି ଆଲୋଚନା ନ କରି ହସି ହସି ଜେଲ ଯାଉଥିଲେ । ଏ ଧରଣର ଅସ୍ୱାଭାବିକ ପରିସ୍ଥିତିର ସମ୍ମୁଖୀନ କୌଣସି କାଳେ ହୋଇ ନ ଥିଲେ ଜବାହରଲାଲ । କମଳାଙ୍କର ବୋଧହୁଏ ମନେ ହୋଇଥିଲା ଆଉ ଅଧିକ କାଳ ସେ ବଞ୍ଚି ରହିପାରିବେ ନାହିଁ । ସ୍ୱାମୀଙ୍କ ଚଳପଥରେ, ତାଙ୍କ ଆଦର୍ଶରେ, ତାଙ୍କ କାର୍ଯ୍ୟକଳାପରେ ସେ ଆଉ ସାହାଯ୍ୟ କରିପାରିବେ ନାହିଁ । ଶେଷ ଜୀବନର ଦୃଶ୍ୟ ତାଙ୍କ ଚକ୍ଷୁ ସାମନାରେ ଜଳଜଳ ହୋଇ ଦେଖାଯାଉଥିଲା ।

* J. Nehru—Autobiography.

କିନ୍ତୁ ବିଚାର ଥିଲି ସମୟର ଗତିପଥ ।

ଜବାହରଲାଲ ପୁନଶ୍ଚ ଜେଲକୁ ଚାଲିଯିବା ପରେ କମଳାଙ୍କ ସ୍ୱାସ୍ଥ୍ୟ ଅଧିକରୁ ଅଧିକ ଭାଙ୍ଗି ପଡ଼ିଥିଲା । ତେଣୁ ମାତ୍ର କେତେ ସପ୍ତାହ ପରେ ତାହାଙ୍କୁ ଭୋବାଲି ସାନିଟୋରିୟମ୍‌କୁ ନିଆଯାଇଥିଲା । ଏ ପ୍ରକାର ପରିସ୍ଥିତିରେ ସମୟେ ସମୟେ ଜବାହରଲାଲ କମଳାଙ୍କ ସହ ମିଶିବା ଲାଗି ସୁଯୋଗ ଦେବାପାଇଁ ନୈନି ଜେଲରୁ ଆମଲେଡ଼ା ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା ।

କିନ୍ତୁ ସେଠାରେ ମଧ୍ୟ କମଳା ଦୀର୍ଘଦିନ ରହିବାର ସୁଯୋଗ ପାଇ ନଥିଲେ । ସେଠିକାର ଡାକ୍ତରମାନେ ପରାମର୍ଶ ଦେଇଥିଲେ ଯେ ଅତ୍ୟଧିକ ରୁଗ୍‌ଣ କମଳାଙ୍କ ସ୍ୱାସ୍ଥ୍ୟର ଚିକିତ୍ସା ପାଇଁ ତାହାଙ୍କୁ ଇଉରୋପ ଯିବାକୁ ପଡ଼ିବ । ତେଣୁ ୧୯୩୫ ମସିହା ଅପ୍ରେଲ ୧୩ ତାରିଖରେ ଇନ୍ଦିରା ନିଜ ମା'ଙ୍କ ସହ ଇଉରୋପ ଯାତ୍ରା କରିଥିଲେ । ମେ ମାସରେ ସେ ଜର୍ମାନୀର ଏକ ଚିକିତ୍ସାଳୟରେ ଚିକିତ୍ସିତ ହେବା ପାଇଁ ଭର୍ତ୍ତି ହୋଇଥିଲେ । କମଳାଙ୍କ ସେବା କରିବାପାଇଁ ତାହାଙ୍କ ନିକଟରେ ଥିଲେ ଜଣେ ମାତ୍ର ଇନ୍ଦିରା । କେବଳ ମାତାଙ୍କ ରୋଗଶଯ୍ୟା ନିକଟରେ ଏକାକୀ ବସି ବସି ସମୟ ବିତାଇବା ବ୍ୟତୀତ ତାଙ୍କର ଆଉ କିଛି କାର୍ଯ୍ୟ ନ ଥିଲା । କମଳାଙ୍କ ହୃଦରୋଗ ଅତି ଜଟିଳ ଆକାର ଧାରଣ କରିଥିଲା ସେତେବେଳକୁ । ଡାକ୍ତରମାନେ ମତ ଦେଇଥିଲେ ଯେ ତାହା ରୋଗର ତୃତୀୟାବସ୍ଥା । ଏକାକୀ ଇନ୍ଦିରା ଅନେକ ସମୟରେ ଅତି ଅସହାୟ ମନେ କରୁଥିଲେ; କାରଣ ଯଥେଷ୍ଟ ସେବା ଶୁଶ୍ରୂଷା ପରେ ମଧ୍ୟ କମଳାଙ୍କ ସ୍ୱାସ୍ଥ୍ୟର କୌଣସି ଉନ୍ନତି ପରିଲକ୍ଷିତ ହେଉ ନ ଥିଲା ।

ସେତେବେଳେ ଫିରୋଜ ଅଧ୍ୟୟନ କରୁଥିଲେ ଲଣ୍ଡନ ସ୍କୁଲ ଅଫ୍ ଇକନୋମିକ୍‌ସରେ । ସେ ଅନେକ ସମୟରେ ପାଠପଢ଼ା ଛାଡ଼ି କମଳାଙ୍କ ସେବା ପାଇଁ ତତ୍ପର ହୋଇ ଉଠୁଥିଲେ ଓ ଘଣ୍ଟା ଘଣ୍ଟା ଧରି କମଳାଙ୍କ ରୋଗଶଯ୍ୟା ନିକଟରେ ଇନ୍ଦିରାଙ୍କ ସହିତ ବସି ରହୁଥିଲେ । ଶଯ୍ୟାଶାୟୀ କମଳାଙ୍କୁ ସେବା କରିବାରେ ଇନ୍ଦିରାଙ୍କୁ ସାହାଯ୍ୟ କଲାବେଳେ ସେ ଭାବୁଥିଲେ ଯେ ପ୍ରକୃତରେ ସେ ଭାରତର ସେବା କରୁଛନ୍ତି । ତାର କାରଣ ଥିଲା ଭାରତର ପ୍ରିୟ ନେତା ପଣ୍ଡିତ ନେହେରୁ ଦେଶସେବା କରିବାକୁ ଯାଇ ଜେଲ ଭୋଗି ଥିଲେ, ବିଶେଷ କରି ନେହେରୁ ପରିବାରର ସମସ୍ତ ସଭ୍ୟ ଦେଶ ପାଇଁ ସେ ପ୍ରକାର ନିର୍ଯ୍ୟାତନା ସହ୍ୟ କରୁଥିଲେ । ତେଣୁ ଫିରୋଜ ମନେ କରୁଥିଲେ ସେହି ପ୍ରକାର ପରିସ୍ଥିତି ଭିତରେ ନେହେରୁ ପରିବାରର ସେବା କରିବା ଅର୍ଥ ଭାରତମାତାର ସେବା କରିବା ।

ବିଶେଷ କରି କମଳା ଫିରୋଜଙ୍କୁ ବାଲ୍ୟ ବୟସରୁ ହିଁ ଜାଣିଥିଲେ ଓ ଆନନ୍ଦ ଭବନ ବାହାରର ପିଲାମାନଙ୍କ ମଧ୍ୟରୁ ତାହାଙ୍କୁ ସବୁଠାରୁ ଅଧିକ ସ୍ନେହ କରୁଥିଲେ ।

ଆହ୍ଲାବାଦରେ ନେହେରୁ ପରିବାର ସହିତ ସମ୍ପର୍କରେ ଆସି ପିଲାଟି ଦିନରୁ ଇନ୍ଦିରାଙ୍କ ଭଳି ଫିରୋଜଙ୍କ ମନରେ ମଧ୍ୟ ରାଜନୈତିକ ଚେତନା ଦେଖା ଦେଇଥିଲା ।

ସେହି ସମୟରୁ ଇନ୍ଦିରା ଓ ଫିରୋଜଙ୍କ ମଧ୍ୟରେ ସୁ-ସମ୍ପର୍କ ଗଢ଼ି ଉଠିଥିଲା । ଦୁଃଖର ଯଜ୍ଞକୁଣ୍ଡରୁ ହିଁ ଆରମ୍ଭ ହୋଇଥିଲା ସେମାନଙ୍କର ପରସ୍ପର ପ୍ରତି ଅନାବିଳ ସ୍ନେହ-ମମତାର ସୂତ୍ର । ଉଭୟେ ଉଭୟଙ୍କୁ ନିବିଡ଼ ଭାବରେ ଭଲ ପାଇବାକୁ ଆରମ୍ଭ କରିଦେଇଥିଲେ ।

## ଜର୍ମାନୀରେ ନେହେରୁ ପରିବାର :—

ପ୍ରବୀଣ ତଥା ଅଭିଜ୍ଞ ଡାକ୍ତରମାନଙ୍କ ଉଦ୍ୟମ, ଇନ୍ଦିରା ଓ ଫିରୋଜଙ୍କ ଅଦ୍ୟମ ସେବାଶୁଶ୍ରୂଷା ସତ୍ତ୍ୱେ କମଳାଙ୍କ ସ୍ୱାସ୍ଥ୍ୟର କୌଣସି ପରିବର୍ତ୍ତନ ସମ୍ଭବ ହୋଇ ନ ଥିଲା । ସେଥିରେ ଯେକୌଣସି ଲୋକର ଧୈର୍ଯ୍ୟଚ୍ୟୁତି ଘଟିବା ସ୍ୱାଭାବିକ କଥା । ୧୯୩୫ ମସିହା ଅଗଷ୍ଟ ମାସ ବେଳକୁ କମଳାଙ୍କ ସ୍ୱାସ୍ଥ୍ୟ ଏତେଦୂର ଖରାପ ଦିଗକୁ ଗତି କରିଥିଲା ଯେ ଇନ୍ଦିରା ଅତ୍ୟନ୍ତ ବିଚଳିତ ହୋଇପଡ଼ିଥିଲେ । ପିତାଜୀ ସେତେ-ବେଳକୁ ଆଲମୋଡ଼ା ଜେଲରେ ବନ୍ଦୀ । ଅତ୍ୟନ୍ତ ନିରୁପାୟ ହୋଇ ଭୀତତ୍ରସ୍ତା ଇନ୍ଦିରା ପିତାଙ୍କ ନିକଟକୁ କେବଲ୍ ତାରବାର୍ତ୍ତାରେ କମଳାଙ୍କ ଉଦ୍‌ବେଗଜନକ ସ୍ୱାସ୍ଥ୍ୟ ବିଷୟରେ ଖବର ପଠାଇଥିଲେ ।

ସେ ଖବର ଜବାହରଲାଲଙ୍କ ନିକଟରେ ପହଞ୍ଚିବା ପୂର୍ବରୁ ତାହା ଉତ୍ତର-ପ୍ରଦେଶ ସରକାରଙ୍କ ହସ୍ତଗତ ହୋଇଥିଲା । ସରକାର ସେ ସଙ୍କଟମୟ ପରିସ୍ଥିତିରେ ସ୍ଥିର କରିଥିଲେ ଯେ ଜବାହରଲାଲଙ୍କ ବଳକା ପ୍ରାୟ ସାଢ଼େ ଚାରି ମାସ ଜେଲ-ଜୀବନକୁ ବାତିଲ କରିଦେବେ । ସେପ୍ଟେମ୍ବର ଚାରି ତାରିଖରେ ତାହାଙ୍କୁ କାରାମୁକ୍ତ କରାଯିବା ବିଷୟ ଜବାହରଲାଲଙ୍କୁ ଜଣାଇ ଦିଆଯାଇଥିଲା । ଚିନ୍ତିତ ହୃଦୟରେ ଜବାହରଲାଲ ରୋଗଗ୍ରସ୍ତା ପତ୍ନୀଙ୍କ ନିକଟକୁ ଯାତ୍ରା କରିଥିଲେ । ସେ ଚିନ୍ତା କେବଳ ତାଙ୍କ ସ୍ତ୍ରୀଙ୍କ ପାଇଁ ନ ଥିଲା; ବିଶେଷ କରି ଥିଲା ତାଙ୍କ ଏକମାତ୍ର କନ୍ୟା ଇନ୍ଦିରା— ଯେ କି ଏକାକିନୀ ସୁଦୂର ବିଦେଶରେ ରହି ମା'ଙ୍କ ସେବା କରିବାକୁ ଯାଇଥିଲା, ତା'ରି ପାଇଁ ।

ଜବାହରଲାଲଙ୍କ ଛୋଟିଆ ପରିବାର ପୁଣି ଏକାଠି ମିଳିବାର ସୁଯୋଗ ପାଇଥିଲେ ଭାରତ ବାହାରେ ସୁଦୂର ଜର୍ମାନୀରେ । ସେ ତାଙ୍କ କନ୍ୟା ଇନ୍ଦୁଙ୍କ ସହ ସେଠାରେ ନିଜ ସ୍ତ୍ରୀଙ୍କ ସେବା କରିବା ଆରମ୍ଭ କରି ଦେଇଥିଲେ । ସ୍ୱାମୀଙ୍କୁ ତାଙ୍କ ନିକଟରେ ପାଇବା ସଙ୍ଗେ ସଙ୍ଗେ କମଳାଙ୍କ ମନରେ ନୂତନ ଆଶାର ସଞ୍ଚାର ହୋଇଥିଲା । ସେତେବେଳେ ତାଙ୍କ ସ୍ୱାସ୍ଥ୍ୟର କିଛିଟା ଉନ୍ନତି ମଧ୍ୟ ଲକ୍ଷ୍ୟ କରାଯାଇଥିଲା । ଜବାହରଲାଲ ଘଣ୍ଟା ଘଣ୍ଟା ଧରି ତାଙ୍କ ଶେଯ ନିକଟରେ ବସି ରହୁଥିଲେ

ଓ ମଝିରେ ମଝିରେ କଥାବାର୍ତ୍ତା ମଧ୍ୟ କରୁଥିଲେ । କେତେବେଳେ କେମିତି ନୂଆ ନୂଆ ବହି ପଢ଼ି ଶୁଣାଉଥିଲେ ଶଯ୍ୟାଶାୟୀ କମଳାଙ୍କୁ । ତେବେ ଅଧିକାଂଶ ସମୟରେ ନୀରବତା ହିଁ ଉଭୟଙ୍କ ହୃଦୟର ଭାଷା ଉଭୟଙ୍କୁ ଠିକ୍ ବୁଝାଇଦେଇ ପାରୁଥିଲା ।

ବାଡେନ୍ ଓ୍ୱାଲେର୍ ସାନାଟୋରିୟମ୍‌ରେ ରୋଗଗ୍ରସ୍ତା କମଳାଙ୍କ ଶଯ୍ୟା ନିକଟରେ ବସି ବସି ୟୁରୋପ-ଆକାଶରେ ଘନେଇ ଆସୁଥିବା ସଙ୍କଟକୁ ସେ ଲକ୍ଷ୍ୟ କରି ପାରୁଥିଲେ । ତେଣେ ତାଙ୍କ ନିଜ ମନର ଆକାଶରେ ମଧ୍ୟ ଅନେକ ଘନ କଳା ମେଘ ଜମାଟ ବାନ୍ଧୁଥିଲା । ତାଙ୍କ ଆତ୍ମଜୀବନୀରେ ଜବାହରଲାଲ ଲେଖିଥିଲେ, "ଗିରିଶିଖ ଉପତ୍ୟକାରେ ଜମାଟ ବାନ୍ଧି ଫ୍ରାନ୍ସର ସୁନ୍ଦର ମନୋହର ଦୃଶ୍ୟକୁ ଆଚ୍ଛାଦିତ କରି ପକାଉଥିବା ରାଶି ରାଶି କୁହୁଡ଼ିକୁ ମୁଁ ଲକ୍ଷ୍ୟ କରୁଥିଲି । ଆଚ୍ଛାଦିତ କୁହୁଡ଼ି ପରଦାର ଆରପଟରେ କି ଚମତ୍କାର ଦୃଶ୍ୟ ସବୁ ଅଛି ତାହା କଳ୍ପନା କରି ଆଶ୍ଚର୍ଯ୍ୟ ହେଉଥିଲି ।" *

ଭାରତରେ ଥିବା ସମୟରେ ଉଭୟେ ଖୁବ୍ କମ୍ ସମୟ ନିଜପାଇଁ ବ୍ୟୟିତ କରୁଥିଲେ । ଉଭୟେ ରାଜନୈତିକ କର୍ମୀ ଥିଲେ ଏବଂ ସ୍ୱରାଜ ଆନ୍ଦୋଳନରେ ଝାସ ଦେଇଥିବା ଯୋଗୁଁ ସ୍ୱାମୀ-ସ୍ତ୍ରୀ ଏକାଠି ବସି ଆରାମ କରିବାପାଇଁ କିମ୍ବା ପାରିବାରିକ ଚିନ୍ତା କିଛି କରିବାପାଇଁ ଖୁବ୍ କମ୍ ସମୟ ପାଉଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ବାସ୍ତବ ଯୁଦ୍ଧକ୍ଷେତ୍ରଠାରୁ ଅନେକ ଦୂରରେ ରହି ଜଣେ ଅନ୍ୟ ଜଣଙ୍କ ଲାଗି ସମସ୍ତ ସମୟ ସମ୍ପୂର୍ଣ୍ଣ ରୂପେ ବିତାଉଥିଲେ । ତେଣୁ ସମସ୍ତ ଚେତନା ସତ୍ତ୍ୱେ କମଳା ଆନନ୍ଦ ଅନୁଭବ କରିପାରୁଥିଲେ ।

କିଛିଦିନ ପରେ ଜବାହରଲାଲ ଖବର ପାଇଥିଲେ ଯେ ଜେଲ ଜୀବନରୁ ମୁକ୍ତ ପାଇ ଅଧିବେଶନ ଜନମାନ ଚାଲିଯାଇଥିଲେ ମଧ୍ୟ ପୁନଶ୍ଚ ତାହାଙ୍କୁ ଜାତୀୟ କଂଗ୍ରେସର ସଭାପତି ନିର୍ବାଚନ କରାଯାଇଥିଲା । ମନେ ମନେ ଏକ ପ୍ରକାର ବିରକ୍ତ ହୋଇଥିଲେ ମଧ୍ୟ କଂଗ୍ରେସର ଦାୟିତ୍ୱ କିପରି ନିର୍ବାହ କରିବେ, ତାହା ହିଁ ଥିଲା ତାଙ୍କର ପ୍ରଧାନ ଚିନ୍ତା । ଆଗାମୀ ବସନ୍ତ ଋତୁ ବେଳକୁ ତାହାଙ୍କୁ ପୁଣି ବାଧ୍ୟହୋଇ ଭାରତ ଫେରିବାକୁ ପଡ଼ିବ ରୋଗାଗ୍ରସ୍ତା ପତ୍ନୀଙ୍କୁ ସୁଦୂର ବିଦେଶରେ ଛାଡ଼ି । ସେଇଥି-ପାଇଁ ସେ ବିଶେଷ ବ୍ୟସ୍ତ ହୋଇ ପଡ଼ିଥିଲେ । ସ୍ୱରାଜ ଲାଭ ଲାଗି ଯେଉଁ ଆନ୍ଦୋଳନ ଚାଲିଥିଲା ତାର କାର୍ଯ୍ୟପନ୍ଥା କ'ଣ ହେବ ତାହା ନିର୍ଦ୍ଧାରଣ କରିବା ଦାୟିତ୍ୱ ଥିଲା ସଭାପତିଙ୍କର । ତେଣୁ ସେ ପନ୍ଥା ନିର୍ଦ୍ଧାରଣ କରିବାପାଇଁ ଅନେକ ସମୟ ଦରକାର । ତେଣୁ ପ୍ରକୃତରେ କ'ଣ କ'ଣ କରାଯିବା ଉଚିତ, ସେ କ'ଣ କରିବେ ଓ କ'ଣ ନ କରିବେ, ସେଇଥିପାଇଁ ଖୁବ୍ ଦ୍ୱିଧାଗ୍ରସ୍ତ ହୋଇ ପଡ଼ିଥିଲେ । ତାହାଙ୍କ ସମ୍ମୁଖରେ

* J. Nehru—Autobiography.

ଦୁଇଟି ଦିଗ ପଡ଼ି ରହିଥିଲା । ପ୍ରଧାନତଃ ବେମାର ପତ୍ନୀଙ୍କୁ ଇଉରୋପରେ ଶଯ୍ୟାଶାୟୀ ଅବସ୍ଥାରେ ଛାଡ଼ି ଭାରତ ଆସିବାକୁ ହେବ ସ୍ୱାଧୀନତା ସଂଗ୍ରାମର ଏକ ପ୍ରଧାନ ସଂସ୍ଥା ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଦାୟିତ୍ୱ ନିର୍ବାହ କରିବା ଲାଗି ନଚେତ୍ ତାଙ୍କ ଜୀବନର ସହଯାତ୍ରୀ—ସହଧର୍ମିଣୀ କମଳାଙ୍କ ସେବା ପାଇଁ ସଭାପତି ପଦରୁ ଇସ୍ତଫା ଦେଇ ଜନ୍ମଭୂମି ଭାରତଠାରୁ ଅନେକ ଦୂରରେ ରହିବେ ।

ଜବାହରଲାଲ ନିଜକୁ ପ୍ରସ୍ତୁତ କରିପାରୁ ନ ଥିଲେ କମଳାଙ୍କୁ ସେପରି ମୁମୂର୍ଷୁ ଅବସ୍ଥାରେ ଛାଡ଼ି ଭାରତକୁ ଫେରିଆସିବା ଲାଗି । ନିଜ ସ୍ତ୍ରୀଙ୍କ ପାଇଁ ମନ ତାଙ୍କର ବ୍ୟାକୁଳ ହୋଇ ଉଠୁଥିଲା । ଦୀର୍ଘଦିନ ଧରି ଉଭୟେ ବୈବାହିକ ଜୀବନ-ଯାପନ କରିଥିଲେ ମଧ୍ୟ ପାରିବାରିକ ଜୀବନର ସ୍ୱାଦୁ ଏପର୍ଯ୍ୟନ୍ତ କେହି ଯଥାର୍ଥ ଭାବରେ ଉପଲବ୍ଧି କରିପାରି ନ ଥିଲେ । ପ୍ରଧାନ ପ୍ରତିବନ୍ଧକ ଥିଲା ଦେଶମାତୃକାର ଡାକ—ଜନ୍ମଭୂମିକୁ କାରାବନ୍ଧନରୁ ମୁକ୍ତ କରିବା ଲାଗି ପ୍ରବଳ ଆକାଙ୍‌କ୍ଷା । ଇଂରେଜ ଶୋଷଣରୁ ଭାରତୀୟଙ୍କୁ ମୁକ୍ତ କରିବାଲାଗି ବିବେକର ଆହ୍ୱାନ ।

ଜର୍ମାନୀର ବାଡ୍‌ନେଓ୍ୱାଇଲରଠାରେ ଡାକ୍ତରମାନଙ୍କ ଅକ୍ଲାନ୍ତ ପରିଶ୍ରମ ତଥା ଆନ୍ତରିକ ଉଦ୍ୟମ ସତ୍ତ୍ୱେ କମଳାଙ୍କ ସ୍ୱାସ୍ଥ୍ୟର କୌଣସି ପରିବର୍ତ୍ତନ ଲକ୍ଷ୍ୟ କରାଯାଇ ପାରି ନ ଥିଲା । ତେବେ ତାଙ୍କର ମାନସିକ ସ୍ଥିତି ପୂର୍ବପରି ଦୃଢ଼ ରହିଥିଲା । ସେହି କାରଣରୁ ତାହାଙ୍କୁ ଜର୍ମାନୀରୁ ସ୍ୱିଜରଲାଣ୍ଡକୁ ସ୍ଥାନାନ୍ତରିତ କରାଯାଇଥିଲା ।

**ନିର୍ବାପିତ ଦୀପଶିଖା :**

ଜବାହରଲାଲ ବିଦେଶରେ ରୋଗିଣୀ ସ୍ତ୍ରୀଙ୍କର ସେବା ଶୁଶ୍ରୂଷା କରିବା ସଙ୍ଗେ ସଙ୍ଗେ ଇଉରୋପର ରାଜନୈତିକ ଅବସ୍ଥା ପ୍ରତି ମଧ୍ୟ ଧ୍ୟାନ ଦେଉଥିଲେ । ଏକ ପୁରାତନ ବର୍ଷର ପରିସମାପ୍ତି ପରେ ପରେ ପ୍ରକୃତରେ ଇଉରୋପର ରାଜନୈତିକ କ୍ଷେତ୍ରରେ ମଧ୍ୟ ବିପୁଳ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଥିଲା । ୧୯୩୬ ମସିହା ଫେବୃୟାରୀ ୧୬ ତାରିଖରେ ସାଧାରଣ ନିର୍ବାଚନ ପରେ ପରେ ବିଜୟୀ ପ୍ରଗତିବାଦୀ ସରକାର ସମଗ୍ର ଦେଶରେ ଏକ ବିଶେଷ ଭାବେ ସାମାଜିକ ପରିବର୍ତ୍ତନ ଆଣିବା ଲାଗି ଉଦ୍ୟମ ଆରମ୍ଭ କରିଥିଲେ । ଏ ସମ୍ବାଦ ପଣ୍ଡିତ ନେହେରୁଙ୍କ ମନରେ ସନ୍ତୋଷ ଆଣି ଦେଇଥିଲା । କିନ୍ତୁ ସେ ସନ୍ତୋଷ କ୍ଷଣସ୍ଥାୟୀ ଥିଲା । କାରଣ ପୁଣି ସେ ଖବର ପାଇଥିଲେ ଯେ ହିଟଲରଙ୍କ ସେନାବାହିନୀ ରାଇନ୍‌ଲାଣ୍ଡ ମୁସୋଲିନିଙ୍କ ସେନାବାହିନୀ ଆବିସିନିଆ ଦିଗରେ ଅଭିଯାନ ଆରମ୍ଭ କରୁଥିଲେ । ତେବେ ସେ ସବୁରି ଭିତରେ ମଧ୍ୟ ତାଙ୍କର ମୁଖ୍ୟ ଚିନ୍ତା ଥିଲା କମଳାଙ୍କ ସ୍ୱାସ୍ଥ୍ୟ ।

ପଣ୍ଡିତ ନେହେରୁଙ୍କ ହୃଦୟନ୍ତୋଧାରାସମ୍ପନ୍ନା କମଳା ଇତିମଧ୍ୟରେ ସାମାନ୍ୟ ଶାରୀରିକ ସୁସ୍ଥତା ଅନୁଭବ କରୁଥିଲେ । ସେ ତାଙ୍କ ସ୍ୱାମୀ ଜବାହରଲାଲଙ୍କ ଦ୍ୱିଧାଗ୍ରସ୍ତ

ମନକଥା ଜାଣି ପାରିଥିଲେ ଯେ କେବଳ ତାଙ୍କର ସ୍ୱାସ୍ଥ୍ୟ ଯୋଗୁଁ ଜବାହର ଭାରତ ଯିବାପାଇଁ ଅନିଚ୍ଛୁକ । ତେଣୁ ତାଙ୍କୁ ଏକପ୍ରକାର ବାଧ୍ୟ କରିଥିଲେ ଭାରତ ଫେରି-ଯାଇ ସଭାପତି ହିସାବରେ କଂଗ୍ରେସ ଅଧିବେଶନର କାର୍ଯ୍ୟ ସମାପ୍ତ କରି ପୁଣି ଫେରି ଆସିବାକୁ । ନିଜର ଅନିଚ୍ଛା ସତ୍ତ୍ୱେ ଜବାହରଲାଲ ଭାରତ ଯିବାପାଇଁ ପ୍ରସ୍ତୁତ ହେଉ-ଥିଲେ; କିନ୍ତୁ ତାଙ୍କ ମନରେ ଶାନ୍ତି ନ ଥିଲା ବା ନ ଥିଲା ଆନନ୍ଦ । ତଥାପି ସେ କମଳାଙ୍କୁ ଆଶ୍ୱାସନା ଦେଇଥିଲେ ଯେ ଅତି ବେଶୀ ହେଲେ ସେ ସେଠାରେ ଦୁଇ ତିନି ମାସ ରହି ପୁଣି ତାଙ୍କ ନିକଟକୁ ଫେରିଆସିବେ । ଯଦି ଆବଶ୍ୟକତା ଅନୁଭବ ହୁଏ, ତା ହେଲେ କମଳାଙ୍କଠାରୁ ତାରବାର୍ତ୍ତା ପାଇଲେ ସେ ସଙ୍ଗେ ସଙ୍ଗେ ସେମାନଙ୍କ ନିକଟକୁ ଚାଲିଆସିବେ ।

ଜବାହରଲାଲ ଭାରତ ଫେରିବାପାଇଁ ପ୍ରସ୍ତୁତି ଆରମ୍ଭ କରିଥିଲେ ।

ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି—ଦୀପ ସାଧାରଣତଃ ଲିଭିଯିବା ପୂର୍ବରୁ ଅତି ତେଜସ୍ୱାନ୍ ଆଲୋକ ବିକିରଣ କରି ଜଳି ଉଠିଥାଏ ଅନ୍ଧକାରର କାଳିମାକୁ ନିଶ୍ଚିହ୍ନ କରିଦେବାପାଇଁ । ତା'ପରେ ହଠାତ୍ ସେ ଶିଖା ନିର୍ବାପିତ ହୋଇ ଅନ୍ଧକାରକୁ ସ୍ୱାଗତ କରିଥାଏ । ଠିକ୍ ସେମିତି କମଳା ଆକସ୍ମିକ ଭାବେ ଅନୁଭବ କରିଥିଲେ ଯେ ତାଙ୍କର ଶାରୀରିକ ଦୁର୍ବଳତା ଅସମ୍ଭବ ଭାବେ କମି କମି ଯାଉଥିଲା । ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ଯାଉଥିଲେ ଦ୍ରୁତଗତିରେ । ସେଥିରେ ଇନ୍ଦିରା ଓ ଜବାହରଲାଲଙ୍କ ମନରୁ ଦୀର୍ଘଦିନର ନୈରାଶ୍ୟ ସମୂଳେ ଧ୍ୱଂସ ପାଇବା ଆରମ୍ଭ କରିଥିଲା ଠିକ୍ ନିର୍ବାପିତ ଦୀପଶିଖାର ପୂର୍ବକ୍ଷଣ ପରି ।

କିନ୍ତୁ ତା ପରେ ପରେ ଡାକ୍ତରମାନେ କମଳାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ଅନେକଟା ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ ଏବଂ ଜବାହରଲାଲଙ୍କୁ ତାଙ୍କ ଭାରତ ଫେରିଯିବା ପ୍ରସ୍ତୁତିକୁ ସାତ ଦିନ ବିଳମ୍ବ କରିବାପାଇଁ ପରାମର୍ଶ ଦେଇଥିଲେ । ଜବାହରଲାଲ ଅଗତ୍ୟା ଭାରତ ଯାତ୍ରା ବନ୍ଦ କରିଥିଲେ । ତାଙ୍କର ମାନସିକ ଚିନ୍ତା ସମ୍ପୂର୍ଣ୍ଣ ବଦଳି ଯାଇଥିଲା ।

ଦିନକୁ ଦିନ କମଳାଙ୍କ ସ୍ୱାସ୍ଥ୍ୟର ଅବନତିରେ ଇନ୍ଦିରା, ଜବାହରଲାଲ, ଫିରୋଜ ତଥା ଅନ୍ୟମାନଙ୍କ ଆଶଙ୍କା ବୃଦ୍ଧି ହେବାରେ ହିଁ ଲାଗିଲା କ୍ରମାଗତ ଭାବେ । ସେମାନଙ୍କ ସମସ୍ତ ଉଦ୍‌ବିଗ୍ନତାର ଶେଷ ହୋଇଥିଲା ୧୯୩୬ ମସିହା ଫେବୃୟାରୀ ୨୮ ତାରିଖ ସକାଳେ । କମଳାଙ୍କ ଜୀବନଦୀପ ନିର୍ବାପିତ ହୋଇଥିଲା ସୁଦୂର ସ୍ୱିଜରଲାଣ୍ଡରେ । ମୃତ୍ୟୁ ବେଳକୁ ତାଙ୍କ ଶଯ୍ୟା ନିକଟରେ ଉପସ୍ଥିତ ଥିଲେ ତାଙ୍କ ସ୍ୱାମୀ ଜବାହରଲାଲ, କନ୍ୟା ଇନ୍ଦିରା, ପୁତ୍ରପ୍ରତିମ (ପରେ ଜାମାତା) ଫିରୋଜ ।

ଜୀବନରେ ଦ୍ୱିତୀୟ ଥର ଲାଗି ଦାରୁଣ ଆଘାତ ପାଇଥିଲେ ଇନ୍ଦିରା ତାଙ୍କ ଜନ୍ମଦାତ୍ରୀଙ୍କ ମୃତ୍ୟୁରେ । ଯେମିତି ଆଉ ଗୋଟିଏ ଆଘାତ ଥିଲା ତାଙ୍କ ଦାଦୁ ମୋତିଲାଲଙ୍କ ମୃତ୍ୟୁ ।

**ଲଣ୍ଡନରେ ଇନ୍ଦିରା ନେହେରୁ :**

ମାତାଙ୍କ ମୃତ୍ୟୁ ପରେ ପରେ ଅକ୍‌ସଫୋର୍ଡରେ ବିଦ୍ୟା ଶିକ୍ଷା କରିବା ପାଇଁ ଇନ୍ଦିରା ଲଣ୍ଡନ ଯାଇଥିଲେ ଓ ସେଠାରେ ସେତେବେଳେ ରହୁଥିବା ଜଣେ ଭାରତୀୟ ଛାତ୍ରୀ ଶାନ୍ତା ଗାନ୍ଧୀଙ୍କ ସହିତ ଭେଟ ହୋଇଥିଲା । ଶାନ୍ତା ଥିଲେ ଶ୍ରୀମତୀ ଗାନ୍ଧୀଙ୍କ ପୂର୍ବପରିଚିତା । ତାହାଙ୍କର ଜନ୍ମସ୍ଥାନ ଥିଲା ଗୁଜରାଟ ଏବଂ ଇନ୍ଦିରା ଯେତେବେଳେ ପୁନାର ଶ୍ରୀମତୀ ଭକିଲଙ୍କ ଘରୋଇ ସ୍କୁଲରେ ଶିକ୍ଷାଲାଭ କରୁଥିଲେ, ସେତେବେଳେ ଶାନ୍ତା ମଧ୍ୟ ସେଠାରେ ଶିକ୍ଷା ଲାଭ କରୁଥିଲେ ।

ଉଭୟେ ଶାନ୍ତା ଗାନ୍ଧୀ ଓ ଇନ୍ଦିରା ନେହେରୁ ଲଣ୍ଡନର ଫେୟାର ଫାକ୍ସ ରୋଡ଼ସ୍ଥ ଗୋଟିଏ ଭଡ଼ାଘରେ ରହିବା ଲାଗି ନିଷ୍ପତ୍ତି ନେଇଥିଲେ । ସେତେବେଳେ ଶାନ୍ତା ପଢ଼ୁଥିଲେ କଲେଜରେ ଓ ଇନ୍ଦିରା ଅକ୍‌ସଫୋର୍ଡରେ ନାମ ଲେଖାଇବା ଲାଗି ପ୍ରାଥମିକ ପରୀକ୍ଷା ଦେବାପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ଅକ୍‌ସଫୋର୍ଡରେ ୧୯୩୮ ମସିହାରେ ନାମ ଲେଖାଇବା ପୂର୍ବରୁ ଫେବୃୟାରୀ ମାସରେ ବ୍ରିଷ୍ଟଲ୍‌ର ବେଡ଼୍‌ମିଣ୍ଟନ ସ୍କୁଲରେ କିଛିଦିନ ପାଇଁ ନାମ ଲେଖାଇ ଥିଲେ ।

ସେ ପ୍ରକାର ଜୀବନ ଇନ୍ଦିରାଙ୍କ ପାଇଁ ସମ୍ପୂର୍ଣ୍ଣ ନୂତନ ଥିଲା । ଆନନ୍ଦ ଭବନର କୋଳାହଳମୟ ପରିବେଶ ବା ଶାନ୍ତିନିକେତନର ଶାନ୍ତିପୂର୍ଣ୍ଣ ବାତାବରଣଠାରୁ ତାହା ଥିଲା ସମ୍ପୂର୍ଣ୍ଣ ପୃଥକ୍ । ଆନନ୍ଦ ଭବନ ବା ଶାନ୍ତିନିକେତନରେ ସେ ଅନୁଭବ କରୁଥିଲେ ତାଙ୍କର ଅଭାବ ଅସୁବିଧା ଦେଖାଶୁଣା କରିବାଲାଗି ଅନ୍ୟମାନେ ତତ୍ପର ଥିଲେ । କିନ୍ତୁ ସେଠାରେ ସେ ଥିଲେ ନିଜେ ହିଁ ନିଜର ଅଭିଭାବକ । ନିଜର ସମସ୍ତ କାର୍ଯ୍ୟ ପାଇଁ ସମ୍ପୂର୍ଣ୍ଣ ରୂପେ ନିଜ ଉପରେ ହିଁ ନିର୍ଭର କରିବାକୁ ପଡ଼ୁଥିଲା । କୌଣସି କାର୍ଯ୍ୟରେ କଟକଣା ନ ଥିଲା ଆନନ୍ଦ ଭବନ ବା ଶାନ୍ତିନିକେତନ ପରି ।

ସେତେବେଳେ ପଣ୍ଡିତ ନେହେରୁଙ୍କ ନିକଟରେ ପ୍ରଚୁର ଅର୍ଥ ମଧ୍ୟ ନ ଥିଲା । ସେଇଥିପାଇଁ ଲଣ୍ଡନରେ ଇନ୍ଦିରାଙ୍କୁ ମାପିଚୁପି ଚଳିବା ଲାଗି ହେଉଥିଲା । କାରଣ ଜବାହରଲାଲ ବହିଲେଖାରୁ ଯେଉଁ ପାରିଶ୍ରମିକ ପାଉଥିଲେ ତାହା ଇନ୍ଦିରାଙ୍କ ନିକଟକୁ ପଠାଉଥିଲେ । ବିଶେଷତଃ ସେ ନିଜର ବ୍ୟକ୍ତିଗତ ସମ୍ପତ୍ତି ପ୍ରତି ଆଦୌ ଦୃଷ୍ଟି ଦେଉ ନ ଥିଲେ । ତେଣେ ମୋତିଲାଲଙ୍କ ଅର୍ଜିତ ସମ୍ପତ୍ତିସବୁ ଜାତୀୟ କାର୍ଯ୍ୟରେ ବ୍ୟବହୃତ ହେଉଥିଲା ।

ଲଣ୍ଡନରେ ଶାନ୍ତା ଓ ଇନ୍ଦିରା ବେଳେବେଳେ ବିଭିନ୍ନ ନୃତ୍ୟ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଥିଲେ । ସ୍ପେନ୍ ସାହାଯ୍ୟ ସମିତି ପାଇଁ ଶାନ୍ତା ନୃତ୍ୟ ପରିବେଷଣ କଲାବେଳେ ଇନ୍ଦିରା ଟିକେଟ ବିକ୍ରୟ କରିବା ଓ ଅନ୍ୟାନ୍ୟ ଆନୁଷଙ୍ଗିକ କାର୍ଯ୍ୟକ୍ରମରେ ସାହାଯ୍ୟ କରୁଥିଲେ । ଉଭୟେ ସେ ସମିତିର ସ୍ୱେଚ୍ଛାସେବିକା ଥିଲେ । ଥରେ କୌଣସି ଏକ ସାହାଯ୍ୟ ସମାରୋହରେ ଇନ୍ଦିରା ଅତ୍ୟନ୍ତ ଭାବପ୍ରବଣ ହୋଇ ନିଜ ଗଳାରୁ ହାର ବାହାର କରି ଦାନ କରି ଦେଇଥିଲେ ଓ ତାହା ନିଲାମ ହୋଇଥିଲା ୧୫ ଡଲାରରେ ।

ବିଦେଶରେ ବିଳାସବ୍ୟସନରେ ଚଳିବା ଲାଗି ଶାନ୍ତା ଓ ଇନ୍ଦିରା ଉଭୟଙ୍କ ଅଭିଭାବକମାନେ ଯଥେଷ୍ଟ ସୁଯୋଗ, ସୁବିଧା ଓ ଆର୍ଥିକ ସାହାଯ୍ୟ ଦେଉଥିଲେ ମଧ୍ୟ ସେମାନେ କେବଳ ସେଥିପାଇଁ ସମୟ ପାଇଲେ ଓ ଉପଯୁକ୍ତ ମନେକଲେ ଥିଏଟର ଓ ବାଲେଟ୍ ଦେଖିବା ଲାଗି ଯାଉଥିଲେ । ନାଚ ପ୍ରତି ଉଭୟଙ୍କର ଶ୍ରଦ୍ଧା ଥିଲା ।

ବିଲାତରେ ଥିବା ଅନ୍ୟାନ୍ୟ ଭାରତୀୟ ଛାତ୍ରଛାତ୍ରୀଙ୍କ ପରି ଇନ୍ଦିରା ମଧ୍ୟ ରାଜନୀତିରେ ଅଂଶ ଗ୍ରହଣ କରୁଥିଲେ । ଅକ୍ସଫୋର୍ଡ଼ରେ ଅଧ୍ୟୟନ କାଳରେ ସେ ଚୀନା କମିଟିର ସଭ୍ୟା ଶ୍ରେଣୀଭୁକ୍ତ ହୋଇଥିଲେ ।

ଇଉରୋପର ଆଦର୍ଶ ତଥା ଚିନ୍ତାଧାରାରେ ଯେଉଁ ପରିବର୍ତ୍ତନ ୧୯୩୬-୩୭ ମସିହାରେ ଦେଖା ଦେଇଥିଲା ତାର ପ୍ରଭାବ ସମଗ୍ର ବିଶ୍ୱବାସୀ ଅନୁଭବ କରିଥିଲେ । ସେତେବେଳେ ଲଣ୍ଡନରେ ଥିବା ଭାରତୀୟମାନେ ଅକ୍ସଫୋର୍ଡ଼ ଓ କେମ୍ବ୍ରିଜର ଭାରତୀୟ ଛାତ୍ରମାନଙ୍କ ସହିତ ଊଣାଅଧିକେ ସେହି ଏକ ପ୍ରକାର ଚିନ୍ତାଧାରାରେ ଅନୁପ୍ରାଣିତ ହୋଇଥିଲେ । ସେମାନେ ନାଜି ଓ ଫାସୀମାନଙ୍କ ଦ୍ୱାରା ଅନୁସୃତ ହେଉଥିବା ବର୍ଣ୍ଣବୈଷମ୍ୟ, ହିଂସାତ୍ମକ କାର୍ଯ୍ୟକଳାପ ଓ ସାମ୍ରାଜ୍ୟବାଦୀ ମନୋଭାବକୁ ଅନୁମୋଦନ କରିବା ସପକ୍ଷରେ ନ ଥିଲେ । କାରଣ ଗାନ୍ଧିଜୀଙ୍କ ଅହିଂସା ନୀତି ସମସ୍ତ ଭାରତୀୟଙ୍କ ନିକଟରେ ଅଲିଭା ସ୍ୱାକ୍ଷର ହୋଇ ରଖାଯାଇଥିଲା । କେବଳ ଭାରତୀୟ-ମାନେ କାହିଁକି, ସମଗ୍ର ଏସିଆ, ଇଉରୋପ, ଆଫ୍ରିକା ଓ ଆମେରିକାରେ ମଧ୍ୟ ତାର ପ୍ରତିକ୍ରିୟାମାନ ଦେଖା ଦେଇଥିଲା ।

ସେତେବେଳେ ବିଲାତରେ ଅଧ୍ୟୟନ କରୁଥିବା ଭାରତୀୟ ଛାତ୍ରମାନଙ୍କ ମଧ୍ୟରେ ଥିଲେ ଭୂପେଶ ଗୁପ୍ତ, ଜ୍ୟୋତି ବସୁ, ମିନୁ ମାସାନୀ, ମୋହନକୁମାର ମଙ୍ଗଲମ୍, ରେଣୁକା ରାୟ, ନିଖିଳ ଚକ୍ରବର୍ତ୍ତୀଙ୍କ ସମେତ ଅନ୍ୟମାନେ । ସେଠାରେ ସେମାନେ କୃଷ୍ଣମେନନ୍‌ଙ୍କ ଦ୍ୱାରା ପରିଚାଳିତ "ଇଣ୍ଡିଆ ଲିଗ୍"ର ସ୍ୱେଚ୍ଛାସେବକ ଭାବରେ ଭାରତର ସ୍ୱାଧୀନତା ପାଇଁ ସଂଗ୍ରାମ ଚଳାଇଥିଲେ । ସେଥିରେ ସ୍ୱେଚ୍ଛାସେବିକା ଭାବେ ଶାନ୍ତା ଓ ଇନ୍ଦିରା ମଧ୍ୟ ଯୋଗ ଦେଇଥିଲେ । ଫାସୀବାଦର ବିରୋଧ କରି ସେମାନେ ସ୍ପେନ୍‌ର ରିପବ୍ଲିକାନ୍‌ମାନଙ୍କୁ ସମର୍ଥନ କରୁଥିଲେ ।

ଜନ୍ମଭୂମିଠାରୁ ଅନେକ ଦୂରରେ ରହୁଥିଲେ ମଧ୍ୟ ଖବରକାଗଜ ତଥା ପତ୍ର ପତ୍ରିକାମାନଙ୍କ ଦ୍ୱାରା ଭାରତରେ ଘଟିଯାଉଥିବା ମୂଳ ପରିବର୍ତ୍ତନ ସମ୍ପର୍କରେ ଅବଗତ ହେଉଥିଲେ ଇନ୍ଦିରା । ୧୯୩୪ ମସିହାଠାରୁ ମହମ୍ମଦ ଅଲ୍ଲି ଜିନ୍ନା ମୁସ୍‌ଲିମ୍ ଲିଗ୍‌ର ନେତୃତ୍ୱ ହାତକୁ ନେଇ ଇଂରେଜ ସରକାରଙ୍କ ନିକଟରେ ଦାବୀ ଉପସ୍ଥାପିତ କରିଥିଲେ ଯେ ପାକିସ୍ଥାନକୁ ଏକ ସ୍ୱତନ୍ତ୍ର ରାଷ୍ଟ୍ର ରୂପେ ସ୍ୱୀକୃତ ଦିଆଯାଉ । ତାଙ୍କର ଲକ୍ଷ୍ୟ ଥିଲା, ସେ ରାଷ୍ଟ୍ର କେବଳ ମୁସଲମାନ ସମ୍ପ୍ରଦାୟମାନଙ୍କ ଲାଗି ଉଦ୍ଦିଷ୍ଟ ହେବ ଏବଂ ଭାରତ ହେବ କେବଳ ହିନ୍ଦୁମାନଙ୍କପାଇଁ । ସେ ପ୍ରକାର ପ୍ରସ୍ତାବକୁ କେତେକ ମୁସଲମାନ ଯୁବକ ନେତା ସମର୍ଥନ କରୁଥିଲେ । କିନ୍ତୁ ସେ ଦାବୀକୁ ଭାରତର ଅନେକ ନେତା ମାନି ନେଉ ନ ଥିଲେ ଓ ଶେଷରେ କୌଣସି ସାଂପ୍ରଦାୟିକ ଭେଦ ବିଚାର ନ ରଖି ଭାରତକୁ ମୁକ୍ତ କରିବା ଲାଗି ଆନ୍ଦୋଳନର ଆହ୍ୱାନ ସେ ପ୍ରକାର ଚିନ୍ତାଧାରାର ବିଚ୍ଛିନ୍ନତାବାଦକୁ ଆଚ୍ଛନ୍ନ କରି ରଖିଥିଲା । ସମସ୍ତେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ।

୧୯୩୫ ମସିହାରେ ଭାରତ ଲାଗି ଏକ ନୂତନ ଆଇନ ପ୍ରଣୟନ କରାଯାଇଥିଲା । ସେଥିରେ ଭାରତକୁ ଏକ ରାଷ୍ଟ୍ର ସଂଘ ହିସାବରେ ମାନି ନିଆଯାଇଥିଲା । ଏହି କାନୁନ୍ ଅନୁସାରେ ଭାରତକୁ ୧୧ଟି ପ୍ରଦେଶରେ ବିଭକ୍ତ କରାଯାଇ ପ୍ରତ୍ୟେକ ପ୍ରଦେଶରେ ଗୋଟିଏ ଗୋଟିଏ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା ଭାରତୀୟମାନଙ୍କୁ ନେଇ । ପ୍ରଦେଶର ସର୍ବେସର୍ବା ଥିଲେ ଗଭର୍ଣ୍ଣର ଓ କେନ୍ଦ୍ର ସରକାରଙ୍କ ଅଧୀନରେ ସମଗ୍ର ଦେଶର ଅର୍ଥବିଭାଗର ଦାୟିତ୍ୱ ଥିଲା । ଭାରତୀୟ ଜାତୀୟ କଂଗ୍ରେସ ନିଷ୍ପତ୍ତି ନେଇଥିଲା ଦଳର ପ୍ରାର୍ଥୀମାନଙ୍କୁ ଉକ୍ତ ନିର୍ବାଚନରେ ପ୍ରତଦ୍ୱନ୍ଦିତା କରାଇବ ।

ଜବାହରଲାଲ କର୍ମତତ୍ପର ହୋଇ ଉଠିଥିଲେ ସମସ୍ତ ବ୍ୟକ୍ତିଗତ ବେଦନାକୁ ସମ୍ପୂର୍ଣ୍ଣ ଭୁଲିଯାଇ । ବିଶେଷ କରି କମଳାଙ୍କ ମୃତ୍ୟୁ ତାଙ୍କର ସମସ୍ତ ପାର୍ଥିବ ସ୍ୱାର୍ଥକୁ ଆହୂତି ଦେଇଥିଲା କହିଲେ ଚଳେ । ତେବେ ନିଜ ସ୍ତ୍ରୀଙ୍କ ମୃତ୍ୟୁର କିଛୁଦିନ ପର୍ଯ୍ୟନ୍ତ ପ୍ରକୃତିସ୍ଥ ହୋଇପାରି ନ ଥିଲେ ଓ ନିଜ ଜୀବନର ଗତି ସ୍ଥିର ରଖିପାରି ନ ଥିଲେ । ସେ ବିଶ୍ୱାସ କରିବାପାଇଁ ଯେମିତି ପ୍ରସ୍ତୁତ ନ ଥିଲେ ଯେ ତାହାଙ୍କ ଜୀବନର ଏକ ବିଶିଷ୍ଟ ଅଙ୍ଗହାନୀ ଘଟିଛି । କମଳାଙ୍କ ମୃତ୍ୟୁକୁ ସାଧାରଣ ଭାବରେ ସେ ଗ୍ରହଣ କରିପାରୁ ନ ଥିଲେ । ସେହି ବାସ୍ତବ ସତ୍ୟକୁ ଅନୁଭବ କରିବାପାଇଁ ପଣ୍ଡିତ ନେହେରୁଙ୍କୁ ଅନେକ ଦିନ ଲାଗି ଯାଇଥିଲା । * ରାଜନୈତିକ କାର୍ଯ୍ୟକଳାପରେ

* My wife's death ended a chapter of my existence and took away much from my life that had been part of my being. It was difficult for me to realise that she was no more and I could not adjust myself easily.

(J. Nehru—Autobiography)

ସର୍ବଦା ବ୍ୟସ୍ତ ରହୁଥିଲେ ଜୀବନର ସେ ସମସ୍ତ ଦୁଃଖକୁ ପାଶୋରି ଯିବା ପାଇଁ । ସେଥିଲାଗି କଂଗ୍ରେସର ପ୍ରାର୍ଥୀମାନଙ୍କୁ ନିର୍ବାଚନରେ ଜୟଯୁକ୍ତ କରାଇବା ଲାଗି ସେ ସମସ୍ତ ଭାରତ ନିର୍ବାଚନ ପ୍ରଚାରରେ ଯାଇଥିଲେ ଏବଂ ଦେଶର ଅଧିକାଂଶ ପ୍ରଦେଶରେ କଂଗ୍ରେସ ଜୟଯୁକ୍ତ ହୋଇ କ୍ଷମତାକୁ ଆସିଥିଲା । ଭାରତରେ କଂଗ୍ରେସର ସେ ବିପୁଳ ବିଜୟ.ସମ୍ବାଦପତ୍ର ହୋଇପାରିଥିବା ଖବର ଶୁଣି ଲଣ୍ଡନରେ ଇନ୍ଦିରା ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

ନିର୍ବାଚନ କାର୍ଯ୍ୟ, ଜାତୀୟ କଂଗ୍ରେସ କାର୍ଯ୍ୟ ଏବଂ ସ୍ୱାଧୀନତା ଆନ୍ଦୋଳନରେ ବ୍ୟସ୍ତ ରହି ଜବାହରଲାଲ ସୁଦୂର ବିଦେଶରେ ଏକାକୀ ରହିଥିବା ଇନ୍ଦିରା ପ୍ରିୟ-ଦର୍ଶିନୀଙ୍କୁ ନିୟମିତ ଭାବେ ଚିଠିପତ୍ର ଦେଇ ନ ପାରିବା ସ୍ୱାଭାବିକ । କିନ୍ତୁ ଇନ୍ଦିରାଙ୍କ କଥା ସେ ସବୁବେଳେ ଚିନ୍ତା କରୁଥିଲେ ।

୧୯୩୮ ମସିହାରେ ଜବାହରଲାଲ ପ୍ରିୟଦର୍ଶିନୀଙ୍କୁ ଦେଖିବା ଉଦ୍ଦେଶ୍ୟରେ ଇଉରୋପ ଯାତ୍ରା କରିଥିଲେ । ସେ ଠିକ୍ କରିଥିଲେ ସେହି ଅବସରରେ ଏକା ସାଙ୍ଗରେ ସ୍ପେନ୍ ଓ ଚେକୋସ୍ଲୋଭାକିଆ ମଧ୍ୟ ପରିଦର୍ଶନ କରିବେ । ଇନ୍ଦିରା ସେ ସମୟରେ ଥିଲେ ଅକ୍ସଫୋର୍ଡ଼ରେ ଅଧ୍ୟୟନରତା ।

ସୁଦୂର ବିଦେଶରେ ରହି ବିଶ୍ୱବିଖ୍ୟାତ ବିଶ୍ୱବିଦ୍ୟାଳୟରେ ଶିକ୍ଷାଲାଭ କରୁଥିଲେ ସୁଦ୍ଧା ତଥାପି ଇନ୍ଦିରା ନିଜ ଲଜ୍ଜାଶୀଳତା ଦୂର କରିପାରି ନ ଥିଲେ । ଆଲୋଚନା ଓ ତର୍କ-ସଭାମାନଙ୍କରେ ଅନେକ ସମୟରେ ଯୋଗ ଦେଉଥିଲେ ମଧ୍ୟ ସେ ସବୁବେଳେ ସର୍ବସାଧାରଣଙ୍କଠାରୁ ନିଜକୁ ଦୂରେଇ ରଖିବା ଲାଗି ଚେଷ୍ଟା କରୁଥିଲେ । ସେଠାରେ ଥରେ କୌଣସିଏ ଆଲୋଚନା ସଭାର ବିଷୟବସ୍ତୁ ଥିଲା— "କଂଗ୍ରେସର ନେତୃତ୍ୱ ବୈପ୍ଳବିକ ହେବା ବିଧେୟ" । ସେ ସଭାର ଅଂଶଗ୍ରହଣ-କାରୀମାନଙ୍କ ମଧ୍ୟରେ ତିନି ଜଣ ଭାରତୀୟ ବାମପନ୍ଥୀ ବିପ୍ଳବୀ ଥିଲେ—ସେଲ୍ଭଙ୍କର, ନିଖିଳ ଚକ୍ରବର୍ତ୍ତୀ ଓ ୟୁସୁଫ ମେହେରାଲ୍ଲୀ । ସେତେବେଳେ ସେମାନେ ଇଂଲଣ୍ଡ ପରିଭ୍ରମଣରେ ଯାଇଥିଲେ । ଇନ୍ଦିରା ମଧ୍ୟ ସେ ଆଲୋଚନା ସଭାରେ ଅଂଶ ଗ୍ରହଣ କରିଥିଲେ । ଅନ୍ୟମାନେ ତାଙ୍କ ପିତା ଜବାହରଲାଲ ତଥା ଜାତୀୟ କଂଗ୍ରେସ ପ୍ରତି ଅନେକ ସମାଲୋଚନା ବିଭିନ୍ନ ଭାବରେ ପ୍ରକାଶ କରିଥିଲେ । ସର୍ବଶେଷରେ ଯେତେ-ବେଳେ ପ୍ରସ୍ତାବ ଉପରେ ଭୋଟ ଗ୍ରହଣ କରାଯାଇଥିଲା, ଇନ୍ଦିରା ତା ସପକ୍ଷରେ ନିଜ ଭୋଟ ପ୍ରଦାନ କରିଥିଲେ ।

ଇନ୍ଦିରା ଲଣ୍ଡନରେ ଅଧ୍ୟୟନ କରୁଥିବା ବେଳେ ଜର୍ମାନୀର ଜୀଉ ସମ୍ପ୍ରଦାୟର ଜଣେ ପ୍ରସିଦ୍ଧ କବି 'ଆରନେଷ୍ଟ ଟୋଲର'ଙ୍କ ସହିତ ଖୁବ୍ କମ୍ ସମୟ ମଧ୍ୟରେ ସୁସମ୍ପର୍କ ସ୍ଥାପନ କରିବା ପରେ ପରେ ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ପଡ଼ିଥିଲେ । କବି ଓ ତାଙ୍କ ସ୍ତ୍ରୀ ଇନ୍ଦିରାଙ୍କୁ ଅନାବିଳ ସ୍ନେହ କରୁଥିଲେ । ଥରେ ଶ୍ରୀମତୀ

ଟୋଲର ଜବାହରଲାଲଙ୍କୁ ଏକ ପତ୍ରରେ ଲେଖିଥିଲେ ଯେ ଇନ୍ଦିରାଙ୍କ ସହ ସାକ୍ଷାତ୍ କରିବାରେ ସେ ଖୁବ୍ ଆନନ୍ଦ ପାଇଥିଲେ । କେବଳ ଇନ୍ଦିରା ଜଣେ ସୁନ୍ଦରୀ ନ ଥିଲେ, ତାଙ୍କ ନିର୍ମଳ ହୃଦୟ ପାଇଁ ସେ ଆନନ୍ଦିତା ଥିଲେ । ଇନ୍ଦିରା ତାଙ୍କ ନିକଟରେ ଥିଲେ ଏକ ପ୍ରସ୍ଫୁଟିତ ସୁବାସିତ କୁସୁମ । ତାଙ୍କ ଭାଷାରେ—"I only want to tell you how delighted I was to have meet her. Not only that she is so beautiful but so pure which makes one feel very happy, She seemed to me like a little flower which the wind blows away so easily, but I think she is not afraid of the wind." * ତାର ପ୍ରାୟ ଏକ ବର୍ଷ ପରେ ଯେତେବେଳେ ଇନ୍ଦିରା ଖବର ପାଇଥିଲେ ଯେ ଆମେରିକାକୁ ପଳାୟନ କରିଥିବା ସେଇ କବି ପରିବାର ମଧ୍ୟରୁ କବି ଜଣକ ମାନସିକ ଅଶାନ୍ତି ଯୋଗୁଁ ଆତ୍ମହତ୍ୟା କରିଥିଲେ ସେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ ।

ଦୀର୍ଘ ଦିନ ଧରି ପିତା ଓ ପୁତ୍ରୀଙ୍କ ମଧ୍ୟରେ ବିଚ୍ଛେଦ ଉଭୟଙ୍କୁ ବିବ୍ରତ କରି ପକାଇଥିଲା । ତେଣୁ ଉଭୟେ ଉଭୟଙ୍କୁ ଦେଖିବାଲାଗି କାତର ହୋଇ ଉଠିଥିଲେ । ନେହେରୁ ଇଉରୋପ ଯିବା ରାସ୍ତାରେ ସୁଏଜ୍‌ଠାରେ ଆରବ-ଜାତୀୟ ଆନ୍ଦୋଳନର ନେତା ପାଶାଙ୍କ ସହିତ ଦେଖାସାକ୍ଷାତ୍ କରିଥିଲେ ପ୍ରଥମ ଥରପାଇଁ ଓ କିଛିଦିନ ସେଠାରେ ରହି ବିଶ୍ୱର ସେତେବେଳର ପରିସ୍ଥିତି ସମ୍ପର୍କରେ ଆଲୋଚନା କରିଥିଲେ । ସେଠାରୁ ସେ ଇଉରୋପ ଯାତ୍ରା କରିଥିଲେ ପ୍ରିୟଦର୍ଶିନୀ ଇନ୍ଦୁ ନିକଟକୁ ।

ସେ ମିଳନ ଦୀର୍ଘ ଦୁଇ ବର୍ଷ ପରେ ହୋଇଥିବାରୁ ଉଭୟେ ଅତ୍ୟନ୍ତ ଆବେଗରେ ଉଦ୍‌ବେଳିତ ହୋଇ ଉଠିଥିଲେ । ସେତେବେଳେ ନେହେରୁ ପରିବାର-ମାନେ ହିଁ ପ୍ରାୟ ଥିଲେ ସେ ଦୁଇ ଜଣ—ଜବାହରଲାଲ ଓ ଇନ୍ଦିରା । କିନ୍ତୁ ଇଉରୋପରେ ନେହେରୁ ପରିବାରବର୍ଗ ଦୀର୍ଘ ଦିନର ବ୍ୟବଧାନ ପରେ ଏକାଠି ମିଳିତ ହୋଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଆଲୋଚନାର ବିଷୟବସ୍ତୁ ସମ୍ପୂର୍ଣ୍ଣ ପାରିବାରିକ ନ ଥିଲା—ଥିଲା ସମଗ୍ର ବିଶ୍ୱର ତତ୍କାଳୀନ ପରିସ୍ଥିତି; ବିଶେଷ କରି ସ୍ପେନ୍‌ର ଜାତୀୟ କାର୍ଯ୍ୟକ୍ରମ । ସ୍ପେନ୍‌ର ଜାତୀୟ କାର୍ଯ୍ୟକ୍ରମରେ ନେହେରୁ ଅତ୍ୟନ୍ତ ଉଦ୍‌ବୁଦ୍ଧ ହୋଇ ପଡ଼ିଥିବାରୁ ସେ ଇନ୍ଦିରାଙ୍କୁ ତାଙ୍କ ସ୍ପେନ୍ ଅନୁଭୂତିସବୁ ବର୍ଣ୍ଣନା କରିଥିଲେ ।

ଇଉରୋପରେ ଦୀର୍ଘ ପାଞ୍ଚ ମାସ ଅବସ୍ଥାନ କରିଥିଲେ ମଧ୍ୟ ପଣ୍ଡିତ ନେହେରୁଙ୍କର ଅଧିକାଂଶ ସମୟ ବିଭିନ୍ନ ସଭା ସମିତି ଓ ଆଲୋଚନାମାନଙ୍କରେ ହିଁ

* A Bunch of Old Letters (Mostly written to J. Nehru) as produced in Return of the Red Rose.

ଅତିବାହିତ ହୋଇଥିଲା । ସେହି ସମସ୍ତ ମଧ୍ୟରେ ସେ ଲଣ୍ଡନ, ପ୍ୟାରିସ, ଜେନେଭା, ଚେକୋସ୍ଲୋଭାକିଆ ଇତ୍ୟାଦି ସ୍ଥାନ ପରିଭ୍ରମଣ କରିଥିଲେ । ମୁଖ୍ୟତଃ ସେ ଫାସିଷ୍ଟ-ବିରୋଧୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ ।

ଯେତେବେଳେ ଜବାହରଲାଲ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିବାପାଇଁ ସ୍ଥିର କରିଥିଲେ, ସେ ଇନ୍ଦିରାଙ୍କୁ ପ୍ରସ୍ତାବ ଦେଇଥିଲେ ଯେ ସେ ମଧ୍ୟ କିଛିଦିନପାଇଁ ଭାରତ ଫେରି ଚାଲନ୍ତୁ ପିତାଙ୍କ ସଙ୍ଗେ । ଜନ୍ମଭୂମିରେ କିଛିଦିନ ଅତିବାହିତ କରି ପୁଣି ଅଧ୍ୟୟନ କରିବା ପାଇଁ ଫେରି ଆସିବେ । ଇନ୍ଦିରା ସେଭଳି ପ୍ରସ୍ତାବକୁ ସାଦରେ ଗ୍ରହଣ କରିଥିଲେ ଓ ତାହା ଉଭୟଙ୍କ ପାଇଁ ଅତି ଆନନ୍ଦଦାୟକ ଥିଲା ।

ପିତା ଓ ପୁତ୍ରୀ ଲଣ୍ଡନରୁ ଭାରତ ଫେରିବା ରାସ୍ତାରେ ଆରବଠାରେ ଆରବ ମୁକ୍ତି ସଂଗ୍ରାମର ନେତାମାନେ ଉଭୟଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । କାରଣ ଉଭୟ ଦେଶର ଜନସାଧାରଣଙ୍କ ଉଦ୍ଦେଶ୍ୟ ଥିଲା ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ବିନ୍ଦୁରେ ପହଞ୍ଚିବା । ତା ପରେ ପରେ ଗୋଟିଏ ଅତ୍ୟନ୍ତ ଆନନ୍ଦଦାୟକ ଗୁଜବ ପ୍ରଚାର ହୋଇଥିଲା ଯେ ପାରସୀଙ୍କ ପୁଅ ସହିତ ଇନ୍ଦିରାଙ୍କ ବିବାହ ଅନୁଷ୍ଠିତ ହୋଇଯାଇଥିଲା । କିନ୍ତୁ ପ୍ରକୃତରେ ସେ ଗୁଜବର କୌଣସି ଭିତ୍ତି ନ ଥିବାର କାରଣ ଥିଲା ପାରସୀଙ୍କର ଆଦୌ ପୁତ୍ର ସନ୍ତାନ ନ ଥିଲେ ।

ଦୀର୍ଘ ଦିନ ପରେ ଆନନ୍ଦ ଭବନକୁ ଫେରିବାରେ ଯେଉଁ ଆନନ୍ଦ ଇନ୍ଦିରା ପାଇଥିଲେ ସେଥିରେ ଆନ୍ତରିକ ଦୁଃଖର ପରିମାଣ ମଧ୍ୟ କିଛି କମ୍ ନ ଥିଲା କହିଲେ ଚଳେ । ସମଗ୍ର ଆନନ୍ଦ ଭବନର ପ୍ରତି ଇଞ୍ଚ ସ୍ଥାନରେ କମଳାଙ୍କ ଅନୁପସ୍ଥିତି ସେ ଅନୁଭବ କରୁଥିଲେ । ଅତୀତର ବିଭିନ୍ନ ସମୟର ବିଭିନ୍ନ ଅବସ୍ଥା ତାଙ୍କ ମନରେ ରେଖାପାତ କରୁଥିଲା । ପୁନଶ୍ଚ ଜେଜେମା' ସେତେବେଳେ ଥିଲେ ରୁଗ୍ଣା । ରାଜନୈତିକ କାର୍ଯ୍ୟକଳାପ ଯୋଗୁଁ ଜବାହରଲାଲ ନିଜ ମାଆଙ୍କର ସେବା କରିପାରୁ ନ ଥିଲେ, ତେଣୁ ଆନନ୍ଦ ଭବନରେ ରହିବା ସମୟଟିକ ସମସ୍ତ ଦୁଃଖ ଭୁଲି ଇନ୍ଦିରା ଜେଜେମା'ଙ୍କ ସେବା କରିବା ପାଇଁ ତତ୍ପର ହୋଇ ଉଠିଥିଲେ । ସେଠାରେ ତିନି ମାସର ରହଣି ଇନ୍ଦିରାଙ୍କୁ ଯେତିକି ଆନନ୍ଦ ଦେଇଥିଲା, ତା'ଠାରୁ ଅଧିକ ଆନନ୍ଦ ଦେଇଥିଲା ତାଙ୍କ ଜେଜେମା'ଙ୍କୁ ।

ମାତୃହୀନା ଇନ୍ଦିରାଙ୍କ ଅନେକ କୈଶୋର ଅବସ୍ଥାର କଥା ମନେ ପଡ଼ିଥିଲା । ଯେତେବେଳେ ତାଙ୍କର ମନେ ପଡ଼ିଥିଲା ସେ ପ୍ରାୟ ଅଠର ବର୍ଷ ତଳେ ଉପଯୁକ୍ତ ବୟସ ହୋଇ ନ ଥିଲା ବୋଲି ଖଦଡ଼ ଟୋପି ପରିହିତ ନେତୃବୃନ୍ଦଙ୍କ ଦ୍ୱାରା କଂଗ୍ରେସର ସଭ୍ୟା ହେବା ଲାଗି ଆବେଦନ କରି ପ୍ରତ୍ୟାଖ୍ୟାତ ହୋଇଥିଲେ । କିନ୍ତୁ ତାଙ୍କୁ ସେତେବେଳେ ଏକୋଇଶ ବର୍ଷ ବୟସ ହୋଇଯାଇ ଥିବାରୁ କଂଗ୍ରେସ ଅଫିସରୁ

ଏଣିକ ଆଉ ଫେରି ଆସିବାର ଭୟ ନ ଥିଲା । ତେଣୁ କଂଗ୍ରେସର ସଭ୍ୟା ଅନ୍ତର୍ଭୁକ୍ତ ହୋଇଥିଲେ ।

ଅନେକ ପୁରାତନ ସ୍ମୃତିବିଜଡ଼ିତ ଜନ୍ମସ୍ଥାନ ଆହ୍ଲାବାଦର ଆନନ୍ଦ ଭବନରେ ତିନି ମାସ ଅବସ୍ଥାନ କରି ପୁଣି ଅକ୍ସଫୋର୍ଡ ସମରଭିଲ୍ଲା କଲେଜକୁ ପ୍ରତ୍ୟାବର୍ତ୍ତନ କରିଥିଲେ ୧୯୩୯ ମସିହା ଅପ୍ରେଲ ମାସରେ ।

ସେତେବେଳକୁ ଇଉରୋପର ସମଗ୍ର ବାୟୁମଣ୍ଡଳରେ ଦେଖା ଦେଇଥିଲା ଏକ ପ୍ରଳୟଙ୍କରୀ ରାଜନୈତିକ ଝଡ଼ର ସୂଚନା । ଯଦିଓ ଫାସିଷ୍ଟମାନଙ୍କର ଦୌରାତ୍ମ୍ୟ ଦିନକୁ ଦିନ ଅଧିକରୁ ଅଧିକ ଉଦ୍‌ବେଳିତ ହୋଇ ଉଠୁଥିଲା, ସେ ବାୟୁମଣ୍ଡଳର ସତ୍ତା ଲୋପ କରିଦେବା ପାଇଁ ଚେମ୍ବରଲିନ୍‌ଙ୍କ ସମସ୍ତ ଚେଷ୍ଟା ବିଫଳ ହୋଇଥିଲା ଓ ତାହା କେବଳ ଇଉରୋପର ଆକାଶରେ ସୀମିତ ନ ରହି ସମଗ୍ର ପୃଥିବୀର ଆକାଶରେ ବେଳେବେଳେ ଅନ୍ଧକାରର ଘନଘଟା ସୃଷ୍ଟି କରୁଥିଲା ।

ଇନ୍ଦିରା ଖବର ପାଇଥିଲେ, ତାଙ୍କ ପରିବାରର ଆଉ ଗୋଟିଏ ରକ୍ତ ସମ୍ପର୍କର ଧାରା ଛିନ୍ନ କରି ଜେଜେମା' ଚାଲିଯାଇଥିଲେ ଅମରପୁରକୁ । ସେତେବେଳେ ତାଙ୍କର ଆଖିଆଗରେ ଭାସି ଉଠିଥିବ ଅତୀତ ଇତିହାସର କେତୋଟି ପୃଷ୍ଠା—ମନେ ପଡ଼ି ଯାଇଥିବ ତାଙ୍କ ସ୍ନେହ-ସୋହାଗର କଳନାଦିନୀ ଝରଣାର ଧାରା । କୌଣସି ଏକ ଶୋଭାଯାତ୍ରାର ପ୍ରଥମ ସୈନିକା ବୃଦ୍ଧା ଜେଜେମା'ଙ୍କ ଉପରେ ପୋଲିସର ରକ୍ତାକ୍ତ ପ୍ରହାର ସତ୍ତ୍ୱେ ଜେଜେମା' ତାଙ୍କ ନିକଟକୁ ଚିଠି ଲେଖିଥିଲେ ଯେ ସେ ସେଥିପାଇଁ ଗର୍ବ ଅନୁଭବ କରୁଥିବାର କାରଣ ଥିଲା ଅନ୍ୟମାନଙ୍କ ସହିତ ଭାରତମାତାର ମୁକ୍ତି ପାଇଁ ସେ କିଛିହେଲେ ସଂଗ୍ରାମ କରିପାରିଛନ୍ତି । କିନ୍ତୁ ଇନ୍ଦିରା ଖବରକାଗଜରୁ ପଢ଼ିଥିଲେ ତାଙ୍କର ଜେଜେମା'-ପୋଲିସ ଲାଠିର ପ୍ରହାରରେ ରକ୍ତାକ୍ତ ଓ ସଂଜ୍ଞାହୀନ ହୋଇ ପଡ଼ିଥିଲେ । ସେ କରୁଣ ଅଥଚ ଦୃଢ଼ମନା ବୃଦ୍ଧାର ବିଜୟ ଦୃଶ୍ୟ ଇନ୍ଦିରାଙ୍କ କଳ୍ପନା-ମାନସରେ ସେତେବେଳେ ମନେ ପଡ଼ି ଯାଇଥିବ ।

୧୯୩୯ ମସିହା ଅଗଷ୍ଟ ମାସରେ ଇନ୍ଦିରା ପିତାଜୀଙ୍କ ନିକଟରୁ ପତ୍ର ପାଇଥିଲେ ଯେ ଜାପାନୀମାନଙ୍କ ଆକ୍ରମଣ ସମ୍ପର୍କରେ ଭାରତୀୟ କଂଗ୍ରେସର ମନୋଭାବ ସ୍ପଷ୍ଟ କରାଇ ଦେବା ଲାଗି ସେ ଚୀନ ଯିବେ । ଠିକ୍ ସମୟରେ ସେ ଚୀନ ଯାଇଥିଲେ ଓ ସେଠାରେ ଖୁବ୍ କମ୍ ଦିନପାଇଁ ଅବସ୍ଥାନ କରି ପୁଣି ଭାରତ ଫେରି ଆସିଥିଲେ । ସେ ଭାରତ ଫେରିବା ବେଳକୁ ହିଟଲରଙ୍କ ସେନାବାହିନୀ ପୋଲାଣ୍ଡ ଆକ୍ରମଣ କରି ଆହୁରି ଆଗକୁ ମାଡ଼ି ଚାଲିଥିଲେ । ବାଧ୍ୟବାଧ୍ୟ ଭାବରେ ପୃଥିବୀରେ ଦ୍ୱିତୀୟ ମହାସମର ଆରମ୍ଭ ହୋଇ ଯାଇଥିଲା ।

ପ୍ରଳୟଙ୍କରୀ ବିଶ୍ୱଯୁଦ୍ଧର ଘନଘଟା ସମଗ୍ର ପୃଥିବୀର ଲୋକମାନଙ୍କ ମନରେ ଆତଙ୍କ ସୃଷ୍ଟି କରିଥିଲା । ପ୍ରତି ମୁହୂର୍ତ୍ତରେ ଆକ୍ରମଣର ଆଶଙ୍କା ଲୋକମାନଙ୍କୁ ବ୍ୟତି-ବ୍ୟସ୍ତ କରି ପକାଉଥିଲା । ଘରଆଡ଼େ ବ୍ଲାକ-ଆଉଟ୍ ହେଉଥିଲା ଓ ବିଭିନ୍ନ ସତର୍କତା-ମୂଳକ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ଆତ୍ମଗୋପନ କରିବା ଲାଗି ସାଇରନ ମୁହୁର୍ମୁହୁଃ ବାଜି ଉଠୁଥିଲା । ଖାଦ୍ୟ ପଦାର୍ଥର ଅଭାବ ସାଙ୍ଗକୁ ପ୍ରତି ମୁହୂର୍ତ୍ତରେ ଜୀବନ ଥିଲା ସଙ୍କଟାପନ୍ନ ।

ପ୍ରଥମରୁ ହିଁ ନାତ୍ସୀମାନଙ୍କୁ ଇନ୍ଦିରା ଘୃଣା କରୁଥିଲେ । ଯୁଦ୍ଧର ଭୟାବହତା ବଢ଼ିବା ସଙ୍ଗେ ସଙ୍ଗେ ଇନ୍ଦିରାଙ୍କ ଘୃଣିତ ମନୋଭାବ ସେହି ପରିମାଣରେ ବୃଦ୍ଧି ପାଇଥିଲା । ତେବେ ଇଂରେଜ ଲୋକମାନେ ବିଶେଷତଃ ସାଧାରଣ ଇଂରେଜ ଜନତା ଯେପରି ଭାବରେ ଦଳବଦ୍ଧ ହୋଇ ଏବଂ ମନୋବଳ ଦୃଢ଼ କରି ନାତ୍ସୀମାନଙ୍କ ବିରୁଦ୍ଧରେ ପରିସ୍ଥିତିର ମୁକାବିଲା କରିବାପାଇଁ ଅଗ୍ରସର ହେଉଥିଲେ ଇନ୍ଦିରା ତାର ପ୍ରଶଂସା କରୁଥିଲେ । ବ୍ରିଟିଶ ସରକାର ଦେଶର ଗଣତନ୍ତ୍ର ତଥା ସ୍ୱାଧୀନତା ରକ୍ଷା କରିବାଲାଗି ଦେଶବାସୀଙ୍କୁ ଆହ୍ୱାନ ଦେଉଥିଲେ । ଇଂରେଜ ଜନସାଧାରଣଙ୍କୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଇନ୍ଦିରାଙ୍କ ମନ ଭିତରେ ସେହି ପ୍ରଶ୍ନ ହିଁ ବାରମ୍ବାର ଆଲୋଡ଼ନ ସୃଷ୍ଟି କରିଥିଲା ଯେ ଯେଉଁ ସରକାର ନିଜ ଦେଶର ଗଣତନ୍ତ୍ର ତଥା ସ୍ୱାଧୀନତା ରକ୍ଷା କରିବାଲାଗି ତାର ଦେଶବାସୀଙ୍କୁ ଆହ୍ୱାନ ଦେଉଛି ଅନ୍ୟ ଗୋଟିଏ ଦେଶର ସ୍ୱାଧୀନତା ସେ ଦେଶର ଲୋକଙ୍କୁ ହସ୍ତାନ୍ତର କରିବାପାଇଁ କୁଣ୍ଠାବୋଧ କରୁଛି କାହିଁକି ? ଅନ୍ୟ ଦେଶର ସ୍ୱାଧୀନତାକୁ ଅପହରଣ କରି ନେଉଛି କାହିଁକି ? କାହିଁକି ଭାରତୀୟ ସ୍ୱାଧୀନତା ସଂଗ୍ରାମର ଶେଷ ହେବାକୁ ଦିଆଯାଉ ନାହିଁ ? ଯେଉଁ ସ୍ୱାଧୀନତାପାଇଁ ଓ ଗଣତନ୍ତ୍ରର ରକ୍ଷା କରାଯିବାପାଇଁ ବ୍ରିଟିଶ ସରକାର ଯୁଦ୍ଧ କରିବାକୁ ବାଧ୍ୟ ହେଉଛନ୍ତି ବୋଲି ଘୋଷଣା କରୁଥିଲେ, ସେହି ସ୍ୱାଧୀନତା ଭାରତକୁ ଦିଆଯାଉ ନ ଥିଲା ସେଇମାନଙ୍କ ଦ୍ୱାରା । ପ୍ରକୃତରେ ଦ୍ୱିତୀୟ ପୃଥିବୀ ମହାସମରରେ ସାଧାରଣ ଇଂରେଜ ଜନତାଙ୍କୁ ପ୍ରଶଂସା କରିବାକୁ ଭୁଲି ନ ଥିଲେ ମଧ୍ୟ ଇନ୍ଦିରା ଇଂରେଜ ସରକାରଙ୍କ ଭାରତପାଇଁ ଘୋଷିତ ନୀତିକୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ମନ ଭିତରେ ସେମାନଙ୍କ ପ୍ରତି ବିଦ୍ୱେଷ ପୁଞ୍ଜୀଭୂତ ହୋଇ ଉଠୁଥିଲା ।

ପୃଥିବୀରେ ଯୁଦ୍ଧଜନିତ ଅବ୍ୟବସ୍ଥା ପ୍ରତ୍ୟେକ କ୍ଷେତ୍ରରେ ଅନ୍ୟାନ୍ୟମାନଙ୍କ ଭଳି ଭୋଗ କରିବାକୁ ପଡ଼ିଥିଲା ଇନ୍ଦିରାଙ୍କୁ ମଧ୍ୟ । ଅକ୍ସଫୋର୍ଡ଼ ଶିକ୍ଷାୟତନର ଶାନ୍ତ ପରିବେଶ ଉଦ୍‌ବେଳିତ ହୋଇ ଉଠିଥିଲା । ଜନସାଧାରଣଙ୍କ ଜୀବନ ନିର୍ବାହ ଲାଗି ଉପଯୁକ୍ତ ସୁଷମ ଖାଦ୍ୟପଦାର୍ଥର ଅଭାବ ଅନୁଭୂତ ହୋଇଥିଲା ଯଥେଷ୍ଟ ଭାବେ । ଏପରିକି ନିକୃଷ୍ଟ ଧରଣର ଖାଦ୍ୟ ଲାଗି ମଧ୍ୟ ପଡ଼ିକାର୍ଡ଼ର ବ୍ୟବସ୍ଥା କରାଯାଇଥିଲା । ସେଥିଲାଗି ଇନ୍ଦିରାଙ୍କ ଦେହ ଅସୁସ୍ଥ ହୋଇ ଯାଇଥିଲା । ସେ ପ୍ଲୁରେସି ରୋଗରେ

ଆକ୍ରାନ୍ତ ହୋଇ ପଡ଼ିଥିଲେ । ତେଣୁ ପିତାଜୀଙ୍କ ନିର୍ଦ୍ଦେଶ କ୍ରମେ ସ୍ୱିଜରଲାଣ୍ଡରେ ଏକ ଚିକିତ୍ସାଳୟରେ ଚିକିତ୍ସିତ ହେବାପାଇଁ ଚାଲି ଯାଇଥିଲେ ୧୯୩୯ ମାର୍ଚ୍ଚ ମାସରେ ।

ସେତେବେଳ ପର୍ଯ୍ୟନ୍ତ ସ୍ୱିଜରଲାଣ୍ଡ ଏକ ନିରପେକ୍ଷ ରାଷ୍ଟ୍ର ହୋଇ ରହିଥିଲା । ତେଣୁ ସେଠାରେ ଜୀବନ ଥିଲା ଏକ ପ୍ରକାର ନିରାପଦ । କିଛିଦିନ ଚିକିତ୍ସାଳୟରେ ଅବସ୍ଥାନ କରିବା ପରେ ଇନ୍ଦିରା ନେହେରୁଙ୍କ ସ୍ୱାସ୍ଥ୍ୟରେ ପରିବର୍ତ୍ତନ ଦେଖା ଦେଇଥିଲା । ଦୁର୍ବଳ ସ୍ୱାସ୍ଥ୍ୟର ଉନ୍ନତି ହୋଇଥିଲେ ମଧ୍ୟ ପୂର୍ବଥରମାନଙ୍କ ଭଳି ସେଥର ସ୍ୱିଜରଲାଣ୍ଡ ସେତେଟା ଆନନ୍ଦ ଦେଇପାରି ନ ଥିଲା । ସେ କମଳାଙ୍କ ଚିକିତ୍ସା ବେଳେ ସେଠାକୁ ଯାଇଥିଲେ । କିନ୍ତୁ ପୂର୍ବଥରର ପରିସ୍ଥିତି ଓ ସେତେବେଳର ପରିସ୍ଥିତି ମଧ୍ୟରେ ତଫାତ୍ ଥିଲା । ତେବେ ସାରା ପୃଥିବୀରେ ଯୁଦ୍ଧର ଜୁଆର ଭିଡ଼ି ଚାଲିଥିବା ବେଳେ ସ୍ୱିଜରଲାଣ୍ଡ ଥିଲା ଏକ ନିରପେକ୍ଷ ଦେଶ । ସେଥିପାଇଁ ଅନେକ ଶରଣାର୍ଥୀ ସେଠାରେ ରୁଣ୍ଡ ହୋଇଥିଲେ ଜୀବନ ବିକଳରେ ।

ଏଣେ ଭାରତର ନେତୃବୃନ୍ଦ ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱତନ୍ତ୍ରତା ଆନ୍ଦୋଳନର ପୁଣି ଏକ ନୂତନ ପଦକ୍ଷେପ ଗ୍ରହଣ କରିନେଇ ଆରମ୍ଭ କରିଥିଲେ ବ୍ୟକ୍ତିଗତ ସତ୍ୟାଗ୍ରହ । ସର୍ବପ୍ରଥମ ବ୍ୟକ୍ତି ଭାବେ ତାର ନେତୃତ୍ୱ ନେଇ କାରାବରଣ କରିଥିଲେ ଆଚାର୍ଯ୍ୟ ବିନୋବା ଭାବେ । ତାଙ୍କ ପରେ ଦ୍ୱିତୀୟ ବ୍ୟକ୍ତି ଜବାହରଲାଲ ନେହେରୁଙ୍କୁ ମଧ୍ୟ ଜେଲ ହାଜତ ଭିତରକୁ ନିଆଯାଇଥିଲା; ସେଇ ଅପରାଧ ବ୍ୟକ୍ତିଗତ ସତ୍ୟାଗ୍ରହ କରିଥିବା ଯୋଗୁଁ । ସବୁଥର ଭଳି ସେଥର ଜବାହରଲାଲ ଇନ୍ଦିରାଙ୍କ ସହିତ ସନ୍ଦାଳାପ କରିବାର ସୁଯୋଗ ବିଶେଷ ଭାବେ ପାଇ ନ ଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଯୋଗୁ ଚିଠିପତ୍ରଗୁଡ଼ିକ ପୁଙ୍ଖାନୁପୁଙ୍ଖ ଭାବେ ଯାଞ୍ଚ ହେଉଥିଲା ଓ ସେଗୁଡ଼ିକ ସ୍ଥାନାନ୍ତରିତ ହେବାରେ ମଧ୍ୟ ବିଳମ୍ବ ଅନିବାର୍ଯ୍ୟ ହୋଇ ପଡ଼ୁଥିଲା ।

ଚିଠିପତ୍ରଗୁଡ଼ିକ ଯଥାମତ ବିଳମ୍ବ ହେଉଥିଲେ ମଧ୍ୟ ଖବରକାଗଜଗୁଡ଼ିକରୁ ଇନ୍ଦିରା ଭାରତର ସ୍ୱାଧୀନତା ସଂଗ୍ରାମର ଅଗ୍ରଗତି ସମ୍ବନ୍ଧରେ ଖବର ଜାଣିବା ଲାଗି ସଚେତନ ଥିଲେ । କଂଗ୍ରେସର ସ୍ୱେଚ୍ଛାସେବକମାନେ—ବିନୋବା ଭାବେ, ପଣ୍ଡିତ ନେହେରୁଙ୍କ ପରେ ଅନ୍ୟମାନେ ଜଣ ଜଣ କରି ବ୍ୟକ୍ତିଗତ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରୁଥିବା ଯୋଗୁଁ ଜେଲ୍‌କୁ ଯାଉଥିବା ଖବରରେ ତାଙ୍କ ମନ ମଧ୍ୟ ଆନ୍ଦୋଳିତ ହୋଇ ଉଠୁଥିଲା । ସେ ମଧ୍ୟ କିପରି ବ୍ୟକ୍ତିଗତ ସତ୍ୟାଗ୍ରହରେ ଭାଗ ନେବେ ସେଥିପାଇଁ ବ୍ୟାକୁଳ ହୋଇ ଉଠିଥିଲେ; କାରଣ ସେତେବେଳକୁ ସେ କଂଗ୍ରେସର ସଭ୍ୟା ହୋଇ ସାରିଥିଲେ । ତେଣୁ ସେ ଜନନୀ ଜନ୍ମଭୂମିର ଶୃଙ୍ଖଳମୁକ୍ତ କରିବାରେ ନିଜକୁ ଝାସ ଦେବାପାଇଁ ନିଷ୍ପତ୍ତି ନେଇଥିଲେ ।

ଇନ୍ଦିରାଙ୍କ ସେ ନିଷ୍ପତ୍ତିର ଆଭାସ ପାଇବା ପରେ ପରେ ତାଙ୍କ ପିଉସୀ କୃଷ୍ଣା ଆନନ୍ଦିତ ହୋଇଥିଲେ । ତତ୍ ସଙ୍ଗେ ସଙ୍ଗେ ସେ ମ୍ରିୟମାଣ ହୋଇଯାଇଥିଲେ ଯେତେବେଳେ ଜାଣିବାକୁ ପାଇଥିଲେ ଯେ ଇନ୍ଦିରା ସ୍ୱିଜରଲାଣ୍ଡ ଚିକିତ୍ସାଳୟରୁ ଉଡ଼ାଜାହାଜ ଯୋଗେ ଭାରତ ଆସିବାପାଇଁ ଇଚ୍ଛା କରୁଥିଲେ । କାରଣ ପୃଥିବୀରେ ଯେଉଁ ଭୟାନକ ଯୁଦ୍ଧର ସୂତ୍ରପାତ ହୋଇଥିଲା ସେ ପରିସ୍ଥିତିରେ ଉଡ଼ାଜାହାଜରେ ଯିବା ଆଦୌ ନିରାପଦ ନ ଥିଲା । କେଉଁ ମୁହୂର୍ତ୍ତରେ କି ପ୍ରକାର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିପାରେ ତାହା କଳ୍ପନା କରିବା ସମ୍ଭବ ନ ଥିଲା । ତଥାପି ଇନ୍ଦିରା ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରୁଥିବା ଖବର କୃଷ୍ଣା ଜଣାଇ ଦେଇଥିଲେ ତାଙ୍କ ଭାଇ ଜବାହରଲାଲଙ୍କୁ ପତ୍ରଦ୍ୱାରା । ଜବାହରଲାଲ ସେତେବେଳେ ଜେଲ୍‌ରେ ଥିଲେ । ସେ ଖବରରେ ଜବାହରଲାଲ ମଧ୍ୟ ଖୁସି ହୋଇ ଯାଇଥିଲେ । ତାଙ୍କର ମତ ଥିଲା— ଏ ପାର୍ଥିବ ପୃଥିବୀରେ ପ୍ରତି ପାଦ ଆଗେଇ ଚାଲିବା ବେଳେ ଆପଦ ବିପଦ ବିଭିନ୍ନ ପ୍ରକାରର ପ୍ରତିବନ୍ଧକ ସୃଷ୍ଟି କରିଥାଏ । ଭାରତରେ ମଧ୍ୟ ସେମିତି ଜୀବନ ନିର୍ବାହ ଲାଗି ଆପଦ ବିପଦ ଭରି ରହିଛି । ତେବେ ସୁଦୂର ବିଦେଶରେ ନିକାଞ୍ଚନରେ କାଳାତିପାତ କରିବା ଅପେକ୍ଷା ଭାରତର ବିପଦସଙ୍କୁଳ ପରିସ୍ଥିତିର ସମ୍ମୁଖୀନ ହେବା ଶ୍ରେୟସ୍କର । ତେଣୁ କୃଷ୍ଣାଙ୍କୁ ଜବାହରଲାଲ ତାଙ୍କ କନ୍ୟା ଇନ୍ଦିରା ଭାରତକୁ ଫେରି ଆସି ପରିସ୍ଥିତିର ମୁକାବିଲା କରି ପରିଣତି ଭୋଗ କରିବା ସପକ୍ଷରେ ଉତ୍ତର ଦେଇଥିଲେ । ସେ ଲେଖିଥିଲେ, **"I am glad, Indu has decided to return. There are all manners of risks and dangers, of course, but it is better to face them than to feel isolated and miserable. If she wants to return, she must do so and take the consequences." ***

ଇନ୍ଦିରା ଭାରତ ଫେରି ଆସିବା ଲାଗି ଶେଷ ନିଷ୍ପତ୍ତି ଗ୍ରହଣ କରିଥିଲେ । କିନ୍ତୁ ପୂର୍ବ ପରିକଳ୍ପିତ ଯୋଜନା ଅନୁଯାୟୀ ଉଡ଼ାଜାହାଜରେ ନ ଆସି ଯାତ୍ରା ଆରମ୍ଭ କରିଥିଲେ ଜଳପଥରେ । ୧୯୪୧ ମସିହାରେ ସୁଏଜ କେନାଲ ଖୋଲା ହୋଇ ନ ଥିବା ଯୋଗୁଁ ଲଣ୍ଡନରୁ ବମ୍ବେ ଆସିବାକୁ ହେଲେ ସେଇ ପୁରାତନ ରାସ୍ତା ଉତ୍ତମାଶା ଅନ୍ତରୀପ ଦେଇ ଜାହାଜଗୁଡ଼ିକୁ ଆସିବାକୁ ହେଉଥିଲା । ତାଙ୍କ ସାଥିରେ ଥିଲେ ଦୁଇ ଜଣ ଭାରତୀୟ ଯୁବକ—ନେହେରୁ ପରିବାର ସହିତ ଅତି ଘନିଷ୍ଠ ଭାବେ ବାଲ୍ୟ ଜୀବନରୁ ପରିଚିତ ତଥା ଭବିଷ୍ୟତ ଜୀବନର ଅର୍ଦ୍ଧାଙ୍ଗ ଫିରୋଜ ଗାନ୍ଧୀ ଓ ଇଂଲଣ୍ଡରେ ଶିକ୍ଷା ସମାପ୍ତ କରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରୁଥିବା ଭୂପେଶ ଗୁପ୍ତ ।

* Krishna Hathee Sing—With no Regrets.

**ଡର୍ବାନ୍‌ରେ ସାତ ଦିନ :—**

ଆକାଶପଥ ଭଳି ସେତେବେଳେ ଜଳପଥରେ ମଧ୍ୟ ବିପଦର ସମ୍ଭାବନା କମ୍ ନ ଥିଲା । ବିଶେଷ କରି ହିଟଲରଙ୍କ ନୌବାହିନୀ ଜଳଯାତ୍ରୀମାନଙ୍କୁ ଅତ୍ୟନ୍ତ ଭୟଭୀତ କରାଇଥିଲା । ତେଣୁ ଯାତ୍ରୀବାହୀ ଜାହାଜଗୁଡ଼ିକୁ ଖୁବ୍ ସାବଧାନତାର ସହିତ ଯାତ୍ରା କରିବାକୁ ପଡ଼ୁଥିଲା । ମଝିରେ ମଝିରେ ବିଭିନ୍ନ ସ୍ଥାନରେ ଜାହାଜକୁ ଦିନେ ଓ଼ଳଏ ନଙ୍ଗର ପକାଇ ମଧ୍ୟ ରହିବାକୁ ପଡ଼ୁଥିଲା । ଦକ୍ଷିଣ ଆଫ୍ରିକା ଉପକୂଳରେ ଇନ୍ଦିରା ଓ ଅନ୍ୟ ଯାତ୍ରୀମାନଙ୍କୁ ବହନ କରି ନେଉଥିବା ଜାହାଜଟି ଅଧିକ କାଳ ଅଟକ ରହିଥିଲା ଅନାଗତ ବିପଦର ସମ୍ଭାବନା ପାଇ । ବିଶେଷକରି ଡର୍ବାନ୍ (Durban)ରେ ସେହି ଜାହାଜଟି ଦୀର୍ଘ ଏକ ସପ୍ତାହ କାଳ ରହିବାକୁ ବାଧ୍ୟ ହୋଇଥିଲା ପରିସ୍ଥିତିର ତାଡ଼ନାରେ ।

ଡର୍ବାନ୍‌ରେ ରହିବା ସମୟ ମଧ୍ୟରେ ସେଠାରେ ବସବାସ କରି ରହିଥିବା ଭାରତୀୟମାନେ ଇନ୍ଦିରାଙ୍କୁ ଏକ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ ଓ ଭାରତର ଅପ୍ରତିଦ୍ୱନ୍ଦୀ ଜନନେତା ପଣ୍ଡିତ ନେହେରୁଙ୍କ କନ୍ୟା ଇନ୍ଦିରାଙ୍କ ମୁହଁରୁ ଦୁଇ ପଦ କଥା ଶୁଣିବା ଲାଗି ଅନୁରୋଧ କରିଥିଲେ । ଲଜ୍ଜାଶୀଳା ଇନ୍ଦିରା କହିଥିଲେ ଯେ, ସେ ଭାଷଣ ଦେଇ ଜାଣନ୍ତି ନାହିଁ; ତେଣୁ ସେ କିଛି କହିପାରିବେ ନାହିଁ । କିନ୍ତୁ ସେମାନେ ଚାହିଁଥିଲେ ଅନ୍ତତଃ ଦୁଇମିନିଟ୍ ପାଇଁ ସେ କିଛି କହନ୍ତୁ । ସେଥିରେ ବି ଇନ୍ଦିରା ସମ୍ମତ ନ ହୋଇ କହିଥିଲେ, "I cannot speak and I will not speak." ତଥାପି ସେମାନେ ସେଥିରେ ସମ୍ମତ ନ ହୋଇ କହିଥିଲେ, ଅନ୍ତତଃ ପକ୍ଷେ ସେ ସଭାମଞ୍ଚ ଉପରକୁ ଉଠି କେବଳ ଦୁଇଟି ଶବ୍ଦ "Thank you"—ଧନ୍ୟବାଦ କହିବେ । ସଙ୍ଗଠକମାନେ ସେ ଅନୁରୋଧ କରିବା ମୂଳରେ ଥିଲା—ସେଠାରେ ଥିବା ସମସ୍ତ ଭାରତୀୟ କପରି କୁମାରୀ ଇନ୍ଦିରା ନେହେରୁଙ୍କୁ ଅନ୍ତତଃ ଥରେ ଭଲ କରି ଦେଖିପାରିବେ । *

ଇନ୍ଦିରା ସମ୍ବର୍ଦ୍ଧନା ସଭାର ନିର୍ଦ୍ଦିଷ୍ଟ ସମୟ ଆଗରୁ ଫିରୋଜ ଓ ଭୂପେଶ ଗୁପ୍ତଙ୍କ ସହିତ ଡର୍ବାନ୍ ସହର ପରିଭ୍ରମଣ କରିବା ଲାଗି ବାହାରିଥିଲେ । ସେତିକିବେଳେ ସେ ଦେଖିଥିଲେ ସେଠାକାର 'କଳା ଅଧିବାସୀ' ଭାରତୀୟମାନଙ୍କ ଦୁଃଖ, ଚରମ ନିର୍ଯାତନା—ଗୋରା ଶାସକମାନଙ୍କ ଅତ୍ୟାଚାରର ପ୍ରତ୍ୟକ୍ଷ ପ୍ରମାଣ । ସେଥିରେ ତାଙ୍କ ହୃଦୟ ବିଗଳିତ ହୋଇ ପଡ଼ିଥିଲା । ସେମାନଙ୍କ ଦୁଃଖ ଇନ୍ଦିରାଙ୍କ ଅନ୍ତରରେ ଏକ ଅଶାନ୍ତ ଝଡ଼ ସୃଷ୍ଟି କରିଥିଲା । ସମବେଦନାରେ ଅନ୍ତର ପୂରି ଉଠିଥିଲା ।

---

* Return of the red rose—P.-87

ନଗର ପରିଭ୍ରମଣ କରିସାରିବା ପରେ ଯେତେବେଳେ ଠିକ୍ ସମୟରେ ସାଇ ସଭାସ୍ଥଳରେ ପହଞ୍ଚିଥିଲେ, ସେମାନଙ୍କୁ ପୁଷ୍ପମାଳ୍ୟ ଦେଇ ବିପୁଳ ସମ୍ବର୍ଦ୍ଧନା ସହିତ ପାଚ୍ଛେଟି ନିଆଯାଇଥିଲା । ପାରମ୍ପରିକ ଭାବରେ ସେ ସଭାର ସଭାପତି ସ୍ୱାଗତ ଅଭିଭାଷଣ ଜଣାଇ ସମବେତ ଜନତାକୁ ଇନ୍ଦିରାଙ୍କ ସହିତ ପରିଚିତ କରାଇଦେବା ସଙ୍ଗେ ସଙ୍ଗେ ଘୋଷଣା କରିଥିଲେ ଯେ ଇନ୍ଦିରା ସେମାନଙ୍କୁ କିଛି ଶୁଣାଇବେ ନାହିଁ ।

କିନ୍ତୁ ଇନ୍ଦିରାଙ୍କ ମନ ଭିତରେ ନିଷ୍ପେଷିତ ଜନତାପାଇଁ ଯେଉଁ ସମବେଦନାର ଜୁଆର ଉଠିଥିଲା, ସମବେତ ନେତୃମଣ୍ଡଳୀଙ୍କ ଦେହରେ ହିଁ ତାହା ଭାଙ୍ଗି ଭାଙ୍ଗିଥିଲା । କୁମାରୀ ଇନ୍ଦିରା ନେହେରୁ କିଛି ନ କହିବା ଲାଗି ପୂର୍ବରୁ ସ୍ଥିର କରିଥିଲେ ମଧ୍ୟ ସଭାମଞ୍ଚ ଉପରେ ସ୍ୱାଭାବିକ ଭାଷଣ ଦେବା ଆରମ୍ଭ କରି ଦେଇଥିଲେ । ସେ ଭାଷଣରେ ଭାଷାର ପ୍ରାଚୁର୍ଯ୍ୟ ଥାଉ ବା ନ ଥାଉ, ସେ ଥିଲା ତାଙ୍କ ମନର କଥା— ଅନ୍ତରତଳର କଥା । ସେ ସଭାରେ ଥିବା ଦକ୍ଷିଣ ଭାରତୀୟ ତଥା କଳା ଲୋକମାନଙ୍କ ଉପରେ ଗୋରା ଶାସକମାନଙ୍କ ଅତ୍ୟାଚାର ବିରୁଦ୍ଧରେ ବିଷୋଦ୍‌ଗାର । ଯିହୁଦୀମାନଙ୍କ ଉପରେ ହିଟଲରଙ୍କ ଅତ୍ୟାଚାର ସହିତ ଆଫ୍ରିକାର ଅଧିବାସୀମାନଙ୍କ ଉପରେ ସେଠାରେ ଇଂରେଜ ଶାସନର ସେ ତୁଳନା କରିଥିଲେ । ସେଠାରେ ଭାଷଣ ଦେଇ ଅତି ନିର୍ଭୀକ ଭାବରେ ସେ ଘୋଷଣା କରିଥିଲେ ଯେ ପ୍ରତ୍ୟେକ ଦେଶ ସେ ଦେଶର ଜନସାଧାରଣଙ୍କର ଓ ଜନସାଧାରଣଙ୍କପାଇଁ । ଆଫ୍ରିକା କେବଳ ଆଫ୍ରିକା ଦେଶର ଜନସାଧାରଣଙ୍କପାଇଁ; ତେଣୁ ଦିନେ ନା ଦିନେ ସେଠାକାର ଜନତା ସେମାନଙ୍କ ଶାସନ ଦାୟିତ୍ୱ ନିଜେ ଗ୍ରହଣ କରିବେ । ଦିନେ ନା ଦିନେ ଗୋରା ଶାସକମାନେ ସେ ଦେଶ ତ୍ୟାଗ କରି ଚାଲିଯିବାକୁ ବାଧ୍ୟ ହେବେ ।

ସେ ପ୍ରକାର ଭାଷଣ କୁମାରୀ ଇନ୍ଦିରା ନେହେରୁଙ୍କଠାରୁ ଶୁଣିବେ ବୋଲି କେହି ଆଶା କରି ନ ଥିଲେ । ଏଥିରେ ଅନେକ ବିଚଳିତ ତଥା କ୍ରୋଧାନ୍ୱିତ ମଧ୍ୟ ହୋଇଥିଲେ । କିନ୍ତୁ ତାହା ହିଁ ଥିଲା ଲଜ୍ଜାଶୀଳା ଇନ୍ଦିରାଙ୍କ ପ୍ରଥମ ଭାଷଣ । ତାହାକୁ ହିଁ ପ୍ରଥମ ରାଜନୈତିକ ଭାଷଣ ହିସାବରେ ଧରି ନିଆଯାଇପାରେ । କିନ୍ତୁ ସେ ସଭା ପରେ ପରେ ଡର୍ବାନ୍‌ରେ ଆହୁରି କିଛିଦିନ ଧରି ସେମାନେ ରହିଥିଲେ ମଧ୍ୟ ଆଉ କୌଣସି ସଭାରେ ଯୋଗ ଦେବାପାଇଁ ନିମନ୍ତ୍ରଣ ଆସି ନ ଥିଲା ।

ଡର୍ବାନ୍‌ରେ ସାତ ଦିନ ରହିବା ପରେ ସେହି ଉଦ୍‌ବେଳିତ ପରିସ୍ଥିତି ଭିତରେ ଇନ୍ଦିରା ଭାରତ ଭୂମିରେ ପ୍ରବେଶ କରିଥିଲେ । ଆନନ୍ଦ ଉଲ୍ଲାସରେ ମନ ତାଙ୍କର ଫାଟି ପଡ଼ୁଥିଲା; କାରଣ କଂଗ୍ରେସର ଜଣେ ସଭ୍ୟା ଭାବରେ ସେ ଏଣିକି ଦେଶର

ସେବା କରିପାରିବେ । ତେବେ ସେଇଠି ହିଁ ତାଙ୍କର ଡିଗ୍ରୀ ଜୀବନର ସମାପ୍ତି ଘଟିଥିଲା । ତାପରେ ଆଉ ସେ କୌଣସି ବିଶ୍ୱବିଦ୍ୟାଳୟରେ ପାଦ ଦେଇ ନ ଥିଲେ ।

ମଣିଷ କେବଳ ବିଶ୍ୱବିଦ୍ୟାଳୟରୁ ହିଁ ଉଚ୍ଚତମ ଡିଗ୍ରୀ ହାସଲ କରିପାରିଲେ ଶିକ୍ଷିତ ବା ଯୋଗ୍ୟ ବ୍ୟକ୍ତି ହିସାବରେ ପରିଗଣିତ ହୁଏ ନାହିଁ ଅଥବା ତାର ଶିକ୍ଷା ପରିସମାପ୍ତ ହେଲା ବୋଲି କୁହାଯାଇ ପାରିବ ନାହିଁ । ସେଥିପାଇଁ ଦରକାର ବାସ୍ତବ ଅଭିଜ୍ଞତା । ଇଏଡିସ୍ କୌଣସି ଶିକ୍ଷାଗତ ଯୋଗ୍ୟତା ସମ୍ପର୍କରେ ପଦବୀ ବା ପ୍ରମାଣପତ୍ର ପାଇ ନ ଥିଲେ ମଧ୍ୟ ବିଭିନ୍ନ ଦେଶ ପରିଭ୍ରମଣ କରି ବିଭିନ୍ନ ବିଷୟରେ ଜ୍ଞାନ ଆହରଣ କରିବା ସଙ୍ଗେ ସଙ୍ଗେ ପୃଥିବୀର ବିଶିଷ୍ଟ ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଅନେକଥର ଆସିଥିଲେ । ପିତାଙ୍କଙ୍କ ଲାଇବ୍ରେରୀରେ ବିଭିନ୍ନ ପୁସ୍ତକ ଭରି ରହିଥିଲା ଜ୍ଞାନାର୍ଜନ ପାଇଁ । ସେଇଥିଯୋଗୁଁ ହିଁ ଅଗାଧ ଅନୁଭୂତି ତଥା ଅସାଧାରଣ ଜ୍ଞାନ ଅର୍ଜନ କରିବା ତାହାଙ୍କପାଇଁ ସମ୍ଭବପର ହୋଇପାରିଥିଲା ।

□□□

॥ ନଅ ॥

# ମଧୁମୟ ଯୌବନ, ଝଞ୍ଜା ଓ ଝଙ୍କାର



ଇଉରୋପରୁ ଫେରିବା ପରେ ୧୯୪୧ ମସିହାରେ ଭାରତୀୟ ସ୍ୱତନ୍ତ୍ରତା ସଂଗ୍ରାମର ଏକ ଉତ୍ସାହୀ ସୈନିକ ରୂପେ ନିଜକୁ ସମ୍ପୂର୍ଣ୍ଣ ରୂପେ ନିୟୋଜିତ କରିଥିଲେ ଶ୍ରୀମତୀ ଗାନ୍ଧୀ । ମାତାଙ୍କ ବିଚ୍ଛେଦର ଦୁଃଖ ବୋଧହୁଏ ଭୁଲି ଯାଇଥିଲେ ଦେଶମାତୃକାର ସେବାରେ ନିଜକୁ ନିୟୋଜିତ କରିଦେବା ପରେ ପରେ ।

**ଇନ୍ଦିରା ଓ ଫିରୋଜ :—**

ମଣିଷ ଉପରେ ପରିବେଶର ପ୍ରଭାବ, ପିତାମାତାଙ୍କର ପ୍ରଭାବ, ଗୁରୁଜନମାନଙ୍କର ପ୍ରଭାବ, ଅନ୍ୟାନ୍ୟ ବିଶିଷ୍ଟ ଚିନ୍ତାବିତ୍‌ଙ୍କର ପ୍ରଭାବ ପରି ବୟସର ପ୍ରଭାବ ମଧ୍ୟ ସ୍ପଷ୍ଟ ବାରି ହୁଏ ଏବଂ ସେ ପ୍ରଭାବ ସବୁଠାରୁ ବେଶୀ ପ୍ରଭାବଶାଳୀ । ୧୯୪୧ ମସିହାରେ ୟୁରୋପରୁ ଫେରିବା ବେଳକୁ ଇନ୍ଦିରାଙ୍କ ବୟସ ହୋଇଥିଲା ପ୍ରାୟ ୨୪ ବର୍ଷ । ଚବିଶ ବର୍ଷ ବୟସ୍କା ଇନ୍ଦିରାଙ୍କ ଉପରେ ଯୌବନର ପ୍ରଭାବ ସ୍ପଷ୍ଟ ପ୍ରତିଫଳିତ ହୋଇଥିଲା । ତାର କିଛିଦିନ ପୂର୍ବରୁ ଫିରୋଜ ଗାନ୍ଧୀଙ୍କ ସହିତ ବିବାହ କରିବା ଲାଗି ସେ ସ୍ଥିର କରିଥିଲେ ।

ଅନେକ ଦିନ ପର୍ଯ୍ୟନ୍ତ ସେ ସ୍ଥିର କରିଥିଲେ ବିବାହ କରିବେ ନାହିଁ ଏବଂ ତାଙ୍କର ସମସ୍ତ ଶକ୍ତି ଦେଶମାତୃକାର ସେବାରେ ହିଁ ବ୍ୟୟିତ କରିବେ । କିନ୍ତୁ ଯୌବନ ତାଙ୍କୁ ତାର କାଉଁରିକାଠିର ସ୍ପର୍ଶ ଦେଇ ଯେଉଁ ଝଙ୍କାର ସୃଷ୍ଟି କରିଥିଲା, ସେଥିରେ ନିଜକୁ ଭୁଲି ଯାଇଥିଲେ କୁମାରୀ ଇନ୍ଦିରା । ସ୍ୱାମୀସଂଯୋଗ ପାଇବାଠାରୁ ସନ୍ତାନର ଜନନୀ ହେବାଲାଗି ଆକାଂକ୍ଷା ତାଙ୍କର ବଳବତ୍ତର ହୋଇଥିଲା । କିନ୍ତୁ ଡାକ୍ତର ତାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ମତ ଦେଇଥିଲେ ଯେ ସନ୍ତାନସନ୍ତତି ଏପରି କି ଗୋଟିଏ ମଧ୍ୟ ସନ୍ତାନ ତାଙ୍କ ସ୍ୱାସ୍ଥ୍ୟ ପକ୍ଷେ ଅତ୍ୟନ୍ତ କ୍ଷତିକାରକ ହେବ । ତାହାର ମୂଳ କାରଣ ଥିଲା ଯୌବନାବସ୍ଥାରେ ଇନ୍ଦିରା ଥିଲେ ଅତ୍ୟନ୍ତ ରୋଗିଣୀ । ଡାକ୍ତରମାନେ ସେ କଥା କହି ନ ଥିଲେ ହୁଏତ ସେ ବିବାହ କରି ନ ଥାନ୍ତେ । ଆମେରିକାର

ଜଣେ ସାମ୍ବାଦିକଙ୍କ ସହିତ ସାକ୍ଷାତକାରରେ ସେ ସମ୍ପର୍କୀୟ ଏକ ପ୍ରଶ୍ନର ଉତ୍ତର ଦେଇ ଶ୍ରୀମତୀ ଗାନ୍ଧୀ କହିଥିଲେ, "I felt that India was not free and that I should give all my energies to India, At 18, however, I was already changing my mind a little. Not because I wanted a husband but because I wanted to have children........And I will tell you more, doctors did not want me to have even one. I had been very ill in my adolescence and they said that having children would be fatal to me. Had they not said this I might not have married. But the diagnosis infuriated me." *

ଇନ୍ଦିରା ସ୍ତ୍ରୀ ହିସାବରେ ସ୍ୱାମୀଙ୍କ ପ୍ରତି ଅତ୍ୟନ୍ତ ଅନୁଗତା ଥିଲେ । ସ୍ୱାମୀ ଫିରୋଜ ଚାହିଁଥିଲେ ତାଙ୍କର ମାତ୍ର ଦୁଇଟି ସନ୍ତାନ ହେଉ; ତେଣୁ ସ୍ୱାମୀଙ୍କର ସେ ଇଚ୍ଛାରେ ପ୍ରତିବନ୍ଧକ ସୃଷ୍ଟି କରି ନ ଥିଲେ ଇନ୍ଦିରା ।

ଫିରୋଜ ଗାନ୍ଧି ଥିଲେ ଜଣେ ପାର୍ସୀ ଯୁବକ । କିନ୍ତୁ ତାଙ୍କର ଜନ୍ମ ୧୯୧୨ ମସିହାରେ ବମ୍ବେ ନଗରରେ ହୋଇଥିଲା । ଫିରୋଜଙ୍କ ପିତାମାତା ଆହ୍ଲାବାଦରେ ନେହେରୁ ପରିବାରର ବାସସ୍ଥାନ ଆନନ୍ଦ ଭବନ ନିକଟରେ ହିଁ ରହୁଥିଲେ । ବାଲ୍ୟାବସ୍ଥାରେ ବେଳେବେଳେ ପ୍ରିୟଦର୍ଶିନୀ ଇନ୍ଦିରା ଓ ଫିରୋଜ ଏକା ସଙ୍ଗେ ଖେଳାଖେଳି କରୁଥିଲେ । ନେହେରୁ ପରିବାର ତଥା ମୋତିଲାଲଙ୍କ ସମ୍ପର୍କରେ ଆସିବା ପରେ ଫିରୋଜ ମଧ୍ୟ ଭାରତର ସ୍ୱତନ୍ତ୍ରତା ଆନ୍ଦୋଳନରେ ଅଂଶ ଗ୍ରହଣ କରିବା ଆରମ୍ଭ କରି ଦେଇଥିଲେ । ଅନେକ ସମୟରେ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟ କରିବାପାଇଁ ସେ ଆଗ୍ରହ ପ୍ରକାଶ କରୁଥିଲେ । ତାଙ୍କର ସେବାବୃତ୍ତି ମନୋଭାବ ତଥା ଚିନ୍ତନଶୀଳତା ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲା ।

ଇଉରୋପରେ କମଳା ନେହେରୁ ଚିକିତ୍ସିତ ହେଉଥିବା ବେଳେ ଇନ୍ଦିରା ତାଙ୍କର ସେବା ଶୁଶ୍ରୂଷା କରିବା ପାଇଁ ସେଠାକୁ ଯାଇଥିଲେ । ସେତେବେଳକୁ ଫିରୋଜ ଗାନ୍ଧୀ ତାଙ୍କର ଅଧ୍ୟୟନ କଥା ଭୁଲିଯାଇ କମଳାଙ୍କ ସେବା କରିବାପାଇଁ ଇନ୍ଦିରାଙ୍କୁ ସାହାଯ୍ୟ କରିବାରେ ଅଧିକାଂଶ ସମୟ ସେଠାରେ ଉପସ୍ଥିତ ରହୁଥିଲେ ।

ଏ ପ୍ରକାର ପରିସ୍ଥିତି ଭିତରେ ଇନ୍ଦିରା ଓ ଫିରୋଜଙ୍କ ମଧ୍ୟରେ ସ୍ୱାଭାବିକ ସମ୍ବନ୍ଧ ପ୍ରତିଷ୍ଠିତ ହେବା ଏକ ସାଧାରଣ କଥା । ବିଶେଷ କରି କମଳା ଫିରୋଜଙ୍କୁ

* Interview with Oriana Failaci—Hindustan Standard of June 5th, 1973.

ଭଲ ପାଉଥିଲେ ଏବଂ ପୁତ୍ର ତୁଲ୍ୟ ମନେ କରୁଥିଲେ ଓ ସ୍ନେହ କରୁଥିଲେ । ସେଥିପାଇଁ ଗାନ୍ଧିଜୀ ମତ ଦେଇଥିଲେ, "ଫିରୋଜ ପୀଡ଼ିତା କମଳା ନେହେରୁଙ୍କର ଅନେକ ସେବା କରିଥିଲେ ଏବଂ ସେ ଏହାଙ୍କୁ ପୁତ୍ର ଭଳି ସ୍ନେହ କରୁଥିଲେ ।" * ସ୍ୱିଜରଲାଣ୍ଡ ଚିକିତ୍ସାଳୟରେ ଯେତେବେଳେ କମଳାଙ୍କ ମୃତ୍ୟୁ ହୋଇଥିଲା, ସେତେ-ବେଳକୁ ତାହାଙ୍କ ମୃତ୍ୟୁଶଯ୍ୟା ନିକଟରେ ଉପସ୍ଥିତ ଥିଲେ ଇନ୍ଦିରା ଓ ଫିରୋଜ ।

ଲଣ୍ଡନ "ସ୍କୁଲ ଅଫ୍ ଇକନମିକ୍ସ"ରୁ ଫିରୋଜ ସ୍ନାତକ ପରୀକ୍ଷାରେ ପାସ୍ କରିଥିଲେ । ତାପରେ ଅଳ୍ପ ସମୟ ପାଇଁ "ଇନର ଟେମ୍ପଲ"ରେ ଅଧ୍ୟୟନ କରିଥିଲେ ।

ଭି. କେ. କୃଷ୍ଣମେନନ୍‌ଙ୍କ ନେତୃତ୍ୱରେ ପରିଚାଳିତ "ଇଣ୍ଡିଆ ଲିଗ୍" ପାଇଁ ଇନ୍ଦିରା ଓ ଫିରୋଜ ଏକାସଙ୍ଗେ କର୍ତ୍ତବ୍ୟ ଲାଗି କାର୍ଯ୍ୟ କରିଥିଲେ । ତାପରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଭିତରେ ୧୯୪୧ ମସିହାରେ ଉଭୟେ ଏକାଠି ବିପଦସଙ୍କୁଳ ଜଳପଥରେ ଆହ୍ଲାବାଦ ଫେରି ଆସିଥିଲେ ।

**ବିବାହବନ୍ଧନରେ ବାଧା :—**

ଫିରୋଜଙ୍କୁ ବିବାହ କରିବା ପ୍ରସ୍ତାବ ଓ ନିଷ୍ପତ୍ତି ନିଜେ ହିଁ ନେଇଥିଲେ ସେ । ପ୍ରସ୍ତାବର ବିରୋଧ ଖୁବ୍ ପ୍ରବଳ ଭାବରେ ହୋଇଥିଲା । ସମଗ୍ର ଦେଶର ବିଭିନ୍ନ ପ୍ରାନ୍ତରୁ ଲୋକେ ବିରୋଧ କରିଥିଲେ । ସେ ପ୍ରସ୍ତାବରେ ଦେଶବାସୀ ବିରୋଧ ମତପୋଷଣ କରିବା ମୂଳରେ ଉଭୟଙ୍କ ଧର୍ମ ଥିଲା ଭିନ୍ନ ଭିନ୍ନ । ସେ ତାଙ୍କ ନିଜ ବିବାହ ସମ୍ପର୍କରେ ନିଜ ମତ ଦେଇ ଜଣେ ପୃଥିବୀ ବିଖ୍ୟାତ ସାମ୍ବାଦିକ ଓରିଆନା ଫାଲସିଙ୍କ ସହିତ ସାକ୍ଷାତକାର ବେଳେ କହିଥିଲେ, "ସେଭଳି ବିବାହ କେହି ଜଣେ ମଧ୍ୟ ଗ୍ରହି ନ ଥିଲେ । ସାରା ଭାରତବାସୀ ଆମ୍ଭମାନଙ୍କ ବିବାହ ପ୍ରସ୍ତାବର ବିରୋଧୀ ଥିଲେ । ତାର କାରଣ ଥିଲା ମୋ ସ୍ୱାମୀ ଥିଲେ ଅନ୍ୟ ଧର୍ମ ସମ୍ପ୍ରଦାୟ ଭୁକ୍ତ । ସେ ଥିଲେ ଜଣେ ପାର୍ଶି । ସେମାନେ ଆମକୁ ହତ୍ୟା କରିବାପାଇଁ ମଧ୍ୟ ଧମକ ଦେଇ-ଥିଲେ । କିନ୍ତୁ ଥରେ ଗୋଟିଏ ଭାବନା ମୋ ମନକୁ ଗ୍ରାସ କରିନେଲେ ମୁଁ ତାହାକୁ ନିଷ୍ଠିତଭାବେ କାର୍ଯ୍ୟକାରୀ କରେ ଏବଂ କାହାରି କଥାରେ ବିଚଳିତ ହୁଏ ନାହିଁ ।"**

ସେ ପ୍ରସ୍ତାବ ଉପରେ ସ୍ୱୟଂ ଜବାହରଲାଲ୍ ମଧ୍ୟ ଆସ୍ଥା ସ୍ଥାପନ କରିପାରି ନ ଥିଲେ । କାରଣ ତାଙ୍କ କନ୍ୟା ଇନ୍ଦିରା ଓ ଯୁବକ ଫିରୋଜ ଉଭୟଙ୍କର ପୃଷ୍ଠଭୂମି ଭିତରେ ଅନେକ ତଫାତ୍ ଥିଲା । ପୁନଶ୍ଚ ଇନ୍ଦିରାଙ୍କ ଜୀବନନିର୍ବାହ ଲାଗି ଆବଶ୍ୟକ

* ଅରୁଣକୁମାରଙ୍କ ଲିଖିତ ହିନ୍ଦି ପୁସ୍ତକ "ଇନ୍ଦିରାଗାନ୍ଧୀ" ଦ୍ରଷ୍ଟବ୍ୟ ।
** Hindusthan Standard—June 5th, 1973-p-7.

ସମ୍ବଳ ଯେ ଫିରୋଜ ଅର୍ଜନ କରିପାରିବେ ସେ ବିଷୟରେ ମଧ୍ୟ ଜଣେ କନ୍ୟାପିତା ଭାବେ ସେ ସନ୍ଦିହାନ ଥିଲେ । ତେବେ ସେ ସମସ୍ତ ବିଷୟ ଚିନ୍ତା କରିବା ଲାଗି ଇନ୍ଦିରାଙ୍କ ବୟସ ହୋଇସାରିଥିଲା । ତେଣୁ ସେ ନିଜ ଇଚ୍ଛା ତାଙ୍କ କନ୍ୟା ଇନ୍ଦିରାଙ୍କ ଉପରେ ଲଦିଦେବାପାଇଁ ପସନ୍ଦ କରି ନ ଥିଲେ । ପ୍ରିୟଦର୍ଶିନୀ ଇନ୍ଦିରା ଯେଉଁ କାର୍ଯ୍ୟ କରିବାପାଇଁ ଉଚିତ ବୋଲି ମନେ କରୁଥିଲେ ତାହା କରିବାକୁ ଦେବାପାଇଁ ଜବାହରଲାଲ ସବୁବେଳେ ପସନ୍ଦ କରୁଥିଲେ । ପ୍ରଧାନ କଥା ଥିଲା, ବାଲ୍ୟାବସ୍ଥାରୁ ହିଁ ଚିନ୍ତା ଓ କାର୍ଯ୍ୟକଳାପରେ ମୌଳିକତା ରକ୍ଷା କରିପାରିବା ସଙ୍ଗେ ସଙ୍ଗେ ଆତ୍ମ-ନିର୍ଭରଶୀଳ ହୋଇ ରହିବା ପାଇଁ ପିତା ନେହେରୁ କନ୍ୟା ଇନ୍ଦିରାଙ୍କୁ ଯଥେଷ୍ଟ ପ୍ରେରଣା ଦେଇଥିଲେ । ସେ ପ୍ରେରଣାରେ ଇନ୍ଦୁ ଖୁବ୍ ଅନୁପ୍ରାଣିତ ମଧ୍ୟ ହୋଇଥିଲେ ।

ପଣ୍ଡିତ ନେହେରୁ 'ସ୍ୱାଧୀନତା' ଉପରେ ଅତ୍ୟନ୍ତ ଆସ୍ଥାବାନ୍ ଥିଲେ । ସେ ସ୍ୱାଧୀନତା ଦେଶପାଇଁ କେବଳ ରାଜନୈତିକ ସ୍ୱାଧୀନତା ଭିତରେ ହିଁ ଆବଦ୍ଧ ନ ଥିଲା; ପ୍ରସାରିତ ହୋଇଥିଲା ତାଙ୍କ କୁମାରୀ କନ୍ୟା ଇନ୍ଦିରାଙ୍କ ବ୍ୟକ୍ତିଗତ ସ୍ୱାଧୀନତା ପର୍ଯ୍ୟନ୍ତ । ନିଜ ମତକୁ କୌଣସି କାଳେ ବାଧ୍ୟବାଧକତା ଭାବେ ଇନ୍ଦିରାଙ୍କ ଉପରେ ସେ ଲଦି ଦେଇ ନ ଥିଲେ । ଶାନ୍ତିନିକେତନରେ ପଢ଼ିବାପାଇଁ ନିଜେ ଜବାହରଲାଲ ଇଚ୍ଛା କରିଥିଲେ ମଧ୍ୟ ଏବଂ କବିଗୁରୁ ରବୀନ୍ଦ୍ରନାଥଙ୍କ ପ୍ରତି ତାଙ୍କର ଗଭୀର ଆସ୍ଥା ଥିଲେ ମଧ୍ୟ ସେ ଇନ୍ଦିରାଙ୍କ ସହିତ କଥାବାର୍ତ୍ତା କରିବା ପରେ ହିଁ ଶେଷ ନିଷ୍ପତ୍ତି ଗ୍ରହଣ କରିଥିଲେ । ପିତା ନେହେରୁ ଚାହିଁଥିଲେ କନ୍ୟା ଇନ୍ଦିରା ଯେଉଁ କାର୍ଯ୍ୟ କରିବା ଉଚିତ ବୋଲି ମନେ କରୁଛ ସେ ତାହା କରୁ ।

**ପିତାଜୀଙ୍କ ଆଶୀର୍ବାଦ :—**

ଇନ୍ଦିରା ଓ ଫିରୋଜଙ୍କ ବିବାହ ପ୍ରସ୍ତାବ ବିରୋଧରେ ଅନେକ ବ୍ୟକ୍ତିଗତ ପତ୍ର ଜବାହରଲାଲଙ୍କ ନିକଟରେ ପହଞ୍ଚିଥିଲା ସାଧାରଣ ଜନତା, ରକ୍ଷଣଶୀଳ ହିନ୍ଦୁ ଓ ଅନେକ ଧର୍ମସଂସ୍ଥାମାନଙ୍କ ନିକଟରୁ । ନେହେରୁ ପରିବାରର ଅନ୍ୟତମ ଶୁଭାକାଂକ୍ଷୀ ମହାତ୍ମା ଗାନ୍ଧୀ ମଧ୍ୟ ସେ ସମ୍ପର୍କରେ ବହୁତ ପତ୍ର ପାଇଥିଲେ । ସେଥିରୁ କେତେକ ପତ୍ରରେ ସେ ପ୍ରକାର ବିବାହର ତୀବ୍ର ସମାଲୋଚନା କରାଯାଇ କଟୁ ମନ୍ତବ୍ୟମାନ ପ୍ରକାଶ କରାଯାଇଥିଲା । କେତେକ ଧମକପୂର୍ଣ୍ଣ ଚିଠି ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ନିକଟରେ ପହଞ୍ଚିଥିଲା । ଅନେକ ଚିଠିରେ ସିଲାସଲମ ଭାବରେ ତାହା ଏକ ଆଦର୍ଶବିହୀନ ବିବାହ ବୋଲି ମନ୍ତବ୍ୟ ପ୍ରକାଶ କରାଯାଇଥିଲା । ସେ ବିବାହ ସମ୍ବନ୍ଧରେ ଅନେକ ବାଦ-ବିସମ୍ବାଦ ସୃଷ୍ଟି ହୋଇଥିବାରୁ ସେ ଅପ୍ରୀତିକର ପରିସ୍ଥିତିର ସମାଧାନ କରିବା ଲାଗି ଫେବୃୟାରୀ ଛବିଶ ତାରିଖରେ ଜବାହରଲାଲ ତାଙ୍କର କେତେଜଣ ବନ୍ଧୁଙ୍କ ପ୍ରଶ୍ନର ଉତ୍ତର ଦେଇ କହିଥିଲେ ଯେ ସେ ଉଭୟ ପକ୍ଷଙ୍କ ଇଚ୍ଛା ବିରୁଦ୍ଧରେ କୌଣସି କାର୍ଯ୍ୟ କରିବା ରାଜି ନ ଥିଲେ । ସେ ସମ୍ପର୍କରେ ମତପ୍ରକାଶ କରି ସେ କହିଥିଲେ ଯେ ପୂର୍ବ

କିମ୍ବା କନ୍ୟାର ବିବାହ ଲାଗି ପିତା ମାତା କିମ୍ବା ଗୁରୁଜନମାନେ ଉପଦେଶ ଦେବା କଥା । ତେବେ ଜୀବନର ସାଥୀ ନିର୍ବାଚନ କରିବାରେ ଶେଷ ନିଷ୍ପତ୍ତି ପ୍ରକୃତରେ ଯେଉଁମାନେ ବିବାହ କରିବେ ସେହିମାନେ ହିଁ କରିବା ଉଚିତ । ଯେଉଁ କ୍ଷେତ୍ରରେ ପୁତ୍ର-କନ୍ୟାମାନେ ଯଥେଷ୍ଟ ବିଚାର କରି ସେମାନଙ୍କ ଭବିଷ୍ୟତ୍ର ନିର୍ଣ୍ଣୟ କରିଥାନ୍ତି, ସେ କ୍ଷେତ୍ରରେ ସେମାନଙ୍କ ପିତାମାତା ତଥା ଅନ୍ୟମାନେ କୌଣସି ପ୍ରକାର ପ୍ରତିବନ୍ଧକ ସୃଷ୍ଟି କରିବାର କୌଣସି ଯଥାର୍ଥତା ନାହିଁ । ଜବାହର ନିଜ କନ୍ୟାର ବିବାହ ସମ୍ପର୍କରେ ମତ ଦେଇଥିଲେ, "ମତେ ଯେତେବେଳେ ଇନ୍ଦିରା ଓ ଫିରୋଜ ବିବାହ କରିବା ଲାଗି ଶ୍ରୁହାନ୍ତି ବୋଲି ନିଶ୍ଚିତ ଭାବେ ଜଣାଇ ଦିଆଗଲା, ସେମାନଙ୍କ ପ୍ରସ୍ତାବକୁ ମୁଁ ସ୍ୱେଚ୍ଛାରେ ସ୍ୱୀକାର କରିନେଲି ଏବଂ ଜଣାଇ ଦେଲି ଯେ ସେମାନଙ୍କ ପ୍ରତି ମୋର ଆଶୀର୍ବାଦ ଅଛି ।"

ସେ ପ୍ରସ୍ତାବ ସମ୍ପର୍କରେ ମହାତ୍ମା ଗାନ୍ଧୀଙ୍କ ମତ ପଚରା ଯାଇଥିଲା । ୧୯୪୨ ମସିହା ମାର୍ଚ୍ଚ ୪ ତାରିଖରେ ସ୍ୱାରବାଡ଼ାସ୍ଥ ନିଜ ଆଶ୍ରମରୁ ଗାନ୍ଧିଜୀ ନିଜର ସମ୍ମତି ଜଣାଇ ଏକ ପତ୍ର ଲେଖିଥିଲେ, "ଇନ୍ଦିରାଙ୍କ ବିବାହ ଉତ୍ସବରେ ଯୋଗ ଦେବାପାଇଁ ବାହାରୁ ଭଦ୍ରବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ ନ କରିଥିବା ଉଚିତ ବୋଲି ମୋର ଦୃଢ଼ ମତ । ତେବେ ଆହ୍ଲାବାଦର କେତେ ଜଣ ଭଦ୍ରଲୋକଙ୍କୁ ସାକ୍ଷୀ ସ୍ୱରୂପ ସେଠି ଉପସ୍ଥିତ ହେବାପାଇଁ କୁହାଯାଇପାରେ ।" ସେଥିରେ ସେ ପୁଣି ଲେଖିଥିଲେ ଯେ ଯେତେ କମ୍ ସଂଖ୍ୟକ ନିମନ୍ତ୍ରଣପତ୍ର (ଲଗ୍ନ ପତ୍ରିକା) ବାହାରର ବନ୍ଧୁମାନଙ୍କ ନିକଟକୁ ପଠାଯାଇପାରେ ଏବଂ ସମସ୍ତଙ୍କ ନିକଟରୁ ସେମାନଙ୍କର ଆଶୀର୍ବାଦ କେବଳ କାମନା କରାଯାଇପାରେ । କିନ୍ତୁ ସମସ୍ତଙ୍କୁ ବିବାହ ଉତ୍ସବରେ ଯୋଗ ଦେବାପାଇଁ କହିବାରେ କୌଣସି ଆବଶ୍ୟକତା ନାହିଁ । ଯଦି ବାହାରର କେହି ଜଣଙ୍କୁ ନିମନ୍ତ୍ରଣ କରି ଆସି ବିବାହ ଉତ୍ସବରେ ଉପସ୍ଥିତ ହେବା ପାଇଁ କୁହାଯାଏ, ତେବେ ଅନ୍ୟ-ମାନଙ୍କୁ ମଧ୍ୟ ସେ ପ୍ରକାର ନିମନ୍ତ୍ରଣ କରିବାକୁ ପଡ଼ିବ । ତେବେ ଗାନ୍ଧିଜୀ ସେ ପତ୍ରରେ ଲେଖିଥିଲେ ଯେ ସେ ପ୍ରସ୍ତାବ ସମ୍ପର୍କରେ ଇନ୍ଦିରାଙ୍କ ମତ ନେବା ମଧ୍ୟ ଆବଶ୍ୟକ । ଜବାହରଲାଲ ଇନ୍ଦିରାଙ୍କ ଭଳି ଜଣେ ଶିକ୍ଷିତା ତଥା ହିତାହିତ ଜ୍ଞାନ ଥିବା ଆଧୁନିକା ପ୍ରାପ୍ତବୟସ୍କା ତରୁଣୀର ଇଚ୍ଛା ବିରୁଦ୍ଧରେ କୌଣସି କାର୍ଯ୍ୟ କରିବା ଲାଗି ପସନ୍ଦ କରୁ ନ ଥିଲେ ।

ସେ ବିବାହ ପ୍ରସ୍ତାବରେ ଗାନ୍ଧିଜୀଙ୍କ ସମର୍ଥନ ଥିଲା । କାରଣ ଉଭୟେ ସେ ବିବାହରେ ସମ୍ମତ ଥିଲେ । ଇନ୍ଦିରା ଫିରୋଜଙ୍କୁ ବିବାହ କରିବା ପାଇଁ ଯେତିକି ଶ୍ରୁହୁଁଥିଲେ, ଫିରୋଜ ତା'ଠାରୁ ଅଧିକ ଶ୍ରୁହୁଁଥିଲେ । ଇନ୍ଦିରାଙ୍କ ଭାଷାରେ, "It had been a love marriage, though, I mean, he chose me rather than I chose him. I don't know if I felt

so strongly for him as he did for me when we got betrothed. But affection grew up and became great." *

ଆମେରିକାର ଜଣେ ସାମ୍ବାଦିକ ଓରିନା ଫାଲାସିଙ୍କ ସହିତ ସାକ୍ଷାତକାର ବେଳେ ଗୋଟିଏ ପାରିବାରିକ ଜୀବନ ସମ୍ପର୍କିତ ଏକ ପ୍ରଶ୍ନର ଉତ୍ତର ଦେଇ ଶ୍ରୀମତୀ ଗାନ୍ଧୀ ଏହା ପ୍ରକାଶ କରିଥିଲେ ।

ବାସ୍ତବିକ୍ ଯେଉଁଠି ଦୁଇଟି ମନର ମିଳନ ସମ୍ଭବ ହୋଇପାରିବ, ଯେଉଁଠି ଗୋଟିଏ ହୃଦୟର ସ୍ପନ୍ଦନ ଆଉ ଗୋଟିଏ ହୃଦୟ ଅନୁଭବ କରିପାରିବ, ସେଠି ଅନ୍ୟମାନଙ୍କର, ସେମାନେ ପିତାମାତା ବା ଗୁରୁଜନ ଯେକେହି ହୁଅନ୍ତୁ ପଛେ, କୌଣସି ପ୍ରତିବନ୍ଧକ ସୃଷ୍ଟି କରିବା ଉଚିତ ନୁହେଁ । ନିଜର ବିବାହ ସମ୍ପର୍କରେ ଶ୍ରୀମତୀ ଗାନ୍ଧୀ ମତପ୍ରକାଶ କରିଥିଲେ, "ସମଗ୍ର ଭାରତବାସୀ ଆମର ବିବାହକୁ ବିରୋଧ କରୁଥିଲେ । କେହି ଜଣେ ମଧ୍ୟ ସେ ବିବାହ ଚାହୁଁ ନ ଥିଲେ ।" ଏପରିକି ତାଙ୍କ ପିତା ଜବାହରଲାଲ ମଧ୍ୟ ସେ ବିବାହର ବିରୋଧ କରୁ ନ ଥିଲେ ବି ଏତେ ଶୀଘ୍ର ଇନ୍ଦିରାଙ୍କ ବିବାହକୁ ସମର୍ଥନ କରିପାରୁ ନ ଥିଲେ । କାରଣ ସେ ଥିଲେ ବିପତ୍ନୀକ । ତାଙ୍କର ସେବା କରିବାପାଇଁ, ତାଙ୍କ ନିକଟରେ ରହି କିଛି ପାରିବାରିକ ଆନନ୍ଦ ଦେବାପାଇଁ ନେହେରୁ ପରିବାର ଭିତରୁ ଇନ୍ଦିରାଙ୍କ ବ୍ୟତୀତ ତାଙ୍କର ନିଜର ହୋଇ କେହି ନ ଥିଲେ । ଆମେରିକାର ଗୋଟିଏ ମାସିକ ପତ୍ରିକାର ସାମ୍ବାଦିକଙ୍କ ସହିତ ସାକ୍ଷାତକାରରେ ଶ୍ରୀମତୀ ଇନ୍ଦିରା ନିଜ ବିବାହ ସମ୍ପର୍କରେ ପିତାଜୀଙ୍କ ପ୍ରତିକ୍ରିୟା ପ୍ରକାଶ କରି କହିଥିଲେ, "ମୋ ବାପା ଏ ପ୍ରସ୍ତାବର ବିରୋଧ କରି ନ ଥିଲେ । କିନ୍ତୁ ମୁଁ ଚିନ୍ତାକରେ ଏକମାତ୍ର କନ୍ୟା ସନ୍ତାନର ପିତାମାନେ ସେମାନଙ୍କ କନ୍ୟାର ବିବାହ ଟିକିଏ ଡେରିରେ ହେଉ କିମ୍ବା ସେହି ମର୍ମରେ ଆଉ କିଛି ଇଚ୍ଛା କରିଥାନ୍ତି ।" ତେବେ ଇନ୍ଦିରା ଓ ଫିରୋଜଙ୍କ ବାଲ୍ୟ ବନ୍ଧୁତା ପରେ ସ୍ନେହ ଓ ଶୁଭେଚ୍ଛା ଦେଇ ବିବାହ ପରିଣତ ହୋଇଥିଲା ଶେଷରେ । ବିବାହ ପରେ ଭାରତୀୟ ଜନସାଧାରଣଙ୍କ ପ୍ରତିକ୍ରିୟା ସମ୍ପର୍କରେ ମତ ଦେଇ ଶ୍ରୀମତୀ ଇନ୍ଦିରା କହିଥିଲେ, "Enlightened people felt it was a good thing and there should be more mined marriages—and the fanatical fringe continued with their objections."**

---

* Hindusthan Standard—June 5th, 1973.

** Interview with Indira Gandhi—Arnold Michaelis Mc. Call's.

**ଇନ୍ଦିରାଙ୍କ ପରିଣୟ :—**

ସେଦିନ ଥିଲା ମାର୍ଚ୍ଚ ୨୬ ତାରିଖ ଗୁରୁବାର ୧୯୪୨ ମସିହା ମାଘ ମାସର ବସନ୍ତ ପଞ୍ଚମୀ ।

ଅହ୍ଲାବାଦର ଆକାଶ ସେଦିନ ନିର୍ମଳ ଥିଲା । ଆନନ୍ଦ ଭବନରେ ବିବାହ ମଣ୍ଡପକୁ ଅସଂଖ୍ୟ ଗୋଲାପ ଫୁଲରେ ସଜାଇ ଦିଆଯାଇଥିଲା । ମନ୍ଦ ମନ୍ଦ ପବନ ସହିତ ଗୋଲାପର ଭୁରୁ ଭୁରୁ ଗନ୍ଧରେ ଆନନ୍ଦ ଭବନ ପୁଲକିତ ହୋଇ ଉଠୁଥିଲା ।

ଏକ ଶାନ୍ତ, ଗମ୍ଭୀର ତଥା ନିରାଡ଼ମ୍ବର ପରିବେଶ ।

ବିବାହବେଦୀରେ ବସିବା ଆଗରୁ ଇନ୍ଦିରା ଏକ ଗୋଲାପୀ ରଙ୍ଗର ଶାଢ଼ୀ ପରିଧାନ କରିଥିଲେ । ଶାଢ଼ୀର ସବୁ ଅଂଶରେ ଅନେକ ଫୁଲ ହାତରେ ତିଆରି କରା ଯାଇଥିଲା । ସେହି ଫୁଲଗୁଡ଼ିକ ଯେଉଁ ସୂତାରେ ତିଆରି କରାଯାଇଥିଲା ତାହା ଥିଲା ନିଜେ ଜବାହରଲାଲଙ୍କ ହାତବୁଣା ସୂତା । ବିଭିନ୍ନ ସମୟରେ ଜେଲଜୀବନ ଅତି-ବାହିତ କରୁଥିବା ବେଳେ ଜବାହରଲାଲ ସେଗୁଡ଼ିକୁ ତିଆରି କରିଥିଲେ ।

ବିବାହ ବେଳକୁ ଇନ୍ଦିରାଙ୍କ ଅନେକ ସାଥୀ ଆନନ୍ଦ ଭବନରେ ଉପସ୍ଥିତ ଥିଲେ । କନ୍ୟା ଭାବେ ଇନ୍ଦିରାଙ୍କୁ ଖୁବ ସୁନ୍ଦର ଭାବରେ ସଜାଇ ଦେଇଥିଲେ । କିଏ ତାଙ୍କ ମୁଣ୍ଡର କେଶଗୁଡ଼ିକୁ ସଜାଇ ଦେଉଥିଲା ତ ଆଉ କିଏ ତାଙ୍କର ବେଶଭୂଷାକୁ ଆଉ ଟିକିଏ ସୁନ୍ଦର ଠାଣିରେ ସଜାଇ ଦେଉଥିଲା । ଅନ୍ୟ କିଏ ଫୁଲର ହାର ଆଣି ଗଳାରେ ଲମ୍ବାଇ ଦେଉଥିଲା ।

ସେତେବେଳକୁ କୁମାରୀ ଇନ୍ଦିରା ସ୍ଵାଭାବିକ ଭାବେ ଥିଲେ ଅସାମାନ୍ୟ ସୁନ୍ଦରୀ । ଯେହେତୁ ବଂଶପରମ୍ପରା ଅନୁଯାୟୀ ସେ ଠିକ୍ ଏକ ରାଜକୁମାରୀ ଭଳି ଦେଖା ଯାଉ-ଥିଲେ । ୧୯୪୧ ମସିହା ବେଳକୁ ପ୍ରାୟ ୨୪ ବର୍ଷ ବୟସ୍କା ଇନ୍ଦିରାଙ୍କ ପତଳା ଶରୀରରେ ବୟସର ପ୍ରଭାବ ଓ ବଂଶପରମ୍ପରାର ଏକ ଅପୂର୍ବ ସମନ୍ଵୟ ସଙ୍ଗଠିତ ହୋଇଥିଲା । ତାପରେ ପୁଣି ବାହାହେବା ବେଳର ବେଶ ପୋଷାକ ! ସତେ ଯେମିତି ପୁରାଣର ଅପ୍ସରୀ ଥିଲେ ସେ ।

ବିବାହବେଦୀକୁ ଯିବା ପୂର୍ବରୁ ଅତ୍ୟନ୍ତ ସୁନ୍ଦରୀ ଦେଖାଯାଉଥିଲେ ଇନ୍ଦିରା ।

ଫିରୋଜ ପାରସୀ ତଥା "ଜୋରୋଆଷ୍ଟର" ଧର୍ମାବଲମ୍ବୀ ଥିବାରୁ ଇନ୍ଦିରାଙ୍କୁ ବିବାହ କରିବା ପୂର୍ବରୁ ତାଙ୍କୁ ପ୍ରଚଳିତ ପ୍ରଥା ଅନୁଯାୟୀ ହିନ୍ଦୁ ଧର୍ମରେ ଦୀକ୍ଷିତ ହେବାକୁ ପଡ଼ିଥିଲା ।

ବିବାହର ଦୁଇ ତିନି ଦିନ ଆଗରୁ ଦୁଇ ପରିବାରର ସମ୍ପର୍କୀୟ ତଥା ହିତାକାଂକ୍ଷୀ ବନ୍ଧୁମାନେ ଆନନ୍ଦ ଭବନକୁ ଆସିବା ଆରମ୍ଭ କରି ଦେଇଥିଲେ ।

ପୃଥିବୀର ଜଣେ ବୀଣିଷ୍ଟ ବୈଜ୍ଞାନିକ ମାଡ଼ାମ୍ କ୍ୟୁରୀଙ୍କ କନ୍ୟା ମାମ୍ସାଦଜା ଇଭ କ୍ୟୁରୀ ଥିଲେ ଇନ୍ଦିରାଙ୍କ ବିବାହ ଉତ୍ସବରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମା । ବିବାହର ପୂର୍ବଦିନ ସେ ଯେତେବେଳେ ଆନନ୍ଦ ଭବନରେ ପାଦ ଦେଇଥିଲେ, ଘରର ବିଭିନ୍ନ ପ୍ରକାର ସାଜସଜ୍ଜା ଦେଖି ମନରେ ଧାରଣା କରିଥିଲେ ଯେ କିଛିଟା ଭାରତୀୟ ପୂଜା ଆସରର ମଜା-ମଉଛବ ସେ ଦେଖିପାରିବେ । କିନ୍ତୁ ଯେତେବେଳେ ଇନ୍ଦିରାଙ୍କ ବିବାହ କଥା ତାହାଙ୍କୁ ଜଣାଇ ଦିଆଯାଇଥିଲା, ସେ ଅତ୍ୟନ୍ତ ଆନନ୍ଦିତ ହୋଇ ଯାଇଥିଲେ । କାରଣ ଥିଲା, ସେ ଏକ ଭାରତୀୟ-ହିନ୍ଦୁ ବିବାହ ଦେଖିବାର ସୁଯୋଗ ପାଇବେ ।

ପ୍ରକୃତରେ ଇନ୍ଦିରା ସେତେବେଳକୁ ଲଜ୍ଜାରେ ଲାଲ ପଡ଼ି ଯାଇଥିଲେ । ତଥାପି ଆନନ୍ଦ ଭବନର ଆଗନ୍ତୁକ ଅତିଥିମାନଙ୍କୁ ସାଦରେ ଅଭିନନ୍ଦନ ଜଣାଉଥିଲେ ହସି ହସି ଓ ସେମାନଙ୍କଠାରୁ ଉପହାରମାନ ଗ୍ରହଣ କରୁଥିଲେ ।

ବେଳେ ବେଳେ ସେ ଆନନ୍ଦମୟ ପରିବେଶ ଭିତରେ ମାତା କମଳାଙ୍କ କଥା ସମ୍ଭବତଃ ମନେପଡ଼ି ଯାଉଥିଲା ଇନ୍ଦିରାଙ୍କର । ସେ ଗମ୍ଭୀର ପରିବେଶ ମଧ୍ୟରେ ଆନ୍ତୁର ହୋଇ ଉଠୁଥିଲେ । ସତେ ମେଘମୁକ୍ତ ଆକାଶର ପ୍ରଶାନ୍ତ ଭିତରୁ କମଳାଙ୍କ ହସ ହସ ମୁହଁ ଦେଖିପାରୁଥିଲେ ସେ ଏକ ନୂତନ ଜୀବନରେ ପାଦ ଦେବାର ଠିକ୍ ପ୍ରାରମ୍ଭ କାଳରେ ।

ସେ ବିବାହ ସମୟର ପରିସ୍ଥିତି ବର୍ଣ୍ଣନା କରିବାକୁ ଯାଇ ଜବାହରଲାଲଙ୍କ ଭଉଣୀ କୃଷ୍ଣା ହାଥୀ ସିଂ ଲେଖିଛନ୍ତି, "Slightly flushed and little excited, though pretending to be quite calm, the bride sat sorrounded by people and by the hundreds of presents which kept on streaming into her room ....She looked lovelier than ever, frail and almost ethereal. She laughed and talked to those around her, but some times her big black eyes would darken and hold a distant sorrowful look. What dark cloud could mar the joy of this happy day ? Was it due to the longing for the young mother who was no more ? Or was it the thought of parting from the father, a father whose very life she had been ?

**She was leaving him now to a life that would be lonelier for him than it had ever been before " ***

ବାହାରକୁ ସେ ଯେତେ ଶାନ୍ତ ରହିବା ଭଳି ଛଳନା କରୁଥିଲେ ମଧ୍ୟ ବେଳେ ବେଳେ ସାମାନ୍ୟ ବିଷାଦଗ୍ରସ୍ତ ଜଣାପଡ଼ୁଥିଲେ । ଅତି ଘନିଷ୍ଠ ସମ୍ପର୍କ ରଖିଥିବା ପିତାଜୀଙ୍କୁ ନିଃସଙ୍ଗ ଅବସ୍ଥାରେ ଛାଡ଼ିଯାଉଥିବା ବେଳେ ହୁଏତ ତାଙ୍କୁ ବିବ୍ରତ କରି ପକାଉଥିଲା ଜୀବନର ସ୍ମରଣୀୟ ମୁହୂର୍ତ୍ତରେ ମଧ୍ୟ ।

ଇନ୍ଦିରାଙ୍କ ବିବାହ ଆନନ୍ଦ ଭବନର ଏକ ଉନ୍ମୁକ୍ତ ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିଲା । ସେଥିପାଇଁ ଏକ ସ୍ୱତନ୍ତ୍ର ମଣ୍ଡପ ନିର୍ମାଣ କରାଯାଇଥିଲା । ସେହି ମଣ୍ଡପରେ ଯଜ୍ଞକୁଣ୍ଡ ତିଆରି ହୋଇଥିଲା । ମଣ୍ଡପର ଗୋଟିଏ ପ୍ରାନ୍ତରେ ଇନ୍ଦିରା ଓ ଫିରୋଜ ବସିବା ଲାଗି ଆସନ ପଡ଼ିଥିଲା । ମଣ୍ଡପର ଚାରି ପାଖରେ ଆମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କ ବସିବା ପାଇଁ ଗାଲିଚା ବିଛାଯାଇଥିଲା । ସେ ଉତ୍ସବରେ ଅନେକ ଲୋକ ଏପରି କି ଅନିମନ୍ତ୍ରିତ ଅନେକ ବ୍ୟକ୍ତି ମଧ୍ୟ ଯୋଗ ଦେଇଥିଲେ ।

ବୈଦିକ ହିନ୍ଦୁ ରୀତିରେ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିଲା ।

ଜବାହରଲାଲ ବିବାହବେଦୀରେ କନ୍ୟାଦାନ କରିବା ପରେ ପରେ ବଧୂ ଇନ୍ଦିରା ପିତା ଜବାହରଲାଲଙ୍କ ନିକଟରୁ ଯାଇ ସ୍ୱାମୀ ଫିରୋଜଙ୍କ ନିକଟରେ ଆସୀନ ହୋଇଥିଲେ । ଫିରୋଜ ହିନ୍ଦୁ ବୈଦିକ ରୀତିରେ ସଂସ୍କୃତ ଶ୍ଳୋକ ପାଠ କରି ସଂକଳ୍ପ କରିଥିଲେ ଯେ ସ୍ତ୍ରୀ ଇନ୍ଦିରାଙ୍କୁ ସେ କେବେ ଉପେକ୍ଷା କରିବେ ନାହିଁ ଏବଂ ତାହାଙ୍କ ଇଚ୍ଛାର ପ୍ରତିକୂଳ ଆଚରଣ କରିବେ ନାହିଁ । ହାତରେ ହାତ ଦେଇ ନବଦମ୍ପତି ଯଜ୍ଞକୁଣ୍ଡକୁ ସାତ ଥର ପରିକ୍ରମା କରିଥିଲେ ।

ବିବାହ ଶେଷ ହୋଇଥିଲା ।

ମଧୁଚନ୍ଦ୍ରିକା :

ନବବିବାହିତ ଦମ୍ପତି ମଧୁ ଯାମିନୀର ମାଦକତା ଉପଭୋଗ କରିବା ପାଇଁ କାଶ୍ମୀର ଯାଇଥିଲେ । ଭାରତରେ 'ଭୂସ୍ୱର୍ଗ' ରୂପେ ଅଭିହିତ କାଶ୍ମୀର । ସେଠିକାର ପରିବେଶ ଶାନ୍ତ, ସୁମଧୁର, ଚିତ୍ତାକର୍ଷକ । ସେଇ ଚମତ୍କାର ପରିବେଶ ସହିତ ବିଭିନ୍ନ ଝରଣା, ବିଭିନ୍ନ କିସମର ଫୁଲ, ଚିରହରିତ ବନାନୀ, ଶୀତଳ ଜଳବାୟୁ ସାରା ଭାରତର କାହିଁକି, ପୃଥିବୀର ଲୋକଙ୍କୁ ଆକୃଷ୍ଟ କରିଥାଏ—ବିଶେଷକରି ନବ ବିବାହିତ ଦମ୍ପତିଙ୍କୁ । କାଶ୍ମୀର ଉପତ୍ୟକାର ନିତ୍ୟ ନୂତନ ପରିବେଶ ଭିତରେ ଇନ୍ଦିରା ଓ ଫିରୋଜ ନିଜକୁ ସାମିଲ କରାଇ ଦେଇଥିବେ କାଳଛେଦନ ପାଇଁ । ସେଠି

* Krishna Hathee Singh—With No Regrets.

ବିଭିନ୍ନ ସ୍ଥାନର ସୌନ୍ଦର୍ଯ୍ୟ ଉପଭୋଗ କରି କରି ସମସ୍ତ ଅତିବାହିତ କରିଥିଲେ ଅତି ଆନନ୍ଦରେ ।

କିଛିଦିନ ପରେ କାଶ୍ମୀରରୁ ଫେରିଆସି ଇନ୍ଦିରା ଓ ଫିରୋଜ ଆନନ୍ଦ ଭବନ ନିକଟସ୍ଥ ଫୋର୍ଟ ରୋଡ଼ରେ ଏକ ଭଡ଼ାଘରେ ବୈବାହିକ ଜୀବନ ଆରମ୍ଭ କରିଥିଲେ । ତାପରେ ଆରମ୍ଭ ହେଲା ଇନ୍ଦିରାଙ୍କ ତେଲ ଲୁଣର ସଂସାର । ସେତେବେଳେ ଭାରତର ଏକ ବିଖ୍ୟାତ ପତ୍ରିକା 'ନେସନାଲ ହେରାଲ୍ଡ଼' ପ୍ରକାଶ ପାଉଥିଲା । ତାହାର ପରିଚାଳନା ଦାୟିତ୍ୱ ନେବା ଲାଗି ନିଯୁକ୍ତି ପାଇଥିଲେ ଫିରୋଜ ।

ଫିରୋଜଙ୍କ ସମ୍ପର୍କରେ ସେ ପତ୍ରିକାର ସମ୍ପାଦକ ଚଲପତି ରାଓ ନିଜ ମତ ପ୍ରକାଶ କରିଥିଲେ, "ଯେଉଁ ଯେଉଁ ଗୁଣଗୁଡ଼ିକ ପରବର୍ତ୍ତୀ କାଳରେ ତାଙ୍କୁ ପୃଥିବୀ ବିଖ୍ୟାତ କରାଇଥିଲା; ସେଗୁଡ଼ିକୁ ମୁଁ ଆବିଷ୍କାର କରିଥିଲି । ସେହି ଆବିଷ୍କାର ଅନ୍ୟ ଏକ ଆବିଷ୍କାରର କାରଣ ହୋଇଥିଲା । ତାଙ୍କର ସାଧନା, ସାହସ ଓ ବିମୋହନକାରୀ ଶକ୍ତିସମ୍ପନ୍ନ ଗୁଣାବଳୀର ପ୍ରଥମ ଆବିଷ୍କର୍ତ୍ତା ଥିଲେ ଇନ୍ଦିରା ।" *
ପ୍ରକୃତରେ ମିଷ୍ଟର ଚଲପତି ରାଓଙ୍କ ଧାରଣା ଅଭ୍ରାନ୍ତ ଥିଲା ।

ସେ ପତ୍ରିକା ପରିଚାଳନା ପାଇଁ ଫିରୋଜଙ୍କ ପାଶ୍ଚାତ୍ୟ ଶିକ୍ଷା ତଥା ଉନ୍ନତ ଅଭିରୁଚି ଯଥେଷ୍ଟ ପରିମାଣରେ ସାହାଯ୍ୟ କରିଥିଲା । ତେବେ ଫିରୋଜ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ନିଜ ଶକ୍ତି ଅନୁଯାୟୀ ଭାରତୀୟ ଜାତୀୟ କଂଗ୍ରେସ ଅନୁଷ୍ଠାନ ଜରିଆରେ କାର୍ଯ୍ୟ କରୁଥିଲେ । ଇନ୍ଦିରା ମଧ୍ୟ ପୂର୍ଣ୍ଣପ୍ରାଣରେ ଦେଶମୁକ୍ତି ଆନ୍ଦୋଳନରେ ନିଜକୁ ହଜାଇ ଦେଇଥିଲେ ଠିକ୍ ପିତାଙ୍କଙ୍କ ପରି । ଅନେକ ସମୟରେ ସାମାଜିକ ମଙ୍ଗଳପାଇଁ ଅଗ୍ରଣୀ ଥିଲେ ମଧ୍ୟ ଭାରତୀୟ ଜାତୀୟ କଂଗ୍ରେସର ମହିଳା ସଙ୍ଗଠନ ପ୍ରତି ଇନ୍ଦିରା ଯଥେଷ୍ଟ ଧ୍ୟାନ ଦେଉଥିଲେ । ସେହି ସମୟରେ ଇନ୍ଦିରାଙ୍କ କାର୍ଯ୍ୟକଳାପରେ ଆକୃଷ୍ଟ ହୋଇ ସହରତଳି ଅଞ୍ଚଳମାନଙ୍କରୁ ଅନେକ ମହିଳା ଇନ୍ଦିରାଙ୍କଠାରୁ ସାହାଯ୍ୟ ପାଇବାପାଇଁ ଆସୁଥିଲେ, ଠିକ୍ ଯେମିତି ହଜାର ହଜାର ଲୋକ ଆସୁଥିଲେ ଜବାହରଲାଲଙ୍କ ଦର୍ଶନ ଲାଗି ।

□□□

* "ଇନ୍ଦିରା ପ୍ରିୟଦର୍ଶିନୀ" ନାମକ ପୁସ୍ତକର ଚଲପତି ରାଓଙ୍କ ପ୍ରବନ୍ଧ Indira a portrait in outline" ଦ୍ରଷ୍ଟବ୍ୟ ।

## ॥ ଦଶ ॥

# ସଂଗ୍ରାମ-ସ୍ରୋତ



ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରଳୟଙ୍କରୀ ବାତ୍ୟା ପୃଥିବୀ ଉପରେ ବହିବା ଆରମ୍ଭ କରିଥିଲା ୧୯୩୯ ମସିହାରେ । ଭାରତର ରାଜନୈତିକ ନେତାମାନଙ୍କର ବିନା-ପରାମର୍ଶରେ ଇଂରେଜ ସରକାର ପୃଥିବୀ ସମକ୍ଷରେ ଘୋଷଣା କରିଥିଲେ ଯେ ଭାରତ ବିଶ୍ୱଯୁଦ୍ଧରେ ସାମିଲ ହୋଇ ବ୍ରିଟିଶ ପକ୍ଷ ସମର୍ଥନ କରିବ ଏବଂ ସମସ୍ତ ପ୍ରକାର ସାମରିକ ସାହାଯ୍ୟ ଦେବ । କିନ୍ତୁ ସେ ପ୍ରକାର ଘୋଷଣା ଭାରତୀୟ ନେତୃବୃନ୍ଦ ଶୁଣିବା ପରେ ପରେ ଉତ୍କ୍ଷିପ୍ତ ହୋଇ ଉଠିଥିଲେ ଏବଂ ଓ୍ୱାର୍ଦ୍ଧା କଂଗ୍ରେସଠାରେ ବ୍ରିଟିଶ ସରକାରଙ୍କର ତୀବ୍ର ନିନ୍ଦା କରାଯାଇଥିଲା । ତତ୍କାଳୀନ ବଡ଼ଲାଟ ଯେଉଁ ସର୍ତ୍ତ କରିଥିଲେ ତାର ଫଳରେ ସରକାରଙ୍କୁ କୌଣସି କାର୍ଯ୍ୟରେ ସହଯୋଗ ନ କରିବା ଲାଗି ଗାନ୍ଧିଜୀ ତଥା ଜାତୀୟ କଂଗ୍ରେସର ଅନ୍ୟାନ୍ୟ ନେତୃବୃନ୍ଦ କଂଗ୍ରେସ କାର୍ଯ୍ୟକାରୀ ବୈଠକରେ ପ୍ରସ୍ତାବ ଗ୍ରହଣ କରିସାରିବା ପରେ ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ । ତା ଫଳରେ ଭାରତର ତତ୍କାଳୀନ ଏଗାରଟି ପ୍ରଦେଶ ମଧ୍ୟରୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ନିର୍ଦ୍ଦେଶକ୍ରମେ ଆଠଟି ପ୍ରଦେଶର କଂଗ୍ରେସ ସରକାର ଇସ୍ତଫା ଦେଇଥିଲେ । ତେଣୁ ସେହି ସେହି ପ୍ରଦେଶଗୁଡ଼ିକରେ ଲାଟ ଶାସନ ପ୍ରବର୍ତ୍ତିତ ହୋଇଥିଲା । ଅସହଯୋଗ ଆନ୍ଦୋଳନରେ ଗାନ୍ଧିଜୀଙ୍କ ପ୍ରଥମ ଶିଷ୍ୟ ଥିଲେ ଆଚାର୍ଯ୍ୟ ବିନୋବା ଭାବେ ଏବଂ ଦ୍ୱିତୀୟ ଥିଲେ ପଣ୍ଡିତ ନେହେରୁ । ଜବାହରଲାଲଙ୍କୁ ଅଷ୍ଟମ ଥର ପାଇଁ ଚାରି ବର୍ଷ ଲାଗି ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ୧୯୪୦ ମସିହା ଅକ୍ଟୋବର ୩୧ ତାରିଖ ଦିନ । କିନ୍ତୁ ୧୯୪୧ ମସିହା ଡିସେମ୍ବର ସାତ ତାରିଖ ଦିନ ଜାପାନ ଏକ ଭୟାବହ ଆକ୍ରମଣ କରିଥିଲା ପର୍ଲ ବନ୍ଦର ଉପରେ । ତତ୍ ସଙ୍ଗେ ସଙ୍ଗେ ବର୍ମା ଓ ମାଲୟେସିଆକୁ ଅଧିକାର ମଧ୍ୟ କରି ନେଇଥିଲା । ତା ଫଳରେ ପଣ୍ଡିତ ନେହେରୁଙ୍କ ସମେତ ଅନ୍ୟମାନେ ଅକସ୍ମାତ କାରାଦଣ୍ଡରୁ ମୁକ୍ତିଲାଭ କରିଥିଲେ ।

**ଭାରତରେ କ୍ରିପସ୍ ମିଶନ :**

ସେତେବେଳକୁ ବ୍ରିଟିଶ ସରକାରଙ୍କ ଦୃଢ଼ ସାମରିକ ବିପର୍ଯ୍ୟୟ ଘଟି ଯାଇଥିଲା । ପୁନଶ୍ଚ ଆମେରିକା ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ପରୋକ୍ଷରେ ଭାରତ ପକ୍ଷ ସମର୍ଥନ କରିଥିଲା । ଏଣେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଭାରତୀୟ ଜନ-ସାଧାରଣଙ୍କ ଉତ୍ତେଜନା ଲେଲିହାନ ଶିଖା ନେଇ ଉଠୁଥିଲା । ଏପରି ଏକ ବିଷମ ପରିସ୍ଥିତିରେ ଭାରତର ରାଜନୈତିକ କ୍ଷେତ୍ରରେ ଏକ ଶାନ୍ତ ବାତାବରଣ ସୃଷ୍ଟି କରାଇବାପାଇଁ ସରକାର ଉଦ୍ୟମ କରିଥିଲେ । ଭାରତର ନେତାମାନଙ୍କ ସହିତ ଆଲୋଚନା କରିବାଲାଗି ବ୍ରିଟିଶ ସରକାର ୧୯୪୨ ମସିହାରେ ମାର୍ଚ୍ଚ ଜଣେ— ସାର୍ ଷ୍ଟାଫୋର୍ଡ଼ କ୍ରିପସ୍‌ଙ୍କୁ ଭାରତ ପଠାଇ ଥିଲେ । କ୍ରିପସ୍ ପ୍ରକୃତରେ ବିଚକ୍ଷଣ କୂଟନୀତିଜ୍ଞ ଏବଂ ଜ୍ଞାନୀ ଥିଲେ ।

ଭାରତ ଇତିହାସରେ ସେ କ୍ରିପସ୍ ମିଶନ୍ ନାମରେ ପରିଚିତ ।

ଯେତେ କୁଶଳୀ ଥିଲେ ମଧ୍ୟ ଓ ଯେତେ ଉଦ୍ୟମ କରିଥିଲେ ମଧ୍ୟ ସାର୍ ଷ୍ଟାଫୋର୍ଡ କ୍ରିପସ୍ ଭାରତରେ ରାଜନୈତିକ ଶାନ୍ତ ପ୍ରତିଷ୍ଠା କରିବା ଦିଗରେ ବ୍ୟର୍ଥ ହୋଇଥିଲେ । ସେ ଯେଉଁ ପ୍ରସ୍ତାବ ଦେଇଥିଲେ, ଭାରତର ସମସ୍ତ ରାଜନୈତିକ ଦଳ ସେ ପ୍ରସ୍ତାବର ବିରୋଧ ହିଁ କରିଥିଲେ । ଜିନ୍ନାଙ୍କ ନେତୃତ୍ୱରେ ମୁସଲିମ୍ ଲିଗ୍ ଦଳ ଭାରତୀୟ ଜାତୀୟ କଂଗ୍ରେସରୁ ଅଲଗା ହୋଇ ପାକିସ୍ଥାନ୍ ଦାବୀ କରୁଥିଲେ । ଅନେକ କ୍ଷେତ୍ରରେ କଂଗ୍ରେସର ବିରୋଧ ମତ ପୋଷଣ କରୁଥିବା ମୁସଲିମ୍ ଲିଗ ମଧ୍ୟ କ୍ରିପ୍ସ ମିଶନର ପ୍ରସ୍ତାବକୁ ସ୍ୱୀକାର କରି ନ ଥିଲେ ।

**ଭାରତ ଛାଡ ଆନ୍ଦୋଳନ :**

ଗାନ୍ଧିଜୀଙ୍କ ଅହିଂସା ନୀତି ବିଜୟୀ ହୋଇଥିଲା । ଇତି ମଧ୍ୟରେ ଯେଉଁ କେତେଜଣ କଂଗ୍ରେସୀ ନେତାଙ୍କର ହୃଦ୍‌ବୋଧ ହେଉ ନ ଥିଲା ଯେ କେବଳ ଅହିଂସା ତଥା ଅସହଯୋଗ ଆନ୍ଦୋଳନ କରି ଦେଶକୁ ପରାଧୀନତାର ଶୃଙ୍ଖଳ ଭିତରୁ ମୁକ୍ତ କରାଯାଇପାରିବ, ସେମାନେ କ୍ରମେ କ୍ରମେ ସେମାନଙ୍କ ମତ ପରିବର୍ତ୍ତନ କରୁଥିଲେ । ୧୯୪୨ ମସିହାରେ ବମ୍ବେଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ବୈଠକ ବସିଥିଲା । ସେଠାରେ ଆଲୋଚନାର ପ୍ରଧାନ ବିଷୟବସ୍ତୁ ଥିଲା ଗାନ୍ଧିଜୀଙ୍କ ଭାରତଛାଡ଼ ଆନ୍ଦୋଳନ ସମ୍ପର୍କରେ ଆଲୋଚନା କରିବା ।

ସେହି ଆଲୋଚନାରେ ଯୋଗ ଦେବା ଲାଗି ଇନ୍ଦିରା ଓ ଫିରୋଜ ବମ୍ବେ ଯାତ୍ରା କରିଥିଲେ । ସେହି ଐତିହାସିକ ଅଧିବେଶନରେ ଅଗଷ୍ଟ ଆଠ ତାରିଖ ସନ୍ଧ୍ୟା ବେଳେ ଗାନ୍ଧିଜୀଙ୍କ "ଭାରତଛାଡ଼" ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହୋଇଯାଇଥିଲା । ତା ସହିତ ସେହିଠାରେ ସ୍ଥିର ହୋଇଥିଲା ଯେ ଯଦି ସେହି ପ୍ରସ୍ତାବକୁ କାର୍ଯ୍ୟକାରୀ

କରିବା ବାଟରେ କୌଣସି ପ୍ରତିବନ୍ଧକ ସୃଷ୍ଟି କରାଯାଏ ତେବେ ଅସହଯୋଗ ଆନ୍ଦୋ-ଳନ ପୂର୍ବାପେକ୍ଷା ଆହୁରି ତୀବ୍ର ହୋଇଉଠିବ ।

ଭାରତୀୟ ଜାତୀୟ କଂଗ୍ରେସର ଏ ସମସ୍ତ ଯୋଜନାକୁ ଧୂଳିସାତ୍ କରିବା ପାଇଁ ବ୍ରିଟିଶ ସରକାର ସ୍ଥିର କରିଥିଲେ । ତାର ପ୍ରଥମ ପଦକ୍ଷେପ ସ୍ୱରୂପ ଅଗଷ୍ଟ ନଅ ତାରିଖ ଦିନ ମହାତ୍ମା ଗାନ୍ଧୀ ଓ ଜବାହରଲାଲ ପ୍ରଭୃତି କଂଗ୍ରେସ ନେତୃବୃନ୍ଦଙ୍କୁ ଗିରଫ କରି ନେଇଥିଲେ ଏବଂ ସମଗ୍ର ଦେଶରେ ଦମନଲୀଳା ଆରମ୍ଭ କରି ଦେଇ-ଥିଲେ । ବ୍ରିଟିଶ ସରକାରଙ୍କ ସେତେବେଳର ଭାରତପାଇଁ ସେକ୍ରେଟେରୀଙ୍କ ନଥିପତ୍ର ହିସାବରୁ ଜଣାଯାଏ ଯେ ଅଗଷ୍ଟ ନଅ ତାରିଖରୁ ନଭେମ୍ବର ତିରିଶ ତାରିଖ ମଧ୍ୟରେ ଏକ ହଜାର ଅଠର ଜଣ ଭାରତୀୟଙ୍କୁ ହତ୍ୟା କରାଯିବା ସଙ୍ଗେ ସଙ୍ଗେ ତିନି ହଜାର ଦୁଇ ଶହ ପଞ୍ଚସ୍ତରି ଜଣ ଲୋକ ଗୁରୁତର ଆହତ ହୋଇଥିଲେ । ତାହା ଥିଲା ତାଙ୍କ କାଗଜପତ୍ରର ହିସାବ; କିନ୍ତୁ ପ୍ରକୃତରେ ତାହାଠାରୁ ଯଥେଷ୍ଟ ଅଧିକ ଲୋକ ଯେ ଦେଶ ପାଇଁ ପ୍ରାଣବଳି ଦେଇଥିଲେ ଓ ପ୍ରାୟ ଏକ ଲକ୍ଷରୁ ଅଧିକ ଲୋକ ଯେ ଜେଲ ହାଜତ ଭିତରକୁ ଟଣା ହୋଇଥିଲେ, ସେଥିରେ ସନ୍ଦେହ ନ ଥିଲା ।

ବମ୍ବେଠାରେ ଇନ୍ଦିରା ରହିଥିଲେ ପିଉସୀ କୃଷ୍ଣାଙ୍କ ଘରେ । ଅଗଷ୍ଟ ନଅ ତାରିଖ ଭୋର ପ୍ରାୟ ପାଞ୍ଚଟା ବେଳେ ପିତାଜୀଙ୍କ କାଗଜପତ୍ର ସବୁ ସଜାଡ଼ି ଦେଉ-ଥିଲେ ସକାଳ ଟ୍ରେନ୍ ଯୋଗେ ଆହ୍ଲାବାଦ ଫେରିଯିବାପାଇଁ । ହଠାତ୍ ପୋଲିସ ଆସି ଦ୍ୱାର ଠକ୍ ଠକ୍ କରିଥିଲା । ୧୯୪୨ ମସିହା ଅଗଷ୍ଟ ନଅ ତାରିଖ ସୂର୍ଯ୍ୟୋଦୟ ଦେଖିବା ଆଗରୁ ଜବାହରଲାଲଙ୍କୁ ନବମ ଏବଂ ଶେଷ ଥର ପାଇଁ ଓ ଦୀର୍ଘ ସମୟ ପାଇଁ ଜେଲ ହାଜତକୁ ଯିବାକୁ ପଡ଼ିଥିଲା ।

ସେହିଥର ସେ ସବୁଠାରୁ ଅଧିକ ସମୟ ଜେଲ ଭିତରେ ରହିଥିଲେ । ତାଙ୍କର ସମୁଦାୟ ଜେଲ ଜୀବନ ୩୨୬୨ ଦିନ ମଧ୍ୟରୁ କେବଳ ନବମ ଓ ଶେଷଥର ବନ୍ଦୀ ହୋଇଥିଲେ ୧୦୪୦ ଦିନ ପାଇଁ । ସେଇଥିପାଇଁ ସେ ସବୁବେଳେ ଜେଲ୍‌କୁ ଆଉ ଗୋଟିଏ ଗୃହ ରୂପେ ବିବେଚନା କରୁଥିଲେ । ଜଣେ ଆମେରିକୀୟ ଲେଖକ Dr M. K. Alexander ଙ୍କ ଭାଷାରେ, ଜେଲ୍‌ରେ ଦୀର୍ଘକାଳ ବନ୍ଦୀ ହୋଇ ରହିଥିବା ବେଳେ ସେ ଭାରତୀୟ ଐତିହ୍ୟ, ସଂସ୍କୃତି ଓ ଅନ୍ୟାନ୍ୟ ବିଷୟବସ୍ତୁ ଉପରେ ଆଧାରିତ "ଭାରତ ଆବିଷ୍କାର" ( Discovery of India ) ରଚନା କରିଥିଲେ । ସେଥର ବନ୍ଦୀ ଭାବରେ ୧୯୪୫ ମସିହା ଜୁନ ୧୫ ତାରିଖ ପର୍ଯ୍ୟନ୍ତ ସେ ସେଠାରେ ରହିଥିଲେ ।

ପିତାଙ୍କ ଗିରଫ ହେବା ପରେ ପରେ ଇନ୍ଦିରା ଫିରୋଜଙ୍କ ସହିତ ଆହ୍ଲାବାଦ ବାହାରିଥିଲେ । ସେଇଠି ପହଞ୍ଚିବା ବେଳକୁ ରାତିର ଅର୍ଦ୍ଧାଧିକ ସମୟ ଅତିବାହିତ

ହୋଇ ସାରିଥିଲା । ତାର ମାତ୍ର କେତେ ଘଣ୍ଟା ପରେ ପୁଣି ପୋଲିସ ଆସି ଆନନ୍ଦ ଭବନରେ ହାଜର ହୋଇଥିଲେ ବଡ଼ ପିଉସୀ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତଙ୍କୁ ଗିରଫ କରିନେବାପାଇଁ । ଗିରଫଦାରପାଇଁ ପୋଲିସମାନଙ୍କର ପ୍ରକୃଷ୍ଟ ସମୟ ଥିଲା ବଡ଼ି-ଭୋର । ଦିବସର ଆଲୋକ ଓ ରାତିର ଅନ୍ଧକାରର ମିଳନ ମୁହୂର୍ତ୍ତକୁ ହିଁ ସେମାନେ ଗିରଫ କରିବାକୁ ଉପଯୁକ୍ତ ସମୟ ବୋଲି ଧରି ନେଇଥିଲେ ।

"ଭାରତଛାଡ଼" ଆନ୍ଦୋଳନ ପ୍ରସ୍ତାବ ବମ୍ବେ ଅଧିବେଶନରେ ଗୃହୀତ ହେବା ଓ ତା ପରଦିନ ଅନ୍ୟାନ୍ୟମାନଙ୍କ ଗିରଫଦାରିର ଠିକ୍ ପରଠାରୁ ଇନ୍ଦିରା କିଛୁଦିନ ପାଇଁ ଫିରୋଜଙ୍କ ସହିତ ସମ୍ପର୍କ ସ୍ଥାପନ କରିପାରି ନ ଥିଲେ । ଫିରୋଜ କଂଗ୍ରେସର ଏକ ସକ୍ରିୟ ସଭ୍ୟ ଥିବାରୁ ତାହାଙ୍କୁ ଗିରଫ କରିବାପାଇଁ ପରଓ୍ୱାନା ଜାରି ହୋଇଥିଲା । କିନ୍ତୁ ଅନ୍ୟମାନଙ୍କ ପରି ଫିରୋଜ ସହଜରେ ପୋଲିସ ହାତରେ ଧରାହେବା ଲୋକ ନ ଥିଲେ । ଦେଶରେ କଂଗ୍ରେସର ବାର୍ତ୍ତା ପ୍ରଚାର କରି ଜନମତ ସୃଷ୍ଟି କରିବା ଦିଗରେ ସେ ଥିଲେ ଜଣେ ଅଗ୍ରଣୀ ସେନା । ତାଙ୍କ ନାମରେ ପରଓ୍ୱାନା ଜାରି ହେବା ପରେ ପରେ ଫିରୋଜ କିଛୁଦିନ ଲାଗି ଆତ୍ମଗୋପନ କରିଥିଲେ ଏବଂ ଯେକୌଣସି ମତେ କଂଗ୍ରେସ ବାର୍ତ୍ତା ପ୍ରଚାର ଚଳାଇବା ଲାଗି ସଙ୍କଳ୍ପ କରିଥିଲେ । ସେ ନିଜର ବେଶପୋଷାକ ବଦଳାଇ ଖାକି ପୋଷାକ ପିନ୍ଧୁଥିଲେ ଏବଂ ମୁହଁରେ କିଛି କିଛି ଦାଢ଼ି ବଢ଼ାଇ ଦେଇଥିଲେ । ଗୋରା ତକ୍ ତକ୍ ଚେହେରା ଓ ଈଷତ୍ ଲାଲ ଗାଲଗୁଡ଼ିକ ସହିତ ଖାକି ପୋଷାକ; ସଠିକ୍ ଭାବେ ଜଣାଯାଉଥିଲେ ଜଣେ ଲୋହିତ ଭାରତୀୟ-ସୈନିକ ।

ସେଇ ବେଶପୋଷାକରେ ସେ ବମ୍ବେ ପରିତ୍ୟାଗ କରିଥିଲେ ଆହ୍ଲାବାଦ ଯିବାପାଇଁ । କିନ୍ତୁ ଆହ୍ଲାବାଦ ଯିବା ରାସ୍ତାରେ କୌଣସି ଏକ ଷ୍ଟେସନରେ ଓହ୍ଲାଇ ଯାଇଥିଲେ । କାରଣ ସେ ଆଶଙ୍କା କରିଥିଲେ ଯେ ଯେତେ ବେଶ ବଦଳାଇ ଥିଲେ ମଧ୍ୟ ଆହ୍ଲାବାଦଠାରେ ପହଞ୍ଚିଗଲେ ସେଠା ପୋଲିସବାଲାଙ୍କ ଆଖିରୁ ଲୁଚି ଯାଇପାରିବେ ନାହିଁ । ତେଣୁ ଅନ୍ତତଃ କିଛୁଦିନପାଇଁ ଅତି ପରିଚିତ ପୁରାତନ ସ୍ଥାନକୁ ନ ଯିବା ଲାଗି ସେ ସ୍ଥିର କରିଥିଲେ ।

ମାତ୍ର କେତୋଟି ଦିନ ସେଠାରେ ରହିବା ପରେ ତାଙ୍କ ମୁହଁର ବର୍ଦ୍ଧିତ ଦାଢ଼ି ପ୍ରକୃତରେ ତାହାଙ୍କ ପୂର୍ବ ଚେହେରାକୁ ବିକୃତ କରି ପକାଇଥିଲା । ସେ ଆଦୌ ଚିହ୍ନି ହେଉ ନ ଥିଲେ । ଜଣାଯାଉଥିଲେ ଠିକ୍ ଯେପରି ଜଣେ ଇଂରେଜ ସୈନିକ । ଏପରି କି ଗୋଟିଏ ମିଲିଟାରୀ ଟ୍ରକ ଯୋଗେ ସେ ଆହ୍ଲାବାଦ ଫେରି ଆସିଥିଲେ ମଧ୍ୟ ଚିହ୍ନା ପଡ଼ି ନ ଥିଲେ ।

ଆହ୍ଲାବାଦଠାରେ ପହଞ୍ଚିଯିବା ପରେ ଫିରୋଜ ପୁଣି ଇନ୍ଦିରାଙ୍କ ସହିତ ସମ୍ପର୍କ ସ୍ଥାପନ କରିଥିଲେ । ବିଶେଷ କରି ଆନନ୍ଦ ଭବନ ସମସ୍ତ ସାଧନାର ପୀଠସ୍ଥଳୀ

ଥିବା ଯୋଗୁ ପୋଲିସ ବାହିନୀ ତାଙ୍କୁ କଡ଼ା ନଜରରେ ରଖିଥିଲେ । ଆନନ୍ଦ ଭବନ ଉପରେ ମଧ୍ୟ କମ୍ ଦୃଷ୍ଟି ନ ଥିଲା ଇଂରେଜ ସରକାରଙ୍କର । ସେହି କାରଣରୁ ଫିରୋଜ ଗୃହରେ ମଧ୍ୟ ରାଜନୈତିକ ନେତୃବୃନ୍ଦଙ୍କ ସହିତ ଆଲାପ ଆଲୋଚନା କରିବାକୁ ନିରାପଦ ମନେ କରୁ ନ ଥିଲେ । ତେଣୁ ଯେଉଁ ବନ୍ଧୁମାନଙ୍କର ରାଜନୀତି ସହିତ କୌଣସି ସମ୍ପର୍କ ନ ଥିଲା ବା ଯେଉଁ ବନ୍ଧୁମାନେ ଇଂରେଜ ସରକାରଙ୍କ ଶ୍ୟେନ ଦୃଷ୍ଟିର ପରିସର ମଧ୍ୟରେ ନ ଥିଲେ, ଫିରୋଜ ସେହିମାନଙ୍କ ଘରେ ଇନ୍ଦିରା ତଥା ଅନ୍ୟମାନଙ୍କ ସହିତ ମିଶୁଥିଲେ ରାତ୍ରିର ଅନ୍ଧକାର ମଧ୍ୟରେ ।

**ଆନନ୍ଦ ଭବନରେ ଶାସ୍ତ୍ରୀଜୀ :—**

ଲାଲବାହାଦୂର ଶାସ୍ତ୍ରୀ ଆନନ୍ଦ ଭବନ ସହିତ ଠିକ୍ ଏ ସମୟରେ ସମ୍ପର୍କ ସ୍ଥାପନ କରିଥିଲେ ମଧ୍ୟ ଜବାହରଲାଲଙ୍କ ଅତି ନିକଟତମ ହୋଇ ପାରିଥିଲେ । ତାହାଙ୍କୁ ଗିରଫ କରିବାଲାଗି ମଧ୍ୟ ପରୱାନା ଜାରି ହୋଇଥିଲା । ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନ ଶାସ୍ତ୍ରୀଜୀ ସେତେବେଳେ ଥିଲେ ଆନନ୍ଦ ଭବନ ଭିତରେ । ସେ ବିଗ୍ଭର କରିଥିଲେ ଯେ ପ୍ରକୃତରେ ସେ ଆନନ୍ଦ ଭବନ ଭିତରେ ରହୁଥିଲେ ମଧ୍ୟ କୌଣସି ଲୋକ ସେହି ବାସ୍ତବତା ପ୍ରତି ବିଶ୍ୱାସ କରିପାରିବେ ନାହିଁ । କାରଣ ସବୁ ପୋଲିସ, ସି.ଆଇ.ଡି. ତଥା ଖୋଦ୍ ସରକାରଙ୍କ କଟୁ ଦୃଷ୍ଟି ପ୍ରତି ମୁହୂର୍ତ୍ତରେ ଆନନ୍ଦ ଭବନ ପ୍ରତି ଆକର୍ଷିତ ହେଉଥିଲା । ତେଣୁ କୌଣସି ଲୋକ ଜାଣିଶୁଣି ଆନନ୍ଦ ଭବନ ଭିତରେ ରହିବାକୁ ନିରାପଦ ମନେ କରିବା କଳ୍ପନାର ବାହାରେ, ବିଶେଷତଃ ସେହି ସଙ୍କଟମୟ ସମୟରେ । କିନ୍ତୁ ତଥାପି ଅନେକ ଦିନ ପର୍ଯ୍ୟନ୍ତ ଶାସ୍ତ୍ରୀଜୀ ପୋଲିସ-ମାନଙ୍କ କଟୁ କଟାକ୍ଷ ନିବଦ୍ଧ ଥିବା ସ୍ୱାଧୀନତା ସଂଗ୍ରାମର ପ୍ରାଣକେନ୍ଦ୍ର ଆନନ୍ଦ ଭବନ ଭିତରେ ହିଁ ରହି ପୋଲିସକୁ ଫାଙ୍କି ଦେଉଥିଲେ । ସାରା ଦିନ ଘର ଭିତରେ କବାଟ କିଳି ଆତ୍ମଗୋପନ କରି ରାତ୍ରିର ଅନ୍ଧକାର ଘନେଇ ଆସିବା ପରେ ସେ ଘରୁ ବାହାରୁଥିଲେ । ଦିନବେଳେ ଖାଦ୍ୟ ପଦାର୍ଥ ଏବଂ ଅନ୍ୟାନ୍ୟ ଆବଶ୍ୟକ ଜିନିଷପତ୍ର ସ୍ୱୟଂ ଇନ୍ଦିରା ଗାନ୍ଧୀ ପହଞ୍ଚାଇ ଦେଉଥିଲେ ଶାସ୍ତ୍ରୀଜୀଙ୍କ ନିକଟରେ ଅତି ସାବଧାନତାର ସହିତ । କେହି ଯେପରି ସେସବୁ କାର୍ଯ୍ୟ ଦେଖି ନ ପାରନ୍ତି ବା ସାମାନ୍ୟ ମାତ୍ର ଖବର ପାଇ ନ ପାରନ୍ତି, ସେଥିଲାଗି ଯଥେଷ୍ଟ ନଜର ଦିଆଯାଉ-ଥିଲା । ଏ ଖବର ଏତେ ସାବଧାନତାର ସହିତ ରଖାଯାଇଥିଲା ଯେ ଆନନ୍ଦ ଭବନର ଅନେକ କର୍ମଚାରୀ ଜାଣିଥିଲେ ସେହି କୋଠରୀରେ ପରିବାରର କୌଣସି ସଦସ୍ୟ ରୋଗଶଯ୍ୟାରେ ଶଯ୍ୟାଶାୟୀ । ତାଙ୍କର ସେବାଶୁଶ୍ରୂଷାର ଭାର ନିଜେ ଶ୍ରୀମତୀ ଗାନ୍ଧୀ ଗ୍ରହଣ କରିଥିଲେ, ଖାଇବା ପିଇବା ସେଠାକୁ ନେଇ ଯାଉଥିଲେ । ଜାଣି ନ ଥିଲେ ଯେ ସେଇ ରାଜନୈତିକ ରୋଗୀ ଥିଲେ ସ୍ୱୟଂ ଶାସ୍ତ୍ରୀଜୀ ।

କିନ୍ତୁ ଶାସ୍ତ୍ରୀଜୀ ଏବଂ ଅନ୍ୟାନ୍ୟମାନେ ଅନୁଭବ କରିଥିଲେ ଯେ ସେ ଅଧିକ-କାଳ ଆତ୍ମଗୋପନ କରି ରହିପାରିବେ ନାହିଁ । ସାଦା ପୋଷାକ ପରିଧାନ କରି ପୋଲିସ ଧନସ୍ୱାଧର ବ୍ୟବଧାନ ନ ରଖି ନିରନ୍ତର ଆନନ୍ଦ ଭବନର ଗୃହପଟେ ଘୂରି ବୁଲୁଥିଲେ । ତେଣୁ ଯେକୌଣସି ମୁହୂର୍ତ୍ତରେ ଅନନ୍ଦ ଭବନକୁ ତଲାସ କରିବା ଆଶଙ୍କା ଅସ୍ୱାଭାବିକ ନ ଥିଲା । ସେସବୁ ବିଚାର କରି ସେ ଆନନ୍ଦ ଭବନରୁ ଚାଲିଯାଇ ଅନ୍ୟ କେଉଁଠି ଆତ୍ମଗୋପନ କରିବେ ତାହା ଚିନ୍ତା କରୁଥିଲେ ।

ତେବେ ସାଦା ପୋଷାକପରିହିତ ପୋଲିସମାନଙ୍କ କବଳରୁ ସେ ରକ୍ଷା ପାଇପାରି ନ ଥିଲେ । କମ୍ ସମୟ ମଧ୍ୟରେ ଗିରଫ ହୋଇଥିଲେ ଶାସ୍ତ୍ରୀଜୀ ।

**ଇଓଇଙ୍ଗ କଲେଜରେ ଜାତୀୟ ପତାକା :**

ସେଇ ସମୟରେ ଇଓଇଙ୍ଗ୍ କଲେଜର ଛାତ୍ରମାନେ ସେମାନଙ୍କ କଲେଜ ପ୍ରାଙ୍ଗଣରେ ଗୋଟିଏ ଭାରତୀୟ ତ୍ରିରଙ୍ଗ ଜାତୀୟ ପତାକା ଉଡ଼ାଇବା ଲାଗି ସଂକଳ୍ପ କରିଥିଲେ । ସେ ସଂକଳ୍ପକୁ ରୂପ ଦେବା ପାଇଁ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱକୁ ସେମାନେ ପସନ୍ଦ କରିଥିଲେ । ଠିକ୍ କରିଥିଲେ ସେଠାରେ ଏକ ସାଧାରଣ ଛାତ୍ରସଭା କରାଇ ଶ୍ରୀମତୀ ଗାନ୍ଧୀଙ୍କୁ ତାହାର ସଭାନେତ୍ରୀ କରାଇବେ ।

ସେ ପ୍ରସ୍ତାବକୁ ଇଂରେଜ ସରକାର ଅନୁମତି ଦିଅନ୍ତେ କିପରି ? ତଥାପି ସଭାର ଆୟୋଜନ କରାଯାଇଥିଲା ।

ଠିକ୍ ସମୟରେ ଯେତେବେଳେ ଇନ୍ଦିରା କଲେଜ ହତା ମଧ୍ୟରେ ପ୍ରବେଶ କରିଥିଲେ, ସେ ଦେଖିଥିଲେ ସମବେତ ହଜାର ହଜାର ଛାତ୍ରଙ୍କ ଉପରେ ଚାଲିଥିଲା ବ୍ରିଟିଶ ପୋଲିସ ବାହିନୀର ଅକଥନୀୟ ଅତ୍ୟାଚାର । ଅନେକ ଛାତ୍ରଙ୍କ ଦେହରୁ ଧାରଧାର ରକ୍ତ ବୋହୁଥିଲା । ତଥାପି ଛାତ୍ରମାନେ ପତାକାକୁ ଉଡ଼ାଇ ରଖିବା ଲାଗି ଉଦ୍ୟମ କରୁଥିଲେ । ସେ ଉଦ୍ୟମ ଦେଖି ଶ୍ରୀମତୀ ଗାନ୍ଧୀ ଖୁବ୍ ଗର୍ବ ଅନୁଭବ କରିଥିଲେ ।

ସୁକୁମାର ବୟସର ଛାତ୍ରମାନେ ଆଉ କେତେ ଲାଠିପ୍ରହାର ସହ୍ୟ କରନ୍ତେ !

ପତାକାଟି ଠିକ୍ ତଳେ ପଡ଼ିବା ଅବସ୍ଥାରେ ଇନ୍ଦିରା ଗାନ୍ଧୀଙ୍କ ହୃତ୍‌କମ୍ପନ ବଢ଼ି ଯାଇଥିଲା । ଆଉ କାଳବିଳମ୍ବ ନ କରି ସିଧାସିଧା ସେଇ ଛାତ୍ରଗହଳି ଭିତରକୁ ମାଡ଼ି ଯାଇଥିଲେ । ପତାକାଟିକୁ ପୁଣି ସିଧା କରି ଉଡ଼ାଇ ରଖିବାର ପ୍ରୟାସ କରିଥିଲେ ।

ସେ ପରିବେଶରେ ଅତ୍ୟାଚାରିତ ଛାତ୍ରମାନଙ୍କର ହୃତ ଦମ୍ଭ ପୁଣି ଫେରି ଆସିଥିଲା । ଶତସିଂହର ବଳରେ ଶକ୍ତିମନ୍ତ ହୋଇ ଉଠିଥିଲେ ସେମାନେ । ଆକାଶ ପାତାଳ ପ୍ରକମ୍ପିତ କରି ଧ୍ୱନି ଦେଇଥିଲେ—"ଝଣ୍ଡା ଉଞ୍ଚା ରହେ ହମାରା···"

ମାତ୍ର ମୁହୂର୍ତ୍ତିକ ମଧ୍ୟରେ ସେଠାରେ ଉପସ୍ଥିତ ଥିବା ଗ୍ରାମମାନଙ୍କ ମଧ୍ୟରେ ଉତ୍ତେଜନା ଖେଳି ଯାଇଥିଲା । ଗୋରା ପୋଲିସବାହିନୀ ଆହୁରି ଟିକିଏ କଠୋର ହୋଇ ପଡ଼ିଥିଲେ; ଲାଠିଚାଳନା ଆରମ୍ଭ କରି ଦେଇଥିଲେ ଆଖିବୁଜା । ତା'ପରେ ଲାଠିମାଡ଼ । ସେଥିରେ ସେ ବିଚଳିତ ହୋଇଯାଇ ନ ଥିଲେ । ଗୋଟିଏ ପରେ ଗୋଟିଏ ହୋଇ ଅଳ୍ପ କେତୋଟି ପାହାର ପିଠି ଉପରେ ବସିବା ପରେ ଏକ ଲାଠି ସ୍ରେଟ ବସିଥିଲା ଇନ୍ଦିରାଙ୍କ ହାତ ଉପରେ, ଯେଉଁ ହାତରେ ସେ ପତାକାଟିକୁ ଧରି ରଖିଥିଲେ ।

ଜୀବନରେ ସେ ଥିଲା ପ୍ରଥମ ଥର ଲାଗି ପୋଲିସ ହାତରୁ ମାଡ଼ ଖାଇବାର ଅନୁଭୂତି; ଗୋରା ସରକାରଙ୍କ ଅତ୍ୟାଚାରର ଶିକାର ହେବାର ଘଟଣା । ସମଗ୍ର ଶରୀରରେ କମ୍ପନ ସୃଷ୍ଟି ହୋଇଥିଲା । ପରି ମୁହୂର୍ତ୍ତିରେ ତାଙ୍କର ମନେ ପଡ଼ିଥିଲା ଯେ ତାଙ୍କର ବୃଦ୍ଧା 'ଆଇମାଁ' କେବଳ ନିଜର ପଣ ରକ୍ଷା କରିବା ଲାଗି ଏଠି ପୋଲିସମାନଙ୍କ ଲାଠିପ୍ରହାରରେ ହତଜ୍ଞାନ ହୋଇ ମଧ୍ୟ ନିଜ ପ୍ରତିଜ୍ଞାରେ ଅଟଳ ଥିଲେ, ପିତାଙ୍କଙ୍କ ଜୀବନରେ ଲାଠିମାଡ଼ ଖାଇବା ଏକ ନିହାତି ମାମୁଲି ଘଟଣା ହୋଇ ପଡ଼ିଥିଲା—ବୃଦ୍ଧ ଦାଦୁଙ୍କର ମଧ୍ୟ ସେଥିପାଇଁ ଖାତିର ନ ଥିଲା । ଗୋଟିଏ ପରେ ଗୋଟିଏ ହୋଇ ଦୁଇ—ତିନି—ଚାରି ଥର ଲାଠିର ପ୍ରହାର ସେଇ ହାତ ଉପରେ ବସିଥିଲେ ମଧ୍ୟ କେଜେମା', ପିତାଜୀ ଓ ଦାଦୁଙ୍କ ସ୍ୱରୂପ ଆଖି ଆଗରେ ନାଚି ଉଠୁଥିଲା । ସେ ପତାକାଟିକୁ ଦୃଢ଼ ଭାବରେ ଧରି ରଖିବାକୁ ଅପ୍ରାଣ ଚେଷ୍ଟା କରିଥିଲେ ।

ଇନ୍ଦିରାଙ୍କ ଅଟଳ ପ୍ରତିଜ୍ଞା ସହିତ ତାଳ ଦେଇଥିଲେ ପୋଲିସ ବାହିନୀ । ସେମାନେ ମଧ୍ୟ ହିଂସ୍ର ହୋଇ ଉଠିଥିଲେ । ଲାଠି ପ୍ରହାରର ମାତ୍ରା ବହୁଗୁଣ ବୃଦ୍ଧି ପାଇଥିଲା ଓ ଗୋଟିଏ ପରେ ଗୋଟିଏ ହୋଇ ଇନ୍ଦିରାଙ୍କ ସମଗ୍ର ଶରୀରରେ ଆଖିବୁଜା ପ୍ରହାର ବସିଥିଲା । ଅସହ୍ୟ ଯନ୍ତ୍ରଣାରେ ଛଟପଟ ହୋଇ ଭୂଇଁ ଉପରେ ଲୋଟି ପଡ଼ିଥିଲେ ସେ—ଅଥଚ ହାତର ଶକ୍ତ ମୁଠା ଭିତରେ ରହିଥିଲା ଭାରତୀୟ ଜାତୀୟ ପତାକା ।

ଶେଷରେ ନିର୍ମମ ପୋଲିସବାହିନୀ ତାଙ୍କ ଶରୀର ଉପରେ ମାଡ଼ି ଚାଲିଯାଇଥିଲେ । ସେତିକିବେଳେ ଇନ୍ଦିରା ପୋଲିସବାହିନୀର ପ୍ରହାର ଯନ୍ତ୍ରଣା ସେତିକି ଅନୁଭବ କରୁ ନ ଥିଲେ, ପୋଲିସବାହିନୀର ଲୋକଙ୍କ ପ୍ରତି ମନ ତାଙ୍କର ଘୃଣାରେ ପୂରି ଉଠୁଥିଲା । ବିଜୟ ଗର୍ବରେ ଘରକୁ ଫେରିବା ପରେ ହିଁ ପୋଲିସ ଲାଠି ପ୍ରହାରର ପ୍ରଭାବ ଅନୁଭବ କରିଥିଲେ ସେ । K. A. Abbasଙ୍କ ସହିତ ସାକ୍ଷାତକାର ବେଳେ ସେ ଘଟଣାର ଚାଳିଶ ବର୍ଷ ପରେ ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ଶ୍ରୀମତୀ ଗାନ୍ଧୀ କହିଥିଲେ—"I felt pain, but only later on when I

went home. At the moment I felt only anger—an enormous anger, a passionate anger and hatred for those cruel hearted policemen whom I had known from childhood as the hated symbols of the Britishraj." *

ସେଦିନ ଜାତୀୟ ପତାକା ଉତ୍ତୋଳନ କରିପାରିଥିବାର ବିଜୟ ଗର୍ବରେ ଗର୍ବିତ ହୋଇ ଏବଂ ଅନେକଟା ଶାରୀରିକ ଯନ୍ତ୍ରଣାରେ କ୍ଲାନ୍ତ ହୋଇ ସେ ଘରକୁ ଫେରି ଆସିଥିଲେ । ସେଦିନ ଖୁବ୍ ଆତ୍ମସନ୍ତୋଷ ପାଇଥିଲେ ସେ ସ୍ୱାଧୀନତା ସଂଗ୍ରାମର ସୈନିକ ଭାବେ କିଛିଟା ସ୍ମୃତି-ସମ୍ବଳ ସଞ୍ଚୟ କରିଥିଲେ ବୋଲି ।

ଆତ୍ମଗୋପନ କରିଥିବା ଫିରୋଜ ସେଦିନ ରାତିରେ ଏକାନ୍ତ ଗୋପନରେ ଆସି ଇନ୍ଦିରାଙ୍କ ସହିତ ଦେଖା କରିଥିଲେ ଓ ସେ ଘଟଣା ସମ୍ପର୍କରେ ଜାଣିବାକୁ ଚାହିଁଥିଲେ । କିନ୍ତୁ ଇନ୍ଦିରା ତାହାଙ୍କୁ ଉତ୍ତର ଦେଇଥିଲେ ଯେ ସେଠାରେ ସାମାନ୍ୟ ଉତ୍ତେଜନା ସୃଷ୍ଟି ହୋଇଥିଲେ ମଧ୍ୟ ସେମାନେ ପତାକା ଉତ୍ତୋଳନ କରିପାରିଥିଲେ । ଅନ୍ୟଦିନ ଭଳି ସେଦିନ ମଧ୍ୟ ଇନ୍ଦିରା ଶାନ୍ତ ଜଣାପଡୁଥିଲେ । କିନ୍ତୁ ଫିରୋଜ ଜାଣିଥିଲେ ଯେ ସେଇ ଶାନ୍ତ ଚେହେରା ଭିତରେ ବି ରହିଥିଲା ଅଗ୍ନିର ସ୍ଫୁଲିଙ୍ଗ; ତାର ଭିତରେ ବି ଲୁଚି ରହିଥିଲା ଶାରୀରିକ ଯନ୍ତ୍ରଣାର ଅନେକ ଅକୁହା କାହାଣୀ ।

**ପୋଲିସ ଭ୍ୟାନରେ ଇନ୍ଦିରା :**

ବିଶ୍ୱସ୍ତ ସୂତ୍ରରୁ ଇନ୍ଦିରା ଖବର ପାଇଥିଲେ ଯେ ଅତି ଶୀଘ୍ର ତାଙ୍କୁ ଗିରଫ କରିବା ପାଇଁ ଯୋଜନା ଚାଲିଥିଲା । ସେତେବେଳ ପର୍ଯ୍ୟନ୍ତ ସେ ପ୍ରକୃତରେ ଇଂରେଜ ସରକାରଙ୍କ ବିଷଦୃଷ୍ଟିରେ ପଡ଼ି ନ ଥିଲେ କହିଲେ ଚଳେ । ସରକାର ଯେତେବେଳେ ଜାଣିବାକୁ ପାଇଥିଲେ ଯେ ରାଜନୈତିକ କାର୍ଯ୍ୟକଳାପ ସହ ଇନ୍ଦିରା ମଧ୍ୟ ନିଜକୁ ସାମିଲ କରିଛନ୍ତି, ତାହାଙ୍କୁ ଆଉ ମୁକ୍ତବାୟୁ ଓ ଆଲୋକ ଦିଆ ନ ଯିବାପାଇଁ ସ୍ଥିରକରିଥିଲେ । ସେ ଖବର ଜାଣିବାପରେ ସେ ପ୍ରକୃତରେ ଜେଲ ହାଜତରେ ଚାରି କାନ୍ଥ ଭିତରେ ବନ୍ଦୀ ହୋଇ ନିଷ୍କ୍ରିୟ ଜୀବନ ଯାପନ କରିବାକୁ ଇଚ୍ଛା କରି ନ ଥିଲେ । କିନ୍ତୁ ଆଗରୁ ଥରେ ଅନ୍ତତଃ ଜେଲ ଯିବାପାଇଁ ତାଙ୍କର ଇଚ୍ଛା ଥିଲେ ମଧ୍ୟ ସେତେବେଳର ପରିସ୍ଥିତିରେ, ଯେତେବେଳେ ଭାରତର ପ୍ରାୟ ସମସ୍ତ ନେତା ଜେଲରେ, ସେ ବନ୍ଦୀ ହେବା ଉପଯୁକ୍ତ ସମୟ ବୋଲି ମନେ କରୁ ନ ଥିଲେ । ସେ ଦେଖି ପାରୁଥିଲେ ତାଙ୍କ ସମ୍ମୁଖରେ ଦୀର୍ଘପଥ । ସେ ପଥକୁ ଅତିକ୍ରମ କରିବାକୁ ହେବ । ସମୟ ଖୁବ୍ କମ୍ । ତେଣୁ ପ୍ରତ୍ୟେକ ମୁହୂର୍ତ୍ତ ତାଙ୍କ ନିକଟରେ ଅତି

* K. A. Abbas—Return of the red rose—P-96

ମୂଲ୍ୟବାନ । ସେ ଦୃଷ୍ଟିରୁ ସେ ଗୃହୁଁ ଥିଲେ ଜନସାଧାରଣଙ୍କୁ ଦେଶମୁକ୍ତି ଆନ୍ଦୋଳନରେ ନିଜକୁ ଉତ୍ସର୍ଗ କରିବାପାଇଁ ପ୍ରେରଣା ଦେବେ—ଜାତୀୟ ପ୍ରେମରେ ଉଦ୍‌ବୁଦ୍ଧ କରାଇ ଜାତୀୟ ଜାଗରଣ ଲାଗି ସୈନିକ ତିଆରି କରାଇବେ ।

"ଭାରତ ଛାଡ଼" ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହୋଇସିବା ପରେ ଅଧିକାଂଶ ନେତା ଓ କଂଗ୍ରେସ କର୍ମୀଙ୍କୁ ଗିରଫ କରାଯାଇଥିଲା । ଆଉ ଯେଉଁ କର୍ମୀମାନେ ଆତ୍ମଗୋପନ କରିଥିଲେ, ସେମାନଙ୍କର ଏକ ଗୋପନ ସଭା ହୋଇ ସ୍ଥିର ହୋଇଥିଲା ଯେ କୌଣସିମତେ ଭାରତଛାଡ଼ ଆନ୍ଦୋଳନ ସମ୍ପର୍କୀୟ ଗୃହୀତ ପ୍ରସ୍ତାବ ଜନସାଧାରଣଙ୍କ ନିକଟରେ ପହଞ୍ଚିବା ଆବଶ୍ୟକ । ସେ ପ୍ରକାର ପରିସ୍ଥିତିରେ କେବଳ ସଭାସମିତି କରି ନିଜ ଉଦ୍ଦେଶ୍ୟ ସାଧନ କରିବା ବ୍ୟତୀତ ଆଉ ଅନ୍ୟ କିଛି ଉପାୟ ନ ଥିଲା । କାରଣ ଲେଖା କିମ୍ବା ପ୍ରାଚୀରପତ୍ରର ସମ୍ଭାବନା ଖୁବ୍ କମ୍ ଥିଲା—ନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ତଥାପି ଅତି ସତର୍କତାର ସହିତ ସେସବୁ କାର୍ଯ୍ୟ ସମାହିତ କରାଯାଉଥିଲା ।

ଇନ୍ଦିରା ଯେତେବେଳେ ଜାଣିଲେ ଯେ ସେ ନିଶ୍ଚିତ ଭାବେ ଗିରଫ ହେଉଛନ୍ତି—ଅତି ସାଧାରଣ ଭାବେ ପୋଲିସ ହାତରେ ଧରାଦେବା ପୂର୍ବରୁ ଅନ୍ତତଃ ଜନସାଧାରଣଙ୍କ ସମ୍ମୁଖରେ ଗିରଫ ହେବା ପାଇଁ ସେ ପସନ୍ଦ କରିଥିଲେ । ଆନନ୍ଦ ଭବନ ଭିତରେ ରହି ପୋଲିସ ହାତରେ ଧରା ଦେଲେ ଲୋକଙ୍କ ଉପରେ ଯେଉଁ ପ୍ରକାର ପ୍ରଭାବ ପଡ଼ିବ, ତା ଅପେକ୍ଷା ସେମାନଙ୍କ ସମ୍ମୁଖରେ ପୋଲିସ ତାଙ୍କୁ ଧରିନେଲେ ଯେ ତାର ଏକ ଅଲଗା ପ୍ରଭାବ ଲୋକମାନଙ୍କ ଉପରେ ପଡ଼ିବ ଓ ଜନସାଧାରଣ ଇଂରେଜ ପୋଲିସବାହିନୀ ତଥା ସରକାରଙ୍କ ଉପରେ ଅଧିକ ଉତ୍ତ୍ୟକ୍ତ ହେବେ ସେଥିରେ ସେ ନିଃସନ୍ଦେହ ଥିଲେ । ତେଣୁ ସେ ସ୍ଥିର କରିଥିଲେ ଅନ୍ତତଃ ତାଙ୍କୁ ପୋଲିସ ଗିରଫ କରିବା ପର୍ଯ୍ୟନ୍ତ ସେ ଆନନ୍ଦ ଭବନ ଭିତରେ ରହିବେ ନାହିଁ ଓ ସେଦିନ ସନ୍ଧ୍ୟାରେ ଏକ ସାଧାରଣ ସଭା କରାଇ ସରକାରଙ୍କ ନିଷେଧାଜ୍ଞା ଭଙ୍ଗ କରି ଆନନ୍ଦ ଭବନ ଛାଡ଼ି କୌଣସି ଏକ ଗୋପନ ସ୍ଥାନକୁ ଯିବା ପୂର୍ବରୁ ସେ ଅତ୍ୟନ୍ତ ଗୋପନତା ରକ୍ଷା କରି କାନରୁ କାନକୁ ଏକ ବାର୍ତ୍ତା ପ୍ରଚାର କରି ଦେଇଥିଲେ ଯେ ସେଦିନ ଅପରାହ୍ଣରେ ଏକ ସାଧାରଣ ସଭା ଅନୁଷ୍ଠିତ ହେବ । ସେପରି ପ୍ରଚାରର ଭିନ୍ନ ଉଦ୍ଦେଶ୍ୟ ଥିଲା । ସର୍ବସାଧାରଣରେ ସେ ବିଷୟ ପ୍ରଚାର ନ କରି ସେପରି ଭାବରେ ପ୍ରଚାର କରାଗଲେ ପୋଲିସବାହିନୀ ସଭା ସମ୍ପର୍କରେ କୌଣସି ସୂଚନା ପାଇପାରିବେ ନାହିଁ ଏବଂ ତାହା ଫଳରେ ସଭାର ଅବ୍ୟବହିତ ପୂର୍ବରୁ କୌଣସି ପଦକ୍ଷେପ ସେମାନେ ନେଇପାରିବେ ନାହିଁ ।

ବିଶେଷ କରି ସଭା ଓ ଶୋଭାଯାତ୍ରା ଉପରେ ସରକାର ନିଷେଧାଜ୍ଞା ଜାରି କରିଥିଲେ ଓ ସେହି ନିଷେଧାଜ୍ଞା ପ୍ରଥମେ ଭଙ୍ଗ କରିଥିଲେ ଶ୍ରୀମତୀ ଗାନ୍ଧୀ ।

ସତକୁ ସତ ସେଇଆ ହୋଇଥିଲା । ସଭା ବିଷୟରେ ଖବର ପାଇଥିଲେ ମଧ୍ୟ ପୋଲିସବାହିନୀ ସବିଶେଷ ବିବରଣୀ ଜାଣିପାରି ନ ଥିଲେ । ସାରା ସହରରେ ବୁଲି ବୁଲି ହାଲିଆ ହୋଇଥିଲେ ମଧ୍ୟ ପ୍ରକୃତରେ କେଉଁଠି ଓ କେତେବେଳେ ସଭା ହେବା ଲାଗି ସ୍ଥିର ହୋଇଥିଲା, ତାହାର ସନ୍ଧାନ ଧରିପାରି ନ ଥିଲେ । ପ୍ରସ୍ତୁତି କାମ କିନ୍ତୁ ଚୁପ୍‌ଚାପ୍ ଚାଲିଥିଲା ।

ସଭାର ନିର୍ଦ୍ଧାରିତ ସମୟ ପାଖେଇ ଆସୁଥିଲା ।

ଲୋକେ ନିର୍ଦ୍ଦିଷ୍ଟ ସ୍ଥଳରେ; ନିକଟ ପାନ ଦୋକାନରେ, ସିନେମା ହଲ ସମ୍ମୁଖରେ, ନିକଟସ୍ଥ ଗୃହମାନଙ୍କରେ ଆସି ଇନ୍ଦ୍ରଙ୍କୁ ଅପେକ୍ଷା କରିଥିଲେ । ନିର୍ଦ୍ଧାରିତ ସମୟ ଠିକ୍ ପାଞ୍ଚଟାରେ ହଠାତ୍ ଇନ୍ଦ୍ର ଆସି ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚି ଯାଇଥିଲେ ।

ସଙ୍ଗେ ସଙ୍ଗେ ସଭାସ୍ଥଳ ଲୋକାରଣ୍ୟ ହୋଇଯାଇଥିଲା ।

ଇନ୍ଦ୍ର ଦୃଢ଼ କଣ୍ଠରେ ପ୍ରାୟ ଦଶ ମିନିଟ ପର୍ଯ୍ୟନ୍ତ ଭାଷଣ ଦେବା ସୁଯୋଗ ପାଇଥିଲେ । ସେତିକ ସମୟ ଉପସ୍ଥିତ ଜନସାଧାରଣଙ୍କ ଧମନୀର ଶୀତଳ ରକ୍ତ-ପ୍ରବାହକୁ ଉଷ୍ମ କରିଦେବା ଲାଗି ଯଥେଷ୍ଟ ଥିଲା ।

ଖୁବ୍ କମ୍ ସମୟ ମଧ୍ୟରେ ଲାଠି ଏବଂ ବନ୍ଧୁକଧାରୀ ଇଂରେଜ ଗୋରା ପୋଲିସ ଟ୍ରକ ଯୋଗେ ସଭାସ୍ଥଳରେ ଆସି ପହଞ୍ଚି ଯାଇଥିଲେ ଓ ସମଗ୍ର ସଭାସ୍ଥଳକୁ ଘେରାଉ କରି ଦେଇଥିଲେ । ସେତେବେଳକୁ ଫିରୋଜ ଆତ୍ମଗୋପନ କରିଥିଲେ । ଇନ୍ଦ୍ର ଅନେକଟା ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରୁଥିବାରୁ ଜାଣିଶୁଣି ସଭାସ୍ଥଳକୁ ଆସି ନ ଥିଲେ । ତେବେ ସେ ସେହି ସଭାସ୍ଥଳର ଅତି ନିକଟରେ ଗୋଟିଏ ଘରେ ରହିଥିଲେ ଓ ଝରକା ଫାଙ୍କ ଦେଇ ସମସ୍ତ ଦୃଶ୍ୟ ଦେଖିପାରୁଥିଲେ । ଫିରୋଜ ଦେଖି ପାରୁଥିଲେ ଯେ ଜଣେ ଗୋରା ପୋଲିସ ଅଫିସର ତାର ସଙ୍ଗୀନମୁନକୁ ଇନ୍ଦ୍ରଙ୍କ ଅତି ନିକଟକୁ ନେଇ ଭାଷଣ ବନ୍ଦ କରିବା ପାଇଁ ରୁକ୍ଷ କଣ୍ଠରେ ଆଦେଶ ଦେଉଥିଲା—"ଭାଷଣ ବନ୍ଦ କର, ନଚେତ୍ ଗୁଳି କରିଦେବି ।"

ତଥାପି ଇନ୍ଦ୍ରଙ୍କ ଭାଷଣରେ ପୂର୍ଣ୍ଣଚ୍ଛେଦ ପଡ଼ି ନ ଥିଲା ।

ପରମୁହୂର୍ତ୍ତରେ ଜନତା ଓ ପୋଲିସର ଭିଡ଼ ଠେଲି ଫିରୋଜ ବିଜୁଳି ବେଗରେ ଆସି ଇନ୍ଦ୍ର ଓ ପୋଲିସ ଅଫିସରଙ୍କ ସଙ୍ଗୀନ ମଧ୍ୟରେ ଦଣ୍ଡାୟମାନ ହୋଇଥିଲେ ।

ନୀତି ଓ ବିବେକହୀନ ଇଂରେଜ ଅଫିସରମାନେ କାଳେ କେତେବେଳେ କୋଉ ଅଘଟଣ ଘଟାଇ ଦେବେ !

ସେତେବେଳେ ଉଦ୍‌ବେଳିତ ପରିସ୍ଥିତିର ଜୁଆର ଫୁଲି ଫୁଲି ଉଠିଥିଲା । ଫିରୋଜଙ୍କ ମନ ଭିତରେ ପାପ ଛୁଇଁଥିଲା; କାରଣ ଗୋରା ଇଂରେଜ ପୋଲିସ ଅଫିସରଙ୍କର ଉଠିଲେ ମାତ୍ର ଦୟା ବା ଅନୁକମ୍ପା ନ ଥିଲା । ହୁଏତ କିଛି ଟା ଦୁର୍ଘଟଣା ଘଟିପାରେ—ସେ ଆଶଙ୍କାରେ ବ୍ୟଥିତ ହୋଇ ତତ୍‌କ୍ଷଣାତ ସ୍ତ୍ରୀ ଇନ୍ଦିରାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇଥିଲେ ଫିରୋଜ ।

ତାହା ହିଁ ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ଥିଲା ସ୍ୱାଭାବିକ ଆକର୍ଷଣ ।

ଅନନ୍ୟୋପାୟ ହୋଇ ପୋଲିସ ଅଫିସର ଇନ୍ଦିରାଙ୍କୁ ବଳତ୍କାରପୂର୍ବକ ପୋଲିସ ଗାଡ଼ି ଭିତରକୁ ଟାଣି ଆଣିବାକୁ ଚେଷ୍ଟା କରିଥିଲା । ଉପସ୍ଥିତ ଉଦ୍‌ବେଳିତ ଜନତା ତାର ଦୃଢ଼ ପ୍ରତିରୋଧ କରିଥିଲେ । ଉଭୟ ଦିଗରୁ ଉଭୟ ଦଳ ଇନ୍ଦିରାଙ୍କୁ ସେମାନଙ୍କ ଦିଗକୁ ଟଣା ଓଟରା କରିବା ଫଳରେ ତାଙ୍କ ପରିଧେୟ ବସ୍ତ୍ର ଅନେକ ସ୍ଥାନରେ ଚିରି ଯାଇଥିଲା ଓ ସେ ଦେହର ବିଭିନ୍ନ ସ୍ଥାନରେ ଆଘାତ ମଧ୍ୟ ପାଇ-ଥିଲେ । ସେଦିନ ସେତେବେଳେ ଇନ୍ଦିରା ଓ ଫିରୋଜଙ୍କ ସମେତ ପ୍ରାୟ ଶହେଜଣ ଗିରଫ ହୋଇଥିଲେ । ସମସ୍ତଙ୍କୁ ନୈନି ଜେଲକୁ ନିଆଯାଇଥିଲା । ମହିଳାମାନଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଜେଲ—ଅନ୍ୟ ପାଖରେ ପୁରୁଷମାନେ ବନ୍ଦୀ । ମଝିରେ ବିରାଟ ପ୍ରାଚୀର । ଏପଟେ ଫିରୋଜ ଗାନ୍ଧୀ, ସେପଟେ ଇନ୍ଦିରା ଗାନ୍ଧୀ ।

ଘଟଣାସ୍ଥଳଠାରୁ ନୈନି ଜେଲର ଦୂରତା କମ୍ ହେଲେ ମଧ୍ୟ ଶ୍ରୀମତୀ ଇନ୍ଦିରାଙ୍କ ଭାଷାରେ, "ସେ ଯାତ୍ରା ଖୁବ୍ ଅସାଧାରଣ ଥିଲା । ମୋର କଥାବାର୍ତ୍ତାରେ ସେ ଗାଡ଼ି ଭିତରେ ଥିବା ସିପାହୀମାନେ ଏତେ ଭାବପ୍ରବଣ ହୋଇ ଉଠିଥିଲେ ଯେ ସେମାନେ ମୋ ପାଦତଳେ ସେମାନଙ୍କ ପଗଡ଼ି ରଖିଦେଇ ବାରମ୍ବାର କ୍ଷମାଭିକ୍ଷା କରିଥିଲେ ଏବଂ ଅତି ଦୁଃଖରେ ଓ ଅଶ୍ରୁଳ ନୟନରେ ସେମାନେ କହିଥିଲେ ଯେ ସେମାନଙ୍କୁ ସରକାର ସେ ପ୍ରକାର କାର୍ଯ୍ୟ କରିବାଲାଗି ବାଧ୍ୟ କରୁଛି । *

**ପ୍ରଥମ ଜେଲ ଜୀବନ :—**

୧୯୪୨ ମସିହା ସେପ୍‌ଟେମ୍ବର ୧୦ ତାରିଖ ଦିନ କାରାଗାର ଭିତରେ ଯେତେବେଳେ ପ୍ରଥମ ଥରଲାଗି ସେ ପାଦ ଦେଉଥିଲେ, ତାଙ୍କର ଆଗମନକୁ ଅନେକ ମହିଳା ସେଠାରେ ସ୍ୱାଗତ ଜଣାଇଥିଲେ । ତାହାଙ୍କୁ ଯେଉଁ ଜେଲରେ ଅବରୁଦ୍ଧ କରାଯାଇଥିଲା ସେଇ ଜେଲରେ ପ୍ରଥମରୁ ତାଙ୍କ ପିଉସୀ ଶ୍ରୀମତୀ ବିଜୟଲକ୍ଷ୍ମୀ ଥିଲେ । ଇନ୍ଦିରା ତାଙ୍କ ପିଉସୀ ଶ୍ରୀମତୀ ବିଜୟଲକ୍ଷ୍ମୀଙ୍କୁ ସେଠାରେ ପାଇ ଅତ୍ୟନ୍ତ

* ଜଣେ ପ୍ରଖ୍ୟାତ ସାମ୍ବାଦିକ ଶ୍ରୀ କେ. ଏସ. ବ୍ରାଇଟ୍‌ଙ୍କ "ଇନ୍ଦିରା ଗାନ୍ଧୀ" ପୁସ୍ତକର ୭୫ ପୃଷ୍ଠାରେ ଶ୍ରୀମତୀ ଗାନ୍ଧୀଙ୍କ ସେ ଉକ୍ତି ଉଦ୍ଧାର କରାଯାଇଛି ।

ଖୁସି ହୋଇଥିଲେ । ଉଭୟେ ଗ୍ରନ୍ଥିର ଅନେକ ସମୟ ପର୍ଯ୍ୟନ୍ତ ବସି ଘର ଓ ପରିବାର ବିଷୟଠାରୁ ଆରମ୍ଭ କରି ଦେଶ ବିଦେଶ ତଥା ସ୍ୱାଧୀନତା ସଂଗ୍ରାମ ସହ ଜଡ଼ିତ ବିଭିନ୍ନ ବିଷୟରେ ଆଲୋଚନା କରୁଥିଲେ । ତାର କିଛିଦିନ ପରେ ତାଙ୍କ ପରିବାରର ଅନ୍ୟ ଜଣେ ମହିଳା ସଦସ୍ୟା ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ଜ୍ୟେଷ୍ଠା କନ୍ୟା ଲେଖା ମଧ୍ୟ ସେମାନଙ୍କ ସହିତ ଯୋଗ ଦେଇଥିଲା ।

ବନ୍ଦୀ ଜୀବନକାଳ ଭିତରେ ଶ୍ରୀମତୀ ଇନ୍ଦିରା ପ୍ରାୟ ସବୁବେଳେ ଆନନ୍ଦରେ ଥିବା ଭଳି ଜଣାପଡ଼ୁଥିଲେ । ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଜେଲରେ ଥିବାବେଳେ ସବୁଦିନ ନିଜ ଡାଏରୀ ଲେଖୁଥିଲେ । ସେ ଡାଏରୀରେ ଲେଖିଥିଲେ ଯେ ଇନ୍ଦିରା ଥିଲେ ଅନ୍ୟାନ୍ୟ ମହିଳା କଏଦୀଙ୍କ ଲାଗି ପ୍ରେରଣାର ଉତ୍ସ । ଯଦିଓ ଅତ୍ୟନ୍ତ ଖୁସି ରହିବାକୁ ସେ ନିରନ୍ତର ଚେଷ୍ଟା କରୁଥିଲେ, ତଥାପି କଥାବାର୍ତ୍ତାରୁ ଜଣାପଡ଼ୁଥିଲା ଯେପରି କିଛିଟା ଦୁଃଖ, କିଛିଟା ବେଦନା ତାଙ୍କ ମନ ଭିତରେ ପ୍ରଚ୍ଛନ୍ନ ଭାବରେ ରହୁଥିଲା । ବିଜୟଲକ୍ଷ୍ମୀଙ୍କ କଥା, ଲେଖା ଓ ଇନ୍ଦିରାଙ୍କ ସହିତ ଜେଲ ଜୀବନଯାପନ କରୁଥିବା ବେଳେ ଶ୍ରୀମତୀ ପଣ୍ଡିତଙ୍କ ଡାଏରୀର କେତୋଟି ପୃଷ୍ଠା ଥିଲା—

୧୩ ସେପ୍ଟେମ୍ବର, ୧୯୪୨—ଝିଅମାନେ (ଲେଖା ଓ ଇନ୍ଦୁ) ଅନେକ କିଛି ପଢ଼ିବା ଲାଗି ଯୋଜନା କରୁଛନ୍ତି ।

୧୯ ସେପ୍ଟେମ୍ବର—ରଣଜିତ୍ (ଶ୍ରୀମତୀ ବିଜୟଲକ୍ଷ୍ମୀଙ୍କ ସ୍ୱାମୀ—ରଣଜିତ୍ ପଣ୍ଡିତ) ଆଜି ଭୋର ଛଅଟା ବେଳେ ଆନନ୍ଦ ଭବନରେ ଗିରଫ ହେଲେ । ବିଗତ ମଧ୍ୟ ରାତ୍ରିରେ ସେ ବମ୍ବେରୁ ଫେରିଥିଲେ । ଫିରୋଜଙ୍କୁ ଦୁଇ ଶହ ଟଙ୍କା ଜୋରିମାନା ହେବା ସଙ୍ଗେ ସଙ୍ଗେ ଏକ ବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା ।

୨୩ ସେପ୍ଟେମ୍ବର—ଇନ୍ଦୁ ଅସୁସ୍ଥତା ଯୋଗୁଁ ଗତ ରାତିରେ ବାହାରେ ଶୋଇବା ଲାଗି ଅନୁମତି ପାଇଥିଲେ ମଧ୍ୟ ତାଙ୍କୁ ଭଲ ନିଦ ହୋଇ ନ ଥିଲା ।

୨୭ ସେପ୍ଟେମ୍ବର—ଅସୁସ୍ଥତା ଯୋଗୁଁ ଇନ୍ଦୁଙ୍କୁ ଛାଡ଼ିଦେବା (ନିର୍ଦ୍ଧାରିତ ସମୟର ପୂର୍ବରୁ ଖଲାସ କରିବା) ଲାଗି ଅନୁମୋଦନ କରାଯାଇଥିବା କଥା ଆମକୁ ବୁଝାଗଲା । ତା ଦେହରେ ସବୁବେଳେ ଜ୍ୱର ରହୁଥିଲା ।

୨୨ ଅକ୍ଟୋବର—ଇନ୍ଦିରାର ସ୍ୱାସ୍ଥ୍ୟ ପରୀକ୍ଷା କରି ରିପୋର୍ଟ ଦେବାକୁ ସରକାରଙ୍କ ଆଦେଶରେ ସିଭିଲ ସର୍ଜନ ଆଜି ଆସିଥିଲେ ।

୨୦ ନଭେମ୍ବର —ଗତକାଲି ଇନ୍ଦିରାର ୨୫ତମ ଜନ୍ମବାର୍ଷିକୀ ଥିଲା । ଫିରୋଜଙ୍କ ସହିତ ସେ ଅର୍ଦ୍ଧମାସିକ ଦେଖା କରିଥିଲି ଓ ଦେଖା କରି ଅଫିସରୁ ଫେରିଆସିବାବେଳେ ଖୁବ୍ ଉତ୍‌ଫୁଲ୍ଲ ଜଣା ଯାଉଥିଲା ।

ଜେଲ ରହଣିକାଳ ମଧ୍ୟରେ ଇନ୍ଦିରାଙ୍କ ସ୍ୱାସ୍ଥ୍ୟର ଅନେକ ଅବନତି ଘଟିଥିଲା । ଅଧିକାଂଶ ସମୟରେ ଜ୍ୱର ହେଉଥିଲା ଓ ଦେହର ଉତ୍ତାପ କମୁ ନଥିଲା । ଯେତେବେଳେ ସେ ସମ୍ବାଦର ପ୍ରତିକ୍ରିୟା ସାଧାରଣ ଜନତାଙ୍କ ମଧ୍ୟରେ ପ୍ରତିଫଳିତ ହୋଇଥିଲା, ଉତ୍ତରପ୍ରଦେଶର ଗଭର୍ଣ୍ଣର ମହୋଦୟ ଇନ୍ଦିରାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ଏକ ରିପୋର୍ଟ ଦେବା ପାଇଁ ସିଭିଲ ସର୍ଜନଙ୍କୁ ଆଦେଶ ଦେଇଥିଲେ । ଅକ୍ଟୋବର ୨୨ ତାରିଖରେ ସରକାରଙ୍କ ନିର୍ଦ୍ଦେଶ ଅନୁଯାୟୀ ସିଭିଲ ସର୍ଜନ ଇନ୍ଦିରାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରିଥିଲେ ଓ କିଛି କିଛି ଉତ୍ତମ ଖାଦ୍ୟ ଖାଇବା ସଙ୍ଗେ ସଙ୍ଗେ ଆଉ କିଛି ଟନିକ୍ ଓ ଔଷଧପତ୍ର ଇନ୍ଦିରାଙ୍କୁ ଦେବା ଲାଗି ଜେଲ କର୍ତ୍ତୃପକ୍ଷଙ୍କୁ ମଧ୍ୟ ପ୍ରେସ୍‌କ୍ରିପ୍‌ସନ ଲେଖି ଦେଇଥିଲେ । ତା' ମଧ୍ୟରେ ଓଭାଲଟିନ୍ ଭଳି ଆଉ କେତେକ ପୁଷ୍ଟିକର ଖାଦ୍ୟ ମଧ୍ୟ ଲେଖା ହୋଇଥିଲା । ଜେଲ ସୁପରିଣ୍ଟେଣ୍ଡେଣ୍ଟ ମହୋଦୟ ସେଇ ପ୍ରେସକ୍ରିପ୍‌ସନ୍‌ଟିକୁ ଦେଖି ଦେଖି ରାଗରେ ତମତମ ହୋଇ ଉଠିଥିଲେ । ସିଭିଲ ସର୍ଜନ ଜେଲ ଛାଡ଼ିଯିବା ପରେ ପରେ ହିଁ ସେହି ଲିଖିତ କାଗଜଟିକୁ ଚିରି ଟିକିଟିକି କରି ଫୋପାଡ଼ି ଦେଇଥିଲେ ଓ ଇନ୍ଦିରାଙ୍କୁ କହିଥିଲେ, "ଏଠାରେ ଯଦି କୌଣସି ସ୍ୱାସ୍ଥ୍ୟବର୍ଦ୍ଧକ ଜିନିଷ ପାଇବାକୁ ଇଚ୍ଛା କରିଥାନ୍ତି, ତାହେଲେ ଆପଣ ଭୁଲ କରୁଛନ୍ତି ।" ଇନ୍ଦିରା ସେଥିରେ ବିସ୍ମିତ ହେବାର କାରଣ ଥିଲା ଯେ, ସେ କୌଣସି ବିଷୟରେ ଏପରି କି ନିଜ ସ୍ୱାସ୍ଥ୍ୟ ଖରାପ ଥିବା କଥା କିମ୍ବା ଔଷଧ ତଥା ଉତ୍ତମ ଖାଦ୍ୟ ଯୋଗାଇବାପାଇଁ ଜେଲ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରି ନ ଥିଲେ ।

ସବୁଠାରୁ ବିସ୍ମୟର କଥା ଥିଲା ଯେ ଜେଲ କାର୍ଡ଼ରେ କେବଳ ଗୋଟିଏ ଛକି ବା ଇଂରେଜୀ ଅକ୍ଷର **'X'** ଲେଖା ଯାଇଥିଲା । ସେତେବେଳେ ଜେଲର କଏଦୀମାନଙ୍କୁ ସେମାନଙ୍କ ସାମାଜିକ ଶ୍ରେଣୀ ବିଭାଗ ଅନୁଯାୟୀ **A**, **B** କିମ୍ବା **C** ଶ୍ରେଣୀଭୁକ୍ତ କରାଯାଉଥିଲା ଏବଂ ଉପଯୁକ୍ତ ସ୍ଥାନରେ ରଖାଯାଉଥିଲା । କିନ୍ତୁ ଇନ୍ଦିରାଙ୍କ କାର୍ଡ଼ରେ ସେପରି କିଛି ଲେଖା ନ ଯାଇ ଏକ ନୂତନ ଅକ୍ଷର ଲେଖା ଯାଇଥିଲା । ତାର ଫଳରେ ସେ କୌଣସି ପ୍ରକାର ସୁବିଧା ପାଇପାରି ନ ଥିଲେ । ଏପରି କି ପିତାଜୀଙ୍କ ନିକଟରୁ ଆସୁଥିବା ଚିଠିଗୁଡ଼ିକ ମଧ୍ୟ ଅନେକ ସମୟରେ ମିଳୁ ନ ଥିଲା । ଗୁରୁତର ଅପରାଧରେ ଦଣ୍ଡିତ, ହତ୍ୟା ଅଭିଯୋଗରେ ଅଭିଯୁକ୍ତ ଓ ଆଜୀବନ କାରାଦଣ୍ଡ ଭୋଗ କରୁଥିବା ମହିଳାମାନଙ୍କ ମଧ୍ୟରେ ଇନ୍ଦିରାଙ୍କୁ ସ୍ଥାନ ଦିଆଯାଇଥିଲା ।

ପ୍ରତି ପନ୍ଦର ଦିନ ଅନ୍ତରରେ ଥରେ ତାଙ୍କୁ ତାଙ୍କ ସ୍ୱାମୀ—ଅନ୍ୟ ଜଣେ ବନ୍ଦୀଙ୍କ ସହିତ ଦେଖାସାକ୍ଷାତ କରିବା ଲାଗି ସୁଯୋଗ ମିଳୁଥିଲା ।

ଜେଲରେ ଥିବାବେଳେ ମହିଳା ବନ୍ଦୀମାନଙ୍କୁ ଶିକ୍ଷା ଦେବା ଲାଗି ସେ ସଂକଳ୍ପ କରିଥିଲେ ଓ ଦିନର ଅଧିକାଂଶ ସମୟ ସେମାନଙ୍କ ସେବାରେ ନିଜକୁ ନିୟୋଜିତ କରୁଥିଲେ । ସେମାନଙ୍କ ମଧ୍ୟରେ ବନ୍ଦୀ ଭାବରେ ଏକ ଦୁଇମାସିଆ ଛୁଆ ମଧ୍ୟ ଥିଲା ଏବଂ ସେ ଉପଯୁକ୍ତ ଭାବରେ ଲାଳିତପାଳିତ ହୋଇପାରୁ ନ ଥିବା କଥା ଇନ୍ଦିରା ଅନୁଭବ କରିଥିଲେ । ତେଣୁ ସେ ତାର ମାଆକୁ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଶିଶୁଟିର ଅଧିକ ଯତ୍ନ ନେଉଥିଲେ । ସେ ଅନୁଭବ କରିଥିଲେ ଯେ ତାର ମାଆ ମଧ୍ୟ ଛୁଆଟିର ଲାଳନ ପାଳନ କରିବାରେ ନିହାତି ଅନଭିଜ୍ଞ ଥିଲା । ଶେଷରେ ଇନ୍ଦିରା ସେ ଛୁଆଟିକୁ ନିଜର ପୋଷ୍ୟ ରୂପେ ଆଇନାନୁଯାୟୀ ଗ୍ରହଣ କରିନେବାପାଇଁ ମନସ୍ଥ କରିଥିଲେ । କିନ୍ତୁ ପିଉସୀ ବିଜୟଲକ୍ଷ୍ମୀ ଉପଦେଶ ଦେଇଥିଲେ ଯେ ଜେଲ ବାହାରକୁ ଗଲାଗଲା ପରେ ସେ ଆଦୌ ସମୟ ପାଇବେ ନାହିଁ ଓ ଦେଶ ପାଇଁ କାର୍ଯ୍ୟ କରିବା ଭିତରେ ଶିଶୁଟିର ଉପଯୁକ୍ତ ଲାଳନ ପାଳନ କରିପାରିବେ ନାହିଁ । ତେଣୁ ସେ ଉପଦେଶକୁ ଗ୍ରହଣ କରିଥିଲେ ଇନ୍ଦିରା ।

ପିଲାଟି ଦିନରୁ ହିଁ ପାଚିଲା ଆମ୍ବ ଖାଇବାଲାଗି ଇନ୍ଦିରା ଖୁବ୍ ଆଗ୍ରହ ପ୍ରକାଶ କରୁଥିଲେ । ସେ ଜେଲରେ ଥିବା ସମୟରେ ପିତା ଜବାହରଲାଲ ମଧ୍ୟ ଥା'ନ୍ତି ଅହମ୍ମଦନଗର ଜେଲରେ । ସେତେବେଳେ ଆମ୍ବ ପାଚିବା ସମୟ ହୋଇଥିଲା । କନ୍ୟା ଇନ୍ଦିରାର ପ୍ରିୟ ପଦାର୍ଥ କଥା ଜବାହରଲାଲଙ୍କର ମନେ ପଡ଼ିଯାଇଥିଲା । ସେ ମନେ ପକାଇଥିଲେ ଯେ ସେ ଦୀର୍ଘଦିନ ଧରି ପ୍ରିୟଦର୍ଶିନୀକୁ ଆମ୍ବ ଖାଇବାକୁ ଦେଇ ନ ଥିଲେ; କାରଣ ବିଗତ ଅନେକ ଦିନ ଧରି ସେ ଭାରତ ବାହାରେ ବାହାରେ ହିଁ ରହିଥିଲେ । ସେଇ ଜେଲରୁ ହିଁ ଜବାହରଲାଲ ତାଙ୍କର ଜଣେ ପ୍ରିୟ ବନ୍ଧୁଙ୍କ ନିକଟକୁ ଚିଠି ଲେଖିଲେ ଯେ ସେ ସୁବିଧା କରି ଇନ୍ଦୁ ନିକଟକୁ କିଛି ପାଚିଲା ଆମ୍ବ ପଠାଇବାର ବ୍ୟବସ୍ଥା କରିବେ । ଜବାହରଲାଲଙ୍କ ଚିଠି ଅନୁଯାୟୀ ତାଙ୍କ ବନ୍ଧୁ ଭଲ ଭଲ ଆମ୍ବ ଦେଖି ବୋଝଟିଏ ଜେଲରେ ବନ୍ଦୀ ଥିବା ଇନ୍ଦୁ ନିକଟକୁ ପଠାଇ ଦେଇଥିଲେ । ଜେଲ ଅଫିସର (ସୁପରିଣ୍ଟେଣ୍ଡେଣ୍ଟ) ମହୋଦୟ ଖୁବ୍ ଆଗ୍ରହରେ ସେ ଆମ୍ବ ବୋଝକ ଗ୍ରହଣ କରିଥିଲେ ମଧ୍ୟ ସେଥିରୁ ଗୋଟିଏ ହେଲେ ଆମ୍ବ ଇନ୍ଦିରାଙ୍କ ନିକଟରେ ପହଞ୍ଚି ନ ଥିଲା ।

ଆମ୍ବର ସ୍ୱାଦୁରେ ବୋଧହୁଏ ଅଭିଭୂତ ହୋଇଯାଇଥିଲେ ଜେଲ୍ ଅଫିସର ମହୋଦୟ ।

**ପ୍ରଥମ ମାତୃତ୍ୱ :—**

ନଅ ମାସ ବନ୍ଦୀ ଜୀବନରେ ଜୀବନ ଅତିବାହିତ କରିବା ପରେ ୧୯୪୩ ମସିହା ମଇ ୧୩ ତାରିଖ ଦିନ ପିଉସୀ କୃଷ୍ଣାଙ୍କ ସହିତ ଇନ୍ଦିରା ଜେଲରୁ ଖଲାସ ହୋଇ-

ଥିଲେ । ତେବେ ସରକାରଙ୍କ ତରଫରୁ ଉଭୟଙ୍କ ଗତିବିଧି ଉପରେ କଟକଣା ଜାରି କରାଯାଇ ଏକ ଦଲିଲରେ ସ୍ୱାକ୍ଷର କରିବାକୁ କୁହାଯାଇଥିଲା । କିନ୍ତୁ ଦେଶପ୍ରେମୀ ଉଭୟେ ତାହା କରିବା ଲାଗି ସିଧାସଳଖ ମନା କରି ଦେଇଥିଲେ ଓ ସେ ନିର୍ଦ୍ଦେଶ ପାଳନ କରି ନ ଥିଲେ ।

ଜେଲରୁ ଖଲାସ ହେବାର ମାତ୍ର ସାତଦିନ ପରେ ପୁଣି ଶ୍ରୀମତୀ ବିଜୟଲକ୍ଷ୍ମୀଙ୍କୁ ଗିରଫ କରାଯାଇଥିଲା ଓ ନୈନି ଜେଲକୁ ପଠାଯାଇଥିଲା । ଇନ୍ଦିରା ସେତେବେଳକୁ ଇନ୍‌ଫ୍ଲୁଏଞ୍ଜା ଜ୍ୱରରେ ଆକ୍ରାନ୍ତ ହୋଇ ପଡ଼ିଥିଲେ । ସ୍ୱାମୀ ଫିରୋଜ ଓ ପିଉସୀ ବିଜୟଲକ୍ଷ୍ମୀ ଥିଲେ ନୈନି ଜେଲରେ । ପାପୁ ଥିଲେ ଅହମ୍ମଦନଗର ଜେଲରେ । ତେଣୁ ତାଙ୍କୁ ଏକାକୀ ଆନନ୍ଦ ଭବନରେ ରହିବାକୁ ପଡ଼ିଥିଲା ।

୧୯୪୩ ମସିହା ଅଗଷ୍ଟ ମାସରେ ଫିରୋଜ ଜେଲରୁ ମୁକ୍ତି ପାଇଥିଲେ ଓ ଆନନ୍ଦ ଭବନରେ ଇନ୍ଦିରାଙ୍କ ସହିତ ଯୋଗ ଦେଇଥିଲେ । ଦୀର୍ଘ ଦିନର ବିଚ୍ଛେଦ ପରେ ପରେ ସେ ମିଳନ ଇନ୍ଦିରା ଓ ଫିରୋଜଙ୍କୁ ଅତ୍ୟନ୍ତ ଆନନ୍ଦ ଦେଇଥିଲା । ଦାମ୍ପତ୍ୟ ଜୀବନରେ ବିଚ୍ଛେଦ ପରେ ପରେ ମିଳନ ବାସ୍ତବିକ୍ ମଧୁମୟ ହୁଏ ।

କିଛିଦିନ ପରେ ଇନ୍ଦିରା ଫିରୋଜଙ୍କ ରକ୍ତର ସ୍ୱାକ୍ଷର ବହନ କରିଥିଲେ – ପୃଥିବୀରେ ଏକ ନୂତନ ଜୀବନରେ ପାଦ ଦେଇ ମାତୃତ୍ୱ ଲାଭ କରିଥିଲେ । ତେଣୁ ସକ୍ରିୟ ରାଜନୀତିରୁ କିଛିଦିନପାଇଁ ନିଜକୁ ଦୂରେଇ ରଖିବା ଲାଗି ସିଦ୍ଧାନ୍ତ କରିଥିଲେ । ପୁଣି ଜଣେ ଡାକ୍ତର ମତ ଦେଇଥିଲେ ଯେ ଇନ୍ଦିରାଙ୍କ ଗର୍ଭଧାରଣ ଶକ୍ତି ଖୁବ୍ କମ୍ ଥିଲା ଏବଂ ତାହା ମଧ୍ୟ ଇନ୍ଦିରାଙ୍କ ମୃତ୍ୟୁର କାରଣ ହୋଇପାରେ । ସେହି ଏକା କାରଣରୁ ତାହାଙ୍କର ଜଣେ ଡାକ୍ତରାଣୀ ବାନ୍ଧବୀ ମଧ୍ୟ ଅନ୍ତଃସତ୍ତ୍ୱା ଇନ୍ଦିରାଙ୍କ ଚିକିତ୍ସା ଭାର ଆହ୍ଲାବାଦକୁ ନେବାଲାଗି ପ୍ରସ୍ତୁତ ନ ଥିଲେ । ତେଣୁ ସେ ପିଉସୀ କୃଷ୍ଣାଙ୍କ ନିକଟକୁ ବମ୍ବେ ଚାଲି ଯାଇଥିଲେ । ସେଠାରେ ତାଙ୍କର ପ୍ରଥମ ସନ୍ତାନ ରାଜୀବ ଜନ୍ମ ନେଇଥିଲା ୧୯୪୪ ମସିହା ଅଗଷ୍ଟ ୨୦ ତାରିଖରେ । ଅହମ୍ମଦ-ନଗର ଜେଲରେ ଥିବା ଅବସ୍ଥାରେ ଭଉଣୀ କୃଷ୍ଣାଙ୍କ ଚିଠିରୁ ଏ ଶୁଭ ସମ୍ବାଦ ପାଇଥିଲେ ପଣ୍ଡିତ ନେହେରୁ । ସେ ଚିଠିର ଉତ୍ତର ଦେଇ କୃଷ୍ଣାଙ୍କ ନିକଟକୁ ଜବାହରଲାଲ ଲେଖିଥିଲେ, "କୌଣସି ଜ୍ଞାନୀ ପଣ୍ଡିତ ହାତରେ କୁଣ୍ଡଳିର ଜନ୍ମ-ଜାତକ କରାଇବା ଲାଗି ତୁମକୁ କହିବାପାଇଁ ମୁଁ ମୋ ପତ୍ରରେ ଇନ୍ଦୁକୁ ଲେଖିଛି । ଜନ୍ମ ସମୟ ଏବଂ ଜନ୍ମ-ତିଥିର ଏ ପ୍ରକାର ରେକର୍ଡ଼ ରହିବା ଆବଶ୍ୟକ ଏବଂ ଏହା ଉପଯୋଗୀ ମଧ୍ୟ ।"

ବିଶେଷ ଉଲ୍ଲେଖଯୋଗ୍ୟ ଯେ ରାଜୀବଙ୍କ ଜନ୍ମ ସମୟରେ ସେ କୌଣସି ପ୍ରକାର ଅସ୍ୱାଭାବିକତାର ସମ୍ମୁଖୀନ ହୋଇ ନ ଥିଲେ ବା ଯନ୍ତ୍ରଣା ପାଇ ନ ଥିଲେ ।

ଡାକ୍ତରମାନଙ୍କ ମତାମତ ଭୁଲ ପ୍ରମାଣିତ ହୋଇଯାଇଥିଲା । ପ୍ରଥମ ମାତୃତ୍ୱ ଲାଭ କରିବା ମୁହୂର୍ତ୍ତ ଶ୍ରୀମତୀ ଗାନ୍ଧୀଙ୍କୁ ଆନନ୍ଦରେ ଖୁବ୍ ବିଭୋର କରି ପକାଇଥିଲା । ଜନ୍ମହେବା ବେଳେ ରାଜୀବ ଦେଖାଯାଉଥିଲା ଖୁବ୍ ଅସୁନ୍ଦର । କିନ୍ତୁ ଜନନୀ ହେବା ଗୌରବରେ ଭାବବିହ୍ୱଳିତ ଶ୍ରୀମତୀ ଗାନ୍ଧୀ ସବୁ ଆଦର୍ଶ ମାଆଙ୍କ ଭଳି ସ୍ୱପ୍ନ ଦେଖୁଥିଲେ ପୃଥିବୀର ସେଇ ନୂତନ ଶିଶୁଟିକୁ ଉପଯୁକ୍ତ ଭାବେ କିଭଳି ମଣିଷ କରିବେ ! ଶ୍ରୀମତୀ ଗାନ୍ଧୀଙ୍କ ସେ ଦିନର ସ୍ୱପ୍ନ ସଫଳ ହୋଇଥିଲା । ରାଜୀବ ଭାରତର ପ୍ରଧାନମନ୍ତ୍ରୀ ହେବାପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ ।

ରାଜୀବ ଜନ୍ମ ହେବା ପରେ ଶ୍ରୀମତୀ ଗାନ୍ଧୀ ନବଜାତକର ନାମକରଣ କରିବାପାଇଁ ପଣ୍ଡିତ ନେହେରୁ ଓ ଶ୍ରୀମତୀ ଗାନ୍ଧୀ ଖୁବ୍ ଲାଗି ପଡ଼ିଥିଲେ । ଉଭୟେ ଗୋଟିଏ ଗୋଟିଏ ତାଲିକା କରି ଉଭୟଙ୍କ ନିକଟକୁ ପଠାଇଥିଲେ । ପୁଣି ଶ୍ରୀମତୀ ଗାନ୍ଧୀଙ୍କ ଜଣେ ବନ୍ଧୁ ମଧ୍ୟ ଏକ ନାମତାଲିକା ପଠାଇଥିଲେ । ସେଥିରେ ଥିଲା 'ରାଜୀବ' ନାମ ଯାହାର ଅର୍ଥ ପଦ୍ମ । କିନ୍ତୁ ତା ସହିତ ଯୋଡ଼ି ଦିଆଯାଇଥିଲା 'ରତନ' ଯାହାର ଅର୍ଥ 'ଜବାହର'ର ଅର୍ଥ ସହ ସମାନ । ତେଣୁ ରାଜୀବଲୋଚନ ନାମ ମଧ୍ୟରେ ଇନ୍ଦିରା ଆବିଷ୍କାର କରୁଥିଲେ ତାହାଙ୍କର ବାପା ଓ ମାଆଙ୍କ ନାମ ।

ରାଜୀବ ଜନ୍ମ ହେବାର କିଛିଦିନ ପରେ ଶ୍ରୀମତୀ ଗାନ୍ଧୀ ଖବର ପାଇଥିଲେ ଯେ ପୋଲିସ ଗୋବିନ୍ଦବଲ୍ଲଭ ପନ୍ଥଙ୍କ ସହିତ ପଣ୍ଡିତ ନେହେରୁଙ୍କୁ ଅହମ୍ମଦନଗର ଜେଲରୁ ଆଲମୋରା (ବରେଲି) ଜେଲ୍‌କୁ ନେଇଗଲା । କିନ୍ତୁ ପୁଣି ପରେ ପରେ ଖବର ପାଇଲେ ଯେ ସେଇ ରାତିକପାଇଁ ଉଭୟଙ୍କୁ ବନ୍ଦୀ ଭାବରେ ଆହ୍ଲାବାଦର ନୈନି ଜେଲ୍‌ରେ ଅଟକ ରହିବେ । ସେ ସମ୍ବାଦ ପାଇବା ପରେ ପରେ ନୂତନ ମାତୃତ୍ୱ ଲାଭ କରିଥିବା ଆତ୍ମହରା ଜନନୀ ଇନ୍ଦିରା ସ୍ୱାମୀ ଫିରୋଜଙ୍କ ସହ ପ୍ରସ୍ତୁତ ହୋଇଥିଲେ ନବଜାତ ସନ୍ତାନକୁ ତାହାଙ୍କ ବନ୍ଦୀ ପିତାଙ୍କୁ ଅନ୍ତତଃ ଦୂରରୁ ହେଲେ ବି ଦେଖାଇ ଆଣିବେ । ସେଥିପାଇଁ ଶିଶୁ ରାଜୀବକୁ ନେଇ ଫିରୋଜ ଓ ଶ୍ରୀମତୀ ଗାନ୍ଧୀ ଜେଲ ନିକଟକୁ ଯାଇ ଅପେକ୍ଷା କରିଥିଲେ । କିନ୍ତୁ ବହୁ ବିଳମ୍ବ ରାତିରେ ବନ୍ଦୀମାନେ ସେଠି ପହଞ୍ଚିଲେ । ଶ୍ରୀମତୀ ଗାନ୍ଧୀ ଓ ଫିରୋଜ ନିଶ୍ଚିତ ଭାବେ ଜାଣିଥିଲେ ଯେ ପୋଲିସ ବନ୍ଦୀମାନଙ୍କୁ ମୁହୂର୍ତ୍ତିକପାଇଁ ମଧ୍ୟ ଆନନ୍ଦଉଲ୍ଲାସ କରିବାପାଇଁ ଛୁଡ଼ିବ ନାହିଁ । ତେଣୁ ସେଥିପାଇଁ ଅନୁରୋଧ ମଧ୍ୟ ନିରର୍ଥକ । ସେହି କାରଣରୁ ଇନ୍ଦିରା ରାସ୍ତାକଡ଼ରେ ମିଞ୍ଜିମିଞ୍ଜି ହୋଇ ଜଳୁଥିବା ଗୋଟିଏ ବତୀଖୁଣ୍ଟ ତଳେ ଛିଡ଼ାହୋଇ ଛୁଆଟିକୁ ଟେକି ଧରିଥିଲେ ଏବଂ ପଣ୍ଡିତ ନେହେରୁ ମଧ୍ୟ ଜେଲ୍ ଭେନ୍ ମଧ୍ୟରୁ ଉହୁଙ୍କି ପଡ଼ି ଛୁଆଟିକୁ ଦେଖିବା ପ୍ରୟାସ କରିଥିଲେ ।

ତାହା ହିଁ ଶ୍ରୀମତୀ ଗାନ୍ଧୀଙ୍କ ମାତୃତ୍ୱର ସ୍ୱତଃସ୍ଫୂର୍ତ୍ତି ପରିପ୍ରକାଶ ।



।। ଏଗାର ।।

## ନବ ପ୍ରଭାତର ଆଲୋକତଳେ



ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବ୍ରିଟିଶ ସରକାର ଏବଂ ତାଙ୍କର ଅନ୍ୟ ସମର୍ଥକ ତଥା ସାଥୀ ରାଷ୍ଟ୍ରମାନେ ସେମାନଙ୍କ ସମସ୍ତ ସାଧନାର କେନ୍ଦ୍ରସ୍ଥଳ ରୂପେ ଭାରତକୁ ବ୍ୟବହାର କରିବା ପରିକଳ୍ପନା କରିଥିଲେ । ଜାପାନ ସେତେବେଳକୁ ହଙ୍ଗ୍‌କଙ୍ଗ୍‌, ଫିଲିପାଇନ୍‌ସ, ମାଲୟ, ସିଙ୍ଗାପୁର, ଥାଇଲଣ୍ଡ ପ୍ରଭୃତି ଅଧିକାର କରି ନେଇଥିଲା । ସେ ଆକ୍ରମଣର ପ୍ରତିରୋଧ କରିବା ପାଇଁ ଇଂଲଣ୍ଡ ଓ ଆମେରିକାର ସୈନ୍ୟଗୁଡ଼ିକ ଭାରତରେ ଅବସ୍ଥାପିତ ହୋଇଥିଲା ଏବଂ ସେମାନେ ବର୍ମାରେ ଜାପାନୀ ସୈନ୍ୟଙ୍କ ସହିତ ତୁମୁଳ ସଂଗ୍ରାମ ଆରମ୍ଭ କରିଥିଲେ ।

୧୯୪୩ ମସିହା ପର୍ଯ୍ୟନ୍ତ ବ୍ରିଟେନ୍ ଏବଂ ଅନ୍ୟ ମିତ୍ରଦେଶଗୁଡ଼ିକର ସୈନ୍ୟମାନଙ୍କ ଲାଗି ଭାରତ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ଏପରି କି ସୈନ୍ୟବାହିନୀଙ୍କ ମଧ୍ୟ ତାଲିମ ଦିଆଯାଉଥିଲା ଭାରତରେ । ଜାପାନ ସେନାମାନେ ବର୍ମା ଅଧିକାର କରିପାରିବା ପରେ ୧୯୪୪ ମସିହାରେ ଭାରତର ପୂର୍ବାଞ୍ଚଳରେ ଆକ୍ରମଣ ଆରମ୍ଭ କରିଥିଲେ । କିନ୍ତୁ ଇଂରେଜ ଓ ଆମେରିକୀୟ ସୈନ୍ୟବାହିନୀଙ୍କ ସହିତ ଭାରତୀୟ ସେନାବାହିନୀ ସେମାନଙ୍କ ଆକ୍ରମଣର ପ୍ରତିରୋଧ କରିବା ପାଇଁ ଏକତ୍ରିତ ହୋଇଥିଲେ । ଏ ତିନିଦେଶୀୟ ସେନା ମେଣ୍ଟ ଆକ୍ରମଣକାରୀ ଜାପାନୀ ସୈନ୍ୟଙ୍କ ମୁକାବିଲା କରିଥିଲେ ଓ ସେମାନଙ୍କୁ ପୁନଶ୍ଚ ବର୍ମା ପର୍ଯ୍ୟନ୍ତ ତଡ଼ି ନେଇଥିଲେ ।

ତେବେ ଇଂରେଜ ସରକାରଙ୍କ ସହିତ ଭାରତୀୟ ନେତୃବୃନ୍ଦଙ୍କ କୌଣସି ଉତ୍ତମ ବୁଝାମଣା ତଥା କୌଣସି ବିଷୟରେ ସମାଧାନ ହୋଇ ନ ପାରିଥିବା ଯୋଗୁଁ ଅଧିକାଂଶ କଂଗ୍ରେସୀ ନେତା ଓ ଦେଶର ନେତୃସ୍ଥାନୀୟ ବ୍ୟକ୍ତି ବନ୍ଦୀଶାଳାକୁ ହିଁ ସେମାନଙ୍କ ତୀର୍ଥସ୍ଥଳ ବୋଲି ମନେକରି ନେଇଥିଲେ । ସେତେବେଳେ ମହାତ୍ମା ଗାନ୍ଧୀ ପୁନା ନିକଟସ୍ଥ ଆଗାଖାଁ ଜେଲରେ ବନ୍ଦୀ ଥିଲେ, ପଣ୍ଡିତ ନେହେରୁଙ୍କ ସମେତ ଅନ୍ୟମାନେ, ବିଶେଷ କରି ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟିର ଅଧିକାଂଶ ସଭ୍ୟ ଥିଲେ ଅହମ୍ମଦ୍‌ନଗର ଜେଲରେ ।

ରାଜନୈତିକ ନେତାମାନେ ବନ୍ଦୀଶାଳାରେ ଆବଦ୍ଧ ରହିଥିଲେ ସୁଦ୍ଧା ଭାରତୀୟ ଜନସାଧାରଣଙ୍କ ମଧ୍ୟରେ ଅଭୂତପୂର୍ବ ଜାଗରଣ ସୃଷ୍ଟି ହୋଇଥିଲା । ଜାତୀୟ

ଲକ୍ଷ୍ୟ ହାସଲ କରିବାପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ଜନତା ଅକୁଣ୍ଠିତ ଭାବରେ ବଳିଦେଇ ଆତ୍ମୋତ୍ସର୍ଗ କରିବାପାଇଁ କୁଣ୍ଠାବୋଧ କରୁ ନ ଥିଲେ ।

**ସିମଳା ସମ୍ମେଳନ :—**

ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ଓ୍ୱାଭେଲଙ୍କ ଆଦେଶକ୍ରମେ ୧୯୪୫ ମସିହା ଜୁନ ମାସ ୧୫ ତାରିଖରେ ପଣ୍ଡିତ ନେହେରୁଙ୍କ ସମେତ ଭାରତୀୟ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟମାନେ ମୁକ୍ତିଲାଭ କରିଥିଲେ । ଜବାହରଲାଲ ଆନନ୍ଦ ଭବନକୁ ଫେରିବା ବେଳକୁ ବିଶାଳ ଆନନ୍ଦ ଭବନର ତତ୍ତ୍ୱାବଧାରିକା ଶ୍ରୀମତୀ ଇନ୍ଦିରା ବମ୍ବେରୁ ପିଉସୀ କୃଷ୍ଣାଙ୍କ ଘରୁ ସେଠାକୁ ଚାଲି ଆସିଥିଲେ ରାଜୀବଙ୍କର ଜନ୍ମ ପରେ ପରେ । ଦୀର୍ଘଦିନ ପରେ ପିତାଙ୍କଙ୍କ ସହିତ ମିଳିବା ଅବସରରେ ସେ ଅତ୍ୟନ୍ତ ଆନନ୍ଦିତ ହେବା ସ୍ୱାଭାବିକ କଥା ।

ତେବେ ବନ୍ଦୀମାନଙ୍କୁ ଅସମୟରେ ମୁକ୍ତି ଦେବା ପଛରେ ଓ୍ୱାଭେଲ କିଛିଟା ଉଦ୍ଦେଶ୍ୟ ସାଧନ କରିବା ପରିକଳ୍ପନା କରିଥିଲେ । ଭାରତର ରାଜନୈତିକ ସମାଧାନ ଲାଗି ସେ ସିମଳାଠାରେ ଗୋଟିଏ ସର୍ବଦଳୀୟ ଆଲୋଚନାର ଆୟୋଜନ କରାଇଥିଲେ । ସେଥିରେ ଯୋଗ ଦେବା ପାଇଁ ଜେଲ୍‌ରୁ ଖଲାସ ହୋଇଥିବା ନେହେରୁ ଓ ଅନ୍ୟାନ୍ୟ ଅନେକ ରାଜନୈତିକ ନେତାଙ୍କୁ ସେ ନିମନ୍ତ୍ରଣ କରିଥିଲେ । ଲର୍ଡ଼ ଓ୍ୱାଭେଲ ଆଶା କରିଥିଲେ ଯେ ଭାଇସ୍‌ରାୟଙ୍କ ପରାମର୍ଶଦାତା କମିଟିର ପୁନର୍ଗଠନ କରାଯାଇ ଭାରତର ଭବିଷ୍ୟତ ଶାସନ ଖସଡ଼ା ସମ୍ପର୍କରେ ଆଲୋଚନା କରିବେ ।

ସେ ବୈଠକରେ ଯୋଗଦେବା ଲାଗି ପ୍ରକୃତରେ ଜବାହରଲାଲଙ୍କ ଇଚ୍ଛା ନ ଥିଲା । କାରଣ ସେ ଯଥାର୍ଥରେ ଅନୁମାନ କରିପାରିଥିଲେ ଯେ ମୁସଲିମ୍ ଲିଗ୍ ନିଶ୍ଚିତ ଭାବେ ସେଠାରେ ଏକ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ ହେବ । କାରଣ ନବାବ୍ ମୁସ୍ତାଫା ହୁସେନ୍ ମୁସଲିମ୍ ଲିଗ୍‌ର ସ୍ଥାପନା ପରେ ପରେ ଘୋଷଣା କରିଥିଲେ ଯେ ସେମାନଙ୍କ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେଲା ଭାରତୀୟ ଜାତୀୟ କଂଗ୍ରେସର ନୀତିଗୁଡ଼ିକୁ ତଥା ସ୍ୱଦେଶୀ ଆନ୍ଦୋଳନକୁ ବିରୋଧ କରିବା ସଙ୍ଗେ ସଙ୍ଗେ ତାଙ୍କ ଦଳର ସଭ୍ୟ ଏବଂ ମୁସଲିମ୍ ପ୍ରଜାମାନଙ୍କୁ ଇଂରେଜ ସରକାରଙ୍କ ଆନୁଗତ୍ୟ ସ୍ୱୀକାର କରିବାକୁ ପ୍ରବର୍ତ୍ତିନା କରିବା ଓ ଉତ୍ସାହିତ କରିବା । ସେ ଉଦ୍ଦେଶ୍ୟ ସହିତ ସମ୍ପୂର୍ଣ୍ଣ ମତ ମିଳାଇ ଥିଲେ ମହମ୍ମଦ ଅଲ୍ଲି ଜିନ୍ନା ଓ ଆନୁଷ୍ଠାନିକ ସଙ୍ଗଠନକୁ ସୁଦୃଢ଼ କରିବା ପାଇଁ ଆଗଭର ହୋଇ ଉଠିଥିଲେ ।

ଗାନ୍ଧିଜୀ ଆଶା କରିଥିଲେ ଯେ ସିମଳା ସମ୍ମେଳନରେ ଲିଗ୍‌ର ବରିଷ୍ଠ ସଭ୍ୟ ନବାବଙ୍କ ସହିତ ସାକ୍ଷାତ କରିବେ ଓ ତାଙ୍କ ମନୋଭାବର ପରିବର୍ତ୍ତନପାଇଁ ସେ

ଚେଷ୍ଟା କରି ସଫଳ ହେବେ । ତା ଫଳରେ ସେମାନେ ଜାତୀୟ କଂଗ୍ରେସ ସହିତ ସମଭାବାପନ୍ନ ହେବେ ଓ ହାତରେ ହାତ ଦେଇ ପ୍ରଥମେ ଭାରତୀୟ ସ୍ୱତନ୍ତ୍ରତା ସଂଗ୍ରାମରେ ସାମିଲ ହେବେ । କିନ୍ତୁ ପ୍ରକୃତ କ୍ଷେତ୍ରରେ ନବାବ ସିମଳା ଆସିଥିଲେ ସତ, କିନ୍ତୁ ସମ୍ମେଳନରେ ଯୋଗଦେଇ ନ ଥିଲେ । ଗାନ୍ଧିଜୀ ନବାବ୍‌ଙ୍କୁ କଂଗ୍ରେସକୁ ଫେରାଇ ଆଣିବାକୁ ଚେଷ୍ଟା କରିଥାନ୍ତେ କ'ଣ, ବରଂ ସେତେବେଳର ଜାତୀୟ କଂଗ୍ରେସର ଜଣେ ନେତା ତଥା ପରବର୍ତ୍ତୀ କାଳରେ ପାକିସ୍ଥାନରେ କିଛୁକାଳ ଭୁଟ୍ଟୋଙ୍କ ମନ୍ତ୍ରିମଣ୍ଡଳର ଜଣେ ସଦସ୍ୟ ଖାଁ ଅବଦୂଲ କୟୁମ୍ ଖାଁ ସେତେବେଳେ ସେଠାରୁ କଂଗ୍ରେସରୁ ବାହାରି ଯାଇ ମୁସଲିମ୍ ଲିଗ୍‌ର ସଭ୍ୟ ଅନ୍ତର୍ଭୁକ୍ତ ହୋଇ-ଥିଲେ । ସେ ଘଟଣାରେ କଂଗ୍ରେସର ତତ୍କାଳୀନ ସଭାପତି ମୌଲାନା ଅବଦୁଲ କାଲାମ ଆଜାଦ୍ ବ୍ୟଙ୍ଗ କରି କହିଥିଲେ, "ବର୍ତ୍ତମାନ କୟୁମ୍ ସାହେବ କ'ଣ ଅନ୍ୟ କୌଣସି ରାଷ୍ଟ୍ରର ନାଗରିକ ହୋଇଗଲେ ?"

ସିମଳାରେ ଥିଲେ ମଧ୍ୟ ସେ ସମ୍ମେଳନରେ ଯୋଗ ନ ଦେବାର କାରଣ ଦର୍ଶାଇ ନବାବ ନିଜର ମନ୍ତବ୍ୟ ପ୍ରକାଶ କରିଥିଲେ ଯେ ଭାରତୀୟ ଜାତୀୟ କଂଗ୍ରେସ ଥିଲା ଏକ ସମ୍ପୂର୍ଣ୍ଣ ରୂପେ ହିନ୍ଦୁ ଅନୁଷ୍ଠାନ ଓ ତାର ସଭାପତି ମୌଲାନା ଆଜାଦ୍‌ଙ୍କ ସହିତ କଥାବାର୍ତ୍ତା କରିବା ଲାଗି ସେ ଶ୍ରୁହାନ୍ତ ନାହିଁ । *

ଜାପାନକୁ ଯୁଦ୍ଧରେ ପରାଜିତ କରିବା ପାଇଁ ଇଂଲଣ୍ଡକୁ ସର୍ବାନ୍ତଃକରଣରେ ସାହାଯ୍ୟ କରି ବିଜୟ ହାସଲ କରିବା ଓ ଯୁଦ୍ଧର ଅବସାନ କରିବା ଦିଗରେ ଭାରତ ଚେଷ୍ଟା କରିବା ଉଚିତ ବୋଲି ଲର୍ଡ଼ ଓ୍ୱାଭେଲ୍ ଯେଉଁ ପ୍ରସ୍ତାବ ଦେଇଥିଲେ, ସେ ସମ୍ମେଳନରେ ତାର ବିରୋଧ କରିଥିଲେ ଭାରତୀୟ ନେତାମାନେ । ସେମାନଙ୍କ ପ୍ରସ୍ତାବ ଥିଲା ପ୍ରଥମେ ଭାରତକୁ ସ୍ୱାଧୀନତା ଦିଆଯାଉ । ତେଣୁ ସିମଳା ସମ୍ମେଳନ ଯେଉଁ ଉଦ୍ଦେଶ୍ୟରେ ଆହୂତ ହୋଇଥିଲା, ତାହା ସଫଳ ହୋଇ ନ ଥିଲା । ତାଙ୍କର ଏହି ପ୍ରସ୍ତାବ ଓ ସମ୍ମେଳନର ଅସଫଳତାର ଆଉ ଗୋଟିଏ କାରଣ ଥିଲା ଭାଇସ୍-ରାୟଙ୍କ ପରାମର୍ଶ ଦେଉଥିବା ବୋର୍ଡ଼ର ପୁନର୍ଗଠନ ସମ୍ବନ୍ଧରେ । ମହମ୍ମଦ ଅଲ୍ଲି ଜିନ୍ନା ମତ ଦେଇଥିଲେ ଯେ ପରାମର୍ଶଦାତା ବୋର୍ଡ଼ରେ ଥିବା ଭାରତୀୟମାନଙ୍କ ଭିତରୁ ହିନ୍ଦୁମାନଙ୍କ ନାମ ସୁପାରିଶ କରିବେ କଂଗ୍ରେସ ଦଳ । କିନ୍ତୁ ମୁସଲମାନ ସଭ୍ୟମାନଙ୍କ ନାମ କେବଳ ମୁସଲିମ୍ ଲିଗ୍ ହିଁ କରିବା ଦରକାର ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଭାରତୀୟ କଂଗ୍ରେସରେ ସେତେ-ବେଳେ ଅନେକ ନାମଜାଦା ମୁସଲମାନ ନେତା ଥିଲେ ଓ ବଙ୍ଗଳାରେ ମୁସଲିମ୍

* ଧର୍ମଯୁଗ—୧୯୭୬ ଅଗଷ୍ଟ ୨୨—"ସିମଲା ସେ ଚଲେ, ସିମଲା ପହୁଁଞ୍ଚେ" ନାମକ ପ୍ରବନ୍ଧ—ଲେଖିଛନ୍ତି କେ. ବିକ୍ରମ ରାଓ୍ । •

ଲିଗ୍ ମନ୍ତ୍ରିମଣ୍ଡଳ ଶାସନ ଦାୟିତ୍ୱରେ ଥିଲା । କଂଗ୍ରେସର ସଭାପତି ମୌଲନା ଆଜାଦ, ସୀମାନ୍ତ ପ୍ରଦେଶର ମୁଖ୍ୟମନ୍ତ୍ରୀ ଡା: ଖାଁ ସାହେବ ଓ ଅନ୍ୟମାନେ ଜଣେ ଜଣେ ନିଚ୍ଛକ ପଠାଣ ଥିବାଲେ ମଧ୍ୟ ମହମ୍ମଦ ଅଲି ଜିନ୍ନାଙ୍କୁ ହିଁ ମୁସଲମ୍ ସମ୍ପ୍ରଦାୟର ଏକମାତ୍ର ପ୍ରତିନିଧି ରୂପେ ଲର୍ଡ଼ ଓ୍ୱାଭେଲ୍ ସିମଳା ସମ୍ମେଳନ ପାଇଁ ନିମନ୍ତ୍ରଣ କରିଥିଲେ ।

ଜିନ୍ନା ସେ ପ୍ରକାର ମନୋଭାବର ବଶବର୍ତ୍ତୀ ହେବାର ଅନ୍ୟ ଏକ କାରଣ ମଧ୍ୟ ଥିଲା । ସେ କୌଣସି ଉଚ୍ଚ ସରକାରୀ ଇଂରେଜ ଅଫିସରଙ୍କଠାରୁ ଗୁପ୍ତରେ ଖବର ପାଇଥିଲେ ଯେ ଇଂଲଣ୍ଡର ଇଂରେଜ ସରକାର ଭାରତରେ ମୁସଲିମ ଲିଗ୍ ଯେପରି କୌଣସି ରୂପେ ଉପେକ୍ଷିତ ନ ହୁଏ ସେଥିପ୍ରତି ଦୃଷ୍ଟି ଦେବା ଲାଗି ଲର୍ଡ଼ ଓ୍ୱାଭେଲଙ୍କୁ କଡ଼ା ନିର୍ଦ୍ଦେଶ ଦେଇଥିଲେ । * ଇଂଲଣ୍ଡର ତତ୍କାଳୀନ ପ୍ରଧାନମନ୍ତ୍ରୀ ସାର୍ ଚର୍ଚ୍ଚିଲ ଭାରତୀୟ ଜାତୀୟ କଂଗ୍ରେସ ବିରୁଦ୍ଧରେ ମି: ଜିନ୍ନାଙ୍କୁ ଅଧିକରୁ ଅଧିକ ଭାବେ ଉସୁକାଇବାରେ ଲାଗିଥିଲେ । ପରିସ୍ଥିତିର ସୁଯୋଗ ନେବା ତାହାଙ୍କ ପାଇଁ ସ୍ୱାଭାବିକ ଥିଲା । ଉଭୟଙ୍କ ମଧ୍ୟରେ ଗୁପ୍ତରେ ପତ୍ରାଳାପ ହେଉଥିଲା ଏବଂ ଜିନ୍ନା ଚର୍ଚ୍ଚିଲଙ୍କ ନାମ ବଦଳରେ G A Gilliat ଲେଖି ତାହାଙ୍କୁ ସବୁକଥା ଜଣାଇ ଦେଉଥିଲେ । ସେକାଳ ଠିକଣା ଲେଖିବା ପାଇଁ ଚର୍ଚ୍ଚିଲଙ୍କ ସହ ତାହାଙ୍କର ବୁଝାମଣା ହୋଇଥିଲା ।

ପଣ୍ଡିତ ନେହେରୁଙ୍କ ଅନୁମାନ ଯଥାର୍ଥ ପ୍ରମାଣିତ ହୋଇଥିଲା । ଓ୍ୱାଭେଲଙ୍କ ଦ୍ୱାରା ଆୟୋଜିତ ୧୯୪୫ ମସିହା ଜୁନ୍ ୨୫ ତାରିଖରେ ଅନୁଷ୍ଠିତ ହୋଇଥିବା ସର୍ବଦଳୀୟ ସିମଳା ସମ୍ମେଳନ ବିଫଳ ହୋଇଥିଲା ।

**ମାଉଣ୍ଟବାଟନଙ୍କ ଶେଷ ଯୋଜନା :—**

ସିମଳା ସମ୍ମେଳନ ପରେ ପରେ ବିଲାତରେ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ସେଠାକାର ଜନସାଧାରଣ ଜାତିଦଳର ନେତୃତ୍ୱକୁ ପସନ୍ଦ ନ କରି, କରିଥିଲେ ଶ୍ରମିକ ଦଳକୁ । ତେଣୁ ଚର୍ଚ୍ଚିଲଙ୍କଠାରୁ ଦେଶର ଶାସନ ଦାୟିତ୍ୱ ଗ୍ରହଣ କରିଥିଲେ ମାନ୍ୟବର ଆଟଲି ସାହେବ । ସେ ୧୯୪୬ ମସିହା ଆରମ୍ଭ ବେଳକୁ ଭାରତ ତାର ପୂର୍ଣ୍ଣ ସ୍ୱତନ୍ତ୍ରତା ପାଇବ ବୋଲି ଆଶ୍ୱାସନା ବାଣୀ ଶୁଣାଇଥିଲେ । ବିଶେଷ କରି ଭାରତୀୟମାନଙ୍କ ପ୍ରତି ଶ୍ରମିକ ଦଳଟି ସହାନୁଭୂତି ଥିଲା ।

ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଆଟଲିଙ୍କର ଗୋଟିଏ ଧାରଣା ଥିଲା ଯେ ଭାରତରେ ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ ଏକାଠି ହୋଇ ଭାରତରେ କି ପ୍ରକାର ସରକାର ଗଠନ କରିବାକୁ ଚାହାନ୍ତି ତାହା ନିର୍ଦ୍ଧାରଣ କରିବାକୁ ହେବ । ସେହି

* ତଦୈବ ।

ସନ୍ଧି ସ୍ଥିରଣ କରିବା ପାଇଁ ବ୍ରିଟିଶ ସରକାର ତାଙ୍କର ତିନି ଜଣ ମନ୍ତ୍ରୀଙ୍କୁ ଭାରତ ପଠାଇଥିଲେ । ସେମାନେ ୧୯୪୬ ମସିହା ଅପ୍ରେଲ ମାସଠାରୁ ଜୁନ୍ ମାସ ପର୍ଯ୍ୟନ୍ତ ଦିଲ୍ଲୀ, ସିମଲା ତଥା ଭାରତର ଅନ୍ୟାନ୍ୟ ସ୍ଥାନମାନଙ୍କରେ ରାଜନୈତିକ ଓ ବିଭିନ୍ନ ସମ୍ପ୍ରଦାୟର ନେତୃବୃନ୍ଦଙ୍କ ସହିତ ବିସ୍ତୃତ ଆଲୋଚନା ଚଳାଇଥିଲେ । କିନ୍ତୁ ଭାରତୀୟ ଜାତୀୟ କଂଗ୍ରେସ ଓ ମୁସଲିମ୍ ଲିଗ୍‌ର ପ୍ରତିନିଧିମାନଙ୍କ ମଧ୍ୟରେ କୌଣସି ଆପୋଷ ରାଜିନାମା ହୋଇପାରି ନ ଥିଲା ଓ ଜିନ୍ନାଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ହିନ୍ଦୁ ଓ ମୁସଲମାନ ଦୁଇ ସମ୍ପ୍ରଦାୟ ମଧ୍ୟରେ ଭାରତର ବିଭିନ୍ନ ସ୍ଥାନରେ ସାମ୍ପ୍ରଦାୟିକ ଦଙ୍ଗା ଆରମ୍ଭ ହୋଇ ଯାଇଥିଲା । ବିଶେଷ କରି ସେ ବିଶୃଙ୍ଖଳା କଲିକତା, ଦିଲ୍ଲୀ ପ୍ରଭୃତି ସ୍ଥାନରେ ବିଶେଷ ଧରଣର ହୋଇଥିଲା ।

ଇଂଲଣ୍ଡର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଦ୍ୱାରା ତଥା ସରକାରଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ଜିନ୍ନାଙ୍କ ନେତୃତ୍ୱରେ ମୁସଲିମ୍ ଲିଗ୍ ମୁସଲମାନମାନଙ୍କପାଇଁ ଏକ ସ୍ୱତନ୍ତ୍ର ରାଷ୍ଟ୍ର ପାକିସ୍ଥାନ ଦାବୀ କରୁଥିଲା । କିନ୍ତୁ କଂଗ୍ରେସର ନେତୃବୃନ୍ଦ ଭାରତକୁ ବିଭକ୍ତ କରିବାଲାଗି ଆଦୌ ଇଚ୍ଛୁକ ନ ଥିଲେ । କିନ୍ତୁ ମୁସଲିମ୍ ଲିଗ୍ କୌଣସି ସାଲିସ୍ ପାଇଁ ପ୍ରସ୍ତୁତ ନ ଥିଲା । କୌଣସି ମତେ ସେମାନଙ୍କ ଦାବୀ ହାସଲ କରିବା ପାଇଁ ଉତ୍କଣ୍ଠିତ ଥିଲେ । ତେଣୁ ଅନ୍ୟ କୌଣସି ଉପାୟ ନ ଦେଖି ଶେଷକୁ ମୁସଲିମ୍ ଲିଗ୍‌ର ସଭ୍ୟମାନେ ୧୯୪୬ ମସିହା ଅଗଷ୍ଟ ୧୬ ତାରିଖ ଦିନ ସେମାନଙ୍କ ଦାବୀ ହାସଲ କରିବାପାଇଁ "Direct Action" ନେବା ପାଇଁ ସେମାନଙ୍କ ଆଭିମୁଖ୍ୟ ଘୋଷଣା କରିଥିଲା । ସେମାନେ ପ୍ରକାଶ୍ୟରେ ଘୋଷଣା କରିଥିଲେ ସେ କଲେ, ବଲେ କୌଶଳରେ ହିନ୍ଦୁ ତଥା କଂଗ୍ରେସ ନେତୃବୃନ୍ଦଙ୍କ ସହିତ ଲଢ଼େଇ କରି ପାକିସ୍ଥାନ ନେବେ । * ହିନ୍ଦୁମାନଙ୍କ ବିରୁଦ୍ଧରେ "ସିଧାସଳଖ କାର୍ଯ୍ୟ ପନ୍ଥା ଗ୍ରହଣ କରିବା" ଘୋଷଣା ହିନ୍ଦୁମାନଙ୍କୁ ମଧ୍ୟ ଅତ୍ୟଧିକ ଉତ୍ତ୍ୟକ୍ତ କରାଇବା ଥିଲା ସ୍ୱାଭାବିକ ।

ସେତେବେଳେ ମୁସଲମାନ ବହୁଳ ଅଞ୍ଚଳ ଅବିଭକ୍ତ ବଙ୍ଗର ପ୍ରଧାନମନ୍ତ୍ରୀ ଥିଲେ ମିଃ ସୋରାବର୍ଦ୍ଦି । ସେଠାରେ ମୁସଲିମ୍ ଲିଗ୍‌ର Direct Action ସମ୍ପର୍କରେ ଘୋଷଣା ହେବାର ମାତ୍ର ତିନି ଦିନ ଭିତରେ ଉଭୟ ସମ୍ପ୍ରଦାୟ ମଧ୍ୟରେ ଭୀଷଣ ଉତ୍କଣ୍ଠା ସୃଷ୍ଟି ହୋଇ ପ୍ରାୟ ପାଞ୍ଚ ହଜାର ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ, ପ୍ରାୟ ପନ୍ଦର ହଜାର ପଙ୍ଗୁ ଓ ଦେଢ଼ ଲକ୍ଷ ଲୋକ ବାସଚ୍ୟୁତ ହୋଇଥିଲେ । ଏମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ମୁସଲମାନ ସମ୍ପ୍ରଦାୟର । ତାପରେ ପରେ ସମଗ୍ର ଦେଶରେ ଦଙ୍ଗା-ହାଙ୍ଗାମା ପ୍ରବଳ ହୋଇଥିଲା ।

---

* ମୁସଲିମ୍ ଲିଗ୍ ଘୋଷଣା କରିଥିଲା—"ଲଢ଼କେ ଲେଁଗେ ପାକିସ୍ଥାନ" ।

୧୯୪୭ ମସିହାରେ ଜବାହରଲାଲ ଦିଲ୍ଲୀର ୧୭ ୟର୍କ ରୋଡ଼ସ୍ଥ ଏକ ଗୃହ-ବଖରା ବିଶିଷ୍ଟ ଗ୍ରେଟ୍ଟିଆସର ଭଡ଼ା ନେଇ ଆଲ୍ଲାବାଦରୁ ଚାଲି ଆସିଥିଲେ । ସେତେବେଳେ ଫିରୋଜ ଓ ଇନ୍ଦିରା ଲକ୍ଷ୍ନୌରେ ରହୁଥିଲେ । କାରଣ ଫିରୋଜ 'ନେସନାଲ ହେରାଲ୍ଡ଼' ପତ୍ରିକାର ଜଣେ ଡାଇରେକ୍ଟର ଥିଲେ ଓ ପରିଚାଳନା କରୁଥିଲେ । ତେବେ ଇନ୍ଦିରା ସେତେବେଳେ କେବଳ ଲକ୍ଷ୍ନୌରେ ରହୁ ନ ଥିଲେ; ନିଜ ପରିବାରର ଦେଖାଶୁଣା କରିବା ଲାଗି ସେଠାରେ ରହିବା ସଙ୍ଗେ ସଙ୍ଗେ ବୃଦ୍ଧ ପିତାଙ୍କଙ୍କ ତତ୍ତ୍ୱ ନେବାଲାଗି ଦିଲ୍ଲୀରେ ମଧ୍ୟ ଅନେକ ସମୟ ରହୁଥିଲେ । ତେଣୁ ଦିଲ୍ଲୀ ଓ ଲକ୍ଷ୍ନୌ ଭିତରେ ଦୂରତ୍ୱ ସେତେବେଳେ ଇନ୍ଦିରାଙ୍କ ଲାଗି ଖୁବ୍ କମିଯାଇ-ଥିଲା । କାରଣ ଦିଲ୍ଲୀରେ ରହିବାକୁ ବାଧ୍ୟ ନ ହେଲେ ମଧ୍ୟ ତାଙ୍କ ବିବେକର ଆହ୍ୱାନକୁ ସେ ଉପେକ୍ଷା କରିପାରୁ ନ ଥିଲେ ।

ଫିରୋଜ-ଓ ଇନ୍ଦିରାଙ୍କ ରକ୍ତର ଦ୍ୱିତୀୟ ସ୍ମାରକୀ ସଞ୍ଜୟ ଭୂମିଷ୍ଠ ହୋଇଥିଲେ ଡ଼ିସେମ୍ବର ୧୪ ତାରିଖ ୧୯୪୭ ମସିହାରେ, ଦିଲ୍ଲୀସ୍ଥ ନେହେରୁଙ୍କ ବାସଭବନରେ । ଠିକ୍ ତା'ର ପରେ ପରେ ଦେଶରେ ଯେଉଁ ହିନ୍ଦୁ-ମୁସଲିମ୍ ଦଙ୍ଗା ଲାଗି ରହିଥିଲା ତାର ସମାଧାନପାଇଁ ଗାନ୍ଧିଜୀ ଇନ୍ଦିରାଙ୍କୁ ଦାୟିତ୍ୱ ଦେଇ କହିଥିଲେ ଯେ ଦିଲ୍ଲୀର ମୁସଲମାନମାନଙ୍କ ମନରୁ ଯେ କୌଣସି ମତେ ସମସ୍ତ ପ୍ରକାର ଭୟ ଦୂର କରିବାକୁ ହେବ । ପ୍ରସୂତିଜନିତ ଦୁର୍ବଳତା ଅନୁଭବ କରୁଥିଲେ ମଧ୍ୟ ଇନ୍ଦିରା କୌଣସି ମତେ ଗାନ୍ଧିଜୀଙ୍କ ଉପଦେଶକୁ ଆଦେଶ ବୋଲି ଗ୍ରହଣ କରି ନେଇଥିଲେ । ସେଥିପାଇଁ ମନରେ ତାଙ୍କର ସାମାନ୍ୟତମ ମଧ୍ୟ ବିତୃଷ୍ଣା ନ ଥିଲା ।

ହିନ୍ଦୁ-ମୁସଲମାନ ବିବାଦ ଦିନକୁ ଦିନ ଗୁରୁତର ଆକାର ଧାରଣ କରୁଥିଲା ସିନା, ଶାନ୍ତି ପ୍ରତିଷ୍ଠା ହେବାର କୌଣସି ଆଭାସ ମିଳୁ ନ ଥିଲା । ଜବାହରଲାଲ ସେହି ସମୟରେ ଜିନ୍ନା ଓ ଅନ୍ୟ ତିନି ଜଣ ନେତାଙ୍କ ସହିତ ଇଂଲଣ୍ଡ ଯାଇଥିଲେ । କିନ୍ତୁ ସେଠାରେ ତାଙ୍କର ସମସ୍ତ ଆଲୋଚନା ବିଫଳ ହୋଇଥିଲା । ଇଂଲଣ୍ଡରୁ ଫେରିବା ପରେ ପରେ ୧୯୪୬ ମସିହା ଡ଼ିସେମ୍ବର ୯ ତାରିଖରେ ସମ୍ବିଧାନ ପ୍ରଣୟନ ସଭା ଅନୁଷ୍ଠିତ ହୋଇଥିଲେ ମଧ୍ୟ ମୁସଲିମ୍ ଲିଗ୍ ସେଥିରେ ଯୋଗ ଦେଇ ନ ଥିଲା । ପରିଣାମ ସ୍ୱରୂପ ଅମୃତସର, ଲାହୋର, ରାୱଲପିଣ୍ଡି, ଜଲନ୍ଧର ପ୍ରଭୃତି ଅଞ୍ଚଳରେ ରକ୍ତପାତ ମଧ୍ୟ ହୋଇଥିଲା ସେଇ ସାଂପ୍ରଦାୟିକ ଦଙ୍ଗା-ହଙ୍ଗାମା ଯୋଗୁଁ । ବିଶେଷ କରି ସଂଖ୍ୟାଗରିଷ୍ଠ ହିନ୍ଦୁ ରହୁଥିବା ନୂଆଖାଲି (ବର୍ତ୍ତମାନ ବଙ୍ଗଳାଦେଶରେ ଅବସ୍ଥିତ)-ଠାରେ ଅବସ୍ଥା ଅସମ୍ଭାଳ ହୋଇ ଉଠିଥିଲା । ମୁସଲମାନମାନେ ହିନ୍ଦୁମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରି ଦେଇଥିଲେ । ସେ ପରିସ୍ଥିତିର ମୁକାବିଲା କରିବାପାଇଁ ଜାତିର ଜନକ—ଭାରତର ଭାଗ୍ୟବିଧାତା ମହାତ୍ମା ଗାନ୍ଧୀ ନିଜେ ନୂଆଖାଲି ଚାଲି ଯାଇଥିଲେ ।

**ଦୁଇଟି ନୂତନ ଦେଶ :—**

ମାର୍ଚ୍ଚ ୧୯୪୭ର ଶେଷ ବେଳକୁ ଲର୍ଡ଼ ଓ୍ୱାଭେଲଙ୍କ ସ୍ଥାନରେ ଲର୍ଡ଼ ମାଉଣ୍ଟ ବ୍ୟାଟେନ୍ ଭାରତର ନୂତନ ବଡ଼ଲାଟ ରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ସେ ଗାନ୍ଧିଜୀ, ନେହେରୁ, ଜିନ୍ନା ତଥା ଅନ୍ୟାନ୍ୟ ରାଜନୈତିକ ନେତୃବୃନ୍ଦଙ୍କ ସହିତ ବିସ୍ତୃତ ଆଲୋଚନା ପରେ ହୃଦ୍‌ବୋଧ କରିଥିଲେ ଯେ ଭାରତର ବିଭାଜନ ନ ହେଲେ ଏ ଉପମହାଦେଶରେ ଶାନ୍ତିପ୍ରତିଷ୍ଠା କୌଣସିମତେ ସମ୍ଭବ ହୋଇପାରିବ ନାହିଁ ।

ସେତେବେଳେ କଂଗ୍ରେସ ନେତୃବୃନ୍ଦଙ୍କ ମଧ୍ୟରେ ଥିଲେ ସର୍ଦ୍ଦାର ପଟେଲ, ଜବାହରଲାଲ ନେହେରୁ, ଖାଁ ଅବଦୁଲ ଗଫୁର ଖାଁ, ମୌଲାନା ଅବୁଲ କାଲମ ଆଜାଦ ଓ ଅନ୍ୟମାନେ । ସେଇମାନଙ୍କ ପ୍ରତିନିଧିତ୍ୱରେ ଦେଶର ଇଚ୍ଛା ତଥା ଦେଶର ଅଧିକାଂଶ ନେତାଙ୍କର ଇଚ୍ଛା ବିରୁଦ୍ଧରେ ବିଖ୍ୟାତ ଆର୍ଯ୍ୟାବର୍ତ୍ତ ବିଭକ୍ତ ହୋଇ ପୃଥିବୀ ମାନଚିତ୍ରରେ ଦୁଇଟି ସ୍ୱାଧୀନ ଦେଶ ରୂପେ ଜନ୍ମ ନେବା ଲାଗି ସିମଲାଠାରେ ଐତିହାସିକ ନିଷ୍ପତ୍ତି ନିଆଯାଇଥିଲା । ସେଥିରେ ସ୍ୱାଧୀନତା ଆନ୍ଦୋଳନର ପଞ୍ଚପୁରୋଧା ମହାତ୍ମା ଗାନ୍ଧୀଙ୍କ ଇଚ୍ଛା ଆଦୌ ନ ଥିଲା । ସର୍ଦ୍ଦାର ପଟେଲ, ପଣ୍ଡିତ ନେହେରୁଙ୍କୁ କହିଥିଲେ, "ମୁଁ ସେ ବୁଢ଼ା (ଗାନ୍ଧିଜୀ)ଙ୍କୁ ସମ୍ଭାଳିନେବି, ତୁମେ ପାକିସ୍ଥାନ ଦାବୀକୁ ଗ୍ରହଣ କରିନିଅ ।" ଯଦିଓ ଦେଶବିଭାଜନରେ ଆନ୍ତରିକ ସମର୍ଥନ ନ ଥିଲା, ତଥାପି ନେହେରୁ ଲର୍ଡ଼ ତଥା ଜିନ୍ନାଙ୍କ ଏକ ସ୍ୱତନ୍ତ୍ର ଭୂଖଣ୍ଡ ଦାବୀକୁ ଗ୍ରହଣ କରି ନ ନେବା ବ୍ୟତୀତ ଅନ୍ୟ ଉପାୟ କିଛି ନ ଥିଲା । *

୧୯୪୭ ମସିହା ଜୁନ୍ ଦୁଇ ତାରିଖରେ ଭାରତର ମୁଖ୍ୟ ନେତାମାନଙ୍କର ଏକ ସମ୍ମେଳନ ଡକାଇ ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ମାଉଣ୍ଟ ବ୍ୟାଟେନ୍ ତାଙ୍କର ଦେଶବିଭାଜନ ଯୋଜନା ଅନୁମୋଦନ କରାଇ ନେଇଥିଲେ । ଭାରତ ଇତିହାସରେ ତାହା ମାଉଣ୍ଟ ବ୍ୟାଟେନ ପ୍ଲାନ ନାମରେ ସୁପରିଚିତ । ତା ଉପରେ ନିଜ ମତ ବ୍ୟକ୍ତ କରି ଜବାହରଲାଲ କହିଥିଲେ, "It is with no joy in my heart that I commend these proposals though I have no doubt in my mind that this is the right course."

ସେ ପ୍ରସ୍ତାବ ଗୃହୀତ ହୋଇସାରିବା ପରେ ବାଦଶାହ ଖାଁ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ ଏବଂ ମୁସଲମାନ ସମ୍ପ୍ରଦାୟ ପ୍ରତି ଅବିଚାର ଓ ଅନ୍ୟାୟ କରାଗଲା ବୋଲି ମତବ୍ୟକ୍ତ କରିଥିଲେ ।

---

* ତତ୍ରୈବ ।

ଜୁଲାଇ ମାସରେ ବ୍ରିଟିଶ ପାର୍ଲାମେଣ୍ଟର ଉଭୟ କକ୍ଷରେ ଭାରତକୁ ସ୍ୱତନ୍ତ୍ରତା ଦିଆଯିବା ଲାଗି ଆବଶ୍ୟକ ଆଇନ ଗୃହୀତ ହୋଇଯିବା ପରେ ସ୍ପଷ୍ଟ କରି ଦିଆଯାଇଥିଲା ଯେ ଭାରତ ଦୁଇ ଭାଗରେ ବିଭକ୍ତ ହୋଇ ଅଗଷ୍ଟ ୧୫ ତାରିଖରେ ଭାରତ ଓ ପାକିସ୍ଥାନ ଦୁଇଟି ରାଷ୍ଟ୍ର ହେବେ । ଦୁଇଟି ନୂତନ ରାଷ୍ଟ୍ର ହେବା ସିଦ୍ଧାନ୍ତକୁ ଗ୍ରହଣ କରାଯାଇଥିଲେ ମଧ୍ୟ ଯେଉଁ ଧାର୍ମିକ ଭିତ୍ତିଭୂମି ଉପରେ ଦେଶ ବିଭାଜନ ହେଲା, ସେଇ ମତକୁ ପାକିସ୍ଥାନୀ ନେତାମାନଙ୍କ ଦ୍ୱାରା କଡ଼ାକଡ଼ି ଭାବେ ଗ୍ରହଣ କରାଯାଇ-ଥିଲା । ସ୍ୱାଧୀନତା ସଂଗ୍ରାମର ନେତୃବୃନ୍ଦ ସ୍ପଷ୍ଟ ଘୋଷଣା କରିଥିଲେ ଯେ ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ରରୂପେ ପୃଥିବୀ ସମକ୍ଷରେ ପରିଚିତ ହେବ ଏବଂ ସେଠାରେ ବସବାସ କରି ରହୁଥିବା ପ୍ରତ୍ୟେକ ଲୋକ—ସେ ଯେଉଁ ଧର୍ମର ହେଉ ନା କାହିଁକି—ସମାନ ଅଧିକାରପ୍ରାପ୍ତ ହେବେ ।

**ଏକ ଅବିସ୍ମରଣୀୟ ମଧ୍ୟରାତ୍ର ?—**

ସେ ଥିଲା ଏକ ଅବିସ୍ମରଣୀୟ ମଧ୍ୟରାତ୍ର ।

ସମଗ୍ର ପୃଥିବୀ ସୁଷୁପ୍ତ ଥିବାବେଳେ ଭାରତ ନୂତନ ଜୀବନ ପାଇ ଜାଗ୍ରତ ହୋଇ ଉଠିଥିଲା । ଦୀର୍ଘ କେତେ ବର୍ଷ ଧରି ଦାବୀ କରି ଆସୁଥିବା ଭାରତବାସୀଙ୍କ ଆଶା, ଆକାଂକ୍ଷା ପୂର୍ଣ୍ଣ ହୋଇଥିଲା । ଯେଉଁ ମୁହୂର୍ତ୍ତରେ ଦୀର୍ଘ ଦିନରୁ ନିଷ୍ପେଷିତ ହେଉଥିବା ଜାତି କର୍ମମୁଖର ହୋଇଉଠେ, ଯେଉଁ ମୁହୂର୍ତ୍ତରେ ପୁରାତନର ନିଗଡ଼ ବନ୍ଧନ କଟିଯାଇ ଗୋଟିଏ ଜାତି ମୁକ୍ତ ହୁଏ ଅଥବା ଯେଉଁ ମୁହୂର୍ତ୍ତରେ ଗୋଟିଏ ଯୁଗର ପରିସମାପ୍ତି ଘଟେ, ସେଇମିତି ମୁହୂର୍ତ୍ତ ଇତିହାସରେ ଖୁବ୍ କ୍ୱଚିତ୍ ଦେଖା-ଯାଇଥାଏ । ସେ ସମସ୍ତ ସମ୍ପର୍କରେ ଯଥାର୍ଥରେ ଜବାହରଲାଲ କହିଥିଲେ, "Long years ago we made a tryst with destiny and now the time comes when we shall redeem our pledge not wholly or in full measure but very substantially. At the stroke of the midnight hour, when the world sleeps, India will awake to life and freedom. A moment comes but comes rarely in history when we step out from the old to the new, when an age ends and when the soul of nation, long supressed finds utterance." *

---

* J. S. Bright—Indira Gandhi—p-77-78.

ଠିକ୍ ଅଗଷ୍ଟ ୧୪ ଓ ୧୫ ତାରିଖର ମିଳନ ମୁହୂର୍ତ୍ତରେ ଭାରତର ସ୍ୱାଧୀନତା ଘୋଷଣା କରାଯାଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ ସମ୍ବିଧାନ ସଭାରେ ଶପଥ ନେଇ କହିଥିଲେ—"ଏ ମଙ୍ଗଳମୟ ମୁହୂର୍ତ୍ତରେ, ଯେତେବେଳେ ଭାରତର ଜନସାଧାରଣ ନିର୍ଯ୍ୟାତନା ଓ ତ୍ୟାଗ ବଳରେ ସ୍ୱାଧୀନତା ପାଇଛନ୍ତି, ମୁଁ ଜବାହରଲାଲ ନେହେରୁ—ଭାରତୀୟ ସମ୍ବିଧାନ ସଭାର ଜଣେ ସଭ୍ୟ, ସମସ୍ତ ବିନମ୍ରତାର ସହିତ ଭାରତ ଓ ତାର ଅଧିବାସୀମାନଙ୍କ ସେବାରେ ନିଜକୁ ଉତ୍ସର୍ଗ କରୁଅଛି । ଏ ପ୍ରାଚୀନ ଭୂଖଣ୍ଡ ତାର ଉପଯୁକ୍ତ ସ୍ଥାନ ଅଧିକାର କରି ପୃଥିବୀରେ ଶାନ୍ତି ଓ ସମଗ୍ର ମାନବଜାତିର କଲ୍ୟାଣ ନିମନ୍ତେ ସମ୍ପୂର୍ଣ୍ଣ ଓ ସ୍ୱେଚ୍ଛାପ୍ରଣୋଦିତ ହୋଇ ସାହାଯ୍ୟ ଦାନକରେ, ସେଥିପାଇଁ ଉଦ୍ୟମ କରିବି ।" *

ସମଗ୍ର ଭାରତ ତାର ଅଧିବାସୀମାନଙ୍କ ପାଇଁ ସେ ଥିଲା ଏକ ଅବିସ୍ମରଣୀୟ ମୁହୂର୍ତ୍ତ । ସେ ମୁହୂର୍ତ୍ତରୁ ଭାରତରେ ଗୋଟିଏ ନୂତନ ଯୁଗ ଜନ୍ମ ନେଇଥିଲା । ସେ ଅତୀତ ମୁହୂର୍ତ୍ତଗୁଡ଼ିକ ସ୍ମରଣ କରି ଏକ ସାକ୍ଷାତକାରରେ ଶ୍ରୀମତୀ ଗାନ୍ଧୀ କହିଥିଲେ, "ମୁଁ ଏତେ ପରିମାଣରେ ଗର୍ବ ଅନୁଭବ କରୁଥିଲି ଓ ଏତେ ମାତ୍ରାରେ ଉତ୍‌ଫୁଲ୍ଲ ହୋଇ ଯାଇଥିଲି ଯେ ଭାବୁଥିଲି ହଠାତ୍ କେତେବେଳେ ମୁଁ ଫୁଲି ଫୁଲି ଫାଟି ପଡ଼ିବି ।" —ସତେ ଯେମିତି ସେ ଅତ୍ୟଧିକ ଆନନ୍ଦରେ ଉଲ୍ଲସିତ ହୋଇ ଫାଟିପଡ଼ିବେ । ତାପରେ ପୁଣି ସାକ୍ଷାତକାରଙ୍କ ପ୍ରଶ୍ନ ଥିଲା ଯେ ଏକ ନୂତନ ଦେଶ ଗଠନ କରି ଇତିହାସର ପୃଷ୍ଠାଗୁଡ଼ିକରେ ସ୍ୱର୍ଣ୍ଣାକ୍ଷରରେ ଆଲେଖ୍ୟ ରଖିଯାଇଥିବା ପଣ୍ଡିତ ନେହେରୁଙ୍କ କନ୍ୟା ହିସାବରେ ବା ଜଣେ ସଦ୍ୟ ଶୃଙ୍ଖଳମୁକ୍ତ ଭାରତୀୟ ହିସାବରେ ସେ ଏତେଟା ଆତ୍ମବିଭୋର ହୋଇ ପଡ଼ିଥିଲେ ? ତାର ଉତ୍ତର ଦେଇ ପ୍ରିୟଦର୍ଶିନୀ ଇନ୍ଦିରା କହିଥିଲେ ଯେ ପ୍ରକୃତ ପକ୍ଷେ ଉଭୟଟିକୁ ସେ ଅଲଗା କରିପାରୁ ନ ଥିଲେ; କିନ୍ତୁ ବିଶେଷକରି ସେ ଥିଲେ ସ୍ୱତନ୍ତ୍ରତା ସଂଗ୍ରାମରେ ଅଂଶ

---

* At this solemn moment when the people of India through suffering and sacrifice have secured freedom, I, Jawaharlal Nehru. a member of constituent assembly of India do dedicate myself in all humility to the service of India and her people to the end that this ancient land attain her rightful place in the world and make her full and willing contribution to the promotion or world peace and welfare of the mankind...."

(ସମ୍ବିଧାନ ସଭାରେ ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କ ଶପଥ-ଭାଷଣର କିୟଦଂଶ)

ଗ୍ରହଣ କରିଥିବା ଏବଂ ତାର ପୁରସ୍କାର ପାଇଥିବା ଜଣେ ଭାରତୀୟ । ତାଙ୍କ ଉତ୍ତର ଥିଲା, ମୁଁ ଭାବେ ଉଭୟଙ୍କର ଏକ ସୁନ୍ଦର ସମନ୍ୱୟ ମୋ ମନ ଭିତରେ ସଙ୍ଗଠିତ ହୋଇଥିଲା । ବାସ୍ତବିକ୍ ମୁଁ ଉଭୟ ବ୍ୟକ୍ତିତ୍ୱ ମଧ୍ୟରୁ ଗୋଟିକୁ ପୃଥକ କରିପାରୁ ନ ଥିଲି । ତଥାପି ବିଶେଷ ଭାବେ ଜଣେ ଭାରତୀୟ ହିସାବରେ ମୁଁ ଗର୍ବ ଅନୁଭବ କରୁଥିଲି । କାରଣ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିବାରୁ ମୁଁ ଦେଶପାଇଁ ଯୋଗ୍ୟ ଅନୁଭବ କରୁଥିଲି ।" *

**ଗାନ୍ଧିଜୀଙ୍କ ଆହ୍ୱାନରେ :—**

ଭାରତବାସୀଙ୍କର ସେ ଆନନ୍ଦ ଉତ୍ସବ ଦୀର୍ଘସ୍ଥାୟୀ ହୋଇପାରି ନ ଥିଲା । ମୁସଲିମ୍ ଲିଗ୍ ଓ ଜିନ୍ନା ଭାରତରେ ଯେଉଁ ସାଂପ୍ରଦାୟିକତାର ବୀଜ ବପନ କରି ଦେଇଥିଲେ, ତାହା ସେତେବେଳକୁ ଏକ ପ୍ରକାଣ୍ଡ ବୃକ୍ଷରେ ପରିଣତ ହୋଇ ଯାଇଥିଲା । ଦେଶର ବିଭକ୍ତିକରଣ ପରେ ପରେ ହିଁ ଦିଲ୍ଲୀରେ ଏକ ଗୁଜବ ପ୍ରଚାରିତ ହୋଇଥିଲା ଯେ ପାକିସ୍ଥାନ ତାର ଶାସନ ଭାରତରେ ପ୍ରତିଷ୍ଠା କରିବା ପାଇଁ ଷଡ଼ଯନ୍ତ୍ର କରୁଥିଲା । ସେଥିପାଇଁ ଭାରତୀୟ ଜାତୀୟ କଂଗ୍ରେସର ସମସ୍ତ ନେତାଙ୍କୁ ଗୋପନରେ ହତ୍ୟା କରାଯିବା ପାଇଁ ମଧ୍ୟ ସେମାନଙ୍କ ଯୋଜନା ଅନ୍ତର୍ଭୁକ୍ତ ଥିଲା ।

ସ୍ୱାଧୀନତାପ୍ରାପ୍ତିର ଠିକ୍ ପରେ ପରେ ଜିନ୍ନାଙ୍କ ପାକିସ୍ଥାନରେ ସଂଖ୍ୟାଲଘୁ ହିନ୍ଦୁମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇ ସେମାନଙ୍କୁ ସେଠାରୁ ବିତାଡ଼ିତ କରାଯାଇଥିଲା । ଯେତେବେଳେ ପାକିସ୍ଥାନରୁ ହିନ୍ଦୁ ଏବଂ ଶିଖ ଶରଣାର୍ଥୀ-ମାନେ ନଈ ସୁଅ ଭଳି ମାଡ଼ି ଆସିଥିଲେ, ଭାରତରେ ତାର ପ୍ରବଳ ପ୍ରତିକ୍ରିୟା ଦେଖାଯିବା ସ୍ୱାଭାବିକ କଥା । ପାକିସ୍ଥାନରେ ମୁସଲମାନମାନଙ୍କ ଅତ୍ୟାଚାରର ଫଳ ସ୍ୱରୂପ ଭାରତରେ ବିଶେଷ କରି ଦିଲ୍ଲୀରେ ମୁସଲମାନମାନଙ୍କ ପ୍ରତି ହିନ୍ଦୁ ଲୋକେ ଖୁବ୍ ଉତ୍ତ୍ୟକ୍ତ ହୋଇ ଉଠିଥିଲେ । ବିଭିନ୍ନ ସ୍ଥାନମାନଙ୍କରେ ଲୁଣ୍ଠତରାଜ ଏପରି କି ହିଂସା-କାଣ୍ଡମାନ ଆରମ୍ଭ ହୋଇ ଯାଇଥିଲା । ଭାରତରେ ଥିବା ମୁସଲମାନମାନଙ୍କ ଗୃହଦାହ ଏକ ସାଧାରଣ ଘଟଣା ହୋଇ ପଡ଼ିଥିଲା । ଦୁଃଖର ବିଷୟ, କଷ୍ଟରେ ମୁସଲମାନମାନେ, ଯେଉଁମାନେ କି ପୁରୁଷ ପୁରୁଷ ଧରି ଭାରତରେ ବସବାସ କରି ଆସିଥିଲେ, ସେମାନେ ମଧ୍ୟ ନିଜ ଜୀବନକୁ ନିରାପଦ ମନେ କରି ନ ଥିଲେ । ଅନେକ ଶିଶୁ, ମହିଳା ତଥା ଶାନ୍ତ ନିର୍ଦ୍ଦୋଷ ମୁସଲମାନ ଅତ୍ୟାଚାରିତ ହୋଇଥିଲେ ପାକିସ୍ଥାନରେ ହିନ୍ଦୁମାନଙ୍କ ପ୍ରତି ହୋଇଥିବା କ୍ରୁର ଅତ୍ୟାଚାରର ପରିଣାମ ସ୍ୱରୂପ ।

ଭାରତର ପରାଧୀନତା ବେଡ଼ି କଟିଲା ବେଳେ ଗାନ୍ଧିଜୀ ଥିଲେ ପୂର୍ବବଙ୍ଗ (ବର୍ତ୍ତମାନ ବଙ୍ଗଳାଦେଶ)ର ନୂଆଖାଲିଠାରେ । କାରଣ ସେଠାରେ ବସବାସ କରି

* Arnold Michaels Interview with Indira Gandhi.

ରହୁଥିବା ସଂଖ୍ୟାଲଘୁ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାରର ମାତ୍ରା ଅତ୍ୟଧିକ ଥିଲା । ସେଠାରେ ଅବସ୍ଥା ଶାନ୍ତ ହେବା ପରେ ପରେ ସେ ଦିଲ୍ଲୀ ଫେରିଥିଲେ । ସେତେବେଳକୁ ଦିଲ୍ଲୀର ଅବସ୍ଥା ଅଗ୍ନିଗର୍ଭ ହୋଇ ଉଠିଥିଲା । ଲୋକଙ୍କ ମନର ପରିବର୍ତ୍ତନ ପାଇଁ ଗାନ୍ଧିଜୀ ପ୍ରତିଦିନ ପ୍ରାର୍ଥନାସଭା ଅନୁଷ୍ଠିତ କରାଉଥିଲେ ଏବଂ ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା କରାଇବା ପାଇଁ କିପରି ଆଗ୍ରହ ସୃଷ୍ଟି କରାଯିବ ସେଥିଲାଗି ବିଭିନ୍ନ ଉପାୟରେ ଚେଷ୍ଟା ମଧ୍ୟ କରୁଥିଲେ । ତେଣୁ ତାଙ୍କର ପ୍ରାର୍ଥନା ସଭାରେ ବାଇବଲ, କୋରାନ, ଗୀତା ପ୍ରଭୃତି ବିଭିନ୍ନ ଧର୍ମଗ୍ରନ୍ଥ ପାଠକରିବା ସଙ୍ଗେ ସଙ୍ଗେ ବିଭିନ୍ନ ଧର୍ମର ପ୍ରାର୍ଥନା ଗାନ କରୁଥିଲେ । ପ୍ରତିଦିନର ପ୍ରାର୍ଥନସଭା ଶେଷ ହେଉଥିଲା ଗୋଟିଏ ଭଜନରେ—ସେଇ ଭଜନଟି ଥିଲା ସ୍ରଷ୍ଟାଙ୍କ ନିକଟରେ ପ୍ରାର୍ଥନା—

ରଘୁପତି ରାଘବ ରାଜାରାମ୍
ପତିତ ପାବନ ସୀତାରାମ
ଈଶ୍ୱର ଆଲ୍ଲା ତେରେ ନାମ୍
ସବକୋ ସନ୍ମତି ଦେ ଭଗବାନ୍ ।

ପ୍ରତିଦିନ ସେ ପ୍ରାର୍ଥନାସଭାର ବିବରଣୀ ଆକାଶବାଣୀ କାର୍ଯ୍ୟକ୍ରମଗୁଡ଼ିକରେ ମଧ୍ୟ ପ୍ରଚାରିତ ହେଉଥିଲା । ଗାନ୍ଧିଜୀ ଲୋକଙ୍କ ହୃଦୟ ପରିବର୍ତ୍ତନ କରି ଶାନ୍ତି ଫେରାଇ ଆଣିବା ଲାଗି ପ୍ରୟାସ କରୁଥିବା ବେଳେ କଂଗ୍ରେସ ନେତୃବର୍ଗ ନିଜ ନିଜ ଜୀବନକୁ ବିପନ୍ନ କରି ଦିଲ୍ଲୀର ସଂଖ୍ୟାଲଘୁ ମୁସଲମାନ ସମ୍ପ୍ରଦାୟର ସୁରକ୍ଷା ଲାଗି ଅନବରତ ଉଦ୍ୟମ ଚଳାଇଥିଲେ ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ସେତେବେଳେ ଦିଲ୍ଲୀର ୧୭ ୟର୍କରୋଡ଼ର ଏକ ତିନି ବଖରାବିଶିଷ୍ଟ ଭଡ଼ା ଘରେ ଅବସ୍ଥାନ କରୁଥିଲେ । ସେତେବେଳେ ଇନ୍ଦିରା ମଧ୍ୟ ସେଠାରେ ରହୁଥିଲେ ଓ ବୃଦ୍ଧ ପିତାଙ୍କୁ ଅନେକ କ୍ଷେତ୍ରରେ ସାହାଯ୍ୟ କରୁଥିଲେ । ସେ ଘରର ତିନୋଟି କୋଠରୀ ମଧ୍ୟରୁ ଦୁଇଟି କୋଠରୀ ନିଃସହାୟ ଶରଣାର୍ଥୀମାନଙ୍କ ରହିବା ଲାଗି ବ୍ୟବହୃତ ହେଉଥିଲା । ସେଠାରେ ଆଶ୍ରୟ ନେବା ଲାଗି ବାସଚ୍ୟୁତ ଶରଣାର୍ଥୀମାନଙ୍କ ସଂଖ୍ୟା ଏତେ ପରିମାଣରେ ବୃଦ୍ଧି ପାଇଥିଲା ଯେ ହତା ମଧ୍ୟରେ ତମ୍ବୁ ପକାଇ ଅନେକ ଶରଣାର୍ଥୀ ରହୁଥିଲେ । ସେତେବେଳେ ଇନ୍ଦିରାଙ୍କ ପ୍ରଥମ କାର୍ଯ୍ୟ ଥିଲା ସେଠାରେ ଆଶ୍ରୟ ନେଇଥିବା ଶରଣାର୍ଥୀମାନଙ୍କ ସୁବିଧା ଅସୁବିଧା ତନଖି କରିବା । ଘରର ପରିଚାଳନା କରିବା ସଙ୍ଗେ ସଙ୍ଗେ ସେଠି ଥିବା ଶରଣାର୍ଥୀମାନଙ୍କ ଖାଦ୍ୟପେୟର ବ୍ୟବସ୍ଥା ମଧ୍ୟ ନିଜେ ଇନ୍ଦିରା ତତ୍ତ୍ୱାବଧାନ କରୁଥିଲେ ।

ସମଗ୍ର ରାଜଧାନୀ ଦିଲ୍ଲୀରେ ଲୁଣ୍ଠତରାଜ, ଦଙ୍ଗାହାଙ୍ଗାମାର ପ୍ରଳୟଙ୍କରୀ ତାଣ୍ଡବ ଚାଲିଥିବାରୁ ଦୋକାନ ବଜାର ଠିକ୍ ଭାବରେ ଖୋଲି ହେଉ ନ ଥିଲା । ତେଣୁ ଖାଦ୍ୟପଦାର୍ଥ ବଜାରରୁ କିଣି ଆଣିବା ଏକ କାଠିକର ପାଠ ହୋଇଥିଲା, ବିଶେଷ କରି ନେହେରୁଙ୍କ ପରିବାର ଲାଗି, ଯେଉଁଠି ଅନେକ ବାସହୂୀନ ମୁସଲମାନ କିଛିଦିନପାଇଁ ସେ ପରିବାରରେ ଅନ୍ତର୍ଭୁକ୍ତ ହୋଇଥିଲେ । କିନ୍ତୁ କୁଶଳୀ କାରଣରେ ଇନ୍ଦିରା ସେ ସମସ୍ୟାର ସମାଧାନ କରିବାକୁ ସକ୍ଷମ ହେଉଥିଲେ ଅତି ଚତୁରତାର ସହିତ ଏବଂ ଯେ କୌଣସି ଉପାୟରେ ମଧ୍ୟ । ତଥାପି ଦିନେ ଖ୍ରୋଷେୟା ଆସି ଏତେ ଖାଦ୍ୟ ପ୍ରସ୍ତୁତ କରିବାପାଇଁ ଉପାଦାନ ନ ଥିବା କଥା ପ୍ରକାଶ କରିଥିଲା ଇନ୍ଦିରାଙ୍କ ଆଗରେ । ଠିକ ସେତିକିବେଳେ ଇନ୍ଦିରା ଲକ୍ଷ୍ୟ କରିଥିଲେ ଯେ ପଲେ ଛେଳି ତାଙ୍କ ବାସଗୃହ ନିକଟରେ ଚରୁଥିଲେ । ସଙ୍ଗେ ସଙ୍ଗେ ତାଙ୍କ ସ୍ୱାମୀ ଫିରୋଜ ଓ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ ଗଫୁର ଖାଁଙ୍କ ସହାୟକ ମହମ୍ମଦ ୟୁନୁସ୍‌ଙ୍କୁ ଅନୁରୋଧ କରିଥିଲେ ସେହି ଛେଳି ପଲ ମଧ୍ୟରୁ ଗୋଟିଏ ଦୁଇଟି ଧରିଆଣିବା ପାଇଁ । ସେଦିନ ଛେଳି ମାଂସରେ ପ୍ରଧାନମନ୍ତ୍ରୀଙ୍କ ସମ୍ମାନିତ ଅଥଚ ବୁଭୁକ୍ଷିତ ଅତିଥିମାନଙ୍କୁ ଆପ୍ୟାୟିତ କରାଯାଇଥିଲା ।

ଘରର ସମସ୍ତ କାର୍ଯ୍ୟ ତଥା ଶରଣାର୍ଥୀମାନଙ୍କ ବ୍ୟବସ୍ଥା କରିବା ପରେ ମଧ୍ୟ ଇନ୍ଦିରା ମଝିରେ ମଝିରେ ପିତାଙ୍କଙ୍କ ସହିତ ଯାଇ ଦେଶର ସଙ୍କଟମୟ ଅବସ୍ଥାର ବିଭିନ୍ନ ଖବର ସଂଗ୍ରହ କରୁଥିଲେ । ଦିଲ୍ଲୀରେ ସେ ପ୍ରକାର ଅଶାନ୍ତ ବାତାବରଣ ଲାଗି ପୋଲିସ ଓ ସୈନ୍ୟବାହିନୀ ମୁତୟନ କରାଯାଇଥିଲା । ସେହି କାରଣରୁ ଖୁବ୍ କମ୍ ସଂଖ୍ୟକ ପୋଲିସ୍ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ପହରା ଦେଉଥିଲେ । ତଥାପି ଦିନେ ହଠାତ୍ ଇନ୍ଦିରା ଆବିଷ୍କାର କରିଥିଲେ ଯେ ଜଣେ ଲୋକ ହାତରେ ଏକ ଛୁରୀ ନେଇ ତାଙ୍କ ଗାଧୁଆ ଘରେ ଲୁଚି ରହିଥିଲା । ଏ ଦୃଶ୍ୟ ଦେଖିବାକ୍ଷଣି ଇନ୍ଦିରା ତା ହାତରୁ ଛୁରୀଟି ଛଡ଼ାଇ ନେଇ ତାକୁ ପୋଲିସ ହାତରେ ଜିମା ଦେଇଥିଲେ । ସେ ଘଟଣା ଚାରିଆଡ଼େ ଚହଳ ପକାଇ ଦେଇଥିଲେ ମଧ୍ୟ ଇନ୍ଦିରା ଆଦୌ ବିଚଳିତ ହୋଇ ନ ଥିଲେ ।

ପୋଲିସ୍ ଓ ସୈନ୍ୟବାହିନୀଙ୍କୁ ଶାନ୍ତିରକ୍ଷା କରିବାରେ ସାହାଯ୍ୟ କରିବା ଲାଗି ଏକ ସ୍ୱେଚ୍ଛାସେବକବାହିନୀ ଗଠନ କରିବା ଉଦ୍ଦେଶ୍ୟରେ ଯେତେବେଳେ ମହାତ୍ମା ଗାନ୍ଧୀ ଓ ଜବାହରଲାଲ ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ, ଅନେକ କଂଗ୍ରେସ କର୍ମୀ ଓ ବିଭିନ୍ନ ସମ୍ପ୍ରଦାୟର ଲୋକ ସେଥିରେ ସାହାଯ୍ୟ କରିବାପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ସେମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ମହିଳା । ସେତେବେଳର ଜଣେ ଯୁବକଂଗ୍ରେସ କର୍ମୀ ତଥା ଆଜିର ଜଣେ ବିଶିଷ୍ଟ ସମାଜସେବୀ

ଶ୍ରୀମତୀ ସୁଭଦ୍ରା ଯୋଶୀ ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ । ଦିନେ ସେ ଆସି ଗାନ୍ଧିଜୀଙ୍କୁ କହିଥିଲେ ଯେ, ସେ ଯେଉଁଠାରେ ରହୁଥିଲେ ସେଠାରେ ଥିବା ମୁସଲମାନମାନେ ଅତ୍ୟନ୍ତ ଅତ୍ୟାଚରିତ ହେଉଥିଲେ । ସେଦିନ ଗାନ୍ଧିଜୀ ମୌନବ୍ରତ ଅବଲମ୍ବନ କରୁଥିଲେ । ସୁଭଦ୍ରାଙ୍କଠାରୁ ତାହା ଶୁଣି ଗାନ୍ଧିଜୀ ଗୋଟିଏ କାଗଜରେ ଲେଖିଦେଇଥିଲେ, "ତୁମଭଳି ଜଣେ ହିନ୍ଦୁଠାରୁ ଏଭଳି ଅଭିଯୋଗ ଶୁଣିବା ପରିବର୍ତ୍ତେ ମୁଁ ଯଦି ଶୁଣିଥାନ୍ତି ଯେ ମୁସଲମାନମାନଙ୍କୁ ରକ୍ଷା କରିବାକୁ ଯାଇ ସୁଭଦ୍ରା ମୃତ୍ୟୁବରଣ କରିଛି, ତାହାହେଲେ ମୁଁ ଆନନ୍ଦାତିଶଯ୍ୟରେ ବିଭୋର ହୋଇ ପଡ଼ିଥାନ୍ତି ।" * ଗାନ୍ଧିଜୀ ସୁଭଦ୍ରାଙ୍କୁ ଉତ୍ତର ଦେଇଥିଲେ ଯେ—ଯଦି ସେ ଶୁଣିଥାନ୍ତେ ଯେ କୌଣସି ମୁସଲମ ଲୋକଙ୍କୁ ରକ୍ଷା କରିବାକୁ ଯାଇ ସୁଭଦ୍ରାର ମୃତ୍ୟୁ ହୋଇଛି, ତା ହେଲେ ସେ ବରଂ ଖୁସି ହୋଇଥାନ୍ତେ—ସେଭଳି ଖବରରେ ନୁହେଁ ।

ସ୍ୱାଧୀନତା ପରେ ଜନତାକୁ ଭୟ ନ କରି ଦଙ୍ଗାହାଙ୍ଗାମା ଭିତରେ ପଶି ସେ ସ୍ଥାନମାନଙ୍କରେ ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବାଲାଗି ଉଦ୍ୟମ କରିବା ଥିଲା ସ୍ୱେଚ୍ଛାସେବୀମାନଙ୍କର କାର୍ଯ୍ୟ । ସମଗ୍ର ଦେଶର ଖବର ଅନ୍ତର ରଖିବା ଲାଗି ପୁରୁଣା ଟାଉନ୍‌ହଲଠାରେ ଗୋଟିଏ କଣ୍ଟ୍ରୋଲ ରୁମ୍ ଖୋଲା ଯାଇଥିଲା ଏବଂ ଦେଶରେ ଯୁଦ୍ଧକାଳୀନ ତତ୍ପରତା ଅବଲମ୍ବନ କରାଯାଉଥିଲା । ସେଠାକୁ ନଗରର ସବୁ ସ୍ଥାନରୁ ସମ୍ବାଦ ଆସିବା ସଙ୍ଗେ ସଙ୍ଗେ ପୋଲିସ୍ ଏବଂ ସୈନ୍ୟବାହିନୀଙ୍କୁ ଦଙ୍ଗା ଲାଗିଥିବା ସ୍ଥାନମାନଙ୍କୁ ଯିବାପାଇଁ ନିର୍ଦ୍ଦେଶ ଦିଆଯାଉଥିଲା ।

ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଭାବେ ପ୍ରତିଷ୍ଠିତ ହେବାକୁ ଯାଉଥିବା ଭାରତରେ ସେ ସାଂପ୍ରଦାୟିକ ବିବାଦ ଆରମ୍ଭ ହେବା ବେଳରୁ ହିଁ ଇନ୍ଦିରା ଆନ୍ତରିକ ଇଚ୍ଛା କରୁଥିଲେ ଯେ ଦେଶରେ ଶାନ୍ତି ସ୍ଥାପନ କରି ପୂର୍ବାବସ୍ଥା ଫେରାଇ ଆଣିବାଲାଗି ଚେଷ୍ଟା କରିବାପାଇଁ ପିତାଙ୍କଙ୍କ ପରି ସେ ମଧ୍ୟ ଲାଗି ଦେବେ । କିନ୍ତୁ ସେତେବେଳେ ତାଙ୍କର ଦ୍ୱିତୀୟ ପୁତ୍ର ସଞ୍ଜୟ ଶ୍ରେଷ୍ଠ ଛୁଆଟିଏ ହୋଇଥିଲା ଏବଂ ପ୍ରସବଜନିତ ଦୁର୍ବଳତାରୁ ସେ ମଧ୍ୟ ସେତେବେଳେ ପର୍ଯ୍ୟନ୍ତ ମୁକ୍ତ ପାଇ ନ ଥିଲେ । ଦ୍ୱିତୀୟ ଏବଂ ପ୍ରଧାନ କାରଣ ଥିଲା ପଣ୍ଡିତ ନେହେରୁଙ୍କ ଶାରୀରିକ ତଥା ମାନସିକ କ୍ଳାନ୍ତି ଦୂର କରିବାପାଇଁ ସେ ଥିଲେ କେବଳ ଜଣେ ମାତ୍ର ବ୍ୟକ୍ତି । ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସେ କର୍ମତତ୍ପର ପିତାଙ୍କଙ୍କ ତତ୍ତ୍ୱ ନେଉଥିଲେ । କୌଣସି ସ୍ଥାନରେ ଅଶାନ୍ତ ବାତାବରଣ ଖବର ପାଇବା ସଙ୍ଗେ ସଙ୍ଗେ ପଣ୍ଡିତ ନେହେରୁ ଶରୀରରକ୍ଷୀଙ୍କ ସାହାଯ୍ୟ ନ ନେଇ ସେହି ସ୍ଥାନମାନଙ୍କୁ ଚାଲି ଯାଉଥିଲେ । ସେ ପ୍ରକାର

* Manuben Gandhi—Last Glimpses of Bapu.

କାର୍ଯ୍ୟକଳାପରୁ ତାହାଙ୍କୁ ନିବୃତ୍ତ କରିବା ଲାଗି କାହାରି ସାହସ ନ ଥିଲା । ଗାନ୍ଧିଜୀଙ୍କ ଭଳି ଆଦର୍ଶକୁ ସେ ନିଜ ଜୀବନଠାରୁ ଉଚ୍ଚ ସ୍ଥାନ ଦେଇଥିଲେ । କିନ୍ତୁ ପରିସ୍ଥିତିର ଗୁରୁତ୍ୱ ଥିବାରୁ ନେହେରୁଙ୍କ ଅଜ୍ଞାତସାରରେ ଇନ୍ଦିରା ପ୍ରାୟ ସବୁବେଳେ ଶରୀର-ରକ୍ଷୀଙ୍କୁ ପଠାଉଥିଲେ । ସେମାନେ କୌଣସି ଅପ୍ରୀତିକର ପରିସ୍ଥିତିର ମୁକାବିଲା କରିପାରିବା ଭଳି ଦୂରତା ରଖି ପ୍ରଧାନମନ୍ତ୍ରୀ ନେହେରୁଙ୍କ ସାଙ୍ଗରେ ଯାଉଥିଲେ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦୁଇ ପୁଅଙ୍କୁ ନେଇ ଦିନେ ଗାନ୍ଧିଜୀଙ୍କ ନିକଟକୁ ଯାଇଥିଲେ ତାଙ୍କୁ ସାକ୍ଷାତ କରି ଆସିବା ପାଇଁ । ଇନ୍ଦିରାଙ୍କୁ ଦେଖିଲେ ବାପୁଜୀ ଖୁବ୍ ଖୁସି ହେଉଥିଲେ ଏବଂ ତତୋଽଧିକ ଆନନ୍ଦିତ ହେଉଥିଲେ ଇନ୍ଦିରାଙ୍କ ସନ୍ତାନମାନଙ୍କୁ ଦେଖି । ଶ୍ରୀମତୀ ଇନ୍ଦିରା ବା ମହାତ୍ମା ଗାନ୍ଧୀ କେହି କାହା ପ୍ରତି ଲୌକିକତା ପ୍ରଦର୍ଶନ କରିବାକୁ ଭଲ ପାଉ ନ ଥିଲେ । ବିଶେଷ କରି ବାପୁଜୀଙ୍କୁ ନିଜ ପରିବାରର ଜଣେ ଭଳି ମନେ କରୁଥିଲେ ଇନ୍ଦିରା ଓ ଠିକ୍ ସେଇ ମନୋଭାବ ଥିଲା ଗାନ୍ଧିଜୀଙ୍କର । ତେଣୁ ବାପୁଜୀ ସିଧାସଳଖ ଇନ୍ଦିରାଙ୍କ ସହ କଥାବାର୍ତ୍ତା କରି ଲୌକିକତା ରକ୍ଷା କରିବାକୁ ପସନ୍ଦ କରୁ ନ ଥିଲେ । ଇନ୍ଦିରା ତାଙ୍କ ନିକଟରେ ବସିଥିଲେ ମଧ୍ୟ ସେ ସମସ୍ତ ଅନ୍ୟାନ୍ୟମାନଙ୍କ ସହ ଆଲୋଚନା କରିବାକୁ ପଶ୍ଚାତ୍‌ପଦ ହେଉ ନ ଥିଲେ ଏବଂ ସେଥିରେ ଇନ୍ଦିରା ମଧ୍ୟ କିଛି ମନେ କରୁ ନ ଥିଲେ ।

ସେଦିନ ଇନ୍ଦିରା ବାପୁଜୀଙ୍କ ନିକଟକୁ ଗଲାବେଳେ ମହାତ୍ମାଜୀ ସୁଭଦ୍ରା ଓ ଅନ୍ୟ ଦୁଇ ଜଣ ସ୍ୱେଚ୍ଛାସେବିକାଙ୍କ ସହିତ ଆଲୋଚନା କରୁଥିଲେ । ଇନ୍ଦିରା ସେମାନଙ୍କ ନିକଟରେ ବସି ଆଲୋଚନା ଶୁଣୁଥିଲେ । ସେତିକବେଳେ ବାପୁଜୀ ସେମାନଙ୍କୁ କହୁଥିଲେ, ତମେ ସ୍ତ୍ରୀ ଜଣ ଭଉଣୀ କିଛି ମହତ୍ତ୍ୱ କଥା କହିବା ଅପେକ୍ଷା ତାକୁ ପ୍ରଥମେ କାର୍ଯ୍ୟରେ ପରିଣତ କରି ଦେଖାଇ ଦିଅ । କଥା ପ୍ରସଙ୍ଗରେ ସେ କହୁଥିଲେ ଯେ ସେମାନେ ପ୍ରକୃତରେ ଶରଣାର୍ଥୀ ଶିବିରମାନଙ୍କୁ ଯାଉଥିଲେ ମଧ୍ୟ କୌଣସି ପ୍ରଭାବ ପକାଇ ପାରୁ ନ ଥିଲେ । ତାର ବିଭିନ୍ନ କାରଣ ମଧ୍ୟରୁ ଗୋଟିକ ସମ୍ପର୍କରେ ଆଲୋଚନା କରି ସେ କହୁଥିଲେ, "ତୁମ୍ଭେମାନେ ସିଲ୍‌କ୍ ଶାଢ଼ୀ ପିନ୍ଧି, ଆଧୁନିକ ଧରଣର ବେଶ ପୋଷାକରେ ମଣ୍ଡିତ ହୋଇ ସେମାନଙ୍କୁ ସାଧାରଣ ହାତ ତିଆରି ସୂତା ଶାଢ଼ୀ ପିନ୍ଧିବାକୁ କହୁଛ ।"

ଇନ୍ଦିରା ଦେଖିଥିଲେ, ସେଠି ତାଙ୍କ ବ୍ୟତୀତ ତିନି ଜଣ ବସିଥିଲେ ମଧ୍ୟ ଏବଂ ବାପୁଜୀ ସେମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ ମଧ୍ୟ "ସ୍ତ୍ରୀ ଭଉଣୀ" ବୋଲି ସମ୍ବୋଧନ କରିଥିଲେ ଏବଂ ନେତୃତ୍ୱ ନେବା ପାଇଁ ଉପଦେଶ ଦେଇଥିଲେ । ବାପୁଜୀ 'ସ୍ତ୍ରୀ ଭଉଣୀ' ବୋଲି କହିବା ଭିତରେ ତାହାକୁ ଯେ ସେମାନଙ୍କ ମଧ୍ୟରେ

ସାମିଲ୍ କରିଯାଇଥିଲା, ତାହା ନିଶ୍ଚିତ ହେବା ସଙ୍ଗେ ଯାହା କିଛି ଆଲୋଚନା ଓ ଉପଦେଶ ଗାନ୍ଧିଜୀ ଦେଇଥିଲେ ତାହା ତାଙ୍କ ନିଜ ଲାଗି ମଧ୍ୟ ଉଦ୍ଦିଷ୍ଟ ଥିବା ଲକ୍ଷ୍ୟ କରିଥିଲେ ।

ସୁଭଦ୍ରା ଓ ଅନ୍ୟମାନେ ଚାଲିଯିବା ପରେ ଗାନ୍ଧିଜୀ ତାଙ୍କ ନାତୁଣୀଙ୍କୁ ସେଦିନ ପ୍ରାର୍ଥନା ସଭା ପାଇଁ ଲେଖିବାକୁ କହିଥିଲେ, "ଆଜି ଦିଲ୍ଲୀର ପ୍ରଭାବଶାଳୀ ମୁସଲମାନଙ୍କର, ଏପରିକି ମୌଲାନା ଆଜାଦଙ୍କ ଜୀବନ ମଧ୍ୟ ଛୁରି, ବନ୍ଧୁକ ଏବଂ ବୋମା ଆକ୍ରମଣରୁ ନିରାପଦ ନୁହେଁ । ଏହା ଜାତୀୟତାବାଦୀ ଚିନ୍ତାଧାରା ସମ୍ପନ୍ନ ଯୋଗ୍ୟ ମନେ କରୁଥିବା କୌଣସି ଭାରତୀୟଙ୍କ ପାଇଁ ଅତ୍ୟନ୍ତ ଅସହ୍ୟ ।"

ବାପୁଜୀ ବାସ୍ତବିକ୍ ଅନୁଭବ କରିଥିଲେ ଯେ; ଯେ କୌଣସି ମୁହୂର୍ତ୍ତରେ କୌଣସି ମୁସଲମାନଙ୍କୁ ହତ୍ୟା କରିଦିଆଯାଉଥିଲା, ଏପରି କି ବିଶିଷ୍ଟ ଦେଶସେବୀ, ନେତା, ମୁସଲମାନ ଧର୍ମାବଲମ୍ବୀ ମୌଲାନା ଆଜାଦ୍‌ଙ୍କ ଜୀବନ ମଧ୍ୟ ନିରାପଦ ନ ଥିଲା । ଯେ କୌଣସି ଭାରତୀୟ ଜାତୀୟତାବାଦୀ ପାଇଁ ଯେ ଥିଲା ଅତି ଲଜ୍ୟାର ବିଷୟ । ବାପୁଜୀ ତାଙ୍କର ସେ ମନୋଭାବ ଘୋଷଣା କରିଥିଲେ ସେଦିନ ପ୍ରାର୍ଥନା ସଭାରେ ।

ସେଇତକ ଶୁଣିବା ପରେ ପରେ ଶିଶୁ ସନ୍ତାନଙ୍କର ତତ୍ତ୍ୱାବଧାନ ନେବାପାଇଁ ଅନ୍ୟ ବନ୍ଦୋବସ୍ତ କରି ଶ୍ରୀମତୀ ଇନ୍ଦିରା ତା ପରଦିନ ଯାଇ ଦେଶସେବା ପାଇଁ କଣ୍ଟ୍ରୋଲ୍ ରୁମ୍‌ରେ କଂଗ୍ରେସ ସ୍ୱେଚ୍ଛାସେବୀ ତାଲିକାରେ ନାମ ଲେଖାଇଥିଲେ ।

ପିତାଜୀଙ୍କ ପରି ସେ ମଧ୍ୟ ନିଜର ସୁରକ୍ଷା କଥା ଚିନ୍ତା ନ କରି ବିଭିନ୍ନ ସ୍ଥାନକୁ ଚାଲି ଯାଉଥିଲେ ଯେ କୌଣସି ସ୍ଥାନରେ କୌଣସି ପ୍ରକାର ଗଣ୍ଡଗୋଳ ହେବା ଖବର ପାଇବା ମାତ୍ରେ । ପୁରୁଣା ଦିଲ୍ଲୀର ଅଧିକାଂଶ ଅଞ୍ଚଳରେ ଯେଉଁ ମୁସଲମାନ ପରିବାରବର୍ଗ ଏକ ପ୍ରକାର ବନ୍ଦୀ ଅବସ୍ଥାରେ ରହିଥିଲେ ସେମାନଙ୍କୁ ଆଶ୍ୱାସନା ଦେଉଥିଲେ ଏବଂ ସାଧ୍ୟମତ ଶରଣାର୍ଥୀ କଲୋନୀଗୁଡ଼ିକୁ ଯାଇ ସେମାନଙ୍କ ସୁବିଧା ଅସୁବିଧା ତଥା ଆପତ୍ତି ଅଭିଯୋଗମାନ ଶୁଣି ତାର ଉପଯୁକ୍ତ ପ୍ରତିକାର କରିବା ପାଇଁ ଚେଷ୍ଟା କରୁଥିଲେ । ସମୟ ସମୟରେ ଉତ୍ତେଜିତ ଜନତା ମଧ୍ୟକୁ ପଶି ଯାଉଥିଲେ ସେମାନଙ୍କୁ ଶାନ୍ତ କରିବା ପାଇଁ ଏବଂ ପ୍ରାୟ ସମସ୍ତ ସ୍ଥାନରେ ବିଜୟୀ ହେଉଥିଲେ ।

ବେଳେବେଳେ ନେହେରୁ ପରିବାରର ସୁନାମ ଏବଂ ତାଙ୍କ ନିଜ ନିର୍ଭୟ କାର୍ଯ୍ୟକଳାପ ଲୋକଙ୍କ ଉପରେ ପ୍ରଭାବ ପକାଇବାରେ ଅସମର୍ଥ ହେଉଥିଲା । ଥରେ ସେ ଖବର ପାଇଥିଲେ ଯେ ଦଳେ ଉତ୍ତ୍ୟକ୍ତ ଜନତା ଗୋଟାଏ ମୁସଲମାନ ପରିବାର ଉପରେ ଆକ୍ରମଣ କରିବା ପ୍ରୟାସ କରୁଥିଲେ । ସେ ଉତ୍ତେଜନା ମୂଳରେ

ଥିଲା ଗୋଟିଏ ଖବର—ପାକିସ୍ଥାନରେ ମୁସଲମାନମାନଙ୍କ ଅତ୍ୟାଚାରର ମାତ୍ରା ସହି ନ ପାରି ହଜାର ହଜାର ହିନ୍ଦୁ ଓ ଅନ୍ୟ ଧର୍ମାବଲମ୍ବୀ ଭାରତକୁ ପଳାଇ ଆସୁଛନ୍ତି । ସେଠାରେ ଲୋମହର୍ଷଣକାରୀ ଅତ୍ୟାଚାର ଚାଲିଛି ହିନ୍ଦୁମାନଙ୍କ ଉପରେ । ସଙ୍ଗେ ସଙ୍ଗେ ଇନ୍ଦିରା ଜିପ୍ ନେଇ ସେ ସ୍ଥାନକୁ ଛୁଟିଥିଲେ । ଠିକ୍ ସ୍ଥାନରେ ପହଞ୍ଚିବା କ୍ଷଣି ସେ ଜନତାର ଉଦ୍‌ବେଳନ ଦେଖି ଜିପ୍‌ର ଡ୍ରାଇଭର୍ ପ୍ରାଣଭୟରେ ଗାଡ଼ି ଛାଡ଼ି ଦଉଡ଼ି ପଳାଇଥିଲା । ଶ୍ରୀମତୀ ଇନ୍ଦିରା ଜିପ୍‌ରୁ ଓହ୍ଲାଇ ସେଠାରେ ପହଞ୍ଚିବା ପରେ ଉପସ୍ଥିତ ଅଶାନ୍ତ ଜନତାଙ୍କ ମଧ୍ୟରୁ ଅନେକେ ତାଚ୍ଛଲ୍ୟ ଏବଂ ଅଶ୍ଳୀଳ ବାକ୍ୟ ମଧ୍ୟ ବ୍ୟବହାର କରିଥିଲେ ଇନ୍ଦିରାଙ୍କ ଉଦ୍ଦେଶ୍ୟରେ । ସବୁ ଶୁଣି ମଧ୍ୟ ସେ କିଛି ନ ଶୁଣିଲା ପରି ଜନତାର ସମୁଦ୍ର ଭିତରେ ପଶି ଯାଇଥିଲେ । ଅନ୍ୟାନ୍ୟ ଅନେକ ସ୍ଥାନ ପରି ସେ ଜନତା ଇନ୍ଦିରାଙ୍କ ସିବା ଲାଗି ରାସ୍ତା ଟିକଏ ଛାଡ଼ିବା ପାଇଁ କୁଣ୍ଠାବୋଧ କରୁଥିଲା । ହେତେବେ ସେମିତି ଯାଉ ଯାଉ ହଠାତ୍ ଗୋଟିଏ ଅଶାନ୍ତ ହାତ ଆସି ଇନ୍ଦିରାଙ୍କ ମୁଣ୍ଡ ଉପରେ ପଡ଼ିଥିଲା ଏବଂ ତାଙ୍କର ଓଢ଼ଣିଟି ଟାଣି ପକାଇଥିଲା । ତଥାପି ଅବିଚଳିତ ଇନ୍ଦିରା ବିନା ପ୍ରତିବାଦରେ ସେ ମୁସଲମାନ ପରିବାର ଭିତର୍‌କୁ ପଶି ଯାଇଥିଲେ ଏବଂ ସେମାନଙ୍କୁ ସାନ୍ତ୍ୱନା ଦେବା ସଙ୍ଗେ ସଙ୍ଗେ ତାହାଙ୍କୁ ନିଜ ସହିତ ପିତାଙ୍କ ବାସଭବନକୁ ନେଇଆସିବା ଲାଗି ଚାହିଁଥିଲେ । ଇନ୍ଦିରାଙ୍କ ସହିତ ସେହି ଭୟବିକଳିତ ମୁସଲମାନ ପରିବାର ଜିପ୍ ପର୍ଯ୍ୟନ୍ତ ଆସିବାବେଳେ କେହି କିଛି କ୍ଷତି କରି ନ ଥିଲେ ଓ ନିରାପଦରେ ସମସ୍ତେ ଫେରି ଆସିଥିଲେ । ଠିକ୍ ସମୟରେ ସେଠାରେ ଇନ୍ଦିରା ପହଞ୍ଚି ନ ଥିଲେ ନିଶ୍ଚୟ କିଛି ନା କିଛି ଅପ୍ରୀତିକର ପରିସ୍ଥିତି ସେଠାରେ ସୃଷ୍ଟି ହୋଇଥାନ୍ତା ।

ଇନ୍ଦିରାଙ୍କ ସେ ଥିଲା ପ୍ରଥମ ସୁଯୋଗ, ଯେତେବେଳେ ସେ ସାଧାରଣ ଜନତାଙ୍କ ଜୀବନଯାତ୍ରାର ମାନ ତଥା ଦେଶ ବିଭାଜନର ଫଳ ସ୍ୱରୂପ ସାଂପ୍ରଦାୟିକ ଦଙ୍ଗାର କୁ-ପରିଣତିଜନିତ ଅସ୍ଥିର, ଭୟସଂକୁଳିତ ଜୀବନଯାପନର ଧାରା ପ୍ରଥମଥର ଲାଗି ହୃଦୟଙ୍ଗମ କରିବା ସୁଯୋଗ ପାଇଥିଲେ । ବାସଚ୍ୟୁତ ହିନ୍ଦୁ ଓ ମୁସଲମାନମାନଙ୍କୁ ଦେଖିବା ଲାଗି ସେ ଯେତେବେଳେ ସେମାନଙ୍କ ନିକଟକୁ ଯାଉଥିଲେ ସେମାନେ ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କ କନ୍ୟା ଇନ୍ଦିରାଙ୍କୁ ପାଇ ଅନେକଟା ଆଶ୍ୱାସନା ପାଉଥିଲେ ଏବଂ ବନ୍ଧୁତାର ଆଦରରେ ଲୁଣରୁଟି (କାରଣ ସେତେବେଳେ ବଜାରରେ ଅନ୍ତତଃ ଶରଣାର୍ଥୀ ଶିବିରଗୁଡ଼ିକରେ ଚିନି ମିଳୁ ନ ଥିଲା), ବିସ୍କୁଟ କିମ୍ବା ସେମାନଙ୍କ ନିକଟରେ ଯାହା ଥିଲା ତାହା ଇନ୍ଦିରାଙ୍କୁ ଦେଉଥିଲେ । ତାହା ଗ୍ରହଣ ନ କଲେ ଯେ ସେମାନେ ନିଶ୍ଚିତ ଭାବେ ମନ କଷ୍ଟ କରିବେ, ସେଥିପାଇଁ ପ୍ରିୟଦର୍ଶିନୀ ତାହା ଗ୍ରହଣ କରି ସେମାନଙ୍କୁ ଆପ୍ୟାୟିତ କରୁଥିଲେ—ତା ସଙ୍ଗେ ସଙ୍ଗେ ନିଜ ନାମକରଣର ସାର୍ଥକତା ମଧ୍ୟ । ସଂପୃଓ

ସାଧାରଣତଃ ସେ ଗୁହ୍ଣା ଖାଉ ନ ଥିଲେ, ତଥାପି ଶରଣାର୍ଥୀମାନଙ୍କ ଅର୍ପିତ ଗୁହ୍ଣାରେ ସେ ଆନନ୍ଦ ପାଇବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ଆନନ୍ଦ ଦେଉଥିଲେ ।

ଦୀର୍ଘ ଦିନର ଅକ୍ଳାନ୍ତ ପରିଶ୍ରମ ପରେ ମଧ୍ୟ ଯେତେବେଳେ ପରିସ୍ଥିତିର ମୁକାବିଲା କରାଯାଇ ପାରିଲା ନାହିଁ ବା ଦେଶର ପୂର୍ବାବସ୍ଥା ଫେରି ଆସିଲା ନାହିଁ, ଗାନ୍ଧିଜୀ ଅସ୍ଥିର ହୋଇ ଉଠିଥିଲେ । ୧୯୪୮ ମସିହା ଜାନୁୟାରୀ ୧୩ ତାରିଖରେ ସାଂପ୍ରଦାୟିକ ଦଙ୍ଗାହାଙ୍ଗାମା ନିର୍ମୂଳ କରିବା ପାଇଁ ଓ ଦେଶର ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କ ହୃଦୟ ପରିବର୍ତ୍ତନ ପାଇଁ ଗାନ୍ଧିଜୀ ଆମରଣ ଅନଶନ ଆରମ୍ଭ କରିଥିଲେ । ବାପୁଜୀ ଘୋଷଣା କରିଥିଲେ ଯେ ଯେତେବେଳ ପର୍ଯ୍ୟନ୍ତ ଦିଲ୍ଲୀର ଗଳି-ପ୍ରତିଗଳିରେ ମୁସଲମାନମାନଙ୍କ ଜୀବନ ନିରାପଦ ନୁହେଁ—ହିନ୍ଦୁ, ଶିଖ୍, ମୁସଲମାନମାନେ ଭାଇ ଭାଇ ଭଳି ଚଳି ପାରିବେ ନାହିଁ, ସେତେଦିନ ଯାଏ ତାଙ୍କର ଅନଶନ ଚାଲୁ ରହିଥିବ ।

ଅଠସ୍ତରି ବର୍ଷ ବୟସ୍କ ବାପୁଙ୍କର ସେ ଘୋଷଣାରେ ଲୋକେ ଆତଙ୍କିତ ହୋଇ ପଡ଼ିଥିଲେ । ଦେଶର ଅନେକ ଶୀର୍ଷ ନେତା ସେଥିରୁ ନିବୃତ୍ତ ରହିବା ଲାଗି ଅନୁରୋଧ କରିଥିଲେ ବାପୁଜୀଙ୍କୁ; କିନ୍ତୁ ଇଥର ବାପୁଙ୍କୁ କୌଣସି ଅନୁରୋଧ କରି ନ ଥିଲେ, ବରଂ ସେ ଭାବିଥିଲେ ତାହା ଫଳରେ ନିଶ୍ଚିତ ଭାବରେ ଦେଶରେ ଶାନ୍ତି ରକ୍ଷା କରାଯାଇ ପାରିବ—ପୂର୍ବାବସ୍ଥା ଫେରାଇ ଅଣାଯାଇ ପାରିବ ।

କୌଣସି ଏକ କୁଶଳୀ ଯାଦୁକରର ମନ୍ତ୍ର ଭଳି କାମ କରିଥିଲା ବାପୁଜୀଙ୍କ ସେ ଅନଶନ । ସେ ଅନଶନ ଆରମ୍ଭ କରିବା ପରେ ପରେ ଦେଶର ସାଂପ୍ରଦାୟିକ ବିବାଦ କମି ଯାଇଥିଲା । କାରଣ ସମସ୍ତେ ବୁଝୁଥିଲେ ଜାତିର ପିତା ବାପୁଙ୍କ ଜୀବନ । ବାସ୍ତବିକ୍ ବାପୁଜୀଙ୍କ ବଳିଷ୍ଠ ବ୍ୟକ୍ତିତ୍ୱରେ ପ୍ରତ୍ୟେକ ଭାରତୀୟ ପ୍ରଭାବିତ ହୋଇଥିଲେ । ଅନଶନର ଛଅ ଦିନ ପରେ ବିଭିନ୍ନ ସମ୍ପ୍ରଦାୟର ନେତାମାନଙ୍କଠାରୁ ଏକ ଲିଖିତ ପ୍ରତିଶ୍ରୁତି ପାଇ ବାପୁଜୀ ଅନଶନ ଭଙ୍ଗ କରିଥିଲେ ମୌଲାନା ଆବୁଲ କାଲମ୍ ଆଜାଦ୍‌ଙ୍କ ହାତରୁ ଗିଲାସେ କମଳାରସ ପାନ କରି ।

ତାର ଦୁଇ ଦିନ ପରେ ପୁଣି ଯଥାରୀତି ପ୍ରାର୍ଥନାସଭା ଆରମ୍ଭ କରିଥିଲେ ।

୧୯୪୮ ଜାନୁୟାରୀ ୨୯ ତାରିଖ ଦିନ ଇନ୍ଦିରା, ରାଜୀବ, କୃଷ୍ଣା ଓ ନୟନତାରା ବାପୁଜୀଙ୍କୁ ଦର୍ଶନ ପାଇଁ ଦିନ ଦିପ୍ରହରବେଳେ ଯାଇଥିଲେ ତାଙ୍କ ନିକଟକୁ । ସେତେବେଳକୁ ବାପୁଜୀ ବେଶ୍ ଖୁସି ଥିଲେ ଏବଂ ନୂଆଖାଲିର ଚାଷୀମାନେ ବ୍ୟବହାର କରୁଥିବା ଗୋଟିଏ ଟୋପି ପିନ୍ଧି ଖରାରେ ବସିଥିଲେ । ସେ ସମସ୍ତଙ୍କୁ

ଦେଖି ଖୁସି ହୋଇ ହସି ହସି ପଚାରିଥିଲେ, "ହାଲୋ, ଏଇ ରାଜକୁମାରୀମାନେ କ'ଣ ମୋତେ ଦେଖିବାକୁ ଆସିଛନ୍ତି ?" ସେ ପ୍ରଶ୍ନରେ ସମସ୍ତଙ୍କ ମୁହଁରେ ହସ ଛୁଟିଯାଇଥିଲା । ତା ପରେ ପୁଣି ବାପୁ ସେମାନଙ୍କୁ ଖୁସିରେ ପଚାରିଥିଲେ ଯେ ସେ ଟୋପି ପରିଧାନ କଲେ ଅତି ସୁନ୍ଦର ଦେଖାଯାଆନ୍ତି କି ନା ?—"ଏ ଟୋପି ପିନ୍ଧିଲେ ମୁଁ କ'ଣ ସୁନ୍ଦର ଦେଖାଯାଉ ନାହିଁ ?" ପୁଣି ସମସ୍ତେ ହସରେ କୁରୁଳି ଉଠିଥିଲେ ।

ତାପରେ ବାପୁଜୀ ଇନ୍ଦିରାଙ୍କ ସହିତ ଆଲାପ କରିଥିଲେ । ତାହାଙ୍କ ପିତା ଜବାହରଲାଲ, ସ୍ୱାମୀ ଫିରୋଜ, ସନ୍ତାନ ରାଜୀବ ଓ ସଞ୍ଜୟ ବିଶେଷ କରି ତାଙ୍କର ଅତିଥିବୃନ୍ଦ– ଯେଉଁମାନେ ଶରଣାର୍ଥୀ ଭାବରେ ପଣ୍ଡିତ ଜବାହରଲାଲ ରହିଥିବା ଘରେ ଆଶ୍ରୟ ନେଇଥିଲେ, ସେମାନଙ୍କ ବିଷୟରେ ପଚାରିଥିଲେ ।

ସେତେବେଳକୁ ବାପୁଜୀଙ୍କ ଘର ବାହାରେ ଅନେକ ଲୋକ ତାଙ୍କର ଦର୍ଶନ ପାଇଁ ଅପେକ୍ଷା କରିଥିଲେ । ତେଣୁ ବାପୁ ଇନ୍ଦିରା ଓ ଅନ୍ୟମାନଙ୍କୁ ସେଠାରୁ ଶୀଘ୍ର ଚାଲିଯିବା ପାଇଁ କହିଥିଲେ, "You girls, all of you vanish now, otherwise people waiting outside will curse you."

ଅତ୍ୟନ୍ତ ଆନନ୍ଦ ମନରେ ସମସ୍ତେ ବିଦାୟ ନେଇଥିଲେ ସେଠାରୁ । ସେମାନଙ୍କ ଲାଗି ବାପୁଙ୍କ ସହ ସେ ଥିଲା ଶେଷ ଦେଖା । ତତ୍ପରଦିନ ହିଁ ଆତତାୟୀର ଗୁଳି ବାପୁଙ୍କ ଶରୀର ବିଦ୍ଧ କରିଥିଲା ।

□ □ □

—ଚାର—

# ବାପୁଙ୍କର ପ୍ରିୟ ସାଥୀ



ଗାନ୍ଧିଜୀଙ୍କ ମୃତ୍ୟୁ ପରେ ପରେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ତାଙ୍କ ମାନସ-ରାଜ୍ୟରେ ଏକ ବିସ୍ତୀର୍ଣ୍ଣ ସ୍ଥାନ ଖାଲି ପଡ଼ି ରହିଯାଇଥିବା ଅନୁଭବ କରିଥିଲେ । କାରଣ ଭାରତରେ ସେତେବେଳେ ମହାତ୍ମାଜୀଙ୍କ ଭଳି ଜଣେ ବ୍ୟକ୍ତି ନ ଥିଲେ, ଯାହାଙ୍କ ନିକଟରୁ କିଛି ଉପଦେଶ ପାଇପାରିବେ ନେହେରୁ । ପ୍ରକୃତରେ ଅସମ୍ଭବ ମନେ ହେଉଥିବା ସମସ୍ୟାଗୁଡ଼ିକର ସମାଧାନ ସମ୍ଭବ ହୋଇପାରୁଥିଲା ଗାନ୍ଧିଜୀଙ୍କ ନିକଟରେ । ଉଭୟ ନେତା ଦୀର୍ଘ ତିରିଶ ବର୍ଷ ଏକାଠି, ଏକା ଉଦ୍ଦେଶ୍ୟ ନେଇ କାର୍ଯ୍ୟ କରି ଆସିଥିଲେ ଦେଶ ପାଇଁ । ଉଭୟେ କାର୍ଯ୍ୟ କରିବାବେଳେ ଅନେକଥର ସେମାନଙ୍କ ମଧ୍ୟରେ ମତପାର୍ଥକ୍ୟ ହୋଇଥିଲା । ପ୍ରଥମେ ପ୍ରଥମେ ଜବାହରଲାଲ୍ ମତପୋଷଣ କରୁଥିଲେ ଯେ ସେ ଯେଉଁଭଳି ଗୃହାନ୍ତ ବାପୁଜୀ ସେଭଳି କ୍ରାନ୍ତିକାରୀ ନୁହନ୍ତି । ଗାନ୍ଧିଜୀ ଭାବୁଥିଲେ ଯେ ଯୌବନର ସମସ୍ତ ତେଜସ୍ୱିତା ତଥା ରକ୍ତର ଜ୍ୱଳନ ଜବାହରଲାଲଙ୍କୁ ଓ ତାଙ୍କ ଚିନ୍ତାଧାରାକୁ ଉପସ୍ଥିତ ପରିସ୍ଥିତି ଓ ପରିବେଶଠାରୁ ଅଧିକ ଆଗୁଆ କରି ପକାଉଥିଲା—ଯଦିଓ ତାଙ୍କର ଯଥେଷ୍ଟ ବିଚାରବୁଦ୍ଧି ଥିଲା । ସେ ବିଚାରୁଥିଲେ ଯେ ପ୍ରକୃତରେ ନେହେରୁ ଥିଲେ ଜଣେ ଅତ୍ୟନ୍ତ ନିଷ୍ଠାପର ଏବଂ ସ୍ଫଟିକ ପରି ନିର୍ମଳମନା କର୍ମୀ । ସେହି ଦୃଷ୍ଟିରୁ କୌଣସି ପ୍ରକାର ସନ୍ଦେହ କରିବାର ଅବକାଶ ନ ଥିଲା । ଗାନ୍ଧିଜୀଙ୍କ ଉତ୍ତରାଧିକାରୀ ରୂପେ ଭାରତୀୟ ଜନତା ତାହାଙ୍କୁ ସ୍ୱୀକାର କରିଥିଲା । ଯଦିଓ ଗାନ୍ଧିଜୀ ଓ ଜବାହରଲାଲଙ୍କ ମଧ୍ୟରେ ବେଳେ ବେଳେ ମତପାର୍ଥକ୍ୟ ହେଉଥିଲା, ତଥାପି ଉଭୟଙ୍କ ମଧ୍ୟରେ ଅନାବିଲ ଘନିଷ୍ଠତା ରହିଥିଲା । ଗାନ୍ଧିଜୀ ତାହାଙ୍କୁ "ଭାରତର ଜବାହର" ବୋଲି କହିବା ସଙ୍ଗେ ସଙ୍ଗେ ନିଜ ପୁତ୍ରଠାରୁ ବି ଅଧିକ ସ୍ନେହ କରୁଥିଲେ ଏବଂ ଜବାହର ମଧ୍ୟ ବାପୁଙ୍କୁ ପିତୃତୁଲ୍ୟ ଭକ୍ତି କରୁଥିଲେ ଏପରି କି ପ୍ରତ୍ୟେକ କଥାରେ ସେ ଗାନ୍ଧିଜୀଙ୍କଠାରୁ ଉପଦେଶ ଗ୍ରହଣ କରୁଥିଲେ ।

ଅନେକ ପରିମାଣରେ ଇନ୍ଦିରାଙ୍କ ସାହାଯ୍ୟ ଓ ସାହଚର୍ଯ୍ୟ ଜବାହରଙ୍କୁ ସାନ୍ତ୍ୱନା ଦେଉଥିଲା ବାପୁଙ୍କ ମୃତ୍ୟୁ ପରେ ପରେ ।

**ପିତାଙ୍କ ସାଥୀ :—**

୧୯୪୭ ମସିହାରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ନୂଆଦିଲ୍ଲୀର ୧୭ ୟର୍କ ରୋଡ଼ସ୍ଥ ଗୋଟିଏ ଛଅ କୋଠରୀବିଶିଷ୍ଟ ଘରେ ଅନେକ ଦିନ ପର୍ଯ୍ୟନ୍ତ ରହୁଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀଙ୍କ ସହିତ ସାକ୍ଷାତ କରିବା ପାଇଁ ବା ପରାମର୍ଶ କରିବା ନିମନ୍ତେ ଯେତେବେଳେ ନିୟମିତ ଭାବେ ଲୋକ ଅଧିକରୁ ଅଧିକ ଆସିଥିଲେ ପ୍ରଧାନମନ୍ତ୍ରୀଙ୍କ ବାସଭବନର ଗୁରୁତ୍ୱ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସେ ଗୃହଟିରେ ମଧ୍ୟ ସ୍ଥାନଭାବ ଅନୁଭୂତ ହୋଇଥିଲା । ସେଥିପାଇଁ ବାଧ୍ୟ ହୋଇ ଜବାହରଲାଲ ତିନମୂର୍ତ୍ତି ଭବନକୁ ପ୍ରଧାନମନ୍ତ୍ରୀଙ୍କ ବାସଭବନ ରୂପେ ବ୍ୟବହାର କରିଥିଲେ । ପୁନଶ୍ଚ ଜବାହରଲାଲଙ୍କ ପରିଦର୍ଶକମାନଙ୍କ ମଧ୍ୟରେ କେବଳ ଭାରତୀୟ ଜନତା ନ ଥିଲେ, ଥିଲେ ମଧ୍ୟ ବିଦେଶାଗତ ଅତିଥିମାନେ । ତେଣୁ ଭାରତର ପ୍ରଧାନମନ୍ତ୍ରୀଙ୍କ ବାସଭବନ ଏବଂ ସେମାନଙ୍କୁ ଉପଯୁକ୍ତ ଆତିଥ୍ୟର ପ୍ରଶ୍ନ ସହିତ ଏକ ନୂତନ ସ୍ୱାଧୀନ ରାଷ୍ଟ୍ର ଭାରତର ସମ୍ମାନ ପ୍ରଶ୍ନ ଜଡ଼ିତ ରହିଥିବା ଦୃଷ୍ଟିରୁ ସେ ପ୍ରକାର ପଦକ୍ଷେପ ନେବା ପାଇଁ ପଣ୍ଡିତ ନେହେରୁ ମନ ବଳାଇଥିଲେ । କିନ୍ତୁ ପଣ୍ଡିତ ନେହେରୁ ବାସଭବନ ବଦଳାଇବାରେ ଅନେକ ଗାନ୍ଧିବାଦୀ ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ଉଠିଥିଲେ । କାରଣ ବିଶାଳ ତିନମୂର୍ତ୍ତି ଭବନରେ ପ୍ରଥମେ ରହୁଥିଲେ ବ୍ରିଟିଶ ସରକାରଙ୍କ ପ୍ରଧାନ ସେନାଧ୍ୟକ୍ଷ ।

ପଣ୍ଡିତ ଜବାହରଲାଲ ଆନନ୍ଦ ଭବନକୁ ସ୍ଥାନାନ୍ତରିତ ହେବା ପରେ ସେ ଇନ୍ଦିରା ଓ ଫିରୋଜଙ୍କୁ ନିମନ୍ତ୍ରଣ କରିଥିଲେ ତାଙ୍କ ସହିତ ଏକାଠି ରହିବା ପାଇଁ । ସେଇଥିପାଇଁ ଇନ୍ଦିରା ସ୍ୱାମୀ ଫିରୋଜ ଓ ଦୁଇ ପୁତ୍ରଙ୍କ ସହ ଯାଇ ଆନନ୍ଦ ଭବନରେ ପିତାଜୀଙ୍କ ସହିତ ଯୋଗ ଦେଇଥିଲେ । ବାସ୍ତବରେ ସେତେବେଳେ ପଣ୍ଡିତ ନେହେରୁ ବା ଇନ୍ଦିରା କେହି ନିଶ୍ଚିତ ନ ଥିଲେ ଯେ ଉଭୟେ ଏକାଠି ସବୁବେଳେ ରହିବେ । ଉଭୟେ ବୋଧହୁଏ ଭାବିଥିଲେ ମେହୁପର ଶିବିରେ କିଛିଦିନ ବିତିଯିବା ପରେ ଯେ ଯାହାର ନିଜ ବ୍ୟବସ୍ଥା କରିବେ । କାରଣ ଇନ୍ଦିରା ଥିଲେ ଏକ ସ୍ୱତନ୍ତ୍ର ପରିବାରର ସଦସ୍ୟା; ତାଙ୍କର ସ୍ୱାମୀ ଥିଲେ—ଥିଲେ ବି ସନ୍ତାନମାନେ । ତେଣୁ ସେ ପ୍ରକାର ଧାରଣାର ବଶବର୍ତ୍ତୀ ହେବା ସ୍ୱାଭାବିକ କଥା ।

ଯେତେବେଳେ ସମସ୍ୟା ଉପରେ ସମସ୍ୟା ପ୍ରଧାନମନ୍ତ୍ରୀଙ୍କ ମୁଣ୍ଡ ଉପରେ ଏକ ବିରାଟ ବୋଝ ହୋଇ ରହିଥିଲା । ତେଣୁ ଅବିଶ୍ରାନ୍ତ ଭାବରେ ଦିନକୁ ପ୍ରାୟ ଅଠର ଘଣ୍ଟା ପରିଶ୍ରମ କରିବାକୁ ପଡ଼ୁଥିଲେ ମଧ୍ୟ କୌଣସି କାର୍ଯ୍ୟ କରିବାକୁ କୁଣ୍ଠା

ତାଙ୍କର ନ ଥିଲା । କାର୍ଯ୍ୟାଳୟରୁ ବାସଭବନକୁ ଫେରିବା ପରେ ମଧ୍ଯ ତାଙ୍କ ନିଜ ଶରୀରର ତତ୍ତ୍ୱ ନେବାପାଇଁ ସମସ୍ତ ଅଭାବ ରହୁଥିଲା ତାଙ୍କ ନିକଟରେ । ବିଶେଷ କରି ଜଣେ ଷାଠିଏ ବର୍ଷର ସ୍ୱାଧୀନ ବୃଦ୍ଧଙ୍କ ପାଇଁ ସେ କିଛି କମ୍ ସମସ୍ୟା ନ ଥିଲା । ସେ ବୟସରେ ଏବଂ ସେ ପରିଶ୍ରମ ପରେ ତାଙ୍କ ଖାଦ୍ୟପେୟର ଉପଯୁକ୍ତ ବ୍ୟବସ୍ଥା କରିବା ଲାଗି ଏବଂ ତାଙ୍କ ସ୍ୱାସ୍ଥ୍ୟର ତତ୍ତ୍ୱ ନେବାଲାଗି ଏବଂ ଆବଶ୍ୟକ ମନେକଲେ ତାଗିଦ୍ କରିବାଲାଗି ଜଣେ ଅତ୍ୟନ୍ତ ଅନ୍ତରଙ୍ଗର ଆବଶ୍ୟକତା ଥିଲା କମଳାଙ୍କ ଚିର ଅନୁପସ୍ଥିତି ଯୋଗୁଁ । ପୃଥିବୀରେ ସେଭଳି ମାତ୍ର ଜଣେ ବ୍ୟକ୍ତି ଥିଲେ ଇନ୍ଦିରା । କାରଣ ଉଭୟଙ୍କର ଉଭୟଙ୍କ ପ୍ରତି ଯଥେଷ୍ଟ ସ୍ନେହ ଓ ଯଥେଷ୍ଟ ବୁଝାମଣା ମଧ୍ଯ ରହିଥିଲା । ଖାଦ୍ୟପେୟର ସଠିକତା ଏବଂ ଅନେକ ବ୍ୟକ୍ତିଗତ ଘଟଣା ପ୍ରତି ସମ୍ବେଦନଶୀଳ ହେବା ଲାଗି କୌଣସି ଘରୋଇ ସେକ୍ରେଟେରୀ ବା ବ୍ୟକ୍ତିଗତ ସେକ୍ରେଟେରୀ ଯେତେ ଚେଷ୍ଟା କଲେ ମଧ୍ଯ ସଫଳ ହେବା ସମ୍ଭବ ନ ଥିଲା ।

ତିନମୂର୍ତ୍ତି ଭବନରେ ପିତାଜୀଙ୍କ ସହିତ ଇନ୍ଦିରା ରହିବା ପରେ ଜବାହରଲାଲ ପ୍ରତିଦିନ ସକାଳ ଜଳଖିଆ କରୁଥିଲେ ପରିବାରବର୍ଗଙ୍କ ସହିତ । ତାଙ୍କର ନାତି-ମାନଙ୍କ ସହିତ ଅନ୍ତତଃ ଦିନରେ ଥରେ ଏକାଠି ଖାଇବା ଲାଗି ସେ ପସନ୍ଦ କରୁଥିଲେ । କାରଣ ଦିନର ଅବଶିଷ୍ଟ ସମୟରେ ଜବାହରଲାଲ ତାଙ୍କ ନିଜ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ ଏବଂ ସଞ୍ଜୀବ ଓ ରାଜୀବ ଉଭୟେ ସ୍କୁଲକୁ ଚାଲି ଯାଉଥିଲେ ।

ଇନ୍ଦିରାଙ୍କ ସେତେବେଳର ପ୍ରଧାନ କାର୍ଯ୍ୟ ଥିଲା ତିନମୂର୍ତ୍ତି ଭବନର ପରିଚାଳନା କରିବା ସଙ୍ଗେ ସଙ୍ଗେ ଜବାହରଲାଲଙ୍କ ସେବା କରିବା । ଜବାହରଲାଲ ଅତ୍ୟନ୍ତ ଆବେଗଶୀଳ ଥିବାରୁ କୌଣସି ସ୍ଥାନରେ ସାମାନ୍ୟ ପ୍ରବଞ୍ଚନାର ଆଭାସ ପାଇବା ପରେ ପରେ ନିଜର ଧୈର୍ଯ୍ୟ ହରାଇ ବସୁଥିଲେ । ସେଇ ସମୟରେ ତାଙ୍କ ମନରେ ସ୍ଥିରତା ଆଣିବା ଲାଗି ଚେଷ୍ଟା କରୁଥିଲେ ଇନ୍ଦିରା । ଦୀର୍ଘ ୧୮ ବର୍ଷ ସେଠାରେ ରହି ପିତାଜୀଙ୍କ ଅତି ନିକଟତମ ହୋଇ ପିତାଜୀଙ୍କ ସେବାରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କରିଥିଲେ ସେ । ସେଇଥିପାଇଁ ତାହାଙ୍କୁ ଅନେକ ବ୍ୟକ୍ତିଗତ ସ୍ୱାର୍ଥକୁ ବଳି ଦେବାକୁ ପଡ଼ିଥିଲା । ତଥାପି ସେ ନିର୍ଦ୍ଦିଷ୍ଟ ଭାବେ ଜାଣିଥିଲେ ଓ ଅନୁଭବ କରିଥିଲେ ଯେ ସମଗ୍ର ଭାରତବାସୀ ବାପୁଜୀଙ୍କ ଉତ୍ତରାଧିକାରୀ-ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ଉପରେ ଅତୁଟ ଆସ୍ଥା ସ୍ଥାପନ କରିଥିଲେ ।

ପିତାଜୀଙ୍କ ନିକଟରେ ରହି ସେ କିପରି ତାଙ୍କର ଉତ୍ତମ ସ୍ୱାସ୍ଥ୍ୟ ବଜାୟ ରଖିପାରିବେ, ସେଥିପାଇଁ ଅନବରତ ଉଦ୍ୟମ କରିଥିଲେ । ସନେଷ୍ଟ କେବଳ ଭାରତର

କାହିଁକି, ସମଗ୍ର ପୃଥିବୀର ଜଣେ ଶ୍ରେଷ୍ଠ ରାଜନୀତିଜ୍ଞଙ୍କ ନିକଟତମ ହୋଇ ରହିପାରି-ଥିବାରୁ ସେ ତାଙ୍କର ଭବିଷ୍ୟତ ଜୀବନ ପାଇଁ ମଧ୍ୟ ଅନେକ କିଛି ଅଭିଜ୍ଞତା ସଂଗ୍ରହ କରିପାରିଥିଲେ । ତିନ୍‌ମୂର୍ତ୍ତି ଭବନରେ ରହିବା ସମୟରେ କେବଳ ସେ ପିତାଙ୍କର ତତ୍ତ୍ୱାବଧାରିକାର ଦାୟିତ୍ୱ ନିର୍ବାହ କରୁ ନ ଥିଲେ, ଯେତେବେଳେ ସେ ନିଜେ ଅନୁଭବ କରୁଥିଲେ ଯେ ସେ ପିତାଙ୍କଙ୍କର କୌଣସି କାର୍ଯ୍ୟକଳାପରେ ସନ୍ତୁଷ୍ଟ ନୁହନ୍ତି, ତାର ମଧ୍ୟ ସମାଲୋଚନା କରିବାକୁ ପଶ୍ଚାଦ୍‌ପଦ ହେଉନ ନ ଥିଲେ । ଫଳରେ ସେ ପ୍ରକାର ବିଷୟବସ୍ତୁଗୁଡ଼ିକର ପୁନଃ ବିଚାର ଆଲୋଚନା ଲାଗି ପଣ୍ଡିତ ନେହେରୁ ଗୁରୁତ୍ୱ ଦେବାର କାରଣ ଥିଲା ଯେ ସେ ଜାଣିଥିଲେ ଇନ୍ଦିରାଙ୍କ ମାନସିକ ସ୍ଥିତି ଖୁବ୍ ଦୃଢ଼ ଏବଂ ଚିନ୍ତାଧାରା ମଧ୍ୟ ଉନ୍ନତ । କୌଣସି ଦଳ, ଗୋଷ୍ଠୀ ବା ସଂପ୍ରଦାୟ ପ୍ରତି ତାଙ୍କର ଈର୍ଷାପରାୟଣତା ନ ଥିଲା । ଇନ୍ଦିରାଙ୍କ ସେବା ମନୋଭାବ ସ୍ପଷ୍ଟ ଲକ୍ଷ୍ୟ କରିପାରିଥିବା ଯୋଗୁଁ ତାଙ୍କର ମୌଳିକ ମୂଲ୍ୟ ସମାଲୋଚନାରେ ମଧ୍ୟ ଗୁରୁତ୍ୱ ସଂଯୋଗ କରୁଥିଲେ ଜବାହରଲାଲ ।

ତିନ୍‌ମୂର୍ତ୍ତି ଭବନକୁ ପ୍ରାୟ ପ୍ରତିଦିନ ଦେଶ ବିଦେଶରୁ କେହି ନା କେହି ନିଶ୍ଚୟ ଆସୁଥିଲେ ସାମାଜିକ ଅଥବା ରାଜନୈତିକ କାରଣରୁ । ପ୍ରଧାନମନ୍ତ୍ରୀଙ୍କୁ କେବଳ ଦେଖା କରିବା ଉଦ୍ଦେଶ୍ୟ ମଧ୍ୟ ସେଠାକୁ ଆସୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ ଥିଲା । ସେମାନଙ୍କୁ ଅଭିନନ୍ଦନ ଜଣାଇବା ଲାଗି ଇନ୍ଦିରା ତତ୍ପର ହୋଇ ଉଠୁଥିଲେ । ଅନେକ ସମୟରେ ବିଦେଶୀ ଅତିଥିମାନେ ତିନ୍‌ମୂର୍ତ୍ତି ଭବନରେ ରହୁଥିଲେ ମଧ୍ୟ । ବିଭିନ୍ନ ଜାତି, ବିଭିନ୍ନ ଧର୍ମର ଲୋକମାନଙ୍କ ଖାଦ୍ୟପେୟର ଧାରା ସ୍ୱତନ୍ତ୍ର ଧରଣର । ହିନ୍ଦୁମାନେ ଗୋ-ଜାତିକୁ ମାତା ସ୍ୱରୂପ ଗ୍ରହଣ କରିବା ବେଳେ ମୁସଲମାନମାନେ ଗୋମାଂସ ଭକ୍ଷଣ କରିବା ଧର୍ମସମ୍ମତ ବୋଲି ଗ୍ରହଣ କରିଥାନ୍ତି । ଆଉ କେତେକ ଘୁଷୁରି ମାଂସକୁ ଆଦର ସହକାରେ ଗ୍ରହଣ କଲାବେଳେ ଅନ୍ୟମାନଙ୍କ ନିକଟରେ ତାହା ଅତି ଘୃଣ୍ୟ । ସେହିପରି ବିଭିନ୍ନ ଦେଶ, ବିଭିନ୍ନ ଜାତି ତଥା ବିଭିନ୍ନ ଧର୍ମର ଲୋକଙ୍କ ମନମୁତାବକ ଖାଦ୍ୟ ପ୍ରସ୍ତୁତ କରିବା ପାଇଁ ଆୟୋଜନ କରିବା ଏବଂ ଅତିଥିମାନଙ୍କୁ ଉପଯୁକ୍ତ ଆତିଥ୍ୟ ପ୍ରଦର୍ଶନ କରିବାପାଇଁ ସେ ବିଶେଷ ତତ୍ପର ଥିଲେ ଏବଂ ନିଜେ ହିଁ ସବୁକିଛି ଦେଖାଶୁଣା କରୁଥିଲେ ପ୍ରତ୍ୟକ୍ଷ ଭାବେ । ସେହି କାରଣରୁ ସମଗ୍ର ବିଶ୍ୱର ନେତୃବୃନ୍ଦଙ୍କ ସାହଚର୍ଯ୍ୟ ଲାଭ କରିଥିଲେ ସେ ।

ଆମେରିକାର ତତ୍‌କାଳୀନ ରାଷ୍ଟ୍ରପତି ଲିଣ୍ଡନ୍ ଜନ୍‌ସନ୍ ତାଙ୍କର ସହଧର୍ମିଣୀଙ୍କ ସହ ସେହି ସମୟରେ ଭାରତ ପରିଭ୍ରମଣରେ ଆସି ଇନ୍ଦିରାଙ୍କ ସାହଚର୍ଯ୍ୟ ପାଇଥିଲେ । ଶ୍ରୀମତୀ ଜନସନ୍ ମନ୍ତବ୍ୟ ପ୍ରକାଶ କରିଥିଲେ ଯେ ଭାରତର ପ୍ରକୃତ ରୂପ ଦେଖିବା ଲାଗି ତାର ଗ୍ରାମାଞ୍ଚଳଗୁଡ଼ିକୁ ଭ୍ରମଣ କରିବା ଆବଶ୍ୟକ । ଭାରତକୁ ସମ୍ପୂର୍ଣ୍ଣ ରୂପେ ବୁଝିବା ଲାଗି ରବୀନ୍ଦ୍ରନାଥଙ୍କ ରଚନାବଳୀଗୁଡ଼ିକୁ ଅଧ୍ୟୟନ କରିବାକୁ ହେବ; କିନ୍ତୁ

ଭାରତକୁ ଜାଣିବା ପାଇଁ ହେଲେ ଇନ୍ଦିରା ଗାନ୍ଧୀଙ୍କ ଭଳି ଜଣେ ଶିକ୍ଷୟିତ୍ରୀଙ୍କର ନିହାତି ଆବଶ୍ୟକ । ସେ ସବୁଗୁଡ଼ିକ ପାଇପାରିଥିବା ହେତୁ ସେ ନିଜକୁ ଖୁବ୍ ଭାଗ୍ୟବନ୍ତ ମନେକରି ମନ୍ତବ୍ୟକ୍ତ କରିଥିଲେ, "To see India you must visit the villages. To understand India you must read Tagore, but to know India you must have a teacher like Indira Gandhi. I was lucky because I had all three." *

**ବିଦେଶ ଭ୍ରମଣ :—**

ଇନ୍ଦିରା ପିତା ଜବାହରଲାଲଙ୍କ ନିକଟରେ ହିଁ ସବୁବେଳେ ରହୁଥିଲେ; ଏପରି କି ନେହେରୁ ଯେତେବେଳେ ବିଦେଶ ଭ୍ରମଣରେ ଯାଉଥିଲେ ସେତେବେଳେ ମଧ୍ୟ । ତୁଏତ ସେଇ ସମୟରେ ଇନ୍ଦିରା ପିତାଜୀଙ୍କ ସହିତ ବାରମ୍ବାର ବିଦେଶ ଭ୍ରମଣରେ ଯାଉଥିବା ଯୋଗୁଁ ବିଶ୍ୱ ରାଜନୀତି ସମ୍ପର୍କରେ ଅଧିକ ସଚେତନ ହୋଇ ଉଠିବା ସଙ୍ଗେ ସଙ୍ଗେ ବିଶ୍ୱବାସୀଙ୍କ ଜୀବନଯାପନର ଧାରା ସମ୍ପର୍କରେ ଯଥେଷ୍ଟ ପ୍ରତ୍ୟକ୍ଷ ଅନୁଭୂତି ସଂଗ୍ରହ କରିପାରିଥିଲେ ।

୧୯୪୮ ମସିହା ଅକ୍ଟୋବର ମାସରେ ବିଶ୍ୱର ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ରଗୁଡ଼ିକରେ ପ୍ରଧାନମନ୍ତ୍ରୀଙ୍କ ସମ୍ମେଳନରେ ଯୋଗ ଦେବା ପାଇଁ ଜବାହରଲାଲ ଲଣ୍ଡନ ଯାତ୍ରା କଲାବେଳେ ଇନ୍ଦିରା ମଧ୍ୟ ତାଙ୍କ ସହ ଯୋଗ ଦେଇଥିଲେ । ନଭେମ୍ବର ୩୦ ତାରିଖରେ ପ୍ୟାରିସ୍‌ଠାରେ ମିଳିତ ଜାତିସଂଘର ଏକ ସାଧାରଣ ଅଧିବେଶନରେ ଜବାହରଲାଲ ଯେଉଁ ଭାଷଣ ଦେଇଥିଲେ, ତାହା ଶୁଣି ଇନ୍ଦିରା ନିଜେ ଉଲ୍ଲସିତ ହୋଇ ଉଠିଥିଲେ । ପାଶ୍ଚାତ୍ୟ ସମାଲୋଚକ ମାଇକେଲ ବ୍ରୋଚରଙ୍କ ମତରେ ସେ ଥିଲା ବିଶ୍ୱ ରାଜନୈତିକ ମଞ୍ଚ ଉପରେ ଜବାହରଲାଲଙ୍କ ପ୍ରଥମ ଅଭିନୟ ଏବଂ ଏକ ସଫଳ ଅଭିନୟ ମଧ୍ୟ ।

ଜାନୁୟାରୀ ୧୯୪୯ ମସିହାରେ ଦିଲ୍ଲୀଠାରେ ଏକ ବିରାଟ ରାଜନୈତିକ ସମ୍ମେଳନର ଆୟୋଜନ କରିଥିଲେ ଜବାହରଲାଲ । ସେଥିରେ ଏସିଆର ୧୯ଟି ରାଜ୍ୟର ପ୍ରତିନିଧି ଯୋଗ ଦେଇଥିଲେ । ସେ ସମ୍ମେଳନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଇଣ୍ଡୋନେସିଆରେ ଥିବା ଡଚ୍ ପୋଲିସ ବାହିନୀର ଅତ୍ୟାଚାରକୁ କଠୋର ସମାଲୋଚନା କରିବା; ତତ୍ ସଙ୍ଗେ ସଙ୍ଗେ ସେଠାରେ ବିଭିନ୍ନ ଦେଶର ପ୍ରତିନିଧି-ମାନେ ଅନ୍ତର୍ଦେଶୀୟ ସମସ୍ୟାଗୁଡ଼ିକ ଉପରେ ମଧ୍ୟ ଆଲୋଚନା କରିଥିଲେ । ପ୍ରାୟ

* M K. Alexander—Indira Gandhi; p-p-82.

ପ୍ରତ୍ୟେକ ଦେଶର ପ୍ରତିନିଧି ସେମାନଙ୍କ ଦେଶକୁ ଶୁଭେଚ୍ଛାମୂଳକ ଗସ୍ତରେ ଯିବା ଲାଗି ପଣ୍ଡିତ ଜବାହରଲାଲ ତଥା ତାଙ୍କ କନ୍ୟା ଇନ୍ଦିରାଙ୍କୁ ନିମନ୍ତ୍ରଣ କରିଥିଲେ । ତେବେ ଏସିଆର ନେତୃବୃନ୍ଦଙ୍କ ସହିତ ସାକ୍ଷାତ କରିବାର ପ୍ରଥମ ସୁଯୋଗ ଇନ୍ଦିରା ପାଇଥିଲେ ସେତିକବେଳେ ।

ଯେତେବେଳେ ସରକାରୀ ଭାବେ ୧୯୪୯ ମସିହାରେ ପଣ୍ଡିତ ଜବାହରଲାଲ ଏକ ଶୁଭେଚ୍ଛାମୂଳକ ଗସ୍ତରେ ଆମେରିକା ବାହାରିଥିଲେ, ସାଥୀରେ ଇନ୍ଦିରା ମଧ୍ୟ ଯାଇଥିଲେ । ସେତେବେଳକୁ ପୃଥିବୀର ଅନେକ ଦେଶ ଭ୍ରମଣ କରିସାରିଥିଲେ ମଧ୍ୟ ଇନ୍ଦିରାଙ୍କ ପାଇଁ ସେହି ଆମେରିକା ଗସ୍ତ ଥିଲା ପ୍ରଥମ । ଜବାହରଲାଲ ଯେତେବେଳେ ଯେଉଁଠାକୁ ଯାଉଥିଲେ ଆମେରିକାବାସୀ ତାହାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦେଇ ତାହାଙ୍କୁ ସ୍ୱାଗତ କରିବା ଲକ୍ଷ୍ୟ କରିଥିଲେ ଇନ୍ଦିରା । ଏପରି କି ସରକାରୀ ଭାବେ ମଧ୍ୟ ସେ ଅନେକ ସ୍ଥାନରେ ସମ୍ବର୍ଦ୍ଧିତ ହେଉଥିଲେ । ପତ୍ରପତ୍ରିକାମାନଙ୍କରେ ତାହାଙ୍କର ସେହି ଯାତ୍ରାକୁ ଅଗ୍ରାଧିକାର ଦିଆଯାଉଥିଲା । ତେବେ ସେହି ସମୟରେ ଖବରକାଗଜମାନଙ୍କରେ ଜବାହରଲାଲଙ୍କ କନ୍ୟା ଇନ୍ଦିରାଙ୍କ ଆମେରିକା ଗସ୍ତ ସମ୍ବାଦ ସାଧାରଣ ଭାବରେ ପ୍ରକାଶିତ ହେବା ବ୍ୟତୀତ ତାଙ୍କ ବିଷୟରେ ବିଶେଷ କିଛି ପ୍ରକାଶ ପାଉ ନ ଥିଲା । ଅନେକ ଖବରକାଗଜ ତାହାଙ୍କର ଯିବା ସମ୍ବାଦ କିମ୍ବା ତାଙ୍କ ନାମ ମଧ୍ୟ ଉଲ୍ଲେଖ କରି ନ ଥିଲେ । ଖୁବ୍ କମ୍ ସାମ୍ବାଦିକ କେବଳ ଇନ୍ଦିରାଙ୍କ ନାମ ହିଁ ଉଲ୍ଲେଖ କରିଥିଲେ ପଣ୍ଡିତ ନେହେରୁଙ୍କ ସହଯାତ୍ରୀ ହିସାବରେ ।

ଆମେରିକାବାସୀଙ୍କର ବନ୍ଧୁତ୍ୱପୂର୍ଣ୍ଣ ସହୃଦୟତାରେ ଇନ୍ଦିରା ବଶୀଭୂତ ହୋଇ ପଡ଼ିଥିଲେ । ସେମାନଙ୍କ ଜୀବନଧାରଣର ସ୍ତର ତାଙ୍କର ମାନସ-ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା; ତେଣୁ ସେ ଦେଶ ସମ୍ପର୍କରେ ସେ ନିଜର ମତବ୍ୟକ୍ତ କରି କହିଥିଲେ, "ଆମେରିକା କେତେ ସମୃଦ୍ଧିଶାଳୀ ଦେଶ, ତାହା ନିଜେ ନ ଦେଖିଲେ ବିଶ୍ୱାସ କରିହେବ ନାହିଁ ।" ସେଠାରେ ନେହେରୁ ଆନୁଷ୍ଠାନିକ ଭାବେ ବିଭିନ୍ନ ଉତ୍ସବରେ ଯୋଗ ଦେବାକୁ ଗଲାବେଳେ ଇନ୍ଦିରା ନିଜେ ଦୂରରେ ରହୁଥିଲେ । ନେହେରୁଙ୍କ ନିକଟତମ ଅନୁଚରବର୍ଗଙ୍କ ମଧ୍ୟରେ ଥିଲେ ଆମେରିକାର ତତ୍କାଳୀନ ଭାରତୀୟ ରାଷ୍ଟ୍ରଦୂତ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ, ଜି. ଏସ. ବାଜପେୟୀ ଓ ଅନ୍ୟମାନେ ।

ଆମେରିକାରେ ଦୀର୍ଘ ଚାରି ସପ୍ତାହ ରହଣିକାଳ ମଧ୍ୟରେ ସେ ସେଠା ଲୋକଙ୍କ ଜୀବନଯାପନ ପ୍ରଣାଳୀ, କଳା ଓ ସଂସ୍କୃତିର ଅନୁଧ୍ୟାନ କରିଥିଲେ ଅତି ନିକଟତମ ଭାବରେ । ସେଠା ଲୋକଙ୍କ ବିଳାସବ୍ୟସନମୟ ଜୀବନ ଓ ଆତିଥ୍ୟ-ପରାୟଣତା ଦେଖି ସେ ମୁଗ୍‌ଧ ହୋଇଯାଇଥିଲେ । ନିଉୟର୍କର ନିଉୟର୍କର ବିଶ୍ୱବିଦ୍ୟାଳୟ

ପ୍ରାସାଦମାଳା ତାଙ୍କୁ ଯେତିକି ଆନନ୍ଦ ଦେଇପାରି ନ ଥିଲା, ତାଠାରୁ ବେଶୀ ଆନନ୍ଦ ଦେଇଥିଲା ସେଠାକାର ନୈସର୍ଗିକ ପ୍ରକୃତି । ଆମେରିକାରେ ରହଣିକାଳ ମଧ୍ୟରେ ଜଳବାୟୁର ପରିବର୍ତ୍ତନ ହେତୁ ତାଙ୍କ ସ୍ୱାସ୍ଥ୍ୟରେ ସାମାନ୍ୟ ଉନ୍ନତି ମଧ୍ୟ ହୋଇ ପାରିଥିଲା ।

ବିଦେଶ ଗସ୍ତରୁ ଫେରିଆସିବା ପରେ ଜବାହରଲାଲ ବିଭିନ୍ନ ଅନ୍ତର୍ଦେଶୀୟ ସମସ୍ୟାଗୁଡ଼ିକର ସମାଧାନ ପାଇଁ ତତ୍ପର ହୋଇ ଉଠିଥିଲେ ଓ ଇନ୍ଦିରା ଥିଲେ ତାଙ୍କର ପ୍ରଧାନ ସାଥୀ । ୧୯୫୦ ମସିହାରେ ପାକିସ୍ଥାନ କାଶ୍ମୀର ଆକ୍ରମଣ କରିଥିଲା ଓ ତାର ଫଳରେ ଦୁଇ ଦେଶ ମଧ୍ୟରେ ଥିବା ସଦ୍‌ଭାବ କ୍ଷୁର୍ଣ୍ଣ ହେବା ସ୍ୱାଭାବିକ । ନେହେରୁ-ଲିଆକତ୍ ଅଲ୍ଲି ଚୁକ୍ତିନାମା ସ୍ୱାକ୍ଷରିତ ହୋଇ ନ ଥିଲେ ହୁଏତ ସେ ସମ୍ପର୍କ ଆହୁରି ଶୋଚନୀୟ ହୋଇ ପଡ଼ିଥାଆନ୍ତା । ତେବେ ପାକିସ୍ଥାନ ଯୁଦ୍ଧ ଯୋଗୁଁ ପଣ୍ଡିତ ନେହେରୁଙ୍କ ମାନସିକ କ୍ଲାନ୍ତି କ୍ରମେ କ୍ରମେ ବୃଦ୍ଧି ପାଇବା ଲକ୍ଷ୍ୟ କରୁଥିଲେ ଇନ୍ଦିରା ।

ଯେଉଁ ଯେଉଁ କାର୍ଯ୍ୟକ୍ରମଗୁଡ଼ିକ ଦ୍ୱାରା ଭାରତର ଅର୍ଥନୈତିକ ପ୍ରଗତି ଦ୍ରୁତ ହୋଇପାରିବ, ସେଥିପ୍ରତି ନେହେରୁ ଥିଲେ ଅତ୍ୟନ୍ତ ଅନୁରକ୍ତ । ସେଥିଲାଗି ସେ ବିଭିନ୍ନ ନଦୀବନ୍ଧ ଯୋଜନାଗୁଡ଼ିକୁ ଅଗ୍ରାଧିକାର ଦେଇଥିଲେ ଓ ଭାକ୍ରାନଙ୍ଗଲ, ଦାମୋଦର ନଦୀବନ୍ଧ ଯୋଜନା ତଥା ଓଡ଼ିଶାର ହୀରାକୁଦ ଯୋଜନାର ଶୁଭ ଦେଇଥିଲେ । ଜବାହରଲାଲ ଶୁଭ ଦେବାକୁ ଗଲାବେଳେ ଶ୍ରୀମତୀ ଇନ୍ଦିରା ମଧ୍ୟ ସେହି ସେହି ସ୍ଥାନମାନଙ୍କୁ ପରିଦର୍ଶନ କରିବା ସୁଯୋଗ ପାଇଥିଲେ । ପ୍ରଧାନମନ୍ତ୍ରୀଙ୍କ ମତରେ ସେଗୁଡ଼ିକ ଥିଲା ଆଗାମୀ କାଲିର ମନ୍ଦିର ।

'୧୯୫୨ ମସିହାର ସାଧାରଣ ନିର୍ବାଚନ ବେଳେ ପଣ୍ଡିତ ନେହେରୁଙ୍କୁ ଅତ୍ୟନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା । ସ୍ୱାଧୀନ ସାର୍ବଭୌମ ଗଣତନ୍ତ୍ର ରାଷ୍ଟ୍ର ଭାରତରେ ସେତେବେଳେ ଏକାଧିକ ରାଜନୈତିକ ଦଳ ଗଠିତ ହୋଇଥିଲା ଏବଂ ଭାରତୀୟ ଜାତୀୟ କଂଗ୍ରେସ ସେମାନଙ୍କ ମଧ୍ୟରୁ ଥିଲା ଗୋଟିଏ । ଏକ ସୁସ୍ଥ ଗଣତନ୍ତ୍ରର ନିୟମ ଅନୁଯାୟୀ ପ୍ରତ୍ୟେକ ରାଜନୈତିକ ଦଳ ସେମାନଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବା ପାଇଁ ଓ ସମର୍ଥନ କରିବା ପାଇଁ ସମଗ୍ର ଦେଶରେ ନିର୍ବାଚନ ପ୍ରଚାର ଆରମ୍ଭ କରି ଦେଇଥିଲେ । ତେବେ ପ୍ରଧାନତଃ—"କଂଗ୍ରେସର ନିର୍ବାଚନ ପ୍ରଚାର ମୁଖ୍ୟତଃ କେବଳ ଜଣକ ଉପରେ ନ୍ୟସ୍ତ ଥିଲା । ସେ ଜଣକ ଥିଲେ ନେହେରୁ, ନେହେରୁ ଏବଂ କେବଳ ନେହେରୁ । ସେ ଥିଲେ ଏକାଧାରରେ କଂଗ୍ରେସର ମୁଖ୍ୟ, ମୁଖ୍ୟ ନିର୍ବାଚନ ପରିଚାଳକ, ପ୍ରଚାରକ ଏବଂ କର୍ମୀ ମଧ୍ୟ ।" * ସେ ସମସ୍ତରେ ଦାନରେ

---

* Michael Broecher—Nehru : Political Biography.

ପ୍ରାପ୍ତ ଦଶ ବାରଟି ସଭାରେ ଭାଷଣ ଦେବା ସଙ୍ଗେ ସଙ୍ଗେ ଅନେକ ସ୍ଥାନ ଅତିକ୍ରମ କରିବାକୁ ହେଉଥିଲା । ବସ୍, କାର୍, ଉଡ଼ାଜାହାଜ ଓ ଏପରି କି ଶଗଡ଼ ଗାଡ଼ିରେ କିମ୍ବା ପାଦରେ ମଧ୍ୟ ବୁଲିବାକୁ ପଡ଼ୁଥିଲା ବେଳେବେଳେ । ସେତେବେଳେ ଇନ୍ଦିରାଙ୍କ ପ୍ରଥମ କାର୍ଯ୍ୟ ଥିଲା ପିତାଜୀଙ୍କ ସାଥିରେ ରହି ଅତ୍ୟଧିକ ପରିଶ୍ରମ ନ କରିବା ଲାଗି ଉଚିତ କାର୍ଯ୍ୟପନ୍ଥା ଗ୍ରହଣ କରିବା । ତତ୍ ସଙ୍ଗେ ସଙ୍ଗେ ନିର୍ବାଚନମଣ୍ଡଳୀଗୁଡ଼ିକ ସମ୍ପର୍କରେ ରାଜନୈତିକ ପରିସ୍ଥିତି ସଂଗ୍ରହ କରି ସେ ପିତାଜୀଙ୍କୁ କେତେକ ତଥ୍ୟ ଯୋଗାଇ ଦେଉଥିଲେ ।

ସେଥିପୂର୍ବରୁ ଉତ୍ତରପ୍ରଦେଶର ବିଧାନସଭା ପାଇଁ ପ୍ରାର୍ଥୀ ହେବା ଲାଗି ଶ୍ରୀମତୀ ଇନ୍ଦିରାଙ୍କୁ ଅନୁରୋଧ କରାଯାଇଥିଲା କଂଗ୍ରେସ ତରଫରୁ । କିନ୍ତୁ ପିତାଜୀଙ୍କ ସେବାକୁ ହିଁ ଭାରତର ସେବା ମନେକରି ସେ ଉକ୍ତ ପ୍ରସ୍ତାବକୁ ଗ୍ରହଣ କରି ନ ଥିଲେ । ପୁନଶ୍ଚ ସେତେବେଳେ ପାର୍ଲ୍ୟାମେଣ୍ଟ ପ୍ରାର୍ଥୀ ହେବା ଲାଗି କଂଗ୍ରେସ କର୍ତ୍ତୃପକ୍ଷ ଇନ୍ଦିରାଙ୍କ ନାମ ପ୍ରସ୍ତାବ କରିଥିଲେ, ତାହା ନିଷ୍ପତ୍ତି କରିବା ଭାର ଜବାହରଲାଲ ଇନ୍ଦିରାଙ୍କ ଉପରେ ହିଁ ନ୍ୟସ୍ତ କରି ଦେଇଥିଲେ । ଇନ୍ଦିରା ପୁନଶ୍ଚ ସେ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ତେବେ ସେତେବେଳେକୁ ସେ ପରୋକ୍ଷ ଭାବରେ ପ୍ରତ୍ୟକ୍ଷ ରାଜନୀତି ସହିତ ଜଡ଼ିତ ହୋଇଯାଇଥିଲେ କହିଲେ ଚଳେ ।

ବିଭିନ୍ନ ପ୍ରଦେଶର କଂଗ୍ରେସ ନେତୃବୃନ୍ଦ ଯେତେବେଳେ ପଣ୍ଡିତ ଜବାହର-ଲାଲଙ୍କ ସହିତ ଦେଖା କରିବାପାଇଁ ଆସୁଥିଲେ, ଅନେକେ ପ୍ରଥମେ ଇନ୍ଦିରାଙ୍କ ସହିତ ସାକ୍ଷାତ୍ କରି ରାଜ୍ୟର ସମସ୍ୟାଗୁଡ଼ିକ ଆଲୋଚନା କରୁଥିଲେ ଓ ପରେ ପରେ ନେହେରୁଙ୍କ ସହିତ ସାକ୍ଷାତ କରୁଥିଲେ । ଇନ୍ଦିରାଙ୍କ ନିର୍ଭୀକ ଓ ନିରପେକ୍ଷ ମତାମତ ଲାଗି ଅନେକେ ପ୍ରଶଂସା ମଧ୍ୟ କରୁଥିଲେ ।

ପୃଥିବୀର ଅନ୍ୟାନ୍ୟ ଦେଶର ନେତୃବୃନ୍ଦ ଯେତେବେଳେ ଭାରତ ଆସୁଥିଲେ, ପ୍ରଧାନମନ୍ତ୍ରୀଙ୍କ ଅତିଥି ଭାବରେ ତିନମୂର୍ତ୍ତି ଭବନରେ ହିଁ ରହୁଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଥିଲେ ଆମେରିକାର ରାଷ୍ଟ୍ରପତି ଓ ତାଙ୍କ ସ୍ତ୍ରୀ ଶ୍ରୀ ଏବଂ ଶ୍ରୀମତୀ ଜନ୍‌ସନ, ଶ୍ରୀମତୀ ରୁଜଭେଲଟଙ୍କ ଭଳି ବିଶ୍ୱବିଖ୍ୟାତ ନେତୃବର୍ଗ । ଶ୍ରୀମତୀ ଇନ୍ଦିରାଙ୍କ ପରିଚର୍ଯ୍ୟାରେ ଶ୍ରୀମତୀ ରୁଜଭେଲ୍‌ଟ ଅତ୍ୟନ୍ତ ପ୍ରୀତ ହୋଇ ଯାଇଥିଲେ ୧୯୫୨ ମସିହାରେ ।

## ରୁଷରେ ଇନ୍ଦିରା :—

୧୯୫୩ ମସିହାରେ ରାଣୀ ଦ୍ୱିତୀୟ ଏଲିଜାବେଥ୍‌ଙ୍କ ରାଜ୍ୟ ଗ୍ରହଣ ଉତ୍ସବରେ ଯୋଗ ଦେବାପାଇଁ ପିତାଜୀଙ୍କ ସହିତ ଇନ୍ଦିରା ଇଂଲଣ୍ଡ ଯାତ୍ରା କରିଥିଲେ । ଦୀର୍ଘ ଦିନରୁ ଭାରତ ପ୍ରତି ବିରୋଧ ମତପୋଷଣ କରୁଥିବା ଚର୍ଚ୍ଚିଲଙ୍କ ସ୍ଥାନର ପରବର୍ତ୍ତୀ

ଆସନଟି ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେଠାରେ ସମସ୍ତ ହୃଦ୍ୟତାର ସହିତ ଉଭୟେ କଥାବାର୍ତ୍ତା କରିଥିଲେ । ରାଣୀ ଦ୍ୱିତୀୟ ଏଲିଜାବେଥ୍ ମଧ୍ୟ ଶ୍ରୀମତୀ ଇନ୍ଦିରାଙ୍କ ଆଗମନ ଯୋଗୁଁ ଆନନ୍ଦିତ ହୋଇଥିଲେ । ସେଠାରୁ ପଣ୍ଡିତ ଜବାହରଲାଲ ସିଧାସଳଖ ଭାରତ ଫେରି ଆସିଥିଲେ; କିନ୍ତୁ ଇନ୍ଦିରା ଫେରିଥିଲେ ସୋଭିଏତ୍ ରୁଷ ଦେଇ ।

ସେ ଥିଲା ୧୯୫୩ ମସିହାର ଜୁନ୍ ମାସ ।

ସେତେବେଳକୁ ଷ୍ଟାଲିନ୍ ଯୁଗର ଶେଷ ପର୍ଯ୍ୟାୟ । କ୍ରେମ୍ଲିନ୍ ପ୍ରାସାଦରୁ ଆନ୍ତର୍ଜାତୀୟ ସଦ୍‌ଭାବ ରକ୍ଷା ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । ସେଠାରେ ସେତେବେଳେ ଭାରତୀୟ ରାଷ୍ଟ୍ରଦୂତ ଥିଲେ ଶ୍ରୀ କେ. ପି. ଏସ. ମେନନ୍ । ମେନନ୍ ଦମ୍ପତିଙ୍କ ସହିତ ଇନ୍ଦିରା ଜର୍ଜିଆ ଭ୍ରମଣରେ ଯାଇଥିଲେ । ରାତରେ ସେଠାକାର ଦୃଶ୍ୟ ଦେଖି ସେ ଏତେ ମୁଗ୍ଧ ହୋଇ ଯାଇଥିଲେ ସେ ସାରା ରାତ ଚେଇଁ ରହିଥିଲେ ମଧ୍ୟ ତାଙ୍କ ଚକ୍ଷୁ ଯୁଗଳର ତୃଷା ମେଣ୍ଟି ନ ଥିଲା । ତା ପରଦିନ ସେ ମେନନ୍ ଦମ୍ପତିଙ୍କୁ କହିଥିଲେ, "I don't get drunk on wine, I get drunk on other things." (*) ବାସ୍ତବିକ୍ ସେ ମଦ୍ୟପାନ କରୁ ନ ଥିଲେ ମଧ୍ୟ ପ୍ରକୃତିର ସୌନ୍ଦର୍ଯ୍ୟ ହେଉ ବା ସହରର ରାତ୍ରୀକାଳୀନ ସୌନ୍ଦର୍ଯ୍ୟର ମାଧୁର୍ଯ୍ୟକୁ ହେଉ ଆକଣ୍ଠ ପାନ କରିବାକୁ ଆଗ୍ରହୀ ଥିଲେ ଓ କରିଥିଲେ ମଧ୍ୟ ।

ସୋଭିଏତ୍ର ରୁଷର ଅନ୍ୟାନ୍ୟ ସ୍ଥାନମାନଙ୍କ ମଧ୍ୟରେ ସେ ତାସଖନ୍ଦ, ସମରଖନ୍ଦ, ଉଜବେକିସ୍ଥାନ ପ୍ରଭୃତି ସ୍ଥାନ ପରିଭ୍ରମଣ କରିଥିଲେ । ସେଠିକାର ଅଧିବାସୀମାନେ ଶାଢ଼ୀପରିହିତା ଯୁବତୀ ଇନ୍ଦିରାଙ୍କୁ ଦେଖି ଖୁବ୍ ଖୁସି ହୋଇ ଯାଇଥିଲେ । ସେ ଅତ୍ୟନ୍ତ ସୁନ୍ଦରୀ ଦେଖାଯାଉଥିଲେ । ଶ୍ରୀ ମେନନ୍‌ଙ୍କ ଭାଷାରେ' "Indira is the kind of person whose beauty is at once individual and universal. She herself is charmingly unconscious of her charm." *

ସୋଭିଏତ୍ ୟୁନିଅନର ଜନସାଧାରଣ ଇନ୍ଦିରାଙ୍କ ସେ ଭ୍ରମଣରେ ଏତେ ଆପ୍ୟାୟିତ ହୋଇଥିଲେ ଓ ତାଙ୍କର ସୌନ୍ଦର୍ଯ୍ୟରେ ଏତେ ମୁଗ୍ଧ ହୋଇଥିଲେ ଯେ, ସେହି ସମୟରେ ସେ ଦେଶରେ ଜନ୍ମ ନେଇଥିବା ଅନେକ କନ୍ୟାଙ୍କ ନାମ-କରଣ ସେମାନଙ୍କ ପିତାମାତା କରିଥିଲେ 'ଇନ୍ଦିରା' ।

ରୁଷ ଭ୍ରମଣରୁ ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ସୋଭିଏତ୍ ୟୁନିୟନ୍‌ର ଜନସାଧାରଣ ଯୁଦ୍ଧ ଚାହାନ୍ତି ନାହିଁ—ସେମାନଙ୍କ ଆନ୍ତରିକ କାମନା ଶାନ୍ତି । ରୁଷର

* & * K. P. S. Menon—Russian Panorama.

ବିଭିନ୍ନ ସ୍ଥାନରୁ ମିଳିଥିବା ହାର୍ଦ୍ଦିକ ସମ୍ବର୍ଦ୍ଧନା ଓ ଜନଗଣଙ୍କ ବନ୍ଧୁତ୍ୱପୂର୍ଣ୍ଣ ସହାବସ୍ଥାନ ଲାଗି ଆନ୍ତରିକ ଅଭିଳାଷ ସେ ପ୍ରକାଶ କରିଥିଲେ ପାପୁଙ୍କ ନିକଟରେ ।

ଚୀନର ପ୍ରଧାନମନ୍ତ୍ରୀ ଚୃଓ୍ୱ-ଏନ୍-ଲାଇ ଭାରତ ଭ୍ରମଣରେ ଆସିଥିଲେ ଜୁନ ୧୯୫୪ ମସିହାରେ । ଅନେକ ଆଲୋଚନା ପରେ ପୃଥିବୀରେ ସ୍ଥାୟୀ ଶାନ୍ତି ପାଇଁ ପଞ୍ଚଶୀଳ ନୀତିର ବିସ୍ତାର କରାଯାଇଥିଲା ଓ ପଣ୍ଡିତ ନେହେରୁଙ୍କ ସହିତ ଚୀନ ପ୍ରଧାନମନ୍ତ୍ରୀ ଚୃଓ୍ୱ-ଏନ-ଲାଇ ସେଥିରେ ସ୍ୱାକ୍ଷର କରିଥିଲେ । ସେହି ବର୍ଷ ଅକ୍ଟୋବର ମାସରେ ଇନ୍ଦିରା ପିତାଜୀଙ୍କ ସହିତ ଚୀନ ଭ୍ରମଣରେ ଯାଇଥିଲେ । ସେ ଦେଶର ଦ୍ରୁତ ଅର୍ଥନୈତିକ ପ୍ରଗତି ତାଙ୍କୁ ଅଭିଭୂତ କରାଇ ଦେଇଥିଲା ।

ସେହି ବର୍ଷ ଯୁଗୋସ୍ଲାଭିଆର ପ୍ରଧାନମନ୍ତ୍ରୀ ମାର୍ଶାଲ ଟିଟୋ ମଧ୍ୟ ଭାରତ ଆସିଥିଲେ ଏବଂ ପ୍ରଧାନମନ୍ତ୍ରୀଙ୍କ ସହିତ ଦୁଇ ଦେଶର ସମ୍ପର୍କ ତଥା ପୃଥିବୀ ରାଜନୀତି ବିଷୟରେ ବିସ୍ତୃତ ଆଲୋଚନା କରିବାବେଳେ ଶ୍ରୀମତୀ ଗାନ୍ଧୀ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ସେପର୍ଯ୍ୟନ୍ତ ସେପ୍ରକାର ଆଲୋଚନାମାନଙ୍କରେ ଶ୍ରୀମତୀ ଗାନ୍ଧୀ ଉପସ୍ଥିତ ରହୁ ନ ଥିଲେ । କିନ୍ତୁ ତା ପରଠାରୁ ଯେତେ ଯେତେ ଆନ୍ତର୍ଜାତିକ ସମସ୍ୟା ଉପରେ ଆଲୋଚନା ହେଉଥିଲା ଇନ୍ଦିରା ସେଗୁଡ଼ିକରେ ଉପସ୍ଥିତ ରହୁଥିଲେ ଏବଂ ବେଳେବେଳେ ନିଜର ମତାମତ ମଧ୍ୟ ପ୍ରଦାନ କରୁଥିଲେ ।

୧୯୫୫ ମସିହା ଫେବୃୟାରୀମାସରେ କଂଗ୍ରେସର ୨୧ ଜଣିଆ କାର୍ଯ୍ୟନିର୍ବାହକ କମିଟି ପାଇଁ ଶ୍ରୀମତୀ ଇନ୍ଦିରା ସର୍ବାଧିକ ଭୋଟ ପାଇ ନିର୍ବାଚିତ ହୋଇଥିଲେ । ତା ଫଳରେ କଂଗ୍ରେସର କାର୍ଯ୍ୟକଳାପ ସହିତ ସେ ଆନୁଷ୍ଠାନିକ ତଥା ପ୍ରତ୍ୟକ୍ଷ ଭାବରେ ଜଡ଼ିତ ହୋଇଯାଇଥିଲେ । ସେଥିପାଇଁ ଅନେକ ସ୍ଥାନରେ ଭାଷଣମାନ ଦେବାକୁ ପଡ଼ୁଥିଲା ଓ କଂଗ୍ରେସକୁ ସୁଦୃଢ଼ପ୍ରସାରି କରାଇବା ପାଇଁ ଓ ଗ୍ରାମାଞ୍ଚଳର ଜନସାଧାରଣଙ୍କ ଅଭାବ ଅସୁବିଧା ଜାଣିବା ପାଇଁ ସେ ସର୍ବଦା ଚେଷ୍ଟା କରୁଥିଲେ ଓ କଂଗ୍ରେସର ବାର୍ତ୍ତା ଜନଗଣଙ୍କ ନିକଟରେ ପହଞ୍ଚାଇବା ପାଇଁ ବିଭିନ୍ନ ସ୍ଥାନରେ ସଭାସମିତିର ଆୟୋଜନ କରୁଥିଲେ ।

ସମଗ୍ର ଦେଶର ଖବର ଅନ୍ତର ଜାଣିବା ପାଇଁ ସେ ପୂର୍ବଭଳି ଆଗ୍ରହୀ ଥିଲେ । ୧୯୫୫ ମସିହା ଅପ୍ରେଲ ୧୮ ଠାରୁ ୨୩ ତାରିଖ ପର୍ଯ୍ୟନ୍ତ ବାନ୍ଦୁଙ୍ଗଠାରେ ଅନୁଷ୍ଠିତ ହେଉଥିବା ୨୯ଟି ଆଫ୍ରୋ-ଏସୀୟ ରାଜ୍ୟର ସମ୍ମେଳନରେ ଯୋଗ ଦେବାପାଇଁ ସେ ପିତାଜୀଙ୍କ ସହିତ ଯାତ୍ରା କରିଥିଲେ । ସେଠାରେ ସେ କେବଳ ଜଣେ ନୀରବ ଦର୍ଶକ ନ ହୋଇ ପ୍ରତ୍ୟେକ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ପିତାଜୀଙ୍କ ସହିତ ବିଶ୍ୱର ଅନ୍ୟାନ୍ୟ ରାଜନୈତିକ ନେତାଙ୍କୁ ସାକ୍ଷାତ କରିବା ବ୍ୟତୀତ ନିଜେ ମଧ୍ୟ ସେମାନଙ୍କ ସହିତ ଆଳାପ ଆଲୋଚନା କରିଥିଲେ ।

ସେଠାରୁ ଫେରି ପୁଣି ପ୍ରାୟ ଦୁଇ ମାସ ପରେ ଜବାହରଲାଲଙ୍କ ସହିତ ମିଶର, ଚେକୋସ୍ଲୋଭାକିଆ, ସୋଭିଏତ୍ ରୁଷ, ପୋଲାଣ୍ଡ, ଅଷ୍ଟ୍ରିୟା, ଯୁଗୋ-ସ୍ଲୋଭିଆ ଏବଂ ଲଣ୍ଡନ ଗସ୍ତ କରିଥିଲେ ।

ସେହି ଗସ୍ତରୁ ଫେରିବା ପରେ ଡିସେମ୍ବର ମାସରେ ପିତାଜୀଙ୍କ ଦୁଇ ଜଣ ସାଥୀ, ପୃଥିବୀର ଗୋଟିଏ ମହାନ୍ ଶକ୍ତିଶାଳୀ ରାଷ୍ଟ୍ରର ନେତାନାୟକ ବୁଲ୍‌ଗାନିନ୍ ଏବଂ କ୍ରୁଶ୍ଚେଭ ତିନମୂର୍ତ୍ତି ଭବନର ଅତିଥି ହୋଇଥିଲେ ଓ ଇନ୍ଦିରା ଥିଲେ ସେମାନଙ୍କ ସେବିକା । ତାର କିଛିଦିନ ପରେ ମକ୍‌କାର ସମ୍ରାଟ ଆକା ସାଉଦ ମଧ୍ୟ ଭାରତର ଅତିଥି ହୋଇଥିଲେ । ସମଗ୍ର ପୃଥିବୀର ରାଷ୍ଟ୍ରନାୟକଙ୍କ ସହିତ ଇନ୍ଦିରାଙ୍କ ପରିଚୟ ବିଭିନ୍ନ ଭାବରେ ହୋଇଥିଲା ।

କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ହେବା ବ୍ୟତୀତ ଇନ୍ଦିରା ଅନେକ-ଗୁଡ଼ିଏ ସାଧାରଣ ସେବା ସଂସ୍ଥା ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ । ସେମାନଙ୍କ ମଧ୍ୟରେ ଭାରତୀୟ ଶିଶୁକଲ୍ୟାଣ ସଂସ୍ଥା ( Indian Council for Child Welfare )ର ସଭାପତି, ଜେନେଭାସ୍ଥିତ ଅନ୍ତର୍ଜାତୀୟ ଶିଶୁକଲ୍ୟାଣ ସଂଘ ( International Union for Child Welfare )ର ଉପସଭାପତି, ଗ୍ରାମ ଭାରତୀର ଅଧ୍ୟକ୍ଷା ତଥା ଭାରତ ସେବକ ସମାଜ, ମହିଳା ସମ୍ମିଳନୀ ( Women's Conference ), କେନ୍ଦ୍ରୀୟ ସାମାଜିକ ସେବା ସଂସ୍ଥା ଇତ୍ୟାଦିରେ ସେ ସକ୍ରିୟ ଭାବେ ଅଂଶ ଗ୍ରହଣ କରୁଥିଲେ । କମଳା ନେହେରୁ ସ୍ମୃତିରକ୍ଷା ଚିକିତ୍ସାଳୟର ଜଣେ ଟ୍ରଷ୍ଟି ଓ ନେସନାଲ୍ ହେରାଲ୍ଡ଼ ପତ୍ରିକାର ଡାଇରେକ୍ଟୋରେଟ୍ ବୋର୍ଡ଼ର ଜଣେ ଡାଇରେକ୍ଟର ମଧ୍ୟ ସେ ଥିଲେ । ଏସବୁ ସତ୍ତ୍ୱେ ସେ ପିତାଜୀଙ୍କ ସହିତ ଘନଘନ ବିଦେଶ ଭ୍ରମଣ ମଧ୍ୟ କରୁଥିଲେ । ତା ଫଳରେ ବ୍ୟକ୍ତିଗତ ଜୀବନର ପ୍ରକୃତ ପାରିବାରିକ ସ୍ୱାଦ ସେ ଅନୁଭବ କରିପାରି ନ ଥିଲେ । ତାଙ୍କର ସମସ୍ତ ସମୟ ପିତାଜୀଙ୍କ ସେବାରେ ଅଥବା ସାମାଜିକ ସେବାରେ ନିୟୋଜିତ ହେଉଥିଲା । ତେଣୁ ସେ ଏକାନ୍ତ ବ୍ୟକ୍ତିଗତ ଭାବେ ଖୁବ୍ କମ୍ ସମୟ ପାଉଥିଲେ । ସେହି କାରଣରୁ ଯଦିଓ ଚଳଚ୍ଚିତ୍ର ଦେଖିବାକୁ ସେ ଭଲ ପାଉଥିଲେ; ତଥାପି ସମୟର ଅଭାବ ଥିଲା ତାଙ୍କ ଲାଗି ପ୍ରଧାନ ସମସ୍ୟା । ଯେତେବେଳେ ରାତ୍ରିରେ ପିତାଜୀ ତାଙ୍କ ଶୟନକକ୍ଷକୁ ଚାଲି ଯାଉଥିଲେ, ତା ପରେ ହିଁ ଇନ୍ଦିରା ଅବକାଶ ପାଉଥିଲେ । ଯଦି କେବେ ଜବାହରଲାଲ ଏକା ଏକା ଦିଲ୍ଲୀ ବାହାରକୁ ଚାଲି ଯାଉଥିଲେ, ସେତେବେଳେ ଇନ୍ଦିରା ତାଙ୍କର ଜଣେ ଦୁଇ ଜଣ ସାଙ୍ଗ ଠିକ୍ କରୁଥିଲେ ଚଳଚ୍ଚିତ୍ର ଦେଖିଯିବା ପାଇଁ । ଇନ୍ଦିରା ଥିଲେ ଅତ୍ୟନ୍ତ କଳାପ୍ରିୟ ।

**ଅସଂଲଗ୍ନ ଦାମ୍ପତ୍ୟ-ଜୀବନ : –**

ଜବାହରଲାଲ ଯେତେବେଳେ ତିନମୂର୍ତ୍ତି ଭବନକୁ ପ୍ରଧାନମନ୍ତ୍ରୀଙ୍କ ବାସ-ଭବନ ରୂପେ ବ୍ୟବହାର କରିବାକୁ ସ୍ଥିର କରି ସେଠାକୁ ଯାଇଥିଲେ, ସେ ଇନ୍ଦିରାଙ୍କୁ ମଧ୍ୟ ତାଙ୍କ ନିକଟରେ ରହିବାକୁ ନିମନ୍ତ୍ରଣ କରିଥିଲେ । ତେଣୁ ଇନ୍ଦିରା ଓ ଫିରୋଜ ତାଙ୍କର ଦୁଇଟି ସନ୍ତାନଙ୍କ ସହିତ ସେଇ ଆନନ୍ଦ ଭବନରେ ବାସ କରିବା ଆରମ୍ଭ କରିଥିଲେ । ସେହିପରି ଭାବରେ କିଛି ଦିନ ଅତିବାହିତ ହୋଇଥିଲା । ଫିରୋଜ ଓ ଇନ୍ଦିରା ଉଭୟେ ଜବାହରଲାଲଙ୍କୁ ଭକ୍ତି କରୁଥିଲେ ଓ ଜବାହରଲାଲ ମଧ୍ୟ ଫିରୋଜଙ୍କୁ ସ୍ନେହ କରୁଥିଲେ ଇନ୍ଦିରାଙ୍କ ଭଳି ।

ତେବେ ସ୍ୱାଧୀନଚେତା ଫିରୋଜ ସର୍ବଦିନ ଲାଗି ସେଇ ତିନମୂର୍ତ୍ତି ଭବନରେ ରହିବାପାଇଁ ପସନ୍ଦ କରି ନ ଥିଲେ । ସେ ମନେ କରିଥିଲେ ଯେ ସେଇଠି ରହିବା ଦ୍ୱାରା ତାଙ୍କ ବ୍ୟକ୍ତିଗତ ସମ୍ମାନରେ ଆଞ୍ଚ ଆସିପାରେ । ମୁଖ୍ୟତଃ ସେ ଚାହୁଁ ଥିଲେ ଯେ ନିଜ ସ୍ୱାର୍ଥ ପାଇଁ ତାଙ୍କ ଶ୍ୱଶୁରଙ୍କର ପ୍ରଧାନମନ୍ତ୍ରୀ ପଦବୀର ସୁଯୋଗ ନେଉଛନ୍ତି ବୋଲି ଭାରତର ସାଧାରଣ ଜନତାଙ୍କୁ କୁହାଇବା ସୁଯୋଗ ସେ ଦେବେ ନାହିଁ ।

ଫିରୋଜ ବାସ୍ତବିକ୍ ଥିଲେ ଜଣେ ସ୍ୱାଧୀନଚେତା ଚିନ୍ତାଶୀଳ ବ୍ୟକ୍ତି । ସେ ଚାହୁଁ ନ ଥିଲେ କୌଣସିକାଳେ ଶ୍ୱଶୁରଙ୍କ ସାହାଯ୍ୟ ନେଇ ନିଜକୁ ପ୍ରତିଷ୍ଠା କରିବେ । ହୁଏତ ସେ ନିଜେ ତାହା ନ ଚାହିଁଥିଲେ ମଧ୍ୟ ସମ୍ଭବ ହୋଇପାରିଥାଆନ୍ତା; କିନ୍ତୁ ସେ ନିଜକୁ ସେସବୁଠାରୁ ଦୂରେଇ ରଖିଥିଲେ । ଏପରି କି ସେ ପଣ୍ଡିତ ନେହେରୁଙ୍କ ସହିତ ଏକାଠି କେବେ ଫଟୋଟିଏ ମଧ୍ୟ ଉଠାଇ ନ ଥିଲେ । ଯେତେବେଳେ ଅନ୍ତର୍ଦ୍ଦେଶୀୟ ବା ବହିର୍ଦ୍ଦେଶୀୟ ରାଷ୍ଟ୍ରନାୟକମାନେ ଜବାହରଲାଲଙ୍କ ସହିତ ଆଲୋଚନା ବା ସାକ୍ଷାତ କରିବା ପାଇଁ ଆସୁଥିଲେ, ସେତେବେଳେ ଫିରୋଜ ଅନ୍ୟ କାର୍ଯ୍ୟବାହାନା କରି ଜାଣିଶୁଣି ସେମାନଙ୍କ ନିକଟରୁ ଦୂରେଇ ରହୁଥିଲେ । ଏହାର ଅର୍ଥ ନୁହେଁ ଯେ ସେ ଜବାହରଲାଲଙ୍କୁ ଭଲ ପାଉ ନ ଥିଲେ । ବରଂ ଜବାହରଲାଲ ଥିଲେ ତାଙ୍କର ରାଜନୈତିକ ଗୁରୁ ଓ ସମ୍ମାନାସ୍ପଦ । କିନ୍ତୁ ସେ ଚାହୁଁଥିଲେ ଜବାହରଲାଲଙ୍କ ଯୋଗୁଁ ସେ ଅଯଥା ସୁଯୋଗ ଉଠାଇନେଲେ ବୋଲି କେହି ଯେପରି ଆକ୍ଷେପ ନ କରୁ ବା ଫିରୋଜଙ୍କ ଲାଗି ଜବାହରଲାଲଙ୍କ ସମ୍ମାନରେ ଲେଶମାତ୍ର ଆଞ୍ଚ ନ ଆସୁ ।

ରାୟବରେଲି ନିର୍ବାଚନମଣ୍ଡଳୀରୁ ଫିରୋଜ କଂଗ୍ରେସ ଟିକେଟ ପାଇ ନିର୍ବାଚିତ ହୋଇ ଆସିଥିଲେ ପାର୍ଲ୍ୟାମେଣ୍ଟକୁ । ତାପରେ ପାର୍ଲ୍ୟାମେଣ୍ଟର ସଭ୍ୟ ଭାବରେ ପାଇଥିବା ସରକାରୀ ବାସଭବନକୁ ଚାଲିଆସିଥିଲେ ଫିରୋଜ, ପ୍ରଧାନ-ମନ୍ତ୍ରୀଙ୍କ ବାସଭବନ ତିନମୂର୍ତ୍ତି ଭବନରୁ । ସେ ଏକା ଏକା ଚାଲି ଆସିଥିଲେ; କାରଣ

ସେ ଜାଣିଥିଲେ ଯେ ତାଙ୍କ ସ୍ତ୍ରୀ ଇନ୍ଦିରା କୌଣସିମତେ ବୃଦ୍ଧ ପିତାଙ୍କୁ ଏକାକୀ ଛାଡ଼ି ତିନମୂର୍ତ୍ତି ଭବନରୁ ଆସିପାରିବେ ନାହିଁ । ତେବେ ସ୍ୱାମୀ ହିସାବରେ ଫିରୋଜ ମଧ୍ୟ ଇନ୍ଦିରାଙ୍କୁ ସେଠାରୁ ଚାଲିଆସିବା ପାଇଁ କହି ନ ଥିଲେ । ସେ ତାଙ୍କର ଅଧିକାଂଶ ସମୟ ଦିଲ୍ଲୀର ସରକାରୀ ବାସଭବନରେ କିମ୍ବା ଲକ୍ଷ୍ନୌସ୍ଥ ନିଜ ଘରେ ଅତିବାହିତ କରୁଥିଲେ ।

ଆମେରିକାର ଜଣେ ସାମ୍ବାଦିକ ଓରିଆନା ଫାଲସି ଇନ୍ଦିରାଙ୍କୁ ପ୍ରଶ୍ନ କରିଥିଲେ ଯେ ରାଜନୀତିରେ ଅଂଶ ଗ୍ରହଣ କରିବା ପରେ ପରେ ତାଙ୍କର ସ୍ୱାମୀଙ୍କ-ବିଚ୍ଛେଦ ହୋଇଯାଇଥିଲା କି ? ତା'ର ଉତ୍ତରରେ ଶ୍ରୀମତୀ ଗାନ୍ଧୀ କହିଥିଲେ, "I always remained married to my husband. I was never separated, never. It is absolutely a lie what they tell about my separation. My husband lived at Lucknow. We had our house. My father lived at Delhi, of course, where he had the Prime Minister's house. I was going between Lucknow and Delhi all the time." (1)

ପୁନଶ୍ଚ ସେ ସମ୍ପର୍କରେ ଇନ୍ଦିରା ଗାନ୍ଧୀ କହିଥିଲେ ଯେ ଯଦି ତାଙ୍କ ସ୍ୱାମୀ ଇଚ୍ଛା କରିଥାନ୍ତେ ଯେ ସେ ତାଙ୍କ ପାଖରେ ରହନ୍ତୁ, ତେବେ ସେ ନିଶ୍ଚୟ ଫିରୋଜଙ୍କ ନିକଟକୁ ଚାଲି ଯାଇଥାନ୍ତେ । କିନ୍ତୁ ଯଦି ପିତାଜୀ ଚାହିଁଥାନ୍ତେ ଯେ ତାଙ୍କ ନିକଟରେ ରହନ୍ତୁ, ତେବେ ସେ ବୃଦ୍ଧ ପିତାଙ୍କ କଥା ଅମାନ୍ୟ କରିପାରନ୍ତେ ନାହିଁ । ଶ୍ରୀମତୀ ଗାନ୍ଧୀଙ୍କ ଭାଷାରେ—"Of course if he (Feroz) wanted me to come back home when I was in Delhi, then I would return to him. But if my father called and said, I need you, please come then I would leave Lucknow and run to my fath r.'' (2)

ସେ ପ୍ରକାର ବିଷମ-ସମସ୍ୟାର ସମାଧାନ କରିବା ଲାଗି ଫିରୋଜ ଚେଷ୍ଟା କରିଥିଲେ ଉଭୟେ ଏକାଠି ଜବାହରଲାଲଙ୍କ ସରକାରୀ ବାସଭବନରେ ରହିବା ଲାଗି । କିନ୍ତୁ ଅଳ୍ପ କେଇଦିନ ରହିବାପରେ ସେଠାରେ ସବୁଦିନ ରହିବା ଲାଗି ସେ ନିଜକୁ ପ୍ରସ୍ତୁତ କରିପାରି ନ ଥିଲେ । ସେ ସମସ୍ୟା ଏକ ସମସ୍ୟା ରୂପେ ହିଁ ରହିଯାଇଥିଲା । ଶ୍ରୀମତୀ ଇନ୍ଦିରାଙ୍କ ମତରେ—"ସେ (ଫିରୋଜ) ଉକ୍ତ ସମସ୍ୟା ଦୂର କରିବା ପାଇଁ ମଧ୍ୟ ଚେଷ୍ଟା କରିଥିଲେ । ସେହି ଉଦ୍ଦେଶ୍ୟରେ ଲକ୍ଷ୍ନୌ ଛାଡ଼ି

1, & 2. Interview with Orlena Fallaci—Hindustan Standard—June 5, 1973 -- P-7.

ମୋ ପିତାଜୀଙ୍କ ସହ ରହିବାପାଇଁ ସେ ଆସିଥିଲେ । କିନ୍ତୁ ଏଠାରେ ଆମ୍ଭେମାନେ ଭୁଲିଯିବା ଉଚିତ ହେବନାହିଁ ଯେ ମୋ ସ୍ୱାମୀ ମଧ୍ୟ ଥିଲେ ଜଣେ ରାଜନୈତିକ ବ୍ୟକ୍ତି ଏବଂ ପାର୍ଲ୍ୟାମେଣ୍ଟର ଜଣେ ସଦସ୍ୟ ।' *

ଇନ୍ଦିରା ଓ ଫିରୋଜଙ୍କ ମଧ୍ୟରେ ସେ ବିଚ୍ଛେଦ ସ୍ଥାୟୀ ବିଚ୍ଛେଦ ନ ହେଲେ ମଧ୍ୟ ଉଭୟଙ୍କ ପାରିବାରିକ ବା ଦାମ୍ପତ୍ୟ ଜୀବନ ଅସଫଳତା ନିଶ୍ଚୟ ଥିଲା । ତେବେ ସେ ପ୍ରକାର ପରିସ୍ଥିତି ପାଇଁ କେହି ଜଣେ ଦାୟୀ ନ ଥିଲେ । ବୃଦ୍ଧ, ସ୍ୱୀଜାନ ଜବାହରଲାଲ କେବଳ ଫିରୋଜଙ୍କ ଶ୍ୱଶୁର ନ ଥିଲେ, ଥିଲେ ପୃଥିବୀ ମାନଚିତ୍ରରେ ନୂତନ ରୂପେ ଜନ୍ମ ନେଇଥିବା ସମସ୍ୟାବହୁଳ ଏକ ବୃହତ୍ତ୍ୱ ଗଣତାନ୍ତ୍ରିକ ରାଷ୍ଟ୍ରର ପ୍ରଧାନମନ୍ତ୍ରୀ । ତାହାଙ୍କ ସେବା ଅତ୍ୟନ୍ତ ଆବଶ୍ୟକ ଥିଲା ସାରା ଦେଶର ସ୍ୱାର୍ଥଦୃଷ୍ଟିରୁ । ସେ କଥା ଫିରୋଜ ନିଜେ ବି ଅନୁଭବ କରୁଥିଲେ । ସ୍ୱାଧୀନଚେତା, ଆତ୍ମସମ୍ମାନକୁ ତଳେ ତଳେ ଜଗି ରଖି ଚଳୁଥିବା ଫିରୋଜ ଗୃହ୍ମୁଁ ନ ଥିଲେ ତାଙ୍କ ଶ୍ୱଶୁର—ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ରହିବା ପାଇଁ । ତେବେ ମଝିରେ ମଝିରେ ଇନ୍ଦିରା ଫିରୋଜଙ୍କ ସରକାରୀ ବାସଭବନକୁ ଯାଉଥିଲେ ଏବଂ ଫିରୋଜ ମଧ୍ୟ ତିନମୂର୍ତ୍ତି ଭବନକୁ ଆସୁଥିଲେ ।

ସେତେବେଳେ ରାଜୀବ ଓ ସଞ୍ଜୟ ଦୁହେଁ ବୋର୍ଡ଼ିଂ ସ୍କୁଲରେ ଅଧ୍ୟୟନ କରୁଥିଲେ । ଛୁଟିଦିନମାନଙ୍କରେ ଇନ୍ଦିରା ଓ ଫିରୋଜ ଉଭୟେ ସେମାନଙ୍କ ସନ୍ତାନମାନଙ୍କୁ ସ୍ୱାଗତ ଜଣାଇବା ପାଇଁ ଏକାଠି ସେମାନଙ୍କ ନିକଟକୁ ଯାଉଥିଲେ ।

ସରକାରୀ ବାସଭବନରେ ଫିରୋଜ ତାଙ୍କର ରାଜନୈତିକ ସହକର୍ମୀ, ଯୁବକ ଓ ପ୍ରଗତିଶୀଳ କଂଗ୍ରେସ ପାର୍ଲ୍ୟାମେଣ୍ଟାରୀ ସଦସ୍ୟମାନଙ୍କ ସହିତ ଆଳାପ ଆଲୋଚନା କରିବା ଲାଗି ସମ୍ପୂର୍ଣ୍ଣ ସ୍ୱାଧୀନତା ପାଇଥିଲେ, ଯାହା ହୁଏତ ପାଇ ନ ଥାନ୍ତେ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ । ଦେଶର ଉଚ୍ଚ ସରକାରୀ ଅଫିସର ବା ପ୍ରଭାବଶାଳୀ ଲୋକମାନଙ୍କର ନିନ୍ଦନୀୟ କାର୍ଯ୍ୟକଳାପକୁ ଦୃଢ଼ ଓ ନିର୍ଭିକ ଭାବରେ ପ୍ରକାଶ କରିପାରୁଥିବା ଯୋଗୁଁ ଖୁବ୍ କମ୍ ଦିନ ମଧ୍ୟରେ ସେ ନିଜର ପ୍ରତିଷ୍ଠା ଲାଭ କରି ପାରିଥିଲେ ।

ସାଧାରଣତଃ କଂଗ୍ରେସରୁ ସଦସ୍ୟମାନେ ସେମାନଙ୍କ ଦଳକୁ ଓ ସେମାନଙ୍କ-ଦ୍ୱାରା ଗଠିତ ମନ୍ତ୍ରିମଣ୍ଡଳକୁ ହିଁ ସମର୍ଥନ କରିଥାଆନ୍ତି ପାର୍ଲ୍ୟାମେଣ୍ଟରେ । ସରକାରଙ୍କ ଦୋଷଦୁର୍ବଳତାଗୁଡ଼ିକୁ ଦେଖାଇବା ଲାଗି ଜାଗ୍ରତ ପ୍ରହରୀ ରୂପେ କାର୍ଯ୍ୟ କରିଥାଆନ୍ତି ବିରୋଧୀ ଦଳ । କିନ୍ତୁ ଫିରୋଜ ଥିଲେ ଏକ ବ୍ୟତିକ୍ରମ । ସେ ଗୃହ୍ମୁଁ ଥିଲେ

---

* Interview with Oriena Fallaci Hindustan Standard—June, 1973—P-7,

କୌଣସି ଅନ୍ୟାୟକୁ ସେ ବରଦାସ୍ତ କରିବେ ନାହିଁ । ୧୯୫୭ ମସିହାରେ ଫିରୋଜ ପାର୍ଲ୍ୟାମେଣ୍ଟରେ ଭାରତର ଅର୍ଥ ମନ୍ତ୍ରଣାଳୟ ବିରୁଦ୍ଧରେ ଯେଉଁ ପ୍ରସ୍ତାବ ଆଗତ କରିଥିଲେ, ତାହା ସମଗ୍ର ଭାରତରେ ଚହଳ ସୃଷ୍ଟି କରି ଦେଇଥିଲା । ବଙ୍ଗଳାର ଜଣେ ବିଶିଷ୍ଟ ବ୍ୟବସାୟୀ ହରିଦାସ ମୁନ୍ଦ୍ରାଙ୍କ ସହିତ ଜୀବନବୀମା କର୍ପୋରେସନକୁ ୧୬ କୋଟି ଟଙ୍କାର ଏକ ବ୍ୟବସାୟ ରାଜିନାମା କରିଥିଲେ ଭାରତର ଅର୍ଥ ମନ୍ତ୍ରଣାଳୟ । ତାର ପୁଙ୍ଖାନୁପୁଙ୍ଖ ଆଲୋଚନା ଫିରୋଜ ପାର୍ଲ୍ୟାମେଣ୍ଟରେ ଆରମ୍ଭ କରିଥିଲେ ଓ ବିଭିନ୍ନ କାରଣ ଦେଖାଇ ଦର୍ଶାଇଥିଲେ ଯେ ତାହା ଦେଶ ପକ୍ଷରେ କ୍ଷତିକାରକ । ପ୍ରଧାନମନ୍ତ୍ରୀ ସେ ଘଟଣାର ତଦନ୍ତ ପାଇଁ ଏମ୍. ସି. ଚଗଲାଙ୍କ ନେତୃତ୍ୱରେ ଏକ କମିଶନ ବସାଇବାକୁ ବାଧ୍ୟ ହୋଇଥିଲେ । କମିଶନ ତନ୍ନ ତନ୍ନ କରି ତଦନ୍ତ ଚଳାଇବା ପରେ ଫିରୋଜଙ୍କ ପ୍ରସ୍ତାବ ସପକ୍ଷରେ ହିଁ ରାୟ ଦେଇଥିଲେ । ସେ ପରିସ୍ଥିତି ପାଇଁ ଦାୟୀ ଅର୍ଥମନ୍ତ୍ରୀଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା ।

ଫିରୋଜ ଚାହିଁଥିଲେ ଜନସାଧାରଣଙ୍କ ନିର୍ବାଚିତ ପ୍ରତିନିଧି ହିସାବରେ କର୍ତ୍ତବ୍ୟ ସମ୍ପାଦନ କରିବେ ନିଃସ୍ୱାର୍ଥପର ଭାବେ । ବାସ୍ତବିକ୍ ସେ କରିଥିଲେ ମଧ୍ୟ । ତେବେ ସାଂସାରିକ ସୁଖସମ୍ଭୋଗ ଏବଂ ମଧୁର ଦାମ୍ପତ୍ୟ ଜୀବନ ତାଙ୍କଠାରୁ ଦୂରେଇ ରହିଥିଲା ନିଜେ ଇଚ୍ଛା ନ କରି ମଧ୍ୟ । ତାକୁ ସେ ଏକ ପ୍ରକାର ତ୍ୟାଗରୂପେ ଗ୍ରହଣ କରି ନେଇଥିଲେ । ବୋଧହୁଏ ସେଇଥିପାଇଁ ଉଭୟଙ୍କ ବ୍ୟକ୍ତିତ୍ୱ ପ୍ରକଟିତ ହୋଇ ପାରିଥିଲା । ଶ୍ରୀମତୀ ଇନ୍ଦିରାଙ୍କ ଭାଷାରେ—"ଆମ ଭିତରେ ଅନେକବାର ମତାନ୍ତର ହୁଏ । ସେଭଳି ମତାନ୍ତରର କାରଣ ଆମେ ଉଭୟେ ଥିଲୁ ଏକ ଏକ ବଳିଷ୍ଠ ଚିନ୍ତାଧାରାର ବାହକ । ମୁଁ ଭାବେ ସେଭଳି ମତାନ୍ତରଗୁଡ଼ିକ ହିଁ ବାସ୍ତବିକ୍ ଆମ ଉଭୟଙ୍କୁ ଶ୍ରେଷ୍ଠ ତଥା ବିଶିଷ୍ଟ କରି ଗଢ଼ିତୋଳିଛି । ତାହା ହୋଇ ନ ଥିଲେ ହୁଏତ ଆମ୍ଭେମାନେ ସେଇ ଚିରାଚରିତ ଭାବେ ସେଇ ସାଧାରଣ ଜୀବନ ଗଠନ କରିଥାଆନ୍ତୁ । କିନ୍ତୁ ସେଭଳି ସାଧାରଣ ଧାରାରେ ଜୀବନ ନିର୍ବାହ କରିବା ଆମ ପାଇଁ ଯଥାର୍ଥ ହୋଇ ନ ଥାନ୍ତା ।"

ବାସ୍ତବିକ୍ ଏକ ଐତିହାସିକ ପରିବାରର ବଂଶଧରଗଣ ଅତି ସାଧାରଣ ଦାମ୍ପତ୍ୟ ଜୀବନ ଅତିବାହିତ କରିବା ଶୋଭନୀୟ ହୋଇ ନ ଥାନ୍ତା ।



॥ ତେର ॥

# କଂଗ୍ରେସର ସଭାନେତ୍ରୀ



କଂଗ୍ରେସର ସଭାନେତ୍ରୀ ଭାବରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇସାରିବା ପରେ ପରେ ପ୍ରଥମ ସାମ୍ବାଦିକ ସମ୍ମେଳନରେ ଶ୍ରୀମତୀ ଇନ୍ଦିରା ସାମ୍ବାଦିକମାନଙ୍କ ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇ ଦେଇ ମତବ୍ୟକ୍ତ କରି କହିଥିଲେ ଯେ ଆମ୍ଭେମାନେ ଅଯଥା ବିନା କାରଣରେ ସମୟ ବ୍ୟୟ କରିବା ଉଚିତ ନୁହେଁ । ରାଷ୍ଟ୍ରର ବିକାଶ ପାଇଁ ସମସ୍ତ ସମୟ ଏବଂ ଚେଷ୍ଟା କରାଯିବା ଆବଶ୍ୟକ । ସମୟ ସହିତ ତାଳ ଦେଇ ଦେଶର ବିକାଶ ଲାଗି ପଦକ୍ଷେପ ନେବା କଂଗ୍ରେସର ମୁଖ୍ୟ ଦାୟିତ୍ୱ ।

୧୯୫୯ ମସିହାରେ କଂଗ୍ରେସର ତତ୍କାଳୀନ ସଭାପତି ଶ୍ରୀଯୁକ୍ତ ୟୁ. ଏନ୍. ଧେବର ତାଙ୍କର କାର୍ଯ୍ୟକାଳ ଶେଷ ହେବା ପୂର୍ବରୁ କାର୍ଯ୍ୟରୁ ଅବ୍ୟାହତି ନେବାପାଇଁ ଇସ୍ତଫା ଦେଇଥିଲେ । ତେଣୁ ବାକି ରହି ଯାଇଥିବା ସମୟ ପାଇଁ କଂଗ୍ରେସ ଅନୁଷ୍ଠାନର ଦାୟିତ୍ୱ ଗ୍ରହଣ କରିବା ଲାଗି ଏପରି କି ବିଦାୟ ନେବାକୁ ଥିବା ଶ୍ରୀଯୁକ୍ତ ୟୁ. ଏନ୍. ଧେବରଙ୍କ ସମେତ ଅନ୍ୟାନ୍ୟ ଅନେକ ନେତୃସ୍ଥାନୀୟ ବ୍ୟକ୍ତି ଇନ୍ଦିରାଙ୍କୁ ଅନୁରୋଧ ଜଣାଇଥିଲେ । କିନ୍ତୁ ଇନ୍ଦିରା ତାଙ୍କର ଅନିଚ୍ଛା ପ୍ରକାଶ କରିଥିଲେ । ତଥାପି ଯେତେବେଳେ ସେ ଆହ୍ଲାବାଦରେ ପିତାଜୀଙ୍କ ନିର୍ବାଚନ-ମଣ୍ଡଳୀରେ ପାଦରେ ଶୃଙ୍ଖଳ ଗ୍ରସ୍ତ କରୁଥିଲେ, ସେତିକବେଳେ ସେଠାରେ ଖବର ପାଇଥିଲେ ଯେ ସେ କଂଗ୍ରେସର ନେତ୍ରୀ ଭାବେ ନିର୍ବାଚିତ ହୋଇଛନ୍ତି ସର୍ବସମ୍ମତିକ୍ରମେ । ଦୀର୍ଘ ଗୋଟାଏ ବର୍ଷ ଏକ ଗୁରୁ ଦାୟିତ୍ୱ ଗ୍ରହଣ କରିବାପାଇଁ କଂଗ୍ରେସ କର୍ମୀମାନଙ୍କ ଆକାଙ୍କ୍ଷାକୁ ସେ ଅପସନ୍ଦ କରିପାରି ନ ଥିଲେ । ନିଜର ଅସ୍ୱୀକୃତି ଜଣାଇବା ସତ୍ତ୍ୱେ ତାଙ୍କୁ ସଭାନେତ୍ରୀ ନିର୍ବାଚିତ କରାଯାଇଥିବାରୁ ତାପରେ ସେ ବାଧ ହୋଇ ନିଜର ସମ୍ମତି ପ୍ରଦାନ କରିଥିଲେ । ପ୍ରଥମେ ପ୍ରସ୍ତାବକୁ ସେ ଅସ୍ୱୀକାର କରିବାର ଏକମାତ୍ର କାରଣ ଥିଲା ପିତାଜୀଙ୍କ ସେବା । ସେ ବିବେଚନା

କରୁଥିଲେ ଅନ୍ୟାନ୍ୟ ଯେ କୌଣସି କାର୍ଯ୍ୟ ଅପେକ୍ଷା ପିତାଙ୍କ ସେବା କରିବା ହିଁ ତାହାଙ୍କ ଲାଗି ସର୍ବପ୍ରଧାନ କାର୍ଯ୍ୟ ।

**ମୁକୁଟ କଣ୍ଟକମୟ: —**

ମାତ୍ର ୪୨ ବର୍ଷ ବୟସରେ ୧୯୫୯ ଫେବୃୟାରୀ ୨ ତାରିଖରେ ଇନ୍ଦିରା ଦେଶର ବୃହତ୍ତମ ରାଜନୈତିକ ଅନୁଷ୍ଠାନ କଂଗ୍ରେସର ଦାୟିତ୍ୱ ଗ୍ରହଣ କରିବା ବେଳକୁ ଐତିହ୍ୟସମ୍ପନ୍ନ ଜନପ୍ରିୟ ଜାତୀୟ କଂଗ୍ରେସ ତାର ପୂର୍ବ ଗୌରବ ହରାଇ ବସିଥିଲା କହିଲେ ଚଳେ । କଂଗ୍ରେସର ଅଧ୍ୟକ୍ଷ ପଦବୀର ମର୍ଯ୍ୟାଦା ମଧ୍ୟ କ୍ରମେ କ୍ରମେ କ୍ଷୁର୍ଣ୍ଣ ହେବାରେ ଲାଗିଥିଲା । ଯେତେବେଳେ କଂଗ୍ରେସ ସ୍ୱତନ୍ତ୍ରତା ସଂଗ୍ରାମରେ ନିଜକୁ ନିୟୋଜିତ କରିଥିଲା, ଜନସାଧାରଣ ତାହାକୁ ସମସ୍ତ ପ୍ରକାର ସାହାଯ୍ୟ କରୁଥିଲେ ଦେଶର ଶତ୍ରୁ ଇଂରେଜ ସରକାରର ବିଲୋପ ପାଇଁ । ସେତେବେଳେ କଂଗ୍ରେସର ଲକ୍ଷ୍ୟ—ଦେଶର ସ୍ୱାଧୀନତା—ସାଧାରଣ ଜନତାଙ୍କୁ ସଂଗ୍ରାମ କରିବାପାଇଁ ଯଥେଷ୍ଟ ପ୍ରେରଣା ଦେଉଥିଲା । ମହାତ୍ମା ଗାନ୍ଧୀ, ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍, ରାଜେନ୍ଦ୍ରପ୍ରସାଦ ଓ ଅନ୍ୟାନ୍ୟ ନେତୃବୃନ୍ଦଙ୍କ ପ୍ରେରଣା ଦେଶବାସୀ ଖୁବ୍ ଉପଲବ୍ଧି କରିପାରୁଥିଲେ । ନେତାମାନଙ୍କର ଆତ୍ମବଳିଦାନ, ଜନନୀ ଜନ୍ମଭୂମିର ମୁକ୍ତି ପାଇଁ ନିର୍ଯ୍ୟାତନା ସାଧାରଣ ଜନତାଙ୍କୁ ଅତ୍ୟନ୍ତ ଉଦବେଳିତ କରିପାରୁଥିଲା । ତେଣୁ ସେମାନେ ହସିହସି ଯନ୍ତ୍ରଣାକୁ, ସରକାରଙ୍କ ନିର୍ଯ୍ୟାତନାକୁ ନିମନ୍ତ୍ରଣ କରୁଥିଲେ । ସେହି ନେତୃବୃନ୍ଦ ସେତେବେଳେ ଆଶ୍ୱାସନା ବାଣୀ ଶୁଣାଇ କହୁଥିଲେ ଯେ ଦେଶ ସ୍ୱାଧୀନ ହେବା ପରେ ପରେ ସେମାନଙ୍କ ଦୁଃସ୍ଥମାନଙ୍କ ଅବସ୍ଥାର ପରିବର୍ତ୍ତନ ନିଶ୍ଚୟ ହେବ ।

କିନ୍ତୁ ସାଧାରଣ ଜନତା ବାସ୍ତବରେ ଅନୁଭବ କରିଥିଲେ ଯେ ଦେଶ ସ୍ୱତନ୍ତ୍ରତା ଲାଭ କରିବାର ଅନେକ ଦିନ ବିତି ଯାଇଥିଲେ ମଧ୍ୟ ଦେଶରେ କୌଣସି ସାମାଜିକ ବା ଅର୍ଥନୈତିକ ପରିବର୍ତ୍ତନ ସଂଘଟିତ ହୋଇପାରି ନ ଥିଲା । ବରଂ ଦେଶବାସୀ ଅନୁଭବ କରୁଥିଲେ ଯେ ନେତୃବୃନ୍ଦ ସେମାନଙ୍କ ନିଜ ସ୍ୱାର୍ଥ ପ୍ରତି ବିଶେଷ ତତ୍ପର ହୋଇ ଉଠୁଥିଲେ; ଜାତୀୟ ସ୍ୱାର୍ଥ ପ୍ରତି କାହାର ଭ୍ରୂକ୍ଷେପ ନ ଥିଲା । ସ୍ୱାଧୀନତା ପୂର୍ବର ଜୀବନ ଓ ସ୍ୱାଧୀନତା ପରର ଜୀବନ ମଧ୍ୟରେ ଯେପରି ଉଲ୍ଲେଖନୀୟ ପରିବର୍ତ୍ତନ ଦେଖା ଯାଉ ନ ଥିଲା । ସେ ପ୍ରକାର ପରିସ୍ଥିତି ଭିତରେ କଂଗ୍ରେସ ପ୍ରତି ଲୋକଙ୍କ ଆସ୍ଥା ତୁଟିଯିବା ସ୍ୱାଭାବିକ କଥା ।

ତା ବ୍ୟତୀତ ସେତେବେଳକୁ ଦେଶରେ ବିଭିନ୍ନ ସମସ୍ୟା ମୁଣ୍ଡ ଟେକି ଉଠୁଥିଲା । ଦେଶରେ ବେକାରମାନଙ୍କ ସଂଖ୍ୟା ଦିନକୁ ଦିନ ବଢୁଥିଲା । ଜିନିଷପତ୍ରର ଦରଦାମ ଅଧିକରୁ ଅଧିକତର ହେଉଥିଲା । କଳାବଜାରୀମାନେ ଦେଶରେ

ମୁଣ୍ଡଟେକି ଉଠୁଥିଲେ । ସର୍ବୋପରି କଂଗ୍ରେସ ଦଳ ଦୁର୍ବଳ ହୋଇ ପଡ଼ିଥିବା ଦୃଷ୍ଟିରୁ ଦେଶର ବିରୋଧୀ ଦଳମାନେ ସରକାର ତଥା କଂଗ୍ରେସ ଦଳର କଡ଼ା ସମାଲୋଚନା ଆରମ୍ଭ କରି ଦେଇଥିଲେ ।

ସେହିପରି ଏକ ସଙ୍କଟମୟ ପରିସ୍ଥିତିରେ ଇନ୍ଦିରା କଂଗ୍ରେସର ନେତୃତ୍ୱ ଗ୍ରହଣ କରିଥିଲେ ଶ୍ରୀଯୁକ୍ତ ଧେବରଙ୍କଠାରୁ ।

କଂଗ୍ରେସର ଅଧ୍ୟକ୍ଷ ପଦବୀରେ ଅଧିଷ୍ଠିତ ହେବାରେ ଇନ୍ଦିରା ଥିଲେ ନେହେରୁ ପରିବାରର ତୃତୀୟ ବ୍ୟକ୍ତି । ପ୍ରଥମ ନେହେରୁ ଥିଲେ ଇନ୍ଦିରାଙ୍କ ଦାଦୁ— ମୋତିଲାଲ । ସେ ୧୯୧୯ ଓ ୧୯୨୮ ମସିହାରେ କଂଗ୍ରେସର ସଭାପତି ହୋଇଥିଲେ । ପିତା ଜବାହରଲାଲ ତାଙ୍କ ଜୀବନରେ ଅନେକଥର କଂଗ୍ରେସ ସଭାପତି ପଦବୀ ଗ୍ରହଣ କରିଥିଲେ । ତନ୍ମଧ୍ୟରୁ ଐତିହାସିକ ଲାହୋର ଅଧିବେଶନ ଅନ୍ୟତମ । ଏପରି କି ଅନେକଥର ପ୍ରଧାନମନ୍ତ୍ରୀ ଥିବାବେଳେ ମଧ୍ୟ ସେ ଜାତୀୟ କଂଗ୍ରେସର ସଭାପତି ଥିଲେ । ସେହି କାରଣରୁ ଶାସନକ୍ଷେତ୍ରରେ ଯେଉଁ ନୀତିଗତ ଭୁଲ ଭଟକା ହେଉଥିଲା ସେଥିପାଇଁ କଂଗ୍ରେସକୁ ମଧ୍ୟ ଦାୟୀ କରାଯାଇ ସମାଲୋଚନା କରାଯାଉଥିଲା । ତାର କାରଣ ଥିଲା ଶାସନ କ୍ଷେତ୍ରରେ ପ୍ରଧାନମନ୍ତ୍ରୀ ଓ କଂଗ୍ରେସ ଦଳର ଅଧ୍ୟକ୍ଷ ଥିଲେ ଜଣେ ବ୍ୟକ୍ତି—ଜବାହରଲାଲ । ଅବଶ୍ୟ ତାଙ୍କ ପରେ ପରେ ଅନେକ ଖ୍ୟାତନାମା ବ୍ୟକ୍ତି ସେ ପଦବୀର ଅଧିକାରୀ ହୋଇଥିଲେ ସତ; କିନ୍ତୁ ଦେଶରେ ଯେଉଁ ସମସ୍ୟାମାନ ଦେଖା ଦେଇଥିଲା, ତାର ଦୂରୀକରଣ ଲାଗି କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିବା ପାଇଁ କେହି ସମର୍ଥ ହୋଇ ନ ଥିଲେ । ମୁଖ୍ୟତଃ ସେହି କାରଣରୁ ସେହି ବିଶାଳ ସଂସ୍ଥାର ଅଧୋପତନ କ୍ରମଶଃ ଆରମ୍ଭ ହୋଇଥିଲା । ପରିଣାମ ସ୍ୱରୂପ ୧୯୫୭ ସାଧାରଣ ନିର୍ବାଚନରେ କେରଳ ରାଜ୍ୟରେ କଂଗ୍ରେସ ଦଳ ତାର ସୁନାମ ହରାଇ ବସିଥିଲା ଏବଂ କମ୍ୟୁନିଷ୍ଟ ଦଳ ସଂଖ୍ୟାଗରିଷ୍ଠତା ହାସଲ କରିଥିବା ବେଳେ କେରଳରେ କମ୍ୟୁନିଷ୍ଟ ଦଳ ସଂଖ୍ୟାଗରିଷ୍ଠତା ହାସଲ କରିଥିବାରୁ ତାହା ଦଳ ମଧ୍ୟରେ ଆତଙ୍କ ସୃଷ୍ଟି କରିଥିଲା । ଆଶଙ୍କା ଥିଲା ଯେ ହୁଏତ ୧୯୬୨ର ସାଧାରଣ ନିର୍ବାଚନ ବେଳେ ଆହୁରି କେତୋଟି ରାଜ୍ୟରେ କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠତା ହରାଇବ ।

ସେ ପ୍ରକାର ପରିସ୍ଥିତି ମଧ୍ୟରେ ଇନ୍ଦିରା କଣ୍ଟକମୟ ମୁକୁଟ ପିନ୍ଧିବା ଲାଗି ପ୍ରଥମେ ପ୍ରଥମେ ଇଚ୍ଛା କରୁ ନ ଥିଲେ । ତା ପରେ ପରେ ମନ ଭିତରେ ଅନେକ ଦ୍ୱନ୍ଦ୍ୱ ହଁ—ନା ମଧ୍ୟରେ ପ୍ରଥମଟିକୁ ହିଁ ଗ୍ରହଣ କରିଥିଲେ ।

### ଦଳ ସଂଗଠନରେ ଇନ୍ଦିରା :

ଶ୍ରୀମତୀ ଇନ୍ଦିରା କଂଗ୍ରେସର ନେତୃତ୍ୱ ଗ୍ରହଣ କରିଥିବା ଯୋଗୁ ବିଶେଷ କରି ଦେଶର ଓ କଂଗ୍ରେସର ଯୁବସମ୍ପ୍ରଦାୟ ଏବଂ ଦେଶର ମହିଳା ସମାଜ ଅତ୍ୟନ୍ତ

ଆନନ୍ଦିତ ହୋଇଥିଲେ । କଂଗ୍ରେସ ଦଳ ଭିତରେ ରହି ଯେଉଁମାନେ ଦେଶର ସାମୂହିକ ଉନ୍ନତି ପାଇଁ ଚେଷ୍ଟା କରୁ ନ ଥିଲେ ବା କଂଗ୍ରେସର ସଭ୍ୟମାନେ ସେମାନଙ୍କ ନୀତି, ସରକାରଙ୍କ କାର୍ଯ୍ୟକ୍ରମ ଦେଶର ଜନସାଧାରଣଙ୍କ ନିକଟରେ ଉପସ୍ଥାପିତ କରୁ ନ ଥିଲେ, ସେହିମାନଙ୍କୁ କଂଗ୍ରେସ ଦଳ ଭିତରେ କେବଳ ନାମକୁ ମାତ୍ର ସଭ୍ୟ ଭାବେ ରଖାଯିବାର କୌଣସି ଯଥାର୍ଥତା ଅନୁଭବ କରି ନ ଥିଲେ ଇନ୍ଦିରା । ବିଶେଷତଃ ପଣ୍ଡିତ ନେହେରୁଙ୍କ କର୍ମପ୍ରେରଣା କଂଗ୍ରେସ ଦଳର ପ୍ରାୟ ପ୍ରତ୍ୟେକ ସଭ୍ୟଙ୍କୁ ଅନୁପ୍ରାଣିତ କରିଥିଲା । ସେମାନଙ୍କ କାର୍ଯ୍ୟ କେବଳ ନିର୍ବାଚନମାନଙ୍କରେ ପ୍ରତିଦ୍ୱନ୍ଦିତା କରିବା ଭିତରେ ହିଁ ସୀମିତ ନ ଥିଲା । ସରକାରୀ କାର୍ଯ୍ୟକଳାପ ସମ୍ପର୍କରେ ମଧ୍ୟ ସେମାନେ ଜନସାଧାରଣଙ୍କୁ ଧାରଣା ଦେଉଥିଲେ । ସେତେବେଳର ଯୋଜନାମନ୍ତ୍ରୀ ଶ୍ରୀ ଦୁର୍ଗାପ୍ରସାଦ ଧରଙ୍କ ଭାଷାରେ --"ପଣ୍ଡିତଜୀଙ୍କ ନେତୃତ୍ୱରେ କଂଗ୍ରେସ ଦଳ କେବଳ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବା ଲାଗି ଉଦ୍ଦିଷ୍ଟ ଏକ ସୁନ୍ଦର କାର୍ଯ୍ୟକ୍ଷମ ଯନ୍ତ୍ର ନ ଥିଲା, ଥିଲା ମଧ୍ୟ ସରକାରୀ କାର୍ଯ୍ୟକ୍ରମଗୁଡ଼ିକ ସମ୍ପର୍କରେ ଦେଶର ଜନସାଧାରଣଙ୍କୁ ଅବହିତ କରାଇ ଦେବା ଦିଗରେ ଏକ ଶକ୍ତିଶାଳୀ ମାଧ୍ୟମ ।" * ସେ ଦୃଷ୍ଟିରୁ ଯେଉଁମାନେ କଂଗ୍ରେସରେ ରହି ପୁଣି ତାର ନୀତିକୁ କାର୍ଯ୍ୟକାରୀ କରିବାପାଇଁ କୁଣ୍ଠାପ୍ରକାଶ କରୁଥିଲେ ସେମାନଙ୍କୁ ଦଳରୁ ଅନ୍ତର କରି କର୍ମଠ ଏବଂ ଉତ୍ସାହୀ ଯୁବକମାନଙ୍କୁ ପଦୋନ୍ନତ କରିଥିଲେ । ଇନ୍ଦିରାଙ୍କ ନେତୃତ୍ୱରେ କଂଗ୍ରେସ ପରିଚାଳିତ ହେବା ଦିନଠାରୁ କଂଗ୍ରେସର କାର୍ଯ୍ୟକ୍ରମଗୁଡ଼ିକରେ ଅଂଶ ଗ୍ରହଣ କରିବାପାଇଁ ଅନେକ ମହିଳା କର୍ମୀ ଅଗ୍ରସର ହୋଇଥିଲେ ।

କେବଳ ରାଜନୈତିକ କାର୍ଯ୍ୟକ୍ରମଗୁଡ଼ିକରେ କାହିଁକି, ସାମାଜିକ କ୍ଷେତ୍ରରେ —ବିଶେଷ କରି ସମାଜ କଲ୍ୟାଣ କାର୍ଯ୍ୟକ୍ରମଗୁଡ଼ିକରେ ଅଧିକରୁ ଅଧିକ ସଂଖ୍ୟାରେ ଅଂଶଗ୍ରହଣ କରିବା ପାଇଁ କଂଗ୍ରେସର ସଭାନେତ୍ରୀ ଇନ୍ଦିରା ଭାରତୀୟ ମହିଳାମାନଙ୍କୁ ପରାମର୍ଶ ଦେଇଥିଲେ । ସେମାନଙ୍କୁ ଆହ୍ୱାନ ଦେଇ ସେ କହିଥିଲେ ଯେ ଯୁଗ ଯୁଗ ଧରି ଯେଉଁ ଅନ୍ଧବିଶ୍ୱାସର ଘନ କୁହୁଡ଼ି ଭିତରେ ସେମାନେ ଆଚ୍ଛନ୍ନ ହୋଇ ରହିଛନ୍ତି, ସେମାନଙ୍କୁ ସେଥିରୁ ମୁକ୍ତ ହେବାକୁ ପଡ଼ିବ । ସମସ୍ତଙ୍କୁ ସମସ୍ତ ସହିତ ପାଦ ମିଳାଇ ଚାଲିବାକୁ ପଡ଼ିବ । ନିଜ ଦେଶ ତଥା ପୃଥିବୀର ଅନ୍ୟାନ୍ୟ ଦେଶର ପ୍ରଗତି ସହିତ ତାଳ ଦେବାକୁ ହେଲେ ସମସ୍ତ ଅନ୍ଧବିଶ୍ୱାସକୁ ଦୂର କରିବାକୁ ହେବ । ମହିଳାମାନଙ୍କ ସମ୍ପର୍କରେ ସେ ମତପୋଷଣ କରିଥିଲେ ଯେ ସେମାନଙ୍କ ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହେଲା ସେମାନଙ୍କ ପରିବାର ଏବଂ ସନ୍ତାନମାନଙ୍କ ଉପଯୁକ୍ତ ରକ୍ଷଣାବେକ୍ଷଣ । ତେବେ ସେ କର୍ତ୍ତବ୍ୟ ସମ୍ପାଦନ କରି ମଧ୍ୟ ଇଚ୍ଛା କଲେ

* D. P. Dhar—Why and How and What I Plan: Illustrated Weekly, 25 February, 1973. page—11.

ସେମାନେ ସାମାଜିକ ଓ ସାର୍ବଜନୀନ କଲ୍ୟାଣ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମମାନଙ୍କରେ ଯୋଗ ଦେବାପାଇଁ ଯଥେଷ୍ଟ ସମୟ ପାଇପାରିବେ ।

ଅନେକ ସମସ୍ୟାରେ କଂଗ୍ରେସ ଅନୁଷ୍ଠାନଭୁକ୍ତ ହୋଇ ନ ଥିବା ଅନେକ ଲୋକଙ୍କଠାରୁ ସାହାଯ୍ୟ ସହଯୋଗକୁ ସ୍ୱାଗତ କରାଯାଉଥିଲା ଏବଂ ସମୟେ ସମୟେ ସେମାନଙ୍କୁ ମଧ୍ୟ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଥିଲା । କଂଗ୍ରେସର କାର୍ଯ୍ୟକ୍ରମ କିପରି ଜନସାଧାରଣଙ୍କ ନିକଟରେ ପହଞ୍ଚିପାରିବ ଓ ସାଧାରଣ ଜନତା କିପରି ଅନୁଷ୍ଠାନ ପ୍ରତି ଆଗ୍ରହ ପ୍ରକାଶ କରିବେ, ସେଥିପାଇଁ ଇନ୍ଦିରା ଆନ୍ତରିକ ଚେଷ୍ଟା କରିଥିଲେ । ପରିଣାମ ସ୍ୱରୂପ ଦେଶରେ ଅନେକଙ୍କର ଧାରଣା ହୋଇଥିଲା ସ୍ୱାଧୀନତା ପୂର୍ବର ଅନୁଷ୍ଠାନ ଜାତୀୟ କଂଗ୍ରେସ ପୁଣି ନୂତନ ଜୀବନ ଲାଭ କରିଥିଲା ।

ଜବାହରଲାଲଙ୍କ ଭଳି ଭୟ ଓ ଅନ୍ଧବିଶ୍ୱାସ ଲୋକଙ୍କ ମନରୁ ଦୂର କରିବା ପାଇଁ ଇନ୍ଦିରା ଉଦ୍ୟମ କରିଥିଲେ । ବୈଜ୍ଞାନିକ ଓ ବାସ୍ତବ ଦୃଷ୍ଟିକୋଣରୁ ଦେଶର ଯୋଜନାଗୁଡ଼ିକ ପ୍ରଣୟନ ହେବା ଉଚିତ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ସେଇଥିପାଇଁ ଦେଶର ପ୍ରକୃତ ଅବସ୍ଥା ଅନୁସନ୍ଧାନ କରି ସାମୂହିକ ବିକାଶ ପାଇଁ ପରିକଳ୍ପନା କରିବା ଲାଗି ସେ ଗୁରୁତ୍ୱ ଦେଉଥିଲେ । କେବଳ ରାଜନୈତିକ ଦୃଷ୍ଟି-କୋଣରୁ ବା ଅଫିସ୍‌ରେ ବସିରହି କାଗଜ କଲମରେ ଯେ ଜନା ପ୍ରଣୟନ କରିବାକୁ ସେ ପସନ୍ଦ କରୁ ନ ଥିଲେ । ଦେଶର ଯେଉଁ ପ୍ରକାର ଅର୍ଥନୈତିକ ଅସ୍ୱଚ୍ଛଳତା, ବେକାର ସମସ୍ୟା ଓ ନିରକ୍ଷରତାଜନିତ ସମସ୍ୟା ରହିଥିଲା, ତାର ଦୂରୀକରଣ ଥିଲା ତାଙ୍କ ଚିନ୍ତାଧାରାର କେନ୍ଦ୍ରବିନ୍ଦୁ । କଂଗ୍ରେସର ସଭାନେତ୍ରୀ ଇନ୍ଦିରାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା ଉପଯୁକ୍ତ ଯୋଜନା ପ୍ରଣୟନ ଦ୍ୱାରା ସେ ସମସ୍ତ ସମସ୍ୟାର ସମାଧାନ ଅସମ୍ଭବ ନୁହେଁ । ସେଥିପାଇଁ ଦରକାର ଆନ୍ତରିକତା ସହିତ ପରିସ୍ଥିତିର ଗଭୀର ଅନୁଧ୍ୟାନ । ଭାରତର ଯେଉଁ ସାଂସ୍କୃତିକ ଭିତ୍ତିଭୂମି ରହିଛି ଓ ରହିଥିଲା, ତାର ଯେଉଁ ଐତିହ୍ୟପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ରହିଛି ଓ ରହିଥିଲା, ତାକୁ ଧୂଳିସାତ୍ ହେବାକୁ ଦେବା ଜନସାଧାରଣଙ୍କ ପାଇଁ ଉଚିତ ନୁହେ । ସେ ବିଶେଷତଃ ତାଙ୍କର ପ୍ରତ୍ୟକ୍ଷ ଅନୁଭୂତିରୁ ଦେଖିଥିଲେ ଯେ ଭାରତରେ ଅନେକ ପ୍ରକାର ବିଭିନ୍ନତା ସତ୍ତ୍ୱେ ଏକତା ପ୍ରଦର୍ଶନର ଅନେକ ଦୃଷ୍ଟାନ୍ତ ଲିପିବଦ୍ଧ ଥିଲା ।

କଂଗ୍ରେସର ନେତୃତ୍ୱ ଗ୍ରହଣ କରିସାରିବା ପରେ ପରେ ନିଜ କାର୍ଯ୍ୟକାରୀ ସମିତି ଗଠନ କରିବା ଦାୟିତ୍ୱ ଅଧ୍ୟକ୍ଷଙ୍କ ଉପରେ । କଂଗ୍ରେସ ସଭାନେତ୍ରୀ ଇନ୍ଦିରା ଗାନ୍ଧୀ ଅନେକ ବାର କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟା ଭାବରେ ଏବଂ କଂଗ୍ରେସ ଅନୁଷ୍ଠାନ ସହିତ ବହୁକାଳରୁ ସମ୍ପୃକ୍ତ ରହିଥିବା ଯୋଗୁଁ ତଥା ବାଲ୍ୟବୟସରୁ ସମସ୍ତ ସମୟ ରାଜନୀତି ଓ ସମାଜକଲ୍ୟାଣ ପାଇଁ ନିଜକୁ ନିୟୋଜିତ କରିଥିବା ଯୋଗୁଁ କଂଗ୍ରେସ ଅଧ୍ୟକ୍ଷଙ୍କ ଦାୟିତ୍ୱ ସମ୍ପର୍କରେ ଅଜ୍ଞ ନ ଥିଲେ । ସେ ନିଜ କାର୍ଯ୍ୟକାରୀ ସମିତି

ପାଇଁ ଯେଉଁ ସଦସ୍ୟମାନଙ୍କୁ ଗ୍ରହଣ କରିଥିଲେ, ଦଳର ମୁବଗୋଷ୍ଠୀଙ୍କ ସ୍ଥାନ ସେଥିରେ ପ୍ରାଧାନ୍ୟ ଲାଭ କରିଥିଲା । ତେବେ ଉଲ୍ଲେଖନୀୟ ଥିଲା ତାଙ୍କ ମାପୂ— ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ମଧ୍ୟ ସେବର୍ଷର କାର୍ଯ୍ୟକାରୀ ସମିତିରେ ସ୍ଥାନ ପାଇ ନ ଥିଲେ ସଭ୍ୟ ଭାବରେ । ଦୀର୍ଘ ୩୯ ବର୍ଷ ଧରି ଜବାହରଲାଲ କାର୍ଯ୍ୟକାରୀ ସମିତିରେ ସ୍ଥାନ ପାଉଥିଲେ ମଧ୍ୟ ତାଙ୍କ କନ୍ୟା ଇନ୍ଦିରା ତାହାଙ୍କୁ ଗ୍ରହଣ କରି ନ ଥିଲେ । ଅବଶ୍ୟ ଦେଶର ପ୍ରଧାନମନ୍ତ୍ରୀ ଓ ପାର୍ଲ୍ୟାମେଣ୍ଟରେ କଂଗ୍ରେସ ଦଳର ନେତା ହିସାବରେ ପ୍ରତ୍ୟେକ ବୈଠକରେ ସେ ଜଣେ ନିମନ୍ତ୍ରିତ ସଭ୍ୟ ଭାବେ ଯୋଗ ଦେଉଥିଲେ । ପିତାଜୀଙ୍କ ସମେତ ଅନ୍ୟାନ୍ୟ କାର୍ଯ୍ୟକାରୀ ସଭ୍ୟମାନଙ୍କୁ ନିୟନ୍ତ୍ରଣ କରିବାପାଇଁ ଯେ ଅତ୍ୟନ୍ତ ଚତୁରତା ଆବଶ୍ୟକ, ସେଥିରେ ସନ୍ଦେହର କାରଣ ନ ଥିଲା ଏବଂ ସେ ସାହସ, ଧୈର୍ଯ୍ୟ ଓ କାର୍ଯ୍ୟକୁଶଳତା ଇନ୍ଦିରାଙ୍କ ନିକଟରେ ବିଶେଷଭାବେ ରହିଥିଲା ।

କଂଗ୍ରେସର ଅନ୍ୟାନ୍ୟ ଅନେକ ସଦସ୍ୟ ସାଧାରଣ ଜନତାଙ୍କ ନୀତି ଅନୁସରଣ କରି ଯେ କେବଳ ବିରୋଧ ପାଇଁ କମ୍ୟୁନିଜ୍‌ମର ବା କମ୍ୟୁନିଷ୍ଟମାନଙ୍କର ବିରୋଧ କରୁ ନ ଥିଲେ, ବରଂ ସେ ମତ ଦେଇଥିଲେ ଯେ ପ୍ରତ୍ୟେକ କଂଗ୍ରେସକର୍ମୀଙ୍କ କର୍ମ କେବଳ ସାମ୍ୟବାଦ ନୀତି ପୋଷଣ କରୁଥିବା ଲୋକଙ୍କ ସହିତ ଲଢ଼େଇ କରିବା ନୁହେଁ, ସାଧାରଣ ଜନତାଙ୍କ ଜୀବନଯାପନର ସ୍ତରକୁ ଅନୁନ୍ନତ ଅବସ୍ଥାରୁ ଉନ୍ନତତର କରିବା ଏବଂ ପ୍ରତ୍ୟେକଙ୍କର ସର୍ବନିମ୍ନ ଆବଶ୍ୟକତାକୁ ପୂର୍ଣ୍ଣ କରିବାପାଇଁ ବ୍ୟବସ୍ଥା କରିବା । ଅନ୍ୟ ପକ୍ଷରେ କହିବାକୁ ଗଲେ ତାହା ପ୍ରକୃତରେ ସାମ୍ୟବାଦ ଓ ସମାଜବାଦ ଉପରେ ବିଶ୍ୱାସ କରୁଥିବା ଦଳମାନଙ୍କର ଏକ ପ୍ରଧାନ ଲକ୍ଷ୍ୟ । ସେତେବେଳର କଂଗ୍ରେସ ସଭାନେତ୍ରୀ ଇନ୍ଦିରାଙ୍କ ଲକ୍ଷ୍ୟ ଓ ପ୍ରଧାନମନ୍ତ୍ରୀଙ୍କ ଲକ୍ଷ୍ୟ ମଧ୍ୟରେ ସେଇ ସାମଞ୍ଜସ୍ୟ ବୋଧହୁଏ କଂଗ୍ରେସ ଓ କମ୍ୟୁନିଷ୍ଟ ଦୁଇ ଦଳକୁ ନିକଟତର କରିପାରିଥିଲା । କାରଣ ଉଭୟ ଦଳ ଅନେକ ବିଭେଦତା ଓ ବିଭିନ୍ନତା ସତ୍ତ୍ୱେ ଗୋଟାଏ ଲକ୍ଷ୍ୟ ଓ ଗୋଟାଏ ଉଦ୍ଦେଶ୍ୟକୁ ଗ୍ରହଣ କରିନେଇଥିଲେ । ଦେଶରୁ ଦାରିଦ୍ର୍ୟ ଦୂରୀକରଣ ଲାଗି ତାଙ୍କ ପିତାଙ୍କ ଭଳି ଶ୍ରୀମତୀ ଗାନ୍ଧୀ ଥିଲେ ଦୃଢ଼ପରିକର । ଦୀର୍ଘକାଳ ଭାରତର ପ୍ରଧାନମନ୍ତ୍ରୀ ଭାବେ ରହି ସେଇ ଲକ୍ଷ୍ୟ ହାସଲ ପାଇଁ ଅନବରତ ଉଦ୍ୟମ ଚଳାଇଥିବା ପିତାଜୀଙ୍କ ପଦାଙ୍କ ଅନୁସରଣ ଓ ଅନୁକରଣରେ ବ୍ରତୀ ଇନ୍ଦିରା ଆଶାନ୍ୱିତ ହୋଇ ଉଠିଥିଲେ ଯେ ସେ ଜବାହରଲାଲଙ୍କ ଅପୂରଣୀୟ କାର୍ଯ୍ୟସବୁ ପୂର୍ଣ୍ଣ କରିବେ ।

ଭାରତବିଖ୍ୟାତ କାର୍ଟୁନିକ, ପୃଥିବୀରେ ଭଲଭାବରେ ପରିଚିତ 'ଶଙ୍କର୍' ସମାଲୋଚନା ପତ୍ରିକାର ଏକ ସ୍ୱତନ୍ତ୍ର ସଂଖ୍ୟା ୧୯୬୨ ମସିହା ନଭେମ୍ବରରେ ପ୍ରକାଶ

କରି ସେଥିରେ ନିଜେ ଶ୍ରୀଯୁକ୍ତ କରଞ୍ଜିଆ ମତପ୍ରକାଶ କରିଥିଲେ ଯେ—"Blitz dedicates this contribution to the great debate on the question to the memory of Jawaharlal Nehru who devoted so large a part of his life and energy to the anti poverty programme, and to Indira Gandhi, who following the footsteps of her immortal father, is pledged to carry forward the unfinished battle against poverty."

**ଏକ ଦୁଃସାହସିକ ପଦକ୍ଷେପ :—**

କେବଳ କେରଳ ରାଜ୍ୟକୁ ବାଦ ଦେଇ ସେତେବେଳେ ସମଗ୍ର ଦେଶରେ କଂଗ୍ରେସ ଦଳ ମନ୍ତ୍ରିମଣ୍ଡଳ ଗଠନ କରିଥିଲା । କେହି କେବେ ଆଶା କରି ନ ଥିଲେ ଯେ କମ୍ୟୁନିଷ୍ଟ ଦଳ କୌଣସି ପ୍ରଦେଶରେ ସଂଖ୍ୟାଗରିଷ୍ଠତା ହାସଲ କରି ମନ୍ତ୍ରିମଣ୍ଡଳ ଗଠନ କରିପାରିବା ଭଳି ଜନସାଧାରଣଙ୍କୁ ପ୍ରଭାବିତ କରିପାରିବ । କିନ୍ତୁ ବାସ୍ତବ କ୍ଷେତ୍ରରେ ତାହା ହିଁ ହୋଇଥିଲା । କେରଳ ବିଧାନସଭାରେ କମ୍ୟୁନିଷ୍ଟ ଦଳ ୧୯୫୭ ନିର୍ବାଚନରେ ସଂଖ୍ୟାଗରିଷ୍ଠତା ହାସଲ କରି ଅନ୍ୟାନ୍ୟ ବାମପନ୍ଥୀ ଦଳଙ୍କ ସହାୟତାରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲା । ତାର ପରିଣାମ ସ୍ୱରୂପ କଂଗ୍ରେସ ଦଳର ସଭ୍ୟମାନେ ସେ ପ୍ରଦେଶରେ ନିଜ ମର୍ଯ୍ୟାଦା ରକ୍ଷା କରିବାପାଇଁ ସାମର୍ଥ୍ୟ ହରାଇ ବସିଥିଲେ । ସେ ପ୍ରକାର ପରିସ୍ଥିତିରେ କଂଗ୍ରେସୀ ସଭ୍ୟମାନେ ସେଠାରେ ଅପମାନିତ ମନେକରିବା ସ୍ୱାଭାବିକ କଥା ।

ତାହା ବ୍ୟତୀତ ସମଗ୍ର ଦେଶରେ ବିସ୍ତାର ଲାଭ କରିଥିବା କଂଗ୍ରେସ ଦଳର ଗୋଟିଏ ରାଜ୍ୟରେ ପରାଜୟ ଲାଭ କରିବା ମଧ୍ୟ ଅସମ୍ମାନଜନକ । ଦେଶର ନେତୃବୃନ୍ଦ ଆଶଙ୍କା କରୁଥିଲେ ହୁଏତ ତା ପରେ ୧୯୬୨ ସାଧାରଣ ନିର୍ବାଚନରେ ଆହୁରି କେତୋଟି ପ୍ରଦେଶରେ ସେ ପ୍ରକାର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିପାରେ । ତେଣୁ କେରଳରେ ଅଣକଂଗ୍ରେସୀ ମନ୍ତ୍ରିମଣ୍ଡଳ ତଥା କମ୍ୟୁନିଷ୍ଟ ଦଳର ସଂଖ୍ୟାଗରିଷ୍ଠ ବିଜୟ କେବଳ ଭାରତର ବିଭିନ୍ନ ପ୍ରାନ୍ତରେ କାହିଁକି, ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିଥିଲା । ତା ସଙ୍ଗେ ସଙ୍ଗେ କମ୍ୟୁନିଷ୍ଟ ଦଳର ସାଂଗଠନିକ ପ୍ରଭାବ ପୃଥିବୀରେ ଚହଳ ପକାଇଥିଲା । କେରଳର ଜନସାଧାରଣ ତାଙ୍କ ପ୍ରଦେଶର ବିଭିନ୍ନ ସମସ୍ୟାର ସମାଧାନ ଲାଗି କଂଗ୍ରେସ ନେତୃବୃନ୍ଦଙ୍କ ଉପରୁ ଆସ୍ଥା ହରାଇ ଆସ୍ଥାବାନ୍ ହୋଇ ଉଠିଥିଲେ କମ୍ୟୁନିଷ୍ଟ ଦଳ ଉପରେ ।

ତା ଫଳରେ ପୃଥିବୀର କେତେକ ଚିନ୍ତାଶୀଳ ବ୍ୟକ୍ତିଙ୍କ ମନ ଭିତରେ ପ୍ରଶ୍ନ ଉଠିଥିଲା—ଯଦି ସମ୍ପୂର୍ଣ୍ଣ ଗଣତାନ୍ତ୍ରିକ ପନ୍ଥାରେ ଭାରତରେ ଗୋଟିଏ ରାଜ୍ୟରେ କମ୍ୟୁନିଷ୍ଟ ଦଳ ଶାସନକ୍ଷେତ୍ରରେ ଆସୀନ ହୋଇପାରିଲା, ତେବେ ପୃଥିବୀର ଅନ୍ୟ ରାଷ୍ଟ୍ର, ଯେଉଁମାନେ ଗଣତନ୍ତ୍ରରେ ବିଶ୍ୱାସୀ, ଯଥା—କାନାଡ଼ା, ସ୍ୱିଡ଼େନ୍, ଆମେରିକା କିମ୍ବା ଇଂଲଣ୍ଡର ଲୋକେ ପ୍ରତ୍ୟକ୍ଷ ଭାବେ କାହିଁକି କମ୍ୟୁନିଷ୍ଟ ସରକାର ଗଠନ କରି ନ ପାରିବେ ? ତେବେ ଭାରତର ପ୍ରଧାନମନ୍ତ୍ରୀ କେରଳରେ ଏକ ଅଣକଂଗ୍ରେସୀ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିବା ଯୋଗୁଁ ଦୁଃଖିତ ନ ଥିଲେ ମଧ୍ୟ ଆନନ୍ଦିତ ହୋଇ ନ ଥିଲେ । କାରଣ ସେ ମନେ କରିଥିଲେ ଯେ ଏକଛତ୍ରବାଦ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ କରୁଥିବା ଓ ସମଗ୍ର ପୃଥିବୀରେ ବ୍ୟାପିରହିଥିବା କମ୍ୟୁନିଷ୍ଟ ଦଳ ମଧ୍ୟ ତା ଫଳରେ ଗଣତନ୍ତ୍ର ପ୍ରତି ଆସ୍ଥାବାନ୍ ହୋଇଉଠିବା ପାଇଁ ରାସ୍ତା ଖୋଲା ହୋଇ-ପାରିବ । ପୁନଶ୍ଚ ସମାଜବାଦୀ ଢାଞ୍ଚାରେ ଭାରତକୁ ଗଠନ କରିବା ଲକ୍ଷ୍ୟ ଆମ ସମ୍ବିଧାନରେ ରହିଥିବାରୁ ଓ କମ୍ୟୁନିଷ୍ଟ ଦଳର ମତ ପ୍ରାୟତଃ ତାହା ହିଁ ଥିବାରୁ ଗଣତାନ୍ତ୍ରିକ ଢାଞ୍ଚାରେ ଭାରତକୁ ଏକ ସମାଜବାଦୀ ରାଷ୍ଟ୍ରରେ ପରିଣତ କରିବାପାଇଁ ପଦକ୍ଷେପ ନେବାରେ ହୁଏତ କମ୍ୟୁନିଷ୍ଟ ଦଳ ସହଯୋଗ କରିବାପାଇଁ କୁଣ୍ଠାବୋଧ କରିବେ ନାହିଁ ବୋଲି ସେ ମତ ପୋଷଣ କରିଥିଲେ ।

କେରଳ କମ୍ୟୁନିଷ୍ଟ ପାର୍ଟିର ଜଣେ ଉଚ୍ଚ ନେତା ଇ. ଏମ୍. ଏସ୍. ନମ୍ବୁଦ୍ରିପଦଙ୍କ ଅଧିନାୟକତ୍ୱରେ ସେଠା ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ମୁଖ୍ୟମନ୍ତ୍ରୀ ନମ୍ବୁଦ୍ରିପଦ ଏକାଧାରରେ ଜଣେ ଲେଖକ, ବକ୍ତା ଓ ରାଜନୀତିଜ୍ଞ ଥିଲେ । ସବୁଠାରୁ ଉଲ୍ଲେଖନୀୟ ଥିଲା ତାଙ୍କର ସଙ୍ଗଠନଶକ୍ତି । ଅତୀତରେ ଯେତେବେଳେ କେରଳରେ ସରକାର କମ୍ୟୁନିଷ୍ଟ ଦଳକୁ ବେଆଇନ ଘୋଷଣା କରିଥିଲେ, ସେତେ-ବେଳେ ମଧ୍ୟ ସେ ଲୁଚି ଲୁଚି ରହି ଯେଉଁ ପ୍ରକାର ଆନ୍ଦୋଳନ ଚାଲୁ ରଖିଥିଲେ ତାହା ତାଙ୍କର ବ୍ୟକ୍ତିତ୍ୱକୁ ଦ୍ୱିଗୁଣିତ କରି ଦେଇଥିଲା ଓ ତାଙ୍କର ଲୋକପ୍ରିୟତା ଅସମ୍ଭବ ଭାବେ ବୃଦ୍ଧି ପାଇଥିଲା । ତେବେ ସେ ସମସ୍ତ ଗୁଣର ଅଧିକାରୀ ହେବା ସତ୍ତ୍ୱେ ଶାସନକ୍ଷମତା ତାଙ୍କର ଅତ୍ୟନ୍ତ ଦୁର୍ବଳ ଥିଲା । କେବଳ ସେ କାହିଁକି, ତାଙ୍କ ମନ୍ତ୍ରିମଣ୍ଡଳର ଅଧିକାଂଶ ସଭ୍ୟଙ୍କ ଅବସ୍ଥା ସେଇଆ ଥିଲା । ତାର ପ୍ରଧାନ କାରଣ ଥିଲା କମ୍ୟୁନିଷ୍ଟ ଦଳ କେବେ ଶାସନକ୍ଷମତାକୁ ଆସି ନ ଥିଲେ । ତେଣୁ ଶାସନ ପରିଚାଳନା ଅଭିଜ୍ଞତା କାହାରି ନ ଥିଲା । ତାହା ଥିଲା କେରଳରେ କମ୍ୟୁନିଷ୍ଟ ଦଳର ସରକାର ଦୃଢ଼ ନ ହୋଇପାରିବାର ପ୍ରଥମ କାରଣ ।

ଶାସନକ୍ଷମତା ଗ୍ରହଣ କରିବା ପରେ ପରେ ସେମାନଙ୍କ ପାର୍ଟିର ମତବାଦ ପ୍ରଚାର କରିବା ଲାଗି କମ୍ୟୁନିଷ୍ଟ ଦଳ ଅତ୍ୟନ୍ତ ତତ୍ପର ହୋଇ ଉଠିଥିଲେ । ଭାରତୀୟ ସମ୍ବିଧାନର କେତେକ ଧାରା ( ଯଥା—ମୌଳିକ ଅଧିକାର ) ଉପରେ ମଧ୍ୟ

ସେମାନେ ସନ୍ଦେହ ପ୍ରକାଶ କରିଥିଲେ । ନିଜ ଦଳର ସ୍ୱାର୍ଥସାଧନ ଲାଗି ସରକାରୀ-କଳ ସମ୍ପୂର୍ଣ୍ଣ ରୂପେ ବ୍ୟବହାର କରାହେଉଥିଲା ଏବଂ ତାଙ୍କ ଦଳୀୟ ନୀତିକୁ ଅନୁସରଣ କରୁଥିବା ଲୋକଙ୍କୁ ପୋଲିସ୍‌ବାହିନୀରେ ନିଯୁକ୍ତି ଦିଆଯାଇଥିଲା । କମ୍ୟୁନିଷ୍ଟ ନୀତି ନିୟମ ଓ ଚିନ୍ତାଧାରାକୁ ବିଷୟବସ୍ତୁ ରୂପେ ଗ୍ରହଣ କରାଯାଇ ସ୍କୁଲର ଛୋଟ ଛୋଟ ପିଲାଙ୍କଠାରୁ ଆରମ୍ଭ କରି ଯୁବକଯୁବତୀମାନଙ୍କୁ ପ୍ରଭାବିତ କରାଇ ପାରିବା ଭଳି ରାଜ୍ୟସରକାର ଶିକ୍ଷା ନୀତି ଗ୍ରହଣ କରିଥିଲେ । ତା ଫଳରେ ଏପରି କି ପାଠ୍ୟ-ପୁସ୍ତକମାନଙ୍କରୁ ଭାରତୀୟ ଜାତୀୟ ସଂଗ୍ରାମର ଅଦ୍ୱିତୀୟ ନେତା ତଥା ଜାତିର ପିତା ଗାନ୍ଧିଜୀଙ୍କ ନାମ ଲୋପପାଇ ସେ ସ୍ଥାନ ଅଧିକାର କରିଥିଲେ ମାଓ-ସେ-ତୁଙ୍ଗ, ଷ୍ଟାଲିନ ଓ ଅନ୍ୟମାନେ । ସେମାନଙ୍କୁ ଦଳିତ ଜାତିର ରକ୍ଷକ ରୂପେ ବର୍ଣ୍ଣନା କରାଯାଇଥିଲା । ରାଜ୍ୟର ଶିକ୍ଷାସଂସ୍କାର ନାମରେ ପ୍ରସ୍ତାବ ଅଣାଯାଇ ରୋମାନ୍ କ୍ୟାଥଲିକ୍ ଓ ନାୟାର ସର୍ଭିସ୍ ସୋସାଇଟିର ଶିକ୍ଷାନୁଷ୍ଠାନଗୁଡ଼ିକ ଉପରେ ଅଯଥା ହସ୍ତକ୍ଷେପ କରାଯାଇଥିଲା ଓ ସେମାନଙ୍କ କାର୍ଯ୍ୟକ୍ରମଗୁଡ଼ିକୁ ସଙ୍କୁଚିତ କରାଇ ଦିଆ-ଯାଇଥିଲା । ତା ଫଳରେ ରୋମାନ୍ କ୍ୟାଥଲିକ୍ ଓ ନାୟାର ସର୍ଭିସ୍ ସୋସାଇଟି ହାତରେ ହାତ ମିଳାଇ ସରକାରଙ୍କ ପ୍ରତିରୋଧ କରିବାପାଇଁ ସଂକଳ୍ପ କରିଥିଲେ ।

ସେସବୁକୁ ବାଦ୍ ଦେଲେ ମଧ୍ୟ ଯେଉଁମାନେ ସରକାରଙ୍କ କାର୍ଯ୍ୟକଳାପର ସମାଲୋଚନା କରୁଥିଲେ, ବିନା ବିଚାରରେ ସେମାନଙ୍କୁ ଜେଲଦଣ୍ଡ ବା ଅଟକବନ୍ଦୀ ଭାବରେ ରଖା ଯାଉଥିଲା; ତେଣୁ କମ୍ୟୁନିଷ୍ଟ ସରକାରଙ୍କ ଅମଳରେ ଗିରଫଦାରୀ ଏକ ମାମୁଲି ଘଟଣା ହୋଇ ପଡ଼ିଥିଲା କେରଳରେ ।*

ସେ ପ୍ରକାର ପରିସ୍ଥିତିର ସମ୍ପୂର୍ଣ୍ଣ ସୁଯୋଗ ନେଇଥିଲେ କଂଗ୍ରେସର ସଭାନେତ୍ରୀ ଇନ୍ଦିରା । ସର୍ବପ୍ରଥମେ ନେତୃତ୍ୱ ଗ୍ରହଣ କରିସାରିବା ପରେ କେରଳ ପରିସ୍ଥିତିର ଅନୁଧ୍ୟାନ କରିବା ଲାଗି ସେ ନିଜେ ସେଠାକୁ ଯାଇଥିଲେ । କଂଗ୍ରେସ ଏକ ରାଜନୈତିକ ଦଳ ହିସାବରେ କେରଳରୁ କମ୍ୟୁନିଷ୍ଟ ସରକାରଙ୍କୁ କିପରି ଗାଦିଚ୍ୟୁତ କରିବ, ସେହି ସମୟ ଅପେକ୍ଷାରେ ଥିଲା ଓ ସୁଯୋଗ ଖୋଜୁଥିଲା । ଠିକ୍ ସେତିକିବେଳେ ଯେତେବେଳେ ସରକାରଙ୍କ କାର୍ଯ୍ୟକ୍ରମରେ ସାଧାରଣ ଜନତା ଉତ୍ତ୍ୟକ୍ତ ହୋଇ ଉଠୁଥିବାର ଇନ୍ଦିରା ଅନୁଭବ କରିଥିଲେ, ସେତିକିବେଳେ ସେ ପ୍ରଜା-ସମାଜବାଦୀ ଦଳ ସହିତ ବୁଝାମଣା କରି ରୋମାନ୍ କ୍ୟାଥଲିକ୍ ଓ ନାୟାର ସର୍ଭିସ୍ ସୋସାଇଟି ସହିତ ସମ୍ପର୍କ ସ୍ଥାପନ କରିଥିଲେ । ଉଦ୍ଦେଶ୍ୟ ସମସ୍ତଙ୍କର ଗୋଟିଏ ଥିଲା—କେରଳରୁ କମ୍ୟୁନିଷ୍ଟ ସରକାରଙ୍କୁ ଗାଦିଚ୍ୟୁତ କରିବେ ।

---

* କିଷ୍ଣା ହାଥୀ ସିଂଙ୍କ "Dear to Behold"ର ଷୋଡ଼ଶ ଅଧ୍ୟାୟ ଓ ମିଖାଇଲ ଆଲେକ୍‌ଜାଣ୍ଡରଙ୍କ "Indira Gandhi"ର ୧୯ ପୃଷ୍ଠା ଦ୍ରଷ୍ଟବ୍ୟ ।

କଂଗ୍ରେସର ସଭାନେତ୍ରୀ ଶ୍ରୀମତୀ ଗାନ୍ଧୀଙ୍କର ସେ ନିଷ୍ପତ୍ତି ଅତ୍ୟନ୍ତ ସମୟୋପଯୋଗୀ ଥିଲା । କେରଳ ବିଧାନସଭାର ପ୍ରଧାନ ବିରୋଧୀ ଦଳ ହିସାବରେ କଂଗ୍ରେସ ପରିଗଣିତ ହେଉଥିଲା ଓ କଂଗ୍ରେସ ରାଜ୍ୟ ସାରା ସରକାରବିରୋଧୀ ଆନ୍ଦୋଳନ ପାଇଁ ଆହ୍ୱାନ ଦେଉଥିଲା । ଗଣତାନ୍ତ୍ରିକ ପ୍ରଥାରେ କମ୍ୟୁନିଷ୍ଟ ସରକାରଙ୍କୁ ଗାଦିଚ୍ୟୁତ କରିବା ପାଇଁ ଯେଉଁ ରାଜ୍ୟବ୍ୟାପୀ ଆନ୍ଦୋଳନର ଆହ୍ୱାନ ଦିଆଯାଇଥିଲା, ତାହା ସମ୍ପୂର୍ଣ୍ଣ ଅହିଂସା ମାର୍ଗରେ ପରିଚାଳିତ ହେଉଥିଲା ।

ଦେଖୁ ଦେଖୁ ସମଗ୍ର ରାଜ୍ୟର ପ୍ରତ୍ୟେକ ସ୍ଥାନରେ ଆନ୍ଦୋଳନ, ସରକାର-ବିରୋଧୀ ଧ୍ୱନି ଦେଇ ଶୋଭାଯାତ୍ରା, ସଭା ଇତ୍ୟାଦି ଖୁବ୍ ସଂଗଠିତ ଭାବେ ଏବଂ ସଫଳ ଭାବେ ଅନୁଷ୍ଠିତ ହୋଇଥିଲା । କମ୍ୟୁନିଷ୍ଟ ସରକାର ସେ ଆନ୍ଦୋଳନକୁ ବ୍ୟର୍ଥ କରିଦେବା ପାଇଁ ତାହାଙ୍କର ସମସ୍ତ ଶକ୍ତି ବିନିଯୋଗ କରିଥିଲେ ମଧ୍ୟ ଫଳ କିଛି ଆଶାଜନକ ହୋଇପାରି ନ ଥିଲା । ପରିଣାମ ହୋଇଥିଲା ବିକ୍ଷୋଭକାରୀଙ୍କ ଉପରେ ଅକଥନୀୟ ଅତ୍ୟାଚାର, ଲାଠିମାଡ଼—ଏପରି କି କେତେ ଜଣ ନେତା ମଧ୍ୟ ପୋଲିସ୍ ଗୁଳିରେ ପ୍ରାଣ ହରାଇଥିଲେ । ରାଜ୍ୟରେ ସେ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଏ. ପଦ୍ମନାଭ ପିଲାଇ ।

ସେତେବେଳେ ଶ୍ରୀମତୀ ଗାନ୍ଧୀ ବିବୃତି ଦେଇ କହିଥିଲେ ଯେ କେରଳରେ କମ୍ୟୁନିଷ୍ଟ ସରକାରଙ୍କ ସମ୍ବିଧାନବିରୋଧୀ ମନୋଭାବ ଏବଂ ସରକାରୀ କଳର ଅପବ୍ୟବହାର ତଥା ନିଜ ଇଚ୍ଛା ମୁତାବକ ବ୍ୟବହାର କରିବା ସତ୍ତ୍ୱେ ସମଗ୍ର ରାଜ୍ୟର ବିଦ୍ରୋହର ନିଆଁକୁ ଲିଭାଇବା ଲାଗି ସରକାର ଅସମର୍ଥ ଏବଂ ରାଜ୍ୟର ଶାସନ କାର୍ଯ୍ୟ ଅଚଳ । ଅସଫଳ ରାଜ୍ୟ ଶାସନ ଯୋଗୁଁ କମ୍ୟୁନିଷ୍ଟ ସରକାରଙ୍କ ଉପରେ ଜନସାଧାରଣଙ୍କର ଆଉ ଆସ୍ଥା ନ ଥିଲା । ଏକ ନୂତନ ନିର୍ବାଚନର ସମ୍ମୁଖୀନ ହେବା ପାଇଁ ଓ ଜନସାଧାରଣଙ୍କ ମତାମତ ଜାଣିବାପାଇଁ ସବୁଠାରୁ ଉଚିତ ହେବ ବୋଲି ସେ କେନ୍ଦ୍ର ସରକାରଙ୍କୁ ପରାମର୍ଶ ଦେଇଥିଲେ ।

ଭାରତର ତତ୍କାଳୀନ ରାଷ୍ଟ୍ରପତି ଡଃ ରାଜେନ୍ଦ୍ରପ୍ରସାଦ କଂଗ୍ରେସ ସଭାପତିଙ୍କ ପରାମର୍ଶ ଗ୍ରହଣ କରିଥିଲେ ଓ କେରଳ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରି ସମ୍ବିଧାନର ୩୫୬ ଧାରା ଅନୁସାରେ ସେଠାର ଶାସନଭାର ନିଜ ହାତକୁ ନେଇ ଆସିଥିଲେ । ତାର କାରଣ ସ୍ୱରୂପ ସେ ଦର୍ଶାଇଥିଲେ ଯେ ରାଜ୍ୟରେ ଆନ୍ଦୋଳନ ଯେଉଁ ରୂପ ଧାରଣ କରିଥିଲା ଲୋକେ କେତେବେଳେ ଉତ୍ତ୍ୟକ୍ତ ହୋଇ ଦେଶର ଆଇନଶୃଙ୍ଖଳା ଭଙ୍ଗ କରିବା ସଙ୍ଗେ ସଙ୍ଗେ ହିଂସାକାଣ୍ଡମାନ ସଂଘଟିତ କରାଇବେ, ତାର କୌଣସି ନିର୍ଦ୍ଦିଷ୍ଟତା ନ ଥିଲା । ସେଇଥିପାଇଁ ରାଷ୍ଟ୍ରପତି ଶାସନର ଆବଶ୍ୟକତା ସେ ଅନୁଭବ କରିଥିଲେ ।

କେରଳ ରାଜ୍ୟର ଶାସନଦାୟିତ୍ୱ ରାଷ୍ଟ୍ରପତି ହାତକୁ ନେବାର ଛଅ ମାସ ପରେ କେନ୍ଦ୍ର ମନ୍ତ୍ରିମଣ୍ଡଳ ସେଠାରେ ମଧ୍ୟବର୍ତ୍ତିକାଳୀନ ନିର୍ବାଚନ କରାଇବା ଲାଗି ନିଷ୍ପତ୍ତି ଗ୍ରହଣ କରିଥିଲେ । କଂଗ୍ରେସ ଦଳର ନେତ୍ରୀ ହିସାବରେ ଶ୍ରୀମତୀ ଗାନ୍ଧୀଙ୍କର ପ୍ରଥମ କର୍ତ୍ତବ୍ୟ ଥିଲା ମଧ୍ୟବର୍ତ୍ତିକାଳୀନ ନିର୍ବାଚନରେ ଯେପରି କମ୍ୟୁନିଷ୍ଟ ଦଳ ସଂଖ୍ୟାଗରିଷ୍ଠତା ହାସଲ ନ କରେ ସେଥିପାଇଁ ଉଦ୍ୟମ କରିବା । ଅନ୍ୟ ଭାଷାରେ କହିବାକୁ ଗଲେ ସେତେବେଳର ପ୍ରଧାନ ବିରୋଧୀ ଦଳ ହିସାବରେ କାର୍ଯ୍ୟ କରୁଥିବା କଂଗ୍ରେସ ଦଳ କିପରି କ୍ଷମତାକୁ ଆସିବ ଓ ବିଧାନସଭାରେ ସଂଖ୍ୟାଗରିଷ୍ଠତା ହାସଲ କରିବ ସେଥିପାଇଁ ଚେଷ୍ଟା କରିବା । ନିର୍ବାଚନରେ କମ୍ୟୁନିଷ୍ଟ ଦଳକୁ ପରାଜିତ କରିବାପାଇଁ ୧୯୫୯ ଜୁଲାଇ ୩୧ ତାରିଖ ଦିନ କଂଗ୍ରେସ, ପ୍ରଜା-ସମାଜବାଦୀ ଦଳ ଓ ମୁସଲିମ ଲିଗ୍ ମିଳିତ ହୋଇ ଏକ ତ୍ରିଦଳୀୟ ମେଣ୍ଟ କରିବାପାଇଁ ଶ୍ରୀମତୀ ଇନ୍ଦିରା ନେତୃତ୍ୱ ନେଇଥିଲେ । ପ୍ରଜା-ସମାଜବାଦୀ ଦଳର ଅନ୍ତିମ ଲକ୍ଷ୍ୟଥିଲା ଗଣତାନ୍ତ୍ରିକ ସମାଜବାଦ ଏବଂ ତାହା ମଧ୍ୟ ଥିଲା କଂଗ୍ରେସ ଦଳର ପରମ ଉଦ୍ଦେଶ୍ୟ । ତା ବ୍ୟତୀତ ପଟ୍ଟାମ୍ ଥାନୁ ପିଲାଇଙ୍କ ଭଳି ବ୍ୟକ୍ତିତ୍ୱସମ୍ପନ୍ନ ନେତାଙ୍କ ଅଧିନାୟକତ୍ୱରେ ସେ ଦଳ ପରିଚାଳିତ ହେଉଥିଲା । କିନ୍ତୁ ମୁସଲିମ୍ ଲିଗ୍ ସହିତ ନିର୍ବାଚନ ବୁଝାମଣା କରିବା ଫଳରେ ଶ୍ରୀମତୀ ଇନ୍ଦିରା ସମାଲୋଚିତ ହୋଇଥିଲେ । ତାର କାରଣ ଅଖଣ୍ଡ ଭାରତ, ଭାରତ ଓ ପାକିସ୍ତାନ ହୋଇ ଜନ୍ମ ନେବା ମୂଳରେ ଥିଲା ମୁସଲିମ୍ ଲିଗ୍ । ୧୯୪୭ ମସିହା ପୂର୍ବ ଓ ପରେ ମଧ୍ୟ ମୁସଲିମ୍ ଲିଗ୍ ଦ୍ୱାରା ସଙ୍ଗଠିତ ସାଂପ୍ରଦାୟିକ ଦଙ୍ଗା ଓ ଅନ୍ୟାନ୍ୟ ଘଟଣାବଳୀର ଅଳିଭା ସ୍ମୃତି ଭାରତୀୟମାନଙ୍କ ମଧ୍ୟରେ ଗଭୀର ରେଖାପାତ କରିଥିଲା । ବିଶେଷ କରି ଉତ୍ତର ଭାରତରେ ସେମାନଙ୍କଦ୍ୱାରା ସଙ୍ଗଠିତ ହୋଇଯାଇଥିବା ବିଭିନ୍ନ ହିଂସାକାଣ୍ଡର ସ୍ମୃତି ଇନ୍ଦିରାଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସର ସେ ପ୍ରକାର କାର୍ଯ୍ୟକଳାପକୁ ଆଦୌ ସମର୍ଥନ କରିପାରି ନ ଥିଲା । ତେଣୁ ସେ ଦୁଃସାହସିକ ପଦକ୍ଷେପ ପାଇଁ ସମାଲୋଚିତ ହେବା ଆଦୌ ବିସ୍ମୟକର ନ ଥିଲା ।

ତେବେ କେରଳ ମୁସଲିମ୍ ଲିଗ୍‌ର ଉଦ୍ଦେଶ୍ୟ ଥିଲା ସେଠାରେ ଥିବା ସଂଖ୍ୟାଲଘୁ ସମ୍ପ୍ରଦାୟର ସ୍ୱାର୍ଥରକ୍ଷା । ସେଠାରେ ସ୍ଥାୟୀ ବସବାସ କରୁଥିବା ଖ୍ରୀଷ୍ଟିୟାନ୍‌ମାନଙ୍କର, "ଖ୍ରୀଷ୍ଟିୟାନ୍ କଂଗ୍ରେସ", ନାୟାରମାନଙ୍କର "ନାୟାର ସର୍ଭିସ୍ ସୋସାଇଟି", ହିନ୍ଦୁମାନଙ୍କର "ସାଧୁ ନାରାୟଣ ଧର୍ମ ପରିପାଳନା ସଙ୍ଘ" ଭଳି "ମୁସଲିମ୍ ଲିଗ୍" ମୁସଲମାନ ସମ୍ପ୍ରଦାୟର ସ୍ୱାର୍ଥରକ୍ଷା ଲାଗି ନିଜକୁ ନିୟୋଜିତ କରିଥିଲା ସମ୍ପୂର୍ଣ୍ଣଭାବେ । ତେଣୁ ସେ ଦଳ ସହିତ ନିର୍ବାଚନ ବୁଝାମଣା ବୋଧହୁଏ ଶ୍ରୀମତୀ ଗାନ୍ଧୀଙ୍କର ନିର୍ଭୁଲ ଥିଲା ।

ମଧ୍ୟବର୍ତ୍ତିକାଳୀନ ନିର୍ବାଚନରେ କେରଳର ଜନସାଧାରଣଙ୍କ ରାୟ ଏମିତି ପୃଥିବୀକୁ ସ୍ତମ୍ଭୀଭୂତ କରାଇ ଦେଇଥିଲା । କମ୍ୟୁନିଷ୍ଟ ଦଳ ଖୁବ୍ କମ୍ ଦିନ ତଳେ

ଶାସନ କ୍ଷମତାରେ ଥିଲେ ମଧ୍ୟ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ପରେ ପ୍ରଧାନ ବିରୋଧୀ ଦଳରୂପେ ରାଜ୍ୟ ବିଧାନସଭାକୁ ଆସିପାରି ନ ଥିଲା । ସେ ଦଳର ସଭ୍ୟସଂଖ୍ୟା ଆଶାତୀତ ଭାବେ ଷାଠିଏରୁ ଖସି ଆସିଥିଲା ଅଣତିରିଶକୁ । ମିଳିତ ସାମ୍ୟବାଦୀ ପାଇଥିଲେ ତେସ୍ତାନବେ ଆସନ । ସେ ମୁହୂର୍ତ୍ତର ଆନନ୍ଦ ବୋଧହୁଏ ଶ୍ରୀମତୀ ଗାନ୍ଧୀଙ୍କୁ ଅଭିଭୂତ କରି ଦେଇଥିବ ।

୧୯୭୦ ବାଙ୍ଗାଲୋର କଂଗ୍ରେସ ଅଧିବେଶନରେ ଶ୍ରୀ ସଞ୍ଜୀବ ରେଡ୍ଡି ଦଳର ଦାୟିତ୍ୱ ଶ୍ରୀମତୀ ଗାନ୍ଧୀଙ୍କଠାରୁ ଗ୍ରହଣ କରିଥିଲେ ।

ତାର ଅନେକ ବର୍ଷ ପରେ K. A. Abbasଙ୍କ ସହିତ ଏକ ସାକ୍ଷାତକାର ବେଳେ ଯେତେବେଳେ ସେ ପ୍ରଶ୍ନ କରିଥିଲେ ଯେ ଯଦି ପୁନଶ୍ଚ କେରଳରେ ଦ୍ୱିତୀୟଥର ପାଇଁ କମ୍ୟୁନିଷ୍ଟ ଦଳ ସଂଖ୍ୟାଗରିଷ୍ଠତା ହାସଲ କରିଆନ୍ତି, ତା ହେଲେ ତାର ପ୍ରତିକ୍ରିୟା ସ୍ୱରୂପ ଶ୍ରୀମତୀ ଗାନ୍ଧୀ କଅଣ କରିଥାନ୍ତେ ? ତାର ଉତ୍ତର ଦେଇ ସେ କହିଥିଲେ ଯେ ତାହା ସେଠା ସାଧାରଣ ଜନତାର ରାୟ ଓ ସେମାନେ ସେହି କମ୍ୟୁନିଷ୍ଟ ଦଳର ନୀତିକୁ ଭଲ ପାଆନ୍ତି ବୋଲି ଆନନ୍ଦର ସହିତ ଗ୍ରହଣ କରିଥାଆନ୍ତି ।

କଂଗ୍ରେସର ସଭାନେତ୍ରୀ ହିସାବରେ ପ୍ରକୃତରେ ତାହା ଥିଲା ଏକ ଦୁଃସାହସିକ ପଦକ୍ଷେପ । ଶ୍ରୀମତୀ ଇନ୍ଦିରା କୌଣସି କାର୍ଯ୍ୟ କରିବାକୁ ଗଲାବେଳେ ଯଦି ତାହାକୁ ଉପଯୁକ୍ତ ବୋଲି ହୃଦ୍‌ବୋଧ କରୁଥିଲେ ତାହା କାର୍ଯ୍ୟକାରୀ କରିବାକୁ ପଶ୍ଚାତ୍‌ପଦ ହେଉ ନ ଥିଲେ । ସେଇଥିପାଇଁ ଅନ୍ୟର ପରାମର୍ଶ ନେବାକୁ ସେ ପସନ୍ଦ କରୁ ନ ଥିଲେ । ଭାରତର ଅନେକ ବିଶିଷ୍ଟ ବ୍ୟକ୍ତି ମତ ଦେଉଥିଲେ ଓ ବର୍ତ୍ତମାନ ମଧ୍ୟ ମତ ଦେଉଛନ୍ତି ଯେ ଇନ୍ଦିରା ନିଜ କାର୍ଯ୍ୟ ନିର୍ବାହ ଲାଗି ପିତାଜୀଙ୍କ ପରାମର୍ଶ ନେଉଥିଲେ । କିନ୍ତୁ କେରଳ ସମସ୍ୟାର ସମାଧାନ ଲାଗି ବା ନିଜ କାର୍ଯ୍ୟ ସମ୍ପାଦନ ଲାଗି ସେ କସ୍ମିନ୍ କାଳେ ପିତାଜୀଙ୍କ ପରାମର୍ଶ ନେଇ ନ ଥିଲେ ବୋଲି ସ୍ୱୀକାର କରିଥିଲେ । ଇନ୍ଦିରା କଂଗ୍ରେସର କାର୍ଯ୍ୟନିର୍ବାହ ଅତି ସୁରୁଖୁରୁରେ ଓ ଦକ୍ଷତାର ସହିତ ପ୍ରତିପାଦନ କରିଥିଲେ । ପଣ୍ଡିତ ଜବାହରଲାଲଙ୍କ ଭାଷାରେ— "ଯେଉଁମାନେ ମୋତେ କିମ୍ବା ମୋର ନୀତିକୁ ପସନ୍ଦ କରନ୍ତି ନାହିଁ, ସେଭଳି ଲୋକଙ୍କ ନିକଟରୁ ମୁଁ ଶୁଣିଛି ଯେ ସେ (କଂଗ୍ରେସର) ସଭାନେତ୍ରୀ ଭାବେ ଖୁବ୍ ଉତ୍ତମ କାର୍ଯ୍ୟ କରିଥିଲା । ବେଳେବେଳେ ମୋ ଚିନ୍ତାଧାରା ଓ କାର୍ଯ୍ୟକଳାପର ଧାରାଠାରୁ ସମ୍ପୂର୍ଣ୍ଣ ପୃଥକ୍ ଭାବରେ ଅଥଚ ତାର ନିଜସ୍ୱ ଢଙ୍ଗରେ କେତେକ ଯୁକ୍ତିଯୁକ୍ତ କାର୍ଯ୍ୟପନ୍ଥା ଗ୍ରହଣ କରିଥିଲା ।" *

---

* As Reproduced in Indira Gandhi by M. K. Alexander—P-95

**ଖରା ମେଘେ ବଜ୍ରପାତ :—**

ରାଜନୈତିକ ଜୀବନର ସାଫଲ୍ୟକୁ ବାଦ୍ ଦେଲେ ଇନ୍ଦିରାଙ୍କ ପାରିବାରିକ ଜୀବନରେ ଚିରସ୍ମରଣୀୟ ହୋଇ ରହିବା ଭଳି ଦୁର୍ଘଟଣା ମଧ୍ୟ ସେହି ବର୍ଷ ଘଟି ଯାଇଥିଲା । କଂଗ୍ରେସର ନେତା ଭାବରେ ତାଙ୍କର କାର୍ଯ୍ୟ ନିର୍ବାହ କରିବାପାଇଁ ସେ ସୁଦୂର ନେପାଳ ଗସ୍ତ କରିଥିଲେ । ହଠାତ୍ ସେ ସମୟରେ ଇନ୍ଦିରା ଖବର ପାଇଥିଲେ ଯେ ତାଙ୍କ ସ୍ୱାମୀ ଫିରୋଜ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପଡ଼ିଛନ୍ତି । ସେ ଖବରରେ ସେ ନିଜକୁ ବିଶ୍ୱାସ ମଧ୍ୟ କରିପାରି ନ ଥିଲେ । କାରଣ ଫିରୋଜ ଖୁବ୍ ସ୍ୱାସ୍ଥ୍ୟବାନ୍ ଥିଲେ ଓ ପୂର୍ବରୁ କୌଣସି ରୋଗ-ଯନ୍ତ୍ରଣାର ଆଭାସ ସେ ପାଇ ନ ଥିଲେ । ହଠାତ୍ ସେ ଖବର ପାଇ ଇନ୍ଦିରା ବିଚଳିତ ହୋଇ ପଡ଼ିଥିଲେ ।

ଦୁଃସମ୍ବାଦ ପାଇବା ସଙ୍ଗେ ସଙ୍ଗେ ଶ୍ରୀମତୀ ଗାନ୍ଧୀ ତାଙ୍କର ଅନ୍ୟାନ୍ୟ ସମସ୍ତ କାର୍ଯ୍ୟକ୍ରମକୁ ବାତିଲ୍ କରିଦେଇ ଦିଲ୍ଲୀ ଫେରି ଆସିଥିଲେ ଓ ଫିରୋଜଙ୍କ ସେବାରେ ନିଜକୁ ସମ୍ପୂର୍ଣ୍ଣରୂପେ ନିୟୋଜିତ କରିଥିଲେ । କିଛି ଦିନର ଅକ୍ଳାନ୍ତ ସେବା ଓ ଅଭିଜ୍ଞ ଡାକ୍ତରମାନଙ୍କ କଠିନ ପରିଶ୍ରମ ଫଳରେ ଫିରୋଜ ଆରୋଗ୍ୟ ଲାଭ କରିଥିଲେ । ଯେତେବେଳେ ସେ ଟିକିଏ ସୁସ୍ଥତା ଅନୁଭବ କରିଥିଲେ, ଇନ୍ଦିରା ଡାକ୍ତରମାନଙ୍କ ପରାମର୍ଶକ୍ରମେ ଦୁଇ ପୁଅଙ୍କୁ ନେଇ ସ୍ୱାମୀଙ୍କ ସହିତ ଜଳବାୟୁ ପରିବର୍ତ୍ତନ ଲାଗି କାଶ୍ମୀର ଯାଇଥିଲେ । ସେଠାକାର ଉତ୍ତମ ଜଳବାୟୁର ପ୍ରଭାବ, ଇନ୍ଦିରାଙ୍କ ସେବା ଓ ନିଜର ପ୍ରବଳ, ଦୃଢ଼ ଇଚ୍ଛାଶକ୍ତି ଫଳରେ କମ୍ ଦିନ ମଧ୍ୟରେ ପୂର୍ଣ୍ଣ ସ୍ୱାସ୍ଥ୍ୟ ଫେରି ପାଇଥିଲେ ଫିରୋଜ । ବାସ୍ତବିକ୍ ସେଇ କେତେ ଦିନ ସେମାନେ ଆରାମ କରିଥିଲେ । ଇନ୍ଦିରାଙ୍କ ଭାଷାରେ—"We had a nearly perfect holiday." କାଶ୍ମୀରରେ ଆନନ୍ଦରେ ବିତାଇଥିବା ଦିନଗୁଡ଼ିକ ସମ୍ପର୍କରେ ଭାରତର ଜଣେ ବିଶିଷ୍ଟ ଔପନ୍ୟାସିକ ଓ ଜୀବନୀକାର କେ. ଏ. ଆବାସ୍ ମତ ଦେଇଥିଲେ ଯେ ରାଜନୀତିରେ ନିଜ ନିଜକୁ ଅନେକ ବର୍ଷ ସମ୍ପୂର୍ଣ୍ଣରୂପେ ଜଡ଼ିତ ରଖିବା ପରେ ତାହାଥିଲା ଶ୍ରୀମତୀ ଗାନ୍ଧୀ ଓ ଫିରୋଜ ଗାନ୍ଧୀଙ୍କ ଲାଗି "ଦ୍ୱିତୀୟ ମଧୁବାସର" ବିତାଇବା ଅବକାଶ ।*

ସମ୍ପୂର୍ଣ୍ଣରୂପେ ଆରୋଗ୍ୟ ଲାଭ କରିସାରିବା ପରେ ଓ ତାଙ୍କ ପୂର୍ବ ସ୍ୱାସ୍ଥ୍ୟ ଫେରିପାଇବା ପରେ ସମସ୍ତେ ପୁଣି ଫେରି ଆସିଥିଲେ କର୍ମସ୍ଥଳୀକୁ । ରାଜୀବ ଓ ସଞ୍ଜୟ ଶିକ୍ଷା ଲାଭ କରିବାପାଇଁ ପୁଣି ଫେରି ଯାଇଥିଲେ ଡେରାଡୁନ୍ ।

---

* K. A. Abbas :—Return of the red rose, P. 129.

ପ୍ରକୃତରେ ଯେଉଁମାନେ କର୍ମୀ ସେମାନେ କୌଣସି ସମୟରେ ସ୍ଥିର ହୋଇ ବସିରହି ପାରନ୍ତି ନାହିଁ । ତେଣୁ ଦିଲ୍ଲୀ ଫେରିଆସିବା ପରେ ଉଭୟେ ଇନ୍ଦିରା ଓ ଫିରୋଜ ଯେ ଯାହାର କର୍ମଧନ୍ଦା ଭିତରେ ନିଜକୁ ହଜେଇ ଦେଇଥିଲେ । ଫିରୋଜ ଥିଲେ ପାର୍ଲ୍ୟାମେଣ୍ଟର ଜଣେ ସକ୍ରିୟ ସଭ୍ୟ ଏବଂ ଇନ୍ଦିରାଙ୍କ ଉପରେ ଥିଲା କଂଗ୍ରେସ ଅନୁଷ୍ଠାନର ଦାୟିତ୍ୱ । ତେଣୁ ପୂର୍ବଭଳି ଯେ ଯାହାର କାର୍ଯ୍ୟନିର୍ବାହ ଲାଗି ତତ୍ପର ହୋଇ ଉଠିଥିଲେ ।

ହୁଏତ ହୋଇପାରେ ଭାଗ୍ୟର ବିଡ଼ମ୍ବନା । ପୂର୍ବ ସ୍ୱାସ୍ଥ୍ୟ ଫେରିପାଇବା ପରେ ମଧ୍ୟ ଫିରୋଜ ପୁଣି ଥରେ ଗୁରୁତର ଭାବେ ଆକ୍ରାନ୍ତ ହୋଇ ପଡ଼ିଥିଲେ ସେଇ ହୃଦ୍‌ରୋଗରେ । ସେଥର କିନ୍ତୁ ଏ ପାର୍ଥିବ ପୃଥିବୀ ଫିରୋଜଙ୍କୁ ଅଟକାଇ ରଖିପାରି ନ ଥିଲା ।

୧୯୬୦ ମସିହା ସେପ୍ଟେମ୍ବର ଦୁଇ ତାରିଖରେ ଫିରୋଜ ତାଙ୍କ ଛାତିରେ ସାମାନ୍ୟ ଯନ୍ତ୍ରଣା ଅନୁଭବ କରିଥିଲେ । ଡାକ୍ତରମାନେ ପରୀକ୍ଷା କରି ତାଙ୍କୁ ସମ୍ପୂର୍ଣ୍ଣ ବିଶ୍ରାମ ନେବାପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ଫିରୋଜ ସେଥିରେ ସେତେଟା ଗୁରୁତ୍ୱ ନ ଦେଇ ଲୋକସଭା ଅଧିବେଶନଗୁଡ଼ିକରେ ଯୋଗ ଦେଇଥିଲେ । ତାର ପାଞ୍ଚ ଦିନ ପରେ ସେପ୍ଟେମ୍ବର ସାତ ତାରିଖରେ ସେ ଯନ୍ତ୍ରଣା ବୃଦ୍ଧି ପାଇବା ଯୋଗୁଁ ଡାକ୍ତରଙ୍କୁ ଫୋନ୍ କରିଥିଲେ ଓ ନିଜେ ୱିଲିଂଡନ୍ ନର୍ସିଂହୋମକୁ ଗାଡ଼ି ଚଲାଇ ଯାଇଥିଲେ ଏକା ଏକା । ସେଠାରେ ଫିରୋଜ ଦ୍ୱିତୀୟଥର ପାଇଁ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପଡ଼ିଥିଲେ ଗୁରୁତର ଭାବେ ।

ସେତେବେଳେ ଇନ୍ଦିରା ଥିଲେ କେରଳ ଗସ୍ତରେ । ସେ ଦୁଃସମ୍ବାଦ ପାଇବା ସଙ୍ଗେ ସଙ୍ଗେ ଦିଲ୍ଲୀ ଫେରି ଆସିଥିଲେ ଏବଂ ସମସ୍ତ ରାତି ଫିରୋଜଙ୍କ ଶଯ୍ୟା ନିକଟରେ ଅତି ଉଦ୍‌ବିଗ୍ନ ହୋଇ ସେ ବସି ରହିଥିଲେ । କିନ୍ତୁ ଫିରୋଜଙ୍କ ଅବସ୍ଥାର କୌଣସି ଉନ୍ନତି ହୋଇ ନ ଥିଲା । ସେପ୍ଟେମ୍ବର ଆଠ ତାରିଖ, ୧୯୬୦ ମସିହା ଭୋରରେ ଫିରୋଜ ସମସ୍ତ ସାଂସାରିକ ବନ୍ଧନ ଛିନ୍ନ କରି ସମସ୍ତଙ୍କଠାରୁ ଦୂରେଇ ଯାଇଥିଲେ ଚିରଦିନ ପାଇଁ । ଫିରୋଜଙ୍କ ଜୀବନ-ଦୀପ ନିର୍ବାପିତ ହେବା ବେଳକୁ ତାଙ୍କ ହାତମୁଠା ଭିତରେ ରହିଥିଲା ତାଙ୍କ ସ୍ତ୍ରୀ ଇନ୍ଦିରାଙ୍କ ହାତ ।

ସେ ଦୁର୍ଘଟଣା ପରେ ପରେ ରାଜୀବ ଓ ସଞ୍ଜୟ ଡେରାଡୁନରୁ ଆସିଥିଲେ ।

ଫିରୋଜ ତାଙ୍କ ମୃତ୍ୟୁ ପୂର୍ବରୁ ଅନ୍ତିମ ଅଭିଳାଷ ପ୍ରକାଶ କରି କହିଥିଲେ ଯେ ତାଙ୍କ ଶବ ହିନ୍ଦୁ ପ୍ରଥା ଅନୁଯାୟୀ ସତ୍କାର ହେବା ବିଧାନ୍ତ । ଫିରୋଜ ପ୍ରକୃତରେ ଥିଲେ ଜଣେ ପାର୍ସୀ ଯୁବକ । ସେମାନଙ୍କ ପ୍ରଥାନୁସାରେ ମୃତ୍ୟୁ ପରେ ସେମାନଙ୍କ

ଶବ ସତ୍କାର କରା ନ ଯାଇ ଉଚ୍ଚ ଉଚ୍ଚ ଗମ୍ବୁଜ ( Towers of Sil nce ) ମାନଙ୍କରେ ରଖି ଦିଆଯାଉଥିଲା । ଉଦ୍ଦେଶ୍ୟ, ସେ ଶବକୁ ଚିଲ ଓ ଶାଗୁଣାମାନେ ତୃପ୍ତି ଭୋଜନ କରିବା ପରେ ପରେ ଚଞ୍ଚୁଚ୍ୟୁତ ଉଚ୍ଛିଷ୍ଟାଂଶ ନେଇ ସାଗରବକ୍ଷରେ ନିକ୍ଷେପ କରାଯିବା । ଫିରୋଜ ଜଣେ ପାର୍ସୀ ଯୁବକ ଥିଲେ ମଧ୍ୟ ଇନ୍ଦିରାଙ୍କୁ ବିବାହ କରିବା ପୂର୍ବରୁ ସେ ହିନ୍ଦୁଧର୍ମ ଗ୍ରହଣ କରି ସାରିଥିଲେ । ତାଙ୍କ ମୃତ୍ୟୁ ପରେ ପାର୍ସୀମାନଙ୍କ ପ୍ରଥା ଅନୁଯାୟୀ କାଳେ ତାଙ୍କ ଶବକୁ ଚିଲ-ଶାଗୁଣାଙ୍କ ତୃପ୍ତି ଭୋଜନ ଲାଗି ବ୍ୟବସ୍ଥା କରି ଦିଆଯିବ, ସେଇ ଆଶଙ୍କାରେ ସେ ଅନୁରୋଧ କରିଥିଲେ ଯେ ହିନ୍ଦୁ ପ୍ରଥା ଅନୁଯାୟୀ ଶବସତ୍କାର ହେବା ସେ ଚାହୁଁଥିଲେ ।

ଫିରୋଜଙ୍କ ମୃତ୍ୟୁକାଳୀନ ଇଚ୍ଛା ପୂର୍ଣ୍ଣ କରାଯାଇଥିଲା । ହିନ୍ଦୁ ପ୍ରଥା ଅନୁଯାୟୀ ଫିରୋଜଙ୍କ ଶବକୁ ସତ୍କାର କରାଯାଇଥିଲା । ଜ୍ୟେଷ୍ଠ ପୁତ୍ର ରାଜୀବ ମୃତ ପିତାଙ୍କ ଶବସତ୍କାର ପାଇଁ ମୁଖାଗ୍ନି ଦେଇଥିଲେ । ସେତେବେଳେ ତାଙ୍କର ବୟସ ହୋଇଥିଲା ଷୋହଳ ।

ଜୀବିତାବସ୍ଥାରେ ଫିରୋଜ ଯେତେ ସମ୍ମାନ ପାଉଥିଲେ, ମୃତ୍ୟୁ ପରେ ତାଙ୍କର ସୁନାମ ଶତଗୁଣିତ ହୋଇଯାଇଥିଲା । ପ୍ରକୃତରେ ସେ ଥିଲେ ଜଣେ ଦକ୍ଷ ରାଜନୈତିକ କର୍ମୀ ଓ ପାର୍ଲ୍ୟାମେଣ୍ଟ ସଭ୍ୟ । ତାଙ୍କ ମୃତ୍ୟୁରେ ସେତେବେଳର ପ୍ରଜା-ସମାଜବାଦୀ ଦଳର ନେତା ତଥା ପ୍ରଖ୍ୟାତ ରାଜନୀତିଜ୍ଞ ଶ୍ରୀଯୁକ୍ତ ଅଶୋକ ମେହେଟ୍ଟା କହିଥିଲେ ଯେ ଜଣେ କର୍ମବୀରଙ୍କୁ ମୃତ୍ୟୁ ଟାଣିନେଇଛି ଦୁଃସ୍ଥ ଜନତାଙ୍କ ନିକଟରୁ । ଫିରୋଜଙ୍କ ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଶ୍ରୀ ମେହେଟ୍ଟା ପ୍ରକାଶ କରିଥିଲେ— "ଜଣେ ବଳିଷ୍ଠ ସଭ୍ୟ ଓ ଦୁଃସ୍ଥ ଜନତା ପାଇଁ ଅକ୍ଳାନ୍ତ ସେବା ଭାବାପନ୍ନ ସଭ୍ୟଙ୍କୁ ମୃତ୍ୟୁ ପାର୍ଲ୍ୟାମେଣ୍ଟଠାରୁ ବଳାତ୍କାରରେ ଟାଣିନେଇ ଯାଇଛି । ଗରିବ ଲୋକଙ୍କ ପାଇଁ ତାଙ୍କ ସମ୍ବେଦନାର ସୀମା ନ ଥିଲା ।"†

ପୃଥିବୀବିଖ୍ୟାତ ଦାର୍ଶନିକ ଓ ଭାରତର ରାଷ୍ଟ୍ରପତି ଡଃ ରାଧାକୃଷ୍ଣନ୍ ମତବ୍ୟକ୍ତ କରି କହିଥିଲେ—"ମୃତ୍ୟୁ ପୂର୍ବରୁ କିଛିକାଳ ଧରି ଫିରୋଜ ଗାନ୍ଧୀ ପାର୍ଲ୍ୟାମେଣ୍ଟରେ ଜଣେ ଅତି ଶକ୍ତିଶାଳୀ ସଦସ୍ୟ ଥିଲେ । ଯେଉଁ ବିଷୟରେ ସେ କାର୍ଯ୍ୟ କରିବାପାଇଁ ମନସ୍ଥ କରୁଥିଲେ ସେଥିପାଇଁ ଅକ୍ଳାନ୍ତ ପରିଶ୍ରମ କରୁଥିବାରୁ ସେହି କାର୍ଯ୍ୟରେ ତାଙ୍କ ବଳିଷ୍ଠ ଅବଦାନ ରହୁଥିଲା । ଅତି ଦୁର୍ଭାଗ୍ୟର ବିଷୟ ଯେ ସେ ଅତି କମ୍ ବୟସରେ ମୃତ୍ୟୁବରଣ କରିଥିଲେ । ନଚେତ୍ ଜୀବନରେ ନିଶ୍ଚୟ ଉଲ୍ଲେଖଯୋଗ୍ୟ ଉନ୍ନତି ହାସଲ କରିପାରି ଥାଆନ୍ତେ ।"††

---

† M. K. Alexander—Indira Gandhi, P 02

†† K. A Abbas—Return of the red rose. P-130.

ଡଃ ରାଧାକୃଷ୍ଣନ୍ ପୁଣି ମତ ଦେଇଥିଲେ ଯେ, ଫିରୋଜ ଯେଉଁ ବିଷୟ ହାତକୁ ନେଉଥିଲେ ସେଥିପାଇଁ ଅତ୍ୟନ୍ତ ପରିଶ୍ରମ କରୁଥିଲେ । ଯଦି ଏତେ କମ୍ ବୟସରେ ତାଙ୍କର ମୃତ୍ୟୁ ହୋଇ ନ ଥାନ୍ତା ତାହେଲେ ହୁଏତ ଦେଶର ଅନେକ ମଙ୍ଗଳ ହୋଇ ପାରିଥାନ୍ତା । ତେବେ ମାତ୍ର ୪୬ ବର୍ଷ ବୟସରେ ବୈଧବ୍ୟ ଯନ୍ତ୍ରଣାର ଶିକାର ହୋଇ ଶ୍ରୀମତୀ ଇନ୍ଦିରା ଅତ୍ୟନ୍ତ ଅସହାୟ ମନେକରିବା ସ୍ୱାଭାବିକ କଥା । ସେ କୌଣସି ପ୍ରକାର ଶାନ୍ତି ପାଇପାରି ନ ଥିଲେ । ଜୀବନର ମଧ୍ୟାହ୍ନରେ ସ୍ୱାମୀଙ୍କୁ ହରାଇ ଦୃଢ଼ମନା ଇନ୍ଦିରା ବିଚଳିତା ହୋଇ ପଡ଼ିଥିଲେ । ହୃଦୟ ମଧ୍ୟରେ ଅନେକ ଶୂନ୍ୟସ୍ଥାନ ରହିଲା ଭଳି ମନେ ହୋଇଥିଲା । ମନ ଖୁବ୍ ହାଲୁକା ହାଲୁକା ଅନୁଭବ କରିଥିଲେ; ଅତ୍ୟନ୍ତ ନିଃସ୍ୱ ଓ ନିଃସଙ୍ଗ ମନେକରିଥିଲେ ନିଜକୁ । ତାଙ୍କର ଜଣେ ମିତ୍ରଙ୍କ ନିକଟକୁ ସେ ଲେଖିଥିଲେ ଯେ ଫିରୋଜଙ୍କ ମୃତ୍ୟୁରେ ସେ ଏପରି ଅନୁଭବ କରୁଛନ୍ତି ଯେ ପ୍ରକୃତରେ ସେ "Lost···desolate and dead inside."*

□ □ □

* K. A. Abbas– Return of the red rose, P-130.

## ॥ ଚଉଦ ॥

# ଭାରତରତ୍ନର ମୃତ୍ୟୁ



ଦୁଃଖ ସବୁ ଅକସ୍ମାତ୍ ଆସେ । ଥରେ ଦୁଃଖ ମଣିଷ ନିକଟକୁ ଆସିଲେ ତାର ଜୀବନର ସହଚରୀ ହୋଇ ରହିଯିବାକୁ ମନେକରେ । ଛାଡ଼ିଯିବା ପାଇଁ ଯେମିତି ତାର ଇଚ୍ଛା ହୁଏନା । ସେଥିପାଇଁ ଯଥାର୍ଥରେ କୁହାଯାଇଥାଏ, ଦୁଃଖ ଯେତେବେଳେ ଆସେ ସାଥିରେ ତାର ସାଙ୍ଗସାଥୀମାନଙ୍କୁ ନେଇ ଆସିଥାଏ ମଣିଷ-ହୃଦୟର ବେଦନାର ଭାରକୁ ଆଉ ଟିକଏ ଅଧିକ ଭାରାକ୍ରାନ୍ତ କରିବାପାଇଁ ।

ଫିରୋଜଙ୍କ ମୃତ୍ୟୁ କେବଳ ଇନ୍ଦିରାଙ୍କୁ ଅତ୍ୟନ୍ତ ଅସହାୟ ଅବସ୍ଥାରେ ଛାଡ଼ି ଦେଇ ନ ଥିଲା, ସମଗ୍ର ଭାରତବାସୀଙ୍କୁ ଦୁଃଖରେ ଭସାଇ ଦେଇଥିଲା । ସେଇଥିପାଇଁ ଜବାହରଲାଲ କହିଥିଲେ, "ମୁଁ ଜାଣି ନ ଥିଲି ଯେ ଫିରୋଜ ଏତେ ଲୋକପ୍ରିୟ ଥିଲେ, ଭାରତର ଦୁଃସ୍ଥ ଜନସାଧାରଣଙ୍କ ପାଇଁ ଏତେ ହିତସାଧନ କରିପାରୁଥିଲେ ।" ସବୁଠାରୁ ବେଶୀ ଯନ୍ତ୍ରଣାଦାୟକ ଥିଲା, ସେ ଯୁବକାବସ୍ଥାରେ ହିଁ ଏ ପୃଥିବୀ ପରିତ୍ୟାଗ କରିଥିଲେ ।

**ଜନସେବାର ଯଜ୍ଞବେଦୀରେ :—**

ବେଦନାବିଧୁରା ଇନ୍ଦିରା ସେ ମାନସିକ କ୍ଲାନ୍ତିରୁ ମୁକ୍ତି ପାଇବାପାଇଁ ବାଛି ନେଇଥିଲେ ମାତ୍ର ଗୋଟିଏ ଢଙ୍ଗ—କର୍ମଜଞ୍ଜାଳ ଭିତରେ ନିଜକୁ ସମ୍ପୂର୍ଣ୍ଣରୂପେ ହଜାଇଦେବା । କାରଣ ଓଡ଼ିଆ କବି ଦେଶସେବକ ଉତ୍କଳମଣି ଗୋପବନ୍ଧୁଙ୍କ ପରି "କର୍ମେ ଜୀଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ"କୁ ଉଚିତ ମାର୍ଗ ବୋଲି ଧରିନେଇ ସେ ଚାହିଁଥିଲେ ସମୟକୁ ଢିଲାଢାଲା କରି ହତ୍ୟା ନ କରି ତାର ସଦୁପଯୋଗ କରିବାପାଇଁ; ଜୀବନର ସମସ୍ତ ବେଦନାକୁ ବଳାତ୍କାରରେ ଦୂର କରିବାକୁ ଚାହିଁଥିଲେ 'କର୍ମ'କୁ ସେ ସ୍ଥାନର ଅଧିକାରୀ କରାଇ ।

ଶ୍ରୀମତୀ ଇନ୍ଦିରା, କଂଗ୍ରେସ ଦଳର କେନ୍ଦ୍ରୀୟ ନିର୍ବାଚନ କମିଟିର ସଭ୍ୟା ନିର୍ବାଚିତ ହୋଇଥିଲେ—ଦେଶର ବିଭିନ୍ନ ନିର୍ବାଚନମଣ୍ଡଳୀଗୁଡ଼ିକ ପାଇଁ କଂଗ୍ରେସ ତରଫରୁ ପ୍ରାର୍ଥୀ ମନୋନୟନ କରିବା ଲାଗି । ତତ୍ ସଙ୍ଗେ ସଙ୍ଗେ ସେ କେନ୍ଦ୍ରୀୟ ପାର୍ଲ୍ୟାମେଣ୍ଟାରୀ ବୋର୍ଡ଼ର ସଭ୍ୟା ଭାବେ ମଧ୍ୟ ନିର୍ବାଚିତା ହୋଇଥିଲେ । ସେଥିପାଇଁ ମନପ୍ରାଣ ଢାଳି ଦେଇ ଦଳର ଓ ଦେଶର ଉପକାର ଲାଗି ନିଜକୁ ନିୟୋଜିତ କରିଥିଲେ । ତେବେ ସେ ତାଙ୍କର ସର୍ବପ୍ରଥମ ଓ ପ୍ରଧାନ କାର୍ଯ୍ୟ ବୋଲି ମନେକରୁଥିବା ପିତାଜୀଙ୍କ ସେବା-ପ୍ରଥମେ ସମ୍ପାଦନ କରୁଥିଲେ । ୧୯୬୧ ମସିହାରେ ସେ ପୁଣି ଆମେରିକା ଗସ୍ତରେ ଯାଇଥିଲେ ମଧ୍ୟ ୧୯୪୯ ଭଳି ସେଥର ସେ ଅନୁଭବ କରି ନ ଥିଲେ ସେପରି ଯୁବତୀସୁଲଭ ଚପଳତା ।*

ସେତେବେଳେ ଶ୍ରୀମତୀ ଇନ୍ଦିରା ପ୍ୟାରିସ୍‌ଠାରେ ଜାତିସଂଘର ଶିକ୍ଷା, ବିଜ୍ଞାନ ଓ ସାଂସ୍କୃତିକ ସଂଗଠନରେ ଭାରତୀୟ ଦଳର ସଦସ୍ୟା ନିଯୁକ୍ତ ହୋଇଥିଲେ ଓ ସେ ସଂଗଠନର ସଦସ୍ୟା ଭାବେ ୧୯୬୦ ନଭେମ୍ବର ୮ରୁ ୧୯୬୪ ମସିହା ପର୍ଯ୍ୟନ୍ତ ଦୀର୍ଘ ଚାରି ବର୍ଷ କାଳ ରହି ଖ୍ୟାତି ଅର୍ଜନ କରିଥିଲେ । ଏପରି କି ପରେ ପରେ ସେହି ସଂଗଠନର କାର୍ଯ୍ୟକାରୀ କମିଟିର ଜଣେ ସଦସ୍ୟା ହିସାବରେ ମଧ୍ୟ ସେ ନିର୍ବାଚିତ ହୋଇଥିଲେ ।

ଇତିହାସର ପୁନରାବୃତ୍ତି ହେବା ଭଳି ପୁଣି ଥରେ ଭାରତରେ ଜାତିଗତ ଭେଦଭାବ ସୃଷ୍ଟି ହୋଇଥିଲା ଜବଲପୁରଠାରେ । କଂଗ୍ରେସର କୌଣସି ନେତୃସ୍ଥାନୀୟ ବ୍ୟକ୍ତି ବା କଂଗ୍ରେସ ଦଳର କୌଣସି ଉଚ୍ଚ କର୍ମକର୍ତ୍ତା ସେ ପରିସ୍ଥିତିର ମୁକାବିଲା କରିବାପାଇଁ କିମ୍ବା ସେ ଦୁର୍ଘଟଣାର କାରଣ ଅନୁଧ୍ୟାନ କରିବାକୁ ଯିବା ପୂର୍ବରୁ ଶ୍ରୀମତୀ ଇନ୍ଦିରା ଯାଇ ସେଠାରେ ଉପସ୍ଥିତ ହୋଇ ସାରିଥିଲେ । ପିତାଜୀଙ୍କ 'ନିର୍ଭୀକମନା' ଗୁଣର ଅଧିକାରୀ ଇନ୍ଦିରା ବିନା ଅସ୍ତ୍ରଶସ୍ତ୍ରରେ ବା ବିନା ଦେହରକ୍ଷୀଙ୍କ ସହାୟତାରେ ଯେ କୌଣସି ସ୍ଥାନରେ ଦଙ୍ଗାହାଙ୍ଗାମ ହେଉଥିବାର ଖବର ପାଇବା ମାତ୍ରେ ସେଠାକୁ ଚାଲି ଯାଉଥିଲେ । ସେଥିରେ ହିଁ ତାଙ୍କର ବ୍ୟକ୍ତିତ୍ୱ ନିହିତ ଥିଲା । ଠିକ୍ ସେଇ ଭାବରେ ହିଁ ୧୯୪୭ ମସିହାରେ ଜନତାର ସେବା କରିଥିଲେ ସାଂପ୍ରଦାୟିକ ଦଙ୍ଗା ବେଳେ । ପ୍ରଥମେ ଜବଲପୁରଠାରେ ପହଞ୍ଚି ସେଠିକାର ଅଶାନ୍ତ ଓ ବିଷାକ୍ତ ବାୟୁମଣ୍ଡଳକୁ ସୁଧାରିବା ପାଇଁ ଯଥାସମ୍ଭବ ଚେଷ୍ଟା କରିଥିଲେ ଏବଂ ଚେଷ୍ଟା କରିଥିଲେ ସେଠାରେ ବସବାସ କରି ରହୁଥିବା ସଂଖ୍ୟାଲଘୁ ମୁସଲମାନଙ୍କ ସୁରକ୍ଷା ପାଇଁ । ସେ ପରିସ୍ଥିତିରେ ଇନ୍ଦିରାଙ୍କ ଉପସ୍ଥିତି ସେଠାରେ ଥିବା ମୁସଲମାନମାନଙ୍କୁ ଅନେକ ପରିମାଣରେ ଧୈର୍ଯ୍ୟ ଓ ସାହସ ଯୋଗାଇଥିଲା । ଇନ୍ଦିରା

* Krishna Hathee Sing—We Nehrus, P-260.

ଯଥାସମ୍ଭବ ଦଙ୍ଗାଗ୍ରସ୍ତ ଅଞ୍ଚଳର ଲୋକଙ୍କ ନିକଟକୁ ଯାଉଥିଲେ ଓ ସେମାନଙ୍କ ଧନଜୀବନର ନିରାପତ୍ତା ଲାଗି କୌଣସି ଆଶଙ୍କା ନ କରିବାପାଇଁ ଓ ଧୈର୍ଯ୍ୟଚ୍ୟୁତ ନ ହେବା ଲାଗି ପ୍ରେରଣା ଦେଉଥିଲେ । ତତ୍ ସଙ୍ଗେ ସଙ୍ଗେ ପୋଲିସ୍‌କୁ ମଧ୍ୟ ସଂଖ୍ୟାଲଘୁ ସଂପ୍ରଦାୟର ଧନଜୀବନ ରକ୍ଷା କରିବା ଲାଗି ସମସ୍ତ ପ୍ରକାର ସାହାଯ୍ୟ କରିବାପାଇଁ ପରାମର୍ଶ ଦେଇଥିଲେ ।

ଇତିମଧ୍ୟରେ ଦୁଇ ଜଣ ପାର୍ଲ୍ୟାମେଣ୍ଟ ସଦସ୍ୟ ଶ୍ରୀମତୀ ସୁଭଦ୍ରା ଯୋଶୀ ଓ ବେଗମ୍ ଅନିସ୍ କିଦ୍‌ୱାଇ ସେଠାରେ ଅଶାନ୍ତ ବାତାବରଣ ସମ୍ପର୍କରେ ଅନୁସନ୍ଧାନ କରିବାକୁ ଯାଇଥିଲେ । ସେଠାରେ ପହଞ୍ଚି ସେମାନେ ଖବର ପାଇଥିଲେ ଯେ ଶ୍ରୀମତୀ ଗାନ୍ଧୀ ସେମାନଙ୍କ ଅନେକ ପୂର୍ବରୁ ସେଠାରେ ପହଞ୍ଚି ସାରିଥିଲେ ।

ଅବସ୍ଥା ଟିକିଏ ଶାନ୍ତ ପଡ଼ିବା ପରେ ସେଠାରୁ ସେ ଫେରିଆସିବା ଲାଗି ନିଷ୍ପତ୍ତି କରିଥିଲେ । ପିତାଜୀଙ୍କୁ ସେଠା ଅବସ୍ଥା ବିଷୟରେ ଅବଗତ କରାଇବା ଲାଗି ଫେରି ଆସିବା ବେଳେ ସେଠିକାର ଲୋକଙ୍କୁ କହି ଆସିଥିଲେ—ଆପଣମାନେ ଯଦି କେତେବେଳେ ନୂତନ ବିପଦର ସମ୍ମୁଖୀନ ହୁଅନ୍ତି, ମତେ ଖବର ପଠାଇବେ ।

ବାସ୍ତବିକ୍ ସେଠାରୁ ଦିଲ୍ଲୀ ଫେରିଆସିବା ପରେ ମଧ୍ୟ ସେ ଦୁର୍ଘଟଣାର ଅନେକ ଦିନ ପର୍ଯ୍ୟନ୍ତ ଜବଲପୁର ଲୋକମାନଙ୍କ ସହିତ ସମ୍ପର୍କ ରଖି ଓ ପତ୍ରାଳାପ କରି ସେଠା ଅବସ୍ଥା ସମ୍ପର୍କରେ ଖବର ରଖିଥିଲେ । ପତ୍ରାଳାପ ମାଧ୍ୟମରେ ପରିସ୍ଥିତି ମୁକାବିଲା କରିବାପାଇଁ ସେଠାକାର ସରକାରୀ କର୍ମଚାରୀମାନଙ୍କୁ ମଧ୍ୟ ପରାମର୍ଶ ଦେଉଥିଲେ ।

ଜବାହରଲାଲ ଯେତେବେଳେ ଇନ୍ଦିରାଙ୍କ ନିକଟରୁ ଜବଲପୁର ଦଙ୍ଗା-ହାଙ୍ଗାମାର ପୁଙ୍ଖାନୁପୁଙ୍ଖ ବିବରଣୀ ଶୁଣିଥିଲେ ଓ ଜାତିଗତ ଭେଦଭାବ ତାହାର ମୂଳ କାରଣ ବୋଲି ଜାଣିଥିଲେ, ସେ ଅତ୍ୟନ୍ତ ଭାଙ୍ଗି ପଡ଼ିଥିଲେ । କାରଣ ତାହା ଥିଲା ପଣ୍ଡିତ ଜବାହରଲାଲ ନେହେରୁଙ୍କ 'ନୂତନ ଭାରତ' ପରିକଳ୍ପନା ମୂଳରେ ଏକ ଶକ୍ତ କୁଠାରାଘାତ । ତାଙ୍କର ପରିକଳ୍ପନା ମଧ୍ୟରେ ସ୍ୱାଧୀନ ଭାରତକୁ ଯେଉଁ ଧର୍ମ ନିରପେକ୍ଷ ରାଷ୍ଟ୍ରର ଭିତ୍ତି ଦୃଢ଼ କରିବାକୁ ସେ ଆପ୍ରାଣ ଉଦ୍ୟମ କରୁଥିଲେ, ସେ ସାଂପ୍ରଦାୟିକ ଦଙ୍ଗା ଉକ୍ତ ଭିତ୍ତି ସ୍ତମ୍ଭକୁ ମୌଳିକ ଦୋହଲାଇ ଦେଉଥିଲା । ଫଳରେ ବୃଦ୍ଧ ନେହେରୁ ଅଧିକରୁ ଅଧିକ ଚିନ୍ତାଗ୍ରସ୍ତ ହୋଇ ପଡ଼ୁଥିଲେ ।

**ଚୀନର ଭାରତ ଆକ୍ରମଣ :—**

ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ଯଦି କୌଣସି କାରଣରୁ ଅତ୍ୟନ୍ତ ମାନସିକ ବ୍ୟାଧିଗ୍ରସ୍ତ ହୋଇଥିଲେ ତାହା ଥିଲା ୧୯୬୨ ମସିହାରେ ଚୀନର ଭାରତ

ଆକ୍ରମଣ । ଚୀନା ସୈନ୍ୟମାନଙ୍କର ଭାରତ ଭୂଇଁ ଉପରେ ଆକ୍ରମଣ କଥା ସେ ଯେତିକି ଚିନ୍ତା କରୁଥିଲେ, ତାଠାରୁ ଢେର୍ ବେଶୀ ଚିନ୍ତା କରୁଥିଲେ ଜଣେ ସାଥୀ —ଚୀନ ପ୍ରଧାନମନ୍ତ୍ରୀ ଚୁଉ-ଏନ-ଲାଇଙ୍କ ଚରମ ବିଶ୍ୱାସଘାତକତା । ଚୀନର ଭାରତ ଆକ୍ରମଣ ଫଳରେ ସମଗ୍ର ଏସିଆ ମହାଦେଶରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ପୃଥିବୀରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା କରିବାପାଇଁ ଅଦ୍ୟମ ଉଦ୍ୟମ କରୁଥିବା ପଣ୍ଡିତ ନେହେରୁଙ୍କ ମନରେ ଅସ୍ଥିର ତରଙ୍ଗ ସୃଷ୍ଟି ହୋଇଥିଲା । ଅନେକ ଚିନ୍ତାଶୀଳ ବ୍ୟକ୍ତି ମତବ୍ୟକ୍ତ କରିଥିଲେ ଯେ ତାହା ଫଳରେ ବାସ୍ତବିକ୍ କେବଳ ତାହାଙ୍କର ମାନସିକ ଶକ୍ତି ତ ଦୁର୍ବଳ ହୋଇ ନ ଥିଲା, ଶାରୀରିକ ଦୃଷ୍ଟିରୁ ମଧ୍ୟ ହଠାତ୍ ନେହେରୁ ବୟସ ବର୍ଷ ଅତିକ୍ରମ କରି ଯାଇଥିଲେ ଓ ଅଧିକ ବୃଦ୍ଧ ସମେ ହେଉଥିଲେ । ଅପ୍ରାକୃତିକ ବୟସର ଅଭିବୃଦ୍ଧି ଫଳରେ ଅଧିକ ବାର୍ଦ୍ଧକ୍ୟଗ୍ରସ୍ତ ହୋଇ ପଡ଼ିଥିଲେ ଜବାହରଲାଲ ।

ସେ ପ୍ରକାର ଅସ୍ୱାଭାବିକ ପରିସ୍ଥିତିର ଆଶଙ୍କା ଇନ୍ଦିରା ଅନେକ ପୂର୍ବରୁ କରି ପାରିଥିଲେ । କାରଣ ସେ ଯେତେବେଳେ ପିତାଜୀଙ୍କ ସହିତ ଚୀନ ପରିଭ୍ରମଣରେ ଯାଇଥିଲେ, ଅତି ସତର୍କତାର ସହିତ ଲକ୍ଷ୍ୟ କରିଥିଲେ ଯେ ସେ ଦେଶରେ ଅତି ଜୋରସୋରରେ ସାମରିକ ପ୍ରସ୍ତୁତ ଚାଲିଥିଲା । ସେ ସମ୍ପର୍କରେ ଇନ୍ଦିରା ପିତାଜୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ଓ ସତର୍କ କରାଇ ଦେଇଥିଲେ ମଧ୍ୟ ପଣ୍ଡିତ ନେହେରୁ କୌଣସି ଆଶଙ୍କା କରିବା ତ ଦୂରର କଥା, ବରଂ ଚୀନ ବିରୁଦ୍ଧରେ କୌଣସି କଥା ଶୁଣିବା ଲାଗି ହିଁ ପ୍ରସ୍ତୁତ ନ ଥିଲେ । "ହିନ୍ଦୀ-ଚୀନ୍ ଭାଇ ଭାଇ" ଶବ୍ଦଗୁଡ଼ିକର ଶବ୍ଦ-ତରଙ୍ଗ ମଧ୍ୟରେ ଇନ୍ଦିରାଙ୍କ ସତର୍କବାଣୀ ବିଲୀନ ହୋଇଯାଇଥିଲା ।

ପୁନଶ୍ଚ ସେତେବେଳକୁ ଚୀନର ପ୍ରଧାନମନ୍ତ୍ରୀ ଚୁଉ-ଏନ-ଲାଇ ଓ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ 'ପଞ୍ଚଶୀଳ ନୀତି' ଉପରେ ସମସ୍ତ ଆସ୍ଥା ରଖି ଓ ତାହାକୁ ଦେଶର ବୈଦେଶିକ ନୀତି ପ୍ରଣୟନର ମୂଳ ପାହାଚ ରୂପେ ଗ୍ରହଣ କରି ନେବାପାଇଁ ସ୍ୱୀକାର କରିଥିଲେ । ପଞ୍ଚଶୀଳ ନୀତି ଥିଲା ପାଞ୍ଚଟି ମୂଳ ନିୟମକୁ କେନ୍ଦ୍ର କରି ଦେଶର ବୈଦେଶିକ ନୀତି ପ୍ରଣୟନ କରିବା । ସେ ନୀତିଗୁଡ଼ିକ ମଧ୍ୟରେ ଥିଲା ପ୍ରତ୍ୟେକ ଦେଶ ଅନ୍ୟ ଦେଶର ଭୌଗୋଳିକ ଭୂ-ଖଣ୍ଡକୁ ସମ୍ମାନ ଦେଖାଇବା, କୌଣସି ଦେଶ ଅନ୍ୟର ଆଭ୍ୟନ୍ତରୀଣ ସମସ୍ୟାଗୁଡ଼ିକ ଉପରେ ହସ୍ତକ୍ଷେପ ନ କରିବା, କୌଣସି ଦେଶ ଅନ୍ୟ ଦେଶ ଉପରେ ଆକ୍ରମଣ ନ କରିବା ଏବଂ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରିବା ସଙ୍ଗେ ସଙ୍ଗେ ସେଥିପାଇଁ ପରସ୍ପରକୁ ସାହାଯ୍ୟ କରିବା । ସରଳବିଶ୍ୱାସୀ ପଣ୍ଡିତ ନେହେରୁ କୌଣସିକାଳେ ସ୍ୱପ୍ନ ମଧ୍ୟ ଦେଖି ନ ଥିଲେ ଯେ ଦିନେ ସେଇ ଚୁଉ-ଏନ-ଲାଇ ଚରମ ବିଶ୍ୱାସଘାତକତାର ପରିଚୟ ଦେଇ ପଛପଟୁ ଗଳାରେ ଛୁରୀ ଚଳାଇବା ପାଇଁ କୁଣ୍ଠାବୋଧ କରିବେ ନାହିଁ ।

ଶ୍ରୀମତୀ ଇନ୍ଦିରା ଭାରତ ଉପରେ ଚୀନର ଆକ୍ରମଣ ବେଳେ ଦେଶପାଇଁ ଓ ଦଳ ପାଇଁ ଅବିଶ୍ରାନ୍ତ ଭାବରେ କାର୍ଯ୍ୟ କରିଥିଲେ । ସେ ସଙ୍କଟ ସମୟଗୁଡ଼ିକରେ କର୍ମବ୍ୟସ୍ତ ଓ ମାନସିକ ଚିନ୍ତାବ୍ୟାଧିଗ୍ରସ୍ତ ପିତାଜୀଙ୍କୁ ସମସ୍ତ କାର୍ଯ୍ୟରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଆହୁରି କିଛି ଅଧିକ କାର୍ଯ୍ୟ ମଧ୍ୟ କରିଥିଲେ । ପିତାଜୀ ତଥା ନେହେରୁ ପରିବାରର ଜଣେ ବନ୍ଧୁ ଲାଲବାହାଦୁର ଶାସ୍ତ୍ରୀଙ୍କ ଇଚ୍ଛା ବିରୁଦ୍ଧରେ ମଧ୍ୟ ଯୁଦ୍ଧକ୍ଷେତ୍ରରେ ଆଗୁଆ ସେନାମାନଙ୍କ ନିକଟରେ ଉପସ୍ଥିତ ହୋଇ ସେମାନଙ୍କ ମାନସିକ ଶକ୍ତି ଦୃଢ଼ କରିବାଲାଗି ଉଦ୍ୟମ କରୁଥିଲେ । ତଦ୍‌ବ୍ୟତୀତ ଦେଶର ସେଇ ଜରୁରୀକାଳୀନ ପରିସ୍ଥିତିରେ ଯେଉଁ କେନ୍ଦ୍ରୀୟ ନାଗରିକ କମିଟି ଗଠନ କରାଯାଇଥିଲା ତାର ସଭାନେତ୍ରୀ ରୂପେ ପରିସ୍ଥିତିର ଗୁରୁତ୍ୱ ଦେଶବାସୀଙ୍କୁ ଜଣାଇବା ଲାଗି ସେ ଆଗଭର ହୋଇ ଉଠିଥିଲେ । ସୀମାନ୍ତରେ ଲଢ଼େଇ କରୁଥିବା ସୈନ୍ୟବାହିନୀର ବାର୍ତ୍ତା ଦେଶର ସାଧାରଣ ଜନତାଙ୍କ ନିକଟରେ ପହଞ୍ଚାଇବା ଲାଗି ଓ ସେମାନଙ୍କୁ ପୂର୍ଣ୍ଣପ୍ରାଣରେ ସହଯୋଗର ଆବଶ୍ୟକତା ସମ୍ପର୍କରେ ତଥା ଜନମାନସକୁ ଉଦ୍‌ବୁଦ୍ଧ କରିବା ଲାଗି ବିଭିନ୍ନ ସ୍ଥାନରେ ସଭାସମିତିମାନ ଅନୁଷ୍ଠିତ କରାଇ ଭାଷଣ ଦେଉଥିଲେ ଓ ଯୁଦ୍ଧପାଣ୍ଠି ପାଇଁ ସଂଗ୍ରହ କରୁଥିଲେ । ସେସବୁ ସତ୍ତ୍ୱେ ସେ ଥିଲେ ପଣ୍ଡିତ ଜବାହରଲାଲଙ୍କ ପାଇଁ ଆଶାର ମିନାର—ଅନ୍ତତଃ ସଙ୍କଟ ମୁହୂର୍ତ୍ତଗୁଡ଼ିକରେ । ମିଖାଇଲ ଆଲେକ୍‌ଜାଣ୍ଡରଙ୍କ ଭାଷାରେ—"She was a tower of strength by the side of her father at a time when he was deeply shocked and distressed by Communist Chinese, betrayal of the friendship treaty and the sudden invasion of Indian soil."*

**'ଭାରତରତ୍ନ'ର ମୃତ୍ୟୁ :—**

ପଣ୍ଡିତ ନେହେରୁଙ୍କ ମାନସିକ କ୍ଳାନ୍ତି ତ ଦୂର ହୋଇପାରିଲା ନାହିଁ, ବରଂ ଦିନକୁ ଦିନ ବହୁଗୁଣିତ ହେବା ହିଁ ସାର ହୋଇଥିଲା । ଜାନୁୟାରୀ ୧୯୬୪ ମସିହାରେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ ଅନୁଷ୍ଠିତ ହେଉଥିବା ଅଖିଳ ଭାରତୀୟ କଂଗ୍ରେସ ଅଧିବେଶନରେ ଯୋଗ ଦେବା ପାଇଁ ଆସିଥିବାବେଳେ ସେ ହଠାତ୍ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଥିଲେ ଏବଂ ତାଙ୍କର ବାମପାଦ ଅଚଳ ହୋଇଯାଇଥିଲା କହିଲେ ଚଳେ । ତେବେ ସେ ପ୍ରକାର ପରିସ୍ଥିତି ଭିତରେ ଭାରତର ତଥା କଂଗ୍ରେସର ଉଚ୍ଚ ନେତୃବୃନ୍ଦ ଅନୁଭବ କରିଥିଲେ ଯେ ବୃଦ୍ଧ ପଣ୍ଡିତ ନେହେରୁ ଆଉ ଅଧିକ କାଳ ଜାତିର ସେବା କରିବା ଲାଗି ସମର୍ଥ ହୋଇ

---

* M. K Alexander — Indira Gandhi An Illustrated Biography, Page-104.

ନ ପାରନ୍ତି । ତେଣୁ ଭାରତର ଭବିଷ୍ୟତ ନେତୃତ୍ୱକୁ ବଳିଷ୍ଠ କରିବା ଉଦ୍ଦେଶ୍ୟରେ କ କ କାର୍ଯ୍ୟମନ୍ତ୍ରୀ ଗ୍ରହଣ କରାଯାଇପାରେ ସେ ବିଷୟ ଗମ୍ଭୀର ଭାବେ ଚିନ୍ତା କରୁଥିଲେ । ସେ ନେତୃତ୍ୱ ନେବାଲାଗି ସେତେବେଳେ ଇନ୍ଦିରା ନିଜେ ଇଚ୍ଛା କରୁ ନ ଥିଲେ ମଧ୍ୟ କଂଗ୍ରେସର ଉଚ୍ଚ କର୍ମକର୍ତ୍ତାମାନେ ତାହା ଅନୁଭବ କରିଥିଲେ । ଶ୍ରୀମତୀ ଇନ୍ଦିରାଙ୍କୁ ଜବାହରଲାଲଙ୍କ ମନ୍ତ୍ରିମଣ୍ଡଳରେ ଗ୍ରହଣ କରିବାପାଇଁ ଭାରତର ୧୨ଟି ରାଜ୍ୟର ମୁଖ୍ୟମନ୍ତ୍ରୀ ସେତେବେଳେ ପ୍ରଧାନମନ୍ତ୍ରୀଙ୍କୁ ଅନୁରୋଧ କରିଥିଲେ । ପରେ ପରେ ଦେଶର ନେତୃତ୍ୱ ଗ୍ରହଣ କଲାବେଳେ ତାହା ଉପକାରରେ ଆସିବ ବୋଲି ସେମାନେ ବିବେଚନା କରିଥିଲେ । କିନ୍ତୁ ସେ ପ୍ରକାର ପ୍ରସ୍ତାବକୁ ଦୃଢ଼-ଭାବରେ ପ୍ରତିରୋଧ କରିଥିଲେ ଇନ୍ଦିରା । ତେଣୁ ସେତେବେଳେ ତାହା କାର୍ଯ୍ୟକାରୀ ହୋଇପାରି ନ ଥିଲା ।

୧୯୬୪ ମସିହା ଜାନୁୟାରୀଠାରୁ ପାଞ୍ଚ ମାସ ପର୍ଯ୍ୟନ୍ତ ଇନ୍ଦିରା ପାପୁଙ୍କର ସମସ୍ତ ପ୍ରକାର ତତ୍ତ୍ୱ ଅତି ସତର୍କତାର ସହିତ ନେବା ପରେ ମଇ ମାସରେ କଂଗ୍ରେସର ଏକ କାର୍ଯ୍ୟକାରୀ ବୈଠକରେ ଯୋଗ ଦେବା ପାଇଁ ଜବାହରଲାଲ ସମର୍ଥ ହୋଇଥିଲେ ଓ ସେଥିପାଇଁ ବମ୍ବେ ଯାତ୍ରା କରିଥିଲେ । ଜବାହରଲାଲ ସୁସ୍ଥ ନ ଥିବା ସମୟରେ (୧୯୬୪ ଜାନୁୟାରୀଠାରୁ ମଇ ପର୍ଯ୍ୟନ୍ତ) ତାହାଙ୍କୁ ସାକ୍ଷାତ କରିବା ପାଇଁ ଆସୁଥିବା ଦର୍ଶକମାନଙ୍କ ସଂଖ୍ୟା ଯେତେ ସମ୍ଭବ କମ୍ ହୋଇପାରିବ ତାର ଉପଯୁକ୍ତ ବ୍ୟବସ୍ଥା କରିଥିଲେ ଇନ୍ଦିରା ଓ ସମସ୍ତ ଚିଠିପତ୍ର ତାହାଙ୍କୁ ନ ଦେଇ ଯେଉଁ ଚିଠିଗୁଡ଼ିକର ଉତ୍ତର କେବଳ ପାପୁ ହିଁ ଦେବା ଉଚିତ ବୋଲି ମନେ କରୁଥିଲେ ସେଗୁଡ଼ିକ ତାହାଙ୍କୁ ଦେବା ବ୍ୟବସ୍ଥା କରିଥିଲେ । ସେଇ କେତେକ ଦିନ ଡାକ୍ତରଙ୍କ ପରାମର୍ଶ ମାନିବା ଲାଗି ନେହେରୁଙ୍କୁ ଏକ ପ୍ରକାର ବାଧ୍ୟ କରୁଥିଲେ ଇନ୍ଦିରା—ତାଙ୍କ ପ୍ରିୟଦର୍ଶିନୀ । ସେତେଟା ଯତ୍ନ ନେବା ପରେ ହିଁ ଜବାହରଲାଲଙ୍କ ସ୍ୱାସ୍ଥ୍ୟର ଉନ୍ନତି ହୋଇପାରିଥିବା ସମ୍ଭବ ହୋଇଥିଲା ଓ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଯୋଗ ଦେବାପାଇଁ ସେ ବମ୍ବେ ଯାଇଥିଲେ । ବମ୍ବେରୁ ଫେରିବା ପରେ ପୁଣି ନିଜ ଫାଇଲପତ୍ର କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ପୂର୍ବପରି ସମସ୍ତ ସରକାରୀ ନିଷ୍ପତ୍ତି ନିଜେ ହିଁ ଗ୍ରହଣ କରିବା ଆରମ୍ଭ କରିଥିଲେ ।

ଜବାହରଲାଲ ସେତେବେଳେ ପୀଡ଼ିତ ଥିଲେ, ସରକାରୀ ନିଷ୍ପତ୍ତିସବୁ ନେବାବେଳେ ଇନ୍ଦିରା ପ୍ରିୟ ପାପୁଙ୍କୁ ଯଥେଷ୍ଟ ସାହାଯ୍ୟ କରୁଥିଲେ । ଏପରି କି କେତେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ମଧ୍ୟ ଇନ୍ଦିରାଙ୍କ ସକ୍ରିୟ ସହାୟତାରେ ଜବାହରଲାଲ ଗ୍ରହଣ କରୁଥିଲେ ସେତେବେଳେ ।

ମଇ ମାସରେ ଖୁବ୍ କମ୍ ଦିନ ପାଇଁ ପିତା ଓ ପୁତ୍ରୀ ଦୁହେଁ ଯାଇଥିଲେ ଡେରାଡୁନ୍ । ମଇ ୨୬ ତାରିଖରେ ଡେରାଡୁନ୍‌ରୁ ଫେରିବା ବେଳେ ପାଲାମ

ବିମାନଘାଟୀଠାରେ ଦର୍ଶକବୃନ୍ଦ ପଣ୍ଡିତ ନେହେରୁଙ୍କ ସମ୍ପୂର୍ଣ୍ଣ ସୁସ୍ଥ ଚେହେରା ଦେଖି ଆନନ୍ଦ ପ୍ରକାଶ କରିଥିଲେ । ସେଦିନ ରାତିରେ ସବୁଦିନ ଭଳି ଯେତେସବୁ ପୁରୁଣା ଫାଇଲ ଥିଲା ତାହାର କାର୍ଯ୍ୟ ଶେଷ କରି ଦେଇଥିଲେ ଓ ଶେଷରେ କହିଥିଲେ, "I think, we have finished every thing." † ତା ପରେ ସେ ବିଶ୍ରାମ ନେବାକୁ ଯାଇଥିଲେ । ତାହା ହିଁ ଥିଲା ତାଙ୍କର ଶେଷ କଥା ଓ ଶେଷ କାର୍ଯ୍ୟ । ତା ପରଦିନ ମଇ ୨୭ ତାରିଖ ୧୯୬୪ ମସିହା ସାୟାହ୍ନରେ ତାଙ୍କର ଜୀବନ-ଦୀପ ନିର୍ବାପିତ ହୋଇଯାଇଥିଲା । 'ଭାରତରତ୍ନ' ତାର ସମସ୍ତ ତେଜୋସ୍ୱାନ୍ ଆଲୋକକୁ କରାଳ କାଳରାତ୍ରୀର ଅନ୍ଧକାର ନିକଟରେ ସମର୍ପଣ କରି ଦେଇଥିଲା ।

ସେ ଘଟଣାରେ ସବୁଠାରୁ ବେଶୀ ଆଘାତ ପାଇଥିଲେ ଇନ୍ଦିରା । ତାଙ୍କର ସମସ୍ତ ଦୈହିକ ଓ ମାନସିକ ଶକ୍ତି ଯେମିତି ହଠାତ୍ ବରଫ ପରି ଶୀତଳ ହୋଇ ପଡ଼ିଥିଲା । ନିଜର ସ୍ଥିତି ପ୍ରତି ମଧ୍ୟ ସେ କିଛି ସମୟ ସନ୍ଦିହାନ ହୋଇ ପଡ଼ିଥିଲେ; କିଂକର୍ତ୍ତବ୍ୟବିମୂଢ଼ ହୋଇ ସ୍ଥାଣୁ ପାଲଟି ଯାଇଥିଲେ । ତାହା ଥିଲା ନିତାନ୍ତ ସ୍ୱାଭାବିକ କଥା । ମଣିଷର ତାହାହିଁ ପ୍ରକୃତି । ସେ ଘଣ୍ଟା ଘଣ୍ଟା ଧରି ଆଦରର ପାପୁଙ୍କ ଶଯ୍ୟା ନିକଟରେ ବସି ତାଙ୍କ ମୁଖମଣ୍ଡଳକୁ ନିର୍ନିମେଷ ନୟନରେ ଚାହିଁ ରହିଥିଲେ, ସତେ ଯେମିତି ସେଇ ମୁଖମଣ୍ଡଳରୁ ପୂର୍ବର ଜ୍ୟୋତି ହଜି ନ ଥିଲା, ପୂର୍ବର ତେଜ ଠିକ୍ ସେଇମିତି ପ୍ରକଟିତ ହେଉଥିଲା । ସତେ ଯେମିତି ପୂର୍ବର ସେଇ ଗାମ୍ଭୀର୍ଯ୍ୟ ପୁଣି ରହିଥିଲା । ଆଦରର ପ୍ରିୟଦର୍ଶିନୀଙ୍କୁ ଆଦେଶ ଦେବାପାଇଁ ତାଙ୍କ ପାପୁଙ୍କର ସେଇ ମୁହଁରୁ ଆଉ କୌଣସି ଭାଷା ସ୍ଫୁରିବା ପାଇଁ ନ ଥିଲା । ଘରର ଅନ୍ୟମାନଙ୍କ ଭଳି ଇନ୍ଦିରା ସମଗ୍ର ରାତି ଉଜାଗର ରହିଥିଲେ । କେବଳ ନେହେରୁ ପରିବାରର ବା ତିନମୂର୍ତ୍ତି ଭବନର ଅଧିବାସୀମାନେ ରାତି ଉଜାଗର ରହି ନ ଥିଲେ, ଭାରତର ଉଜ୍ଜ୍ୱଳତମ ନକ୍ଷତ୍ର ଚିରଦିନପାଇଁ ଅସ୍ତ ହୋଇଯିବା ପରେ ପରେ, ସମଗ୍ର ଜାତି ଯେମିତି ଉଜାଗର ରହିଥିଲା । ଦୀର୍ଘ ୨୪ ଘଣ୍ଟା ପର୍ଯ୍ୟନ୍ତ ଇନ୍ଦିରା କୌଣସି ଖାଦ୍ୟ ସ୍ପର୍ଶ କରି ନ ଥିଲେ ।

ସେତେବେଳର ଘଟଣାବଳୀ ସମ୍ପର୍କରେ ନେହେରୁ ପରିବାରର ଜଣେ ସଭ୍ୟା ଇନ୍ଦିରାଙ୍କ ପିଉସୀ କୃଷ୍ଣା ହାଥୀ ସିଂ ଲେଖିଛନ୍ତି, "ମଇ ୨୭ ତାରିଖ ସକାଳୁ ନାନ୍ (କୃଷ୍ଣାଙ୍କ ସ୍ୱାମୀ ରାଜା) ଏବଂ ମୁଁ ଦିଲ୍ଲୀ ଯିବା ପାଇଁ ତକରା ପାଇଲୁ । ମୁଁ ଇନ୍ଦିରାଙ୍କୁ ଫୋନ ଯୋଗେ ପଚାରିଲି । ଭଗ୍ନ କଣ୍ଠରେ ସେ ମତେ ଉତ୍ତର ଦେଇଥିଲା, ଶୀଘ୍ର ଆସନ୍ତୁ । ପାପୁ ସଙ୍କଟାପନ୍ନ । ଏକ ସରକାରୀ ଉଡ଼ାଜାହାଜ ଆମ୍ଭ

† As produced in K. A. Abbas's book—Return of the red rose. P-132

ଲାଗି ପ୍ରେରିତ ହୋଇଥିଲା । ସନ୍ଧ୍ୟାରେ ଆମେ ଖବର ପାଇଥିଲୁ ଯେ ସେ (ନେହେରୁ) ଆଉ ନାହାନ୍ତି ।”

“ତିନମୂର୍ତ୍ତି ଭବନର ଲୌହ ଫାଟକ ସାମନାରେ ଅସଂଖ୍ୟ ଜନତାର ନିଆର । ଅତି ଉଦ୍‌ବିଗ୍ନ ହୋଇ, ପ୍ରିୟ ନେତାଙ୍କର ମୃତ୍ୟୁରେ ଅତି ଅଧୀର ହୋଇ ସେମାନଙ୍କ ଆଗକୁ ମାଡ଼ିଯିବା ପାଇଁ ଚେଷ୍ଟା କରୁଥିଲେ । ନେହେରୁଙ୍କ ମୃତ ଶରୀର ପଡ଼ି ରହିଥିବା କୋଠରୀଟିରେ ଅନେକ କେନ୍ଦ୍ରମନ୍ତ୍ରୀ, ପାର୍ଲ୍ୟାମେଣ୍ଟ ସଭ୍ୟ, କଂଗ୍ରେସ ସଭ୍ୟ, କୂଟନୀତିଜ୍ଞ ଓ ବନ୍ଧୁବାନ୍ଧବମାନେ ପୂର୍ଣ୍ଣ ହୋଇଥିଲେ । ଆମେ ଯେତେବେଳେ ସେଇ କୋଠରୀ ଭିତରେ ପ୍ରବେଶ କଲୁ, ଦେଖିଲୁ, ଇନ୍ଦିରା ପିତାଜୀଙ୍କ ନିକଟରେ ତଳେ ସ୍ଥାଣୁ ଭଳି ବସି ରହିଥିଲା । ସେଦିନ ରାତିରେ ଯେତେବେଳେ ତାଙ୍କର ମୃତ ଦେହକୁ ଶେଷ ଦର୍ଶନ ପାଇଁ ତଳ ମହଲାକୁ ଅଣାଯାଇଥିଲା, ଏକ ପଥର ପାଲଟିଲା ଭଳି ସେ ସେଇ ମୃତ ଦେହ ନିକଟରେ ଛିଡ଼ା ହୋଇଥିଲା । ଶେଷ ଦର୍ଶନ ପାଇଁ ଆସୁଥିବା ହଜାର ହଜାର ଲୋକଙ୍କ ପ୍ରତି ତାର ନଜର ନ ଥିଲା ।”†

ତା ପରଦିନ ସକାଳୁ ଯେତେବେଳେ ଇନ୍ଦିରା ତାଙ୍କ ସଂଜ୍ଞା ଏକପ୍ରକାର ଫେରି ପାଇଥିଲେ ଓ ଅନୁଭବ କରିଥିଲେ ଯେ ପାପୁ ତାଙ୍କର ଆଉ ଫେରି ଆସିବେ ନାହିଁ, ସେ ନିଜ କୋଠରୀକୁ ଯାଇଥିଲେ । ତାଙ୍କ ପଛେ ପଛେ ଯାଇଥିଲେ ପିଉସୀ କୃଷ୍ଣା । ପିଉସୀଙ୍କୁ ଦେଖିବା ପରେ ନିଜ ଶରୀରର ଉଦ୍‌ଗତ କୋହକୁ ଆଉ ନିଜ ଅକ୍ତିଆର ଭିତରେ ରଖିପାରିବା ଭଳି ସାମର୍ଥ୍ୟ ନ ଥିଲା ତାଙ୍କର । କିନ୍ତୁ କିଛିକ୍ଷଣ ପରେ ସେ ନିଜକୁ ସମ୍ଭାଳି ନେଇଥିଲେ । ଯେଉଁମାନେ ଦୂରଦୂରାନ୍ତରରୁ ସେ ଦୁଃସମ୍ବାଦ ପାଇ ଆସିଥିଲେ ସେମାନଙ୍କ ପାଇଁ ଜଳଖିଆ ଇତ୍ୟାଦି ପ୍ରସ୍ତୁତ କରିବା ଓ ସେମାନଙ୍କ ସମ୍ପର୍କରେ ବୁଝାସୁଝା କରିବା ଭାର ସେ ନିଜେ ଗ୍ରହଣ କରିଥିଲେ । ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ରହୁଥିବା କର୍ମଚାରୀମାନଙ୍କୁ ମଧ୍ୟ କିଛି କିଛି ଖାଇନେବାକୁ ସେ ଆଦେଶ ଦେଇଥିଲେ । ସେମାନଙ୍କୁ ପରିଷ୍କାର ହୋଇ, ନିର୍ମଳ ବସ୍ତ୍ର ପରିଧାନ କରି ଶବଶୋଭାଯାତ୍ରା ପାଇଁ ପ୍ରସ୍ତୁତ ହେବାକୁ ସେ ଆଦେଶ ଦେଇଥିଲେ । ପ୍ରଧାନମନ୍ତ୍ରୀଙ୍କ ପରିବାରବର୍ଗଙ୍କ ଉଦ୍ଦେଶ୍ୟରେ ଇନ୍ଦିରାଙ୍କ ବକ୍ତବ୍ୟ ଥିଲା—You know that Papu would never like you in this dishevelled state to accompany him on his last Journey.”††

---

† କୃଷ୍ଣା ହାଥୀ ସିଂଙ୍କ “ପ୍ରିୟଦର୍ଶିନୀ” (Dear to Behold) ପୁସ୍ତକର ୧୫୧ ପୃଷ୍ଠା ।

†† M. K. Alexander—Indira Gandhi. P-107.

ପଣ୍ଡିତ ଜବାହରଲାଲ ଯଦିଓ ତାଙ୍କର ଅନ୍ତିମ ଅଭିଳାଷ ପ୍ରକାଶ କରି ପୁରାତନ ପରମ୍ପରା ପ୍ରତି ବିଶେଷ ଧ୍ୟାନ ନ ଦେଇ ତାଙ୍କର ମୃତ୍ୟୁ ପରେ ଶବସତ୍କାର କରାଇବା ଲାଗି ଇଚ୍ଛା ପ୍ରକାଶ କରିଥିଲେ, ତଥାପି ପରମ୍ପରାକୁ ସମ୍ପୂର୍ଣ୍ଣରୂପେ ଅବଜ୍ଞା କରିପାରି ନ ଥିଲେ ଇନ୍ଦିରା । ପଣ୍ଡିତ ନେହେରୁ ତାଙ୍କ ମୃତ୍ୟୁ ପରେ ଶବସତ୍କାର ସମ୍ପର୍କରେ ନିଜେ ଲେଖି ଯାଇଥିଲେ, "···ସର୍ବାନ୍ତଃକରଣରେ ମୁଁ ଜଣାଇ ଦେବାକୁ ଚାହୁଁଛି ଯେ ମୋର ମୃତ୍ୟୁ ପରେ ମୋ ପାଇଁ କୌଣସି ଧାର୍ମିକ ବିଧାନ ହେଉ ବୋଲି ଇଚ୍ଛା ନାହିଁ । ସେଭଳି କୌଣସି ଧର୍ମାନୁଷ୍ଠାନରେ ମୋର ବିଶ୍ୱାସ ନାହିଁ । ଏକ ପୁରାତନ ପ୍ରଚଳିତ ରୀତି ହିସାବରେ ତାହାକୁ ମାନିନେବା ଏକ ଭଣ୍ଡାମି ହେବା ହିଁ କେବଳ ସାର ହେବ । + + + ମୁଁ ଶେଷ ନିଶ୍ୱାସ ତ୍ୟାଗ କରିବା ପରେ ମୋର ଶବକୁ ଦାହ କରାଯାଉ, ଏହା ହିଁ ମୋର ଇଚ୍ଛା । ବିଦେଶରେ ଯଦି ମୁଁ ମୃତ୍ୟୁବରଣ କରେ, ତେବେ ମୋର ଦେହକୁ ସେଠାରେ ଦାହ କରାଯାଇ ମୋର ଚିତାଭସ୍ମ ଆହ୍ଲାବାଦକୁ ପଠାଇ ଦିଆଯାଉ । ସେହି ଭସ୍ମରୁ ମୁଠିଏ ଗଙ୍ଗାଗର୍ଭରେ ନିକ୍ଷେପ କରାଯାଉ ଏବଂ ଅବଶିଷ୍ଟ ଭସ୍ମକୁ ନିମ୍ନମତେ ବିସର୍ଜନ କରାଯାଉ ବୋଲି ମୋର ଇଚ୍ଛା । ତେବେ ମୋର କୌଣସି ଭସ୍ମାବଶେଷ ସଂରକ୍ଷିତ ହୋଇ ନ ରହୁ, ଏହା ହିଁ ମୋର କାମନା । × × × ମୋର ଚିତାଭସ୍ମର ଅନ୍ୟ ପ୍ରକାର ବିସର୍ଜନ ହେବା ଉଚିତ । ମୁଁ ଚାହେଁ ସେଗୁଡ଼ିକୁ ବିମାନ ସାହାଯ୍ୟରେ ଆକାଶ-ମାର୍ଗକୁ ନେଇ ସେଠାରୁ ଭାରତୀୟ କୃଷକମାନଙ୍କ ଲହୁଲୁହରେ ରଞ୍ଜିତ ଶସ୍ୟକ୍ଷେତ୍ର-ଗୁଡ଼ିକ ଉପରେ ବିଞ୍ଚି ଦିଆଯିବ । ଫଳରେ ତାହା ଧୂଳି ମାଟି ସହିତ ମିଶିଯିବ ଓ ଭାରତର ଏକ ଅଭିନ୍ନ ଅଂଶ ହୋଇ ରହିଯିବ ।" ସେହି ଅଭିଳାଷପତ୍ରରେ ସ୍ୱାକ୍ଷର କରିଥିଲେ ପଣ୍ଡିତ ନେହେରୁ ମୃତ୍ୟୁ ପୂର୍ବରୁ ।

ଭାରତୀୟ ଧର୍ମଧାରଣା ଓ ପୁରାତନ ସାଂସ୍କୃତିକ ଐତିହ ପ୍ରତି ଗଭୀର ବିଶ୍ୱାସ ଥିଲା ଇନ୍ଦିରାଙ୍କର । ତେଣୁ ଯଥାରୀତି ପାପୁଙ୍କ ଶବସଂସ୍କାର କରାଇବା ଲାଗି ସେ ତତ୍ପର ହୋଇଥିଲେ ଏବଂ ପଣ୍ଡିତ ନେହେରୁଙ୍କ ଅନ୍ତିମ ଅଭିଳାଷ ମଧ୍ୟ ପୂର୍ଣ୍ଣ କରାଯାଇଥିଲା ।

ସମସ୍ତ ବେଦନାକୁ ଅନ୍ତରତଳେ ଚାପି ରଖି ଇନ୍ଦିରା ପରିସ୍ଥିତିର ମୁକାବିଲା କରିବାପାଇଁ ନିଜକୁ ପ୍ରସ୍ତୁତ କରି ନେଇଥିଲେ ଓ ପାପୁଙ୍କ ଶବ ଶୋଭାଯାତ୍ରାର ଆୟୋଜନ ଆରମ୍ଭ କରି ଦେଇଥିଲେ ମେ ୨୮ ତାରିଖ ସକାଳୁ । ସେ ଶୋଭାଯାତ୍ରା ତିନମୂର୍ତ୍ତି ଭବନଠାରୁ ଦୀର୍ଘ ଦଶ କିଲୋମିଟରର ରାସ୍ତା ଅତିକ୍ରମ କରି ଶାନ୍ତିବନ ନିକଟକୁ ଗଲାବେଳେ ରାସ୍ତାର ଦୁଇ କଡ଼ରେ ବ୍ୟାକୁଳ ଜନତା ଅପେକ୍ଷା କରି ରହିଥିଲେ ରାଷ୍ଟ୍ରନାୟକ 'ଭାରତରତ୍ନ'ର ଅନ୍ତିମ ଦର୍ଶନ ଲାଗି । ଯେଉଁ ଶବାଧାର ଉପରେ ଜବାହରଲାଲଙ୍କ ମୃତ ଶରୀର ସ୍ଥାପିତ ହୋଇଥିଲା, ତାହା ସୈନ୍ୟବାହିନୀର

ସୈନିକମାନଙ୍କଦ୍ୱାରା ଟଣା ଯାଉଥିଲା । ଇନ୍ଦିରା ଗୋଟିଏ ଖୋଲା ଗାଡ଼ିରେ ସେଇ ଶବାଧାର ପଛରେ ଯାଉଥିଲେ କନିଷ୍ଠ ପୁତ୍ର ସଞ୍ଜୟଙ୍କ ସହିତ । ଜ୍ୟେଷ୍ଠପୁତ୍ର ରାଜୀବ କେମ୍ବ୍ରିଜରେ ଅଧ୍ୟୟନ କରୁଥିଲେ ଓ ସମ୍ବାଦ ପାଇ ସୁଦୂର ବିଦେଶରୁ ଆସି ତା ପରଦିନ ପହଞ୍ଚିଥିଲେ ।

ପ୍ରିୟଦର୍ଶିନୀ ଇନ୍ଦିରାଙ୍କ କନିଷ୍ଠ ପୁତ୍ର ସଞ୍ଜୟ ଜବାହରଲାଲଙ୍କ ମୃତ ଶରୀରକୁ ଦାହ କରିବାପାଇଁ ମୁଖାଗ୍ନି ଦେଇଥିଲେ । ଚିତାଭସ୍ମକୁ ଗୋଟିଏ ବଡ଼ ବ୍ରୋଞ୍ଜ ପାତ୍ରରେ ଏବଂ ଅନେକ ଛୋଟ ଛୋଟ ପାତ୍ରରେ ସଂଗ୍ରହ କରାଯାଇଥିଲା । ତ୍ରୟୋଦଶାହ ଦିନ ଚିତାଭସ୍ମ ଗଙ୍ଗା-ଯମୁନାର ମିଳନସ୍ଥଳରେ ନିକ୍ଷେପ କରା-ଯାଇଥିଲା ଓ ଦିଲ୍ଲୀ ଫେରିଆସି ଇନ୍ଦିରା ଗୋଟିଏ ପାତ୍ରରେ ଭସ୍ମାବଶେଷ ନେଇ କାଶ୍ମୀର ଯାଇଥିଲେ ସେଠା ପର୍ବତଶୃଙ୍ଗ ଓ ନଦନଦୀରେ ବିଛୁରିତ କରିବାପାଇଁ । ଆଉ ଗୋଟିଏ ପାତ୍ର କୃଷ୍ଣା ଓ ତାଙ୍କ ସ୍ୱାମୀ ଭାରତର କୃଷିକ୍ଷେତ୍ରମାନଙ୍କରେ ପକାଇ ପଣ୍ଡିତ ନେହେରୁଙ୍କ ଶେଷାଭିଳାଷ ପୂର୍ଣ୍ଣ କରିବାପାଇଁ ବିମାନରେ ଦିଲ୍ଲୀ ଉପାନ୍ତ ଅଞ୍ଚଳମାନଙ୍କୁ ନେଇ ଯାଇଥିଲେ ।

ପଣ୍ଡିତ ନେହେରୁଙ୍କ ମୃତ୍ୟୁରେ ଦୁଃଖପ୍ରକାଶ କରି ଆମେରିକାର ରାଷ୍ଟ୍ରପତି ଲିଣ୍ଡନ୍ ଜନ୍‌ସନ କହିଥିଲେ, "ଗାନ୍ଧିଜୀଙ୍କ ଭଳି ଜବାହରଲାଲ ନେହେରୁଙ୍କ ଆଦର୍ଶ ଥିଲା ଶାନ୍ତି । ତାହାହିଁ ପୃଥିବୀ ପ୍ରତି ତାଙ୍କର ସନ୍ଦେଶ । ତାଙ୍କର ଉପଯୁକ୍ତ ସ୍ମୃତିରକ୍ଷା ଲାଗି ଏକ ଯୁଦ୍ଧଶୂନ୍ୟ ପୃଥିବୀ ବ୍ୟତୀତ ଅନ୍ୟ କିଛି ରଖାଯାଇ ନ ପାରେ ।" ଜାତିସଂଘର ତତ୍କାଳୀନ ସେକ୍ରେଟେରୀ ଜେନେରାଲ ୟୁ ଥାଣ୍ଟ୍ କହିଥିଲେ, "ବିଶ୍ୱ ଘଟଣା ପ୍ରବାହ ଉପରେ ପ୍ରଭାବ ପକାଇବା ଦିଗରେ, ନିଜ ଦେଶର ଇତିହାସରେ ସଙ୍କେତ ରଖିବା ଦିଗରେ ବର୍ତ୍ତମାନ ଯୁଗରେ ତାଙ୍କ ଭଳି ଖୁବ୍ କମ୍ ଲୋକ ଅଛନ୍ତି ।" ପୃଥିବୀର ଅନେକ ନେତା, ଅନେକ ନେତୃସ୍ଥାନୀୟ ବ୍ୟକ୍ତି ଓ ପ୍ରାୟ ପ୍ରତ୍ୟେକ ଦେଶର ସରକାର ଦୁଃଖପ୍ରକାଶ କରି ବାର୍ତ୍ତାମାନ ପ୍ରେରଣ କରିଥିଲେ ଏବଂ ପୃଥିବୀର ଖ୍ୟାତନାମା ପ୍ରସିଦ୍ଧ ପତ୍ରପତ୍ରିକାମାନଙ୍କରେ ସେମାନଙ୍କ ସମବେଦନା ଜଣାଇବା ସଙ୍ଗେ ସଙ୍ଗେ ପଣ୍ଡିତଜୀଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗ ଉପରେ ମଧ୍ୟ ଆଲୋକପାତ କରିଥିଲେ ।

ନିରବଚ୍ଛିନ୍ନ ଭାବେ ଧାଧ୍ ଜୀବନ ଇନ୍ଦିରା ପାପୁଙ୍କ ନିକଟରେ ହିଁ ରହି ଆସିଥିଲେ କହିଲେ ଚଳେ । ବିବାହ କରି, 'ସନ୍ତାନମାନଙ୍କର ଜନନୀ ହୋଇ, ସ୍ୱାମୀର ସ୍ତ୍ରୀ ହୋଇ ମଧ୍ୟ ସେ କେବଳ ପିତାଙ୍କ ନିକଟରେ ପୁତ୍ରୀ ଭାବେ ହିଁ ଜୀବନର ଅଧିକାଂଶ ସମୟ ବିତାଇଥିଲେ । ପାପୁଙ୍କ ପାଇଁ ଇନ୍ଦିରାଙ୍କ ଅନାବିଳ ଭକ୍ତି ଥିଲା । ଜବାହରଲାଲଙ୍କ ନିକଟରେ ଅତି ପ୍ରିୟ, ଅତି ଆଦରଣୀୟ ଥିଲେ ଇନ୍ଦିରା ପ୍ରିୟଦର୍ଶିନୀ । ପୃଥିବୀ ଇତିହାସରେ ବାପ-ଝିଅଙ୍କ ମଧ୍ୟରେ ଥିବା ସେଇ ଅନାବିଳ

ସ୍ନେହ-ମମତାର ନିଦର୍ଶନ ଅନ୍ୟ କେଉଁଠି ମିଳିବା କଷ୍ଟକର । ତା ବ୍ୟତୀତ କୌଣସି ଇତିହାସ ହୁଏତ ପ୍ରମାଣିତ କରାଇପାରିବ ନାହିଁ ଯେ ନେହେରୁ ପରିବାରକୁ ବାଦ୍ ଦେଇ ଅନ୍ୟ କେଉଁଠି ବାପ, ମାଆ, ଭଗ୍ନୀ, ସ୍ତ୍ରୀ, କନ୍ୟା ଓ ଏପରିକି ପରିବାରର ଅନ୍ୟମାନେ ମଧ୍ୟ ଜାତୀୟ ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ, ସେଥିପାଇଁ ନିଜର ସମସ୍ତ ବ୍ୟକ୍ତିଗତ ସମ୍ପତ୍ତି ଅକାତରରେ ବ୍ୟୟ କରିଥିଲେ, ଏପରିକି ଜୀବନ ମଧ୍ୟ ଉତ୍ସର୍ଗ କରିଥିଲେ ଏବଂ ସର୍ବୋପରି ପିତାଙ୍କ ପରେ ତାହାଙ୍କ ପଦାଙ୍କ ଅନୁସରଣ କରିବାରେ ଦୃଢ ପ୍ରୟାସ କରି କହିଥିଲେ, "ବର୍ଷକ ତଳେ ଆମ୍ଭମାନଙ୍କୁ ତ୍ୟାଗକରି ସେ ଚାଲିଗଲେ । କିନ୍ତୁ ତାଙ୍କର ଆତ୍ମା ଆମ୍ଭମାନଙ୍କ ନିକଟରେ ଆଜିପର୍ଯ୍ୟନ୍ତ ରହିଛି ।. ଆମ୍ଭମାନଙ୍କର ଦୈନିକ ଭାବାଦର୍ଶ ଚିନ୍ତାଧାରା ଓ ପଦକ୍ଷେପଗୁଡ଼ିକୁ ସଠିକ୍ ମାର୍ଗରେ ପରିଚାଳିତ କରାଇବା ସଙ୍ଗେ ସଙ୍ଗେ ଜନମାନସରେ ଦୃଢ଼ ଆତ୍ମବିଶ୍ୱାସ ସୃଷ୍ଟି କରିବାପାଇଁ ସେ ଆତ୍ମା ଆମମାନଙ୍କ ମଧ୍ୟରେ ଚିରକାଳ ରହିଥିବ । ଭାରତକୁ ଏକ ପ୍ରଗତିଶୀଳ ତଥା ଉନ୍ନତ ରାଷ୍ଟ୍ର ରୂପେ ଗଢ଼ି ତୋଳିବା ପାଇଁ ତାଙ୍କର ବିରାଟ ସ୍ୱପ୍ନକୁ ବାସ୍ତବରେ ପରିଣତ କରିବା ପାଇଁ ନିଜ ନିଜକୁ ଉତ୍ସର୍ଗ କରିବା ଉଚିତ । ତାହେଲେ ଆମେମାନେ ତାଙ୍କର ଯଥାର୍ଥ ସ୍ମୃତିଚାରଣ କରିବାପାଇଁ ଯୋଗ୍ୟ ହୋଇପାରିବା ।"*

ପଣ୍ଡିତ ନେହେରୁଙ୍କ ମୃତ୍ୟୁରେ ବର୍ଷକ ପରେ Socialist Congressmen ପତ୍ରିକାର 'ନେହେରୁଙ୍କ ସମାଜବାଦ' ସ୍ୱତନ୍ତ୍ର ସଂଖ୍ୟା ପାଇଁ ଅଭିମତ ପଠାଇ ଶ୍ରୀମତୀ ଇନ୍ଦିରା ମତବ୍ୟକ୍ତ କରିଥିଲେ ଯେ, ଯଦିଓ ବର୍ଷକ ତଳୁ ସେ (ନେହେରୁ) ଚାଲିଗଲେଣି, ତଥାପି ତାଙ୍କର ସେଇ ଚିନ୍ତା, ଚେତନା ଓ କର୍ମଶକ୍ତି ଭାରତୀୟ ଜନଗଣଙ୍କ ନିକଟରେ ଛାଡ଼ି ଯାଇଛନ୍ତି । ନିଜ ନିଜ ଉପରେ ଦୃଢ଼ ଆସ୍ଥା ସ୍ଥାପନ କରି ତାଙ୍କ ସ୍ମୃତିକୁ ମନେ ରଖିବାକୁ ହେଲେ, ତାଙ୍କର ସ୍ୱପ୍ନକୁ ସାର୍ଥକ କରିବା ଲାଗି, ଭାରତକୁ ଏକ ଉନ୍ନତ ରାଷ୍ଟ୍ରରେ ପରିଣତ କରିବା ଲାଗି ସମସ୍ତ ଉଦ୍ୟମ କରିବାକୁ ହେବ, ସେଥିପାଇଁ ନିଜକୁ ଉତ୍ସର୍ଗ କରିବାକୁ ପଡ଼ିବ ।

□ □ □

---

* Return of the Red Rose by K. A. Abbas—p-134.

## ॥ ପନ୍ଦର ॥

# ନେହେରୁଙ୍କ ମୃତ୍ୟୁ ପରେ



ବିଗତ କେତେ ବର୍ଷର କର୍ମକ୍ଳାନ୍ତି ଯୋଗୁଁ ଇନ୍ଦିରାଙ୍କ ବିବେକ କିଛି ଦିନ ପାଇଁ ଅତ୍ୟନ୍ତ ସକ୍ରିୟ ରାଜନୀତିଠାରୁ ଦୂରରେ ରହିବା ଲାଗି ନିର୍ଦ୍ଦେଶ ଦେଇଥିଲା । ତେଣୁ ନେହେରୁଙ୍କ ମୃତ୍ୟୁ ପରେ ପରେ ଅନେକ ନେତୃସ୍ଥାନୀୟ ରାଜନୀତିଜ୍ଞଙ୍କ ପ୍ରସ୍ତାବ—ସେ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରନ୍ତୁ—ଦୃଢ଼ ଭାବରେ ଇନ୍ଦିରା ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ନେହେରୁଙ୍କ ତିରୋଭାବରେ ସେ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଥିଲେ । ପରିବାରର ଅନେକ ପ୍ରିୟଜନଙ୍କର ମୃତ୍ୟୁଛବି ଗୋଟିକ ପରେ ଗୋଟିଏ ତାଙ୍କ ଚକ୍ଷୁ ସମକ୍ଷରେ ଉଦ୍ଭାସିତ ହୋଇ ଉଠୁଥିଲା ଯେମିତି ।

କୈଶୋରରେ ତାଙ୍କ ଦାଦୁଙ୍କ ମୃତ୍ୟୁ ବେଳକୁ ତାଙ୍କର ଯଥେଷ୍ଟ ଜ୍ଞାନ ହୋଇ ନ ଥିଲେ ମଧ୍ୟ ଓ କୈଶୋରସୁଲଭ ଚପଳତା ଛାଡ଼ି ନ ଥିଲେ ମଧ୍ୟ ଜୀବନରେ ପ୍ରଥମଥର ଲାଗି ଗଭୀର ଦୁଃଖ ଅନୁଭବ କରିଥିଲେ । ମାତା ଓ ପିତାମହଙ୍କ ମୃତ୍ୟୁ ବେଳକୁ ଇନ୍ଦିରାଙ୍କର ଯଥେଷ୍ଟ ଧାରଣା ହୋଇଯାଇଥିଲା ଏ ପାର୍ଥିବ ପୃଥିବୀ ବିଷୟରେ । ସେତେବେଳକୁ ସେ ଥିଲେ ଯୁବତୀ । ବିଶେଷ କରି ମାତାଙ୍କ ମୃତ୍ୟୁ ବେଳକୁ ସେ ନିକଟରେ ଉପସ୍ଥିତ ଥିଲେ ଓ ପ୍ରତ୍ୟକ୍ଷ ଭାବେ ମୃତ୍ୟୁକାଳୀନ ଦୃଶ୍ୟ ଦେଖିଥିଲେ । ପତିଙ୍କୁ ପ୍ରୌଢ଼ତ୍ୱର ପ୍ରାକ୍‌କାଳରେ ସବୁଦିନ ପାଇଁ ହରାଇଦେଇ ସେ ଦୁଃଖ ଅପନୋଦନ କରିଥିଲେ ପିତାଜୀଙ୍କ ସେବାରେ ନିଜକୁ ସମ୍ପୂର୍ଣ୍ଣରୂପେ ନିୟୋଜିତ କରି । କିନ୍ତୁ ତାଙ୍କୁ ସଂସାରର ଜଟିଳ ଯାତ୍ରାପଥରେ ଏକାକୀ ପରିତ୍ୟାଗ କରି ପ୍ରିୟ ପାପୁ ମଧ୍ୟ ଚାଲିଯାଇଥିଲେ ଅମରପୁରକୁ । ତେଣୁ ପାପୁଙ୍କ ମୃତ୍ୟୁରେ ଇନ୍ଦିରା ଅନେକ ଦିନ ପର୍ଯ୍ୟନ୍ତ ଆଖିରୁ ଲୁହ ଝରାଇଥିଲେ ଏକାକୀ, ତାଙ୍କ କୋଠରୀର ରୁଦ୍ଧ ବାତାବରଣ ଭିତରେ । କାରଣ ଜବାହରଲାଲ ଇନ୍ଦିରାଙ୍କ ପାଇଁ ଥିଲେ ଅତିପ୍ରିୟ—ପାପୁ, ଜୀବନର ପଥପ୍ରଦର୍ଶକ, ଶ୍ରେଷ୍ଠ ସଖା ଏବଂ ପ୍ରଧାନ ଶିକ୍ଷକ ।

## ଜବାହରଲାଲଙ୍କ ମୃତ୍ୟୁ ପରେ :—

ଭାରତର ରତ୍ନ, ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲଙ୍କ ମୃତ୍ୟୁ ପରେ ପରେ ଭାରତର ମନ୍ତ୍ରିମଣ୍ଡଳ ପରିଚାଳନା ବ୍ୟାପାର ବିଶେଷ ଭାବେ ଜଟିଳ ମନେ ହୋଇଥିଲା । ବୋଧହୁଏ ତାହା କେବଳ ଭାରତ ପାଇଁ ଏକ ସମସ୍ୟା ନ ଥିଲା, ଥିଲା ପୃଥିବୀ ପାଇଁ । ସେହି କାରଣରୁ ପଣ୍ଡିତ ନେହେରୁଙ୍କ ମୃତ୍ୟୁ ପୂର୍ବରୁ ହିଁ ଆମେରିକାର ସମାଲୋଚକ ୱେଲିସ୍ ହାଙ୍ଗେନ୍ 'ନେହେରୁଙ୍କ ମୃତ୍ୟୁ ପରେ କିଏ ?' ନାମରେ ଏକ ବିରାଟ ଗ୍ରନ୍ଥ ରଚନା କରିଥିଲେ ଭାରତୀୟ ରାଜନୀତି ତଥା ରାଜନୀତିଜ୍ଞଙ୍କ ଅବସ୍ଥା ଓ ସମ୍ଭାବନା ସମ୍ପର୍କରେ—ସେତିକିବେଳର ପରିପ୍ରେକ୍ଷୀରେ । ସାରା ପୃଥିବୀର ଜନସାଧାରଣଙ୍କ ଦୃଷ୍ଟି ଭାରତ ଉପରେ ହିଁ ନିବଦ୍ଧ ରହିଥିଲା, ନିକଟ ଭବିଷ୍ୟତରେ ନେତୃତ୍ୱ ନେଉଥିବା ବ୍ୟକ୍ତି ଓ ବ୍ୟକ୍ତିତ୍ୱ ସହିତ ପରିଚିତ ହେବା ପାଇଁ । ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ସେ ସମ୍ପର୍କରେ ବିଭିନ୍ନ ଆଲୋଚନା ପ୍ରକାଶ ପାଇଥିଲା । ସେ ପ୍ରକାର ପରିସ୍ଥିତିରେ ଭାରତର ଜନସାଧାରଣଙ୍କ ପାଇଁ ସେ ଉତ୍କଣ୍ଠା ନିହାତି ସମ୍ଭାବ୍ୟ ଥିବା ସ୍ପଷ୍ଟ ।

ତେବେ ନେହେରୁଙ୍କ ପରେ କିଏ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବା ପାଇଁ ଉପଯୁକ୍ତ ସେ ସମ୍ପର୍କରେ ପଣ୍ଡିତ ନେହେରୁ କୌଣସି ସ୍ପଷ୍ଟ ମନ୍ତବ୍ୟ ପ୍ରକାଶ କରି ନ ଥିଲେ । କିନ୍ତୁ ତାଙ୍କ ଶରୀର ସୁସ୍ଥ ନ ଥିବା ସମୟରେ ତାଙ୍କର ସମସ୍ତ ଦାୟିତ୍ୱ ତାଙ୍କର ଅତ୍ୟନ୍ତ ଆସ୍ଥାଭାଜନ ଶ୍ରୀଯୁକ୍ତ ଲାଲବାହାଦୁର ଶାସ୍ତ୍ରୀଙ୍କ ଉପରେ ନ୍ୟସ୍ତ କରୁଥିଲେ । ଶାସ୍ତ୍ରୀଜୀ ମଧ୍ୟ ସମସ୍ତ ଆନ୍ତରିକତାର ସହିତ ଓ ସମସ୍ତ ଦକ୍ଷତାର ସହିତ ସନ୍ତୋଷଜନକ ଭାବେ ସମସ୍ତ କାର୍ଯ୍ୟ ନିର୍ବାହ କରି ପଣ୍ଡିତ ନେହେରୁଙ୍କ ଆସ୍ଥାଭାଜନ ହୋଇ ପାରିଥିଲେ । ବୋଧହୁଏ ସେହି କାରଣରୁ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ସେ ଥିଲେ ବିଭାଗବିହୀନ ମନ୍ତ୍ରୀ । ସେହି ପରିପ୍ରେକ୍ଷୀରେ ଜବାହରଲାଲ ପରୋକ୍ଷ ଭାବରେ ଶାସ୍ତ୍ରୀଜୀଙ୍କୁ ତାଙ୍କର ଉତ୍ତରାଧିକାରୀ ରୂପେ ମନୋନୀତ କରିଥିଲେ ବୋଲି ଧରି ନିଆଯାଇପାରେ । ତେବେ ତଦ୍‌ବ୍ୟତୀତ ସେ ମଧ୍ୟ ମତବ୍ୟକ୍ତ କରିଥିଲେ ଯେ, ଯଦି ଭାରତକୁ ଏକ ମିଳିତ ନେତୃତ୍ୱ ଦିଆଯାଏ ଫଳାଫଳ ହୁଏତ ଭଲ ହୋଇପାରେ । ସେ ମିଳିତ ନେତୃତ୍ୱ ପାଇଁ ଯେଉଁମାନେ ପଣ୍ଡିତଜୀଙ୍କ ଆଖି ଆଗରେ ଥିଲେ ସେମାନେ ହେଲେ ଶାସ୍ତ୍ରୀଜୀ, ଗୁଲଜାରିଲାଲ ନନ୍ଦା ଏବଂ କଂଗ୍ରେସର ସଭାପତି କାମରାଜ ନାଦର ।

ସେ ପରିବେଶରେ କଂଗ୍ରେସର କେତେ ଜଣ ଉଚ୍ଚ କର୍ମକର୍ତ୍ତା ଏବଂ ନେହେରୁଙ୍କ ବନ୍ଧୁ ସେ ମିଳିତ ନେତୃତ୍ୱ ପାଇଁ ଇନ୍ଦିରାଙ୍କ ନାମ ପ୍ରସ୍ତାବ କରିଥିଲେ ମଧ୍ୟ ପଣ୍ଡିତଜୀ ସେ ପ୍ରସ୍ତାବ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ ।

ଜବାହରଲାଲଙ୍କ ଦେହାବସାନ ହେବା ଦିନ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଏକ ଜରୁରୀ ବୈଠକ ବସି କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗୁଲଜାରିଲାଲ ନନ୍ଦାଙ୍କୁ ଅସ୍ଥାୟୀ ଭାବେ ପ୍ରଧାନମନ୍ତ୍ରୀ ଦାୟିତ୍ୱ ନିର୍ବାହ କରିବା ଲାଗି ନିଷ୍ପତ୍ତି ନେଇଥିଲା । ତା ପରେ ପରେ କଂଗ୍ରେସ କାର୍ଯ୍ୟକାରୀ ସମିତିର ବୈଠକ ବସିଥିଲା ଓ କଂଗ୍ରେସ ସଭାପତିଙ୍କ ହାତରେ କ୍ଷମତା ନ୍ୟସ୍ତ କରାଯାଇଥିଲା ଯେ, ସେ ଦଳ ପକ୍ଷରୁ ପ୍ରଧାନ ନେତା ନିର୍ବାଚନ କରିବେ ।

ପାର୍ଲ୍ୟାମେଣ୍ଟରେ ଭବିଷ୍ୟତ୍ ନେତୃତ୍ୱ ଗ୍ରହଣ କରିବାକୁ ସମର୍ଥ ଥିବା ବ୍ୟକ୍ତି-ମାନଙ୍କ ମଧ୍ୟରୁ କାହାକୁ ନିର୍ବାଚିତ କରାଯାଇପାରେ, ସେ ବିଷୟରେ ଯେଉଁମାନଙ୍କ ନାମ କଥାପ୍ରସଙ୍ଗରେ ଉଠିଥିଲା ସେମାନଙ୍କ ମଧ୍ୟରେ ଥିଲେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଦାୟିତ୍ୱରେ ଥିବା ଶ୍ରୀଯୁକ୍ତ ଗୁଲଜାରିଲାଲ ନନ୍ଦା, ପ୍ରଧାନମନ୍ତ୍ରୀ ହେବାକୁ ଇଚ୍ଛୁକ ଥିବା ତଥା ଇଚ୍ଛା ପ୍ରକାଶ କରିଥିବା ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ଏବଂ ସ୍ୱର୍ଗତ ପ୍ରଧାନମନ୍ତ୍ରୀଙ୍କ ମନ୍ତ୍ରିମଣ୍ଡଳର ବିଭାଗବିହୀନ ମନ୍ତ୍ରୀ ଶ୍ରୀଯୁକ୍ତ ଲାଲବାହାଦୁର ଶାସ୍ତ୍ରୀ । ତେବେ କଂଗ୍ରେସ ସଭାପତି ଶ୍ରୀ କାମରାଜ ନାଦର ଶାସ୍ତ୍ରୀଜୀଙ୍କ ସପକ୍ଷରେ ହିଁ ମତ ପ୍ରଦାନ କରିଥିଲେ ।

ଗାନ୍ଧିଜୀଙ୍କ ପଟ୍ଟଶିଷ୍ୟ ଶାସ୍ତ୍ରୀଜୀଙ୍କ ନାମ ଯେତେବେଳେ ନେତୃତ୍ୱ ଗ୍ରହଣ କରିବାଲାଗି ପ୍ରକାଶ ପାଇଥିଲା, ସେ ନିଜର ପ୍ରତିକ୍ରିୟା ପ୍ରକାଶ କରି କହିଥିଲେ ଯେ ଯଦି କେବଳ ସର୍ବସମ୍ମତିକ୍ରମେ ତାହାଙ୍କୁ ଗ୍ରହଣ କରାଯାଏ ତାହେଲେ ସେ ମନ୍ତ୍ରିମଣ୍ଡଳର ନେତୃତ୍ୱ ଗ୍ରହଣ କରିବେ । ତେଣୁ ଅନେକ ତର୍କବିତର୍କ ପରେ କଂଗ୍ରେସ ସଭାପତି ଶ୍ରୀ କାମରାଜଙ୍କ ଉଦ୍ୟମରେ ଶାସ୍ତ୍ରୀଜୀ ସର୍ବସମ୍ମତିକ୍ରମେ କଂଗ୍ରେସ ପାର୍ଲ୍ୟାମେଣ୍ଟାରୀ ଦଳର ନେତା ନିର୍ବାଚିତ ହୋଇଥିଲେ ଜୁନ୍ ଦୁଇ ତାରିଖରେ । ତାର ସାତ ଦିନ ପରେ ଜୁନ୍ ୯ ତାରିଖରେ ଭାରତର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ରୂପେ ସେ ଶପଥ ଗ୍ରହଣ କରିଥିଲେ ।

ନେହେରୁ ପରିବାର ପ୍ରତି ଅତ୍ୟନ୍ତ ଅନୁରକ୍ତ ଶାସ୍ତ୍ରୀଜୀ ଇଚ୍ଛା କରିଥିଲେ ଇନ୍ଦିରାଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳରେ ଏକ ଗୁରୁତ୍ୱପୂର୍ଣ୍ଣ ଆସନରେ ଆସୀନ କରାଇବା ପାଇଁ । ସେଥିଲାଗି ବୈଦେଶିକ ବ୍ୟାପାର ବିଭାଗର ଦାୟିତ୍ୱ ଗ୍ରହଣ କରିବାକୁ ସେ ଇନ୍ଦିରାଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ପିତୃବିଚ୍ଛେଦରେ ଜର୍ଜରିତା ଇନ୍ଦିରାଙ୍କ ଉତ୍ତର ଥିଲା ଯେ, ସେ ଚାହୁଁଥିଲେ ପିତାଜୀଙ୍କ ସ୍ମୃତିରକ୍ଷା; ମନ୍ତ୍ରିମଣ୍ଡଳରେ କୌଣସି ଗୁରୁତ୍ୱପୂର୍ଣ୍ଣ ଆସନ ନୁହେଁ । ତେବେ ଅତ୍ୟନ୍ତ ଛଅ ମାସ ପାଇଁ ସବୁ କାର୍ଯ୍ୟରୁ ଅବ୍ୟାହତି ନେବା ଲାଗି ସେ ଇଚ୍ଛା ପ୍ରକାଶ କରିଥିଲେ । ସେହିପରି ଭାବରେ କିଛି ଦିନ ବିତିଯାଇଥିଲା । ଉକ୍ତ ସମୟ ମଧ୍ୟରେ କେବଳ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀ ନୁହନ୍ତି, ଉପରାଷ୍ଟ୍ରପତି ଡଃ ଜାକିର ହୁସେନ ଓ ମନ୍ତ୍ରିମଣ୍ଡଳର ଅନ୍ୟାନ୍ୟ ସଭ୍ୟମାନେ ମଧ୍ୟ

ଇନ୍ଦିରାଙ୍କ ସହିତ ସାକ୍ଷାତ କରି ତାଙ୍କ ମନ ପରିବର୍ତ୍ତନ କରିବାକୁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ତାଙ୍କ ମନୋଭାବ ସ୍ପଷ୍ଟ ବୁଝିବା ଲାଗି ଚେଷ୍ଟା କରୁଥିଲେ ।

ଯେତେବେଳେ ଶାସ୍ତ୍ରୀଜୀ ତଥ୍ୟ ଓ ବେତାର ବିଭାଗର ମନ୍ତ୍ରୀ ହିସାବରେ ତାହାଙ୍କୁ ମନ୍ତ୍ରିମଣ୍ଡଳରେ ଗ୍ରହଣ କରିବାପାଇଁ ପ୍ରସ୍ତାବ ଦେଇଥିଲେ, ଇନ୍ଦିରା ତାହା ଗ୍ରହଣ କରି ନେଇଥିଲେ ଓ ମନ୍ତ୍ରିମଣ୍ଡଳର ଚତୁର୍ଥ ଆସନର ଅଧିକାରିଣୀ ହୋଇ-ଥିଲେ । ୧୯୬୪ ମସିହା ଜୁଲାଇ ଦୁଇ ତାରିଖ ଦିନ ମନ୍ତ୍ରିମଣ୍ଡଳର ଜଣେ ସଭ୍ୟଭାବରେ ଯୋଗ ଦେଇଥିଲେ ଏବଂ ପ୍ରାୟ ମୃତ୍ୟୁ ପର୍ଯ୍ୟନ୍ତ ସେହି ସଂସ୍ଥା ସହିତ ଓତଃପ୍ରୋତ ଭାବରେ ସଂଯୁକ୍ତ ରହିଥିଲେ ଅଳ୍ପ କିଛିକାଳ ବାଦ୍ ଦେଇ ।

ଭାରତର ସମ୍ବିଧାନରେ ମନ୍ତ୍ରୀତ୍ୱ ଗ୍ରହଣ କରିବାପାଇଁ ଏକ ଅତ୍ୟାବଶ୍ୟକ ଯୋଗ୍ୟତା—ପାର୍ଲାମେଣ୍ଟର ଯେ କୌଣସି କକ୍ଷର ଏକ ସଭ୍ୟଶ୍ରେଣୀଭୁକ୍ତ ହେବା ଆବଶ୍ୟକ । ଲୋକସଭାର ସଭ୍ୟ ହେବାପାଇଁ ହେଲେ କୌଣସି ଏକ ନିର୍ବାଚନ-ମଣ୍ଡଳୀରୁ ନିର୍ବାଚିତ ହୋଇ ଆସିବାକୁ ହେବ । କିନ୍ତୁ ସେତେବେଳେ ଇନ୍ଦିରା କୌଣସି ନିର୍ବାଚନରେ ଲଢ଼ି ନିର୍ବାଚନମଣ୍ଡଳୀ ରୂପେ ଶ୍ରେଷ୍ଠ ପ୍ରଭୃତ କରିବା ସପକ୍ଷରେ ନ ଥିଲେ; ତେଣୁ ସର୍ବସମ୍ମତିକ୍ରମେ ରାଜ୍ୟସଭାର ଜଣେ ସଦସ୍ୟା ଭାବରେ ସେ ନିର୍ବାଚିତ ହୋଇଥିଲେ ଅଗଷ୍ଟ ୨୦ ତାରିଖ ୧୯୬୪ ମସିହାରେ ।

**ବେତାର ବିଭାଗର ମନ୍ତ୍ରୀ :—**

ମନ୍ତ୍ରିମଣ୍ଡଳରେ ଯୋଗ ଦେବା ପରେ ପରେ ଇନ୍ଦିରା ତିନମୂର୍ତ୍ତି ଭବନ ପରିତ୍ୟାଗ କରି ୧, ସଫଦରଜଙ୍ଗ୍ ରୋଡ଼ସ୍ଥ ସରକାରୀ ବାସଭବନକୁ ସ୍ଥାନାନ୍ତରିତ ହୋଇଥିଲେ । ଦୀର୍ଘଦିନ ଧରି ରହି ଆସିଥିବା ତିନମୂର୍ତ୍ତି ଭବନର ମମତାକୁ ଏଡ଼ାଇ ଦେବାପାଇଁ ସେ କୁଣ୍ଠାବୋଧ କରି ନ ଥିଲେ ।

ସଫଦରଜଙ୍ଗ୍ ରୋଡ଼ସ୍ଥ ବାସଭବନ ତିନମୂର୍ତ୍ତି ଭବନ ପରି ବିଶାଳ ନ ଥିଲା । ସେଥିରେ ମାତ୍ର ସାତୋଟି ବଡ଼ କୋଠରୀ ଥିଲା ଓ ସେଥିରୁ ଦୁଇଟି ତାଙ୍କର କାର୍ଯ୍ୟାଳୟ ରୂପେ ବ୍ୟବହୃତ ହେଉଥିଲା । ଗୃହପଛର ସ୍ଥାନ ମଧ୍ୟ ସେତେଟା ବିସ୍ତୃତ ନ ଥିଲା ।

ସମାଜସେବାକୁ ହିଁ ଇନ୍ଦିରା ଜୀବନର ବ୍ରତ ବୋଲି ଧରି ନେଇଥିଲେ । ତେଣୁ ଜନସାଧାରଣଙ୍କ ସହିତ ସମ୍ପର୍କ ରକ୍ଷା କରିବାକୁ ସେ ଆଗ୍ରହ ପ୍ରକାଶ କରୁଥିଲେ । ଫଳରେ ବେତାର ବିଭାଗ ତାଙ୍କର ସେବା ମନୋବୃତ୍ତିକୁ ବିକଶିତ କରାଇବାରେ ସହାୟକ ହୋଇ ପାରିଥିଲା । ପୁନଶ୍ଚ ସାଂସ୍କୃତିକ କାର୍ଯ୍ୟକଳାପ ମଧ୍ୟ ଇନ୍ଦିରାଙ୍କ ପ୍ରିୟ ଥିଲା । ବିଶେଷ କରି କଳା ପ୍ରତି ସେ ଆଗ୍ରହୀ ହୋଇ ଉଠିଥିଲେ ଶାନ୍ତିନିକେତନରେ ଶିକ୍ଷାଲାଭ କରିବାପାଇଁ ଯୋଗ ଦେଇ କବିଗୁରୁଙ୍କ ସଂସ୍ପର୍ଶରେ

ଆସିବା ପରଠାରୁ । ସେଠାରେ ମଣିପୁରୀ ନୃତ୍ୟ ଶିକ୍ଷା କରିବା ସଙ୍ଗେ ସଙ୍ଗେ ଗୁରୁଦେବଙ୍କ ସହିତ ଏକ ନୃତ୍ୟ ଦଳରେ ଭାରତ ଭ୍ରମଣରେ ଯିବାଲାଗି ମଧ୍ୟ ସେ ମନୋନୀତ ହୋଇଥିଲେ । କିନ୍ତୁ ମାତା କମଳାଙ୍କ ଅସୁସ୍ଥତାର ଖବର ପାଇ ବାଧ୍ୟ ହୋଇ ତାଙ୍କ ସେବା କରିବା ଲାଗି ଚାଲି ଆସିବାକୁ ହୋଇଥିଲା । ପୁନଶ୍ଚ ଇଂଲଣ୍ଡରେ ଅଧ୍ୟୟନ କରିବା ସମୟରେ ଶାନ୍ତା ଗାନ୍ଧୀ ଓ ଫିରୋଜଙ୍କ ସହିତ ବିଭିନ୍ନ ଅପେରା ତଥା ମନୋରଞ୍ଜନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଥିଲେ ।

ଅନେକ ଦିନ ଧରି ଇନ୍ଦିରା ଚଳଚ୍ଚିତ୍ର ଆନ୍ଦୋଳନର ପ୍ରଥମେ ସଭାନେତ୍ରୀ ଓ ପରେ ଉପସଭାନେତ୍ରୀ ଭାବରେ କାର୍ଯ୍ୟ ନିର୍ବାହ କରିଥିଲେ; କାରଣ ସେ ଅନୁଭବ କରିଥିଲେ ଯେ ଚଳଚ୍ଚିତ୍ର ମାଧ୍ୟମରେ ଜନସାଧାରଣଙ୍କୁ ସହଜରେ ଶିକ୍ଷା ଦିଆ-ଯାଇପାରେ । ସୂଚନା ବିଭାଗର ମନ୍ତ୍ରିତ୍ୱ ଗ୍ରହଣ କରିବା ପରେ ଜନଗଣଙ୍କୁ ଉପଯୁକ୍ତ ଶିକ୍ଷା ଦିଆଯାଇପାରିବା ଭଳି ସରକାରୀ ପଦକ୍ଷେପ ନେବାର ସୁଯୋଗ ସେ ପାଇଥିଲେ । ତେଣୁ ପ୍ରଥମେ ସେ ଚଳଚ୍ଚିତ୍ର ସେନ୍‌ସର କମିଟିର ପୁନର୍ଗଠନ କରି ପ୍ରକୃତରେ ଯେଉଁମାନେ ଚଳଚ୍ଚିତ୍ର ସମ୍ପର୍କରେ ଅଭିଜ୍ଞ ତଥା ସେ ଆନ୍ଦୋଳନ ସହିତ ସମ୍ପୃକ୍ତ, ସେହିମାନଙ୍କୁ ବୋର୍ଡ଼ର ସଭ୍ୟ ଭାବରେ ମନୋନୀତ କରିଥିଲେ । ଯେପରି ସେମାନଙ୍କ ବିଚାରରେ କୌଣସି ପ୍ରକାର ପକ୍ଷପାତିତା ରହିବ ନାହିଁ, ସେଥିପ୍ରତି ମଧ୍ୟ ସେ ଧ୍ୟାନ ଦେଇଥିଲେ ।

ଜନସାଧାରଣଙ୍କୁ ଆମୋଦପ୍ରମୋଦ ଦେବା ସଙ୍ଗେ ସଙ୍ଗେ ଯେ ତାହା ଉପଯୁକ୍ତ ଶିକ୍ଷାର ମାଧ୍ୟମ ରୂପେ ବ୍ୟବହୃତ କରାଯାଇପାରିବ, ଏକଥା ଅନୁଭବ କରି ଇନ୍ଦିରା ପ୍ରଥମେ ଭାରତରେ ଟେଲିଭିଜନର ପ୍ରଚଳନ କରାଇଥିଲେ । ତାଙ୍କରି ପ୍ରରୋଚନାରେ ପଲ୍ଲୀ ସ୍ତ୍ରୀଲୋକମାନଙ୍କର ଶିକ୍ଷଣୀୟ ବିଷୟବସ୍ତୁ ଓ ପରିବାର ନିୟୋଜନର ଉପକାରିତା, ବିଭିନ୍ନ ପ୍ରଣାଳୀ ଇତ୍ୟାଦି ବିଷୟକ କାର୍ଯ୍ୟକ୍ରମ ଦିଲ୍ଲୀ ଟେଲିଭିଜନ କେନ୍ଦ୍ରରୁ ପ୍ରସାର ଆରମ୍ଭ କରାଇଥିଲେ ।

ତାଙ୍କ ମନ୍ତ୍ରଣାଳୟରେ କୌଣସି କାର୍ଯ୍ୟ କରିବାକୁ ଗଲାବେଳେ ସେ କୌଣସି ପ୍ରକାର ରାଜନୈତିକ ଚାପ ପ୍ରତି ଭ୍ରୂକ୍ଷେପ କରୁ ନ ଥିଲେ । ଯେତେବେଳେ ପ୍ରଥମ କରି ଟେଲିଭିଜନ କେନ୍ଦ୍ର ପ୍ରତିଷ୍ଠାର ପରିକଳ୍ପନା କରିଥିଲେ, ପୂର୍ବ ଓ ପଶ୍ଚିମ ଜର୍ମାନୀର ଯନ୍ତ୍ରପାତି ଯୋଗାଣକୁ ସ୍ୱାଗତ କରିଥିଲେ । ତା'ପରେ ଯେତେବେଳେ ଏକ ଶକ୍ତିଶାଳୀ ଟ୍ରାନ୍ ମିଟର ଆବଶ୍ୟକତା ଅନୁଭୂତ ହୋଇଥିଲା, ତାହା ରୁଷ ଦେଶରୁ ମଗାଇବା ଲାଗି ସେ କୌଣସି କୁଣ୍ଠାବୋଧ କରି ନ ଥିଲେ ।

ସେହିଭଳି ବିଦେଶରୁ ଆମଦାନୀ କରାଯାଉଥିବା ସମ୍ବାଦପତ୍ର ଛାପା କାଗଜ ପାଇଁ ଲାଇସେନ୍‌ସ ଦେଲାବେଳେ କୌଣସି ରାଜନୈତିକ ପ୍ରଭାବକୁ ସେ ଆଦୌ

ପ୍ରଶ୍ରୟ ଦେଉ ନ ଥିଲେ । କୌଣସି କଥା ବସ୍ତୁରକୁ ନ ନେଇ ଆମଦାନୀ ହୋଇଥିବା କାଗଜର ନ୍ୟାୟୋଚିତ ଓ ନିରପେକ୍ଷ ବଣ୍ଟନ ନୀତି ଅବଲମ୍ବନ କରୁଥିଲେ । ତାଙ୍କ ମନ୍ତ୍ରଣାଳୟର ସମସ୍ତ କର୍ମଚାରୀଙ୍କୁ ଆଦେଶ ତଥା ଆଶ୍ୱାସନା ଦେଇଥିଲେ ଯେ, ଯେକୌଣସି ନୀତି ବା ନିଷ୍ପତ୍ତି କେବଳ ରାଜନୈତିକ ପ୍ରଭାବକୁ ଭୟ କରି ବଦଳାଇ ଦିଆଯାଇ ପାରିବ ନାହିଁ । ବିଭାଗୀୟ ମନ୍ତ୍ରୀଙ୍କର ସେ ଆଶ୍ୱାସନା, ନିରପେକ୍ଷତା, ସେବା ମନୋଭାବ ଓ ନିର୍ଭୀକ ନିଷ୍ପତ୍ତି ତାଙ୍କ ମନ୍ତ୍ରଣାଳୟର କର୍ମଚାରୀମାନଙ୍କୁ କର୍ମପ୍ରେରଣା ଦେବା ସଙ୍ଗେ ସଙ୍ଗେ ନିର୍ଭୀକ ଭାବେ ଓ ଆଇନ ଅନୁଯାୟୀ କାର୍ଯ୍ୟ କରିବା ଲାଗି ସୁଯୋଗ ଦେଇଥିଲା ।

କେନ୍ଦ୍ର ସରକାରଙ୍କ ତଥ୍ୟ ଓ ବେତାର ବିଭାଗର ମନ୍ତ୍ରୀ ଭାବରେ ମନ୍ତ୍ରଣାଳୟର କୌଣସି ସରକାରୀ କାଗଜପତ୍ର କାର୍ଯ୍ୟବାକିଆ ରଖିବାକୁ ସେ ପସନ୍ଦ କରୁ ନ ଥିଲେ ଠିକ୍ ଜବାହରଲାଲଙ୍କ ଭଳି । ଯେଉଁ ଦିନର କାର୍ଯ୍ୟ ସେହି ଦିନ ହିଁ ସାରି ଘରକୁ ଫେରୁଥିଲେ । କୌଣସି ଫାଇଲ ତାଙ୍କ ନିକଟକୁ ଆସୁଥିଲେ ତାହା ପରଦିନ ପାଇଁ ଟେବୁଲ ଉପରେ ରହୁ ନ ଥିଲା । ସେ ଯେତେବେଳେ ଦେଖୁଥିଲେ ଯେ, ତାଙ୍କର କୌଣସି କର୍ମଚାରୀ ଫାଇଲର ନୋଟ (Note ଲେଖିବା ବେଳେ ଠିକ୍ ଭାବରେ, ସୁନ୍ଦର ଭାବରେ ଓ ନିର୍ଦ୍ଦିଷ୍ଟ ଭାବରେ ଲେଖିଛି, ତାର ପ୍ରଶଂସା କରିବାକୁ ଭୁଲୁ ନ ଥିଲେ । ଫଳରେ ତାଙ୍କ ମନ୍ତ୍ରଣାଳୟର କର୍ମଚାରୀମାନେ ଉତ୍ସାହିତ ହେବା ସଙ୍ଗେ ସଙ୍ଗେ କର୍ମତତ୍ପର ମଧ୍ୟ ହୋଇ ଉଠୁଥିଲେ । କୌଣସି ସମସ୍ୟା ବା ନୀତିର ନିଷ୍ପତ୍ତି କରିବା ଲାଗି ଯେତେ ଶୀଘ୍ର ସମ୍ଭବ ତାଙ୍କ ସେକ୍ରେଟେରୀମାନଙ୍କ ସହିତ ପରାମର୍ଶ କରି ତାହା ସେ ଯେତେ ଶୀଘ୍ର ସାରିଦେବାପାଇଁ ଚେଷ୍ଟା କରୁଥିଲେ । କେବଳ ସେତିକରେ ସେ ସନ୍ତୁଷ୍ଟ ହେଉ ନ ଥିଲେ, ସେ ଯେଉଁ ନିଷ୍ପତ୍ତିଗୁଡ଼ିକ ନେଉଥିଲେ ତାହା ବାସ୍ତବରେ କାର୍ଯ୍ୟକାରୀ ହୋଇପାରିଲା କି ନାହିଁ ତାହା ମଧ୍ୟ ପୁଙ୍ଖାନୁପୁଙ୍ଖ ତଦନ୍ତ କରି ଯେପରି ଶୀଘ୍ର କାର୍ଯ୍ୟକାରୀ ହୋଇପାରିବ ତାହାର ବ୍ୟବସ୍ଥା ମଧ୍ୟ କରୁଥିଲେ ।

ସେ ବିଭାଗୀୟ ମନ୍ତ୍ରୀ ଭାବରେ ଦେଶରେ ରହିଥିବା ବେତାର କେନ୍ଦ୍ରଗୁଡ଼ିକର କାର୍ଯ୍ୟସମୟକୁ ଦ୍ୱିଗୁଣିତ କରାଇ ଦେଇଥିଲେ । ତେଣୁ ଦେଶର ବେତାର କେନ୍ଦ୍ର-ଗୁଡ଼ିକରେ ପ୍ରଥମରୁ ଚାଲୁଥିବା ନଅଘଣ୍ଟିଆ କାର୍ଯ୍ୟକ୍ରମଗୁଡ଼ିକ ଅଠରଘଣ୍ଟିଆ କାର୍ଯ୍ୟକ୍ରମରେ ପରିଣତ ହୋଇଯାଇଥିଲା । ସବୁଠାରୁ ଉଲ୍ଲେଖନୀୟ ଥିଲା ତାଙ୍କର ନିରପେକ୍ଷ, ଗଣତାନ୍ତ୍ରିକ ପଦକ୍ଷେପ । ସେତେବେଳ ପର୍ଯ୍ୟନ୍ତ ବେତାର ବିଭାଗ କେନ୍ଦ୍ର ସରକାରଙ୍କ ଏକଚାଟିଆ ଅଧିକାରରେ ଥିଲା । ଦେଶରେ ଶାସନକ୍ଷମତାରେ ଥିବା ଦଳ ବ୍ୟତୀତ ବିରୋଧୀଦଳଙ୍କ ମତାମତ ପାଇଁ ବେତାର କେନ୍ଦ୍ରଗୁଡ଼ିକର ଦ୍ୱାର ବନ୍ଦ ରହିଥିଲା । କିନ୍ତୁ ଭାରତରେ ଗଣତନ୍ତ୍ରକୁ ସମ୍ମାନ ଦେଇ ଓ ଗଣତାନ୍ତ୍ରିକ ପରମ୍ପରାକୁ ନୂତନ ଜୀବନ ଦେଇ ସେ ରୁଦ୍ଧ ଦ୍ୱାରକୁ ଉନ୍ମୁକ୍ତ କରିଥିଲେ ଇନ୍ଦିରା ।

ଶ୍ରୀମତୀ ଇନ୍ଦିରାଙ୍କ ଜଣେ ଜୀବନୀକାରଙ୍କ ଭାଷାରେ, "She opened the air waves which up to then had been a Government monopoly and the mouth piece of the ruling party, to members of the opposition parties and to independent commentators."* ତାର ପରିଣାମ ସ୍ୱରୂପ ବିରୋଧୀ ନେତାମାନଙ୍କ ସମ୍ମାନ ଭାରତରେ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସେମାନେ ମଧ୍ୟ ଉତ୍ସାହିତ ହୋଇଥିଲେ ।

ବେତାର ବିଭାଗର କାର୍ଯ୍ୟକ୍ରମଗୁଡ଼ିକ କିପରି ଭାବରେ ଦେଶର ଅଧିକାଂଶ ଜନତାଙ୍କ ନିକଟରେ ପହଞ୍ଚି ପାରିବ ସେଥିପାଇଁ ମଧ୍ୟ ଉଦ୍ୟମ କରିଥିଲେ ଶ୍ରୀମତୀ ଗାନ୍ଧୀ । ଲୋକଙ୍କ ଆର୍ଥିକ ଅବସ୍ଥା ସମ୍ପର୍କରେ ସେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ ଓ ଦାମିକା ବେତାର ଯନ୍ତ୍ର (ରେଡ଼ିଓ) ଯେ ସାଧାରଣ ଲୋକେ କିଣିପାରିବା ଭଳି ସକ୍ଷମ ନ ଥିଲେ, ତାହା ମଧ୍ୟ ସ୍ପଷ୍ଟ ଭାବେ ଜାଣିଥିଲେ; ତେଣୁ କମ୍ ଦାମର ରେଡ଼ିଓ ଉତ୍ପାଦନ ପାଇଁ ସେ ଉତ୍ସାହିତ କରିଥିଲେ ।

ଉତ୍ପାଦକମାନଙ୍କୁ ଉତ୍ସାହିତ କରିବା କାରଣ ଥିଲା କମ୍ ଶକ୍ତିବିଶିଷ୍ଟ ଟ୍ରାଞ୍ଜିଷ୍ଟର ରେଡ଼ିଓ ତିଆରି କରାଯାଇ ପାରିଲେ ଅଧିକ ଲୋକ ଉପକୃତ ହୋଇପାରିବେ, ଯଦିଓ ସେପ୍ରକାର ରେଡ଼ିଓ କେବଳ ନିକଟବର୍ତ୍ତୀ ଷ୍ଟେସନ୍‌ମାନଙ୍କ ସହିତ ସଂଯୋଗ ରକ୍ଷା କରିପାରିବ ।

ମନ୍ତ୍ରୀତ୍ୱ ଗ୍ରହଣ କରିବାର ଅଳ୍ପ କେତେ ମାସ ମଧ୍ୟରେ ଶ୍ରୀମତୀ ଗାନ୍ଧୀଙ୍କୁ କେତେକ ଆନ୍ତର୍ଜାତିକ କାର୍ଯ୍ୟ ନିର୍ବାହ କରିବାକୁ ପଡ଼ିଥିଲା । ସୋଭିଏତ୍ ରୁଷରେ ତତ୍କାଳୀନ ପ୍ରଧାନମନ୍ତ୍ରୀ କ୍ରୁଶ୍ଚେଭଙ୍କଠାରୁ ଯେତେବେଳେ କୋସିଜିନ୍ ଓ ବ୍ରେଜନେଭ ଦାୟିତ୍ୱ ଗ୍ରହଣ କରିଥିଲେ, ଦିଲ୍ଲୀର ରାଜନୈତିକ ମହଲରେ ଗୁଜବ ଉଠିଥିଲା ଯେ ସେଠାର ନୂତନ ଶାସନବର୍ଗ ପୂର୍ବାପେକ୍ଷା ଭାରତକୁ କଦାପି ଅଧିକ ବନ୍ଧୁତା ପ୍ରଦର୍ଶନ କରିବେ ନାହିଁ । ସେପ୍ରକାର ପରିସ୍ଥିତିରେ ଶ୍ରୀମତୀ ଗାନ୍ଧୀ ଥିଲେ ରୁଷ ଭ୍ରମଣରେ ସରକାରୀ ଭାବରେ ଯିବା ପ୍ରଥମ ମନ୍ତ୍ରୀ । ସେଠାକୁ ଯାଇ ସେଠା ନୂତନ ନେତୃମଣ୍ଡଳୀଙ୍କ ସହିତ ଆଲୋଚନା କରି ଫେରିଆସିବା ପରେ ଦୃଢ଼ ମତ ପ୍ରଦାନ କରିଥିଲେ ଯେ ଭାରତ-ରୁଷ ସମ୍ପର୍କର କୌଣସି ପରିବର୍ତ୍ତନ ଆଶଙ୍କା କରିବା ମନ୍ତ୍ରୀମଣ୍ଡଳୀଙ୍କ ପକ୍ଷରେ ଅନୁଚିତ । ସେଠାକାର ସାମରିକ ଅଫିସର ଓ ଶାସକବର୍ଗଙ୍କ ସହିତ ବିଭିନ୍ନ ଆଲୋଚନା ପରେ ସେମାନେ ଭାରତକୁ ଅର୍ଥନୈତିକ ଓ ସାମରିକ ସାହାଯ୍ୟ ଦେବାପାଇଁ ପ୍ରସ୍ତୁତ ଥିବା ସଙ୍ଗେ ସଙ୍ଗେ ପୁରାତନ ବନ୍ଧୁତାର ସୁରକ୍ଷା ଦିଗରେ ତତ୍ପର ଥିବା ଇନ୍ଦିରା ଲକ୍ଷ୍ୟ କରିଥିଲେ । ତାଙ୍କ ଲାଗି ମସ୍କୋରେ

* K. Hathee Sing – We Nehrus, P 306.

ଆୟୋଜିତ ହୋଇଥିବା ସ୍ୱାଗତ ଅଭିନନ୍ଦନରେ ସେ ଅଭିଭୂତ ହୋଇପଡ଼ିଥିଲେ । ସୋଭିଏତ୍ ନେତୃବୃନ୍ଦଙ୍କ ସହିତ ଆଲୋଚନା ପରେ ବ୍ରିଟେନ, ଫ୍ରାନ୍ସ ଓ ଯୁଗୋସ୍ଲାଭିଆର ନେତାମାନଙ୍କ ସହିତ ଆଲୋଚନା କରି ରୁଷର ବୈଦେଶିକ ନୀତି ଭାରତ ପ୍ରତି ପ୍ରତିକୂଳ ହେବା ସମ୍ଭାବନା ନ ଥିବା କଥା ପ୍ରଧାନମନ୍ତ୍ରୀଙ୍କୁ ଜଣାଇ ଦେଇଥିଲେ । ସେହି ବିଦେଶଗସ୍ତ ତାଙ୍କ ପିତା ପଣ୍ଡିତ ନେହେରୁଙ୍କ ଭଳି ଇନ୍ଦିରାଙ୍କୁ ମଧ୍ୟ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କରାଇ ଦେଇଥିଲା । ତେଣୁ 'ଲିଙ୍କ୍' ପତ୍ରିକା ମନ୍ତବ୍ୟ ପ୍ରକାଶ କରିଥିଲା—"ଶ୍ରୀମତୀ ଗାନ୍ଧୀଙ୍କ ବିଦେଶ ଗସ୍ତ ଗୋଟିଏ ଧାରଣା ସ୍ପଷ୍ଟ କରି ଦେଇଥିଲା ଯେ ମନ୍ତ୍ରୀମଣ୍ଡଳରେ ତାଙ୍କର ଉପସ୍ଥିତି ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ସମ୍ମାନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଜବାହାରଲାଲନେହେରୁଙ୍କ ନାମ ସହିତ ଜଡ଼ିତ ତଥା ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଜାତୀୟ ନୀତିଗୁଡ଼ିକ ଭାରତରେ ଅନୁସୃତ ହେବା ନିଶ୍ଚିତତା ପ୍ରତିପାଦନ କରୁଛି ।" *

ରୁଷରୁ ଫେରିବାର କେତେକ ସପ୍ତାହ ପରେ ଇନ୍ଦିରା ପୁଣି ନ୍ୟୁୟର୍କ ଗସ୍ତ କରିଥିଲେ ସେଠାରେ ହେଉଥିବା ନେହେରୁ ସ୍ମୃତି ପ୍ରଦର୍ଶନୀ ଉଦ୍‌ଘାଟନ ଉତ୍ସବରେ ସଭାପତିତ୍ୱ କରିବାପାଇଁ । ରୁଷ ଭଳି ଆମେରିକାରେ ମଧ୍ୟ ଭାରତର ନୀତି ଦୃଷ୍ଟିରୁ ଦୁଇ ଦେଶ ମଧ୍ୟରେ ସମ୍ପର୍କ ନେଇ ସେଠାକାର ନେତୃବୃନ୍ଦଙ୍କ ସହିତ ଆଲୋଚନା କରିଥିଲେ । ସମ୍ପୂର୍ଣ୍ଣ ବିପରୀତ ମତପୋଷଣ କରୁଥିବା ଦୁଇଟି ଦେଶକୁ ଖୁବ୍ କମ୍ ଦିନ ବ୍ୟବଧାନରେ ଯାଇଥିଲେ ମଧ୍ୟ ପିତାଜୀଙ୍କ ଭଳି ଉଭୟ ସ୍ଥାନରେ କିପରି କଥାବାର୍ତ୍ତା କରିବାକୁ ହେବ ଓ କିପରି ନୀତିଗତ ବ୍ୟବହାର ପ୍ରଦର୍ଶନ କରିବାକୁ ହେବ ସେଥିଲାଗି ନିଜକୁ ସମ୍ପୂର୍ଣ୍ଣ ପ୍ରସ୍ତୁତ କରିପାରିଥିଲେ ଶ୍ରୀମତୀ ଗାନ୍ଧୀ ।

୧୯୬୫ ମସିହା ଜାନୁୟାରୀ ମାସରେ ଭାରତ ସରକାର ଏକ ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବର ଆୟୋଜନ କରିଥିଲେ । ତଥ୍ୟ ଓ ବେତାର ବିଭାଗର ମନ୍ତ୍ରୀ ହିସାବରେ ଶ୍ରୀମତୀ ଇନ୍ଦିରା ତାର ପ୍ରତ୍ୟକ୍ଷ ତତ୍ତ୍ୱ ନେଇଥିଲେ ଏବଂ ଚେଷ୍ଟା କରିଥିଲେ ଉତ୍ସବର ପ୍ରତ୍ୟେକ ବିଭାଗ ଯେପରି ତ୍ରୁଟିହୀନ ହେବ । ସେ ଉତ୍ସବରେ ଯୋଗଦେବା ପାଇଁ ଆସିଥିବା ପୃଥିବୀର ବିଭିନ୍ନ ଦେଶର ଚଳଚ୍ଚିତ୍ରଗୁଡ଼ିକର ପରିଦେଶଣଠାରୁ ଆରମ୍ଭ କରି ବିଦେଶାଗତ ଅତିଥି ଓ ନିରୀକ୍ଷକମାନଙ୍କ ରହିବା, ଖାଇବା, ମନୋରଞ୍ଜନ କରିବା ଓ ଏପରି କି ପ୍ରଦର୍ଶିତ ହେଉଥିବା ଚଳଚ୍ଚିତ୍ରଗୁଡ଼ିକର ନିରପେକ୍ଷ ବିଚାର କରିବା ପର୍ଯ୍ୟନ୍ତ ବିଭିନ୍ନ କାର୍ଯ୍ୟ ଠିକ୍‌ଭାବରେ ହେଉଛି କି ନା ତାହା ମଧ୍ୟ ସେ ନିଜେ ବୁଝାବୁଝି କରୁଥିଲେ । ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ପ୍ରତିନିଧିମାନେ ଇନ୍ଦିରାଙ୍କ ସେ ତତ୍ପରତା ଦେଖି ଅତି ମୁଗ୍ଧ ହୋଇଯାଇଥିଲେ ଓ ଜଣେ ବିଦେଶାଗତ ପୃଥିବୀପ୍ରସିଦ୍ଧ ଚଳଚ୍ଚିତ୍ର ସମାଲୋଚକ ମତ ଦେଇଥିଲେ, "କେନେଡ଼ି,

---

* Link— Nov. 8th, 1964.

ଭେନସ୍, କାର୍ଲୋଭିଭେରି, ମସ୍କୋ ଏବଂ ବର୍ଲିନ୍‌ରେ ଅନୁଷ୍ଠିତ ଚଳଚ୍ଚିତ୍ର ଉତ୍ସବ ଅବସରରେ ସମ୍ପୃକ୍ତ ଦେଶର ଅନେକ ମନ୍ତ୍ରୀଙ୍କ ସହିତ ମୋର ସାକ୍ଷାତ୍ ହୋଇଛି । କିନ୍ତୁ ମୋ ଜାଣତରେ ଶ୍ରୀମତୀ ଗାନ୍ଧୀ ହେଉଛନ୍ତି ପ୍ରଥମମନ୍ତ୍ରୀ, ପ୍ରକୃତରେ ଯାହାର ଆନ୍ତର୍ଜାତିକ ସିନେମା ସମ୍ପର୍କରେ କିଛି ନା କିଛି ଜ୍ଞାନ ଅଛି ।†

ମନ୍ତ୍ରିମଣ୍ଡଳର ସଭ୍ୟା ହିସାବରେ ଓ ତାଙ୍କ ମନ୍ତ୍ରଣାଳୟର କାର୍ଯ୍ୟକଳାପକୁ ବାଦ୍ ଦେଇ ଶ୍ରୀମତୀ ଗାନ୍ଧୀ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟା ଭାବରେ ଓ ତତ୍ସଂଗେ ପନ୍ଥାରେ ଦେଶର ଅନ୍ୟାନ୍ୟ ରାଜନୈତିକ ଓ ସାମାଜିକ କାର୍ଯ୍ୟକଳାପ-ଗୁଡ଼ିକରେ ଅଂଶଗ୍ରହଣ କରୁଥିଲେ । ନିଜ ବ୍ୟକ୍ତିଗତ ଅଭିଜ୍ଞତାକୁ କେନ୍ଦ୍ର କରି ସେ 'ସାମାଜିକ ସେବା' ଉପରେ ଏକ ପ୍ରବନ୍ଧ ରଚନା କରିଥିଲେ । ସେଥିରେ ସେ ନେତୃବୃନ୍ଦଙ୍କ କେତେକ ତ୍ରୁଟିପୂର୍ଣ୍ଣ ସମାଲୋଚନା ପ୍ରକାଶ କରିଥିଲେ, ଯଦିଓ ସେ ନିଜେ ସେତେବେଳେ ମନ୍ତ୍ରିମଣ୍ଡଳରେ ଥିଲେ । ଭୁଲକୁ ଭୁଲ ବୋଲି କହିବାକୁ ସେ ପଶ୍ଚାତ୍‌ପଦ ହେଉ ନ ଥିଲେ । ସେଥିରେ ସେ ଲେଖିଥିଲେ—"The Governmental programme is certainly expanding, although always so systematically as one would wish Often enough it is put in the charge of people who have no special sympathy or knowledge. A number of laws have been passed, but can we honestly say that they are being implemented ?"††

**ପରୀକ୍ଷା ଦିନଆ ଯୁଦ୍ଧ :—**

ପାକିସ୍ଥାନର ଆୟୁବ ସରକାର ଯୋଜନାବଦ୍ଧ ଭାବରେ ହଜାର ହଜାର ଲୋକଙ୍କୁ ତାଲିମ ଦେଇ ଭାରତର କାଶ୍ମୀର ଅଞ୍ଚଳରେ ଉପଦ୍ରବ କରିବାପାଇଁ ପଠାଇଥିଲା ୧୯୬୫ ମସିହାର ପ୍ରାକ୍‌କାଳରେ । ସମଗ୍ର କାଶ୍ମୀରରେ ଅନ୍ତର୍ଘାତୀ କାର୍ଯ୍ୟକଳାପର ମାତ୍ରା ଅପରିକଳ୍ପନୀୟ ଭାବେ ବୃଦ୍ଧି ପାଇଥିଲା । ସେଇ ଅନ୍ତର୍ଘାତୀ କାର୍ଯ୍ୟକଳାପ ମଧ୍ୟରେ ଅନେକ ଲୋକ କାଶ୍ମୀରର ମୁସଲମାନ ସମ୍ପ୍ରଦାୟର ଲୋକଙ୍କୁ ଭାରତ ସରକାରଙ୍କ ପ୍ରତି ବିଦ୍ୱେଷ ଭାବରେ ଉଦ୍ରେକ କରାଇବା ଲାଗି ଆପ୍ରାଣ ଉଦ୍ୟମ କରିଥିଲେ । ପାକିସ୍ଥାନ ସରକାର ମନେ କରିଥିଲା ଯେ ସେ ପ୍ରକାର କାର୍ଯ୍ୟକଳାପଦ୍ୱାରା ସେଠା ଲୋକେ ଭାରତ ସରକାରଙ୍କ ଉପରୁ ଆସ୍ଥା ହରାଇବେ ଏବଂ ଅନ୍ତର୍ଘାତୀମାନଙ୍କ ହାତରେ ହାତ ମିଳାଇ ଭାରତଠାରୁ ବିଚ୍ଛିନ୍ନ ହୋଇଯିବେ ।

---

† K. A. Abbas :—Return of the red rose, P 137.

†† K. Hathee Singh—Dear to Behold. P-160.

କିନ୍ତୁ ଫଳ ଠିକ୍ ଓଲଟା ହୋଇଥିଲା । କାଶ୍ମୀରର ପ୍ରାଦେଶିକ ସରକାର ପାକିସ୍ଥାନର ଅନୁପ୍ରବେଶକାରୀମାନଙ୍କ ମଧ୍ୟରୁ ଅନେକ ଲୋକଙ୍କୁ ଗିରଫ କରିବା ସଙ୍ଗେ ସଙ୍ଗେ ଅନେକଙ୍କୁ ମଧ୍ୟ ହତ୍ୟା କରିଥିଲେ—ଯେଉଁମାନେ ସୈନ୍ୟବାହିନୀ ଓ ପୋଲିସମାନଙ୍କ ଆଖିରେ ଧୂଳି ଦେଇ ଶ୍ରୀନଗରକୁ ପଶିଥିଲେ । ଅପର ପକ୍ଷରେ କାଶ୍ମୀରର ଅଧିବାସୀମାନେ ଭାରତ ସରକାରଙ୍କ ପ୍ରତି ସମ୍ପୂର୍ଣ୍ଣ ଆନୁଗତ୍ୟ ପ୍ରକାଶ କରିଥିଲେ ।

ହଠାତ୍ ୧୯୬୫ ମସିହା ସେପ୍‌ଟେମ୍ବର ମାସରେ ପାକିସ୍ଥାନ ଭାରତ ଆକ୍ରମଣ କରିଥିଲା ଜାମ୍ମୁ ନିକଟରେ । ତାହାର ପ୍ରଥମ ଉଦ୍ଦେଶ୍ୟ ଥିଲା କାଶ୍ମୀର ଉପତ୍ୟକା ଓ ଭାରତ ମଧ୍ୟରେ ଥିବା ଯୋଗାଯୋଗ ଛିନ୍ନ କରିଦେବା । ପଞ୍ଜାବର ସମତଳ ଅଞ୍ଚଳଗୁଡ଼ିକ ଦେଇ ଦିଲ୍ଲୀ ପର୍ଯ୍ୟନ୍ତ ରାସ୍ତା ତିଆରି କରିବା ଲାଗି କ୍ଷମତାଶାଳୀ ଆକାଶବାହିନୀକୁ ନିଯୁକ୍ତ କରିଥିଲା । ଅତ୍ୟାଧୁନିକ କ୍ଷମତାପନ୍ନ ଟ୍ୟାଙ୍କ୍, ଟର୍‌ପେଡୋ ଇତ୍ୟାଦି ଅସ୍ତ୍ରଶସ୍ତ୍ର ଆମେରିକା ଦେଇଥିଲା ପାକିସ୍ଥାନକୁ, ଚୀନ ଏବଂ ରୁଷ ବିରୁଦ୍ଧରେ ବ୍ୟବହାର କରିବା ଲାଗି । କିନ୍ତୁ ପାକିସ୍ଥାନ ତାହା ଭାରତ ବିରୁଦ୍ଧରେ ହିଁ ବ୍ୟବହାର କରିଥିଲା । ପାକିସ୍ଥାନ ରେଡ଼ିଓ ଏକ ଘୋଷଣାରେ କହିଥିଲା ଯେ ତିନି ଦିନ ଭିତରେ ଭାରତର ରାଜଧାନୀ ନୂଆଦିଲ୍ଲୀ ପାକିସ୍ଥାନର ଅକ୍ତିଆରକୁ ଆସିଯିବ । କିନ୍ତୁ ବାସ୍ତବ କ୍ଷେତ୍ରରେ ଭାରତୀୟ ବାହିନୀ ପାକିସ୍ଥାନର ସୀମା ଅତିକ୍ରମ କରି ଲାହୋର ଆଡ଼କୁ ଆଗେଇ ଚାଲିଥିଲେ ।

ପାକିସ୍ଥାନ ଓ ଭାରତ ଦୁଇଟି ଦେଶ ନୂତନ ଭାବେ ପୃଥିବୀ ମାନଚିତ୍ରରେ ପରିଚିତ ହେବା ପରଠାରୁ ହିଁ ପାକିସ୍ଥାନର ବୈଦେଶିକ ନୀତି ସବୁବେଳେ ଭାରତ ବିରୋଧରେ ଉଦ୍ଦିଷ୍ଟ ଥିଲା । ସେଠାକାର ଗଣତନ୍ତ୍ର ନାମରେ ଚାଲିଥିବା ଏକଛତ୍ର ଶାସକମାନେ ଭାରତର ସୁସ୍ଥ ଗଣତାନ୍ତ୍ରିକ ପରମ୍ପରାର ସଫଳତା ପାଇଁ ମନେ ମନେ ହିଂସା କରୁଥିଲେ । ତେଣୁ ଅନେକବାର ସୀମାନ୍ତରେ ବିଭିନ୍ନ ପ୍ରକାର ଗଣ୍ଡଗୋଳ ସୃଷ୍ଟି କରୁଥିଲେ । ଜଣେ ସମାଲୋଚକଙ୍କ ମତରେ—'ଭାରତ ମଧ୍ୟରେ ଥିବା କନ୍ଦଲଗୁଡ଼ିକୁ ସବୁବେଳେ ଜୀବନ୍ତ କରି ରଖିବା ପାକିସ୍ଥାନର ନୀତିରେ ପରିଣତ ହୋଇଗଲାଣି । ସୀମା ବିବାଦକୁ ଶାନ୍ତିପୂର୍ଣ୍ଣଭାବେ ସମାଧାନ କରିବା ଲାଗି ଅନେକ ପ୍ରଚେଷ୍ଟା ସତ୍ତ୍ୱେ ତାହା ଫଳପ୍ରଦ ନ ହେବାର କାରଣ ପାକିସ୍ଥାନର କୁତ୍ସିତ ଓ ହିଂସ୍ର ମନୋବୃତ୍ତି ।"* କେବଳ ସେତିକି ନୁହେଁ, ତାର ବୈଦେଶିକ ନୀତି ବସ୍ଥାନ କଲାବେଳେ ପାକିସ୍ଥାନ ଯେତେଦୂର ସମ୍ଭବ ଭାରତର ବନ୍ଧୁଭାବାପନ୍ନ ରାଷ୍ଟ୍ରମାନଙ୍କ

---

* Asit Kumar Sen—International Relations since World War I, 1970 Edn. (S. Chand & Co)—Page-626.

ମଧ୍ୟରେ ସୁସମ୍ପର୍କ ରକ୍ଷିବା ପାଇଁ ମଧ୍ୟ ଚେଷ୍ଟା କରୁଥିଲା । ଶତ୍ରୁ ରାଷ୍ଟ୍ରର ବନ୍ଧୁମାନେ କେବେହେଁ ବନ୍ଧୁ ହୋଇ ନ ପାରନ୍ତି, ବରଂ ଶତ୍ରୁ ହିଁ ହୋଇଥାନ୍ତି—ଏହି ନୀତି ପ୍ରତି ପାକିସ୍ଥାନର ଯଥେଷ୍ଟ ସମ୍ମାନ ଥିଲା ।

ତେବେ ଯେତେବେଳେ ଜାମ୍ମୁ ଓ କାଶ୍ମୀର ଅଞ୍ଚଳରେ ପାକିସ୍ଥାନ ଆକ୍ରମଣ ଆରମ୍ଭ କରିଥିଲା, ମନ୍ତ୍ରିମଣ୍ଡଳରୁ ପ୍ରଥମ ହୋଇ ଇନ୍ଦିରା ଯାଇଥିଲେ ସୀମାନ୍ତ ଅଞ୍ଚଳକୁ । ସେଠାରେ ସେ ଆଗୁଆ ଘାଟିଗୁଡ଼ିକରେ ଯୁଦ୍ଧରତ ସୈନ୍ୟବାହିନୀଙ୍କ ସହିତ ମିଶିଥିଲେ ଓ ସେମାନଙ୍କୁ ଯଥେଷ୍ଟ ଉତ୍ସାହ ମଧ୍ୟ ଦେଇଥିଲେ । ଫଳରେ ସେମାନଙ୍କ ନୈତିକ ସାହସ ଯଥେଷ୍ଟ ବୃଦ୍ଧି ପାଇଥିଲା । ସେ ଉପଦ୍ରୁତ ଅଞ୍ଚଳମାନଙ୍କରେ ସାଧାରଣ ସଭାମାନ ଅନୁଷ୍ଠିତ କରାଇ ଜନସାଧାରଣଙ୍କ ମନରେ ଜାତୀୟତା ଭାବର ଉଦ୍ରେକ କରାଇବା ପାଇଁ ଚେଷ୍ଟା କରିଥିଲେ ଓ ଚେଷ୍ଟା କରିଥିଲେ ଜାତିଧର୍ମ ନିର୍ବିଶେଷରେ ସରକାରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରି ପ୍ରଶାନ୍ତୀକରଣରେ ସାହାଯ୍ୟ କରିବାପାଇଁ । ପ୍ରତିରକ୍ଷା ଦିଗରେ ଦେଶକୁ ସାହାଯ୍ୟ କରିବାପାଇଁ ସେ ଦେଶର ବିଭିନ୍ନ ଅଞ୍ଚଳରେ ନାଗରିକ ପ୍ରତିରକ୍ଷା କମିଟିଗୁଡ଼ିକର ପୁନର୍ଗଠନ କରିଥିଲେ ।

ପାକିସ୍ଥାନ ସହିତ ଭାରତର ସେ ସଂଗ୍ରାମ ଦୀର୍ଘ ପଚିଶ ଦିନ ଲାଗି ରହିଥିଲା ଏବଂ ଇନ୍ଦିରା ସେହି ସମୟ ମଧ୍ୟରେ ଏକାଧିକବାର ସୀମାନ୍ତ ଅଞ୍ଚଳ ପରିଦର୍ଶନ କରିଥିଲେ । ଆଗୁଆ ସୀମାନ୍ତରେ ଯୁଦ୍ଧାହତ ସୈନିକମାନଙ୍କ ସେବା ଲାଗି ଚିକିତ୍ସାଳୟଗୁଡ଼ିକ ପରିଦର୍ଶନ କରି ସେ ଆହତ ସୈନ୍ୟମାନଙ୍କୁ ଆଶ୍ୱାସନା ଦେଉଥିଲେ । ପିତାଙ୍କ ଭଳି ଭୟ କ'ଣ ସେ ଜାଣି ନ ଥିଲେ । ସେପ୍ରକାର ଦୁର୍ଦ୍ଦିନରେ ଦେଶର ଶାନ୍ତି ଓ ନିରାପତ୍ତାକୁ ଅକ୍ଷୁର୍ଣ୍ଣ ରକ୍ଷିବା ଲାଗି ଓ ଭାରତୀୟ ଜନସାଧାରଣଙ୍କ ଭିତରେ ବିଭିନ୍ନ ଭେଦଭାବ ଭୁଲି, ଜାତି, ବର୍ଣ୍ଣ ତଥା ଧର୍ମର ଦୁହାଇ ଦେଇ କୌଣସି ବିଭେଦତା ସୃଷ୍ଟି ନ କରି ଏକ ଜାତୀୟ ଭାବର ଉଦ୍ରେକ କରାଇବା ଲାଗି ସେ ଆପ୍ରାଣ ଉଦ୍ୟମ କରିଥିଲେ । ଭାରତୀୟ ଜନସାଧାରଣଙ୍କ ସମ୍ମୁଖରେ ନିଜର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଦେଇ ଆମ ସୈନ୍ୟବାହିନୀର ଅଗ୍ରଗତି ତଥା ଦୃଢ଼ତା ଜନସାଧାରଣଙ୍କ ଜାଣିବା ଲାଗି ପ୍ରଚାର କରୁଥିଲେ । ସେତେବେଳେ ତାଙ୍କର ପ୍ରଧାନ ଧ୍ୱନି ଥିଲା—"ଆମେ ସମସ୍ତେ ଭାରତୀୟ, ଆମ୍ଭମାନଙ୍କ ଭିତରେ କେହି ବିଭେଦ ସୃଷ୍ଟି କରିପାରିବେ ନାହିଁ କିମ୍ବା କରିବାକୁ ସୁଯୋଗ ଦିଆଯିବା ଉଚିତ ନୁହେଁ ।"

ସେ ଯୁଦ୍ଧରୁ ପାକିସ୍ଥାନ ବିରତି ନେଇଥିଲା, ସେତେବେଳେ ସ୍ପଷ୍ଟରୂପେ ଜାଣି ପାରିଥିଲା ଯେ ଦିଲ୍ଲୀ ଅଧିକାର କରିବା ତ ଦୂରର କଥା, ଭାରତର ଉପାନ୍ତ ଅଞ୍ଚଳରେ ଆଉ ଅଧିକ ଦିନ ଯୁଦ୍ଧ କରିବାକୁ ଦିଆଯାଉଥିବା ଧ୍ୱନି ମଧ୍ୟ ଏକ

ବଡ଼ମ୍ବନା ମାତ୍ର । ତା ପରେ ରୁଷ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ କୋସିଜିନ୍‌ଙ୍କ ମଧ୍ୟସ୍ଥତାରେ ଦୁଇ ପଡ଼ୋଶୀ ରାଷ୍ଟ୍ର ଭାରତ ଓ ପାକିସ୍ଥାନ ମଧ୍ୟରେ ସ୍ଥାୟୀ ଶାନ୍ତି ପାଇଁ ଲାଲବାହାଦୁର ଶାସ୍ତ୍ରୀ ଓ ଆୟୁବ ଖାଁ ରୁଷର ତାସଖନ୍ଦ୍ ନଗରୀଠାରେ ଉପସ୍ଥିତ ହୋଇଥିଲେ ୧୯୬୬ ମସିହା ଜାନୁୟାରୀ ୬ ତାରିଖଠାରୁ ୧୦ ତାରିଖ ପର୍ଯ୍ୟନ୍ତ । ଇନ୍ଦିରା ଶାସ୍ତ୍ରୀଜୀଙ୍କୁ ବିମାନଘାଟିଠାରେ ବିଦାୟ ଦେଇଥିଲେ ଅନ୍ୟମାନଙ୍କ ସହିତ ।

ଅନେକବାର ସମ୍ମିଳିତ ହେବା ପରେ ଓ ଅନେକ ଆଲୋଚନା ପରେ ତାସଖନ୍ଦଠାରେ ଶାନ୍ତି ଚୁକ୍ତିରେ ସ୍ୱାକ୍ଷର ଦେବା ଖବର ପ୍ରଥମରେ ପାଇଥିଲେ ଇନ୍ଦିରା ତଥ୍ୟ ଓ ବେତାର ମନ୍ତ୍ରୀ ଭାବରେ । ଠିକ୍ ସେଇମିତି ପ୍ରଥମରେ ହିଁ ସେ ଖବର ପାଇଥିଲେ ଯେ ତାଙ୍କ ପ୍ରିୟ ନେତା, ପରିବାରର ଜଣେ ସାଥୀ, ବାପୁଙ୍କ ଆଦର୍ଶର ଜଣେ ଜାଗ୍ରତ ପ୍ରହରୀ, ଭାରତର ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ଆତ୍ମା ଆଉ ଏ ପାର୍ଥିବ ପୃଥିବୀରେ ନାହିଁ ।

୧୯୬୬ ଜାନୁୟାରୀ ୧୦ ତାରିଖ ଦିନ ଶାନ୍ତିଦୂତ ଭାରତର ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ ସୁଦୂର ମସ୍କୋଠାରେ ଦେହତ୍ୟାଗ କରିଥିଲେ ।



## ॥ ଷୋହଳ ॥

# ଶାସନର ଗୁରୁଭାର



୧୯୬୬ ମସିହା ଜାନୁୟାରୀ ୧୯ ତାରିଖ ଥିଲା ଶ୍ରୀମତୀ ଇନ୍ଦିରାଙ୍କ ପାଇଁ ଏକ ସ୍ମରଣୀୟ ଦିବସ ।

ମାତ୍ର ୧୯ ମାସ ମନ୍ତ୍ରିମଣ୍ଡଳର ଦାୟିତ୍ୱ ନେବା ପରେ ଲାଲବାହାଦୁର ଶାସ୍ତ୍ରୀଙ୍କ ମୃତ୍ୟୁ ଯୋଗୁଁ ପୁଣି ସେମାନଙ୍କ ନେତା ନିର୍ବାଚନ କରିବାପାଇଁ ପାର୍ଲ୍ୟାମେଣ୍ଟର ଉଭୟ କକ୍ଷ ଲୋକସଭା ଓ ରାଜ୍ୟସଭାର ୫୫୨ ଜଣ ସଦସ୍ୟ ଉପସ୍ଥିତ ହୋଇଥିଲେ ପାର୍ଲ୍ୟାମେଣ୍ଟର କେନ୍ଦ୍ରୀୟ କୋଠରୀ ( Central Hall ) ଠାରେ । ସମଗ୍ର ପୃଥିବୀର ଦୃଷ୍ଟି ପୁଣିଥରେ ନିବଦ୍ଧ ହୋଇଥିଲା ସେଇ ଗୋଟିଏ ବିନ୍ଦୁରେ ।

ସମସ୍ତଙ୍କ ପାଇଁ ଗୋଟିଏ ପ୍ରଶ୍ନ ଥିଲା—ପୃଥିବୀର ଏକ ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରର ପ୍ରଧାନମନ୍ତ୍ରୀ ହେବ କିଏ ?

ବିଭିନ୍ନ ପତ୍ରପତ୍ରିକାରେ ଯେଉଁମାନଙ୍କ ନାମ 'ସମ୍ଭାବନା' ତାଲିକାରେ ଥିଲା, ସେମାନଙ୍କ ମଧ୍ୟରେ ଥିଲେ ସେତେବେଳର କାମଚଳା ପ୍ରଧାନମନ୍ତ୍ରୀ ଗୁଲ୍‌ଜାରିଲାଲ ନନ୍ଦା, ରେଳବାଇମନ୍ତ୍ରୀ ପାଟିଲ, ପୂର୍ବତନ କେନ୍ଦ୍ର ପ୍ରତିରକ୍ଷାମନ୍ତ୍ରୀ ଚୌହାନ୍ ଓ ଶେଷରେ କଂଗ୍ରେସର ସଭାପତି କାମରାଜ । ପ୍ରକୃତରେ, କାମରାଜ ମଧ୍ୟ ଇଚ୍ଛା କରିଥିଲେ ସେଇ ଆସନର ଅଧିକାରୀ ହୋଇପାରିଥାନ୍ତେ; କିନ୍ତୁ ସେ କେବଳ ତାଙ୍କ ମାତୃଭାଷା ତାମିଲ୍ ବ୍ୟତୀତ ଇଂରାଜୀ କିମ୍ବା ହିନ୍ଦୀ ଜାଣି ନ ଥିବାରୁ ନିଜେ ପ୍ରସ୍ତାବ କରିଥିଲେ ଶ୍ରୀମତୀ ଗାନ୍ଧୀଙ୍କ ନାମ । ବୋଧହୁଏ ସେ ମନେମନେ କଳ୍ପନା କରିଥିଲେ ପରଦାର ଆଢୁଆଳରେ ରହି ଭାରତର ଶାସନମଞ୍ଚ ପରିଚାଳନା କରିବେ ।

କାମରାଜଙ୍କ ପ୍ରସ୍ତାବକୁ ଅନେକ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କ ସମେତ ପାର୍ଲ୍ୟାମେଣ୍ଟର କଂଗ୍ରେସ ସଦସ୍ୟଙ୍କ ମଧ୍ୟରୁ ଅନେକେ ସମର୍ଥନ କରିଥିଲେ । କିନ୍ତୁ

କେତେ ଜଣ କଂଗ୍ରେସ ସଦସ୍ୟଙ୍କ ମତ ସ୍ୱତନ୍ତ୍ର ଧରଣର ଥିଲା । ତେଣୁ କାମରାଜ ସର୍ବସମ୍ମତିକ୍ରମେ ନେତା ନିର୍ବାଚନ କରିବା ଲାଗି ପ୍ରବଳ ଉଦ୍ୟମ କରି ମଧ୍ୟ ଶେଷରେ ବିଫଳ ହୋଇଥିଲେ । ମୋରାରଜୀ ଦେଶାଇ ସେଇ ନେତା ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବେ ବୋଲି ତାଙ୍କର ନିର୍ଦ୍ଦିଷ୍ଟ ମତ ପ୍ରଦାନ କରିଥିଲେ । କେବଳ ସେତିକି ନୁହେଁ, ସଙ୍ଗେ ସଙ୍ଗେ ସେ ନିଜ ସପକ୍ଷରେ ପ୍ରଚାର କରିବା ଆରମ୍ଭ କରିଥିଲେ ଓ ବିଭିନ୍ନ ପାର୍ଲ୍ୟାମେଣ୍ଟ ସଭ୍ୟଙ୍କୁ ଚିଠି ତଥା ଟେଲିଫୋନ୍ ଜରିଆରେ ତାହାଙ୍କୁ ଭୋଟ ଦେଇ ଜୟଯୁକ୍ତ କରାଇବା ଲାଗି ଅନୁରୋଧ ଜଣାଇଥିଲେ । ତେଣୁ ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପ୍ରଥମଥର ପାଇଁ ପ୍ରଧାନମନ୍ତ୍ରୀ ନିର୍ବାଚନରେ ମୋରାରଜୀ ଦେଶାଇ ଓ ଶ୍ରୀମତୀ ଗାନ୍ଧୀଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ହେବା ଲାଗି ଓ ସେଥିପାଇଁ ପାର୍ଲ୍ୟାମେଣ୍ଟରେ ଭୋଟ ଗ୍ରହଣ କରାଯିବା ଲାଗି ଶେଷ ନିଷ୍ପତ୍ତି ନିଆଯାଇଥିଲା ।

## ପାର୍ଲ୍ୟାମେଣ୍ଟ ଭବନରେ :—

ପାର୍ଲ୍ୟାମେଣ୍ଟରେ ନିର୍ବାଚନ ହେବାକୁ ସ୍ଥିର ହୋଇଥିବା ଦିନ ପ୍ରତ୍ୟୁଷରୁ ଇନ୍ଦିରା ଯାଇଥିଲେ ରାଜଘାଟ—ଯେଉଁଠି ବାପୁଙ୍କର ସ୍ମୃତିର କବର ଦଣ୍ଡାୟମାନ । ସଙ୍କଟମୟ ସମୟଗୁଡ଼ିକରେ ସେ ସମାଧି ନିକଟରେ ଉପସ୍ଥିତ ହୋଇ କିଛିଟା ଶାନ୍ତି ପାଉଥିଲେ ଓ ମନରେ ଦୃଢ଼ତା ଆଣି ପାରୁଥିଲେ ଇନ୍ଦିରା । ବାପୁ ବାସ୍ତରେ ଯେତେ ସଙ୍କଟମୟ ସମୟ ଉପସ୍ଥିତ ହେଲେ ମଧ୍ୟ ଦୃଢ଼ତାର ସହିତ ପରିସ୍ଥିତିର ମୁକାବିଲା କରୁଥିଲେ ଓ ମନରେ ସାହସ ଆଣିବା ପାଇଁ ଅନ୍ୟମାନଙ୍କୁ ମଧ୍ୟ ପ୍ରେରଣା ଦେଉଥିଲେ । ବିଶେଷ କରି ନେହେରୁ ପରିବାର ସହିତ ସଂଶ୍ଳିଷ୍ଟ ଥିଲେ ଗାନ୍ଧିଜୀ । ଯେତେବେଳେ ଯେକୌଣସି ପରିସ୍ଥିତିରେ ଏପରି କି ଜେଲ୍‌ଖାନାରେ ଥିଲେ ମଧ୍ୟ ବାପୁ ଅନେକ ସମୟ ଇନ୍ଦିରାଙ୍କ କଥା ଭାବୁଥିଲେ ଓ ଦେଖିଲେ ଖୁବ୍ ଖୁସି ହେଉଥିଲେ । ବାପୁଙ୍କର ପ୍ରଭାବରେ ଅନ୍ୟମାନଙ୍କ ଭଳି ଇନ୍ଦିରା ମଧ୍ୟ ଖୁବ୍ ପ୍ରଭାବିତ ହୋଇଥିଲେ । ପରିସ୍ଥିତିର ସେଭଳି ଏକ ସନ୍ଧିକ୍ଷଣ ମୁହୂର୍ତ୍ତରେ ଇନ୍ଦିରା ସେ ସମାଧିପୀଠ ନିକଟରେ ମାତ୍ର କେତୋଟି ମିନିଟ ଅତିବାହିତ କରି କିଛିଟା ମାନସିକ ପ୍ରେରଣା ଲାଭ କରିଥିଲେ ନିଶ୍ଚୟ ।

ବାପୁଙ୍କର ସମାଧିପୀଠ ରାଜଘାଟଠାରୁ [illegible]ଇଥିଲେ ଶାନ୍ତିବନ, ଯେଉଁଠି ୧୯ ମାସ ତଳେ ତାଙ୍କ ପ୍ରିୟ ବାପୁଙ୍କ ସ୍ମୃତିପୀଠ ନିର୍ମାଣ କରାଯାଇଥିଲା । ସେଠାରେ ମଧ୍ୟ କେତୋଟି ମୁହୂର୍ତ୍ତ ନୀରବରେ ବିତାଇ ତାପରେ ଯାଇଥିଲେ ତିନମୂର୍ତ୍ତି ଭବନ । ତିନମୂର୍ତ୍ତି ଭବନ ସହିତ ଇନ୍ଦିରା ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ । ଦୀର୍ଘ ସତର ବର୍ଷ କାଳ ସେଠାରେ ପିତାଙ୍କ ସାଥୀ ତଥା ଗୃହକର୍ତ୍ତ୍ରୀ ଭାବରେ

କଟାଇଥିଲେ । ସେଠି ପିତାଜୀଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ ଯୋଡ଼ହସ୍ତରେ ମସ୍ତକ ନତ କରି ଭାରତୀୟ ଜନଗଣଙ୍କ ସେବାରେ ନିଜକୁ ଉତ୍ସର୍ଗୀକୃତ କରିବା ଲାଗି ପୁନଃ ସଂକଳ୍ପ କରିଥିଲେ । ଜବାହରଲାଲ କେବଳ ଇନ୍ଦିରାଙ୍କ ପାପୁ ନ ଥିଲେ, ଅନେକ କର୍ମ ପାଇଁ ସେ ଥିଲେ ତାଙ୍କର ଏକାଧାରରେ ପିତା ଓ ମାତା । ପୁନଶ୍ଚ ଇନ୍ଦିରାଙ୍କ ଶିକ୍ଷା ଦିଗରେ ତାହାଙ୍କ ଶିକ୍ଷାପ୍ରଦ ଚିଠିଗୁଡ଼ିକର ଅବଦାନ ଯଥେଷ୍ଟ ଥିଲା । ସେ ମୁହୂର୍ତ୍ତରେ ପାପୁଙ୍କର ଚିଠିଗୁଡ଼ିକ ମନେ ପଡ଼ୁଥାଇଥିବ ଇନ୍ଦିରାଙ୍କର । ମନେ ପଡ଼ୁଥାଇଥିବ ପାପୁଙ୍କ ଲେଖା—"ସାହସୀ ହୁଅ ଓ ଦୃଢ଼ମନା ହୁଅ—ଅନ୍ୟସବୁ ଆପେ ଆପେ ସରଳ ହୋଇଯିବ । ଜନମତ ସୃଷ୍ଟି ସହିତ ବନ୍ଧୁତା ସ୍ଥାପନ କରି ତାରି ଆଲୋକତଳେ ସବୁ କାମ କରିଯାଅ । କୌଣସି କାର୍ଯ୍ୟ ଗୋପନୀୟ ରଖ ନାହିଁ । ସେଭଳି କରିବା ଫଳରେ ତୁମେ ଆଲୋକର ସନ୍ତାନ ହୋଇପାରିବ, ନିର୍ଭୀକ ହୋଇପାରିବ, ଯେ କୌଣସି ପରିସ୍ଥିତିର ମୁକାବିଲା କରିପାରିବ । ଭାରତର ଜଣେ ସାହସୀ ନାଗରିକ ହୋଇ ଦେଶସେବା କରିଯାଅ ।"

ଦିନ ଏଗାରଟା ବାଜିବାକୁ ପନ୍ଦର ମିନିଟ ପୂର୍ବରୁ ଯେତେବେଳେ ଇନ୍ଦିରାଙ୍କ ଗାଡ଼ି ଯାଇ ପାର୍ଲ୍ୟାମେଣ୍ଟ ଭବନର ପ୍ରଥମ ଦ୍ୱାର ନିକଟରେ ପହଞ୍ଚିଥିଲା, ଅନେକ ସଦସ୍ୟ ସେଠାରେ ସମବେତ ହୋଇଥିଲେ ଇନ୍ଦିରାଙ୍କୁ ସ୍ୱାଗତ ଜଣାଇବା ପାଇଁ । ଧଳା ଖଦଡ଼ର ଶାଢ଼ୀ ତାଙ୍କର ପରିଧାନ ଥିଲା ଓ ଉତ୍ତରୀୟ ଥିଲା ଖଣ୍ଡିଏ ପାଉଁଶିଆ ରଙ୍ଗର କାଶ୍ମୀରୀ ଶାଲ । ସେଥିରେ ଗୋଟିଏ ସଦ୍ୟଫୁଟା ଲାଲ ରଙ୍ଗର ଗୋଲାପ ଫୁଲ ଶୋଭା ପାଉଥିଲା । ଇନ୍ଦିରାଙ୍କ ଉପସ୍ଥିତି ସେଠାରେ ଉପସ୍ଥିତ ପାର୍ଲ୍ୟାମେଣ୍ଟ ସଦସ୍ୟମାନଙ୍କୁ ଅନେକ ଉତ୍ସାହ ଦେଇଥିବାର ପ୍ରମାଣ ଥିଲା ଗୋଟିଏ ଧ୍ୱନି—"ଲାଲ ଗୋଲାପ୍ ଜିନ୍ଦାବାଦ୍" ।

ପାର୍ଲ୍ୟାମେଣ୍ଟ୍ କେନ୍ଦ୍ରୀୟ ଭବନ, ଯେଉଁଠି ନିର୍ବାଚନ ପରିଚାଳିତ ହେବାକୁ ଥିଲା, ସେ ପହଞ୍ଚି ଉପସ୍ଥିତ ସଭ୍ୟମାନଙ୍କୁ ଯୋଡ଼ହସ୍ତରେ ଅଭିବାଦନ ଜଣାଇଥିଲେ । ତାପରେ ଯେଉଁ କେତେଜଣଙ୍କୁ ସେ ଚିହ୍ନିଥିଲେ ସମସ୍ତଙ୍କ ନିକଟକୁ ଯାଇ ବ୍ୟକ୍ତିଗତ ଭାବେ ଅଭିବାଦନ ମଧ୍ୟ ଜଣାଇଥିଲେ । ଯେତେବେଳେ ତାଙ୍କର ଏକମାତ୍ର ପ୍ରତିଦ୍ୱନ୍ଦ୍ୱୀ ଶ୍ରୀଯୁକ୍ତ ମୋରାରଜୀ ଦେଶାଇଙ୍କୁ ଭେଟିଥିଲେ, ତାଙ୍କ ନିକଟକୁ ଯାଇ ତାଙ୍କ ସହିତ ହାତ ମିଳାଇଥିଲେ ଓ କଲ୍ୟାଣ କାମନା କରିଥିଲେ ।

ପ୍ରଥମେ କଂଗ୍ରେସର ସଭାପତି କାମରାଜ ଆନୁଷ୍ଠାନିକ ଭାବେ ନିର୍ବାଚନରେ ଅଂଶ ଗ୍ରହଣ କରିବା ପାଇଁ ସମବେତ ହୋଇଥିବା ସଭ୍ୟମାନଙ୍କୁ ଉଦ୍‌ବୋଧନ ଦେଇ କଂଗ୍ରେସ ପାର୍ଲ୍ୟାମେଣ୍ଟାରୀ ଦଳର ନେତା ନିର୍ବାଚନ କରିବା ପ୍ରସ୍ତାବ ଆଗତ କରିଥିଲେ । ଅସ୍ଥାୟୀ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଗୁଲଜାରିଲାଲ ନନ୍ଦା ଶ୍ରୀମତୀ ଗାନ୍ଧୀଙ୍କ ନାମ ପ୍ରସ୍ତାବ କରିଥିଲେ ଏବଂ ତାହା ସମର୍ଥନ କରିଥିଲେ ଶ୍ରୀଯୁକ୍ତ ସଞ୍ଜୀବ ରେଡ୍ଡି ।

ପରେ ପରେ ଶ୍ରୀ କେ. ହନୁମନ୍ତେୟା ପ୍ରସ୍ତାବ କରିଥିଲେ ଶ୍ରୀ ମୋରାରଜୀ ଦେଶାଇଙ୍କ ନାମ ଏବଂ ତାହା ସମର୍ଥିତ ହୋଇଥିଲା ଶ୍ରୀ ଟିକାରାମ ପାଲିଓ୍ୱାଲ୍ଙ୍କଦ୍ୱାରା । ଶ୍ରୀ ଡେଓ୍ୱାନ୍ ଚମନ୍ ଲାଲ ଶ୍ରୀମତୀ ଗାନ୍ଧୀଙ୍କୁ ସର୍ବସମ୍ମତିକ୍ରମେ ନେତା ନିର୍ବାଚିତ କରାଇବା ଲାଗି ଶେଷ ଉଦ୍ୟମ କରି ଏକ ପ୍ରସ୍ତାବ ଆଗତ କରିଥିଲେ । କିନ୍ତୁ କେତେକ ସଭ୍ୟଙ୍କ ଆପତ୍ତି ଯୋଗୁଁ ତାହା କାର୍ଯ୍ୟକାରୀ ହୋଇପାରି ନ ଥିଲା । ଶେଷରେ ଗୋପନୀୟ ଭାବେ ଭୋଟ ଗ୍ରହଣ କରାଯିବା ଲାଗି ନିଷ୍ପତ୍ତି ନିଆଯାଇଥିଲା ।

ଦୁଇ ଜଣ ପ୍ରତିଦ୍ୱନ୍ଦୀ ଶ୍ରୀ ଦେଶାଇ ଓ ଶ୍ରୀମତୀ ଗାନ୍ଧୀ ଭୋଟ ଦେଇ ନ ଥିଲେ ।

ଦିନ ୧୧ଟା ୨୦ ମିନିଟରେ ଭୋଟ ଗ୍ରହଣ ଆରମ୍ଭ ହୋଇ ଶେଷ ହୋଇଥିଲା ଗୋଟାଏ ସତେଇଶ ମିନିଟରେ । ଅପରାହ୍ଣ ତିନି ଘଣ୍ଟା ହେବାକୁ ଦୁଇ ମିନିଟ ବାକି ଥିଲା—ନିର୍ବାଚନ ଫଳାଫଳ ଜଣା ପଡ଼ିଥିଲା । ଶ୍ରୀମତୀ ଇନ୍ଦିରା ୩୫୫ ଭୋଟ ପାଇଥିବା ସ୍ଥଳେ ତାଙ୍କ ପ୍ରତିଦ୍ୱନ୍ଦୀ ଶ୍ରୀ ମୋରାରଜୀ ପାଇଥିଲେ ୧୬୯ । ଶ୍ରୀମତୀ ଗାନ୍ଧୀ ୧୮୬ ଭୋଟରେ ଅଗ୍ରଣୀ ହୋଇ ଶ୍ରୀଯୁକ୍ତ ଦେଶାଇଙ୍କୁ ପରାଜିତ କରିଥିଲେ ।

ପାର୍ଲ୍ୟାମେଣ୍ଟ ଭବନ ବାହାରେ ହଜାର ହଜାର ଜନତା ସମବେତ ହୋଇଥିଲେ ନିର୍ବାଚନର ଫଳାଫଳ ଜାଣିବା ପାଇଁ । ଯେତେବେଳେ ଶ୍ରୀମତୀ ଗାନ୍ଧୀଙ୍କ ବିଜୟ ବାର୍ତ୍ତା ପ୍ରଚାର କରାଯାଇଥିଲା ଲୋକଙ୍କ ମୁଖରୁ ଗଗନ-ପବନ ପ୍ରକମ୍ପିତ କରି ଧ୍ୱନି ଉଠିଥିଲା, "ଜବାହରଲାଲଙ୍କ ଜୟ" । ଇନ୍ଦିରାଙ୍କ ବିଜୟରେ ଜନସାଧାରଣ ଜୟଗାନ କରିଥିଲେ ଜବାହରଲାଲ ନେହେରୁଙ୍କର, ତାଙ୍କ ଚିନ୍ତାଧାରାର, ତାଙ୍କ ଆଦର୍ଶର ।

ତେବେ କଂଗ୍ରେସର ସଭାପତି କାମରାଜ ନିର୍ବାଚନର ଫଳାଫଳ ଘୋଷଣା କରିବା ପୂର୍ବରୁ ଅଣ-ଆନୁଷ୍ଠାନିକ ଭାବେ ତାହା ଘୋଷିତ ହୋଇ ଯାଇଥିଲା, ଯେତେବେଳେ ନିର୍ବାଚନ ପରିଚାଳକ କାମରାଜଙ୍କୁ ତାହା ଜଣାଇଥିଲେ । କାମରାଜ ଆନୁଷ୍ଠାନିକ ଭାବେ ତାହା ସମବେତ ସଦସ୍ୟଙ୍କୁ ଜଣାଇ ଦେଇଥିଲେ ନିଜ ମାତୃଭାଷା ତାମିଲ୍‌ରେ । ସଙ୍ଗେ ସଙ୍ଗେ ତାହା ଅନୂଦିତ ହୋଇ ଅନ୍ୟ ଭାଷାରେ ଘୋଷଣା କରାଯାଇଥିଲା । ସେ ଶୁଭ ସମ୍ବାଦ ଘୋଷିତ ହେବା ସଙ୍ଗେ ସଙ୍ଗେ ପାର୍ଲ୍ୟାମେଣ୍ଟ କେନ୍ଦ୍ରୀୟ ଭବନରେ ଛୁଟିଯାଇଥିଲା ଆନନ୍ଦର ବନ୍ୟା । ଇନ୍ଦିରାଙ୍କ ଜୟ ଜୟକାର ଧ୍ୱନିରେ ମୁହୂର୍ତ୍ତକ ପାଇଁ ପ୍ରକମ୍ପିତ ହୋଇଉଠିଥିଲା ସେଇ କକ୍ଷ ।

ବିଜୟ ଘୋଷଣା ପରେ ପରେ ଶ୍ରୀମତୀ ଗାନ୍ଧୀ ନିଜ ଆସନରୁ ସଭାମଞ୍ଚ ଉପରକୁ ଉଠିଆସିବା ବେଳେ ସଭ୍ୟମାନେ ଶୁଭେଚ୍ଛା ଜଣାଇବା ପାଇଁ ଘେରି

ଯାଇଥିଲେ । ଶ୍ରୀମତୀ ଇନ୍ଦିରା ସଭାମଞ୍ଚ ଉପରକୁ ଆସିବା ପୂର୍ବରୁ ପରାଜିତ ପ୍ରତିଦ୍ୱନ୍ଦ୍ୱୀ ଶ୍ରୀ ମୋରାରଜୀ ଦେଶାଇଙ୍କୁ ନମସ୍କାର କରି ପ୍ରଥମେ ତାଙ୍କଠାରୁ ଆଶୀର୍ବାଦ ଭିକ୍ଷା କରିଥିଲେ ଓ ମୋରାରଜୀ କହିଥିଲେ, "I gave you my blessings" ତାପରେ ମଞ୍ଚ ଉପରକୁ ଉଠି ଗମ୍ଭୀର ଭାବାବେଗରେ ଘୋଷଣା କରିଥିଲେ—"ମୁଁ ଆଜି ଆପଣମାନଙ୍କ ସମ୍ମୁଖରେ ଦଣ୍ଡାୟମାନ ହେବାବେଳେ ମୋର ସମସ୍ତ ଚିନ୍ତା ଆମର ମହାନ୍ ନେତା ଯାହାଙ୍କ ପାଦତଳେ ମୋ ଜୀବନ ବିକଶିତ ହୋଇଥିଲା, ସେଇ ମହାତ୍ମା ଗାନ୍ଧୀ, ମୋର ପିତା ପଣ୍ଡିତଜୀ ଓ ଲାଲବାହାଦୂର ଶାସ୍ତ୍ରୀଙ୍କ ନିକଟକୁ ଚାଲିଯାଉଛି । ଶାସ୍ତ୍ରୀଜୀ ଓ ପଣ୍ଡିତ ପନ୍ତ ହିଁ ମୋତେ ସ୍ୱାଧୀନତା ପରେ ରାଜନୀତି ଭିତରକୁ ଟାଣି ଆଣିଥିଲେ ଏବଂ ଯେତେବେଳେ ମୁଁ ରାଜନୀତି କ୍ଷେତ୍ରରୁ ଚାଲିଯିବା ପାଇଁ ଇଚ୍ଛା କରୁଥିଲି, ସେଇମାନେ ହିଁ ମୋତେ ସେଇଥିରୁ ନିବର୍ତ୍ତାଉଥିଲେ । ସେହି ନେତାଗଣ ଆମ୍ଭମାନଙ୍କ ପାଇଁ ଯେଉଁ ପଥ ପ୍ରଦର୍ଶନ କରିଛନ୍ତି, ସେହି ପଥାନୁସରଣ କରିବାପାଇଁ ମୋର ଇଚ୍ଛା । ଲାଲବାହାଦୂର ଶାସ୍ତ୍ରୀ ଶାନ୍ତି ପାଇଁ ଜୀବନ ବଳି ଦେଲେ । ଶାନ୍ତିର ପଥ ସମ୍ପ୍ରସାରଣ ପାଇଁ ଆମେ ଚେଷ୍ଟା କରିବା ଉଚିତ ଏବଂ ତା ସଙ୍ଗେ ସଙ୍ଗେ ଦେଶକୁ ଶକ୍ତିଶାଳୀ କରି ନିରାପତ୍ତାର ସୁରକ୍ଷା କରିବାକୁ ପଡ଼ିବ ।" †

ଏ ଥିଲା ଶ୍ରୀମତୀ ଗାନ୍ଧୀଙ୍କ ହୃଦୟର କଥା ।

**ଶପଥ ଗ୍ରହଣ :—**

ଜବାହରଲାଲଙ୍କ ପ୍ରିୟଦର୍ଶିନୀ ଇନ୍ଦିରା ଭାରତର ଜନସାଧାରଣଙ୍କ ପାଇଁ ପ୍ରିୟଦର୍ଶିନୀ ହୋଇ ପଡ଼ିଥିଲେ । କଂଗ୍ରେସ ପାର୍ଲ୍ୟାମେଣ୍ଟାରୀ ଦଳର ନେତା ନିର୍ବାଚିତ ହୋଇସାରିବା ପରେ ଜାନୁୟାରୀ ୨୪ ତାରିଖ ୧୯୬୬ ମସିହାରେ ଭାରତର ପ୍ରଧାନମନ୍ତ୍ରୀ ରୂପେ ଇନ୍ଦିରା ଶପଥ ଗ୍ରହଣ କରିଥିଲେ । ତାହାଙ୍କୁ ଶପଥ ପାଠ କରାଇ-ଥିଲେ ଭାରତର ରାଷ୍ଟ୍ରପତି ଡଃ ରାଧାକୃଷ୍ଣନ୍ ଏକ ମନୋଜ୍ଞ ପରିବେଶ ଭିତରେ ।

ପଣ୍ଡିତ ନେହେରୁଙ୍କ ମୃତ୍ୟୁର କିଛି ଦିନ ପୂର୍ବରୁ ଯେତେବେଳେ 'ବ୍ଲିଜ୍' ପତ୍ରିକାର ସମ୍ପାଦକ ଶ୍ରୀ କରଞ୍ଜିଆ ତାଙ୍କ ପରେ ଭାରତର ନେତୃତ୍ୱ ସମ୍ପର୍କରେ ପ୍ରଶ୍ନ କରିଥିଲେ, ନେହେରୁଙ୍କ ଉତ୍ତର ଥିଲା ଏକ 'ମିଳିତ ନେତୃତ୍ୱ' ସମ୍ପର୍କରେ । ସେ ଯେଉଁ ତିନି ଜଣଙ୍କ ନାମ ଉଲ୍ଲେଖ କରିଥିଲେ, ସେଥିରେ ଇନ୍ଦିରାଙ୍କ ନାମ ନ ଥିଲା—ଥିଲେ ଶାସ୍ତ୍ରୀଜୀ, ନନ୍ଦାଜୀ ଏବଂ କାମରାଜ । ତେଣୁ କରଞ୍ଜିଆ ପୁନଶ୍ଚ

---

† ଶ୍ରୀମତୀ ଇନ୍ଦିରା ୧୯. ୧. ୬୬ ରେ ପ୍ରଧାନମନ୍ତ୍ରୀ ନିର୍ବାଚନ ଫଳାଫଳ ଘୋଷଣାର ପରେ ପରେ କଂଗ୍ରେସ ପାର୍ଲ୍ୟାମେଣ୍ଟାରୀ ବୋର୍ଡ ସଭ୍ୟମାନଙ୍କୁ ଦେଇଥିବା ଭାଷଣର କିୟଦଂଶ ।

ପ୍ରଶ୍ନ କରିଥିଲେ ଯେ, ସେ ତାଙ୍କ ନିଜ କନ୍ୟା ଶ୍ରୀମତୀ ଇନ୍ଦିରାଙ୍କୁ ଅନ୍ୟମାନଙ୍କ ମଧ୍ୟରେ ଅଧିକ ଉପଯୁକ୍ତ ବୋଲି ମନେ କରୁ ନାହାନ୍ତି ? ତାର ଉତ୍ତରରେ ପଣ୍ଡିତଜୀ କହିଥିଲେ ଯେ, ସେ ପ୍ରଶ୍ନ ଭଳି ଅନେକଙ୍କର ପ୍ରଶ୍ନ—ସେ ପ୍ରକୃତରେ ତାଙ୍କ ଉତ୍ତରାଧିକାରୀ ରୂପେ ଇନ୍ଦିରାଙ୍କୁ ଗଢ଼ୁଛନ୍ତି କି ? ତାର ଉତ୍ତର ଥିଲା ନାସ୍ତି-ବାଚକ । ସେ କିନ୍ତୁ ସେତେବେଳେ ମତ ଦେଇଥିଲେ ଯେ ତାର ଅର୍ଥ ନୁହେଁ ତାଙ୍କ ପରେ ଇନ୍ଦିରାଙ୍କୁ କୌଣସି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ ଦିଆ ନ ଯାଉ । ସେ କଥା ପ୍ରସଙ୍ଗରେ କହିଥିଲେ ଯେ ଯଦିଓ ସେ ଇନ୍ଦିରାଙ୍କୁ କଂଗ୍ରେସର ସଭାନେତ୍ରୀ ହେବାପାଇଁ ଠିଆ ନ ଥିଲେ କି ସାହାଯ୍ୟ ମଧ୍ୟ କରି ନ ଥିଲେ, ତଥାପି ସେ ଅତି ନିଷ୍ଠାପର ଭାବରେ ଓ ଦକ୍ଷ ଭାବରେ ଦାୟିତ୍ୱ ତୁଲାଇଥିବା କଥା ନେହେରୁଙ୍କର କେତେଜଣ ସମାଲୋଚକ ତାହାଙ୍କୁ ଜଣାଇଥିଲେ । ସେତେବେଳେ ପୁଣି ଗୋଟିଏ ପ୍ରଶ୍ନ ହୋଇଥିଲା ଯଦି ଇନ୍ଦିରା ସରକାରୀ କଳରେ କିମ୍ବା ରାଜନୀତିରେ ଏକ ଗୁରୁତ୍ୱ-ପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି, ତେବେ ତାଙ୍କର କିଛି କହିବା ଲାଗି ଅଛି କି ? ସେଥିରେ ଜବାହରଲାଲ ମନାକରି ଦେଇଥିଲେ । ପ୍ରସଙ୍ଗକ୍ରମେ ସେ କହିଥିଲେ ଯେ ଯେତେବେଳେ ଇନ୍ଦିରା କଂଗ୍ରେସ ସଭାପତି ପଦ ତ୍ୟାଗ କରିଥିଲେ, ଅନେକ ନେତା—ଏପରି କି ଅନ୍ୟମାନଙ୍କ ମଧ୍ୟରେ ମୋରାରଜୀ ଦେଶାଇ ମଧ୍ୟ ଆସି ଇନ୍ଦିରାଙ୍କୁ ଉତ୍ସାହିତ କରିଥିଲେ ପୁନଶ୍ଚ ସେଇ ପଦ ଗ୍ରହଣ କରିବାପାଇଁ । କିନ୍ତୁ ଇନ୍ଦିରା କାହାରି କଥା ସେତେବେଳେ ରକ୍ଷା କରି ନ ଥିଲେ, ଅନେକେ ଆସି ପଣ୍ଡିତ ନେହେରୁଙ୍କ ସାହାଯ୍ୟ ଲୋଡ଼ିଥିଲେ ଇନ୍ଦିରାଙ୍କୁ ବୁଝାଇବା ପାଇଁ । କିନ୍ତୁ ସେ ଅନ୍ୟମାନଙ୍କୁ ସ୍ପଷ୍ଟ କହି ଦେଇଥିଲେ ଯେ ସେ ଇନ୍ଦିରାଙ୍କ ଉପରେ କୌଣସି ଚାପ ପକାଇବା ଲାଗି ପ୍ରସ୍ତୁତ ନୁହନ୍ତି; କାରଣ ସେ ଚାହୁଁ ନ ଥିଲେ କୌଣସି କ୍ଷେତ୍ରରେ ବଂଶଗତ ପରମ୍ପରା ରହୁ । ସେମାନଙ୍କୁ ଉତ୍ତର ଦେଇ ସେ କହିଥିଲେ ଯେ ତାହା ଏକ ଅଗଣତାନ୍ତ୍ରିକ, ଅବାଞ୍ଛିତ କଥା । ତା ସଙ୍ଗେ ସଙ୍ଗେ ସେ କହିଥିଲେ, ଯଦି ଲୋକେ ଇଚ୍ଛା କରନ୍ତି ବା କଂଗ୍ରେସର କର୍ତ୍ତୃପକ୍ଷ ମନୋନୀତ କରନ୍ତି ତାହେଲେ ସେ କୌଣସି ଦାୟିତ୍ୱସମ୍ପନ୍ନ କାର୍ଯ୍ୟ ପରିଚାଳନା କରିବାପାଇଁ ସେ ସ୍ୱାଗତଯୋଗ୍ୟ । କୌଣସି ଉଚ୍ଚ ପଦବୀ ପାଇଁ ପ୍ରସ୍ତୁତ କରୁ ନ ଥିବାରୁ ଦେଶବାସୀ ଯଦି କୌଣସି ଦାୟିତ୍ୱ ଇନ୍ଦିରାଙ୍କୁ ଦେବାପାଇଁ ଚାହାନ୍ତି, ସେଥିରୁ ନିବୃତ୍ତ ହେବାପାଇଁ ଉପଦେଶ ଦେବା ଅଭିପ୍ରାୟ ନେହେରୁଙ୍କ ନ ଥିଲା ବୋଲି ମଧ୍ୟ ସେ ପ୍ରକାଶ କରିଥିଲେ ।

ଭାରତ ଇତିହାସରେ ଇନ୍ଦିରା ପ୍ରଥମଥର ପାଇଁ ପିତାର ଆସନ ଅଳଂକୃତ କରିଥିଲେ ବଂଶପରମ୍ପରାକ୍ରମେ ନୁହେଁ, ସମ୍ପୂର୍ଣ୍ଣ ଗଣତାନ୍ତ୍ରିକ ପ୍ରଥାରେ—ନିଜ ନେତୃତ୍ୱର ପରାକାଷ୍ଠା ବଳରେ ।

ଶ୍ରୀମତୀ ଗାନ୍ଧୀ ଥିଲେ ଭାରତର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ । ଗଣତାନ୍ତ୍ରିକ ଭାରତର ନାରୀ ନେତ୍ରୀମାନଙ୍କ ମଧ୍ୟରେ ସର୍ବୋଚ୍ଚ ଆସନ ଅଳଂକୃତ କରିପାରିଥିଲେ ସେ । ତେବେ ଭାରତୀୟ ମହିଳାମାନଙ୍କ ମଧ୍ୟରେ ନେତୃତ୍ୱ ଗ୍ରହଣ କରିବାରେ ସେ ପ୍ରଥମ ନ ଥିଲେ । ଅତୀତ ଭାରତର ମହିଳାମାନଙ୍କ ମଧ୍ୟରୁ ଅନେକ କୃତୀ ସନ୍ତାନ ସେମାନଙ୍କ ଅବଦାନ ପାଇଁ ଚିରସ୍ମରଣୀୟ ହୋଇ ରହିଛନ୍ତି । ସେମାନଙ୍କ ମଧ୍ୟରେ ଚିତୋରର ରାଣୀ ପଦ୍ମିନୀ, ଦିଲ୍ଲୀର ବିଚକ୍ଷଣ ନେତ୍ରୀ ରାଜିଆ ସୁଲତାନା, ଚାନ୍ଦବିବି, ଦକ୍ଷିଣ-ଭାରତର ଜଣେ ଶାସନକର୍ତ୍ତ୍ରୀ, ରାଣୀ ନୁରଜାହାନ୍, ଆଉରଙ୍ଗଜେବ୍‌ଙ୍କ କନ୍ୟା ଜେବୁନ୍ନିସା ଅନ୍ୟମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ । ଭାରତର ଇଂରେଜ ଶାସନ ବିରୁଦ୍ଧରେ ଆନ୍ଦୋଳନର ପ୍ରଥମ ପାହାଚରେ—୧୮୫୭ ମସିହାରେ ନିଜ ରାଜ୍ୟ ତଥା ଭାରତର ମୁକ୍ତି ପାଇଁ ଯୁଦ୍ଧକରି ନିହତ ହୋଇଥିବା ଝାନ୍ସୀର ରାଣୀ ଲକ୍ଷ୍ମୀବାଈ ଭାରତ ଇତିହାସରେ ଉପଯୁକ୍ତ ସ୍ଥାନ ପାଇଛନ୍ତି ।

ତା ବ୍ୟତୀତ ଯେଉଁ ନାରୀ ନେତ୍ରୀମାନେ ଜନସେବା ତଥା ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଓ ସରକାରଙ୍କ ବିଭିନ୍ନ ବିଭାଗରେ କାର୍ଯ୍ୟ କରିଥିଲେ ସେମାନଙ୍କ ମଧ୍ୟରେ ସରୋଜିନୀ ନାଇଡୁ, ଆନି ବେଶାନ୍ତ, ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ, ଡକ୍ଟର ସୁଶୀଳା ନାୟାର ଓ ଶ୍ରୀମତୀ ସୁଚେତା କୃପାଳିନୀ ଅନ୍ୟତମ । ସେସବୁର ଜ୍ୱଳନ୍ତ ଉଦାହରଣ ଜନ ସମ୍ମୁଖରେ ରହିଥିବା ସତ୍ତ୍ୱେ ଅନେକ ନେତା ଆଶଙ୍କା କରିଥିଲେ ଯେ, ଯେହେତୁ ସେ ଜଣେ ନାରୀ—ସେ ଅବଳା ଏବଂ ତେଣୁ ସେ ଅନ୍ୟମାନଙ୍କର ଖେଳଣା ହୋଇ ରହିବାର ଯଥେଷ୍ଟ ସମ୍ଭାବନା ଥିଲା । ସେଭଳି ଏକ ପ୍ରଶ୍ନର ଉତ୍ତର ଦେଇ ଶ୍ରୀମତୀ ଗାନ୍ଧୀ କହିଥିଲେ—"ନାରୀମାନେ ମଧ୍ୟ ମଣିଷ ଏବଂ ସେମାନେ ଜନସମାଜର ଅଙ୍ଗବିଶେଷ । ଏହିଛଡ଼ା ଅନ୍ୟ କିଛି ହୋଇ ନ ପାରନ୍ତି ।"

ଥରେ ଜଣେ ବିଦେଶୀ ସାମ୍ବାଦିକ ତାହାଙ୍କୁ ପ୍ରଶ୍ନ କରିଥିଲେ ଯେ ତାଙ୍କର ନିର୍ବାଚନ ବିଜୟର ପରିଣାମ ସ୍ୱରୂପ ଭାରତରେ ନାରୀଜାତି ପାଇଁ ରାଜନୀତି କ୍ଷେତ୍ରକୁ ଏକ ପ୍ରଧାନ ରାସ୍ତା ଉନ୍ମୋଚିତ ହୋଇସାରିଛି ବୋଲି ସେ ମନେ କରୁଥିଲେ କି ? ଶ୍ରୀମତୀ ଗାନ୍ଧୀଙ୍କ ଉତ୍ତର ଥିଲା, ସେ ପ୍ରଶ୍ନର ଉତ୍ତର ଭାରତ ପାଇଁ ନୂତନ ନ ଥିଲା । ତାଙ୍କର ପ୍ରଧାନମନ୍ତ୍ରୀ ନିର୍ବାଚନ ଏକ ଆଶ୍ଚର୍ଯ୍ୟଜନକ ଘଟଣା ନ ଥିଲା । କାରଣ ଦୀର୍ଘ ଦିନ ଧରି ଭାରତର ମହିଳାମାନେ ସ୍ୱାଧୀନତା ସଂଗ୍ରାମରେ, ରାଜନୀତିରେ ଏବଂ ସାମାଜିକ ଜୀବନରେ ମଧ୍ୟ ମୁଖ୍ୟ ଅଂଶ ଗ୍ରହଣ କରି ଆସିଥିଲେ । ବିଶେଷ କରି ଭାରତରେ ଅନେକ ମହିଳା ଡାକ୍ତର, ଇଂଜିନିୟର, ନ୍ୟାୟାଧୀଶ, ରାଜ୍ୟପାଳ ଏବଂ ରାଷ୍ଟ୍ରଦୂତ ରୂପେ ଅନେକ ଦେଶରେ କାର୍ଯ୍ୟ କରିଥିଲେ ଓ କରୁଥିଲେ ମଧ୍ୟ । ଏପରିକି ଗ୍ରାମ ପଞ୍ଚାୟତମାନଙ୍କରେ ମହିଳା ସଦସ୍ୟମାନେ ମଧ୍ୟ ଅଂଶ ଗ୍ରହଣ କରି ଆସିଥିଲେ ।

ଏପରି ସ୍ଥାନ ଥିଲା, ଯେଉଁଠି ସମସ୍ତ ପଞ୍ଚାୟତ କେବଳ ମହିଳାମାନଙ୍କ ଦ୍ୱାରା ହିଁ ପରିଚାଳିତ ହେଉଥିଲା । ତାଙ୍କୁ ବାଦ୍ ଦେଇ ମଧ୍ୟ ନାରୀଜାତି ସମଗ୍ର ପୃଥିବୀର ଅର୍ଦ୍ଧେକ । ତେଣୁ ସେ ମତବ୍ୟକ୍ତ କରିଥିଲେ ଯେ ମଣିଷର ପ୍ରତ୍ୟେକ କ୍ଷେତ୍ରରେ ସେମାନଙ୍କର ଗୁରୁ ଦାୟିତ୍ୱ ରହିଛି । ଶ୍ରୀମତୀ ଗାନ୍ଧୀଙ୍କ ଭାଷାରେ—"ମୁଁ ପ୍ରଧାନମନ୍ତ୍ରୀ ହେବା ଭାରତରେ ସେଭଳି ବିଶେଷ ଆଶ୍ଚର୍ଯ୍ୟଜନକ ଘଟଣା ନୁହେଁ । କାରଣ ବିଗତ ବର୍ଷମାନଙ୍କରେ ଏ ଦେଶର ନାରୀମାନେ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ, ରାଜନୀତିରେ ତଥା ସାମାଜିକ ସ୍ତରରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ଇଞ୍ଜିନିୟର, ରାଜ୍ୟପାଳ, ରାଷ୍ଟ୍ରଦୂତ, ବିଚାରପତି, କୂଟନୀତିଜ୍ଞ ତଥା ଦେଶର ପ୍ରଶାସନ କ୍ଷେତ୍ରରେ ମଧ୍ୟ ଅନେକ ମହିଳା କୃତିତ୍ୱପୂର୍ଣ୍ଣ ଭାବେ କାର୍ଯ୍ୟ କରି ଆସୁଛନ୍ତି । ଦେଶର ଗ୍ରାମ ପଞ୍ଚାୟତଗୁଡ଼ିକ ମଧ୍ୟରୁ ଅନେକରେ ନିର୍ବାଚିତ ପ୍ରତିନିଧିମାନେ ଅଛନ୍ତି । ଏପରି କି ସେଥିମଧ୍ୟରୁ କେତେଗୁଡ଼ିକରେ ସମସ୍ତେ ମହିଳାସଭ୍ୟା । ପୃଥିବୀରେ ମହିଳାମାନଙ୍କ ସଂଖ୍ୟା ମାନବ ଜାତିର ପ୍ରାୟ ଅର୍ଦ୍ଧେକ । ତେଣୁ ସ୍ୱାଭାବିକ ଭାବେ ସେମାନେ ମାନବ ସମାଜର ପ୍ରତ୍ୟେକ କ୍ଷେତ୍ରରେ କେତେକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ସମ୍ପାଦନ କରିବା ଆବଶ୍ୟକ । ସେ ଦୃଷ୍ଟିରୁ ମୋ ପ୍ରଧାନମନ୍ତ୍ରୀ ପଦବୀ ଗ୍ରହଣ ଏ ମୌଳିକ ସତ୍ୟର ଅପଳାପ କିମ୍ବା ଅଧିକ ଯୁକ୍ତିସଙ୍ଗତ କରୁନାହିଁ ।†

**ଜାତି ପାଇଁ ପ୍ରଥମ ଭାଷଣ :—**

ଜାନୁୟାରୀ ୨୪ ତାରିଖରେ ଭାରତର ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିବାର ଦୁଇ ଦିନ ପରେ ଭାରତର ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସମଗ୍ର ଜାତି ଉଦ୍ଦେଶ୍ୟରେ ଏକ ଭାଷଣ ଦେଇଥିଲେ । ତାହାଥିଲା ଜନସାଧାରଣଙ୍କ ପାଇଁ ପ୍ରଧାନମନ୍ତ୍ରୀ ଭାବରେ ତାଙ୍କର ପ୍ରଥମ ଭାଷଣ । ତାଙ୍କ ଭାଷଣ ପ୍ରସଙ୍ଗରେ ସେ କହିଥିଲେ—"ଆଜିକୁ ଛତିଶ ବର୍ଷ ପୂର୍ବେ ଠିକ୍ ଏଇ ଦିବସରେ ସ୍ୱାଧୀନତା ପାଇଁ ଶପଥ ନେଇ ସେଇ ଐତିହାସିକ ଓ ହୃଦୟସ୍ପର୍ଶୀ ସ୍ୱର ଉତ୍ତୋଳନ କରାଯାଇଥିଲା, ସହସ୍ର ସହସ୍ର କଣ୍ଠ ତାର ପୁନରାବୃତ୍ତି କରିଥିଲା ଏବଂ ତନ୍ମଧ୍ୟରୁ ମୋର ସ୍ୱର ମଧ୍ୟ ଥିଲା ଅନ୍ୟତମ । ୧୯୪୭ ମସିହାରେ ସେ ଶପଥ ପୂର୍ଣ୍ଣ ହୋଇଯାଇଛି । ଧର୍ମନିରପେକ୍ଷ ଅନୁଯାୟୀ ଆମେ ସମସ୍ତ ଜାତି ସହିତ ଶାନ୍ତି ଓ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରକ୍ଷା କରିବା ନୀତି ପାଳନ କରିଆସିଛେ ଏବଂ ତା ସଙ୍ଗେ ସଙ୍ଗେ ଆମେ ଆମ ନିଜର ସ୍ୱାଧୀନ ମତ ବ୍ୟକ୍ତ କରିବା ଅଧିକାର ଅବ୍ୟାହତ ରଖିଛେ । ଶାନ୍ତି ଆମର ଲକ୍ଷ୍ୟ; କିନ୍ତୁ ଦେଶର ସ୍ୱାଧୀନତା ଓ ଅଖଣ୍ଡତା ସୁରକ୍ଷିତ ରଖିବା ଲାଗି ସରକାରର ଦାୟିତ୍ୱ

† Interview with Jhon Harris.

ମନରେ ମୁଁ ସଚେତନ । ଏଥିପାଇଁ ଆମ୍ଭମାନଙ୍କୁ ଆବଶ୍ୟକତା ଅନୁଯାୟୀ ପ୍ରତିରକ୍ଷା ଶକ୍ତିକୁ ସୁଦୃଢ଼ କରି ତିର ସଚେତନ ଓ ଜାଗ୍ରତ ରହିବାକୁ ପଡ଼ିବ । ଆମେ ଶାନ୍ତି ଚାହୁଁ; କାରଣ ଆମକୁ ଅନ୍ୟ ଏକ ସଂଗ୍ରାମ କରିବାକୁ ପଡ଼ିବ । ସେ ସଂଗ୍ରାମ ଦାରିଦ୍ର୍ୟ, ରୋଗ-ବ୍ୟାଧି ଓ ଅଜ୍ଞତା ବିରୋଧରେ ସଂଗ୍ରାମ । ଆମେ ଜନସାଧାରଣଙ୍କୁ ଦେଇଥିବା ପ୍ରତିଶ୍ରୁତି ଆମକୁ ରକ୍ଷା କରିବାକୁ ପଡ଼ିବ । ସେ ପ୍ରତିଶ୍ରୁତି—କର୍ମ, ଖାଦ୍ୟ, ବସ୍ତ୍ର, ବାସସ୍ଥାନ, ଉତ୍ତମ ସ୍ୱାସ୍ଥ୍ୟ ପାଇଁ ବ୍ୟବସ୍ଥା ଓ ଶିକ୍ଷାଦାନର ପ୍ରତିଶ୍ରୁତି । ଆମ ଜନତା ମଧ୍ୟରୁ ଦୁର୍ବଳ ଓ ଅନ୍ତ୍ରବାପନ୍ନ ଗୋଷ୍ଠୀ, ଯେଉଁମାନେ ସ୍ୱତନ୍ତ୍ର ସାମାଜିକ ସୁରକ୍ଷା ଆବଶ୍ୟକ ମନେ କରନ୍ତି, ସେମାନେ ମୋ ମନରେ ପ୍ରଥମ ସ୍ଥାନ ଅଧିକାର କରିଛନ୍ତି ଓ କରିଥିବେ ।

"ଯୁବସମାଜକୁ ଅଧିକ ସୁଯୋଗ ମିଳିବା ଦରକାର । ଭାରତର ଯୁବକଗଣ ଜାଣିରଖିବା ଉଚିତ ଯେ ଆଜି ସେମାନେ ଯାହା ଦାନ କରିବେ, ଆସନ୍ତାକାଲି ଦେଶ ତାଙ୍କୁ ତାହା ଦେବ । ଜାତି ଚାହୁଁଛି ସେମାନେ ଅଗ୍ରଗାମୀ ହେବା ସଙ୍ଗେ ସଙ୍ଗେ ଆଶାବାନ୍ ହୁଅନ୍ତୁ । ବିଜ୍ଞାନ ଓ କଳା, ଚିନ୍ତା ଓ କର୍ମର ଜଗତ ସେମାନଙ୍କୁ ହାତ ଠାରି ଡାକୁଛି । ନୂତନ ସୀମାନ୍ତ ଅତିକ୍ରମ କରିବାକୁ ପଡ଼ିବ । ନୂତନ ଦିଗନ୍ତରେ ପହଞ୍ଚିବାକୁ ହେବ ଏବଂ ନୂତନ ଲକ୍ଷ୍ୟ ହାସଲ କରିବାକୁ ହେବ । ଆମର ଧର୍ମ, ଭାଷା ଓ ରାଜ୍ୟ ଯାହା ହେଉନା କାହିଁକି, ଆମେ ଏକ ଜାତି, ଏକ ଜନତା । ଆସନ୍ତୁ ଆମେ ସମସ୍ତେ—କୃଷକ ଓ ଶ୍ରମିକ, ଶିକ୍ଷକ ଓ ଛାତ୍ର, ବୈଜ୍ଞାନିକ ଓ ଇଞ୍ଜିନିୟର, ଶିଳ୍ପପତି ଓ ବ୍ୟବସାୟୀ, ରାଜନୀତିଜ୍ଞ ଓ ଦେଶସେବକ ସମସ୍ତେ ସେଥିପାଇଁ ଆପ୍ରାଣ ଚେଷ୍ଟା କରିବା । ଆମକୁ ଶକ୍ତିଶାଳୀ, ସହନଶୀଳ ଓ ଶୃଙ୍ଖଳିତ ହେବାକୁ ପଡ଼ିବ । କାରଣ ସହନଶୀଳ ଓ ଶୃଙ୍ଖଳା ଗଣତନ୍ତ୍ରର ମୂଳଭିତ୍ତି ।

"ଆମର ଜାତିନିର୍ମାତାମାନଙ୍କର ଆଦର୍ଶ—ଗଣତନ୍ତ୍ର ଓ ଧର୍ମନିରପେକ୍ଷତା, ଯୋଜନାବଦ୍ଧ ଅର୍ଥନୀତି ଓ ସାମାଜିକ ପ୍ରଗତି, ଅନ୍ୟ ରାଷ୍ଟ୍ର ସହ ଶାନ୍ତି ଓ ବନ୍ଧୁତା—ସେଗୁଡ଼ିକୁ ଅନୁସରଣ ଲାଗି ମୁଁ ପୁଣି ନୂତନ କରି ପ୍ରତିଶ୍ରୁତି ଦେଉଛି । ଭାରତର ଉଜ୍ଜ୍ୱଳ ଭବିଷ୍ୟତ ଲାଗି ଆମ ବିଶ୍ୱାସକୁ ପୁନର୍ଜୀବିତ କରିବାକୁ ହେବ । ଆମର ଭାଗ୍ୟ ଗଠନ ଲାଗି ଆମ ଶକ୍ତିକୁ ଆମେ ସୁଦୃଢ଼ କରିବାକୁ ହେବ । ଆମେ ସମସ୍ତେ ଏକ ମହାନ୍ ଅଥଚ ଦୁଃସାହସିକ ଅଭିଯାନର ଯାତ୍ରୀ । ଏଥିପାଇଁ ଏବଂ ଆମର ମହାନ୍ ଦେଶପାଇଁ ଆମେ ଯେପରି ନିଜକୁ ଯୋଗ୍ୟ ବିବେଚିତ କରୁ ।"†

---

† ୧୯୬୬ ମସିହାର ସାଧାରଣତନ୍ତ୍ର ଦିବସ ନିମନ୍ତେ ପ୍ରଦତ୍ତ ଶ୍ରୀମତୀ ଗାନ୍ଧୀଙ୍କ ଭାଷଣର କିୟଦଂଶ ।

ସେ ଭାଷଣରେ ଭାରତର ଅତୀତ ଇତିହାସର ମହାନତା ଓ ପରମ୍ପରା ପ୍ରତି ଦେଶବାସୀଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟାକରି ସେ ପୁରାତନ ଐତିହ୍ୟ ଫେରାଇ ଆଣିବାକୁ ହେଲେ ଦେଶରୁ ଦାରିଦ୍ର୍ୟ ଓ ନିରକ୍ଷରତା ଦୂରକରି ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ଜନସାଧାରଣଙ୍କ ସହଯୋଗ କାମନା କରିଥିଲେ ।

## ଅଭିନନ୍ଦନର ଜୁଆର :--

ପୃଥିବୀର ଏକ ବିଶାଳ ଗଣତନ୍ତ୍ରର ନେତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କରିବା ପର ମୁହୂର୍ତ୍ତରୁ ପୃଥିବୀର ପ୍ରାୟ ପ୍ରତ୍ୟେକ ପ୍ରାନ୍ତରୁ ରାଶିରାଶି ଉଚ୍ଛ୍ୱସିତ ଅଭିନନ୍ଦନ ବାର୍ତ୍ତା ଆସି ଅଜାଡ଼ି ହୋଇ ପଡ଼ିଥିଲା ଶ୍ରୀମତୀ ଗାନ୍ଧୀଙ୍କ ନିକଟରେ । ଭାରତର ଏକ ସଙ୍କଟମୟ ମୁହୂର୍ତ୍ତରେ ଇନ୍ଦିରା କଣ୍ଟକପୂର୍ଣ୍ଣ ରାଜମୁକୁଟ ପରିଧାନ କରିଥିଲେ । ସେଥିପାଇଁ ଆମେରିକା ରାଷ୍ଟ୍ରପତି ଲିଣ୍ଡନ୍ ଜନସନ୍ ଏକ ତାରବାର୍ତ୍ତାରେ ଅଭିନନ୍ଦନ ଜଣାଇ କହିଥିଲେ—"ମାନବିକ ମର୍ଯ୍ୟାଦା, ଜନକଲ୍ୟାଣ, ଗଣତନ୍ତ୍ରର ସୁରକ୍ଷା ଓ ଶାନ୍ତି ପାଇଁ ଉଭୟ ଦେଶର ମିଳିତ ପ୍ରଚେଷ୍ଟା ଯୋଗୁଁ ଦୁଇ ଦେଶ ମଧ୍ୟରେ ସୁସମ୍ପର୍କ ଦୃଢ଼ୀଭୂତ ହୋଇଛି । ଆପଣଙ୍କ ନେତୃତ୍ୱରେ ଏ ସମ୍ମିଳିତ ଲକ୍ଷ୍ୟ ଆହୁରି ସୁଦୃଢ଼ ଓ ସମ୍ପ୍ରସାରିତ ହୋଇପାରିବ ବୋଲି ମୁଁ ଆଶାୟୀ ଏବଂ ଏହି ଲକ୍ଷ୍ୟ ହାସଲ ପାଇଁ ଆମର ବନ୍ଧୁତା ଓ ସହଯୋଗିତାର ପ୍ରତିଶ୍ରୁତି ମଧ୍ୟ ଦେଉଛୁ ।"

ରୁଷ ପ୍ରଧାନମନ୍ତ୍ରୀ କୋସିଜିନ୍ ତାଙ୍କୁ ଅଭିବାଦନ ଜଣାଇ ଯେଉଁ ବାର୍ତ୍ତା ପ୍ରେରଣ କରିଥିଲେ, ସେଥିରେ ସେ ଉଲ୍ଲେଖ କରିଥିଲେ—"ଭାରତର ଜଣେ ବିଶିଷ୍ଟ ରାଜନୀତିଜ୍ଞ ତଥା ରାଷ୍ଟ୍ରନୀତିଜ୍ଞ ହିସାବରେ ଆପଣ ସୋଭିଏତ୍ ରାଷ୍ଟ୍ର ସଂଘରେ ବିଶେଷ ସମ୍ମାନିତା । ଆପଣଙ୍କଦ୍ୱାରା ପରିଚାଳିତ ଭାରତ ସରକାର ଜବାହରଲାଲ ନେହେରୁଙ୍କ ଚିନ୍ତାଧାରାର ଗୁରୁତ୍ୱ ଉପଲବ୍ଧି କରି ତାଙ୍କର ପ୍ରଦର୍ଶିତ ମାର୍ଗ ଅନୁସରଣ କରିବ ବୋଲି ଆମର ହୃଦ୍‌ବୋଧ ହୋଇଛି ।"

"ଭାରତ ଇତିହାସରେ ଏକ ସଙ୍କଟମୟ ପରିସ୍ଥିତିରେ ଆପଣ ଯେପରି ସାହସିକ ପଦକ୍ଷେପ ନେଇ ନେତୃତ୍ୱର ଏ ଗୁରୁ ଦାୟିତ୍ୱ ଗ୍ରହଣ କରୁଛନ୍ତି ତାହା ବାସ୍ତବିକ୍ ପ୍ରଶଂସନୀୟ । ଭାରତବାସୀଙ୍କର ଯେଉଁ ଗଭୀର ଆଶା ଓ ବିଶ୍ୱାସ ଆପଣଙ୍କ ଉପରେ ଅଛି ଓ ଏକ ଉନ୍ନତ ଭବିଷ୍ୟତ ଗଢ଼ିବା ପାଇଁ ଯେ ସେମାନେ ଆଶାୟୀ, ତାହା ଏଥିରୁ ସ୍ପଷ୍ଟ ଅନୁମିତ ।"—ଏ ଅଭିନନ୍ଦନ ବାର୍ତ୍ତା ପ୍ରେରଣ କରିଥିଲେ ସଂଯୁକ୍ତ ଆରବର ରାଷ୍ଟ୍ରପତି ନାସେର ।

ଭାରତର ଜଣେ ମହିଳା ସର୍ବୋଚ୍ଚ ଶାସନକର୍ତ୍ତ୍ରୀ ରୂପେ ନିର୍ବାଚିତ ହେବାରେ ପୃଥିବୀରେ ଏକ ଆଲୋଡ଼ନ ସୃଷ୍ଟି ହୋଇଥିଲା; କାରଣ ପୃଥିବୀ ରାଜନୀତିର ସର୍ବୋଚ୍ଚ ସ୍ଥାନରେ ଥିବା ମହିଳାମାନଙ୍କ ମଧ୍ୟରେ ଇଂଲଣ୍ଡର ରାଣୀଙ୍କ ଲଗି

ନିର୍ବାଚନ ଆବଶ୍ୟକ ହୁଏ ନାହିଁ । ସେତେବେଳେ ସିଂହଳରେ ଥିଲେ ଶ୍ରୀମତୀ ବନ୍ଦର ନାୟକ । ତେବେ ଅନେକ ସମାଲୋଚକ ମତପ୍ରକାଶ କରିଥିଲେ ଯେ ଶ୍ରୀମତୀ ବନ୍ଦର ନାୟକ ନିର୍ବାଚିତ ମୂଳରେ ଥିଲା ତାଙ୍କ ସ୍ୱାମୀ ଶ୍ରୀଯୁକ୍ତ ବନ୍ଦର ନାୟକଙ୍କ ହତ୍ୟା । ଶ୍ରୀଯୁକ୍ତ ବନ୍ଦର ନାୟକ ସେଠାର ପ୍ରଧାନମନ୍ତ୍ରୀ ଥିବାବେଳେ ଷଡ଼ଯନ୍ତ୍ର କରି ତାହାଙ୍କୁ ହତ୍ୟା କରାଯାଇଥିଲା । ସେ ସେଠାରେ ଏତେ ମାତ୍ରାରେ ଲୋକପ୍ରିୟ ହୋଇ ଉଠିଥିଲେ ଯେ ସେଠା ଜନସାଧାରଣ ତାଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀଙ୍କୁ ସେହି ଆସନରେ ଅଧିଷ୍ଠିତ କରାଇବା ଲାଗି ସଙ୍କଳ୍ପ କରିଥିଲେ । କିନ୍ତୁ ଇନ୍ଦିରାଙ୍କର ସେ ପ୍ରକାର କିଛି ଭିତ୍ତିଭୂମି ନ ଥିଲା । ସେ ଗଣତାନ୍ତ୍ରିକ ଢାଞ୍ଚାରେ ନିର୍ବାଚନରେ ବିଜୟ ହାସଲ କରିଥିଲେ । ତା ଫଳରେ ସମଗ୍ର ପୃଥିବୀରେ ମହିଳା ସମାଜ ଆନନ୍ଦିତ ହୋଇ ଉଠିଥିଲେ । ବୋଧହୁଏ ସେଇଥିପାଇଁ ଭାରତରେ ଥିବା ଆମେରିକାର ରାଷ୍ଟ୍ରଦୂତ ଚେଷ୍ଟର ବାଉଲସ୍‌ଙ୍କ ପତ୍ନୀ ଶ୍ରୀମତୀ ଚେଷ୍ଟର ବାଉଲସ୍ ମତ ଦେଇଥିଲେ—"It is a unique thing that a woman and a young woman at that should be Primeminister of world's largest democracy."*

ବାସ୍ତବିକ୍ ଅତି କମ୍ ବୟସରେ ଜଣେ ମହିଳା ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରର ପ୍ରଧାନମନ୍ତ୍ରୀ ହେବା ସେତେବେଳ ପର୍ଯ୍ୟନ୍ତ ଥିଲା ଆଶ୍ଚର୍ଯ୍ୟ କଥା ।

**ପ୍ରଧାନମନ୍ତ୍ରୀ ଇନ୍ଦିରା :—**

ଆକାଶବାଣୀର ଏକ ସାକ୍ଷାତ୍‌କାରରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଜାତିର ପିତା ଗାନ୍ଧିଜୀ ଓ ପିତା ଜବାହରଲାଲଙ୍କ ସମ୍ପର୍କରେ କହିଥିଲେ ଯେ, ବାପୁ କେବଳ ଯେ ଭାରତର ଶିକ୍ଷିତ ଲୋକଙ୍କୁ ତାଙ୍କ ଚିନ୍ତାଧାରାରେ ପ୍ରଭାବିତ କରିଥିଲେ ତାହା ନୁହେଁ, ସାଧାରଣ କୃଷୀ-ମଜୁରିଆ ବିଶେଷ କରି ପଲ୍ଲୀବାସୀଙ୍କ ଉପରେ ତାଙ୍କର କମ୍ ପ୍ରଭାବ ପଡ଼ୁ ନ ଥିଲା । ସେମାନଙ୍କ ମାନସରାଜ୍ୟର ଅତି ନିକଟକୁ ସେ ଚାଲି ଯାଇଥିଲେ । ନିଜର ଇଚ୍ଛା ଓ ଅଭିଳାଷ ପ୍ରକାଶ କରିବାପାଇଁ କୌଣସି ଭୟ ନ କରିବା ଲାଗି ସେ ପ୍ରେରଣା ଦେଉଥିଲେ ଏବଂ ତାହା ହିଁ ଦେଶରେ ନବଜାଗରଣ ସୃଷ୍ଟି କରିଥିଲା । ଠିକ୍ ସେମିତି ଜବାହରଲାଲ ମଧ୍ୟ ଜନମାନସରେ ଆଧୁନିକ ଚେତନାପ୍ରବାହକୁ ଏବଂ ବୈଜ୍ଞାନିକ ଚିନ୍ତାଧାରାକୁ ସାଧାରଣ ଜନତାଙ୍କ ନିକଟରେ ପହଞ୍ଚାଇବା ଲାଗି ଚେଷ୍ଟା କରିଥିଲେ । ଶ୍ରୀମତୀ ଇନ୍ଦିରା କହିଥିଲେ, ଯଦି ପ୍ରଧାନମନ୍ତ୍ରୀ ଥିବାବେଳେ ତାଙ୍କ ପିତାଜୀ ସାଧାରଣ ଜନତାଙ୍କ ସମର୍ଥନ ପାଇଥାନ୍ତେ ତାହେଲେ ଦେଶରୁ ଅନେକ

* M. K. Alexander—Indira Gandhi. P-116.

ଅନ୍ଧବିଶ୍ୱାସ ଦୂରୀଭୂତ ହୋଇ ପାରିଥାନ୍ତା ଓ ଦେଶର ପଞ୍ଚବାର୍ଷିକ ଯୋଜନାଗୁଡ଼ିକ ଅନେକ ପରିମାଣରେ ସଫଳ ମଧ୍ୟ ହୋଇପାରିଥାନ୍ତା ।

ସଂସଦୀୟ ଗଣତନ୍ତ୍ରରେ ପ୍ରଧାନମନ୍ତ୍ରୀଙ୍କ ଦାୟିତ୍ୱ ଯେ ତାଙ୍କର ସହକର୍ମୀ-ମାନଙ୍କୁ ନିର୍ବାଚନ କରିବେ । ତେଣୁ ଶ୍ରୀମତୀ ଇନ୍ଦିରା ତାଙ୍କ ମନ୍ତ୍ରିମଣ୍ଡଳରେ ଯେଉଁ-ମାନଙ୍କୁ ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ବୟସ୍କ ତଥା ଅଭିଜ୍ଞ ବ୍ୟକ୍ତିବିଶେଷ ଭାବରେ ଶ୍ରୀ ଗୁଲଜାରିଲାଲ ନନ୍ଦା, ଶ୍ରୀ ଚୌଧୁରୀ, ଶ୍ରୀ ଚୌହାନ୍, ଶ୍ରୀ ଜଗଜ୍ଜୀବନ ଓ ଶ୍ରୀ ଅଶୋକ ମେହେଟ୍ଟା ପ୍ରମୁଖ ଥିଲେ । ଯୁବ ସମ୍ପ୍ରଦାୟକୁ ସେ ଉଚିତ ଆସନ ଦେବାପାଇଁ ବଦ୍ଧପରିକର ହୋଇଥିଲେ ଏବଂ ଉପମନ୍ତ୍ରୀ ଭାବରେ ଅନେକ ନୂତନ ନେତାଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେଇଥିଲେ ।

ପ୍ରଧାନମନ୍ତ୍ରୀ ହିସାବରେ ମନ୍ତ୍ରିମଣ୍ଡଳର ଅନ୍ୟାନ୍ୟ ସଦସ୍ୟ ତଥା ସରକାରୀ କର୍ମଚାରୀମାନଙ୍କ ମତାମତ ପ୍ରତି ଇନ୍ଦିରା ଯଥେଷ୍ଟ ସମ୍ମାନ ଦେଖାଉଥିଲେ । ପ୍ରତ୍ୟେକ ଫାଇଲ୍‌କୁ ତନ୍ନ ତନ୍ନ କରି ପରୀକ୍ଷା ନେଉଥିଲେ ଏବଂ ସେ ସମ୍ପର୍କରେ ସମ୍ପୂର୍ଣ୍ଣ ଭାବେ ନ ଜାଣି ନିଜର ମତାମତ ପ୍ରଦାନ କରୁ ନ ଥିଲେ ମଧ୍ୟ ଯଥାସମ୍ଭବ ଶୀଘ୍ର ତାଙ୍କ ନିକଟକୁ ଆସୁଥିବା ଫାଇଲର କାର୍ଯ୍ୟ ଶେଷ କରି ଫେରାଇ ଦେଉଥିଲେ । ଅନେକେ ମତବ୍ୟକ୍ତ କରିଥିଲେ ଯେ ଶ୍ରୀମତୀ ଗାନ୍ଧୀ ତାଙ୍କ ପିତା ଜବାହରଙ୍କଠାରୁ ମଧ୍ୟ ଶୀଘ୍ର ଫାଇଲ୍ କାମ ଶେଷକରି ଫେରାଇ ଦେଉଥିଲେ । କେବଳ ସେତିକି ନୁହେଁ, ପ୍ରତ୍ୟେକ ଫାଇଲରେ ଯେଉଁ ଯେଉଁ ନିଷ୍ପତ୍ତି ଗ୍ରହଣ କରାଗଲା ସେଗୁଡ଼ିକ ପ୍ରକୃତରେ କାର୍ଯ୍ୟରେ ପରିଣତ ହେଲା କି ନାହିଁ ସେ ବିଷୟରେ ଅଧିକ ତତ୍ପର ହୋଇ ଉଠୁଥିଲେ ଓ ତାହାକୁ କାର୍ଯ୍ୟରେ ପରିଣତ କରିବାପାଇଁ ଦୃଢ଼ ପଦକ୍ଷେପମାନ ନେଉଥିଲେ ।

ପ୍ରଧାନମନ୍ତ୍ରୀ ଆସନରେ ଇନ୍ଦିରା ଅଧିଷ୍ଠିତ ହେବା ବେଳକୁ ଦେଶର କେବଳ ରାଜନୈତିକ କାହିଁକି, ସାମାଜିକ ପରିସ୍ଥିତି ମଧ୍ୟ ଥିଲା ସଙ୍କଟମୟ । ଦୀର୍ଘ କାଳ ଧରି ଉତ୍କଟ ଦାରିଦ୍ର୍ୟ ସାଙ୍ଗକୁ ଖାଦ୍ୟପଦାର୍ଥରେ ସ୍ୱାବଲମ୍ବୀ ନ ହୋଇପାରିବା ସମସ୍ୟା ଦିନକୁ ଦିନ ଉତ୍କଟ ରୂପ ଧାରଣ କରୁଥିଲା । ଦେଶର ପ୍ରତ୍ୟେକ ବ୍ୟକ୍ତି ଗୋଟିଏ ଗୋଟିଏ ସମସ୍ୟା ରୂପେ ଦଣ୍ଡାୟମାନ ହୋଇଥିଲେ କହିଲେ ଚଳେ ।

ବିଗତ ପାକିସ୍ତାନ ଯୁଦ୍ଧ ପରବର୍ତ୍ତୀ ପରିସ୍ଥିତି ଭାରତୀୟ ଅର୍ଥନୀତି ପାଇଁ ଏକ ବିରାଟ ବୋଝ ହୋଇ ପଡ଼ିଥିଲା ଏବଂ କେବଳ ସେଇଥିପାଇଁ ଯୋଜନାବଦ୍ଧ ଅର୍ଥନୀତିରେ ଅସାମଞ୍ଜସ୍ୟ ପରିଲକ୍ଷିତ ହୋଇଥିଲା । କୃଷି ଓ ଶିଳ୍ପ କ୍ଷେତ୍ରରେ ଆଶାନୁରୂପ ଉତ୍ପାଦନ ହୋଇପାରୁ ନ ଥିଲା । ଯୁଦ୍ଧ ଯୋଗୁଁ ବହିର୍ଦ୍ଦେଶୀୟ ସାହାଯ୍ୟଗୁଡ଼ିକ ବନ୍ଦ ହୋଇ ବିଶେଷ କ୍ଷତିକାରକ ହୋଇଥିଲା । ୧୯୬୫ ମସିହାରେ

ଠିକ୍ ସମୟରେ ବର୍ଷା ହୋଇ ନ ଥିବାରୁ ଖାଦ୍ୟଶସ୍ୟ ଉତ୍ପାଦନ ଉଲ୍ଲେଖଯୋଗ୍ୟ ଭାବେ କମିଯାଇଥିଲା ।

ତାର ପରିଣାମ ସ୍ୱରୂପ ସରକାରଙ୍କ ତରଫରୁ ପଡ଼ି-ଖାଦ୍ୟର ବ୍ୟବସ୍ଥା କରାଯାଇଥିଲା ବିଶେଷ କରି ପଶ୍ଚିମବଙ୍ଗ ଓ କେରଳରେ । କିନ୍ତୁ ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ବେଳକୁ କେରଳରେ ସବୁ ରାଜନୈତିକ ଦଳ ଓ ଟ୍ରେଡ୍ ୟୁନିୟନ୍ ମିଳିତ ଭାବେ "କେରଳ ବନ୍ଦ" ପାଇଁ ଆହ୍ୱାନ ଦେଇଥିଲେ ସେଇ ରେସନ୍ ନିୟନ୍ତ୍ରଣ ବିରୋଧରେ । ନାଗପୁରରେ ଖୋଲା ବଜାରରେ ଚାଉଳ ମିଳୁ ନ ଥିବା ସ୍ଥଳେ କଳା ବଜାରରେ ଯଥେଷ୍ଟ ପରିମାଣରେ ଚାଉଳ କିଲୋ ପ୍ରତି ଅଢ଼େଇ ଟଙ୍କାରୁ ତିନି ଟଙ୍କାରେ ବିକ୍ରୟ କରାଯାଉଥିଲା । ସେହି କାରଣରୁ ସେଠାରେ ମଧ୍ୟ ଆନ୍ଦୋଳନ ମୁଣ୍ଡ ଟେକି ଉଠୁଥିଲା । ବର୍ଷା ଅଭାବରୁ ମହାରାଷ୍ଟ୍ରର ୪୮୩ଟି ଗ୍ରାମକୁ ମରୁଡ଼ିର କରାଳ ଗ୍ରାସରୁ ରକ୍ଷା କରାଯାଇ ପାରି ନ ଥିଲା ଓ ସେଗୁଡ଼ିକୁ ମରୁଡ଼ି ଅଞ୍ଚଳ ରୂପେ ସରକାର ସ୍ୱୀକାର କରି ନେଇଥିଲେ । ଦରଦାମର ବୃଦ୍ଧି ଯୋଗୁଁ ଆନ୍ଧ୍ରପ୍ରଦେଶର ସରକାରୀ କର୍ମଚାରୀମାନେ ମହଙ୍ଗାଭତ୍ତା ବୃଦ୍ଧି ନ କଲେ ସରକାରଙ୍କ ସହିତ ସହଯୋଗ କରିବେ ନାହିଁ ବୋଲି ଧମକ ଦେଇଥିଲେ । ଅତ୍ୟାବଶ୍ୟକ ଦ୍ରବ୍ୟଗୁଡ଼ିକର ଦରଦାମ ଅତିମାତ୍ରାରେ ବୃଦ୍ଧି ପାଇଥିଲା । କଲିକତା ନଗରୀରେ କିରୋସିନର ମୂଲ୍ୟ ସାଧାରଣ ମୂଲ୍ୟର ୧୨ ଗୁଣ ବୃଦ୍ଧି ପାଇଥିଲା ୧୯୬୬ ମସିହାରେ ।

ପ୍ରଧାନମନ୍ତ୍ରୀ ଦାୟିତ୍ୱ ନେବା ପରେ ପରେ ଶ୍ରୀମତୀ ଇନ୍ଦିରା ପଶ୍ଚିମବଙ୍ଗ, କେରଳ, ମଧ୍ୟପ୍ରଦେଶ ପ୍ରଭୃତି ରାଜ୍ୟର ଖାଦ୍ୟସମସ୍ୟା ବିଶେଷ ଜରୁରୀ ମନେକରି କେତେକ ରାଜ୍ୟକୁ ଖାଦ୍ୟ ପଦାର୍ଥ ପଠାଇବା ପାଇଁ ଅନୁରୋଧ କରିଥିଲେ ଏବଂ ଘୋଷଣା କରିଥିଲେ ଯେ କେରଳର ବିଷମ ପରିସ୍ଥିତି ଅନୁଧ୍ୟାନ କରିବା ଲାଗି ସେ ନିଜେ ସେଠାକୁ ଯିବେ । ଧାନ-ଚାଉଳର ବିଶେଷ ଅଭାବ ଅନୁଭବ କରି ସେ ଦେଶବାସୀଙ୍କୁ ଅନୁରୋଧ ଜଣାଇଥିଲେ, କେବଳ 'ଭାତ' ଉପରେ ସମ୍ପୂର୍ଣ୍ଣ ଭରସା ନ କରି କିଛି କିଛି ଗହମ ଖାଇବା ଅଭ୍ୟାସ କରିବାପାଇଁ । ସେ ନିଜେ ତାଙ୍କ ଖାଦ୍ୟପଦାର୍ଥରୁ ଚାଉଳକୁ ବାଦ୍ ଦେଇଥିଲେ । ତାହା ଥିଲା ଗାନ୍ଧିଜୀଙ୍କ ନୀତି ଓ ଆଦର୍ଶର ପ୍ରଭାବ ।

ଦେଶରୁ ଖାଦ୍ୟସମସ୍ୟା ଦୂର କରାଯାଇ ପାରିଲେ ଅନ୍ୟ ଅନେକ ଆନୁଷଙ୍ଗିକ ସମସ୍ୟା ଦୂର ହୋଇପାରିବ ବୋଲି ଶ୍ରୀମତୀ ଗାନ୍ଧୀ ଅନୁଭବ କରୁଥିଲେ । ତେଣୁ ଖାଦ୍ୟଶସ୍ୟ ସଙ୍ଗେ ସଙ୍ଗେ ସାର ଆମଦାନୀ ନୀତିକୁ ସମର୍ଥନ କରୁଥିଲେ । ଭାରତର ମରୁଡ଼ି-ଅଧ୍ୟୁଷିତ ଅଞ୍ଚଳଗୁଡ଼ିକ ଭ୍ରମଣ କରି ଜନସାଧାରଣଙ୍କ ଅବସ୍ଥା ନିଜେ ଦେଖି ଆସିବାକୁ ମନସ୍ଥ କରିଥିଲେ ଏବଂ ରାଜ୍ୟସରକାରଗୁଡ଼ିକ

ନକଟସ୍ଥ ସମସ୍ତ ସନ୍ଧଯୋଗର ପ୍ରତଶ୍ରୁତ ପାଇ ଖାଦ୍ୟଦ୍ରବ୍ୟଗୁଡ଼ିକର ସୁଷମ ବଣ୍ଟନ, ସରକାରୀ ସାହାଯ୍ୟ, ଗ୍ରାମାଞ୍ଚଳର ଅଶିକ୍ଷିତ ବେକାରମାନଙ୍କୁ କର୍ମ ଯୋଗାଇବା ଲାଗି ବିଭିନ୍ନ ସରକାରୀ କାର୍ଯ୍ୟକ୍ରମର ବ୍ୟବସ୍ଥା କରିଥିଲେ ।

ବିଗତ କେତେ ବର୍ଷ ଧରି ଆସାମର ମିଜୋ ପାହାଡ଼ିଆ ଅଞ୍ଚଳର ଅଧିବାସୀ-ମାନେ ସରକାରଙ୍କ ବିରୋଧରେ ଷଡ଼ଯନ୍ତ୍ର କରି ଆସୁଥିଲେ ନାଗାମାନଙ୍କ ଭଳି । ରାସ୍ତା ବନ୍ଦକରି ଦେଉଥିଲେ, ଭାରତୀୟ ସୀମାନ୍ତରକ୍ଷୀବାହିନୀମାନଙ୍କ ଉପରେ ଆକ୍ରମଣ କରୁଥିଲେ ଏବଂ ବେଳେବେଳେ ନିକଟସ୍ଥ ସହରଗୁଡ଼ିକ ମଧ୍ୟ ଲୁଟ୍-କରୁଥିଲେ । ପଣ୍ଡିତ ନେହେରୁ ତାଙ୍କର ପ୍ରଧାନମନ୍ତ୍ରିତ୍ୱ କାଳରେ ସେମାନଙ୍କୁ ସ୍ୱାୟତ୍ତ ଶାସନ ସମ୍ବନ୍ଧୀୟ ସ୍ୱାଧିକାର ଦେବାପାଇଁ ଏକ ଯୋଜନା କରିଥିଲେ । କିନ୍ତୁ ଉଗ୍ରପନ୍ଥୀ ମିଜୋମାନେ ତାହା ଗ୍ରହଣ ନ କରି ସେ ପ୍ରକାର ଧ୍ୱଂସାତ୍ମକ କାର୍ଯ୍ୟ-କଳାପରେ ହିଁ ଲିପ୍ତ ରହିଥିଲେ । ୧୯୬୬ ମସିହାରେ ଯେତେବେଳେ ସେ ଆନ୍ଦୋଳନ ଆହୁରି ଟିକିଏ ମୁଣ୍ଡଟେକି ଉଠିଥିଲା, ଇନ୍ଦିରା କେବଳ ସାମରିକ ଶକ୍ତିଦ୍ୱାରା ସେ ବିଦ୍ରୋହକୁ ଦମନ କରିବାକୁ ଚାହିଁ ନ ଥିଲେ, ସେଠାକୁ ସେ ନିଜେ ଯାଇ, ସେମାନଙ୍କ ନେତୃବୃନ୍ଦଙ୍କ ସହିତ ଆଳାପ ଆଲୋଚନା କରି ଶାନ୍ତିପୂର୍ଣ୍ଣ ଭାବେ ଜୀବନଯାପନ କରିବାକୁ ଅନୁରୋଧ କରିଥିଲେ । ପରିସ୍ଥିତିର ମୁକାବିଲା କରିବାପାଇଁ ଧର୍ମଗୁରୁ ମାଇକେଲ୍ ରେଭରେଣ୍ଡ ସ୍କଟଙ୍କୁ ସେଠାରୁ ବହିଷ୍କାର ଆଦେଶ ଦେଇଥିଲେ ।

ଭାଷାଭିତ୍ତିରେ ପ୍ରଦେଶ ଗଠନ କରିବା ଉଦ୍ଦେଶ୍ୟରେ ବିଗତ କେତେ ବର୍ଷ ଧରି ପଞ୍ଜାବରେ ଆନ୍ଦୋଳନ କୁହୁଳି ଉଠୁଥିଲା । ଶିଖ୍‌ମାନେ ଦାବୀକରି ଆସୁଥିଲେ ଯେ ପଞ୍ଜାବୀ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠିତ ହେଉ । ପ୍ରଧାନମନ୍ତ୍ରୀ ନିର୍ବାଚିତ ହେବା ପରେ ପରେ ଶ୍ରୀମତୀ ଇନ୍ଦିରା ଅନୁଭବ କରିଥିଲେ ଯେ ବାସ୍ତବିକ୍ ପଞ୍ଜାବୀ ସୁବାମାନଙ୍କର ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ଆବଶ୍ୟକ ଏବଂ ତଦନୁଯାୟୀ ମନ୍ତ୍ରିମଣ୍ଡଳରେ ଆଲୋଚନା ପରେ ଏକ ନୂତନ ରାଜ୍ୟ ଗଠନ କରିବା ନିଷ୍ପତ୍ତି ସରକାର ଘୋଷଣା କରିଥିଲେ । ସେଥିରେ ପଞ୍ଜାବୀ ସୁବାମାନେ ଆନନ୍ଦରେ ବିଭୋର ହେବାବେଳେ "ରାଜନୈତିକ ଦଳ ଜନସଂଘ ତାହାର ଘୋର ଆପତ୍ତି କରିଥିଲେ ଏବଂ ସଙ୍ଗେ ସଙ୍ଗେ ଗଣବିକ୍ଷୋଭର ଆୟୋଜନରେ ଲାଗି ପଡ଼ିଥିଲେ । ତାହା ଏତେ ଉଗ୍ର ଆକାର ଧାରଣ କରିଥିଲା ଯେ, ପାନିପଥଠାରେ ଉଦ୍‌ବେଳିତ ଜନତା ତିନି ଜଣ ନେତାଙ୍କୁ ଅଗ୍ନିରେ ଜୀବନ୍ତ ଦଗ୍ଧ କରି-ଦେଇଥିଲେ । ଏପରି କି ଦିଲ୍ଲୀରେ ମଧ୍ୟ ଅନେକ ସ୍ଥାନରେ ପଞ୍ଜାବୀମାନଙ୍କ ଦୋକାନସବୁ ଲୁଟ୍ କରାଯାଇଥିଲା—ପୋଡ଼ି ଜାଳି ଧ୍ୱଂସ କରାଯିବା କାର୍ଯ୍ୟ ଆରମ୍ଭ ହୋଇଯାଇଥିଲା । ସେ ପରିସ୍ଥିତିରେ ବିନା ଦେହରକ୍ଷୀ ନେଇ ପ୍ରଧାନମନ୍ତ୍ରୀ

ଶ୍ରୀମତୀ ଇନ୍ଦିରା ଉପଦ୍ରୁତ ଅଞ୍ଚଳଗୁଡ଼ିକରେ ଉପସ୍ଥିତ ହୋଇ ଲୋକଙ୍କୁ ଧ୍ୱଂସାତ୍ମକ କାର୍ଯ୍ୟକଳାପରୁ ନିବୃତ୍ତ ହେବା ଲାଗି ଆହ୍ୱାନ ଦେଇଥିଲେ । ଜନସଂଘର ନେତୃବୃନ୍ଦଙ୍କୁ ମଧ୍ୟ କଡ଼ାକଡ଼ି ଭାବରେ ତାଗିଦ୍ କରିଦେଇ କହିଥିଲେ ଯେ ଦିଲ୍ଲୀରେ ଶାନ୍ତି ବ୍ୟାହତ ହେଲେ କି ପ୍ରତିକାର କରିବାକୁ ହେବ ତାହା ଯଥାର୍ଥ ଭାବେ ସରକାର ହୃଦୟଙ୍ଗମ କରିପାରନ୍ତି ଓ ତାର ନିରାକରଣ ମଧ୍ୟ କରିପାରନ୍ତି ।

ଇନ୍ଦିରାଙ୍କ ତତ୍ପରତା, କେନ୍ଦ୍ର ଘରୋଇ ବିଭାଗର ସକ୍ରିୟତା ସତକୁ ସତ ଆଶ୍ଚର୍ଯ୍ୟଜନକ ଭାବେ ଦିଲ୍ଲୀର ପୂର୍ବ ଶାନ୍ତ ବାତାବରଣ ଫେରାଇ ଆଣି ପାରିଥିଲା ମାତ୍ର ଅଠଚାଳିଶି ଘଣ୍ଟା ଭିତରେ । ଦିଲ୍ଲୀ ଭଳି ସହରରେ ଜାତିଗତ ବିଭେଦ ନେଇ ସୃଷ୍ଟି ହୋଇଥିବା ଆନ୍ଦୋଳନ ଏତେ ଶୀଘ୍ର ଶାନ୍ତ ହୋଇଯିବା ବୋଧହୁଏ ସେତେବେଳେ ସମ୍ଭବପର ଥିଲା ପ୍ରଥମଥର ପାଇଁ ।

ସେତେବେଳେ ଲୋକସଭାର ମୋଟ ସଭ୍ୟସଂଖ୍ୟା ଥିଲା ୫୦୧ ଓ ତା ମଧ୍ୟରୁ କଂଗ୍ରେସ ପାଇଥିଲା ୩୯୨ । ତେଣୁ କୌଣସି ବିଲ୍ ପାର୍ଲ୍ୟାମେଣ୍ଟରେ ପାସ୍ କରିବାକୁ ଗଲବେଳେ ଇନ୍ଦିରାଙ୍କୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡୁ ନ ଥିଲେ ମଧ୍ୟ ପ୍ରକୃତରେ ସବୁଠାରୁ ବଡ଼ ଅନ୍ତରାୟ ସୃଷ୍ଟି କରୁଥିଲା କଂଗ୍ରେସ ଦଳ । କଂଗ୍ରେସ ଦଳର କେତେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିକୁ ଇନ୍ଦିରା କାର୍ଯ୍ୟକାରୀ କରିବାକୁ ବିଶେଷ ଆଗ୍ରହପ୍ରକାଶ କରୁ ନ ଥିଲେ; କାରଣ ସେଗୁଡ଼ିକ ବିଶେଷ ଜନସ୍ୱାର୍ଥ ଲାଗି ଉଦ୍ଦିଷ୍ଟ ନ ଥିଲା ବୋଲି ମନେ କରୁଥିଲେ । ସେ ଥିଲେ ଭାରତର ସାଧାରଣ ଜନତାର ପ୍ରଧାନମନ୍ତ୍ରୀ । ତେଣୁ କଂଗ୍ରେସ ଦଳର ନିଷ୍ପତ୍ତି ଅପେକ୍ଷା ଜନସାଧାରଣଙ୍କ ମଙ୍ଗଳ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବା ଉଚିତ ବୋଲି ସେ ମନେ କରୁଥିଲେ । ସେଥିପାଇଁ ଯଦି କଂଗ୍ରେସର ନେତୃବର୍ଗ ସମର୍ଥନ ନ କରନ୍ତି କିମ୍ବା କଂଗ୍ରେସ ସେ ପ୍ରକାର ନିଷ୍ପତ୍ତି ନ ନିଏ, ତେବେ ବି ଜନକଲ୍ୟାଣକର ନୀତିକୁ କାର୍ଯ୍ୟକାରୀ କରିବା-ପାଇଁ ସେ ନିଜ ମତ ପୋଷଣ କରିଥିଲେ । ପୁଣି କେତେକ ଗୁରୁତର ଜନ-କଲ୍ୟାଣକାରୀ ବିଷୟକୁ କୌଣସିମତେ ନିଜ ପ୍ରଭାବ ବିସ୍ତାର କରି ହେଉ ବା କଳେ, ବଳେ, କୌଶଳରେ ହେଉ କଂଗ୍ରେସ କମିଟିରେ ପ୍ରସ୍ତାବିତ କରି ଗୃହୀତ କରାଇ ନେଉଥିଲେ । ପରିଣାମତଃ ସରକାରୀ ସ୍ତରରେ କାର୍ଯ୍ୟକାରୀ କରାଇବା ପାଇଁ ସୁବିଧାଜନକ ହୋଇ ଯାଉଥିଲା । ସେଥିପାଇଁ କଂଗ୍ରେସ ସଭାପତି ଶ୍ରୀମତୀ ଇନ୍ଦିରାଙ୍କ ପ୍ରତି ଅତ୍ୟନ୍ତ କ୍ଷୁବ୍ଧ ହୋଇ ଉଠିଥିଲେ । କାମରାଜ ଭାବିଥିଲେ, ଇନ୍ଦିରାଙ୍କୁ ପ୍ରଧାନମନ୍ତ୍ରୀ କରାଇବା ଦ୍ୱାରା ବାସ୍ତବରେ ସେ ହେବେ ତାଙ୍କର ହାତବାରିସୀ ଏବଂ ପରୋକ୍ଷ ଭାବେ ଇନ୍ଦିରାଙ୍କ ମାଧ୍ୟମରେ ସେ ନିଜେ ହିଁ ଭାରତର ଶାସନ ପରିଚାଳନା କରିବେ । କିନ୍ତୁ ତାଙ୍କର ସେ ଆଶା ଖୁବ୍ କମ୍ ଦିନ ମଧ୍ୟରେ ଏକ ବ୍ୟର୍ଥତାରେ ପରିଣତ ହୋଇଯାଇଥିଲା । ସେଇଥିପାଇଁ ଗୋଟିଏ ସାକ୍ଷାତ୍‌କାରରେ କଂଗ୍ରେସ ଦଳ

ସ୍ୱତନ୍ତ୍ର ଶାସନ ବଳର କି ସମ୍ପର୍କ ରହିଛି ତାର ଉତ୍ତର ଦେବାକୁ ଯାଇ ମୁଣ୍ଡରେ ହାତ ଦେଇ କାମରାଜ କହିଥିଲେ—"I am a small man, who made a big mistake."* ସେ କ୍ଷୁଦ୍ର ଲୋକଟିଏ ହୋଇ ମଧ୍ୟ ଏକ ମସ୍ତବଡ଼ ଭୁଲ୍ କରି ପକାଇଛନ୍ତି ।

ସେ ହୃଦୟଙ୍ଗମ କରିଥିଲେ ଯେ ତାଙ୍କର ପ୍ରଧାନ ଭୁଲ୍ ଇନ୍ଦିରାଙ୍କୁ ପ୍ରଧାନମନ୍ତ୍ରୀ ରୂପେ ପ୍ରାର୍ଥୀ କରାଇବା ପାଇଁ ମନୋନୀତ କରିବା । ଅପର ପକ୍ଷରେ ଶ୍ରୀମତୀ ଗାନ୍ଧୀ ମଧ୍ୟ ଅନୁଭବ କରିଥିଲେ ଯେ କଂଗ୍ରେସ ସଭାପତି କାମରାଜ ନାଦର ତାହାଙ୍କ କାର୍ଯ୍ୟକଳାପ ନେଇ ସନ୍ତୁଷ୍ଟ ହୋଇପାରୁ ନାହାନ୍ତି । ତେଣୁ ଥରେ କଥା ପ୍ରସଙ୍ଗରେ ସେ ଦଳର ସଭାପତିଙ୍କୁ କହିଥିଲେ—"ଦେଖନ୍ତୁ; ଯଦି କଂଗ୍ରେସ ଦଳ ମୋ କାର୍ଯ୍ୟକଳାପରେ ସନ୍ତୁଷ୍ଟ ନୁହେଁ, ତାହେଲେ ମୁଁ ଇସ୍ତଫା ଦେଇ ଦେବାପାଇଁ ପ୍ରସ୍ତୁତ । କିନ୍ତୁ ମୋ ନୀତି ଓ କାର୍ଯ୍ୟଧାରାକୁ ମୁଁ ଆଦୌ ବଦଳାଇ ପାରିବି ନାହିଁ ।"† ଶ୍ରୀମତୀ ଗାନ୍ଧୀଙ୍କୁ ଇସ୍ତଫା ନ ଦେବାପାଇଁ କାମରାଜ ପରାମର୍ଶ ଦେଇଥିଲେ ମଧ୍ୟ ପ୍ରକୃତରେ ତାହା ତାଙ୍କର ଆନ୍ତରିକ ଇଚ୍ଛା ନ ଥିଲା । ତେଣୁ ୧୯୬୯ ମସିହାରେ ରାଷ୍ଟ୍ରପତି ନିର୍ବାଚନବେଳେ କାମରାଜ ସମର୍ଥକ ଗୋଷ୍ଠୀ ଇନ୍ଦିରା ଗୋଷ୍ଠୀଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ମତପୋଷଣ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ଇନ୍ଦିରା ମଧ୍ୟ ତାହାକୁ ଏକ ପ୍ରକାର ସ୍ୱାଗତ କରିଥିଲେ । ତେବେ ଇନ୍ଦିରା ସମର୍ଥକ ପ୍ରାର୍ଥୀ ଶ୍ରୀ ଭି. ଭି. ଗିରି ପ୍ରତିଦ୍ୱନ୍ଦ୍ୱିତାରେ ବିଜୟ ଲାଭ କରିଥିଲେ ।

## ଆମେରିକାରେ ପ୍ରଧାନମନ୍ତ୍ରୀ ଇନ୍ଦିରା :—

ଭାରତୀୟ ଜନଗଣଙ୍କ ନେତ୍ରୀ ନିର୍ବାଚିତ ହେବାର ଦୁଇ ମାସ ପରେ ଏକ ଶୁଭେଚ୍ଛାମୂଳକ ବିଦେଶ ଗସ୍ତରେ ବାହାରିଥିଲେ ଶ୍ରୀମତୀ ଗାନ୍ଧୀ । ତେବେ ତାଙ୍କର ସେ ଗସ୍ତକ୍ରମର କେନ୍ଦ୍ରବିନ୍ଦୁ ଥିଲା ୱାଶିଂଟନ । ସେଠାକୁ ଯିବା ରାସ୍ତାରେ ପ୍ୟାରିସ୍‌ଠାରେ ରାଷ୍ଟ୍ରପତି ଡିଗଲଙ୍କୁ ସାକ୍ଷାତ କରିଥିଲେ । ୱାଶିଂଟନଠାରେ ରାଷ୍ଟ୍ରପତି ଜନ୍‌ସନ୍‌ଙ୍କ ସହ କଥାବାର୍ତ୍ତା କରି ଫେରିବା ବେଳେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ହେରାଲଡ଼ ଉଇଲସନ୍ ଏବଂ ରୁଷ କମ୍ୟୁନିଷ୍ଟ ପାର୍ଟିର ଚେୟାରମ୍ୟାନ୍ ଆଲେକ୍‌ସି କୋସିଜିନ୍‌ଙ୍କ ସହ ମଧ୍ୟ ସାକ୍ଷାତ କରି କଥାବାର୍ତ୍ତା କରିଥିଲେ । ସେ ଗସ୍ତର ମୂଳ ଉଦ୍ଦେଶ୍ୟ ଥିଲା ବିଭିନ୍ନ ଦେଶ ସହିତ ଭାରତର ସୁସମ୍ପର୍କ ରକ୍ଷା କରିବା । ବିଶେଷ କରି ଭାରତର ବୈଦେଶିକ ନୀତି ସମ୍ପର୍କରେ ଆମେରିକାର ଯେଉଁ ଭୁଲ ବୁଝାମଣା ଅନେକଦିନରୁ ରହି ଆସିଥିଲା ତାହା ଦୂର କରିବା ଏବଂ ପୃଥିବୀର ଦୁଇଟି

* Indira Gandhi by M. K. Alexander—P-192

† ଡଃ ନିମାଇଁ ମାଧବ ବୋଷଙ୍କ ସହ ଶ୍ରୀମତୀ ଗାନ୍ଧୀଙ୍କ ଶେଷ ସାକ୍ଷାତ୍କାର ।

ଗଣତାନ୍ତ୍ରିକ ରାଷ୍ଟ୍ର ମଧ୍ୟରେ ଥିବା ସମ୍ପର୍କକୁ ସୁଦୃଢ଼ କରାଇବା ସେ ଗସ୍ତଟମର ମୁଖ୍ୟ ଲକ୍ଷ୍ୟ ଥିଲା । ତାହାଙ୍କ ବିଶ୍ୱାସ, ତା' ଫଳରେ ହିଁ ପୃଥିବୀର ଶାନ୍ତି ପାଇଁ ସଫଳ ଚେଷ୍ଟା କରାଯାଇ ପାରିବ ।

ଆମେରିକା ଭ୍ରମଣରେ ଯିବା ପୂର୍ବରୁ ଜଣେ ବିଦେଶୀ ସାମ୍ବାଦିକ ଜନ୍ ହେରିସ୍ ଶ୍ରୀମତୀ ଗାନ୍ଧୀଙ୍କୁ ପ୍ରଶ୍ନ କରିଥିଲେ ଯେ ପୃଥିବୀରେ ଏକ ପ୍ରକାରର ଶୀତଳ ଯୁଦ୍ଧ ଚାଲିଥିବା ବେଳେ ଦୁଇଟି ସମାନ୍ତରାଳ ପଥରେ ଗତି କରୁଥିବା ଦୁଇଟି ଶକ୍ତିଶାଳୀ ଓ ସମ୍ପୂର୍ଣ୍ଣ ବିପରୀତ ଚିନ୍ତାଧାରାରେ ପରିଚାଳିତ ରାଷ୍ଟ୍ର ସହିତ ଭାରତ ସୁସମ୍ପର୍କ ରକ୍ଷା କରିପାରିବ କି ? ତାର ଉତ୍ତରରେ ଶ୍ରୀମତୀ ଗାନ୍ଧୀ କହିଥିଲେ ଯେ ପ୍ରକୃତିରେ ଅତୀତରେ ମଧ୍ୟ ସେ ପ୍ରକାର ସମ୍ପର୍କ ରକ୍ଷା କରାଯାଇ ପାରିଛି । ସେହି କାରଣରୁ ପୃଥିବୀର ବିପରୀତଧର୍ମୀ ରାଷ୍ଟ୍ରମାନଙ୍କ ସହି ସମ୍ପର୍କ ରକ୍ଷା ଦିଗରେ କୌଣସି ପ୍ରକାର ପ୍ରତିବନ୍ଧକ ସେ ଦେଖିପାରୁ ନାହାନ୍ତି ।

ଇନ୍ଦିରାଙ୍କ ସେହି ଆମେରିକା ଭ୍ରମଣକୁ ସ୍ୱାଗତ କରି ସେଠାକାର ଏକ ପତ୍ରିକା 'ଫିଲାଡେଲ୍‌ଫିଆ ବୁଲେଟିନ୍' ଲେଖିଥିଲା—"ସାଧାରଣତଃ ବିଦେଶାଗତ ମହାମାନ୍ୟ ଅତିଥିମାନଙ୍କୁ ସ୍ୱାଗତ ଜଣାଇଥିବା ଏହି ନଗରୀ (ୱାଶିଂଟନ) ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କୁ ଅତିଥି ରୂପେ ସ୍ୱାଗତ କରିବାକୁ ସୁସଜ୍ଜିତ ଏବଂ ବ୍ୟଗ୍ର । ଗୋଟିଏ ସରକାରର ସର୍ବୋଚ୍ଚ ଶାସନାଧିକାରୀ ହିସାବରେ ସେଠାକୁ ଆସିଥିବା ଅନ୍ୟାନ୍ୟମାନଙ୍କ ମଧ୍ୟରେ ସେ ହେବେ ପ୍ରଥମ ମହିଳା ଅତିଥି । ପଚାଶ କୋଟି ଜନତାର ପ୍ରତିନିଧି ଓ ଗୋଟିଏ ଦେଶର ଶାସନକର୍ତ୍ତ୍ରୀ ହିସାବରେ ତାଙ୍କର ମତାମତ ଜାଣିବା ପାଇଁ ୱାଶିଂଟନ ଉତ୍କଣ୍ଠିତ ।"

ଯଦିଓ ଶ୍ରୀମତୀ ଗାନ୍ଧୀ ୧୯୬୬ ମସିହା ପୂର୍ବରୁ ଅନେକବାର ପିତାଙ୍କ ସହିତ ଆମେରିକା ଭ୍ରମଣରେ ଯାଇଥିଲେ, ତଥାପି ଅନ୍ୟ କୌଣସିଥର ତାଙ୍କ ବିଷୟରେ ଏତେ ପରିମାଣରେ ସେଠାକାର ଖବରକାଗଜମାନଙ୍କରେ ପ୍ରକାଶ ପାଇ ନ ଥିଲା । ପ୍ରାୟ ପ୍ରତ୍ୟେକ ନାମଯାଦା ସମ୍ବାଦପତ୍ର ତାଙ୍କର ଜୀବନୀଠାରୁ ଆରମ୍ଭ କରି ଚିନ୍ତାଧାରା ଏବଂ କାର୍ଯ୍ୟକଳାପ ସମ୍ପର୍କରେ ଅନେକ କିଛି ପ୍ରକାଶ କରିଥିଲେ ।

ପ୍ରଧାନମନ୍ତ୍ରୀ ହିସାବରେ ପୃଥିବୀର ଏକ ବୃହତ୍ତମ, ଶକ୍ତିଶାଳୀ, ସର୍ବାଧୁନିକ ଓ ଉନ୍ନତ ରାଷ୍ଟ୍ର ପରିଦର୍ଶନରେ ଯାଇଥିଲେ ମଧ୍ୟ ତାଙ୍କର ପରିଧାନ ପରିପାଟୀରେ କୌଣସି ପରିବର୍ତ୍ତନ ହୋଇ ନ ଥିଲା । ସେ ଖଣ୍ଡିଏ ସିଲ୍‌କ ଶାଢ଼ୀ ପରିଧାନ କରିଥିଲେ ଓ ପାଦରେ ଥିଲା ହାଲେ ସାଧାରଣ ଚପଲ । କିନ୍ତୁ ହ୍ୱାଇଟ୍ ହାଉସ୍ ଲନ୍‌ରେ ଆମେରିକା ରାଷ୍ଟ୍ରପତି ଜନ୍‌ସନ୍‌ଙ୍କ ସହି ଆନୁଷ୍ଠାନିକ ଉତ୍ସବ ପରିଦର୍ଶନ କଲାବେଳେ ତାଙ୍କ ଚେହେରାରୁ ଫୁଟି ଉଠୁଥିଲା ଜଣେ ପ୍ରଧାନମନ୍ତ୍ରୀଙ୍କର ସମସ୍ତ ଗାମ୍ଭୀର୍ଯ୍ୟ ।

ଆମେରିକାରେ ରାଷ୍ଟ୍ରପତି ଜନ୍‌ସନ୍‌ଙ୍କ ସହିତ ଆଲୋଚନା କରିବା ବ୍ୟତୀତ ଅନେକଗୁଡ଼ିଏ ସାମ୍ବାଦିକ ସମ୍ମିଳନୀରେ ସେ ଯୋଗ ଦେଇଥିଲେ ଓ ଅନେକ ଟେଲିଭିଜନ୍ ସାକ୍ଷାତ୍‌କାରରେ ମଧ୍ୟ ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇଥିଲେ । ବିଭିନ୍ନ ସମୟରେ ଓ ସାକ୍ଷାତ୍‌କାରବେଳେ ସାମ୍ବାଦିକମାନେ ଯେଉଁସବୁ ପ୍ରଶ୍ନ ପଚାରିଥିଲେ, ସେଥିମଧ୍ୟରେ ଥିଲା ତାଙ୍କ ନିଜ ଜୀବନୀଠାରୁ ଆରମ୍ଭ କରି କାର୍ଯ୍ୟକଳାପ ଓ ଭାରତର ସର୍ବାଙ୍ଗୀନ ଉନ୍ନତି ଲାଗି ଯୋଜନା । ଏ ସମସ୍ତ ମଧ୍ୟରେ ପ୍ରଫେସର ଗଲ୍‌ବ୍ରେଥ୍‌ଙ୍କ ସହିତ ଯେଉଁ ସାକ୍ଷାତ୍‌କାର ହୋଇଥିଲା, ତାହା ଥିଲା ଉଲ୍ଲେଖଯୋଗ୍ୟ । ପ୍ରଫେସର ଗଲବ୍ରେଥ୍ ଦୀର୍ଘଦିନ ଧରି ଭାରତରେ ଆମେରିକାର ରାଷ୍ଟ୍ରଦୂତ ରୂପେ କାର୍ଯ୍ୟ କରିଆସିଥିବା ଯୋଗୁଁ ଭାରତର ସମସ୍ୟା, ରାଜନୈତିକ କାର୍ଯ୍ୟକଳାପ, ଅନ୍ତର୍ଦେଶୀୟ ସମ୍ପର୍କ ତଥା ବିଭିନ୍ନ ପ୍ରାନ୍ତର ପ୍ରଧାନ ପ୍ରଧାନ ଘଟଣାବଳୀ ସହିତ ସମ୍ପୂର୍ଣ୍ଣ ପରିଚିତ ଥିଲେ । ସେହି କାରଣରୁ ଇନ୍ଦିରାଙ୍କ ସହିତ ସାକ୍ଷାତ୍‌କାର ସମୟରେ ଭାରତର ବିଭିନ୍ନ ସମସ୍ୟା ଉପରେ ପ୍ରଶ୍ନ ପଚାରିବା ଲାଗି ତାହାଙ୍କୁ ଉପଯୁକ୍ତ ସମୟ ଓ ସୁଯୋଗ ମିଳିଥିଲା । କେବଳ ସେଠାରେ ଶ୍ରୀମତୀ ଗାନ୍ଧୀଙ୍କୁ ପ୍ରଶ୍ନ ହିଁ କରି ଉତ୍ତର ଆଶା କରି ନ ଥିଲେ, ତା ସହିତ ନିଜର ମୌଳିକ ମତ ମଧ୍ୟ ପ୍ରଦାନ କରିଥିଲେ ଭାରତର ବିଭିନ୍ନ ସମସ୍ୟାଗୁଡ଼ିକ ଉପରେ । ସେଥିପାଇଁ ଶ୍ରୀମତୀ ଗାନ୍ଧୀଙ୍କ ସହିତ ଯେତେ ଯେତେ ସାକ୍ଷାତ୍‌କାର ବା ସମ୍ବାଦିକ ସମ୍ମିଳନୀ ହୋଇଥିଲା, ଗଲବ୍ରେଥ୍‌ଙ୍କ ସହ ସାକ୍ଷାତ୍‌କାର ସବୁରି ଭିତରେ ସର୍ବୋତ୍କୃଷ୍ଟ ବୋଲି ମତପ୍ରକାଶ ପାଇଥିଲା ।

ଭାରତର ବିଭିନ୍ନ ସମସ୍ୟା ଓ ଘଟଣାବଳୀ ସମ୍ପର୍କରେ ଲେଖାଲେଖି କରିବା ପାଇଁ ପ୍ରସିଦ୍ଧି ଲାଭ କରିଥିବା ଓ ଆମେରିକା ଜନଜୀବନର ସର୍ବୋଚ୍ଚ ପ୍ରତିନିଧି ଆମେରିକାର ରାଷ୍ଟ୍ରପତି ଜନ୍‌ସନ୍‌ଙ୍କ ବ୍ୟକ୍ତିଗତ ବନ୍ଧୁ ପୃଥିବୀବିଖ୍ୟାତ ଆମେରିକାର ସମ୍ବାଦପତ୍ର "ଓ୍ୱାଶିଂଟନ ପୋଷ୍ଟ"ର ପ୍ରତିନିଧି ଉଇଲିଅମ୍. ଏସ୍. ହ୍ୱାଇଟ୍ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରାଙ୍କ ଆମେରିକା ଭ୍ରମଣ ସମ୍ପର୍କରେ 'ଓ୍ୱାଶିଂଟନ ପୋଷ୍ଟ' ପତ୍ରିକାରେ ଲେଖିଥିଲେ, "No previous conference of heads of states in the time of Johnson administration has accomplished so much for so many as has the President's paraley here with Mrs. Indira Gandhi, the Prime Minister of India......It turned out in short that she has been and intends to remain a moderate minded, undoctrinaire, leader of India—not in our pocket, of course, but also not at our national threat."

□ □ □

## ॥ ସତର ॥

# ଜନତାର ରାୟ



ପ୍ରାୟ ବର୍ଷକ ତଳେ କଂଗ୍ରେସ ପାର୍ଲ୍ୟାମେଣ୍ଟାରି ଦଳର ନେତୃତ୍ୱ (ଯାହାର ଅର୍ଥ ପ୍ରଧାନମନ୍ତ୍ରୀ ଆସନରେ ଆସୀନ ହେବା ) ପାଇଁ ଏକମାତ୍ର ପ୍ରତିଦ୍ୱନ୍ଦ୍ୱୀ ଭାବେ ଦଣ୍ଡାୟମାନ ହୋଇଥିବା ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ୧୯୬୭ ମସିହା ମାର୍ଚ୍ଚ ୧୨ ତାରିଖ ଦିନ ପାର୍ଲ୍ୟାମେଣ୍ଟର ସେଇ କେନ୍ଦ୍ରୀୟ ଭବନଠାରେ ପାର୍ଲ୍ୟାମେଣ୍ଟାରି କଂଗ୍ରେସ ଦଳର ନେତୃତ୍ୱ ପାଇଁ ପ୍ରସ୍ତାବ କରିଥିଲେ ଶ୍ରୀମତୀ ଇନ୍ଦିରାଙ୍କ ନାମ । ସେ ପ୍ରସ୍ତାବକୁ ସମର୍ଥନ କରିଥିଲେ ଶ୍ରୀ ଜଗଜ୍ଜୀବନ ରାମ ।

୧୯୬୭ ମସିହାର ସାଧାରଣ ନିର୍ବାଚନ ପରେ ପରେ ପାର୍ଲ୍ୟାମେଣ୍ଟରେ ସଂଖ୍ୟାଗରିଷ୍ଠ କଂଗ୍ରେସ ଦଳର ନେତୃତ୍ୱ ଗ୍ରହଣ ପାଇଁ ପ୍ରାର୍ଥୀ ନିର୍ବାଚିତ ହେବାକୁ ମାତ୍ର ସତର ମିନିଟ ସମୟର ଆବଶ୍ୟକ ହୋଇଥିଲା ଓ ସେ ସଭାର ଅନ୍ୟାନ୍ୟ ସମସ୍ତ କାର୍ଯ୍ୟକ୍ରମ ମାତ୍ର ଚାଳିଶ ମିନିଟ ମଧ୍ୟରେ ଶେଷ ହୋଇଯାଇଥିଲା । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦ୍ୱିତୀୟଥର ଲାଗି କଂଗ୍ରେସ ପାର୍ଲ୍ୟାମେଣ୍ଟାରି ଦଳର ନେତ୍ରୀ ନିର୍ବାଚିତ ହୋଇଥିଲେ । ପ୍ରଥମଥର ଭଳି ସେଥର ନେତ୍ରୀ ନିର୍ବାଚିତ ନ ହୋଇ ସର୍ବସମ୍ମତି-କ୍ରମେ ସେ ନେତ୍ରୀ ଗୃହୀତ ହୋଇଥିଲେ ।

**ଚତୁର୍ଥ ସାଧାରଣ ନିର୍ବାଚନ :—**

ଦେଶର ଚତୁର୍ଥ ସାଧାରଣ ନିର୍ବାଚନ, ପୂର୍ବରୁ ଶ୍ରୀମତୀ ଗାନ୍ଧୀ ଏକ ଗଣତନ୍ତ୍ର ଶାସନର ପ୍ରଥା ଓ ପରମ୍ପରା ଅନୁଯାୟୀ ତାଙ୍କ ମନ୍ତ୍ରିମଣ୍ଡଳର ଇସ୍ତଫାପତ୍ର ଭାରତର ତତ୍କାଳୀନ ରାଷ୍ଟ୍ରପତି ଶ୍ରୀଯୁକ୍ତ ରାଧାକୃଷ୍ଣନ୍‌ଙ୍କୁ ପ୍ରଦାନ କରିଥିଲେ ଓ ରାଷ୍ଟ୍ରପତି ନୂତନ ମନ୍ତ୍ରିମଣ୍ଡଳ ଗଠିତ ହେବା ପର୍ଯ୍ୟନ୍ତ ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟ ନିର୍ବାହ କରିବା ଲାଗି ଶ୍ରୀମତୀ ଗାନ୍ଧୀଙ୍କୁ ଅନୁରୋଧ ଜଣାଇଥିଲେ । ସେ ଅନୁରୋଧ ମଧ୍ୟ ଗ୍ରହଣ କରିଥିଲେ ଶ୍ରୀମତୀ ଗାନ୍ଧୀ ।

ତେବେ ଦେଶର ସାଧାରଣ ନିର୍ବାଚନ ବେଳେ ଇନ୍ଦିରାଙ୍କ ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ପାର୍ଲ୍ୟାମେଣ୍ଟାରୀ ଦଳର ନେତ୍ରୀ ହିସାବରେ କଂଗ୍ରେସର ନିର୍ଦ୍ଧାରିତ ନୀତିଗୁଡ଼ିକୁ କାର୍ଯ୍ୟକାରୀ କରିବାର ଭାର ତାଙ୍କ ଉପରେ ହିଁ ନ୍ୟସ୍ତ ଥିଲା । ସେହି କାରଣରୁ ସେ କଂଗ୍ରେସ ଦଳର ନୀତିଗୁଡ଼ିକୁ ସାଧାରଣ ଜନତାଙ୍କ ନିକଟରେ ପହଞ୍ଚାଇବା ଲାଗି ଆନ୍ତରିକ ଚେଷ୍ଟା କରୁଥିଲେ ।

ଠିକ୍ ପିତାଜୀଙ୍କ ଭଳି ଦେଶର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏ ବୁଲୁଥିଲେ ଦଳ ପକ୍ଷରୁ ପ୍ରଚାର କରିବାପାଇଁ । ଉଡ଼ାଜାହାଜ, ଜେଟ ବିମାନଠାରୁ ଆରମ୍ଭ କରି ଟ୍ରେନ୍ ଓ କାର୍‌ରେ ମଧ୍ୟ ଅଧିକାଂଶ ସ୍ଥାନକୁ ଯିବାପାଇଁ ପଡ଼ୁଥିଲା । ଦିନରେ ଅଠର ଘଣ୍ଟା ପର୍ଯ୍ୟନ୍ତ ପରିଶ୍ରମ କରିବାକୁ ଓ ଆୟୋଜିତ ବିଭିନ୍ନ ସଭା-ସମିତିରେ ଭାଷଣ ଦେବାକୁ ସେ କୁଣ୍ଠାବୋଧ କରୁ ନ ଥିଲେ । ପୁନଶ୍ଚ ଏଣେ ପ୍ରଧାନମନ୍ତ୍ରୀ ଦାୟିତ୍ୱରେ ରହିଥିବା ଯୋଗୁଁ କାର୍ଯ୍ୟାଳୟ ପରିଚାଳନା ଯଥାରୀତି କରିବାକୁ ପଡ଼ୁଥିଲା ।

ନିର୍ବାଚନ ପ୍ରଚାରରେ ଯିବାବେଳେ ବା ନିର୍ବାଚନ ସଭାମାନଙ୍କରେ ଯୋଗ ଦେବାକୁ ଗଲେ ସେ ପ୍ରଧାନମନ୍ତ୍ରୀଙ୍କ ଦେହରକ୍ଷୀବାହିନୀକୁ ନ ନେଇ କେବଳ ଦୁଇଜଣ ଦେହରକ୍ଷୀଙ୍କ ଗହଣରେ ଯାଉଥିଲେ । ତେବେ ସେ ଯେଉଁ ସ୍ଥାନକୁ ଯାଉଥିଲେ, ସେଠାକାର ସ୍ଥାନୀୟ ପୋଲିସବାହିନୀ ତତ୍ପର ହୋଇଉଠିବା ସ୍ୱାଭାବିକ କଥା । ନିର୍ବାଚନ ପ୍ରଚାର ସଭାମାନଙ୍କରେ ବିରୋଧୀଦଳମାନଙ୍କ ତତ୍ପରତା ବୃଦ୍ଧି ପାଉଥିଲା, ଏପରି କି କଂଗ୍ରେସ ଦଳର ସଭାକାର୍ଯ୍ୟ ଭଣ୍ଡୁର କରିବା ଲାଗି ଅପଚେଷ୍ଟା କରିବାଠାରୁ ଆରମ୍ଭ କରି ସେମାନଙ୍କ ଉପରେ ଦୈହିକ ଆକ୍ରମଣ କରିବା ମଧ୍ୟ ସେମାନଙ୍କ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ଥିଲା ।

ରାଜସ୍ଥାନର ରାଜଧାନୀ ଜୟପୁର ସହର ଭାରତୀୟ ସ୍ୱତନ୍ତ୍ର ଦଳର କେନ୍ଦ୍ରସ୍ଥଳୀ ଭାବେ ପରିଚିତ ଥିଲା । ସେଠା ମହାରାଣୀ ଗାୟତ୍ରୀ ଦେବୀ ଜନସାଧାରଣଙ୍କ ଅତି ପ୍ରିୟ ହୋଇ ଉଠିଥିଲେ । ଏପରି କି ଜନସାଧାରଣ ତାହାଙ୍କୁ ସମ୍ମାନ କରିବା ସଙ୍ଗେ ସଙ୍ଗେ ଭକ୍ତି ମଧ୍ୟ କରୁଥିଲେ । ରାଜନୈତିକ କ୍ଷେତ୍ରରେ ସେଠାରେ ସ୍ୱତନ୍ତ୍ର ଦଳ କର୍ଣ୍ଣଧାର ଥିଲା ।

ଯେତେବେଳେ ଶ୍ରୀମତୀ ଇନ୍ଦିରା କଂଗ୍ରେସ ଦଳ ପାଇଁ ନିର୍ବାଚନ ପ୍ରଚାର କରିବାକୁ ଯାଇ ଜୟପୁର ତଥା ଆଖପାଖ ଅଞ୍ଚଳମାନଙ୍କରେ କଂଗ୍ରେସ ଦଳ ଦ୍ୱାରା ଆୟୋଜିତ ସଭାମାନଙ୍କରେ ଭାଷଣ ଦେବାକୁ ଆରମ୍ଭ କରୁଥିଲେ, ବିରୋଧୀଦଳମାନେ ଶ୍ରୀଘ୍ର ହଟ୍ଟଗୋଳ ଆରମ୍ଭ କରି ତାହାଙ୍କୁ କୁହାଇ ନ ଦେବା ଲାଗି ଉଦ୍ୟମ କରୁଥିଲେ । କିନ୍ତୁ ଦୃଢ଼ମନା ଇନ୍ଦିରା ସେଥିରେ ବିଚଳିତ ହେଉ ନ ଥିଲେ ।

ହଟ୍ଟଗୋଳ, ପାଟିତୁଣ୍ଡ ଭିତରେ ସେ ଦୃଢ଼ ଓ ଉଚ୍ଚ କଣ୍ଠରେ ଭାଷଣ ଦେଉଥିଲେ ଏବଂ ତାଙ୍କ ଦଳ ତଥା ଦଳର ବ୍ୟକ୍ତିବିଶେଷଙ୍କ ବିରୋଧରେ ବିଭିନ୍ନ କଟୁ ମନ୍ତବ୍ୟ ଓ ସମାଲୋଚନାର ସ୍ୱରକୁ ଭ୍ରୂକ୍ଷେପ କରୁ ନ ଥିଲେ । କୌଣସି ସମୟରେ କ୍ଷୁବ୍ଧ ନ ହୋଇ ବରଂ ଅରେ ଘୋଷଣା କରିଥିଲେ—"ବିରୋଧୀଦଳମାନେ ସେମାନଙ୍କ ନିର୍ବାଚନ ପ୍ରଚାର କପଣ କରୁଛନ୍ତି ତାର ହିସାବ ମୁଁ ରଖିଛି । ଆପଣମାନେ ପାଟିତୁଣ୍ଡ କରିବାରେ କୌଣସି ମୂଲ୍ୟ ନାହିଁ; କାରଣ ସେଥିରେ ମୁଁ ଭୟଭୀତ ହେବି ନାହିଁ କି ବକ୍ତୃତା ମଧ୍ୟ ବନ୍ଦ କରିବି ନାହିଁ । ମୁଁ ମୋର ବକ୍ତବ୍ୟ ଶେଷ କରିବା ପରେ ହିଁ ଆସନ ଗ୍ରହଣ କରିବି ।"†

ନିର୍ବାଚନ ଗସ୍ତକ୍ରମରେ ଯାଇ ଶ୍ରୀମତୀ ଇନ୍ଦିରା ରାଜସ୍ଥାନରେ ଦୁଇ ଦିନ ରହିଥିଲେ । ରାଜସ୍ଥାନର ମୋଟ ୨୬ଟି ଜିଲ୍ଲା ମଧ୍ୟରୁ ସାତଟି ଜିଲ୍ଲା ଗସ୍ତ କରି ପ୍ରତିଦିନ ପ୍ରାୟ ପାଞ୍ଚଟି ସାଧାରଣ ନିର୍ବାଚନ ସଭାରେ ଭାଷଣ ଦେବା ବ୍ୟତୀତ ରାସ୍ତାରେ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଉଥିବା ବେଳେ ତାଙ୍କୁ ସ୍ୱାଗତ କରିବା ଲାଗି ଉପସ୍ଥିତ ଜନତାଙ୍କୁ ଉତ୍ସାହିତ କରିବାପାଇଁ ଅନେକ ସ୍ଥାନରେ କମ୍ ସମୟ ପାଇଁ ହେଲେ ମଧ୍ୟ ଅଟକି ଯାଉଥିଲେ । ନିର୍ବାଚନରେ କଂଗ୍ରେସ ଦଳ ଅନ୍ୟାନ୍ୟ ରାଜନୈତିକ ଦଳ ଅପେକ୍ଷା ସଂଖ୍ୟାଗରିଷ୍ଠତା ହାସଲ କରିଥିଲା ।

ଅନେକ ରାଜ୍ୟରେ କଂଗ୍ରେସ ଦଳ ଲୋକପ୍ରିୟତା ହରାଇ ବସିଥିଲା ୧୯୬୭ ନିର୍ବାଚନ ବେଳକୁ । ତେଣୁ ପୁନଶ୍ଚ ସେ ହୃତଗୌରବକୁ ଫେରାଇ ଆଣିବା ଲାଗି ଓ ପୁଣି କଂଗ୍ରେସ ଅନୁଷ୍ଠାନକୁ ସମଗ୍ର ଦେଶର ଜନସାଧାରଣଙ୍କ ନିକଟରେ ଆଦୃତ କରାଇବା ଲାଗି ଆପ୍ରାଣ ଚେଷ୍ଟା କରିଥିଲେ । ତେଣୁ ଯେଉଁ ଯେଉଁ ରାଜ୍ୟରେ କଂଗ୍ରେସ ଅଧିକ ଅପ୍ରିୟ ହୋଇ ଉଠିଥିଲା, ବିଶେଷ କରି ସେହି ରାଜ୍ୟଗୁଡ଼ିକୁ ଇନ୍ଦିରା ନିର୍ବାଚନ ଗସ୍ତରେ ଯାଇଥିଲେ ଓ ବିଶେଷ ଗୁରୁତ୍ୱ ମଧ୍ୟ ଆରୋପ କରିଥିଲେ । ଅନ୍ୟାନ୍ୟ ରାଜ୍ୟଗୁଡ଼ିକ ମଧ୍ୟରେ ଓଡ଼ିଶା ବି ସେମିତି ଗୋଟିଏ ରାଜ୍ୟ ଥିଲା ।

ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ ୧୯୬୭ ଫେବୃୟାରୀ ଆଠ ତାରିଖରେ କଂଗ୍ରେସ ଦଳର ଏକ ନିର୍ବାଚନ ପ୍ରଚାର ସଭାରେ ଭାଷଣ ଦେବାକୁ ଯେତେବେଳେ ଇନ୍ଦିରା ଆରମ୍ଭ କରିଥିଲେ, ବିରୋଧୀଦଳ ଓ ସେମାନଙ୍କ ଦ୍ୱାରା ଆୟୋଜିତ ଅନ୍ୟାନ୍ୟ ଗୁଣ୍ଡା ଶ୍ରେଣୀସ୍ଥ ଲୋକଙ୍କ ମାଧ୍ୟମରେ "ଇନ୍ଦିରା ଫେରିଯାଅ" ଧ୍ୱନିମାନ ଦିଆଯାଇଥିଲା । ସେଥିରେ ବିଚଳିତ ନ ହୋଇ ଇନ୍ଦିରା ତାଙ୍କ ଭାଷଣ ଶେଷ କରି ନିଜ ଆସନ ଗ୍ରହଣ କରିପାରିବା ପରେ କଂଗ୍ରେସର ଅନ୍ୟାନ୍ୟ ନେତୃବୃନ୍ଦ ଭାଷଣ ଆରମ୍ଭ କରିଥିଲେ । ଦର୍ଶକମଣ୍ଡଳୀ ମଧ୍ୟରୁ କିଛି ଗୋଳମାଳ ଓ

---

† ଏମ୍. କେ. ଆଲେକ୍‌ଜାଣ୍ଡାରଙ୍କ ଇନ୍ଦିରା ଗାନ୍ଧୀ—ପୃ-୧୪୨ ।

କଂଗ୍ରେସବିରୋଧୀ ଧ୍ୱନି ଉଠିବା ପରେ ପରେ ଢେକାପଥର ବୃଷ୍ଟି ଆରମ୍ଭ ହୋଇଥିଲା ସଭାମଞ୍ଚ ଉପରକୁ । ସେ ଦୃଶ୍ୟ ଇନ୍ଦିରା ସହ୍ୟ କରିପାରି ନ ଥିଲେ । ସେ ତାକବାଜି ଯନ୍ତ୍ର ନିକଟରେ ଛିଡ଼ା ହୋଇ ବିରୋଧୀଦଳମାନଙ୍କ ସେପ୍ରକାର ମିଥ୍ୟାଚାରମ୍ଭକ କାର୍ଯ୍ୟକଳାପର କଡ଼ା ସମାଲୋଚନା କରିଥିଲେ ଓ ସେଠାରେ ସମବେତ ଲକ୍ଷାଧିକ ଜନତାଙ୍କୁ କହିଥିଲେ ଯେ ଯେଉଁମାନେ ଭାରତର ଐତିହ୍ୟସମ୍ପନ୍ନ ଶାନ୍ତି ଓ ଶୃଙ୍ଖଳାର ପକ୍ଷପାତୀ ନୁହନ୍ତି, ଯେଉଁମାନେ ହିଂସାତ୍ମକ ପଥକୁ ସେମାନଙ୍କର ନୀତି ବୋଲି ଗ୍ରହଣ କରିଛନ୍ତି, ସାଧାରଣ ସୌଜନ୍ୟତା ଯାହାଙ୍କ ନିକଟରେ ନାହିଁ, ସେଇମାନଙ୍କ ସପକ୍ଷରେ ଜନସାଧାରଣ ନିର୍ବାଚନରେ ରାୟ ଦେବା ଉଚିତ ହେବ ନାହିଁ । ସେତେବେଳକୁ ଦର୍ଶକମଣ୍ଡଳୀର ଗୋଟିଏ କୋଣରୁ ଆସୁଥିବା ଢେକା-ପଥର ମଧ୍ୟରୁ ଗୋଟିଏ ଯାଇ ବାଜିଥିଲା ଇନ୍ଦିରାଙ୍କ ନାସିକା ଉପରେ । ଫଳ ସ୍ୱରୂପ ତାଙ୍କର ଡାହାଣପଟ ନାକପୁଡ଼ା ଫାଟି ଯାଇଥିଲା ଓ ଝରଝର ରକ୍ତ ନିଃସୃତ ହୋଇଥିଲା । ତଥାପି ମଧ୍ୟ ଅବିଚଳିତ ଇନ୍ଦିରା ନାକରୁ ରକ୍ତ ପୋଛି ଭାଷଣ ଦେଇ କହିଥିଲେ "ମୁଁ କଂଗ୍ରେସ ଦଳର ବିଜୟ ପାଇଁ ଚିନ୍ତିତ ନୁହେଁ । କେବଳ ଆପଣ-ମାନଙ୍କ ଭବିଷ୍ୟତ୍ ତଥା ଏ ଦେଶର ଗଣତନ୍ତ୍ରର ଭବିଷ୍ୟତ୍ ସମ୍ପର୍କରେ ଚିନ୍ତିତ ।"

ତାପରେ ତାହାଙ୍କୁ ରାଜ୍ୟପାଳଙ୍କ ବାସଭବନକୁ ନିଆଯାଇଥିଲା ଓ ସେଠାରେ ପ୍ରାଥମିକ ଚିକିତ୍ସା କରାଯାଇଥିଲା । ଦିଲ୍ଲୀରେ କିଛି ଦିନ ପାଇଁ ବିଶ୍ରାମ ନେବାକୁ ଡାକ୍ତରମାନେ ପରାମର୍ଶ ଦେଇଥିଲେ । କିନ୍ତୁ ଆଗାମୀ ନିର୍ବାଚନ ପ୍ରସ୍ତୁତି ତାଙ୍କ ମାନସିକ ସ୍ଥିରତା ଆଣି ଦେଇ ପାରି ନ ଥିଲା ହସ୍‌ପିଟାଲରେ । ସେଥିପାଇଁ ଓ୍ୱିଲିଙ୍ଗ୍‌ଡନ୍ ହାସ୍‌ପାତାଲରେ ମାତ୍ର ଦୁଇ ଦିନ ବିଶ୍ରାମ ନେଇ ଓ ଚିକିତ୍ସିତ ହୋଇ ପୁଣି ଲମ୍ଫ ଦେଇଥିଲେ ନିର୍ବାଚନ ଯୁଦ୍ଧକ୍ଷେତ୍ରରେ ।

୧୯୬୭ ଫେବୃୟାରୀ ୧୫ ତାରିଖଠାରୁ ୨୧ ତାରିଖ ମଧ୍ୟରେ ଭାରତର ଚତୁର୍ଥ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇଯାଇଥିଲା । ସେ ନିର୍ବାଚନରେ କଂଗ୍ରେସ ଦଳ ଲୋକସଭାରେ ତାର ପୂର୍ବ ସ୍ଥିତି ବଜାୟ ରଖିପାରି ନ ଥିଲା । ୧୯୬୨ ନିର୍ବାଚନରେ ୩୬୧ ସ୍ଥାନ କଂଗ୍ରେସ ଦଳ ଲୋକସଭାରେ ପାଇଥିବା ବେଳେ ୧୯୬୭ରେ ପାଇଥିଲା ମାତ୍ର ୨୮୧ । ସେହିପରି ଦେଶରେ ଛଅଟି ରାଜ୍ୟର ବିଧାନ-ସଭାରେ ସମ୍ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ହାସଲ କରି ମଧ୍ୟ କଂଗ୍ରେସ ଦଳ ସରକାର ଗଠନ କରିପାରି ନ ଥିଲା । ସେ ରାଜ୍ୟଗୁଡ଼ିକ ଥିଲେ—ପଞ୍ଜାବ, ବିହାର, ପଶ୍ଚିମବଙ୍ଗ, ଓଡ଼ିଶା, କେରଳ ଓ ମାଡ୍ରାଜ । ସେଗୁଡ଼ିକ ବ୍ୟତୀତ ରାଜସ୍ଥାନ, ହରିଆନା ଓ ଉତ୍ତରପ୍ରଦେଶରେ କଂଗ୍ରେସ ଦଳ ଖୁବ୍ କମ୍ ଅଧିକ ସଂଖ୍ୟାରେ ବିଜୟ ହାସଲ କରି ସଂଖ୍ୟାଗରିଷ୍ଠତା ହାସଲ କରିଥିଲେ ।

ସେ ନିଜେ ରାଏବରେଲି ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ ।

କଂଗ୍ରେସ ଦଳର ଅନ୍ତର୍ବିବାଦ ଦଳର ଲୋକପ୍ରିୟତା ହ୍ରାସ ଇବା ଲାଗି ଜନସାଧାରଣଙ୍କୁ ସୁଯୋଗ ଦେଇଥିଲା । ତାର ପରିଣାମ ସ୍ୱରୂପ କଂଗ୍ରେସର ବହୁ ନେତାମାନଙ୍କ ମଧ୍ୟରୁ ପାଟିଲ, ଅତୁଲ୍ୟ ଘୋଷ, କାମରାଜଙ୍କ ସମେତ ଅନ୍ୟାନ୍ୟ ଅନେକ ନେତୃସ୍ଥାନୀୟ ବ୍ୟକ୍ତି ନିର୍ବାଚନରେ ପରାଜୟ ଲାଭ କରିଥିଲେ । ସେତେବେଳେ ପ୍ରକୃତରେ କଂଗ୍ରେସ ଦଳ ମଧ୍ୟରେ ବିଭେଦ ସର୍ବସାଧାରଣରେ ସ୍ପଷ୍ଟ ବିକାଶ ଲାଭ କରୁଥିଲା । ଦଳ ମଧ୍ୟରେ ରହିଥିଲେ ମଧ୍ୟ ସେମାନେ ଇନ୍ଦିରାଙ୍କୁ ସମର୍ଥନ କରୁ ନ ଥିଲେ । ତେବେ ନିର୍ବାଚନ ଫଳାଫଳରୁ ସ୍ପଷ୍ଟ ଅନୁମାନ କରାଯାଉଥିଲା ଯେ ଜନସାଧାରଣଙ୍କ ରାୟ ବିଶେଷଭାବେ କଂଗ୍ରେସ ଦଳ ସପକ୍ଷରେ ନ ଥିଲା । ତାର କାରଣ ଥିଲା, ଅତି ଅଳ୍ପ ସଂଖ୍ୟାରେ ଅଧିକ ସ୍ଥାନ ବିଜୟ ହାସଲ କରି ଲୋକସଭାରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲା କଂଗ୍ରେସ । କୌଣସି କାରଣରୁ ଯଦି ହଠାତ୍ କେତେବେଳେ କଂଗ୍ରେସର କେତେ ଜଣ ସଦସ୍ୟ ଦଳ ତ୍ୟାଗ କରି ଅନ୍ୟ ବିରୋଧୀଦଳମାନଙ୍କ ସହିତ ହାତ ମିଳାନ୍ତି, ତା ହେଲେ କଂଗ୍ରେସ ମନ୍ତ୍ରିମଣ୍ଡଳର ପତନ ଯେ ସୁନିଶ୍ଚିତ, ସେଥିରେ ସନ୍ଦେହର ଅବକାଶ ନ ଥିଲା ।

ଭାରତୀୟ ଗଣତନ୍ତ୍ରର ଏକ ନିକୃଷ୍ଟତମ ପରମ୍ପରା ହେଲା ରାଜନୈତିକ ଦଳବଦଳ, ବିଶେଷ କରି ଜନସାଧାରଣଙ୍କ ଦ୍ୱାରା ନିର୍ବାଚନରେ ଜୟଲାଭ କରିଥିବା ସଭ୍ୟମାନଙ୍କର । ଦଳବଦଳ ଯଦି କୌଣସି ମହତ୍ତ୍ୱ ଉଦ୍ଦେଶ୍ୟ ନେଇ କରାଯାଏ, ତାହେଲେ ତାହା ସ୍ୱାଗତଯୋଗ୍ୟ । କିନ୍ତୁ ଭାରତରେ ଯେତେ ଯେତେ ଦଳବଦଳର ସମ୍ବାଦ ପ୍ରକାଶ ପାଉଛି, ସେଥିମଧ୍ୟରୁ ଅଧିକାଂଶ କେବଳ ନିଜ ସ୍ୱାର୍ଥ ହାସଲ ପାଇଁ । ତାହା କୌଣସି ସୁସ୍ଥ ମସ୍ତିଷ୍କର ପରିଚାୟକ ନ ହେଲେ ମଧ୍ୟ ରାଜନୈତିକ ନେତୃବୃନ୍ଦଙ୍କଠାରୁ ଆରମ୍ଭ କରି ନିର୍ବାଚିତ ସଦସ୍ୟ ଓ ସାଧାରଣ କର୍ମୀମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ନିକଟରେ ଦଳବଦଳ କରିବା ଯେପରି ଏକ ଖେଳଣା ସାମଗ୍ରୀ ହୋଇପଡ଼ିଛି ।

## ଦ୍ୱିତୀୟଥର ପାଇଁ ନେତୃତ୍ୱ :—

ପାର୍ଲ୍ୟାମେଣ୍ଟାରୀ ଦଳର ନେତା ନିର୍ବାଚନ ନିର୍ଦ୍ୱନ୍ଦ୍ୱରେ ହୋଇସାରିବା ପରେ ମାର୍ଚ୍ଚ ୧୨ ତାରିଖରେ ରାଷ୍ଟ୍ରପତି ଡଃ ରାଧାକୃଷ୍ଣନ୍ ଶ୍ରୀମତୀ ଗାନ୍ଧୀଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବା ଲାଗି ନିମନ୍ତ୍ରଣ ଜଣାଇଥିଲେ । ତା ପରଦିନ ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ରୂପେ ଉପପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ମୋରାରଜୀ ଦେଶାଇଙ୍କ ସମେତ ଆଉ ଅଠେଇଶ ଜଣଙ୍କୁ ନେଇ ଶପଥ ଗ୍ରହଣ କରିଥିଲେ ରାଷ୍ଟ୍ରପତିଙ୍କ ଅଶୋକ ଭବନଠାରେ । ଶ୍ରୀମତୀ ଗାନ୍ଧୀଙ୍କ ସେଇ ମନ୍ତ୍ରିମଣ୍ଡଳରେ ଥିଲେ ମୋରାରଜୀ ଦେଶାଇ, ଓ୍ୱାଇ. ବି. ଚୌହାନ, ସ୍ୱରଣ ସିଂ, ଜଗଜ୍ଜୀବନ ରାମ, ଚଗଲା, ଅଶୋକ

ମେହେଟ୍ଟା, ଫକରୁଦ୍ଦିନ ଅଲି ଅହମ୍ମଦ, ସତ୍ୟନାରାୟଣ ସିଂହ, ଦିନେଶ ସିଂହ, ପି. ଏମ୍. ସୁବାରାୟ, ଡଃ ତ୍ରିଗୁଣା ସେନ୍, ପି. ଗୋବିନ୍ଦ ମେନନ, ଡଃ କରଣ ସିଂହ, ଡଃ ଭି. କେ. ଆର. ଭି. ରାଓ, କେ. କେ. ସାହା, ଜଗ୍‌ଜୀବନରାମ ହାଥୀ, ରାମସୁଭଗ ସିଂହ ଓ ଏମ୍. ଚନ୍ନାରେଡ୍ଡି । ସେହି ଊଣେଇଶ ଜଣଙ୍କ ବ୍ୟତୀତ ଆଉ ଚଉଦ ଜଣ ରାଷ୍ଟ୍ରମନ୍ତ୍ରୀ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଥିଲେ । ସେମାନେ ହେଲେ—କେ. ଏଲ. ରାଓ, ଡଃ ଚନ୍ଦ୍ରଶେଖର, ଜଗନ୍ନାଥ ରାଓ, କେ. କେ. ପନ୍ଥ, ଭି. ସି. ଶୁକ୍ଳ, ବି. ଆର. ଭଗତ୍‌, ଆନାସାହେବ ସିନ୍ଦେ, କେ. ରଘୁରାମେୟା, ଫୁଲରେଣୁ ଗୁହ, ରଘୁନାଥ ରେଡ୍ଡି, ପି. ଭି. ସି. ସେଠୀ, ପ୍ରଫେସର ସେର ସିଂହ, ପରିମଳ ଘୋଷ ଓ ଏଲ. ଏନ. ମିଶ୍ର ।

ଭାରତର ଷୋହଳଟି ରାଜ୍ୟ ମଧ୍ୟରୁ ଆଠଟି ରାଜ୍ୟରେ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ଏଣେ ପାର୍ଲ୍ୟାମେଣ୍ଟରେ ମଧ୍ୟ କଂଗ୍ରେସ ଦଳ ଯଦିଓ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ହାସଲ କରିଥିଲା, ତଥାପି ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱ ଦୋଳାୟମାନ ଅବସ୍ଥାରେ ହିଁ ଥିଲା । ସେପରି ପରିସ୍ଥିତିରେ ବିରୋଧୀଦଳଗୁଡ଼ିକ ସକ୍ରିୟ ହୋଇଉଠିବା ଅତି ସ୍ୱାଭାବିକ କଥା । ଯେତେବେଳେ ରାଷ୍ଟ୍ରପତି ନିର୍ବାଚନ ବେଳ ଆସିଥିଲା ସମସ୍ତ ବିରୋଧୀଦଳ ଏକାଠି ହୋଇ କଂଗ୍ରେସପ୍ରାର୍ଥୀଙ୍କ ବିରୁଦ୍ଧରେ ଭାରତର ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି ସୁବାରାଓଙ୍କୁ ପ୍ରତିଦ୍ୱନ୍ଦ୍ୱିତା କରାଇବା ଲାଗି ସ୍ଥିର କରିଥିଲେ । ତତ୍‌କାଳୀନ ରାଷ୍ଟ୍ରପତି ଶ୍ରୀଯୁକ୍ତ ରାଧାକୃଷ୍ଣନ୍‌ଙ୍କ ପ୍ରତି ଶ୍ରୀମତୀ ଇନ୍ଦିରାଙ୍କର ଭକ୍ତି ଥିଲେ ମଧ୍ୟ ପୁନର୍ବାର ରାଷ୍ଟ୍ରପତି ପଦ ପାଇଁ ପ୍ରସ୍ତାବ କରିବା ସପକ୍ଷରେ ସେ ନ ଥିଲେ । ତେଣୁ ସେ ତତ୍‌କାଳୀନ ଉପରାଷ୍ଟ୍ରପତି ଡଃ ଜାକିର ହୁସେନଙ୍କୁ ନିଜର ସମର୍ଥନ ଜଣାଇଥିଲେ । ପରିଶେଷରେ ଭାରତର ରାଷ୍ଟ୍ରପତି ପଦ ପାଇଁ କଂଗ୍ରେସ ଦଳ ପକ୍ଷରୁ ଡଃ ଜାକିର ହୁସେନ୍ ଓ ବିରୋଧୀଦଳ-ମାନଙ୍କ ପ୍ରାର୍ଥୀ ରୂପେ କୋକା ସୁବାରାଓଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା ଏବଂ କଂଗ୍ରେସଦଳର ପ୍ରାର୍ଥୀ ଜାକିର ହୁସେନ୍ ବିଜୟଲାଭ କରିଥିଲେ । ତାଙ୍କ ମନୋନୀତ ପ୍ରାର୍ଥୀ ନିର୍ବାଚନରେ ବିଜୟ ହାସଲ କରିଥିବା ଯୋଗୁଁ ଶ୍ରୀମତୀ ଗାନ୍ଧୀ କେବଳ ଆଶ୍ୱସ୍ତ ଲାଭ କରି ନ ଥିଲେ, ବରଂ ତାହାଙ୍କ ପ୍ରତି କଂଗ୍ରେସ ଦଳର ସଦସ୍ୟମାନଙ୍କ ସମେତ ଜନସାଧାରଣଙ୍କ ସମର୍ଥନ ମଧ୍ୟ ବୃଦ୍ଧି ପାଇଥିଲା ।

ଇନ୍ଦିରାଙ୍କ ନେତୃତ୍ୱକୁ ଜନସାଧାରଣଙ୍କ ସମର୍ଥନ ସମ୍ପର୍କରେ କେ. ଏ. ଆବାସ୍‌ଙ୍କ ସହିତ ସାକ୍ଷାତ୍କାର ବେଳେ ଏକ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶ୍ରୀମତୀ ଗାନ୍ଧୀ ପ୍ରକାଶ କରିଥିଲେ—"Perhaps it ensures some kind of continuity—continuity of policy and also perhaps

continuity of personality."† ଇନ୍ଦିରା ଯେଉଁ ଆଦର୍ଶ, ଯେଉଁ ଚିନ୍ତାଧାରା ଏବଂ ଯେଉଁପ୍ରକାର କାର୍ଯ୍ୟାବଳୀର ପଥାନୁସରଣ କରୁଥିଲେ, ତାହା ଥିଲା ପଣ୍ଡିତ ନେହେରୁଙ୍କ ପ୍ରଦର୍ଶିତ ମାର୍ଗ, ଅସମାପ୍ତ କାର୍ଯ୍ୟାବଳୀ ଏବଂ ଭାରତୀୟ ଜନତା ସେହି କାର୍ଯ୍ୟପନ୍ଥାକୁ ହିଁ ସମର୍ଥନ କରୁଥିଲେ । ପ୍ରଧାନମନ୍ତ୍ରୀ ରୂପେ ପୁନର୍ବାର ଇନ୍ଦିରାଙ୍କ ନିର୍ବାଚନ ଥିଲା ତାର ଜ୍ୱଳନ୍ତ ପ୍ରମାଣ ।

କଂଗ୍ରେସ କାର୍ଯ୍ୟକ୍ରମଗୁଡ଼ିକୁ କେବଳ ସ୍ଲୋଗାନରେ ହିଁ ଆବଦ୍ଧ ନ କରି ସେ ଚାହିଁଥିଲେ ପଣ୍ଡିତ ନେହେରୁଙ୍କ ଭଳି ବାସ୍ତବ କ୍ଷେତ୍ରରେ ସେଇ ନୀତିଗୁଡ଼ିକୁ ପ୍ରୟୋଗ କରିବେ । ସେଇଥିଯୋଗୁଁ ଅନେକଙ୍କ ନିକଟରେ ସେ ଅପ୍ରିୟ ହୋଇ ଉଠିଥିଲେ ମଧ୍ୟ ସେଥିପାଇଁ କୌଣସି ଚିନ୍ତା କରି ନ ଥିଲେ । କେବଳ ଲୋକପ୍ରିୟତା ହାସଲ କରିବାଲାଗି କଂଗ୍ରେସର ବିଭିନ୍ନ ବୈଠକରେ ଲୋକଦେଖାଣିଆ ଭାବେ ବିଭିନ୍ନ ପ୍ରସ୍ତାବ ଗ୍ରହଣ କରିବାପାଇଁ କଂଗ୍ରେସର ଅନେକ ସଭ୍ୟ ତତ୍ପର ହୋଇ ଉଠୁଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ସେଗୁଡ଼ିକୁ ପ୍ରୟୋଗ କଲାବେଳେ ସେମାନେ ପଛଘୁଞ୍ଚା ଦେବା ନିମନ୍ତେ କୁଣ୍ଠାବୋଧ କରୁ ନ ଥିଲେ । ଅନେକ କ୍ଷେତ୍ରରେ କଂଗ୍ରେସ ଦ୍ୱାରା ଗୃହୀତ ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ଗଲାବେଳେ ବିଭିନ୍ନ ପ୍ରତିବନ୍ଧକମାନ ମଧ୍ୟ ସୃଷ୍ଟି କରିଥିଲେ; କାରଣ ସେମାନଙ୍କର କୌଣସି ନା କୌଣସି ସ୍ୱାର୍ଥ ସେଥିରେ ଜଡ଼ିତ ରହିଥିଲା । କିନ୍ତୁ ଇନ୍ଦିରା ଥିଲେ ସେମାନଙ୍କ ମଧ୍ୟରେ ବ୍ୟତିକ୍ରମ । ଅନେକଙ୍କ ନିକଟରେ ଅପ୍ରିୟ ହେଲେ ମଧ୍ୟ ଏବଂ ନିର୍ଦ୍ଦିଷ୍ଟ ପ୍ରତିବନ୍ଧକ ଥିବା ଜାଣି ସୁଦ୍ଧା କଂଗ୍ରେସ ଦଳର ଗୃହୀତ ପ୍ରସ୍ତାବଗୁଡ଼ିକୁ ସେ କାର୍ଯ୍ୟକାରୀ କରିବାକୁ ଦୃଢ଼ସଙ୍କଳ୍ପ କରିଥିଲେ ।

**ଏକ ସମାଜବାଦୀ ପଦକ୍ଷେପ :—**

ରୁଷ ଭ୍ରମଣରୁ ଫେରିବା ପରେ ହିଁ ଇନ୍ଦିରା ଗାନ୍ଧୀ ସମାଜବାଦୀ ଚିନ୍ତାଧାରା ପ୍ରତି ଅନୁରକ୍ତ ହୋଇ ପଡ଼ିଥିଲେ । ତେଣୁ ତା ପରଠାରୁ ଅନେକ ସ୍ଥାନରେ ଭାଷଣ ପ୍ରସଙ୍ଗରେ ଏବଂ ତାଙ୍କ କାର୍ଯ୍ୟକଳାପରେ ମଧ୍ୟ ସେପ୍ରକାର ସାମାଜିକ ବ୍ୟବସ୍ଥା ପ୍ରତି ଆସ୍ଥା ସ୍ଥାପନ କରିଥିବା ସ୍ପଷ୍ଟ ଅନୁମେୟ । ପାକିସ୍ଥାନ ସହ ଐତିହାସିକ ତିନିଦିନିଆ ଯୁଦ୍ଧ ପରେ ପରେ ସେ ଭାଷଣମାନଙ୍କରେ ଗୋଟିଏ କଥା ଉଲ୍ଲେଖ କରୁଥିଲେ ଯେ—"ପାକିସ୍ଥାନ ସହ ଯୁଦ୍ଧକରି ବିଜୟ ଲାଭ କରିବା ମୂଳରେ ଯେଉଁ ଏକତା ଭାରତୀୟ ଜନଗଣ ପ୍ରଦର୍ଶନ କରିଥିଲେ, ଦେଶରୁ ଦାରିଦ୍ର୍ୟ ଦୂର କରିବାପାଇଁ ସେହିଭଳି ଏକତା ହିଁ ଆବଶ୍ୟକ । ଦେଶର ସମସ୍ତେ ଐକ୍ୟବଦ୍ଧ ନ ହେଲେ ଦାରିଦ୍ର୍ୟ ଦୂର କରାଯାଇ ପାରିବ ନାହିଁ ।" ମାର୍ଚ୍ଚ ୧୯୭୧ର ସାଧାରଣ

† K. A. Abbas :—Return of the red rose, P-160.

ନିର୍ବାଚନ ବେଳେ ସମାଜବାଦ ଉପରେ ବିଶ୍ୱାସ କରୁଥିବା କଂଗ୍ରେସ ଦଳ ଏହାକୁ 'ସମାଜବାଦୀ ବିପ୍ଳବ'ର ଆଖ୍ୟା ଦେଇ ନିର୍ବାଚନ ଲଢ଼ିଥିଲେ ଏବଂ ସେ ବିପ୍ଳବକୁ ସଫଳ କରାଇବା ଲାଗି ଅହିଂସା ଓ ଗଣତାନ୍ତ୍ରିକ ପନ୍ଥାରେ ସାମାଜିକ ଓ ଅର୍ଥନୈତିକ ଉନ୍ନତି ଲାଗି ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ। ସେଗୁଡ଼ିକ ମଧ୍ୟରେ ଥିଲା ନୂତନ କର୍ମସଂସ୍ଥାନର ପନ୍ଥା ବାହାର କରି ଦେଶର ବେକାରମାନଙ୍କ ସଂଖ୍ୟା ହ୍ରାସ କରାଇବା, ଅର୍ଥନୈତିକ କ୍ଷେତ୍ରରେ ଦେଶକୁ ସ୍ୱାବଲମ୍ବନଶୀଳ କରାଇବା ଇତ୍ୟାଦି। ବ୍ୟକ୍ତିଗତ ସମ୍ପତ୍ତିର ସୀମା ନିର୍ଦ୍ଧାରଣ କରିବା ସଙ୍ଗେ ସଙ୍ଗେ ଦେଶରୁ କିପରି ଦାରିଦ୍ର୍ୟ ଦୂର କରାଯାଇ ପାରିବ, ତାହା ଥିଲା କଂଗ୍ରେସ ଦଳର ପରମ ଉଦ୍ଦେଶ୍ୟ।

ଗୋଟିଏ ପ୍ରବାଦ ଅଛି, "ପ୍ରେମ ଓ କ୍ଷୁଧା ହିଁ ପୃଥିବୀକୁ ଶାସନ କରେ।" ପ୍ରାୟ ପ୍ରତ୍ୟେକ ଦେଶରେ ସମସ୍ତ ଅନର୍ଥର ମୂଳ କାରଣ ଦାରିଦ୍ର୍ୟ। ତାହା ମଣିଷର ଚିନ୍ତାଶକ୍ତିକୁ ବିଭ୍ରାନ୍ତ କରିବା ସଙ୍ଗେ ସଙ୍ଗେ ଦେଶର ସାମାଜିକ ବ୍ୟବସ୍ଥାକୁ ମଧ୍ୟ ଦୁର୍ବଳ କରି ଦେଇଥାଏ। ଦେଶରୁ ଦାରିଦ୍ର୍ୟ ଦୂର ନ ହେବା ପର୍ଯ୍ୟନ୍ତ କୌଣସି ଦେଶର ଜନଗଣଙ୍କ ଚିନ୍ତାଶକ୍ତିରେ ଉନ୍ନତି ଦେଖା ଦେଇପାରିବ ନାହିଁ। ସମାଜ ପ୍ରତି, ଦେଶ ପ୍ରତି ଅନୁରାଗ ଦୁର୍ବଳ ହୋଇପଡ଼ିବ, ଶକ୍ତିହୀନ ହୋଇପଡ଼ିବ। କାରଣ ସେମାନଙ୍କ ପ୍ରଧାନ ଦୁଶ୍ଚିନ୍ତା ଥିବ ନିଜ ନିଜର ଭରଣ-ପୋଷଣ।

ପ୍ରକୃତରେ ଗୋଟିଏ ଦେଶରେ ପ୍ରାୟ ଦୁଇ ଶ୍ରେଣୀର ଲୋକ ଥାଆନ୍ତି। କାର୍ଲ ମାର୍କସଙ୍କ ଭାଷାରେ ସେମାନେ ହେଲେ—ଥିଲାବାଲା ଓ ନ ଥିଲାବାଲା। ନ ଥିଲାବାଲାଙ୍କ ଧନରେ ଥିଲାବାଲାମାନେ ସେମାନଙ୍କ ବ୍ୟକ୍ତିଗତ ସମ୍ପତ୍ତି ବୃଦ୍ଧି କରିଥାନ୍ତି। ତେଣୁ ଦେଶରେ ସବୁ ସମୟରେ ସେଇ ଦୁଇ ଶ୍ରେଣୀର ଲୋକଙ୍କ ସଂଖ୍ୟା ସମାନୁପାତରେ ବୃଦ୍ଧି ଘଟିଥାଏ ଓ ନ ଥିଲାବାଲା ସବୁବେଳେ ନିର୍ଯ୍ୟାତିତ ହୋଇଥାନ୍ତି। ସେ ଅର୍ଥନୈତିକ ବୈଷମ୍ୟର କାରଣ ତଥା ନିରାକରଣ ସମ୍ପର୍କରେ କାର୍ଲ ମାର୍କସ୍‌ଙ୍କ ବିଶଦ ବ୍ୟାଖ୍ୟା 'ଦାସ କେପିଟାଲ' ପୃଥିବୀପ୍ରସିଦ୍ଧ। ଅତ୍ୟନ୍ତ ଆଶାବାଦୀ କାର୍ଲ ମାର୍କସ ପୃଥିବୀରେ ପ୍ରଥମଥର ଲାଗି ବଜ୍ରନିର୍ଘୋଷ କଣ୍ଠରେ ଘୋଷଣା କରିଥିଲେ ଯେ ସେ ପ୍ରକାର ଅର୍ଥନୈତିକ ବୈଷମ୍ୟ କୌଣସି ରାଷ୍ଟ୍ରରେ ଚିରଦିନ ଲାଗି ସ୍ଥାୟୀଭାବେ ରହିବ ନାହିଁ। ଦିନେ ନା ଦିନେ ବିପ୍ଳବ ହେବ ଏବଂ ଧନ ଅପହରଣକାରୀମାନେ ଅପହୃତ ହେବେ।* ତାଙ୍କ ନିଜ ଭାଷାରେ—

---

* କାର୍ଲ ମାର୍କସ ସମାଜର ପୁଞ୍ଜିପତିମାନେ, ଯେଉଁମାନେ କେବଳ ନିର୍ଦ୍ଧନମାନଙ୍କ ଧନରେ ସେମାନଙ୍କ ସମ୍ପତ୍ତି ବଢ଼ାଇଥାଆନ୍ତି, ସେମାନଙ୍କୁ ଅପହରଣକାରୀ (Expropriators) ବୋଲି ଅଭିହିତ କରିଛନ୍ତି।

"Expropriators will be Expropriated." ସେ ନିବନ୍ଧର ପ୍ରଭାବ ତତ୍କାଳୀନ ପୃଥିବୀରେ ଏକ ଉତ୍ତଳର ଶିହରଣ ସୃଷ୍ଟି କରିଥିଲା ଏବଂ ସେହି ଚିନ୍ତାଧାରାର ଅନୁଶୀଳନରେ ରୁଷ, ଚୀନ ପ୍ରଭୃତି ଦେଶମାନେ ସେମାନଙ୍କ ରାଷ୍ଟ୍ରରୁ ଦାରିଦ୍ର୍ୟ ତଥା ଅର୍ଥନୈତିକ ବୈଷମ୍ୟ ଦୂର କରିପାରିଛନ୍ତି ବୋଲି ପୃଥିବୀ ସମକ୍ଷରେ ସମାଜବାଦୀ ରାଷ୍ଟ୍ର ରୂପେ ପରିଚିତ । ଅନ୍ୟ ଭାଷାରେ କହିବାକୁ ଗଲେ, ଯଦି କୌଣସି ସମ୍ପତ୍ତି ବ୍ୟକ୍ତିଗତ ନ ହୋଇ ରାଷ୍ଟ୍ରର ହୋଇଥାଏ ଏବଂ ପ୍ରତ୍ୟେକେ ତାହାର ଆବଶ୍ୟକତା ଅନୁଯାୟୀ ବ୍ୟବହାର କରିଥାନ୍ତି, ତାହାକୁ 'ସମାଜବାଦ' କୁହାଯାଇ-ଥାଏ । ସେପରି ଶାସନାଧୀନ ରାଷ୍ଟ୍ରର ଲୋକେ ନିଜ ସାମର୍ଥ୍ୟ ଅନୁଯାୟୀ କାର୍ଯ୍ୟ କରିଥାନ୍ତି । ସେ ପ୍ରକାର ଦେଶରେ ଜନଗଣଙ୍କ ଦେଶ ପ୍ରୀତି ଅତ୍ୟନ୍ତ ବଳିଷ୍ଠ ହେବା ଯୋଗୁଁ ଏବଂ ଜନତା ଓ ରାଷ୍ଟ୍ର ମଧ୍ୟରେ ସମ୍ପର୍କ ଦୃଢ଼ ହୋଇପାରିଥିବା ଯୋଗୁଁ ଦେଶରୁ ଦାରିଦ୍ର୍ୟ ଶୀଘ୍ର ଦୂରୀଭୂତ ହୋଇ ପାରିଥାଏ ।

ଭାରତରେ ଗଣତାନ୍ତ୍ରିକ ଉପାୟରେ ସମାଜବାଦ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଇବା ଥିଲା ଇନ୍ଦିରାଙ୍କ ଆନ୍ତରିକ ଅଭିଳାଷ । ସେଇଥିଲାଗି ସେ ଯେଉଁ ଯେଉଁ ପଦକ୍ଷେପମାନ ଗ୍ରହଣ କରିଥିଲେ, ତନ୍ମଧ୍ୟରୁ ଗୋଟିଏ ଥିଲା ଦେଶର ଚଉଦଟି ବଡ଼ ବଡ଼ ବ୍ୟାଙ୍କର ଜାତୀୟକରଣ । ଦେଶର ଅର୍ଥନୈତିକ ପ୍ରଗତି ହାସଲ କରିବାକୁ ଓ ଦାରିଦ୍ର୍ୟ ଦୂର କରିବାପାଇଁ ହେଲେ ଦେଶର ପୁଞ୍ଜି ଗଠନରେ ସହାୟକ ହେଉଥିବା ଦେଶର ଏକମାତ୍ର ବିରାଟ ଅନୁଷ୍ଠାନ ବ୍ୟାଙ୍କଗୁଡ଼ିକୁ ଜାତୀୟକରଣ କରାଯିବା ଯେ ନିତାନ୍ତ ଆବଶ୍ୟକ, ସେ କଥା ଅନୁଭବ କରିଥିଲେ ଶ୍ରୀମତୀ ଗାନ୍ଧୀ ଠିକ୍ ପଣ୍ଡିତ ନେହେରୁଙ୍କ ଭଳି ।

ଭାରତ ସ୍ୱାଧୀନ ହେବା ପରେ ପଣ୍ଡିତ ନେହେରୁ ୧୯୪୯ ମସିହା ଜାନୁୟାରୀ ଏକ ତାରିଖରେ ଭାରତୀୟ ରିଜର୍ଭ ବ୍ୟାଙ୍କକୁ ଏକ ଅଂଶଗ୍ରହୀତା ବ୍ୟାଙ୍କ ରୂପେ ନ ରଖି ଜାତୀୟକରଣ କରାଇ ଦେଇଥିଲେ । ଉଦ୍ଦେଶ୍ୟ, ବେସରକାରୀ ବ୍ୟାଙ୍କ ଅପେକ୍ଷା ସରକାରୀ ବ୍ୟାଙ୍କଗୁଡ଼ିକ ଉପରେ ଜନସାଧାରଣଙ୍କ ଆସ୍ଥା ବେଶୀ । ପୁନଶ୍ଚ ଚାଷୀମାନଙ୍କୁ ଋଣ ଦେବା, ଦେଶର ଅର୍ଥନୈତିକ ବିକାଶ ଦିଗରେ ଦୃଷ୍ଟି ଦେବା ବା ଦେଶର ପୁଞ୍ଜିଗଠନ ବା ବିନିଯୋଗ ପାଇଁ ବ୍ୟବସ୍ଥା କରିବା ପାଇଁ କୌଣସି ବେସରକାରୀ ବ୍ୟାଙ୍କ ଦୃଷ୍ଟି ନ ଦେଇ ବରଂ ସେମାନଙ୍କ ନିଜ ନିଜର ଲାଭ ଦିଗରେ ଦୃଷ୍ଟି ଦେବା ଲାଗି ହିଁ ପରିଚାଳକଗଣ ତତ୍ପର ହୋଇଥାନ୍ତି । ବ୍ୟାଙ୍କଗୁଡ଼ିକୁ ଜାତୀୟକରଣ କରି ଅର୍ଥନୈତିକ ବିକାଶକୁ ତ୍ୱରାନ୍ୱିତ କରିବା ସରକାରଙ୍କ ଉଦ୍ଦେଶ୍ୟ । ସେହି ଦୃଷ୍ଟିରୁ ରିଜର୍ଭ ବ୍ୟାଙ୍କ ପରେ ପରେ **Rural Credit Survey Committee** ର ସୁପାରିଶ ଅନୁଯାୟୀ ଜୁଲାଇ ଏକ ତାରିଖ ୧୯୫୫ ମସିହାରେ **State Bank of India** କୁ ଜାତୀୟକରଣ କରାଯାଇଥିଲା ।

ଶ୍ରୀମତୀ ଇନ୍ଦିରା ଅନୁଭବ କରିଥିଲେ ଯେ ଭାରତରେ କେବଳ ରିଜର୍ଭ ବ୍ୟାଙ୍କ ସରକାରୀ ଭାବେ ଓ State Bank of India ଜାତୀୟକରଣ ହୋଇ ପରିଚାଳିତ ହେଉଥିଲେ ମଧ୍ୟ ଦେଶରୁ ଅର୍ଥନୈତିକ ଦୁର୍ଗତି ଦୂର କରିବା ପଥ ସୁଗମ ହୋଇ ନାହିଁ । ସେଥିଲାଗି ୧୯୬୭ ମସିହାରେ ଇତିମଧ୍ୟରେ ପ୍ରତିଷ୍ଠିତ ହୋଇଥିବା ଅନ୍ୟାନ୍ୟ ବ୍ୟାଙ୍କଗୁଡ଼ିକ ଉପରେ ଏକ ସାମାଜିକ ନିୟନ୍ତ୍ରଣ ଜାରି କରିବା ଇଚ୍ଛା କରି ସେ ସମ୍ପର୍କରେ ୧୯୬୮ ମସିହାରେ ପାର୍ଲ୍ୟାମେଣ୍ଟରେ ଏକ ଆଇନ ଅନୁମୋଦନ କରିଥିଲେ । କିନ୍ତୁ ତା ପରେ ପରେ ଦେଶର କେତୋଟି ବଡ଼ ବଡ଼ ବ୍ୟାଙ୍କକୁ ଜାତୀୟକରଣ କରାଇଦେଇ ଦେଶର ଅର୍ଥନୀତିରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ସେ ମନସ୍ଥ କରିଥିଲେ ।

ସେ ସମାଜବାଦୀ ଚିନ୍ତାଧାରାକୁ କାର୍ଯ୍ୟକାରୀ କରାଇବା ପାଇଁ '୧୯୬୯ ମସିହା ଜୁଲାଇ ୧୨ ତାରିଖରେ ତତ୍କାଳୀନ ଅର୍ଥମନ୍ତ୍ରୀ ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ଏକ ପ୍ରସ୍ତାବ ଆଗତ କରିଥିଲେ କଂଗ୍ରେସର କାର୍ଯ୍ୟକାରୀ ବୈଠକରେ ଓ ତାହା ସମର୍ଥିତ ହୋଇଥିଲା ଶ୍ରୀ ଚୌହାନଙ୍କଦ୍ୱାରା । ତାପରେ ଗତିବିଧିର କ ବିଚକ୍ଷଣତା ଲକ୍ଷ୍ୟ କରିଥିଲେ କେଜାଣି, ଶ୍ରୀମତୀ ଇନ୍ଦିରା ଶ୍ରୀ ମୋରାରଜୀ ଦେଶାଇଙ୍କ ହାତରୁ ଅର୍ଥମନ୍ତ୍ରଣାଳୟ ନିଜ ହାତକୁ ନେଇ ଦେଶର ବଡ଼ ବଡ଼ ଚଉଦଟି ବ୍ୟାଙ୍କକୁ ଏକାବେଳକେ ଜାତୀୟକରଣ କରିବା ଲାଗି ନିଷ୍ପତ୍ତି ଗ୍ରହଣ କରିଥିଲେ ମନ୍ତ୍ରିମଣ୍ଡଳର ଏକ ବୈଠକରେ । ୧୯୬୯ ଜୁଲାଇ ୧୯ ତାରିଖରେ ରାଷ୍ଟ୍ରପତିଙ୍କଦ୍ୱାରା ଏକ ଅର୍ଡିନାନ୍ସ ଜାରି କରାଇ ସେ ପ୍ରସ୍ତାବକୁ କାର୍ଯ୍ୟକାରୀ କରାଇଥିଲେ । ସେ ଚଉଦଟି ବ୍ୟାଙ୍କ ହେଲା—ସେଣ୍ଟ୍ରାଲ ବ୍ୟାଙ୍କ, ବ୍ୟାଙ୍କ ଅଫ୍ ଇଣ୍ଡିଆ, ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ, ବ୍ୟାଙ୍କ ଅଫ୍ ବରୋଦା, ୟୁନାଇଟେଡ୍ କମର୍ସିଆଲ ବ୍ୟାଙ୍କ, ୟୁନାଇଟେଡ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ, କାନାଡ଼ା ବ୍ୟାଙ୍କ, ଦେନା ବ୍ୟାଙ୍କ, ୟୁନିୟନ ବ୍ୟାଙ୍କ, ସିଣ୍ଡିକେଟ୍ ବ୍ୟାଙ୍କ, ଏଲ୍ଲାବାଦ ବ୍ୟାଙ୍କ, ଇଣ୍ଡିଆନ ବ୍ୟାଙ୍କ, ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କ ଏବଂ ବ୍ୟାଙ୍କ ଅଫ୍ ମହାରାଷ୍ଟ୍ର ।

ତା ପରେ ପରେ ଅନେକ ଦିନରୁ ମନ ଭିତରେ କୁହୁଳି ଉଠୁଥିବା ଧୂଆଁ ସବୁ ନିଆଁରେ ପରିଣତ ହୋଇଯାଇଥିଲା ଓ ତାଙ୍କ ହାତରୁ ଅର୍ଥ ମନ୍ତ୍ରଣାଳୟ ବାହାର କରି ନିଆଯାଇଥିବାର ପ୍ରତିବାଦ ସ୍ୱରୂପ ମନ୍ତ୍ରିମଣ୍ଡଳରୁ ଉପପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ଇସ୍ତଫା ଦେଇଥିଲେ ।

ତେବେ ସ୍ୱତନ୍ତ୍ର ଦଳର ନେତା ମିନୁ ମାସାନୀ, ବଳରାଜ ମାଧୋକ ଓ ବିଭିନ୍ନ ବ୍ୟାଙ୍କର କେତେଜଣ ଅଂଶଗ୍ରହିତା ବ୍ୟାଙ୍କଗୁଡ଼ିକ ଉପରେ କରାଯାଇଥିବା ଅର୍ଡିନାନ୍ସ ବିରୋଧରେ ସୁପ୍ରିମକୋର୍ଟରେ ଆବେଦନ କରିଥିଲେ । ସୁପ୍ରିମକୋର୍ଟ ତାରି ତିନି ଦିନ ପରେ ଏକ ସ୍ଥିତାବସ୍ଥା (Stay Order) ଜାରି କରିଥିଲେ ।

ସରକାର ବ୍ୟାଙ୍କର ତତ୍ତ୍ୱାବଧାରକ (Custodian) ମାନଙ୍କୁ ବାହାର କରି ସରକାରୀ ପରାମର୍ଶଦାତା କମିଟି ନିଯୁକ୍ତ କରିପାରିବେ ନାହିଁ ।

ତାର ଚାରି ଦିନ ପରେ ଜୁଲାଇ ଛବିଶ ତାରିଖରେ ବ୍ୟାଙ୍କଗୁଡ଼ିକ ଜାତୀୟ-କରଣ ସମ୍ବନ୍ଧରେ ଏକ ବିଲ ପାର୍ଲ୍ୟାମେଣ୍ଟରେ ଉପସ୍ଥାପିତ ହୋଇ ତାହା ଅଗଷ୍ଟ ନଅ ତାରିଖରେ ଆଇନରେ ପରିଣତ ହୋଇଥିଲା । କିନ୍ତୁ ୧୯୭୦ ମସିହା ଫେବ୍ରୁୟାରୀ ଦଶ ତାରିଖରେ ସୁପ୍ରିମକୋର୍ଟର ପୂରା ବେଞ୍ଚ ବସି ବ୍ୟାଙ୍କ ଜାତୀୟ-କରଣକୁ ଅସାମ୍ବିଧାନିକ ତଥା ଅବୈଧ ବୋଲି ରାୟ ଦେଇଥିଲେ । ଏଗାର ଜଣ ବିଚାରପତିଙ୍କ ମଧ୍ୟରୁ ମାତ୍ର ଜଣେ ସେ ରାୟ ସହିତ ଏକମତ ନ ଥିଲେ ।

ସୁପ୍ରିମକୋର୍ଟରେ ସେ ଆଇନ ଅବୈଧ ବୋଲି ଘୋଷିତ ହେବାର ତିନିଦିନ ପରେ ପୁଣି ୧୯୭୦ ଫେବ୍ରୁୟାରୀ ୧୪ ତାରିଖରେ ରାଷ୍ଟ୍ରପତିଙ୍କ ପୁନଃ ଅର୍ଡିନାନ୍ସ ଜାରି କରାଯାଇ ଉକ୍ତ ବ୍ୟାଙ୍କଗୁଡ଼ିକୁ ଜାତୀୟକରଣ କରାଯାଇଥିଲା ଏବଂ ସୁପ୍ରିମକୋର୍ଟ ତାଙ୍କ ରାୟରେ ଯେଉଁ ଯେଉଁ ଅସାମ୍ବିଧାନିକତା ତଥା ଅବୈଧତାର କାରଣ ଦର୍ଶାଇଥିଲେ, ସେଗୁଡ଼ିକର ନିରାକରଣ ଲାଗି ଚେଷ୍ଟା କରାଯାଇଥିଲା । ବ୍ୟାଙ୍କର ତତ୍ତ୍ୱାବଧାରକମାନଙ୍କୁ କ୍ଷତିପୂରଣ ଦିଆଯିବା ନିଷ୍ପତ୍ତି ଗୃହୀତ ହୋଇଥିବା ଟଙ୍କାର ପରିମାଣ ୭୫ କୋଟି ଟଙ୍କା ପରିବର୍ତ୍ତେ ୮୭ କୋଟି ୪୦ ଲକ୍ଷ ଟଙ୍କା ଧାର୍ଯ୍ୟ କରାଯାଇଥିଲା । ସେ ନିୟମାବଳୀକୁ ଭ୍ରାନ୍ତିହୀନ କରାଯାଇ ଫେବ୍ରୁୟାରୀ ୨୭ ତାରିଖରେ ବ୍ୟାଙ୍କଗୁଡ଼ିକର ଆଇନାବଳୀ ସଂଶୋଧିତ ହୋଇ ପ୍ରବର୍ତ୍ତିତ ହୋଇଥିଲା । ତାହା Banking Companies Acquisation and Transfer of Undertakings Act-1970 ଭାବରେ ପରିଚିତ ।

ବ୍ୟାଙ୍କଗୁଡ଼ିକ ଜାତୀୟକରଣ କରି ଏକ ଦୃଢ଼ ସମାଜବାଦୀ ପଦକ୍ଷେପ ଗଣତାନ୍ତ୍ରିକ ପଦ୍ଧତିରେ ନେବା ନିଷ୍ପତ୍ତି କାର୍ଯ୍ୟକାରୀ କରିବାକୁ ଗଲାବେଳେ ମଧ୍ୟ ଅନେକ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ ଶ୍ରୀମତୀ ଗାନ୍ଧୀ । ତେବେ ସେ ବାଧାବିଘ୍ନ ଅତିକ୍ରମ କରିବାକୁ ତାହାଙ୍କୁ ଅନେକ ପ୍ରତିବନ୍ଧକ ଦୃଢ଼ ଭାବେ ମୁକାବିଲା କରିବାକୁ ପଡ଼ିଥିଲା ।

**ଆଉ ଏକ ପାହାଚ :—**

ସେହିପରି ଆଉ ଏକ ଦୃଢ଼ ସମାଜବାଦୀ ପଦକ୍ଷେପ ଥିଲା ଭାରତର ରାଜାରଜୁଡ଼ା ମାନଙ୍କର ହାତପାଣି ଉଚ୍ଛେଦ ଯୋଜନା । ଭାରତ ସ୍ୱାଧୀନ ହେବାର ଅବ୍ୟବହିତ ପୂର୍ବରୁ ୧୯୪୭ ମସିହା ଜୁଲାଇ ୨୫ ତାରିଖରେ ଲର୍ଡ଼ ମାଉଣ୍ଟ ବାଟେନ୍ ଏବଂ ଭାରତୀୟ ରାଜ୍ୟ ବିଭାଗର ମୁଖ୍ୟ ତତ୍ତ୍ୱାବଧାରକ ସର୍ଦ୍ଦାର ପଟେଲଙ୍କ ସ୍ୱାକ୍ଷର-କ୍ରମେ ଅନେକ ସ୍ୱାଧୀନ ଛୋଟ ଛୋଟ ରାଜ୍ୟର ସମ୍ମିଶ୍ରଣ ଘଟିଥିଲା ଭାରତ ସହିତ ।

ଫଳରେ ଯେଉଁ ରାଜ୍ୟର ଲୋକେ ସ୍ୱାଧୀନ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲେ, ସେଗୁଡ଼ିକ ଏକ ସ୍ୱତନ୍ତ୍ର ରାଜିନାମା ଫଳରେ ପୃଥିବୀର ମାନଚିତ୍ରରେ ନୂତନ କରି ଜନ୍ମ ନେବାକୁ ଥିବା ଭାରତ ବା ପାକିସ୍ଥାନରେ ସାମିଲ୍ ହୋଇଯିବା ଲାଗି ସୁଯୋଗ ପାଇଥିଲେ କ୍ୟାବିନେଟ୍ ମିଶନ୍ ଯୋଜନା ଅନୁସାରେ ।

ଭାରତ ସହିତ ସେହି ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ଫଳରେ ସେଗୁଡ଼ିକ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତର ଏକ ଏକ ଅଙ୍ଗ ହୋଇ ଯାଇଥିଲେ ଏବଂ ଭାରତର ଶାସନକ୍ଷେତ୍ରରେ ସେଗୁଡ଼ିକର ଅଧିବାସୀମାନେ ଅଂଶ ଗ୍ରହଣ କରିବା ସୁଯୋଗ ପାଇଥିଲେ । କିନ୍ତୁ ସେପରି ରାଜ୍ୟଗୁଡ଼ିକର ରାଜାମାନଙ୍କୁ ସମ୍ମିଶ୍ରଣକାଳୀନ ଚୁକ୍ତି ଅନୁସାରେ କେତେକ ସ୍ୱତନ୍ତ୍ର ସୁବିଧା, ସୁଯୋଗ ଓ ସମ୍ମାନ ମଧ୍ୟ ଦିଆଯାଇଥିଲା । ସେଗୁଡ଼ିକ ମଧ୍ୟରେ ଥିଲା ଆଇନଗତ କାର୍ଯ୍ୟାନୁଷ୍ଠାନରୁ କିମ୍ବିତ୍ ଅବ୍ୟାହତି, ବନ୍ଧୁକ, ସଲାମ୍ ଅର୍ଜନ, ଉଚ୍ଚ ସମ୍ମାନଜନକ ପଦବୀ "His Highness"ର ବ୍ୟବହାର ଇତ୍ୟାଦି । ସେସବୁକୁ ବାଦ୍ ଦେଇ ସେମାନଙ୍କୁ ବାର୍ଷିକ ଏକ ନିର୍ଦ୍ଦିଷ୍ଟ ପରିମାଣରେ ହସ୍ତପାଣ୍ଠି ପ୍ରଦାନ କରାଯାଉଥିଲା ଜାତୀୟ ରାଜକୋଷରୁ । ରାଜା-ମାନଙ୍କର ସେ ଉପାର୍ଜନଗୁଡ଼ିକ ଆୟକର ତଥା ଅନ୍ୟାନ୍ୟ କରମୁକ୍ତ ଥିଲା । ସେ ଦିଗରେ ପ୍ରତିବର୍ଷ ସରକାରୀ ପାଣ୍ଠି ବ୍ୟୟ କରାଯାଉଥିଲା ପ୍ରାୟ ଛଅ କୋଟି ସତୁରି ଲକ୍ଷ ଟଙ୍କା ।

ସମ୍ବିଧାନ ଅନୁଯାୟୀ ଭାରତ ଏକ ସାର୍ବଭୌମ ଗଣତନ୍ତ୍ର ରାଷ୍ଟ୍ର । ପୁଣି ୧୯୫୪ ମସିହାଠାରୁ ଗଣତାନ୍ତ୍ରିକ ପଦ୍ଧତିରେ, ସମାଜବାଦୀ ଢାଞ୍ଚାରେ ଭାରତର ଅର୍ଥନୀତିକୁ ସୁଦୃଢ଼ କରିବା ନୀତି ମଧ୍ୟ ଗୃହୀତ ହୋଇଯାଇଥିଲା । ତେଣୁ ଜାତି, ଧର୍ମ, ବର୍ଣ୍ଣ, ଭାଷା, ଲିଙ୍ଗ ନିର୍ବିଶେଷରେ ସମ୍ବିଧାନ ସମକ୍ଷରେ ଭାରତବାସୀ ସମାନ ବିବେଚିତ ହେବା ସଙ୍ଗେ ସଙ୍ଗେ ଦେଶରୁ ଦାରିଦ୍ର୍ୟ ଓ ଅର୍ଥନୈତିକ ବୈଷମ୍ୟ ଦୂର କରିବା ଲାଗି ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରୁଥିଲେ । ସେ ପ୍ରକାର ପରିସ୍ଥିତି ଭିତରେ ରାଜାରାଜୁଡ଼ାଙ୍କୁ ସରକାରୀ ରାଜକୋଷରୁ ହାତପାଣ୍ଠି ଦେବା ସଙ୍ଗେ ସଙ୍ଗେ ଯେଉଁ ସ୍ୱତନ୍ତ୍ର ସୁବିଧା ସୁଯୋଗ ଦିଆ ଯାଉଥିଲା, ତାର ବିରୁଦ୍ଧରେ ମତପ୍ରକାଶ ପାଇଥିଲା ଜନସାଧାରଣଙ୍କଦ୍ୱାରା । ତାହାକୁ ଏକ ଅଗଣତାନ୍ତ୍ରିକ ଓ ଅଣସମାଜବାଦୀ କାର୍ଯ୍ୟ ବୋଲି ଜନଗଣଙ୍କର ସ୍ପଷ୍ଟ ମତ ପ୍ରକାଶ ପାଇଥିଲା ।

ଜାନୁଆରୀ ୧, ୧୯୬୯ ମସିହାରେ ଏକ ସାମ୍ବାଦିକ ସମ୍ମେଳନରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ନିଜର ସମାଜବାଦୀ ନୀତି ସମ୍ପର୍କରେ କେତୋଟି ପ୍ରଶ୍ନର ଉତ୍ତର ଦେଇ କହିଥିଲେ ଯେ, ସେ ରାଜାରାଜୁଡ଼ାଙ୍କ ହାତପାଣ୍ଠି ଉଚ୍ଛେଦ ସମ୍ପର୍କରେ ଦେଇଥିବା ପ୍ରତିଶ୍ରୁତି ନିଶ୍ଚୟ ପାଳନ କରିବେ । ଅବଶ୍ୟ ତାର ଅନେକ

ବନ ପୂର୍ବରୁ ପାର୍ଲ୍ୟାମେଣ୍ଟାରୀ ବୋର୍ଡ଼ ବୈଠକ ତଥା ନିଖିଳ ଭାରତ କଂଗ୍ରେସ କମିଟିରେ ସେ ସମ୍ପର୍କ ରେ ସ୍ପଷ୍ଟ ମତ ପ୍ରକାଶ କରିଥିଲେ ।

ଶ୍ରୀମତୀ ଗାନ୍ଧୀ ଅନୁଭବ କରିଥିଲେ ଯେ ସାମ୍ବିଧାନିକ ଉପାୟରେ ତଥା ସରକାରୀ ଭାବରେ ରାଜାରାଜୁଡ଼ାଙ୍କୁ ଦିଆଯାଉଥିବା ସ୍ୱତନ୍ତ୍ର ସୁବିଧାସବୁ ପ୍ରତ୍ୟାହାର କରିନେବା ଲାଗି ଦୀର୍ଘ ସମୟର ଆବଶ୍ୟକତା ପଡ଼ିପାରେ ଏବଂ ତା ଫଳରେ ସେମାନଙ୍କ ବ୍ୟକ୍ତିଗତ ସମ୍ମାନରେ ମଧ୍ୟ ଆଞ୍ଚ ଆସିପାରେ; ତେଣୁ କୌଣସି ମତେ ଯଦି ଆପୋଷ ମିଳାମିଶା ଫଳରେ ସେ ସମସ୍ୟାର ସମାଧାନ କରାଯାଇପାରେ ତାହାହେଲେ ସବୁଠାରୁ ଉତ୍ତମ ହେବା ସଙ୍ଗେ ସଙ୍ଗେ ଉଭୟ ପକ୍ଷର ସମ୍ମାନ ମଧ୍ୟ ଅକ୍ଷୁର୍ଣ୍ଣ ରହିପାରିବ । ସେଥିପାଇଁ ସେ ପ୍ରଥମେ ଉପଯୁକ୍ତ ବୁଝାମଣା ଦ୍ୱାର ଉନ୍ମୋଚନ କରିବାପାଇଁ ଚେଷ୍ଟା କରିଥିଲେ । କିନ୍ତୁ ସ୍ୱତନ୍ତ୍ର ସୁଯୋଗ ପାଉଥିବା ରାଜା ମହାରାଜାମାନେ ସେଥିଲାଗି ପ୍ରସ୍ତୁତ ନ ଥିଲେ । ତେଣୁ ବାଧ୍ୟ ହୋଇ ସମ୍ବିଧାନ ସଂଶୋଧନ କରିବା ଲାଗି ସେ ପଦକ୍ଷେପ ନେଇଥିଲେ ଏବଂ ୧୯୭୦ ମସିହା ସେପ୍ଟେମ୍ବର ଏକ ତାରିଖରେ ସେ ସମ୍ପର୍କରେ ଏକ ବିଲ ଲୋକସଭାରେ ଆଗତ କରିଥିଲେ । ତାହା ତା ପରଦିନ ବହୁ ସଂଖ୍ୟାଧିକ ଭୋଟରେ ଲୋକସଭାରେ ଗୃହୀତ ହୋଇଯାଇଥିଲା ।

ଗଣତାନ୍ତ୍ରିକ ପଦ୍ଧତି ଅନୁଯାୟୀ କେତେକ ବିଲକୁ ଆଇନରେ ପରିଣତ କରିବାକୁ ହେଲେ ଲୋକସଭା ଓ ରାଜ୍ୟ-ସଭା ଉଭୟ ସଭାର ଦୁଇ-ତୃତୀୟାଂଶ ସଭ୍ୟଙ୍କ ସମର୍ଥନ ଆବଶ୍ୟକ । ସେହି କାରଣରୁ ଲୋକସଭାରେ ସେହି ବିଲ୍‌ଟି ଗୃହୀତ ହୋଇସାରିବା ପରେ ସେପ୍ଟେମ୍ବର ଚାରି ତାରିଖରେ ଶ୍ରୀମତୀ ଗାନ୍ଧୀ ତାହାକୁ ରାଜ୍ୟସଭାରେ ଉପସ୍ଥାପିତ କରିଥିଲେ । କିନ୍ତୁ ଦୁଃଖର କଥା, ତାହା ସେଠାରେ ଦୁଇ-ତୃତୀୟାଂଶ ସମର୍ଥନ ଲାଭ କରିପାରି ନ ଥିଲା । ୨୧୪ ଜଣ ସଭ୍ୟଙ୍କ ମଧ୍ୟରୁ ବିଲ୍ ସପକ୍ଷରେ ୧୪୯ ଜଣ ମତ ଦେଇଥିବା ସ୍ଥଳେ ୭୫ ଜଣ ତାହାକୁ ସମର୍ଥନ କରି ନ ଥିଲେ । ବିଲ ସପକ୍ଷରେ ମାତ୍ର ଗୋଟାଏ ଭୋଟର ଅଭାବ ଯୋଗୁଁ ଏକ ଦୃଢ଼ ସମାଜବାଦୀ ପଦକ୍ଷେପ ବ୍ୟାହତ ହୋଇଥିଲେ ମଧ୍ୟ ଦେଶରେ ଗଣତନ୍ତ୍ର ପ୍ରତି ଯଥେଷ୍ଟ ସମ୍ମାନ କିପରି ଦିଆଯାଇପାରେ, ତାର ଜ୍ୱଳନ୍ତ ନିଦର୍ଶନ ପ୍ରକାଶ ପାଇଥିଲା । ପରିଣାମ ସ୍ୱରୂପ ରାଜ୍ୟସଭାରେ ଗୋଟିଏ ଭୋଟର ସମର୍ଥନ ଅଭାବ ଯୋଗୁଁ ବିଲଟି ଆଉ ଆଇନରେ ପରିଣତ ହୋଇପାରି ନ ଥିଲା ।

ତେବେ ନିଜ ଜିଦରେ ଅଟଳ ଇନ୍ଦିରା ସେଇଦିନ ହିଁ ମନ୍ତ୍ରିମଣ୍ଡଳର ବୈଠକ ଡକାଇ ରାଜାମହାରାଜାମାନଙ୍କୁ ଦିଆଯାଉଥିବା ସ୍ୱତନ୍ତ୍ର ସ୍ୱୀକୃତି ପ୍ରତ୍ୟାହାର କରିନେବା ଲାଗି ନିଷ୍ପତ୍ତି ଗ୍ରହଣ କରିଥିଲେ ଓ ତଦନୁସାରେ ସେପ୍ଟେମ୍ବର ଛଅ ତାରିଖରେ ରାଷ୍ଟ୍ରପତିଙ୍କ ସେ ନିଷ୍ପତ୍ତି ସମ୍ବନ୍ଧୀୟ ଆଦେଶନାମା ରାଜାମାନଙ୍କ ନିକଟକୁ

ପ୍ରେରଣ କରିଥିଲେ । କିନ୍ତୁ ତାହାର ବୈଧତା ସମ୍ପର୍କରେ ପ୍ରଶ୍ନ ଉତ୍ଥାପନ କରିଥିଲେ ଉଦୟପୁରର ପୂର୍ବତନ ମହାରାଜା, ଏବଂ ସେ ସୁପ୍ରିମକୋର୍ଟର ମଧ୍ୟ ଆଶ୍ରୟ ନେଇଥିଲେ । ଡିସେମ୍ବର ୧୫ ତାରିଖରେ ସୁପ୍ରିମକୋର୍ଟ ରାଷ୍ଟ୍ରପତିଙ୍କ ଆଦେଶନାମା ବିପକ୍ଷରେ ରାୟ ଦେଇଥିଲେ । ରାଷ୍ଟ୍ରପତିଙ୍କ କାର୍ଯ୍ୟ ଏକ ସମ୍ବିଧାନବହିର୍ଭୂତ କାର୍ଯ୍ୟ ବୋଲି ସୁପ୍ରିମକୋର୍ଟ ରାୟ ଦେଇଥିଲେ । ପରିଣାମ ସ୍ୱରୂପ ସେପ୍ଟେମ୍ବର ଛଅ ତାରିଖରୁ ବଞ୍ଚିତ ହୋଇଥିବା ରାଜାମହାରାଜାମାନେ ସେମାନଙ୍କ ପୂର୍ବ ସୁଯୋଗ ପୁଣି ଫେରି ପାଇଥିଲେ ।

ତାପରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଅଧିକ ସଚେତନ ହୋଇ ଉଠିଥିଲେ ତାଙ୍କର ପ୍ରଗତିଶୀଳ ଚିନ୍ତାଗୁଡ଼ିକୁ କାର୍ଯ୍ୟକାରୀ କରିବା ଦିଗରେ ଓ ଯେଉଁସବୁ ପ୍ରତିବନ୍ଧକ ସୃଷ୍ଟି ହେଉଛି, ତାର ଯଥାଯଥ ନିରାକରଣ ଲାଗି । ସେଥିରେ ସେ ସଫଳ ମଧ୍ୟ ହୋଇଥିଲେ । ପଞ୍ଚମ ଲୋକସଭା ପାଇଁ ସାଧାରଣ ନିର୍ବାଚନ କରାଇବା ନିଷ୍ପତ୍ତି ଗ୍ରହଣ କରିଥିଲେ, ଜନସାଧାରଣଙ୍କ ସମର୍ଥନ ତାହାଙ୍କ ପ୍ରତି ଅଛି କି ନା ତାହା ଜାଣିବାପାଇଁ । ଜନତା ତାହାଙ୍କ ସପକ୍ଷରେ ମତ ଦେଇଥିଲେ । ଦୁଇ-ତୃତୀୟାଂଶରୁ ଅଧିକ ସଭ୍ୟ ଶ୍ରୀମତୀ ଗାନ୍ଧୀଙ୍କ ସହିତ ହାତ ମିଳାଇଥିଲେ ପଞ୍ଚମ ଲୋକସଭାରେ । ତେଣୁ ତାହାଙ୍କ ସାମ୍ବିଧାନିକ ପ୍ରତିବନ୍ଧକ ସବୁ ଦୂର ହୋଇପାରି-ଥିଲା । ଜନତାର ରାୟକୁ ସମ୍ମାନ ଦେଇ, ନିଜ ନିର୍ବାଚନ ପ୍ରତିଶ୍ରୁତି ପାଳନ କରିବାକୁ ଯାଇ ପ୍ରଥମେ ପାର୍ଲ୍ୟାମେଣ୍ଟରେ ରାଜାରାଜୁଡ଼ାଙ୍କ ହାତପାଣ୍ଠି ଉଚ୍ଛେଦ ପ୍ରସ୍ତାବ ଗୃହୀତ କରାଇ ନେଇଥିଲେ ୧୯୭୧ ମସିହାରେ ।

ସମଗ୍ର ଦେଶର ଜନତାଙ୍କ ରାୟକୁ ଅସମ୍ମାନ କରିବାକୁ ଆଉ ଆଗେଇ ଆସିବ କିଏ ?

ସୁପ୍ରିମକୋର୍ଟରେ ନାଲିସ୍ କରି ଫେରି ପାଇଥିବା ସୁବିଧା ସୁଯୋଗ ରାଜା ମହାରାଜାମାନେ ଏଣିକି ଆଉ ପାଦେ ଆଗେଇବା ପାଇଁ ରାସ୍ତା ନ ଥିଲା ।

□ □ □

## ॥ ଅଠର ॥

# ନେତୃତ୍ୱର ପରୀକ୍ଷା



ପଣ୍ଡିତ ନେହେରୁଙ୍କ ମୃତ୍ୟୁ ପର ବର୍ଷ ୧୯୬୫ ମସିହାରେ କଂଗ୍ରେସର ବାର୍ଷିକ ଅଧିବେଶନ ବାଙ୍ଗାଲୋରଠାରେ ଅନୁଷ୍ଠିତ ହୋଇଥିଲା । ସେଇ ଅବସରରେ କଲିକତାର କେତେକ ସାମ୍ବାଦିକଙ୍କ ନିକଟରେ ଶ୍ରୀମତୀ ଇନ୍ଦିରା ପ୍ରକାଶ କରିଥିଲେ ଯେ ବିଗତ ଭୁବନେଶ୍ୱର ଅଧିବେଶନରେ ନିଆଯାଇଥିବା କେତେକ ଗଣତାନ୍ତ୍ରିକ ଓ ସମାଜବାଦୀ ପ୍ରସ୍ତାବ ଗତ ବର୍ଷକ ମଧ୍ୟରେ ବାସ୍ତବରେ କାର୍ଯ୍ୟକାରୀ କରାଯାଇ ପାରି ନ ଥିଲା । ସେ ପ୍ରକାର ମନ୍ତବ୍ୟ କାହିଁକି ଦେଲେ ବୋଲି ତାହାଙ୍କ ଦୃଷ୍ଟି ଆକର୍ଷଣ କରାଯିବାରେ ସେ ଉତ୍ତର ଦେଇଥିଲେ ଯେ ଦଳେ କ୍ଷମତାଶାଳୀ କଂଗ୍ରେସ ନେତା ପ୍ରସ୍ତାବଗୁଡ଼ିକ କଂଗ୍ରେସ ଅଧିବେଶନରେ ଗୃହୀତ ହେବାବେଳେ ତା ସପକ୍ଷରେ ନିଜ ମତ ପ୍ରକାଶ କରୁଥିଲେ ମଧ୍ୟ ତାହାକୁ କାର୍ଯ୍ୟକାରୀ କରିବାକୁ ଗଲାବେଳେ ପଥ ଓଗାଳି ବସିଥାନ୍ତି । ଇନ୍ଦିରାଙ୍କ ସେ ନିର୍ଭୀକ ମତାମତ ପ୍ରତି କଂଗ୍ରେସର ସିଣ୍ଡିକେଟ ଗୋଷ୍ଠୀ ଗୁରୁତ୍ୱ ଦେଇ ନ ଥିଲେ । ବରଂ ମନେ କରିଥିଲେ ଯେ ପ୍ରକୃତରେ ସେତେବେଳ ଯାଏ ଇନ୍ଦିରା ରାଜନୀତି କ୍ଷେତ୍ରରେ ପରିପକ୍ୱତା ଅର୍ଜନ କରିପାରି ନ ଥିଲେ ଏବଂ ବାସ୍ତବ ରାଜନୀତି କ୍ଷେତ୍ରରେ ସକ୍ରିୟ ଅଂଶ ଗ୍ରହଣ କରିବା ପରେ ସେସବୁ ଆପେ ଆପେ ବୁଝିପାରିବେ ।

କଂଗ୍ରେସ ନେତୃବୃନ୍ଦଙ୍କ ବିଭିନ୍ନ ଅଧିବେଶନରେ ଗୃହୀତ ପ୍ରସ୍ତାବ—ନୀତି ଓ ବାସ୍ତବ କ୍ଷେତ୍ରରେ ତାର ପ୍ରୟୋଗ—ଏଇ ଦୁଇଟି ମଧ୍ୟରେ ଯେଉଁ ତଫାତ୍ ରହୁଥିଲା, ତାହା ହିଁ ଥିଲା ଦଳବିଭାଜନର ପ୍ରଧାନ କାରଣ ।

**କଂଗ୍ରେସ ଦଳର ଦୁଇ ଦିଗ :—**

ଦୀର୍ଘ ଅନେକ ବର୍ଷ ଇଂରେଜମାନଙ୍କ ଦ୍ୱାରା ଭାରତ ଶାସିତ ହେବା ପରେ ପରେ ସେହି ଔପନିବେଶବାଦର ବିଲୋପ ପାଇଁ ଭାରତରେ ସିପାହୀ ବିଦ୍ରୋହ

ହୋଇଥିଲା ୧୮୫୭ ମସିହାରେ । ସେ ପ୍ରକାର ଆନ୍ଦୋଳନକୁ ଚପାଇ ଦେବାଲାଗି ଇଂରେଜମାନଙ୍କୁ କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ ହେବାକୁ ହୋଇ ନ ଥିଲା ଓ ଇଂରେଜ ସରକାରଙ୍କ ଦ୍ୱାରା ବିଶେଷ ଆଗ୍ରହ ବିନା ତାହାକୁ ଚପାଇ ଦିଆଯାଇଥିଲା । ତେଣୁ ସଂଗଠିତ ଭାବରେ ଇଂରେଜମାନଙ୍କ ସହିତ ଯୁଦ୍ଧ କରି ତାହାଙ୍କୁ ଦେଶରୁ ବିତାଡ଼ିତ କରିବାପାଇଁ ୧୮୮୫ ମସିହାରେ ଜନ୍ମ ଲାଭ କରିଥିଲା 'ଭାରତୀୟ ଜାତୀୟ କଂଗ୍ରେସ' ଜଣେ ଇଂରେଜ ବ୍ୟକ୍ତି ମି. ଏ. ଓ. ହ୍ୟୁମ୍‌ଙ୍କ ଦ୍ୱାରା ।

କଂଗ୍ରେସର ସଂଗଠନ ପରେ ପରେ କାଳକ୍ରମେ ଜାତୀୟ ମୁକ୍ତି ଆନ୍ଦୋଳନ ବାସ୍ତବିକ୍ ବହୁ ଗୁଣରେ ବୃଦ୍ଧି ପାଇଥିଲା ଓ କଂଗ୍ରେସର ପରମ ତଥା ଚରମ ଲକ୍ଷ୍ୟ ଥିଲା ଭାରତର ରାଜନୈତିକ ମୁକ୍ତି । ଭାରତର ପ୍ରାଣ ଜାତୀୟତାବାଦୀ ନେତୃବୃନ୍ଦ କଂଗ୍ରେସ ସଂଗଠନକୁ ଏକ ଶକ୍ତିଶାଳୀ ଅନୁଷ୍ଠାନ ରୂପେ ପ୍ରତିଷ୍ଠା କରିବାପାଇଁ ଆଗେଇ ଯାଇଥିଲେ । ପ୍ରକୃତରେ ସେମାନଙ୍କ ସଂଗଠନ ଶକ୍ତି ଥିଲା ଅମାପ, ଜାତୀୟତାବାଦୀ ଚିନ୍ତାଧାରା ଥିଲା ଅସୀମ, ଦେଶପ୍ରୀତି ଥିଲା ଅକଳନ । ତେଣୁ ବାସ୍ତବରେ କଂଗ୍ରେସ ଏକ ରାଜନୈତିକ ଦଳ ହୋଇଥିଲେ ମଧ୍ୟ ତାହା ଥିଲା ଏକ ଜାତୀୟ ଅନୁଷ୍ଠାନ ଜନସାଧାରଣଙ୍କ ନିକଟରେ । ପ୍ରକାରାନ୍ତରେ କହିବାକୁ ଗଲେ ତାହା ଥିଲା ସେତେବେଳେ ଜନସାଧାରଣଙ୍କ ଆଶା, ଆକାଙ୍‌କ୍ଷାର କେନ୍ଦ୍ର ସଂସ୍ଥା ।

ସେ ସମୟରେ ମଧ୍ୟ ୧୯୩୯ ମସିହା ମାର୍ଚ୍ଚ ମାସରେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ନେତାଜୀ ସୁଭାଷଚନ୍ଦ୍ର ବୋଷ କଂଗ୍ରେସକୁ ଏକ ପ୍ରସ୍ତାବ ଦେଇ-ଥିଲେ ଯେ ଭାରତକୁ ସ୍ୱାଧୀନତା ଦେବା ପାଇଁ ଇଂରେଜ ସରକାରଙ୍କୁ ଏକ ଛଅ-ମାସିଆ ଚରମପତ୍ର ଦିଆଯାଉ । କାରଣ ସ୍ୱରୂପ ଦର୍ଶାଇଥିଲେ ଯେ ଛଅ ମାସ ମଧ୍ୟରେ ଇଉରୋପରେ ଯୁଦ୍ଧ ଲାଗିଯିବାର ଆଶଙ୍କା ଥିଲା ଏବଂ (ସେ ଆଶଙ୍କା ବାସ୍ତବରେ ମଧ୍ୟ ପରିଣତ ହୋଇଥିଲା) ଯୁଦ୍ଧ ଲାଗିଗଲେ—"We could then take the help of Britain's enemies and wage an armed rebellion against our rulers."†

କଂଗ୍ରେସ ଦଳ ସେ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲା । ତେଣୁ ଅପ୍ରେଲ୍ ମାସରେ ସଭାପତି ପଦତ୍ୟାଗ କରିବା ସଙ୍ଗେ ସଙ୍ଗେ ପ୍ରସ୍ତାବ କାର୍ଯ୍ୟକାରୀ ନ ହେବା କାରଣ ଦର୍ଶାଇ ଓ ମତଗତ ପାର୍ଥକ୍ୟ ଦର୍ଶାଇ ନେତାଜୀ କେତେ ଜଣ ସହକର୍ମୀଙ୍କ ସହ କଂଗ୍ରେସରୁ ଅଲଗା ହୋଇ "ଫରୱାର୍ଡ଼ ବ୍ଲକ୍" ନାମକ ଏକ ରାଜନୈତିକ ଦଳ ଗଠନ କରିଥିଲେ ୧୯୩୯ ମଇ ମାସରେ । କଂଗ୍ରେସ ଦଳ ଜଣେ ଗୁଣୀ ନେତାଙ୍କୁ ହରାଇଥିଲା । ତେବେ ଫରୱାର୍ଡ଼ ବ୍ଲକ୍‌ର ଲକ୍ଷ୍ୟ ଓ କଂଗ୍ରେସର ଲକ୍ଷ୍ୟ ଏକ ଥିଲେ ମଧ୍ୟ ଉଭୟ ଦଳର କାର୍ଯ୍ୟସାଧନର ପନ୍ଥା ଭିନ୍ନ ଭିନ୍ନ ଥିଲା ।

---

† Illustrated Weekly, 5th August, 1973—P-43.

ଉଲ୍ଲେଖଯୋଗ୍ୟ ଯେ ମେ ଘଟଣା ପରେ ମଧ୍ଯ କଂଗ୍ରେସ ତାର ପୂର୍ବ ସୁନାମ ହରାଇ ନ ଥିଲା । ଜନଗଣଙ୍କର ଆଶା ଆକାଂକ୍ଷା ପୂରଣ ହୋଇଥିଲା ୧୯୪୭ ଅଗଷ୍ଟ ପନ୍ଦର ତାରଖରେ—ଜାତୀୟ କଂଗ୍ରେସର ନିଷ୍ଠାପର କାର୍ଯ୍ୟକଳାପଦ୍ଵାରା ଓ ଭାରତର ଜନତା ସେମାନଙ୍କୁ ଦେଇଥିବା ସର୍କ୍ରିୟ ସହଯୋଗର ପରିଣାମ ସ୍ୱରୂପ ।

ତା ପରେ ଯେଉଁ କଂଗ୍ରେସ ପାଇଁ ଓ କଂଗ୍ରେସର ଆହ୍ୱାନରେ ଲୋକେ ଦେଶ ପାଇଁ ପ୍ରାଣବଳି ଦେବାକୁ ପଶ୍ଚାଦ୍‌ପଦ ହେଉ ନ ଥିଲେ, ସ୍ୱାଧୀନତା ପରେ ପରେ ସେହି ଦଳର ନେତୃବୃନ୍ଦଙ୍କ ମନୋଭାବର ପରିବର୍ତ୍ତନ ହୋଇଥିଲା ଓ ସେମାନେ ନିଜ ନିଜର ସ୍ୱାର୍ଥପ୍ରତି ଅଧିକ ସଚେତନ ହୋଇ ଉଠିଥିଲେ ଏବଂ ଦେଶର ସମୂହ ସ୍ୱାର୍ଥ ପ୍ରତି ଭ୍ରୂକ୍ଷେପ କରି ନ ଥିଲେ । ବୋଧହୁଏ ସେଇଥିପାଇଁ ଜାତିର ଜନକ ମହାତ୍ମା ଗାନ୍ଧୀ କଂଗ୍ରେସ ନେତୃବୃନ୍ଦଙ୍କୁ ପରାମର୍ଶ ଦେଇଥିଲେ ଯେ କଂଗ୍ରେସ ଦଳକୁ ସମ୍ପୂର୍ଣ୍ଣ ଭାଙ୍ଗିଦେଇ ଏକ ନୂତନ ଦଳ ଗଠନ କରିବା ଆବଶ୍ୟକ । କିନ୍ତୁ ଅନ୍ୟମାନେ ଗାନ୍ଧିଜୀଙ୍କ ସେ ପରାମର୍ଶ ଗ୍ରହଣ କରି ନ ଥିଲେ । ତେବେ ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କଂଗ୍ରେସ ମଧ୍ୟରେ ଏକ ଶୂନ୍ୟସ୍ଥାନ ସୃଷ୍ଟି ହୋଇଯାଇଥିଲା ଆପେ ଆପେ ।

ସ୍ୱାଧୀନତା ପରେ ପରେ ଅନେକ ରାଜନୈତିକ ଦଳ ଦେଶରେ ଗଠିତ ହୋଇଥିଲା । ୧୯୫୭ ସାଧାରଣ ନିର୍ବାଚନରେ କଂଗ୍ରେସ ଦଳ କେରଳ ରାଜ୍ୟରେ ପରାଜିତ ହୋଇଥିଲା କମ୍ୟୁନିଷ୍ଟ ଦଳଙ୍କଦ୍ୱାରା ।

୧୯୬୨ର ଚୀନ ଆକ୍ରମଣର ପରିଣାମ ସ୍ୱରୂପ ଦେଶରେ ଯେଉଁ ସାମରିକ ବିପର୍ଯ୍ୟୟ ହୋଇଥିଲା, ଜନସାଧାରଣ ଅଧିକ କ୍ଷୁବ୍ଧ ହୋଇଥିଲେ ସ୍ୱାଧୀନତା ପରଠାରୁ ଶାସନ ଦାୟିତ୍ୱ ଗ୍ରହଣ କରିଥିବା କଂଗ୍ରେସ ଦଳ ଉପରେ । ତାର ପ୍ରତିକ୍ରିୟା ପ୍ରକାଶ ପାଇଥିଲା ଉତ୍ତରପ୍ରଦେଶର ଦୁଇଟି (ଆଲ୍‌ମୋରା ଓ ଫରୁକାବାଦ) ଓ ଗୁଜରାଟର ଗୋଟିଏ (ରାଜକୋଟ) ନିର୍ବାଚନମଣ୍ଡଳୀରେ ଅନୁଷ୍ଠିତ ହୋଇଥିବା ପାର୍ଲ୍ୟାମେଣ୍ଟ ପାଇଁ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ । ସେଇ ତିନୋଟି ସ୍ଥାନରେ କଂଗ୍ରେସ ପରାଜୟ ଲାଭ କରିଥିଲା ।

ଜବାହରଲାଲଙ୍କ ମୃତ୍ୟୁର ଅବ୍ୟବହିତ ପରେ ପରେ ୧୯୬୪ ମସିହାରେ 'ପ୍ରଧାନମନ୍ତ୍ରୀ' ପଦ ପାଇଁ ଅନେକ ମାତସର୍ବନ ରାଜନୀତି ପ୍ରକାଶ ପାଇଥିଲା ଓ ତତ୍ ସଙ୍ଗେ ସଙ୍ଗେ କଂଗ୍ରେସ ଦଳର ଅନ୍ତର୍ବିବାଦ ମଧ୍ୟ । "୧୯୬୪ ମସିହା ମଇ ୨୮ ତାରିଖରେ ଦିଲ୍ଲୀର ରାଜଘାଟଠାରେ ନେହେରୁଙ୍କ ଚିତାଗ୍ନି ଜଳୁଥିବା ବେଳେ ଅନ୍ୟ ପକ୍ଷରେ ତ୍ୟାଗରାଜ ମାର୍ଗସ୍ଥ ମୋରାରଜୀଙ୍କ ବାସଭବନରେ ଘମାଘୋଟ ମନ୍ତ୍ରଣା ଚାଲିଥିଲା । ମୋରାରଜୀଙ୍କ ଦୁଇ ଜଣ ଅନ୍ତରଙ୍ଗ ସମର୍ଥନକାରୀ ଶ୍ରୀ ସୁରେଶ

ଦେଶାଇ ଓ ଶ୍ରୀମତୀ ତାରକେଶ୍ୱରୀ ସିହ୍ନା ପାର୍ଲ୍ୟାମେଣ୍ଟ ସଦସ୍ୟଙ୍କ ଏକ ତାଲିକା ପ୍ରସ୍ତୁତ କରି ଦେଶାଇଙ୍କ ସମର୍ଥନକାରୀଙ୍କ ସଂଖ୍ୟା ନିରୂପଣ କରିବାରେ ଲାଗିଥିଲେ ।"* କେବଳ ଯଦି ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୁଅନ୍ତି ତାହେଲେ ପାର୍ଲ୍ୟାମେଣ୍ଟାରୀ ବୋର୍ଡ଼ର ନେତୃତ୍ୱ କରିବେ—ଲାଲବାହାଦୁର ଶାସ୍ତ୍ରୀଙ୍କ ସେ ସର୍ତ୍ତକୁ ପରିଶେଷରେ ମାନି ନିଆଯାଇଥିଲା । ସେ ବିଷମ ପରିସ୍ଥିତିରେ ଅବଶ୍ୟମ୍ଭାବୀ ନିର୍ବାଚନର ସମ୍ଭାବନାକୁ ଏଡ଼ାଇ ଦେଇ ପାରିଥିଲେ କଂଗ୍ରେସର ସଭାପତି ଶ୍ରୀ କାମରାଜ ।

କଂଗ୍ରେସର କେତେଜଣ ପୁରୁଖା ନେତା (ପରେ ଯେଉଁମାନେ ସିଣ୍ଡିକେଟ୍ ଦଳ ଗଠନ କରିଥିଲେ—ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ଓ ତାଙ୍କ ସମର୍ଥକ ଦଳ) ମାନଙ୍କ ମଧ୍ୟରେ ବହୁଦିନ ଧରି ଜମାଟ ବାନ୍ଧିଥିବା ଈର୍ଷା ହଠାତ୍ ତରଳି ଯାଇଥିଲା ଶାସ୍ତ୍ରୀଙ୍କ ମୃତ୍ୟୁ ପରେ ପରେ, ପୁଣି ପ୍ରଧାନମନ୍ତ୍ରୀ ନିର୍ବାଚନ ବେଳେ । ସେତେ-ବେଳେ ମଧ୍ୟ କାମରାଜ ପୂର୍ବଭଳି ଅକ୍ଳାନ୍ତ ପରିଶ୍ରମ କରି ସଫଳ ହୋଇଥିଲେ ଓ ନିର୍ବାଚନ ହେବାପାଇଁ ପରିସ୍ଥିତି ବାଧ୍ୟ କରିଥିଲା ଇନ୍ଦିରା ଓ ମୋରାରଜୀ ଦେଶାଇଙ୍କ ମଧ୍ୟରେ । କଂଗ୍ରେସର ସଭାପତି କାମରାଜ ଶ୍ରୀମତୀ ଇନ୍ଦିରାଙ୍କୁ ସମର୍ଥନ କରିଥିଲେ; କାରଣ "କାମରାଜ ଚିନ୍ତା କରିଥିଲେ ଯେ ଯଦି ପ୍ରଧାନମନ୍ତ୍ରୀ ଆସନରେ ସେ ଶ୍ରୀମତୀ ଗାନ୍ଧୀଙ୍କ ଭଳି ଜଣେ ରାଜନୈତିକ ଅନାଥ ଶିଶୁକୁ ଅଧିଷ୍ଠିତ କରାଇ ପାରିବେ ତାହାହେଲେ ସେ ହିଁ ନିଜେ ସବୁଦିନ ପାଇଁ ସମସ୍ତ ଅଧିକାରର ମୁଖ୍ୟ ରୂପେ ପ୍ରତିଷ୍ଠିତ ହୋଇ ରହି ପାରିବେ ।† ପରିଣାମ ସ୍ୱରୂପ କଂଗ୍ରେସ ଦଳର ଉଚ୍ଚତମ ମହଲରେ କେତେକ ଶ୍ରୀମତୀ ଗାନ୍ଧୀଙ୍କୁ ସମର୍ଥନ କରୁଥିବା ବେଳେ ଆଉ କେତେକ ମୋରାରଜୀ ଦେଶାଇଙ୍କୁ ସମର୍ଥନ ଜଣାଇଥିଲେ । ନିର୍ବାଚିତ ହୋଇ ଆସିବା ପରେ ଯେତେବେଳେ ଶ୍ରୀମତୀ ଗାନ୍ଧୀ ଭାରତର ଶାସନ ପରିଚାଳନା ପାଇଁ ଅନ୍ୟମାନଙ୍କ ପରାମର୍ଶ ପ୍ରତି ସେତେଟା ଗୁରୁତ୍ୱ ଦେଇ ନ ଥିଲେ, ସେତେବେଳେ ତାହାଙ୍କୁ ସମର୍ଥନ କରୁଥିବା ଆନ୍ତୁରି ଅନେକ ଦଳୀୟ କର୍ମକର୍ତ୍ତା, ଏପରି କି କାମରାଜ ମଧ୍ୟ କ୍ଷୁଣ୍ଣ ହୋଇଥିଲେ ।

କଂଗ୍ରେସର ଉଚ୍ଚତମ ମହଲର ଦଳାଦଳି ବହୁପୂର୍ବରୁ ଆରମ୍ଭ ହୋଇ ଯାଇଥିଲା ଏବଂ ସେହି ମତଦ୍ୱୈଧର ପ୍ରଭାବ ପ୍ରତିଫଳିତ ହୋଇଥିଲା ୧୯୬୭ ସାଧାରଣ ନିର୍ବାଚନ ବେଳେ । ଦେଶର ଛଅଟି ରାଜ୍ୟରେ କଂଗ୍ରେସଦଳ ସଂଖ୍ୟା-ଗରିଷ୍ଠତା ହାସଲ କରିପାରି ନ ଥିଲା । ୧୯୬୪ ଡିସେମ୍ବର ମାସରେ ଲୋକସଭାରେ

---

* ଶ୍ରୀ ସୂର୍ଯ୍ୟନାରାୟଣ ଦାସ—ଯୁଗନେତ୍ରୀ ଇନ୍ଦିରା—ପୃ-୧୪୬ ।

† Satindra Singh—"Indira's Rise to Supreme Power": Illustrated Weekly, 3rd Sept. 72—page-25.

କଂଗ୍ରେସର ୩୭୪ ଜଣ ସଦସ୍ୟ ଥିଲାବେଳେ ୧୯୬୭ ନିର୍ବାଚନରେ ତାହା ୨୬୭କୁ ଖସି ଆସିଥିଲା । ସେହି ନିର୍ବାଚନରେ ଯେଉଁ କେତେଜଣ ପୁରୁଖା ଗୁଟ ନେତା ପରାଜୟ ଲାଭ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ପାଟିଲ୍, କାମରାଜ, ଅତୁଲ୍ୟ ଘୋଷଙ୍କ ସମେତ ଅନ୍ୟମାନେ । ଶ୍ରୀମତୀ ଗାନ୍ଧୀଙ୍କ ଲୋକପ୍ରିୟତା ଯେପରି ଭାବରେ ବଢ଼ି ଚାଲିଥିଲା, ସେଥିରେ ନିର୍ବାଚନରେ ପରାଜୟ ଲାଭ କରିଥିବା ପ୍ରାର୍ଥୀମାନଙ୍କ ସମେତ ସଞ୍ଜୀବ ରେଡ୍ଡି ଓ ନିଜଲିଙ୍ଗପ୍ପା ପ୍ରମୁଖ ଦଳ ବଦଳକୁ ଆନ୍ତରିକ ସମର୍ଥନ କରୁ ନ ଥିଲେ ମଧ୍ୟ ମୋରାରଜୀ ଦେଶାଇଙ୍କୁ ଇନ୍ଦିରାଙ୍କ ସହକର୍ମୀ ଭାବେ ରହିବା ଉଚିତ ମନେ କରିଥିଲେ । କାରଣ ସେମାନେ ସନ୍ଧିହାନ ଥିଲେ ଯେ ପ୍ରଧାନମନ୍ତ୍ରୀ ନିର୍ବାଚନ ଯଦି କରାଯାଏ, ତା ହେଲେ କୌଣସିମତେ ସେମାନେ ମୋରାରଜୀଙ୍କୁ ଜୟଯୁକ୍ତ କରାଇ ପାରିବେ ନାହିଁ । ତେଣୁ ସଙ୍ଗଠନ ମଧ୍ୟରେ ରହି ନିଜ ଆସନ ଦୃଢ଼ କରିବା ସପକ୍ଷରେ ସେମାନେ ମତ ଦେଇଥିଲେ । ସମ୍ଭବତଃ ସେଇ କାରଣରୁ ହିଁ ଶ୍ରୀମତୀ ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳରେ ଉପପ୍ରଧାନମନ୍ତ୍ରୀ ରୂପେ ଯୋଗ ଦେଇଥିଲେ ମୋରାରଜୀ ।

କଂଗ୍ରେସ ଦଳର ଅନ୍ତର୍ବିବାଦ କ୍ରମେ ଘନୀଭୂତ ହୋଇ ଉଠିଥିଲା ଦିନକୁ ଦିନ । ତାହା ସ୍ପଷ୍ଟ ହୋଇଥିଲା ଭାରତର ତତ୍କାଳୀନ ରାଷ୍ଟ୍ରପତି ଡଃ ଜାକିର ହୁସେନ୍‌ଙ୍କର ମୃତ୍ୟୁ ପରେ ପରେ । ବାସ୍ତବରେ ଡଃ ଜାକିର ହୁସେନ୍‌ଙ୍କ ରାଷ୍ଟ୍ରପତି ନିର୍ବାଚନରେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନ ଥିଲା । ଭାରତର ପୂର୍ବତନ ପ୍ରଧାନ ବିଚାରପତି ଶ୍ରୀ କେ. ସୁବାରାଓଙ୍କୁ ବିରୋଧୀ ଦଳମାନେ ଡଃ ଜାକିର ହୁସେନ୍‌ଙ୍କ ବିରୁଦ୍ଧରେ ପ୍ରାର୍ଥୀ କରାଇଥିଲେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ଦୃଢ଼ ସମର୍ଥନ ହିଁ ଜାକିର ହୁସେନ୍‌ଙ୍କୁ ବିଜୟଫଳକ ଉପହାର ଦେଇଥିଲା । ସେ ବିଜୟ ବାସ୍ତବରେ ଥିଲା ଶ୍ରୀମତୀ ଗାନ୍ଧୀଙ୍କ ବିଜୟ ।

ଡଃ ଜାକିର ହୁସେନ୍‌ଙ୍କ ମୃତ୍ୟୁ ପରେ ପରେ କଂଗ୍ରେସର ବିରୋଧୀ ଗୋଷ୍ଠୀ ଓ ଇନ୍ଦିରାଙ୍କ ସମର୍ଥନକାରୀଙ୍କ ମଧ୍ୟରେ ସମ୍ପର୍କ ଅତ୍ୟନ୍ତ ତିକ୍ତ ହୋଇ ଉଠିଥିଲା । ପଣ୍ଡିତ ନେହେରୁଙ୍କ ପ୍ରଦର୍ଶିତ ମାର୍ଗରେ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସର ସଭ୍ୟମାନେ ଓ ସେମାନଙ୍କ ପଥରୋଧ କରୁଥିବା ସଭ୍ୟମାନଙ୍କ ମଧ୍ୟରେ ଦୀର୍ଘ ଦିନରୁ ରହିଥିବା ମତାନୈକ୍ୟ ଓ ମନୋମାଳିନ୍ୟ ଚରମ ସୀମାରେ ଉପନୀତ ହୋଇଥିଲା ।

କଂଗ୍ରେସ ପାର୍ଲ୍ୟାମେଣ୍ଟାରୀ ବୋର୍ଡ଼ ବୈଠକ ବସିଥିଲା ଜୁଲାଇ ୧୨ ତାରିଖରେ ବାଙ୍ଗାଲୋରଠାରେ । ସେତେବେଳେ ଇନ୍ଦିରାଙ୍କ ଉପରେ ଅସନ୍ତୁଷ୍ଟ ଗୋଷ୍ଠୀ—କାମରାଜ, ପାଟିଲ, ଚୌହାନ୍ ଏବଂ ମୋରାରଜୀ ସମସ୍ତେ ଭାରତର ରାଷ୍ଟ୍ରପତି ପଦ ପାଇଁ ସଞ୍ଜୀବ ରେଡ୍ଡିଙ୍କ ନାମ ପ୍ରସ୍ତାବ କରିଥିଲେ । ଅପର ପକ୍ଷରେ

ଶ୍ରୀମତୀ ଗାନ୍ଧୀ ଓ ଫକରୁଦ୍ଦିନ୍ ଅଲ୍ଲି ଅହମ୍ମଦ ଜଗଜ୍ଜୀବନ ରାମଙ୍କ ନାମ ପ୍ରସ୍ତାବ କରିଥିଲେ । ତେବେ ସଞ୍ଜୀବ ରେଡ୍ଡିଙ୍କ ସପକ୍ଷରେ ଅଧିକ ମତ (୫:୨) ପ୍ରକାଶ ପାଇଥିଲା । ସଂଖ୍ୟାଧିକ ସଦସ୍ୟଙ୍କ ନିଷ୍ପତ୍ତିକୁ ପ୍ରକାଶ୍ୟ ବିରୋଧ କରି ନ ଥିଲେ ମଧ୍ୟ ଶ୍ରୀମତୀ ଗାନ୍ଧୀ ଆନ୍ତରିକ ସମର୍ଥନ ଜଣାଇ ନ ଥିଲେ । ପାର୍ଲ୍ୟାମେଣ୍ଟାରି କଂଗ୍ରେସ ଦଳର ନେତ୍ରୀ ହିସାବରେ ଦଳର ପ୍ରତ୍ୟେକ ସଭ୍ୟଙ୍କୁ କଂଗ୍ରେସ ପ୍ରାର୍ଥୀଙ୍କୁ ନିର୍ବାଚନରେ ଜୟଯୁକ୍ତ କରାଇବା ଲାଗି ନିର୍ଦ୍ଦେଶ ବି ଦେଇ ନ ଥିଲେ, ଆହ୍ୱାନ ମଧ୍ୟ କରି ନ ଥିଲେ । ତାର କାରଣ ଥିଲା ସେ ଆନ୍ତରିକ ଭାବେ ସମର୍ଥନ ଜଣାଇଥିଲେ ନିର୍ଦ୍ଦଳୀୟ ଭାବେ ପ୍ରତିଦ୍ୱନ୍ଦିତା କରୁଥିବା ଶ୍ରୀ ଭି. ଭି. ଗିରିଙ୍କୁ ଏବଂ ତାହା ମଧ୍ୟ ଯେତେବେଳେ ସୂର୍ଯ୍ୟାଲୋକ ଭଳି ସ୍ପଷ୍ଟ ହୋଇ ଯାଇଥିଲା । ସେଥିପାଇଁ ପାର୍ଲ୍ୟାମେଣ୍ଟର ସମସ୍ତ କଂଗ୍ରେସ ସଭ୍ୟଙ୍କୁ ସେମାନେ ଯେମାନଙ୍କର ବିବେକାନୁଯାୟୀ ନିଜର ଭୋଟ ଦେବାପାଇଁ ଆହ୍ୱାନ ଜଣାଇଥିଲେ । ତାହା ହିଁ ପ୍ରକୃତ ଗଣତନ୍ତ୍ର ।

କଂଗ୍ରେସର ବିଭାଜନ ଦୃଷ୍ଟିରୁ ବାଙ୍ଗାଲୋର ଅଧିବେଶନ ଥିଲା ଗୁରୁତ୍ୱପୂର୍ଣ୍ଣ । ଉଭୟ ଗୋଷ୍ଠୀ ସେମାନଙ୍କର ଈର୍ଷାର ବହିଃପ୍ରକାଶ କରିଥିଲେ ପ୍ରତ୍ୟେକଙ୍କର ବିରୋଧୀ ଗୋଷ୍ଠୀଙ୍କ ଉଦ୍ଦେଶ୍ୟରେ ।

କଥା ପ୍ରସଙ୍ଗରେ ବାଙ୍ଗାଲୋରରୁ ଫେରିବା ପରେ ଶ୍ରୀମତୀ ଗାନ୍ଧୀ ଅଧି-ବେଶନ ସମ୍ପର୍କରେ ମତ ଦେବାକୁ ଯାଇ ଥରେ କହିଥିଲେ, "କୌଣସି କାଳେ ଜୀବନରେ ଅପମାନ ସହିବା ଉଚିତ ନୁହେଁ । ପ୍ରତ୍ୟେକେ ସେମାନଙ୍କ ଆସନର ମର୍ଯ୍ୟାଦା ରକ୍ଷା କରିବା ନିତାନ୍ତ ଆବଶ୍ୟକ । ମୁଁ ପ୍ରଧାନମନ୍ତ୍ରୀ, କିନ୍ତୁ ସେଇ ରକ୍ଷଣଶୀଳ ବ୍ୟକ୍ତିମାନେ ପ୍ରଧାନମନ୍ତ୍ରୀଙ୍କ ଅଧିକାରକୁ ଲୁଟିନେବାକୁ ଚାହୁଁଛନ୍ତି ଏବଂ ମୋତେ ଅପମାନିତ କରିବାକୁ ଚାହୁଁଛନ୍ତି । କୌଣସି ପରିସ୍ଥିତିରେ ତାହା କରାଇଦେବାକୁ ମୁଁ ଦେବି ନାହିଁ । ମୁଁ ପ୍ରଧାନମନ୍ତ୍ରୀ—ଗୋଟିଏ କାଠକଣ୍ଢେଇ ନୁହେଁ ।" † କଂଗ୍ରେସ ଦଳର ରକ୍ଷଣଶୀଳ ଲୋକଙ୍କୁ କୌଣସି ପ୍ରକାର ଗୁରୁତ୍ୱ ନ ଦେବାରେ ବାଙ୍ଗାଲୋର ଅଧିବେଶନ ଏକ ମାଇଲଖୁଣ୍ଟ । ସତୀନ୍ଦ୍ର ସିଂହ ସେଥିପାଇଁ ମତବ୍ୟକ୍ତ କରିଥିଲେ ଯେ "୧୯୬୯ ମସିହା ଜୁଲାଇ ମାସରେ ବାଙ୍ଗାଲୋରଠାରେ ଅନୁଷ୍ଠିତ ଅଖିଳ ଭାରତ କଂଗ୍ରେସ କମିଟି ଅଧିବେଶନରେ ସିଣ୍ଡିକେଟ ଗୋଷ୍ଠୀ ସହିତ ଶ୍ରୀମତୀ ଗାନ୍ଧୀଙ୍କ ସମର୍ଥକମାନଙ୍କ ମତଭେଦ ପ୍ରକାଶ ପାଇଥିଲା । ଏପରିକି ତାର ପୂର୍ବରୁ ଯେତେବେଳେ ସାମାଜିକ ସ୍ତରରେ ବିଭିନ୍ନ ରାଜନୈତିକ କାର୍ଯ୍ୟକଳାପକୁ କେନ୍ଦ୍ରକରି

---

† ତେଜା ବଚନ :—"ଇନ୍ଦିରା ଏକ ଅନ୍ତରଙ୍ଗ ଅଧ୍ୟୟନ"—ଧର୍ମଯୁଗ, ୧୩ ଅଗଷ୍ଟ ୧୯୭୨, ପୃଷ୍ଠା-୫୦ ।

ବିଶୃଙ୍ଖଳା ସୃଷ୍ଟି ହୋଇଥିଲା, ସେତେବେଳେ ଶ୍ରୀମତୀ ଗାନ୍ଧୀ ମଧ୍ୟ ମୋରାରଜୀ ଦେଶାଇଙ୍କ ସହ ତାଙ୍କର ମତପାର୍ଥକ୍ୟ ପ୍ରକାଶ କରି ପାରିଥିଲେ ।"*

ଶ୍ରୀମତୀ ଗାନ୍ଧୀଙ୍କୁ ଯେଉଁମାନେ ସାହାଯ୍ୟ ଓ ସମର୍ଥନ କରୁଥିଲେ ଓ ତାଙ୍କ ସହିତ ସେଉଁମାନେ ପାଦ ମିଳାଇ ଚାଲୁଥିଲେ, ସେମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ଶ୍ରୀମତୀ ନନ୍ଦିନୀ ଶତପଥୀ, ଚନ୍ଦ୍ରଜିତ ଯାଦବ, ଭି. କେ. ରଘୁନାଥ ରେଡ୍ଡି, ଚନ୍ଦ୍ରାମଣି ମାଣିଗ୍ରାହୀ, ଅର୍ଜୁନ ଆରୋରା, ଚନ୍ଦ୍ରଶେଖର, ମୋହନ ଧାରିଆ ଓ ଅନ୍ୟମାନେ । "ସେମାନେ ମୋରାରଜୀ ଦେଶାଇଙ୍କୁ ପ୍ରକାଶ୍ୟ ଭାବରେ ପାର୍ଲ୍ୟାମେଣ୍ଟ ଭିତରେ ଓ ବାହାରେ ଆକ୍ରମଣାତ୍ମକ ସମାଲୋଚନା କରିବା ଆରମ୍ଭ କରି ଦେଇଥିଲେ । ତାଙ୍କର ବ୍ୟକ୍ତିଗତ ସେକ୍ରେଟେରୀ ଟନ୍‌ସେ ଓ ଏକମାତ୍ର ପୁତ୍ର କାନ୍ତି ଦେଶାଇଙ୍କ କୁକର୍ମର ଜୀବନ୍ତ ବିବରଣୀ ସେମାନେ ପ୍ରତି କଥାରେ ଉଦାହରଣ ଦେଉଥିଲେ ।"†

ବାଙ୍ଗାଲୋର ଅଧିବେଶନରୁ ଦିଲ୍ଲୀ ଫେରିଆସିବା ପରେ ପରେ ଶ୍ରୀମତୀ ଗାନ୍ଧୀ ତାଙ୍କର ସମସ୍ତ ଶକ୍ତି ବିନିଯୋଗ କରିଥିଲେ ନିଜ ଦଳ ପୁନର୍ଗଠନରେ । ସେତେବେଳକୁ ଭାରତର ରାଷ୍ଟ୍ରପତି ପଦ ପାଇଁ ମନେ ମନେ ଠିକ୍ କରି ନେଇଥିଲେ ତତ୍କାଳୀନ କାର୍ଯ୍ୟକାରୀ ରାଷ୍ଟ୍ରପତି ଶ୍ରୀଯୁକ୍ତ ଗିରିଙ୍କୁ । ଜୁଲାଇ ୧୬ ତାରିଖରେ ମୋରାରଜୀ ଦେଶାଇଙ୍କଠାରୁ ଅର୍ଥ ମନ୍ତ୍ରଣାଳୟ ନିଜ ହାତକୁ ନେବା ଫଳରେ ସେ ୧୯ ତାରିଖରେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲେ ଏବଂ ସେହିଦିନ ମଧ୍ୟ ଶ୍ରୀ ଭି. ଭି. ଗିରି ଉପରାଷ୍ଟ୍ରପତି ପଦରୁ ଇସ୍ତଫା ଦେଇଥିଲେ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀ ହେବା ଲାଗି । ସମଗ୍ର ଦେଶରେ ରାଜନୈତିକ ବାତାବରଣ ଉତ୍ତେଜିତ ହୋଇପଡ଼ିଥିଲା ।

ନିର୍ବାଚନ ହୋଇଥିଲା ।

୧୯୬୯ ଅଗଷ୍ଟ ୧୯ ତାରିଖରେ ନିର୍ବାଚନରେ ଭାରତ ଭଳି ଏକ ବୃହତ୍ତମ ରାଷ୍ଟ୍ରର ରାଷ୍ଟ୍ରପତି ରୂପେ ନିର୍ବାଚିତ ହୋଇଥିଲେ ବରାହ ଭେଙ୍କଟ ଗିରି ।

ବାସ୍ତବିକ୍ ତାହା ଗିରିଙ୍କ ବିଜୟ ନ ଥିଲା—ଥିଲା ଇନ୍ଦିରାଙ୍କ ଚରମ ବିଜୟ, ଇନ୍ଦିରାଙ୍କ ସମର୍ଥକମାନଙ୍କ ବିଜୟ ।

କିନ୍ତୁ ଏହି ବିଜୟ ପରେ ପରେ କଂଗ୍ରେସ ଦଳ ଭିତରେ ଅନେକ ଦିନରୁ ରହିଥିବା ଗୋଷ୍ଠୀବିବାଦ ଲେଲିହାନ ଶିଖା ନେଇ ଜଳି ଉଠିଥିଲା । ଶ୍ରୀଯୁକ୍ତ ଗିରିଙ୍କ ନିର୍ବାଚନ ଫଳ ଘୋଷିତ ହେବାର ଦୁଇ ଦିନ ପରେ ଅଗଷ୍ଟ ୨୨ ତାରିଖରେ ପୂର୍ବତନ ପ୍ରଧାନମନ୍ତ୍ରୀ ଲାଲବାହାଦୁରଙ୍କ ପୁତ୍ର ହରିକିଶନ୍‌ଙ୍କ ବାସଗୃହରେ ୧୩୦ ଜଣ ପାର୍ଲ୍ୟାମେଣ୍ଟ ସଦସ୍ୟ ଏକତ୍ର ହୋଇଥିଲେ ଓ ଶ୍ରୀମତୀ ଗାନ୍ଧୀଙ୍କ ବିରୋଧରେ ପ୍ରକାଶ୍ୟ

* & † An critile—"Indira rises to supreme Power" Illustrated Weekly, 3rd Sept 1972—Page-27.

ସ୍ୱର ଉତ୍ତୋଳନ କରିବାପାଇଁ ନିଷ୍ପତ୍ତି ନେଇଥିଲେ । ଅନ୍ୟ ପକ୍ଷରେ ୬୮ ଜଣ ସଦସ୍ୟ ସଞ୍ଜୀବାୟାଙ୍କ ଘରେ ଏକଜ ହୋଇ ସେମାନଙ୍କ ସମର୍ଥନ ଶ୍ରୀମତୀ ଗାନ୍ଧୀଙ୍କ ପକ୍ଷରେ ରହିଛି ବୋଲି ପ୍ରକାଶ କରିଥିଲେ ।

ସେ ପ୍ରକାର ଅବସ୍ଥାଓ୍ୱା ମଧ୍ୟରେ ମଧ୍ୟ ଶ୍ରୀମତୀ ଗାନ୍ଧୀ ଦେଶର ଶାସନ-କ୍ଷେତ୍ରରେ କୌଣସି ପ୍ରକାର ଦୁର୍ବଳତା ପସନ୍ଦ କରି ନ ଥିଲେ; ତେଣୁ ମନ୍ତ୍ରିମଣ୍ଡଳର ପରିବର୍ତ୍ତନ ସେ ଚାହିଁଥିଲେ । ତାଙ୍କର କେତେଜଣ ସ୍ୱଳ୍ପ ଅଭିଜ୍ଞ ସହକର୍ମୀଙ୍କୁ ମନ୍ତ୍ରିମଣ୍ଡଳରୁ ଅପସରି ଯିବା ଲାଗି ଅନୁରୋଧ କରିଥିଲେ । ଦେଶରେ ସେ ପ୍ରକାର ରାଜନୈତିକ ପରିସ୍ଥିତି ଭିତରେ ଏ ପ୍ରକାର ପଦକ୍ଷେପ ବାସ୍ତବିକ ତାଙ୍କର ସାହସିକ କାର୍ଯ୍ୟକଳାପର ପ୍ରକୃଷ୍ଟ ପ୍ରମାଣ ।

ଶ୍ରୀମତୀ ଗାନ୍ଧୀ ଚାହୁଁ ନ ଥିଲେ ତାଙ୍କ ନିଜ ଦଳ ମଧ୍ୟରେ ସେପରି ଏକ ଅସ୍ଥିର ବାତାବରଣ ଦୀର୍ଘଦିନ ଧରି ଲାଗିରହୁ । ତେଣୁ ନଭେମ୍ବର ପହିଲା ଦିନ କଂଗ୍ରେସ କାର୍ଯ୍ୟକାରୀ ଦଳର କେତେକ ସଦସ୍ୟ, ଯେଉଁମାନେ ତାହାଙ୍କୁ ସମର୍ଥନ କରୁଥିଲେ, ତାଙ୍କ ବାସଭବନରେ ଏକଜ ହୋଇ ନିଷ୍ପତ୍ତି କରିଥିଲେ ଯେ ଚାରି ଦିନ ପରେ ନଭେମ୍ବର ୫ ତାରିଖ ୧୯୬୯ ମସିହାଠାରୁ ସେମାନଙ୍କ ଏକ ସ୍ୱତନ୍ତ୍ର ଅଫିସ୍ କରିବେ ଏବଂ ୨୨/୨୩ ତାରିଖରେ କଂଗ୍ରେସର ଏକ ସାଧାରଣ ଅଧିବେଶନ ଆହୂତ ହେବ ।

ଅନ୍ୟ ଦିଗରେ ନିଜଲିଙ୍ଗାପ୍ପାଙ୍କ ବାସଭବନରେ ଆଉ କେତେ ଜଣ କଂଗ୍ରେସ ସଦସ୍ୟ ଏକଜ ହୋଇଥିଲେ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଲାଗି । ତେବେ ତାର ସାତ ଦିନ ପରେ ଶ୍ରୀ ନିଜଲିଙ୍ଗାପ୍ପା ଓ ଶ୍ରୀମତୀ ଗାନ୍ଧୀଙ୍କ ସହିତ ଆଲୋଚନା ହୋଇଥିଲା ମଧ୍ୟାହ୍ନ ଭୋଜନ ସମୟରେ—ଘନୀଭୂତ ହୋଇଥିବା କୁହୁଡ଼ିର ଅପସାରଣ ଲାଗି । କିନ୍ତୁ ସେ ଆଲୋଚନା ବ୍ୟର୍ଥ ହୋଇଥିଲା । ଫଳରେ ନଭେମ୍ବର ୧୧ ତାରିଖରେ ଶ୍ରୀମତୀ ଗାନ୍ଧୀଙ୍କୁ କଂଗ୍ରେସର ପ୍ରାଥମିକ ସଭ୍ୟ ପଦରୁ ମଧ୍ୟ ବହିଷ୍କୃତ କରାଯାଇ ତା ପରଦିନ କାର୍ଯ୍ୟକାରୀ କମିଟିରୁ ଅନ୍ତର କରାଯାଇଥିଲା ଏବଂ କଂଗ୍ରେସ ପାର୍ଲ୍ୟାମେଣ୍ଟାରୀ ଦଳର ନୂଆ ନେତା ନିର୍ବାଚନ ଲାଗି ସ୍ଥିର ହୋଇଥିଲା । ତାର ଦୁଇ ଦିନ ପରେ ଯେତେବେଳେ କଂଗ୍ରେସର ପାର୍ଲ୍ୟାମେଣ୍ଟାରୀ ଦଳ ନୂତନ ନେତା ନିର୍ବାଚନ ଲାଗି ଏକଜ ହୋଇଥିଲେ, ଅତି ଆଶ୍ଚର୍ଯ୍ୟଜନକ ଭାବେ ଶ୍ରୀମତୀ ଗାନ୍ଧୀଙ୍କ ସପକ୍ଷରେ ଅଧିକାଂଶ ସଭ୍ୟଙ୍କ ଆସ୍ଥା ଥିବା କଥା ପ୍ରକାଶ ପାଇଥିଲା ।

ତା ପରେ ପରେ ସ୍ୱେଚ୍ଛାରେ ଶ୍ରୀ ଜଗ୍‌ଜୀବନ ରାମ ଓ ଶ୍ରୀ ... ... ଶ୍ରୀ ଫୁନାଚା କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲେ ବିରୋଧୀ କଂଗ୍ରେସ ସହିତ ହାତ ମିଳାଇବା ପାଇଁ ।

ପୂର୍ବନିର୍ଦ୍ଧାରଣ ଅନୁଯାୟୀ ନଭେମ୍ବର ୨୨-୨୩ ରେ କଂଗ୍ରେସର ଅଧି-ବେଶନ ଅନୁଷ୍ଠିତ ହୋଇଥିଲା ଓ ନିଜଲିଙ୍ଗାପ୍ପାଙ୍କ ସ୍ଥାନରେ ନୂତନ ଅସ୍ଥାୟୀ ସଭାପତି ଭାବେ ସି. ସୁବ୍ରମଣ୍ୟମ୍ ନିର୍ବାଚିତ ହୋଇଥିଲେ । ତାପରେ ୧୯୬୯ ମସିହା ଡିସେମ୍ବର ୨୬, ୨୭ ଓ ୨୮ରେ କ୍ଷମତାସୀନ କଂଗ୍ରେସର ଏକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ବମ୍ବେଠାରେ । ଶ୍ରୀ ଜଗଜ୍ଜୀବନରାମ ସଭାପତି ନିର୍ବାଚିତ ହୋଇଥିଲେ । ସେତେବେଳେ ତାହାଙ୍କ ଦଳର ନାମ କଂଗ୍ରେସ (ଆର) ରଖାଯାଇ ପରେ ପୁଣି କଂଗ୍ରେସ (ଜେ) ଭାବେ ପରିଚିତ ହୋଇଥିଲା ।

୧୯୬୯ ଡିସେମ୍ବର ଶେଷ ସହିତ ପୁରାତନ କଂଗ୍ରେସର ବିଭାଜନ ମଧ୍ୟ ଶେଷ ହୋଇଯାଇଥିଲା । ଇନ୍ଦିରାଙ୍କ ଗୋଷ୍ଠୀ ଓ ତାଙ୍କ ବିରୋଧୀ ଗୋଷ୍ଠୀ ପ୍ରସ୍ତୁତ ହୋଇ ଯାଇଥିଲେ ନିକଟ ଭବିଷ୍ୟତରେ ଅନୁଷ୍ଠିତ ହେବାକୁ ଥିବା ୧୯୭୧ ଓ ୧୯୭୨ ର ସାଧାରଣ ନିର୍ବାଚନ ପାଇଁ ।

**ପଞ୍ଚମ ଲୋକସଭା :—**

ଭାରତର ରାଷ୍ଟ୍ରପତି ୧୯୭୦ ମସିହା ଡିସେମ୍ବର ମାସ ୨୯ ତାରିଖରେ ଏକ ଆଦେଶନାମା ବଳରେ, ଦେଶରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଲାଗି ପାର୍ଲ୍ୟାମେଣ୍ଟ ଭାଙ୍ଗି ଦେଇଥିଲେ ।

ସେତେବେଳେ କଂଗ୍ରେସର କେତେକ ପୁରାତନ ନେତା· ବିରୋଧୀଦଳ ସହିତ ସ୍ୱର ମିଳାଇ ଆପତ୍ତି ଉଠାଇଥିଲେ ଯେ—ଏକ ଜନମଙ୍ଗଳ ରାଷ୍ଟ୍ରରେ ସରକାର ଗଣତନ୍ତ୍ର ବିରୋଧୀ କାର୍ଯ୍ୟ କରିଚାଲିଛି, ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଅନୁଭବ କରିଥିଲେ ବାସ୍ତବରେ ଯେ ଆପତ୍ତିଗୁଡ଼ିକର ଉତ୍ତର ଦେଶର ଜନସାଧାରଣ ହିଁ ଦେବା ଆବଶ୍ୟକ ।† ସେଥିପାଇଁ ଦେଶରେ ଏକ ନୂତନ· ନିର୍ବାଚନ କରାଇ ଜନମତ ସଂଗ୍ରହ କରିବା ଲାଗି ସେ ଦୃଢ଼ପରିକର ହୋଇଥିଲେ । ସେ ମନେକରିଥିଲେ ଗଣତାନ୍ତ୍ରିକ ପନ୍ଥା ଅନୁକରଣ କରି ସେ ଯେଉଁ ସମାଜବାଦୀ କାର୍ଯ୍ୟକ୍ରମଗୁଡ଼ିକୁ ରୂପ· ଦେବାକୁ ଚାହୁଁଛନ୍ତି, ଜନସାଧାରଣଙ୍କର ସେଥିରେ ସମର୍ଥନ ଅଛି କି ନା ତାହା ଅବହିତ ହେବା ଆବଶ୍ୟକ । ତେଣୁ କଂଗ୍ରେସ ଦଳର ସେକ୍ରେଟାରୀ ଶ୍ରୀ ଏଚ. ଏନ୍ ବହୁଗୁଣା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ସମ୍ବନ୍ଧୀୟ ଘୋଷଣା ପ୍ରକାଶ କରି କହିଥିଲେ ଯେ, ''ଯଦିଓ କଂଗ୍ରେସଦଳ ଆହୁରି ଗୋଟିଏ ବର୍ଷ କ୍ଷମତାରେ ରହି ପାରିଥାନ୍ତେ ତଥାପି ସରକାରଙ୍କ ବିଭିନ୍ନ କାର୍ଯ୍ୟକଳାପଗୁଡ଼ିକ ପାଇଁ ଜନସମର୍ଥନ ଅଛି କି ନାହିଁ ତାହା ଜାଣିବା ପାଇଁ ନିର୍ବାଚନ ଅନୁଷ୍ଠିତ ହେବ । ''ଯେଉଁମାନେ

---

† କଂଗ୍ରେସର ଅସନ୍ତୁଷ୍ଟ ଗୋଷ୍ଠୀ ସେତେବେଳେ ବିରୋଧୀଦଳ ସହିତ ହାତ ମିଳାଇଥିଲେ ଏବଂ ଶ୍ରୀମତୀ ଗାନ୍ଧୀଙ୍କ କାର୍ଯ୍ୟକଳାପରି ବିରୋଧ କରୁଥିଲେ ।

ଭାରତୀୟ କଂଗ୍ରେସ ଓ ଶ୍ରୀମତୀ ଗାନ୍ଧୀ କେବଳ କ୍ଷମତାଲିପ୍ସୁ ବୋଲି ବାରମ୍ବାର ଚିତ୍କାର କରି ମଧ୍ୟ କ୍ଳାନ୍ତ ଅନୁଭବ କରୁ ନ ଥିଲେ, ସେମାନଙ୍କ ପାଇଁ ସେ ଘୋଷଣା ହିଁ ଯଥାର୍ଥ ଉତ୍ତର ।"†

ଏକ ଆଶୁ ନିର୍ବାଚନ କରାଇ ଦେଶର ଜନସାଧାରଣଙ୍କ ସମର୍ଥନ ଜାଣିବା ପାଇଁ ରାଷ୍ଟ୍ରପତିଙ୍କୁ ପ୍ରସ୍ତାବ ଦେଇଥିଲେ ଶ୍ରୀମତୀ ଗାନ୍ଧୀ ଏବଂ ରାଷ୍ଟ୍ରପତି ସେ ପ୍ରସ୍ତାବ ଗ୍ରହଣ କରି ପାର୍ଲ୍ୟାମେଣ୍ଟକୁ ଭାଙ୍ଗି ଦେବା ପାଇଁ ଏକ ଆଦେଶନାମା ଜାରି କରିଥିଲେ ।

୧୯୭୧ ମସିହାର ପଞ୍ଚମ ଲୋକସଭା ନିର୍ବାଚନ ବାସ୍ତବରେ ଥିଲା ଗୋଟିଏ ପ୍ରଶ୍ନର ନିର୍ବାଚନ—ଜନସାଧାରଣ ଦେଶରେ ଶ୍ରୀମତୀ ଇନ୍ଦିରାଙ୍କ ନେତୃତ୍ୱ ଚାହୁଁଥିଲେ କି ନା ? ସେ ପ୍ରଶ୍ନ କେବଳ ଭାରତର ଜନତାଙ୍କ ଲାଗି ନ ଥିଲା, ଭାରତର ବିଭିନ୍ନ ରାଜନୈତିକ ଦଳ ଯେଉଁମାନେ ଗଣତନ୍ତ୍ରରେ ବିଶ୍ୱାସ କରୁଥିଲେ ଓ ବିଶ୍ୱାସ କରୁଥିଲେ ସମାଜବାଦରେ—ସେମାନଙ୍କ ପାଇଁ ମଧ୍ୟ ଥିଲା ।

ଫେବୃୟାରୀ ଓ ମାର୍ଚ୍ଚ ମାସରେ ଦେଶସାରା ନିର୍ବାଚନରେ ସମଗ୍ର ଜନତା ଶ୍ରୀମତୀ ଇନ୍ଦିରାଙ୍କ ସପକ୍ଷରେ ରାୟ ଦେଇଥିଲେ । ୫୧୮ ଜଣ ସଦସ୍ୟବିଶିଷ୍ଟ ଲୋକ-ସଭାରେ ଇନ୍ଦିରାଙ୍କ ସମର୍ଥନକାରୀ ସଦସ୍ୟ ଥିଲେ ୩୫୩ ଜଣ । ସବୁଠାରୁ ଉଲ୍ଲେଖ-ଯୋଗ୍ୟ ଘଟଣା ଥିଲା ଶ୍ରୀମତୀ ଗାନ୍ଧୀଙ୍କ ସମର୍ଥିତ ପ୍ରାର୍ଥୀମାନଙ୍କୁ ପରାଜିତ କରିବା ପାଇଁ ବିରୋଧୀ କଂଗ୍ରେସ, ଜନସଂଘ ଓ ସୋସାଲିଷ୍ଟ ଏକ ନିଦଳୀୟ ମେଣ୍ଟ କରିଥିଲେ ମଧ୍ୟ ନିର୍ବାଚନରେ କେବଳ ମୋରାରଜୀ, କାମରାଜ ଓ ଅଟଳବିହାରୀ ବାଜପେୟୀଙ୍କ ବ୍ୟତୀତ ଅନ୍ୟ ସମସ୍ତ ତୁଙ୍ଗ ନେତା ପରାଜିତ ହୋଇଥିଲେ । ସେଥିପାଇଁ ଶ୍ରୀ ଏଚ. ଏନ. ପଣ୍ଡିତ ମତବ୍ୟକ୍ତ କରିଥିଲେ, "The election of 1971 high lighted a person and no ideology."*

ଶ୍ରୀମତୀ ଇନ୍ଦିରାଙ୍କୁ ଜନସାଧାରଣଙ୍କ ସେ ବିପୁଳ ସମର୍ଥନର କାରଣ ଓ ତାଙ୍କ ବିଜୟ ସମ୍ପର୍କରେ ସେ ମତ ଦେଇଥିଲେ ଯେ, "ସମ୍ଭବତଃ ଭାରତୀୟ ନାରୀମାନଙ୍କ ଉଦ୍ଦୀପନା ଏହି ନିର୍ବାଚନରେ ବିଶେଷ ଉଲ୍ଲେଖଯୋଗ୍ୟ ଏବଂ ତାହାହିଁ ଶ୍ରୀମତୀ ଗାନ୍ଧୀ ଓ ତାଙ୍କ ଦଳର ବିଜୟର କାରଣ ।"*

କଂଗ୍ରେସର ନିର୍ବାଚନ ଇସ୍ତାହାରରେ ପ୍ରକାଶ ପାଇଥିଲା ଯେ କୌଣସି ମତେ ଦେଶରୁ ଦାରିଦ୍ର୍ୟ ଦୂର କରିବାକୁ ହେବ । ଜନସାଧାରଣଙ୍କ ମଧ୍ୟରେ

---

† J. S. Bright—Indira Gandhi—P 161.

** Caravan—January 72. H. N. Pandit, In Retrospect—Page-12-13.

ରହିଥିବା ଅର୍ଥନୈତିକ ବୈଷମ୍ୟ ଦୂର କରିବା ସଙ୍ଗେ ସଙ୍ଗେ ଦେଶରେ ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବାକୁ ହେବ । ଅନ୍ୟ କଥାରେ କହିବାକୁ ଗଲେ କଂଗ୍ରେସର ମୂଳମନ୍ତ୍ର ଥିଲା 'ଗରିବୀ ହଟାଓ' ।

ଦେଶରୁ ଦାରିଦ୍ର୍ୟ ହଟାଇବା ପାଇଁ ଯେଉଁ ବିଭିନ୍ନ ପନ୍ଥା ଗ୍ରହଣ କରିବା ନିମନ୍ତେ ପଥ ଚିହ୍ନିତ କରାଯାଇଥିଲା, ସେଗୁଡ଼ିକ ହେଲା ବ୍ୟାଙ୍କ୍ ଜାତୀୟକରଣ ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଅର୍ଥନୈତିକ ପଦକ୍ଷେପ, ବେକାରମାନଙ୍କୁ କର୍ମନିଯୁକ୍ତି, ଦେଶରେ ସବୁଜ ବିପ୍ଳବ ପାଇଁ କ୍ଷେତ୍ର ପ୍ରସ୍ତୁତି, ବଡ଼ ବଡ଼ ଶିଳ୍ପ କାରଖାନା ଓ ଅର୍ଥନୈତିକ ଅନୁଷ୍ଠାନ (ଇନ୍‌ସୁରାନ୍‌ସ କମ୍ପାନୀ)ମାନଙ୍କୁ ଜାତୀୟକରଣ, ଅନ୍ତର୍ଦେଶୀୟ ବାଣିଜ୍ୟ କାରବାରକୁ ସରକାରୀ ସ୍ତରରେ ପରିଚାଳନା କରିବା ଇତ୍ୟାଦି କାର୍ଯ୍ୟକ୍ରମ ପର୍ଯ୍ୟାୟଭୁକ୍ତ ।

ଦେଶର ଜନସାଧାରଣଙ୍କ ମଧ୍ୟରେ ଅର୍ଥନୈତିକ ବୈଷମ୍ୟ ଦୂରୀକରଣ କରି ଦେଶରେ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ କଂଗ୍ରେସ ଦଳ ଯେଉଁ ପ୍ରତିଶ୍ରୁତି ଦେଇଥିଲା ଓ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦେଶସାରା ନିର୍ବାଚନ ପ୍ରଚାର ବେଳେ ଯେଉଁ ଘୋଷଣା କରିଥିଲେ, ତାହା ରୂପ ନେଇଥିଲା ରାଜାରାଜୁଡ଼ାଙ୍କ ହାତଖର୍ଚ୍ଚି ଉଚ୍ଛେଦ କରାଇବା ସମ୍ପର୍କରେ ପାର୍ଲ୍ୟାମେଣ୍ଟରେ ଗୃହୀତ ପ୍ରସ୍ତାବ ରୂପେ । ନିର୍ବାଚନ ସଭାମାନଙ୍କରେ ଶ୍ରୀମତୀ ଇନ୍ଦିରା ପ୍ରକାଶ କରିଥିଲେ ତାଙ୍କର ପ୍ରଗତିମୂଳକ କାର୍ଯ୍ୟକ୍ରମ-ଗୁଡ଼ିକରେ ଯେଉଁ କେତେକ ପ୍ରତିବନ୍ଧକ ସୃଷ୍ଟି ହେଉଛି ପ୍ରଥମେ ସେଗୁଡ଼ିକୁ ଦୂର କରିବାକୁ ପଡ଼ିବ ଏବଂ ସେଗୁଡ଼ିକ ମଧ୍ୟରୁ ପ୍ରଧାନ ଓ ପ୍ରଥମ ଥିଲା ଲୋକସଭାରେ ଦୁଇ-ତୃତୀୟାଂଶ ସଭ୍ୟଙ୍କ ସମର୍ଥନ । ଚତୁର୍ଥ ଲୋକସଭାରେ ତାଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲେ ମଧ୍ୟ ସମ୍ବିଧାନ ଆନୁଯାୟୀ କେତେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବାବେଳେ ଉଭୟ କକ୍ଷର ଦୁଇ-ତୃତୀୟାଂଶ ସମର୍ଥନ ପାଇପାରୁ ନ ଥିଲେ । ତେଣୁ ସେ ଜନତାଙ୍କୁ ଆହ୍ୱାନ ଦେଇ କହିଥିଲେ ଯେ, ତାଙ୍କ ଦଳ ମନ୍ତ୍ରିମଣ୍ଡଳ ଗଠନ କଲେ ପ୍ରଥମେ ସମ୍ବିଧାନର କେତେକ ଧାରା ଅଦଳବଦଳ କରାଇବାକୁ ହେବ, ଏଥିପାଇଁ ଯେ ସେମାନଙ୍କ କାର୍ଯ୍ୟକଳାପ ଉପରେ କଷ୍ଟି ନ କାଲେ ଯେପରି ସମ୍ବିଧାନ ପ୍ରତିବନ୍ଧକ ସୃଷ୍ଟି କରିପାରିବ ନାହିଁ ସେଥିପାଇଁ ଜନତାଙ୍କ ସମର୍ଥନ ଆବଶ୍ୟକ ।

୧୯୭୧ ମସିହାରେ କଂଗ୍ରେସର ଯେଉଁ ନିର୍ବାଚନ ଇସ୍ତାହାର ପ୍ରକାଶ ପାଇଥିଲା, ସେଥିରେ ପ୍ରକାଶ ପାଇଥିଲା ଯେ କଂଗ୍ରେସ ବ୍ୟକ୍ତିଗତ ସମ୍ପତ୍ତି ଅଧିକାରକୁ ଜନତାଙ୍କ ହାତରୁ ଛଡ଼ାଇ ନେବାପାଇଁ ଇଚ୍ଛା କରୁ ନ ଥିଲା; ତେବେ ସହରାଞ୍ଚଳ ସମ୍ପତ୍ତି ଉପରେ ସୀମା ନିର୍ଦ୍ଧାରଣ କରାଯିବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ସମ୍ପତ୍ତିର ପରିମାଣକୁ ସୀମାବଦ୍ଧ କରିବା ସମ୍ପର୍କରେ ପଦକ୍ଷେପ ନିଆଯିବା ଲାଗି ପ୍ରତିଶ୍ରୁତି ଦେଇଥିଲା । ଦେଶର ସଂଖ୍ୟାଲଘୁ ସମ୍ପ୍ରଦାୟ ପ୍ରତି ଯଥେଷ୍ଟ ସମ୍ମାନ ଦିଆଯିବା

ସଙ୍ଗେ ସଙ୍ଗେ ସେମାନଙ୍କ ଧନଜୀବନର ସୁରକ୍ଷା କରାଯିବା, ଜନସାଧାରଣଙ୍କ ଶାନ୍ତିପୂର୍ଣ୍ଣ ଜୀବନଯାପନ ପାଇଁ ଦେଶରେ ଚାଲିଥିବା ହିଂସାତ୍ମକ ଓ ଅସାମାଜିକ କାର୍ଯ୍ୟକଳାପଗୁଡ଼ିକୁ ଦୃଢ଼ଭାବରେ ଦମନ କରାଯିବା ପାଇଁ ଚେଷ୍ଟା କରିବା ପ୍ରତିଶ୍ରୁତି ମଧ୍ୟ ସେଥିରେ ପ୍ରକାଶ ପାଇଥିଲା ।

ଶ୍ରୀମତୀ ଇନ୍ଦିରାଙ୍କ ଏସ ଆହ୍ୱାନର ସନ୍ତୋଷଜନକ ଉତ୍ତର ଦେଇଥିଲେ ଜନସାଧାରଣ । ତାହାଙ୍କ ନେତୃତ୍ୱକୁ ଗ୍ରହଣ କରିଥିବା କଂଗ୍ରେସର କ୍ଷମତାସୀନ ଦଳ ୧୯୭୧ରେ ଅନୁଷ୍ଠିତ ହୋଇଥିବା ପଞ୍ଚମ ଲୋକସଭାରେ ଦୁଇ-ତୃତୀୟାଂଶରୁ ଅଧିକସଂଖ୍ୟକ ସ୍ଥାନ ଅଧିକାର କରିଥିଲେ । ପଞ୍ଚମ ଲୋକସଭାର ପ୍ରଥମ ଅଧିବେଶନ ମାର୍ଚ୍ଚ ୧୯୭୧ରେ ଆରମ୍ଭ ହେବା ବେଳକୁ ଲୋକସଭାରେ ଥିଲେ କଂଗ୍ରେସ—୩୫୨, ବିରୋଧୀ କଂଗ୍ରେସ—୧୬, ସ୍ୱତନ୍ତ୍ର—୮, ଜନସଂଘ—୨୨, ମୁସଲିମ୍ ଲିଗ୍—୪, କମ୍ୟୁନିଷ୍ଟ—୨୩, କମ୍ୟୁନିଷ୍ଟ ମାର୍କସବାଦୀ—୨୫, ପ୍ରଜା-ସମାଜବାଦୀ—୨, ସଂଯୁକ୍ତ ସୋସାଲିଷ୍ଟ—୪, ଦ୍ରାବିଡ଼-ମୁନେତ୍ରା-କାଜାଗମ୍—୨୩, ଅନ୍ୟାନ୍ୟ ଦଳ ଓ ସ୍ୱାଧୀନ—୮ ।

ଏହିପରି ମୋଟ ୫୧୮ ସଭ୍ୟଙ୍କ ମଧ୍ୟରେ କଂଗ୍ରେସ ଦଳ ଦେଶର ଶାସନ ଦାୟିତ୍ୱ ଗ୍ରହଣ କରିଥିଲା । ନୂତନ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା ମାର୍ଚ୍ଚ ୧୮ ତାରିଖଦିନ ।

## ୧୯୭୧ ଗୋଟିଏ ସମ୍ବତ୍ସର—

ଅର୍ଥନୈତିକ କ୍ଷେତ୍ରରେ କେତେକ ଗୁରୁତ୍ୱପୂର୍ଣ୍ଣ ନୈମ୍ତିକ ସମାଜବାଦୀ ପଦକ୍ଷେପ ନେଇସାରିବା ପରେ ଭାରତର ଗୋଟିଏ ବିଖ୍ୟାତ ପତ୍ରିକାର ସମ୍ପାଦକ ଶ୍ରୀ ଖୁସ୍‌ୱନ୍ତ ସିଂହଙ୍କ ସହିତ ଏକ ସାକ୍ଷାତ୍କାର ବେଳେ ଶ୍ରୀମତୀ ଇନ୍ଦିରା ମତବ୍ୟକ୍ତ କରିଥିଲେ ଯେ ବ୍ୟାଙ୍କ ଜାତୀୟକରଣ, ରାଜାରାଜୁଡ଼ାଙ୍କ ହାତଖର୍ଚ୍ଚ ଉଚ୍ଛେଦ, ପୁରାତନ I.C. S. ଅଫିସରମାନଙ୍କ ପଦବୀ ଉଚ୍ଛେଦ ଇତ୍ୟାଦି କେବଳ ଗୋଟିଏ ଗୋଟିଏ ସମାଜବାଦୀ ସୂଚନାତ୍ମକ ମୂଲ୍ୟ (Symbolic value) ନୁହେଁ, ତାହା ଦେଶର ଅର୍ଥନୈତିକ ସମୃଦ୍ଧି ଦିଗରେ ମଧ୍ୟ ଦେଶବାସୀଙ୍କୁ ସାହାଯ୍ୟ କରିବ ।

"I do not agree that these steps were only of symbolic value—certainly not. It has been a big step forward. I would not even describe the abolition of princely purses as only of symbolic significance."†

† Illustrated Weekly—13th August, 1972—P-12

୨୮ ଜୁଲାଇ ୧୯୭୧ ମସିହାରେ କେନ୍ଦ୍ର ଆଇନମନ୍ତ୍ରୀ ଶ୍ରୀ ଗୋଖଲେ ୨୪ ଓ ୨୫ତମ ସମ୍ବିଧାନ ସଂଶୋଧନ ବିଠା ଲୋକସଭାରେ ଆଗତ କରିଥିଲେ । ୨୪ତମ ସଂଶୋଧନ ବିଲ୍‌ର ଉଦ୍ଦେଶ୍ୟ ଥିଲା ସମ୍ବିଧାନର ମୌଳିକ ଅଧିକାର ତାଲିକା (୩ୟ ଧାରା) ଓ ସମ୍ବିଧାନ ସଂଶୋଧନର ପ୍ରଣାଳୀ (୩୬୮ ଧାରା)ର ସଂଶୋଧନ । ଭାରତର ସୁପ୍ରିମକୋର୍ଟ ଗୋଲକନାଥ ମକଦ୍ଦମାର ରାୟ ଦେଇ କହିଥିଲେ ଯେ, ସମ୍ବିଧାନର ମୌଳିକ ଅଧିକାର ସମ୍ପର୍କୀୟ ଧାରାବଳୀର ପରିବର୍ତ୍ତନ ବା ସଂଶୋଧନ ପାର୍ଲ୍ୟାମେଣ୍ଟ କରିପାରିବେ ନାହିଁ । ସେ ରାୟ ପରେ ପରେ ଦେଶରେ ସମାଜବାଦୀ କାର୍ଯ୍ୟକ୍ରମଗୁଡ଼ିକ ସଂପ୍ରସାରିତ କରିବା ପାଇଁ ପଥରୁଦ୍ଧ ହୋଇଯାଇଥିବା ଅନୁଭବ କରିଥିଲେ ଶ୍ରୀମତୀ ଗାନ୍ଧୀ । ତେଣୁ ସେ ଚାହିଁଥିଲେ ସମ୍ବିଧାନର ସଂଶୋଧନ ପ୍ରଣାଳୀକୁ ପ୍ରଥମେ ସଂଶୋଧନ କରାଯିବା ଆବଶ୍ୟକ ଏବଂ ସେ ଆବଶ୍ୟକତା ପୂରଣ କରିବାପାଇଁ ୨୪ତମ ସଂଶୋଧନ ପ୍ରସ୍ତାବ ଆଗତ କରାଯିବାର ଉଦ୍ଦେଶ୍ୟ ଥିଲା ।

ସେହି ୨୪ତମ ସମ୍ବିଧାନ ସଂଶୋଧନ ବିଠା ବିପୁଳ ସମର୍ଥନ ଲାଭ କରି ଅଗଷ୍ଟ ୨ ତାରିଖ ୧୯୭୧ ମସିହାରେ ଲୋକସଭାରେ ଗୃହୀତ ହୋଇଯାଇଥିଲା । ତାର ସପକ୍ଷରେ ୩୮୪ ଜଣ ମତ ଦେଇଥିବାବେଳେ ବିପକ୍ଷରେ ମତ ଦେଇଥିଲେ ମାତ୍ର ୨୩ ଜଣ । ଲୋକସଭାରେ ୨୩ ସଭ୍ୟଙ୍କ ସମର୍ଥନ ପାଇ ଗୃହୀତ ହୋଇ-ଯାଇବା ପରେ ପରେ ରାଜ୍ୟସଭାରେ ମଧ୍ୟ ତଦନୁରୂପେ ତାହା ଗୃହୀତ ହୋଇଥିଲା ଏବଂ ଅର୍ଦ୍ଧାଧିକ ରାଜ୍ୟର ବିଧାନସଭା ସେହି ବିଠା ସପକ୍ଷରେ ମତ ଦେଇଥିଲେ । ଶେଷରେ ତାହା ନଭେମ୍ବର ୫ ତାରିଖରେ ରାଷ୍ଟ୍ରପତିଙ୍କ ସ୍ୱୀକୃତି ଲାଭ କରିଥିଲା ଓ ସେହିଦିନଠାରୁ କାର୍ଯ୍ୟକାରୀ ହୋଇଥିଲା । ତା' ଫଳରେ ସମ୍ବିଧାନର ଯେ କୌଣସି ଧାରାକୁ ପରିବର୍ତ୍ତନ କରିବା ଅଧିକାର ପାର୍ଲ୍ୟାମେଣ୍ଟ ଲାଭ କରିଥିଲା ।

ପରିଣାମ ସ୍ୱରୂପ ୨୫ତମ ଓ ୨୬ ତମ ସଂଶୋଧନ ବିଠାଗୁଡ଼ିକୁ ଆଇନରେ ପରିଣତ କରିବା ପାଇଁ ପଥ ପରିଷ୍କାର ହୋଇଯାଇଥିଲା । କାରଣ ୨୫ ତମ ସଂଶୋଧନ ଆଇନର ମୁଖ୍ୟ ଉଦ୍ଦେଶ୍ୟ ଥିଲା– ସମାଜରେ ଅର୍ଥନୈତିକ ସମତା ରକ୍ଷା କରିବା ଲାଗି କାର୍ଯ୍ୟପନ୍ଥା ଗ୍ରହଣ କରିବା । ସେଥିପାଇଁ ମୌଳିକ ସମ୍ପତ୍ତି ଅଧିକାର ସମ୍ପର୍କୀୟ ସମ୍ବିଧାନର ୩୧ ଧାରାକୁ ପରିବର୍ତ୍ତନ କରିବା ଆବଶ୍ୟକ । ଭାରତରେ ଜନସାଧାରଣଙ୍କ ସମ୍ପତ୍ତିର ସୀମା ନିର୍ଦ୍ଧାରଣ ବିଷୟ ନେଇ ଆଲୋଚନା କଲାବେଳେ-ଇଲଷ୍ଟ୍ରେଟେଡ୍ ଉଇକ୍‌ଲିର ସମ୍ପାଦକ ଶ୍ରୀମତୀ ଗାନ୍ଧୀଙ୍କୁ କହିଥିଲେ ଯେ ଭାରତରେ ଯେତେ ଜମିହୀନ ଲୋକ ଅଛନ୍ତି, ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ପରିମାଣରେ ଉଦ୍‌ବୃତ୍ତ ଜମି ଯୋଗାଇ ଦିଆଯାଇ ପାରିବ ନାହିଁ । ସେହି ପ୍ରସଙ୍ଗରେ ଶ୍ରୀମତୀ ଗାନ୍ଧୀ ଉତ୍ତର ଦେଇଥିଲେ, "ଯେ କୌଣସିମତେ ସାଧାରଣ ଜନତାଙ୍କ ବୁଦ୍ଧିବୋଧ ହେବା ଏକାନ୍ତ ଆବଶ୍ୟକ ଯେ, ଧନୀ ଓ ଦରିଦ୍ର ମଧ୍ୟରେ ଥିବା ପ୍ରଭେଦକୁ ଦୂର କରିବା

ଲାଗି ସରକାର ଯଥାସାଧ୍ୟ ଉଦ୍ୟମ କରୁଛୁ । ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବା ଦିଗରେ ବୀଜବପନ କରିବାଲାଗି ଏହା ଗୋଟିଏ ଦିଗ ।

୨୫ତମ ସମ୍ବିଧାନ ସଂଶୋଧନର ଛଠା ସପକ୍ଷରେ ଶ୍ରୀମତୀ ଗାନ୍ଧୀ ଓ ତାଙ୍କର ସହକର୍ମୀମାନେ ଦୃଢ଼ ମତପୋଷଣ କରିଥିବାବେଳେ ଗାନ୍ଧୀଜୀଙ୍କ ଅନ୍ୟତମ ସହକର୍ମୀ ଚକ୍ରବର୍ତ୍ତୀ ରାଜଗୋପାଲାଚାରୀ, ଜନସଂଘ ନେତା ଶ୍ରୀ ଅଟଳବିହାରୀ ବାଜପେୟୀ, ବରିଷ୍ଠ ଆଇନଜ୍ଞ ଶ୍ରୀ ଏନ. ଏ. ପାଲ୍‌କିୱାଲା, ଏମ୍‌. ସି. ଶୀତଲବାଦ୍‌, କେ. ସାନ୍ତାନମ୍‌ ଓ ଅନ୍ୟମାନେ ତାର ବିରୋଧରେ ମତପ୍ରକାଶ କରିଥିଲେ । ତା ସତ୍ତ୍ୱେ ତାହା ପାର୍ଲ୍ୟାମେଣ୍ଟର ଉଭୟ ସଦନରେ ଗୃହୀତ ହୋଇଥିଲା ।

ସମ୍ବିଧାନର ୨୬ତମ ସଂଶୋଧନ ଆଇନ ଲୋକସଭାରେ ଉପସ୍ଥାପନ କରାଯାଇଥିଲା ୧୯୭୦ ମସିହା ଡିସେମ୍ବର ୨ ତାରିଖରେ । ତାହା ବାସ୍ତବିକ୍ ଥିଲା ଜନସାଧାରଣଙ୍କ ବହୁଦିନରୁ ଆକାଙ୍‌କ୍ଷିତ ସଂଶୋଧନ ପ୍ରସ୍ତାବ—ରାଜାରାଜୁଡ଼ାଙ୍କ ହାତପାଣ୍ଠି ଉଚ୍ଛେଦ ସହ ଅଯଥା ଅନେକ ସ୍ୱତନ୍ତ୍ର ସୁଯୋଗ ସୁବିଧା ପାଉଥିବାରୁ ଅବ୍ୟାହତି ଦେବା ସଂକ୍ରାନ୍ତ ଏକ ଆଇନ । ପ୍ରକୃତରେ ତାହା ଅନେକ ପୂର୍ବରୁ ଲୋକସଭାରେ ଆଗତ ହୋଇଥିଲେ ମଧ୍ୟ ତାହା ବିରୁଦ୍ଧରେ ସୁପ୍ରିମକୋର୍ଟରେ ଏକ ରିଟ୍ ଆବେଦନ କରାଯାଇଥିବାରୁ ସେ ସମ୍ପର୍କରେ ଆଲୋଚନା ସ୍ଥଗିତ ରଖି ଦିଆଯାଇଥିଲା । ୨୪ତମ ସଂଶୋଧନ ଆଇନ ଗୃହୀତ ହୋଇଯିବା ପରେ ପରେ ପ୍ରଗତିର ରାଜପଥରୁ ସମସ୍ତ ସାମ୍ବିଧାନିକ ପ୍ରତିବନ୍ଧକ ଆପେ ଆପେ ଦୂର ହୋଇଯାଇଥିଲା । ୨୬ତମ ସଂଶୋଧନ ପ୍ରସ୍ତାବ ପାର୍ଲ୍ୟାମେଣ୍ଟର ଉଭୟ ସଭାରେ ଗୃହୀତ ହୋଇ ଓ ରାଷ୍ଟ୍ରପତିଙ୍କ ସ୍ୱୀକୃତି ପାଇ ଆଇନରେ ପରିଣତ ହୋଇଯାଇଥିଲା । ସେହିଦିନଠାରୁ ରାଜା-ମହାରାଜାମାନଙ୍କର ସ୍ୱତନ୍ତ୍ର ସୁବିଧା ସୁଯୋଗ ବିଲୋପ କରି ଦିଆଯାଇଥିଲା ଏବଂ ସେମାନେ ଭାରତର ସାଧାରଣ ଜନତାଙ୍କ ସହିତ ସମାନ ହୋଇଯାଇଥିଲେ । ପାକିସ୍ଥାନ ଯୁଦ୍ଧରେ ବିଜୟକୁ ବାଦ୍ ଦେଲେ ତାହା ଥିଲା ଶ୍ରୀମତୀ ଇନ୍ଦିରାଙ୍କ ସେ ବର୍ଷର ଚରମ ସଫଳତା ।

**ଶାନ୍ତିର କପୋତ :—**

ଭାରତୀୟ ବୈଦେଶିକ ନୀତିର ଏକ ପ୍ରଧାନ ଲକ୍ଷ୍ୟ ହେଲା, ପୃଥିବୀର ଅନ୍ୟ ସବୁ ରାଷ୍ଟ୍ର ସହ ଉତ୍ତମ ସଂହତି ରକ୍ଷା କରିବା ସଙ୍ଗେ ସଙ୍ଗେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରିବା । ଶ୍ରୀମତୀ ଇନ୍ଦିରାଙ୍କ ଭାଷାରେ—"Our foreign policy rejected any hegemony and sought to promote equality, friendship and peaceful co-existence among nations. This

policy has been categorised as non-alignment."† ଅନ୍ୟ ଭାଷାରେ କହିବାକୁ ଗଲେ ଭାରତର ବୈଦେଶିକ ନୀତି 'ଶାନ୍ତିପୂର୍ଣ୍ଣ ସହାବସ୍ଥାନ' ଉପରେ ହିଁ ପ୍ରଧାନତଃ ଆଧାରିତ ।

ଭାରତ ପୃଥିବୀର ଅନ୍ୟ ବୃହତ୍ ଶକ୍ତିମାନଙ୍କ ସହିତ ସମ୍ପର୍କ ରକ୍ଷା କରିବାକୁ ଗଲାବେଳେ ଆନ୍ତର୍ଦେଶୀୟ ସ୍ୱାର୍ଥରକ୍ଷା କରିବା ସଙ୍ଗେ ସଙ୍ଗେ ଦେଶର ସ୍ୱାର୍ଥ ଲାଗି ନିର୍ଦ୍ଧାରିତ ନୀତିଗୁଡ଼ିକ ଯେପରି କୌଣସି ଭାବେ ବ୍ୟାହତ ବା ପ୍ରଭାବିତ ହେବ ନାହିଁ, ସେଥିପ୍ରତି ବିଶେଷ ନଜର ଦେଇଥାଏ । ସେ ଦୃଷ୍ଟିରୁ ଦେଖିବାକୁ ଗଲେ ସୋଭିଏତ୍ ରୁଷର ନିରପେକ୍ଷ ନୀତି ଭାରତର ନେତୃବୃନ୍ଦଙ୍କ ସମର୍ଥନ ଲାଭ କରିବା ସ୍ୱାଭାବିକ କଥା । ତା ବ୍ୟତୀତ ସୋଭିଏତ୍ ରୁଷର ଜନସାଧାରଣ ଭାରତୀୟ ଜନସାଧାରଣଙ୍କ ସାମାଜିକ ଓ ଅର୍ଥନୈତିକ ପ୍ରଗତି ଲାଗି ଇଚ୍ଛା କରୁଥିବା ଦୃଷ୍ଟିରୁ ମଧ୍ୟ ଭାରତ ସରକାର ତଥା ଜନସାଧାରଣ ସୋଭିଏତ୍ ରୁଷ ସହିତ ସମ୍ପର୍କ ରକ୍ଷା ଲାଗି ଆଗ୍ରହୀ । ଅନ୍ୟ ପକ୍ଷରେ ସୋଭିଏତ୍ ରୁଷ ସରକାରଙ୍କ ବୈଦେଶିକ ନୀତି ଭାରତ ପ୍ରତି ସୁସମ୍ପର୍କ ରକ୍ଷା କରିବାଲାଗି ଆଗ୍ରହୀ ଥିବା ଦୃଷ୍ଟିରୁ ଓ ସେ ପ୍ରକାର ନୀତି ଭାରତର ଜାତୀୟ ସ୍ୱାର୍ଥରକ୍ଷା ଦୃଷ୍ଟିରୁ କୌଣସି ପ୍ରତିକୂଳ ବାତାବରଣ ସୃଷ୍ଟି ନ କରି ବରଂ ଅନେକ କ୍ଷେତ୍ରରେ ସହାୟକ ହୋଇଥିବାରୁ ଉଭୟ ଦେଶ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା କରାଯାଇ ପାରିଥିବା ସ୍ୱାଭାବିକ କଥା । ଅତୀତରେ ପୃଥିବୀର ଅନେକ ସମସ୍ୟାରେ ଭାରତ ଯେଉଁ ମତପୋଷଣ କରିଥିଲା ଓ ନୀତି ଅବଲମ୍ବନ କରିଥିଲା, ସୋଭିଏତ୍ ରୁଷ ମଧ୍ୟ ଅନୁରୂପ ପନ୍ଥା ଗ୍ରହଣ କରିଥିଲା । ତେଣୁ ଉଭୟ ଦେଶର ବୈଦେଶିକ ନୀତିରେ ଅନେକାଂଶ ସାମଞ୍ଜସ୍ୟ ରହିଥିବା ସ୍ପଷ୍ଟ । ଭାରତର ଜଣେ ପୂର୍ବତନ ବୈଦେଶିକମନ୍ତ୍ରୀ ଶ୍ରୀ ଦିନେଶ ସିଂଙ୍କ ଭାଷାରେ—"It is this inter action of policies of the two countries that has over the years, brought them together. The friendship between two countries has also fashioned a deep economic relationship which has brought them closer together."*

ପୃଥିବୀର ଏକ ବୃହତ୍ତମ ଶକ୍ତି ରୁଷ ସହିତ ଭାରତର ସୁସମ୍ପର୍କ ଅନେକ ଦିନରୁ ରହିଆସିଛି । ତାର ପରିଣାମ ସ୍ୱରୂପ ଦୁଇ ଦେଶର ଉତ୍ତମ ବନ୍ଧୁତା ଅନେକ କ୍ଷେତ୍ରରେ ଉଭୟ ଦେଶପାଇଁ ସହାୟକ ହୋଇଛି । ତେବେ ଭାରତର ଅର୍ଥନୈତିକ ବିକାଶ ଦିଗରେ ସୋଭିଏତ୍ ରୁଷର ସାହାଯ୍ୟ ବିଶେଷ ଉଲ୍ଲେଖନୀୟ ଓ ତାତ୍ପର୍ଯ୍ୟପୂର୍ଣ୍ଣ

† Competition Success Review—Sept. 73—Page 11.
* Illustrated Weekly—2nd, July 1972—Page-12.

ମଧ୍ୟ । ଅନ୍ୟ ପକ୍ଷରେ ପୃଥିବୀର ଆଉ ଏକ ବୃହତ୍ତମ ରାଷ୍ଟ୍ର ଓ ବୃହତ୍ତ୍ ଶକ୍ତି ଆମେରିକା ଭାରତ ସହିତ ଯେତେଟା ସମ୍ପର୍କ ରକ୍ଷା କରିପାରି ନ ଥିବାର କାରଣ—"ସମଗ୍ର ଏସିଆ ଏବଂ ଆଫ୍ରିକାରେ ଯୁକ୍ତରାଷ୍ଟ୍ର ଆମେରିକା ମୁକ୍ତିକାମୀ ଆନ୍ଦୋଳନଗୁଡ଼ିକର ବିରୋଧୀ—ଯେଉଁ ନୀତିକୁ ଭାରତ ପୂର୍ଣ୍ଣପ୍ରାଣରେ ସମର୍ଥନ କରିଥାଏ ଏବଂ (ସେମାନେ) ଭାରତର ବୈଦେଶିକ ନୀତି ତଥା ଦେଶୀୟ ନୀତିଗୁଡ଼ିକର ବିରୋଧୀ । ତେଣୁ ଉଭୟ ଦେଶର ନୀତିଗତ ମିଳନସ୍ଥଳର ପ୍ରଶ୍ନ ନାହିଁ ।"†

କିନ୍ତୁ ଭାରତ ପାଇଁ ସାମ୍ୟବାଦ ବା ଅଣ-ସାମ୍ୟବାଦର ପ୍ରଶ୍ନ ବିଶେଷ ଜରୁରୀ ନୁହେଁ । ଭାରତ ଚାହେଁ ସମଗ୍ର ପୃଥିବୀରୁ ଔପନିବେଶବାଦର ବିଲୋପ, ନିରସ୍ତ୍ରୀକରଣ—ନିରପେକ୍ଷ ଭାବେ ରହିବା ସଙ୍ଗେ ସଙ୍ଗେ ପୃଥିବୀରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରିବା । ପ୍ରତ୍ୟେକ ଦେଶ ସ୍ୱାଧୀନ ହୋଇ ରହିବା ସଙ୍ଗେ ସଙ୍ଗେ ପରସ୍ପରକୁ ସାହାଯ୍ୟ କରିବା ଓ ସମଗ୍ର ପୃଥିବୀର ଜନଗଣଙ୍କ ମଧ୍ୟରେ ସୁସମ୍ପର୍କ ସ୍ଥାପନ କରିବା ଭାରତର ଲକ୍ଷ୍ୟ । ବୋଧହୁଏ ଆମେରିକାର ତତ୍କାଳୀନ ରାଷ୍ଟ୍ରପତି, ପୃଥିବୀର ଶାନ୍ତିକାମୀ ଶ୍ରୀଯୁକ୍ତ କେନେଡ଼ି ତାହା ଯଥାର୍ଥରେ ଅନୁଭବ କରିଥିଲେ ଏବଂ ୧୯୬୨ ମସିହାରେ ମତପ୍ରକାଶ କରିଥିଲେ, "The most powerful single force in the world to-day is neither Communism nor Capitalism, neither H-bomb nor the guided missile. It is man's eternal desire to be free and independent" *

କିନ୍ତୁ ବର୍ତ୍ତମାନ ଆମେରିକାର ବୈଦେଶିକ ନୀତି ଭାରତର ବୈଦେଶିକ ନୀତିର ପରିପନ୍ଥୀ ।

ଅନ୍ୟ ଦିଗରେ ୧୯୭୧ ମସିହା ଅଗଷ୍ଟ ନଅ ତାରିଖରେ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରାଙ୍କ ଉଦ୍ୟମରେ ଏକ ନୂତନ ପ୍ରତିବେଶୀ ଭାବେ ଜନ୍ମ ନେବାକୁ ଥିବା ବଙ୍ଗଳାଦେଶର ମୁକ୍ତିସଂଗ୍ରାମଜନିତ ଏକ ଅସ୍ଥିର ବାତାବରଣ ଭାରତରେ ଲାଗିରହିଥିବା ବେଳେ ଭାରତ ସୋଭିଏତ୍ ରୁଷ ସହିତ ଏକ ଦୀର୍ଘମିଆଦୀ ଚୁକ୍ତି-ଦୀର୍ଘ ୨୦ ବର୍ଷ ଲାଗି ଉଭୟ ଦେଶ ମଧ୍ୟରେ ଶାନ୍ତି ଓ ପରସ୍ପରର ବନ୍ଧୁତା କ୍ଷେତ୍ରରେ ସହଯୋଗିତା ତଥା ମହୁଦସ୍ୱତା ନାମ ସ୍ୱାକ୍ଷର କରିଥିଲା । ତାହା ଥିଲା ସମଗ୍ର ପୃଥିବୀ ପାଇଁ ଏକ ଆଲୋଡ଼ନକାରୀ ସମ୍ବାଦ । ଉଭୟ ଦେଶ ମଧ୍ୟରେ ବନ୍ଧୁତାର ପରିସର ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଉଭୟ ଦେଶର ଜନସାଧାରଣ ଯେପରି ଶାନ୍ତିପୂର୍ଣ୍ଣ ଭାବେ ଜୀବନଯାପନ କରିପାରିବେ, ସେଥିପାଇଁ ପରସ୍ପର ପରସ୍ପରକୁ ସହାୟକ ହେବାଲାଗି ସେଥିରେ ଉଲ୍ଲେଖ ରହିଥିଲା । ଉଭୟ ଦେଶର ଏକ ବୈଦେଶିକ

---

† & * India & World—By Dinesh Singh.

ନୀତ—ସମଗ୍ର ଏସିଆରେ ତଥା ପୃଥିବୀରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ସମ୍ମିଳିତ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ଔପନିବେଶିବାଦ ଲୋପ କରିବା ମଧ୍ୟ ସେ ଚୁକ୍ତିର ଲକ୍ଷ୍ୟ ଥିଲା । ଦେଶ ଦେଶ ମଧ୍ୟରେ ବିରୋଧଭାବକୁ ଶାନ୍ତିପୂର୍ଣ୍ଣ ଉପାୟରେ ସମାଧାନ କରିବା ଦିଗରେ ଆସ୍ଥା ସ୍ଥାପନ କରାଯାଇଥିଲା । କୌଣସି ଦେଶ ଉପରେ ତୃତୀୟ ପକ୍ଷ ଉପରୁ ସାମରିକ ଆକ୍ରମଣ ହେଲେ କିମ୍ବା ଦେଶର ସାଧାରଣ ସାମାଜିକ ଜୀବନଧାରା ବ୍ୟାହତ ହେଲେ ଅନ୍ୟ ପକ୍ଷ ସାମରିକ ସାହାଯ୍ୟ ତଥା ଅନ୍ୟ ସମସ୍ତ ପ୍ରକାର ସାହାଯ୍ୟ ଦେବାଲାଗି ମଧ୍ୟ ସେଥିରେ ବ୍ୟବସ୍ଥା ଥିଲା । ସେଇ ଦୀର୍ଘମିଆଦୀ ଚୁକ୍ତିରେ ଭାରତ ପକ୍ଷରୁ ବୈଦେଶିକମନ୍ତ୍ରୀ ସର୍ଦ୍ଦାର ସ୍ୱରଣ ସିଂହ ଓ ରୁଷ ପକ୍ଷରୁ ବୈଦେଶିକମନ୍ତ୍ରୀ ମିଃ ଗ୍ରୋମିକୋ ସ୍ୱାକ୍ଷର କରିଥିଲେ ।

ରୁଷ ସହିତ ସେ ପ୍ରକାର ଏକ ଦୀର୍ଘମିଆଦୀ ଚୁକ୍ତି କରିବା ଫଳରେ ପୃଥିବୀର ବିଭିନ୍ନ ଦେଶରେ ଏକ ଶିଥିଳ ଶିହରଣ ସୃଷ୍ଟି ହୋଇଥିଲା । ଆମେରିକାରେ ମତ-ପ୍ରକାଶ ପାଇଥିଲା ଯେ ଭାରତ-ପାକିସ୍ଥାନ-ବଙ୍ଗଳାଦେଶ ସମସ୍ୟାରେ ଭାରତ ଯେଉଁ ନୀତି ଗ୍ରହଣ କରିଥିଲା ସେଇଥିପାଇଁ ସେ ଏକାନ୍ତ ନିଃସଙ୍ଗତା ଅନୁଭବ କରୁଥିବା ଯୋଗୁଁ ତାର ନିରାପତ୍ତା ବିପନ୍ନ ହେବା ଆଶଙ୍କା କରି ସେ ରୁଷ ସହିତ ସେଭଳି ଏକ ରାଜିନାମାରେ ସ୍ୱାକ୍ଷର କରିବା ବ୍ୟତୀତ ଅନ୍ୟ କୌଣସି ଉପାୟ ନ ଥିଲା ।

ସେତେବେଳକୁ ବଙ୍ଗଳାଦେଶର ମୁକ୍ତି ସଂଗ୍ରାମ ଜୋରସୋର୍‌ରେ ଆରମ୍ଭ ହୋଇ ଯାଇଥିଲା ଏବଂ ପ୍ରଧାନମନ୍ତ୍ରୀ ଇନ୍ଦିରାଙ୍କ ନେତୃତ୍ୱରେ ଭାରତ ସେ ମୁକ୍ତି ସଂଗ୍ରାମକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରିଥିଲା । କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକା ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ପରୋକ୍ଷରେ ପାକିସ୍ଥାନକୁ ବିଭିନ୍ନ ଦିଗରୁ ସାହାଯ୍ୟ ଦେଉଥିଲା । ତେଣୁ ସେ ପ୍ରକାର ମତପୋଷଣ କରିବା ବିରୁଦ୍ଧରେ କୌଣସି ଯୁକ୍ତି ଥାଇ ନ ପାରେ । ତେବେ ଅନୁରୂପ ବିଭିନ୍ନ ମତ ଆଉ କେତେ ଦେଶରୁ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଦେଶ ମଧ୍ୟରେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ ଅନେକ ଧ୍ୱନି ଶୁଣାଯାଇଥିଲା । କେତେକ ବିରୋଧୀଦଳ ସେ ଚୁକ୍ତିନାମା ପରେ ପରେ ସମାଲୋଚନା କରି କହିଥିଲେ ଯେ ଶ୍ରୀମତୀ ଇନ୍ଦିରା ଜଣେ କମ୍ୟୁନିଷ୍ଟ କିମ୍ବା କମ୍ୟୁନିଷ୍ଟଙ୍କ ଅନ୍ତରଙ୍ଗ । ଭାରତରେ କମ୍ୟୁନିଷ୍ଟ ଶାସନ ପ୍ରଚଳନ କରାଇବା ଲାଗି ସେ ଇଚ୍ଛା କରୁଥିଲେ । ତାର ସପକ୍ଷରେ ପ୍ରମାଣ ଦେବାକୁ ଯାଇ ସେମାନେ ମତ ପୋଷଣ କରିଥିଲେ ଯେ, ଏକ କମ୍ୟୁନିଷ୍ଟ ରାଷ୍ଟ୍ର ରୁଷ ସହିତ ଏତେଟା ଘନିଷ୍ଠ ସମ୍ପର୍କ ରକ୍ଷା କରିବାର ପରିଣାମ ସ୍ୱରୂପ ସେମାନେ ସେମାନଙ୍କ ଚିନ୍ତାଧାରାରେ ଏ ଦେଶର ଶାସକଙ୍କୁ ଓ ଶାସନକଳକୁ ପ୍ରଭାବିତ କରିବା ସୁଯୋଗ ପାଇବେ ।

ଦୂରଦୃଷ୍ଟିସମ୍ପନ୍ନ ନେହେରୁ ପରିବାର ସହିତ ଘନିଷ୍ଟ ଓ ଗାନ୍ଧିଜୀଙ୍କ ଜଣେ ଅନ୍ତରଙ୍ଗ ସହକର୍ମୀ ଆଚାର୍ଯ୍ୟ ବିନୋବା ଭାବେ ଦେଶରେ ଉଠିଥିବା ସେ

ସମାଲୋଚନା ସ୍ୱରର ପ୍ରତିବାଦ କରି ୧୯୭୨ ମସିହା ଜାନୁୟାରୀ ୧୬ ତାରିଖରେ ଇନ୍ଦୋରଠାରେ ମତପ୍ରକାଶ କରିଥିଲେ"ସମସ୍ତ ରାଜନୈତିକ ଭିତ୍ତିଭୂମି, ଶିକ୍ଷାଗତ ଯୋଗ୍ୟତା, ଭାରତୀୟ ଇତିହାସ, ସଂସ୍କୃତି, ଐତିହ୍ୟ ସମ୍ପର୍କରେ ଯଥେଷ୍ଟ ଜ୍ଞାନ ଥିବା ଓ ବିଶେଷ କରି ଶାନ୍ତିନିକେତନରେ ଶିକ୍ଷାଲାଭ କରିଥିବା ଶ୍ରୀମତୀ ଗାନ୍ଧୀ ଭାରତକୁ ଏକ କମ୍ୟୁନିଷ୍ଟ ରାଷ୍ଟ୍ରରେ ପରିଣତ କରିବା ଲାଗି ଯେ ଅଗ୍ରସର ହେବେ, ତାହା ମୁଁ ଚିନ୍ତା ମଧ୍ୟ କରିପାରୁ ନାହିଁ ।" ପୁଣି ସେ ଭାରତ-ସୋଭିଏତ୍ ଦୀର୍ଘମିଆଦୀ ଚୁକ୍ତି ସମ୍ପର୍କରେ ନିଜ ମତ ପ୍ରକାଶ କରି କହିଥିଲେ, "ଯଦି ଏହି ଚୁକ୍ତିନାମା ଯୋଗୁଁ ଆମ୍ଭେମାନେ ରୁଷମାନଙ୍କ ପକେଟକୁ ଖସିଯାଉ ତାହେଲେ ପ୍ରମାଣିତ ହେବ ଯେ ଆମ୍ଭେମାନେ ପରମ ବୋକା । କିନ୍ତୁ ଶ୍ରୀମତୀ ଗାନ୍ଧୀ ଏତେ ପରିମାଣରେ ବୋକା ହୋଇପାରନ୍ତି ବୋଲି ମୁଁ ଚିନ୍ତାକରେ ନାହିଁ ।"†

□ □ □

---

† ସନ୍ଥ ବିନୋବା ଭାବେ ଇନ୍ଦୋରଠାରେ ଦେଇଥିବା ଉଦ୍‌ବୋଧନର ଅଂଶବିଶେଷ ।

॥ ଉଣେଇଶ ॥

# ଏକ ନୂତନ ପ୍ରତିବେଶୀ



ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଯାହା ସମଗ୍ର ଏସିଆରେ ନବ ଜାଗରଣ ସୃଷ୍ଟି କରିଥିଲା ତାହା ଥିଲା ଭାରତର ସ୍ୱାଧୀନତା । ୧୯୪୭ ମସିହାରେ ଗାନ୍ଧିଜୀଙ୍କ ଅଖଣ୍ଡ ଭାରତ ଦୁଇଟି ଦେଶ : ଭାରତ ଓ ପାକିସ୍ଥାନ ଏବଂ ତିନୋଟି ଭୂଖଣ୍ଡରେ ପରିଣତ ହୋଇଥିଲା—ଭାରତ, ପୂର୍ବ-ପାକିସ୍ଥାନ ଓ ପଶ୍ଚିମ-ପାକିସ୍ଥାନ । ଇଂରେଜଙ୍କ ଉଚିତମ ମହଲଦ୍ୱାରା ପୋତ୍ସାହିତ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ସ୍ୱପ୍ନ ସାର୍ଥକ ହୋଇଥିଲା । ଭାରତରୁ ଅନେକ ମୁସଲମାନ ଅଲଗା ହୋଇ ପାକିସ୍ଥାନ ଗଠନ କରିଥିଲେ ।

ପାକିସ୍ଥାନର ଦୁଇଟି ଭୂଖଣ୍ଡ•ପୂର୍ବ-ବଙ୍ଗ ଓ ପଶ୍ଚିମ-ପାକିସ୍ଥାନ ମଧ୍ୟରେ ପ୍ରଥମତଃ ଭୌଗୋଳିକ ସୁସମ୍ପର୍କ ନ ଥିଲା । କାରଣ ଗୋଟିଏ ଭୂଖଣ୍ଡ ଅନ୍ୟଟିଠାରୁ ଦୀର୍ଘ ଏକ ହଜାର ମାଇଲରୁ ଅଧିକ ଦୂରରେ ଥିଲା ଓ ଉଭୟ ଭୂଖଣ୍ଡ ମଧ୍ୟରେ ସ୍ଥଳଭାଗଦ୍ୱାରା ସଂଯୋଗପଥ ମଧ୍ୟ ନ ଥିଲା । ପୁନଶ୍ଚ ଉଭୟ ଭୂଖଣ୍ଡର ଜନସାଧାରଣଙ୍କ ମଧ୍ୟରେ ଭାଷା, ସଂସ୍କୃତି ଏବଂ ଐତିହ୍ୟଗତ ପାର୍ଥକ୍ୟ ବହୁତ ବେଶୀ । ଅସିତକୁମାର ସେନ୍‌ଙ୍କ ମତରେ, "ପାକିସ୍ଥାନ ସୃଷ୍ଟି ହେବା ବେଳଠାରୁ ହିଁ ଅନେକ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଭୌଗୋଳିକ ଦୃଷ୍ଟିରୁ ପାକିସ୍ଥାନର ଉଭୟ ଭୂଖଣ୍ଡ ଏକହଜାର ମାଇଲରୁ ଅଧିକ ଦୂରତ୍ୱ ରଖି ପରସ୍ପରଠାରୁ ବିଚ୍ଛିନ୍ନ ହୋଇଥିଲେ । ପୂର୍ବ ଓ ପଶ୍ଚିମ ପାକିସ୍ଥାନର ଜନଗଣଙ୍କ ମଧ୍ୟରେ ଭାଷାଗତ, ସଂସ୍କୃତିଗତ ତଥା ପରମ୍ପରାଗତ ପାର୍ଥକ୍ୟମାନ ରହିଥିଲା । † ତେଣୁ ସ୍ୱାଧୀନତା ପରେ ପରେ ପାକିସ୍ଥାନର ଉଭୟ ଭୂଖଣ୍ଡକୁ ଏକ ଶାସନାଧୀନ ରଖାଯିବା ଏକ ସମସ୍ୟା ରୂପେ ଦଣ୍ଡାୟମାନ ହୋଇଥିଲା ।

---

† International Relations since World War-1—P-624

ସ୍ୱାଧୀନତାର ପ୍ରାକ୍‌କାଳରେ ଏବଂ ଠିକ୍ ପରବର୍ତ୍ତୀ କାଳରେ ମଧ୍ୟ ଭାରତ ଓ ପାକିସ୍ଥାନରେ ହିନ୍ଦୁ-ମୁସଲମାନମାନଙ୍କ ମଧ୍ୟରେ ଜାତିଭେଦଜନିତ ଯେଉଁ ତିକ୍ତତା ସୃଷ୍ଟି ହୋଇଥିଲା, ସେଇଥିପାଇଁ ଉଭୟ ଦେଶରେ ଅନେକ ରକ୍ତପାତ ଘଟି ଯାଇଥିଲା । ତଥାପି ସେତିକରେ ସେ ସମସ୍ୟାର ସମାଧାନ ହୋଇପାରି ନ ଥିଲା । ସ୍ୱାଧୀନତାର ପ୍ରାକ୍‌କାଳରେ ଦୁଇ ଜାତି ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଜାତିଗତ ଭେଦଭାବ ଓ କଳହ, ପରବର୍ତ୍ତୀକାଳରେ ସ୍ୱାଧୀନତା ପାଇବାର ଠିକ୍ ପରେ ପରେ ନୂତନ ଭାବେ ଜନ୍ମ ନେଇଥିବା ଦୁଇଦେଶ ମଧ୍ୟରେ କଳହରେ ପରିଣତ ହୋଇ ଯାଇଥିଲା । ସେ ପ୍ରକାର ପରିସ୍ଥିତିର ସୁଯୋଗ ନେଇଥିଲେ ପୃଥିବୀର ଅନ୍ୟାନ୍ୟ ଦେଶମାନେ—ତୃତୀୟ ପକ୍ଷ । ସେ ସୁଯୋଗ ଆଜି ପର୍ଯ୍ୟନ୍ତ ସେମାନେ ଛାଡ଼ୁ ନାହାନ୍ତି କହିଲେ ଭୁଲ ହେବ ନାହିଁ । ଶ୍ରୀ ଦୀନେଶ ସିଂହଙ୍କ ଭାଷାରେ, "ଭାରତ ସହିତ ବିଶେଷ କରି ସାମରିକ କ୍ଷେତ୍ରରେ ସମତା ହାସଲ କରିବା ପାଇଁ ପଞ୍ଚମ ଦଶକର ପ୍ରାରମ୍ଭରୁ ହିଁ ଉଦ୍ୟମ ଆରମ୍ଭ ହୋଇ ତାହା ଅପ୍ରତ୍ୟାହୃତ ରହିଛି । ପାକିସ୍ଥାନର ସେ ଉଦ୍ୟମକୁ କେତେକ ବୃହତ୍ ଶକ୍ତି ମଧ୍ୟ ଉତ୍ସାହିତ କରୁଛନ୍ତି ।" †

ସେ ପ୍ରକାର ପରିସ୍ଥିତିରେ ପାକିସ୍ଥାନ ସବୁବେଳେ ଭାରତ ସହିତ ଏକ ତିକ୍ତ ସମ୍ପର୍କ ରକ୍ଷିବା ଏବଂ ଅସ୍ୱାଭାବିକ ପରିବେଶ ସୃଷ୍ଟି କରିବା ଲାଗି ଆଗ୍ରହୀ ଥିବା ଲକ୍ଷ୍ୟ କରାଯାଇଥିଲା । ତାହା ଅତି ସ୍ପଷ୍ଟ ହୋଇ ଉଠିଥିଲା କାଶ୍ମୀର ସମସ୍ୟାକୁ କେନ୍ଦ୍ର କରି ପାକିସ୍ଥାନର ବାରମ୍ବାର ଯୁଦ୍ଧ ଡାକରାରେ । ସେହିଭଳି ଏକ ଯୁଦ୍ଧକାଳୀନ ପରିସ୍ଥିତି ସୃଷ୍ଟି ହୋଇଥିଲା ୧୯୭୧ ମସିହାରେ । କିନ୍ତୁ ସେ ଯୁଦ୍ଧ କାଶ୍ମୀର ସମସ୍ୟାକୁ କେନ୍ଦ୍ର କରି ନ ଥିଲା, ତାର ଅନ୍ତରାଳରେ ଥିଲା ବଙ୍ଗଳାଦେଶ ସମସ୍ୟା । ଯଦିଓ ସେ ଯୁଦ୍ଧ ବାସ୍ତବିକ୍ ତାର ଅନେକ ପୂର୍ବରୁ ଉଭୟ ଦେଶ ମଧ୍ୟରେ ଆରମ୍ଭ ହୋଇ ଯାଇଥିଲା ତେବେ ପ୍ରତ୍ୟକ୍ଷ ସଂଗ୍ରାମ ମାତ୍ର ୧୪ ଦିନ ପାଇଁ ଚାଲିଥିଲା— ଲକ୍ଷ୍ୟ ଥିଲା ବଙ୍ଗଳାଦେଶର ମୁକ୍ତି । ଭାରତର ଲକ୍ଷ୍ୟ ପୂର୍ଣ୍ଣ ହୋଇଯିବା ପରେ ପୃଥିବୀର ଯୁଦ୍ଧ ଇତିହାସରେ ଏକ ସୁବର୍ଣ୍ଣ ଅଧ୍ୟାୟ ଉନ୍ମୋଚନ କରି ଶ୍ରୀମତୀ ଗାନ୍ଧୀ ଏକତରଫା ଭାବେ ଯୁଦ୍ଧ ବନ୍ଦ ଘୋଷଣା କରିଥିଲେ ।

ସେ ଯୁଦ୍ଧର ପରିଣାମ ସ୍ୱରୂପ ଜନ୍ମ ନେଇଥିଲା ଏକ ନୂତନ ଦେଶ— ଭାରତର ଏକ ପ୍ରତିବେଶୀ—"ବଙ୍ଗଳାଦେଶ" ।

---

† Illustrated Weekly—2nd July, 1973-- P-5.

**ଭାଷା ବିବାଦ—**

୧୯୪୭ ଅଗଷ୍ଟ ୧୪ ତାରିଖରେ 'ଅଖଣ୍ଡ ଭାରତ' ବିଖଣ୍ଡିତ ହୋଇ ଦୁଇଟି ନୂତନ ଦେଶ ହେବା ପରେ ପରେ ପାକିସ୍ଥାନରେ ଅନ୍ତର୍ବିବାଦ ଦେଖା ଦେଇଥିଲା । ପାକିସ୍ଥାନର ଦୁଇଟି ଭୂଖଣ୍ଡ ପୂର୍ବ-ପାକିସ୍ଥାନ ବା ପୂର୍ବ ବଙ୍ଗ ଓ ପଶ୍ଚିମ ପାକିସ୍ଥାନର ଜନସାଧାରଣଙ୍କ ମଧ୍ୟରୁ ପଶ୍ଚିମ ପାକିସ୍ଥାନରେ ଥିଲେ ମୁସଲମାନ ସମ୍ପ୍ରଦାୟର ଲୋକ ଓ ପୂର୍ବ-ବଙ୍ଗର ଅଧିବାସୀମାନଙ୍କ ମଧ୍ୟରେ ଥିଲେ ହିନ୍ଦୁ ତଥା ମୁସଲମାନ ସଂପ୍ରଦାୟ ସମେତ ବଙ୍ଗଳା ଭାଷାକୁ ମାତୃଭାଷା ରୂପେ ଗ୍ରହଣ କରିଥିବା ଉଭୟ ଗୋଷ୍ଠୀର ଜନସାଧାରଣ । ତେଣୁ ଯେତେବେଳେ ନଭେମ୍ବର ୧୭ ତାରିଖ ୧୯୪୭ ମସିହାରେ ଉର୍ଦ୍ଦୁକୁ ଜାତୀୟ ଭାଷା ରୂପେ ପାକିସ୍ଥାନ ଗ୍ରହଣ କରିଥିଲା, ତା' ବିରୋଧରେ ପୂର୍ବ ବଙ୍ଗର ଜନସାଧାରଣ ବିକ୍ଷୋଭ ଓ ଆନ୍ଦୋଳନ କରିଥିଲେ । ତେବେ ସେ ଆନ୍ଦୋଳନ ପ୍ରତି ଭ୍ରୂକ୍ଷେପ କରି ନ ଥିଲେ ମହମ୍ମଦ ଅଲ୍ଲି ଜିନ୍ନା, ବରଂ ସେଠିକାର ଅଧିବାସୀମାନଙ୍କୁ ଅନ୍ୟ ଢଗରୁ ସନ୍ତୁଷ୍ଟ କରିବା ପାଇଁ ୧୯୫୦ ମସିହାରେ ହିନ୍ଦୁମାନଙ୍କ ଉପରେ ଅଯଥା ଅତ୍ୟାଚାରର ସୂତ୍ରପାତ କରିଥିଲେ ।

ତଥାପି ସେଠାରେ ଭାଷା ଆନ୍ଦୋଳନ ଅସ୍ତମିତ ହୋଇଯାଇ ନ ଥିଲା । ୧୯୫୧ ମସିହା ଅପ୍ରେଲ ଛଅ ତାରିଖରେ ପୂର୍ବ-ବଙ୍ଗର ରାଜଧାନୀ ଢାକ୍କାଠାରେ ଜାତୀୟ ଭାଷା ଦିବସ ପାଳନ କରାଯାଇଥିଲା ଏବଂ ବଙ୍ଗଳା ଭାଷାକୁ ଏକ ଜାତୀୟ ଭାଷାରୂପେ ସ୍ୱୀକୃତି ଦେବାପାଇଁ ଦାବୀ କରାଯାଇଥିଲା । ଦୀର୍ଘଦିନର ଆନ୍ଦୋଳନ ସତ୍ତ୍ୱେ ଇସଲମାବାଦ୍ ସରକାର ନିଶ୍ଚଳ ରହିବା ଯୋଗୁଁ ୧୯୫୨ ମସିହା ଫେବୃୟାରୀ ମାସରେ ପୂର୍ବବଙ୍ଗର ଛାତ୍ରମାନେ ଆନ୍ଦୋଳନ ଆରମ୍ଭ କରିଥିଲେ । ଜାତୀୟ ସ୍ୱାର୍ଥରକ୍ଷା ଲାଗି ଏବଂ ଅପର ପକ୍ଷରେ ସରକାରଙ୍କ ନିର୍ଦ୍ଦେଶରେ ପୋଲିସ୍ ଦୃଢ଼ହସ୍ତରେ ସେ ପ୍ରତିବାଦର ପ୍ରତିକାର କରିବାକୁ ଆଗେଇ ଯାଇଥିଲେ । ସେତେବେଳର ସେ ଆନ୍ଦୋଳନରେ ନଅ ଜଣ ଛାତ୍ର ପୋଲିସର ବନ୍ଧୁକଗୁଳିରେ ପ୍ରାଣ ହରାଇଥିଲେ । ଢାକ୍କା ବିଶ୍ୱବିଦ୍ୟାଳୟକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ କରି ଦିଆଯାଇଥିଲା । ଦୀର୍ଘ ଏକ ହଜାରରୁ ଅଧିକ ମାଇଲ ଦୂରରେ ରହିଥିବା ପୂର୍ବ ଓ ପଶ୍ଚିମ ପାକିସ୍ଥାନ— ଦୁଇ ଦେଶର ପରିସ୍ଥିତି ଏପରି ହୋଇଥିଲା ଯେ ଲଣ୍ଡନର ପତ୍ରପତ୍ରିକାମାନଙ୍କରେ ପ୍ରକାଶ ପାଇଥିଲା ପୂର୍ବ-ବଙ୍ଗ ସମ୍ଭବତଃ ପଶ୍ଚିମ ପାକିସ୍ଥାନଠାରୁ ବିଚ୍ଛିନ୍ନ ହୋଇଯିବ । ଏଠାରେ ସ୍ମରଣ ରଖାଯାଇପାରେ ଯେ ୧୯୫୩ ଫେବୃୟାରୀ ପର୍ଯ୍ୟନ୍ତ ପୂର୍ବ-ବଙ୍ଗର ଜାତୀୟ ଭାଷା ଆନ୍ଦୋଳନରେ ଅନ୍ୟୁନ ୧୮୩୭ ଜଣ ଲୋକଙ୍କର ପ୍ରାଣହାନି ଘଟିଥିଲା ।" †

---

† ଶ୍ରୀ ସୂର୍ଯ୍ୟନାରାୟଣ ଦାସ—ଯୁଗନେତ୍ରୀ ଇନ୍ଦିରା—ପୃ—୧୭୮

୧୯୫୪ ମସିହାରେ ଯେତେବେଳେ ସାଧାରଣ ନିର୍ବାଚନ ହୋଇଥିଲା ସେଥିରେ ମୁସଲିମ୍ ଲିଗ୍ ବିରୁଦ୍ଧରେ ମିଳିତ ସାମ୍ମୁଖ୍ୟ ପ୍ରତିଦ୍ୱନ୍ଦିତା କରି ସର୍ବମୋଟ ୩୦୯ ସ୍ଥାନରୁ ୨୧୫ ସ୍ଥାନ ଅଧିକାର କରିଥିଲେ ଓ ଫଜଲୁଲ ହକ୍‌ଙ୍କ ପ୍ରଧାନ-ମନ୍ତ୍ରିତ୍ୱରେ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ୧୯୫୪ ମସିହା ମଇ ସାତ ତାରିଖରେ ପାକିସ୍ଥାନ ସମ୍ବିଧାନ ପ୍ରଣୟନ ସଭାରେ ଉର୍ଦ୍ଦୁ ଓ ବଙ୍ଗଳା ଉଭୟ ଭାଷାକୁ ପାକିସ୍ଥାନର ଜାତୀୟ ଭାଷା ରୂପେ ଗ୍ରହଣ କରାଯିବା ପାଇଁ ପ୍ରସ୍ତାବ ସ୍ୱୀକୃତ ହୋଇଥିଲା । କିନ୍ତୁ ୧୯୫୪ ମଇ ମାସ ଶେଷ ଦିନ ପ୍ରଧାନମନ୍ତ୍ରୀଙ୍କୁ ହଠାତ୍ ଗାଦିଚ୍ୟୁତ କରାଇ ବିନା କାରଣରେ ରାଷ୍ଟ୍ରପତି ମିର୍ଜା ଶାସନକ୍ଷମତା ହାତକୁ ନେଇଥିଲେ । ସେତେବେଳେ ସେଇ ଭାଷା ଆନ୍ଦୋଳନ ସହିତ ସଶ୍ଳିଷ୍ଟ ଶେଖ୍ ମୁଜିବର ରହିମନ୍‌ଙ୍କୁ ମଧ୍ୟ ଗିରଫ କରାଯାଇଥିଲା ।

ରାଷ୍ଟ୍ରପତି ମିର୍ଜା ୧୯୫୮ ମସିହା ଅକ୍ଟୋବର ମାସରେ ଆୟୁବ୍ ଖାଁଙ୍କୁ ଶାସନ ଦାୟିତ୍ୱ ଦେବା ପୂର୍ବରୁ ପାକିସ୍ଥାନର ସମ୍ବିଧାନ, କେନ୍ଦ୍ର ସରକାର ଏବଂ ସମସ୍ତ ପ୍ରାଦେଶିକ ସରକାରଙ୍କୁ ବେଆଇନ ଘୋଷଣା କରିଥିଲେ । ପରିଣାମତଃ ଆୟୁବ୍ ଖାଁ ୧୯୫୮ରୁ ୧୯୬୯ ମାର୍ଚ୍ଚ ୨୫ ତାରିଖ ପର୍ଯ୍ୟନ୍ତ ନିରଙ୍କୁଶ ଶାସନ ଦାୟିତ୍ୱ ପରିଚାଳନା କରିଥିଲେ । ତେବେ ୧୯୬୫ ମସିହାରେ ପାକିସ୍ଥାନର ଭାରତ ସହିତ ଯୁଦ୍ଧ ତଥା ଦେଶର ଗୁରୁତର ଆର୍ଥିକ ଦୁର୍ଗତି କେବଳ ପୂର୍ବ-ପାକିସ୍ଥାନ କାହିଁକି, ସମଗ୍ର ପାକିସ୍ଥାନର ଜନସାଧାରଣଙ୍କୁ ଆୟୁବ୍ ଖାଁଙ୍କର ସାମରିକ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ବାଧ୍ୟ କରିଥିଲା । ସେଥିରେ ପୁଣି ପୂର୍ବ-ପାକିସ୍ଥାନ ବା ଆଜିର ବଙ୍ଗଳାଦେଶର ଜନସାଧାରଣଙ୍କ ଅର୍ଥନୈତିକ ନିପୀଡ଼ନ ପାକିସ୍ଥାନର ଏକତରଫା ସାମରିକ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାପାଇଁ ସାମାନ୍ୟତମ ସୁଯୋଗ ଉଣ୍ଡି ବସିଥିଲା ।

### ବୈମାତୃକ ମନୋଭାବ ଓ ଅର୍ଥନୈତିକ ପଟ୍ଟଭୂମି :—

ବଙ୍ଗଳା ଦେଶର ଆୟତନ ୫୫,୧୪୬ ବର୍ଗମାଇଲ ଓ ମୁକ୍ତି ଆନ୍ଦୋଳନ ବେଳକୁ ଜନସଂଖ୍ୟା ଥିଲା ପ୍ରାୟ ସାଢ଼େ ସାତ କୋଟି । ତାହା ସମଗ୍ର ପାକିସ୍ଥାନର ଜନସଂଖ୍ୟାର ଶତକଡ଼ା ୫୬ ଭାଗ । ୧୯୬୧ର ଜନଗଣନା ଅନୁଯାୟୀ ପଶ୍ଚିମ ପାକିସ୍ଥାନରେ ପ୍ରତି ବର୍ଗମାଇଲ ପିଛା ଏକ ଶହ ଲୋକ ବସବାସ କରି ରହିବା ବେଳେ ପୂର୍ବ-ବଙ୍ଗରେ ରହନ୍ତି ଏଗାର ଶହ ଜଣରୁ ଅଧିକ । ତଥାପି ପଶ୍ଚିମ ପାକିସ୍ଥାନର ଶାସକଗୋଷ୍ଠୀ ପୂର୍ବ-ବଙ୍ଗକୁ ଏକ ଉପନିବେଶ ଭଳି ବ୍ୟବହାର କରି ଆସୁଥିଲେ— ବଙ୍ଗଳାଦେଶର ଅର୍ଥନୀତିକୁ ପଙ୍ଗୁ କରି ଦେଇଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ପୂର୍ବ-ବଙ୍ଗରୁ ଶସ୍ତା ଦରରେ କଞ୍ଚାମାଲ କିଣିନେଇ ସର୍ବଶେଷ ପଣ୍ୟ ପଶ୍ଚିମ-ପାକିସ୍ଥାନରେ ତିଆରି କରି ସେଗୁଡ଼ିକୁ ପୁଣି ପୂର୍ବ-ବଙ୍ଗରେ ବିକ୍ରୟ

କରୁଥିଲେ । ପୁନଶ୍ଚ ପୂର୍ବ-ବଙ୍ଗରେ ଯେଉଁସବୁ କଞ୍ଚାମାଲ ଉତ୍ପାଦିତ ହେଉଥିଲା ତାହାକୁ ବିଦେଶରେ ବିକ୍ରୟ କରାଯାଉଥିଲା ଓ ତା ଫଳରେ ଯେଉଁ ବୈଦେଶିକ ମୁଦ୍ରା ଉପାର୍ଜନ ହେଉଥିଲା ସେଥିରେ ପଶ୍ଚିମ ପାକିସ୍ଥାନର ଶିଳ୍ପକାରଖାନାଗୁଡ଼ିକ ସମୃଦ୍ଧ ହେଉଥିଲା । ନୂତନ ଧରଣର କଳକବ୍‌ଜା କ୍ରୟ କରାଯାଉଥିଲା । ତତ୍ ସଙ୍ଗେ ସଙ୍ଗେ ସେହି ଧନରେ ବିଦେଶୀ ଋଣ ପରିଶୋଧ କରାଯାଉଥିଲା । ପୂର୍ବ-ବଙ୍ଗର ସାଢ଼େ ସାତ କୋଟି ଲୋକଙ୍କର ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେବା ତ ଦୂରର କଥା, ପ୍ରାୟ ପ୍ରତିବର୍ଷ ନୂଆ ନୂଆ କର ବସାଇ ଗରିବ ଲୋକଙ୍କ ମଥାକୁ ଅବନତ କରାଇ ଦିଆଯାଉଥିଲା ।

ସରକାରୀ କ୍ଷେତ୍ରରେ ପୂର୍ବ-ବଙ୍ଗର ଅବସ୍ଥା ଥିଲା ଅତି ଶୋଚନୀୟ । ସେତେବେଳେ ପୁରା ପାକିସ୍ଥାନର ଉନ୍ନୟନ ଦପ୍ତରରେ ନିଯୁକ୍ତି ପାଇଥିବା ୧୫୨୦ ଜଣଙ୍କ ମଧ୍ୟରୁ ପୂର୍ବ-ବଙ୍ଗର ଲୋକ ଥିଲେ ମାତ୍ର ୧୬୭ ଜଣ । ଦେଶରେ ପ୍ରଥମ ଶ୍ରେଣୀ କର୍ମଚାରୀ ୯୩ ଜଣଙ୍କ ମଧ୍ୟରୁ ମୋଟ ସାତ ଜଣ ଓ ୧୧୯ ଜଣ ଦ୍ୱିତୀୟ ଶ୍ରେଣୀ ସରକାରୀ ଗେଜେଟେଡ଼ କର୍ମଚାରୀଙ୍କ ମଧ୍ୟରୁ ମାତ୍ର ଚାରି ଜଣ ଥିଲେ ପୂର୍ବ-ବଙ୍ଗର ଅଧିବାସୀ । ଦେଶରକ୍ଷା ଓ ସୈନ୍ୟବିଭାଗରେ ଶତକଡ଼ା ଚାରି ଭାଗ ପୂର୍ବବଙ୍ଗବାସୀ ସ୍ଥାନ ପାଇଥିଲେ । ୪୨୯୦ ଜଣ ନର୍ସଙ୍କ ମଧ୍ୟରୁ ୫୧୯ ଜଣ ଥିଲେ ବଙ୍ଗଳାଦେଶର ସେବିକା । ଏଠାରେ ପୁଣି ସ୍ମରଣ ରଖିବା କଥା ଯେ ଲୋକସଂଖ୍ୟା ତୁଳନାରେ ପୂର୍ବ-ପାକିସ୍ଥାନ ପଶ୍ଚିମ-ପାକିସ୍ଥାନଠାରୁ ଊର୍ଦ୍ଧ୍ୱରେ । ପାକିସ୍ଥାନର ବୈଦେଶିକ ବିଭାଗରେ ରାଷ୍ଟ୍ରଦୂତ ପଦବୀ ସହିତ ସଂପୃକ୍ତ ଥିଲେ ମାତ୍ର ପାଞ୍ଚ ଜଣ ।

ଶିକ୍ଷା ବାବଦରେ ପଶ୍ଚିମ-ପାକିସ୍ଥାନପାଇଁ ବ୍ୟୟ କରାଯାଉଥିଲା ମୁଣ୍ଡ ପିଛା ଚାରି ଟଙ୍କା ଛଅ ଅଣା ତିନି ପଇସା (ଚାରି ଟଙ୍କା ବୟାଳିଶି ପଇସା), ଅଥଚ ସେଇ ବାବଦରେ ବଙ୍ଗଳାଦେଶରେ ମୁଣ୍ଡପିଛା ବ୍ୟୟ ଥିଲା ମାତ୍ର ଏକ ପଇସା । ସେ ଦୃଷ୍ଟିରୁ ଦେଖିଲେ ଔପନିବେଶବାଦର ଅନ୍ୟ କୌଣସି ଅର୍ଥ ବ୍ୟାଖ୍ୟା କରାଯାଇ ନ ପାରେ ।

ସେ ପ୍ରକାର ଅର୍ଥନୈତିକ ନିପୀଡ଼ନ ଓ ବୈମାତୃକ ବ୍ୟବହାରରୁ ସ୍ପଷ୍ଟ ଅନୁମାନ କରାଯାଇପାରେ ଯେ ସେଥିରୁ ମୁକ୍ତି ପାଇବାପାଇଁ କେବଳ ମାତ୍ର ଗୋଟାଏ ଉପାୟ—ସେମାନଙ୍କ ହାତରୁ ଶାସନକ୍ଷମତାକୁ ବାହାର କରିନେଇ ଲୋକହିତୈଷୀ ସରକାର ସ୍ଥାପନ କରିବା ବା ସେମାନଙ୍କଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ସେ ପ୍ରକାର ଔପନିବେଶବାଦର ବିଲୋପ କରି ଏକ ସ୍ୱତନ୍ତ୍ର ସ୍ୱାୟତ୍ତଶାସିତ ଅଞ୍ଚଳ ଗଠନ କରିବା ।

ପାକିସ୍ଥାନର ଜନ୍ମଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ ସାଧାରଣ ନିର୍ବାଚନ ବା ପ୍ରତ୍ୟକ୍ଷ ଭୋଟ କ'ଣ ଲୋକେ ଜାଣି ନ ଥିଲେ । କାରଣ ଦେଶ ଲୋକପ୍ରତିନିଧିଙ୍କ

ଦ୍ୱାରା ଶାସିତ ହେଉ ନ ଥିଲା । ପ୍ରଥମ ପ୍ରଧାନମନ୍ତ୍ରୀ ଲିଆକତ୍ ଅଲି ଖାଁ ନିର୍ବାଚିତ ହୋଇ ନ ଥିଲେ । ତାଙ୍କ ପରେ ଚୌଧୁରୀ ମହମ୍ମଦ ଅଲି, ଗୋଲାମ ମହମ୍ମଦ, ଇସ୍କନ୍ଦର ମିର୍ଜା—ଏ ସମସ୍ତେ ଇଂରେଜ ସରକାରଙ୍କ କର୍ମଚାରୀ ଥିଲେ ଓ ବିଭିନ୍ନ ପ୍ରକାର ରାଜନୈତିକ ଚକ୍ରାନ୍ତ କରି ରାଷ୍ଟ୍ରକ୍ଷମତା ଦଖଲ କରିଥିଲେ । ଆୟୁବ୍ ଖାଁ ମଧ୍ୟ ଥିଲେ ଇଂରେଜ ସାମରିକବାହିନୀର ଜଣେ ପେଶାଦାରୀ ସୈନ୍ୟ ଏବଂ ସାମରିକ ବିଦ୍ରୋହ ମାଧ୍ୟମରେ ରାଷ୍ଟ୍ରର ଶାସନକ୍ଷମତା ହାତକୁ ନେଇଥିଲେ । ପରିଣାମ ସ୍ୱରୂପ ପାକିସ୍ଥାନ ଲୋକଙ୍କର ସ୍ୱାଚ୍ଛନ୍ଦ୍ୟ ପ୍ରତି କାହାରି ଦୃଷ୍ଟି ଆକର୍ଷିତ ହୋଇ ନ ଥିଲା । ନ ହେବା ସ୍ୱାଭାବିକ ମଧ୍ୟ । କାରଣ ଲୋକମାନେ ଶାସକମାନଙ୍କୁ ସେମାନଙ୍କର ନେତା ହିସାବରେ ତ ବାଛି ନ ଥିଲେ, ବରଂ ରାଜନୈତିକ ନେତା-ମାନେ ନିଜ ନିଜର ରାଜନୈତିକ କୁଟିଳତାରେ କୁଶଳତା ଦେଖାଇ ଶାସକ ହୋଇ ପାରିଥିଲେ । ମୁଖ୍ୟତଃ ତାହା ହିଁ ଥିଲା ପାକିସ୍ଥାନ ଲୋକେ ଶୋଷିତ ହେବାର କାରଣ । ଏହି ଗଣ-ବିମୁଖ ଶାସକ-ଚକ୍ରଦ୍ୱାରା ସବୁଠାରୁ ବିଶେଷ ଭାବେ ଉପେକ୍ଷିତ ହୋଇଥିଲା ପୂର୍ବ-ବଙ୍ଗ ବା ଆଜିର ବଙ୍ଗଳାଦେଶ ।

ପାକିସ୍ଥାନର ଏକମାତ୍ର ପ୍ରଦେଶ ପଞ୍ଜାବ ଶାସକବର୍ଗଙ୍କର ଅନୁଗ୍ରହ ଲାଭକରି ଆସୁଥିଲା । କାରଣ ଏକଛତ୍ରବାଦ ପ୍ରତିଷ୍ଠା କରିବାରେ ପଞ୍ଜାବର ସାମରିକ ବାହିନୀ ପ୍ରଭୂତ ସାହାଯ୍ୟ କରୁଥିଲା । ତା' ସଙ୍ଗେ ସଙ୍ଗେ ପଞ୍ଜାବୀ ଜମିମାଲିକ, ପୁଞ୍ଜିପତି ଓ ଅମଲାମାନେ ସରକାରଙ୍କ ସପକ୍ଷରେ ରହୁଥିଲେ, ଏବଂ ଶାସନ ପରିଚାଳିତ କରୁଥିଲେ । ସାମରିକ ଶାସନ ୧୯୬୯ ମସିହାରେ ପାକିସ୍ଥାନର ସାଧାରଣ ଜନତା ଆୟୁବ୍ ଖାଁଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାର ମଧ୍ୟ ତାହା ଥିଲା ଅନ୍ୟତମ କାରଣ ।

**ସାଧାରଣ ନିର୍ବାଚନ :—**

ଜନସାଧାରଣଙ୍କ ମଧ୍ୟରେ କ୍ରମଶଃ ବୃଦ୍ଧିଲାଭ କରୁଥିବା ବିଦ୍ରୋହର ବହ୍ନିକୁ ଅବଦମିତ କରିବାପାଇଁ ଆୟୁବ୍ ଖାଁଙ୍କଠାରୁ ପାକିସ୍ଥାନର ଦାୟିତ୍ୱ ଗ୍ରହଣ କରିଥିବା ୟାହିୟା ଖାଁ ଦେଶରେ ଗଣତନ୍ତ୍ର ଶାସନର ପକ୍ଷପାତୀ ବୋଲି ନିଜ ମତ ପ୍ରଚାର କରିବା ସଙ୍ଗେ ସଙ୍ଗେ ୧୯୭୦, ଅକ୍ଟୋବର ୫ ତାରିଖରେ ଦେଶରେ ସାଧାରଣ ନିର୍ବାଚନ କରାଇବାକୁ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ନିର୍ଦ୍ଦିଷ୍ଟ ଦିନ ପହଞ୍ଚିବା ପରେ ୟାହିୟା ସେ ନିର୍ବାଚନ ୨ ମାସ ସ୍ଥଗିତ ରଖି ଡିସେମ୍ବର ୭ ତାରିଖରେ ଅନୁଷ୍ଠିତ କରାଇଥିଲେ । ସେହି ନିର୍ବାଚନରେ ଆୱାମିଲିଗ ଶେଖ୍ ମୁଜିବୁର ରହମନ୍‌ଙ୍କ ନେତୃତ୍ୱରେ ନିର୍ବାଚନ ପ୍ରତିଦ୍ୱନ୍ଦିତା କରିଥିଲେ ପୂର୍ବ-ବଙ୍ଗରେ ।

ଆୱାମିଲିଗ ଦଳର ନିର୍ବାଚନ ଇସ୍ତାହାରରେ ଜନସାଧାରଣଙ୍କୁ କେତେକ ପ୍ରତିଶ୍ରୁତି ଦେଇଥିଲା । ତାହା ମଧ୍ୟରେ ପ୍ରଥମ ଥିଲା ଦେଶର ଏକ ଗଣତାନ୍ତ୍ରିକ

ପାର୍ଲ୍ୟାମେଣ୍ଟାରି ଶାସନ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ପ୍ରତିରକ୍ଷା ଓ ବୈଦେଶିକ ବ୍ୟାପାରକୁ କେନ୍ଦ୍ରଶାସନାଧୀନ ରଖି ଅନ୍ୟାନ୍ୟ ସମସ୍ତ କ୍ଷମତା ପ୍ରାଦେଶିକ ସରକାରଙ୍କୁ ହସ୍ତାନ୍ତର କରିବା । ଦେଶରେ ଶାସନଗତ ସଂସ୍କାର ଅଣାଇ ପୂର୍ବ ଓ ପଶ୍ଚିମ-ପାକିସ୍ଥାନ ମଧ୍ୟରେ ଥିବା ଅର୍ଥନୈତିକ ବୈଷମ୍ୟର ଦୂରୀକରଣ କରିବା ସଙ୍ଗେ ସଙ୍ଗେ ପୂର୍ବ-ପାକିସ୍ତାନରେ ଏକ ସାମରିକ ବା ଅର୍ଦ୍ଧସାମରିକ ପ୍ରତିରକ୍ଷା-ବାହିନୀ ଗଠନ କରିବା । କର ଓ ରାଜସ୍ୱ ଆଦାୟ କରିବା ଅଧିକାର ପ୍ରାଦେଶିକ ସରକାରଙ୍କୁ ଦେଇ ଆବଶ୍ୟକ ଅଂଶ କେନ୍ଦ୍ର ସରକାରଙ୍କୁ ଦେବା ବ୍ୟବସ୍ଥା ଓ କେନ୍ଦ୍ର ତଥା ପ୍ରାଦେଶିକ ସ୍ତରରେ ଅଲଗା ଅଲଗା ମୁଦ୍ରା ପ୍ରଚଳନର ବ୍ୟବସ୍ଥା କରିବା କିମ୍ବା ଉଭୟ ସ୍ଥାନରେ ରିଜର୍ଭ ବ୍ୟାଙ୍କର ଶାଖା ସ୍ଥାପନ କରିବା । ତାଙ୍କ ଦଳ ସରକାର ଗଠନ କଲେ ସେସବୁର ବିହିତ ବ୍ୟବସ୍ଥା କରିବାକୁ ଉଦ୍ୟମ କରିବେ ବୋଲି ମୁଜିବୁର ରହମନ୍‌ଙ୍କ ନେତୃତ୍ୱରେ ପରିଚାଳିତ ଆଓ୍ୱାମି ଲିଗ୍ ଜନତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ ।

ସେ ନିର୍ବାଚନ ଇସ୍ତାହାର ପ୍ରତି ସମର୍ଥନ ଜଣାଇ ଲୋକମତ ପ୍ରକାଶ ପାଇଥିଲା । ପୂର୍ବ-ବଙ୍ଗର ପ୍ରାଦେଶିକ ସଭାରେ ୩୧୦ ସ୍ଥାନରୁ ୨୮୮ ସ୍ଥାନ ଓ ଜାତୀୟ ବିଧାନସଭାର ମୋଟ ୩୧୬ ସ୍ଥାନରୁ ପୂର୍ବ-ବଙ୍ଗ ପାଇଁ ସଂରକ୍ଷିତ ୧୬୨ ସ୍ଥାନରୁ ମୋଟ ୧୬୦ଟି ସ୍ଥାନରେ ବିଜୟ ହାସଲ କରିଥିଲା ଆଓ୍ୱାମି ଲିଗ୍ ।

ସେହି ନିର୍ବାଚନ ଫଳାଫଳ ଘୋଷଣାରେ ସମଗ୍ର ପାକିସ୍ଥାନ ସ୍ତମ୍ଭୀଭୂତ ହୋଇ ପଡ଼ିଥିଲା । ପାକିସ୍ଥାନର ରାଷ୍ଟ୍ରପତି, ଗଣତାନ୍ତ୍ରିକ ପାକିସ୍ଥାନର ଭାବୀ ପ୍ରଧାନମନ୍ତ୍ରୀ, ଆଓ୍ୱାମି ଦଳର ନେତା ଶେଖ୍ ମୁଜିବୁର ରହମନଙ୍କ ସହିତ ଆଲୋଚନା ପ୍ରସଙ୍ଗରେ ଅଭିବାଦନ ଜଣାଇଥିଲେ ବିପୁଳ ଜନସମର୍ଥନ ପାଇଥିବାରୁ । ଜୁଲ୍ ଫିକର ଅଲି ଭୁଟ୍ଟୋ ମନେ ମନେ ଯେଉଁ ପରିକଳ୍ପନା କରିଥିଲେ ପାକିସ୍ଥାନର ପ୍ରଧାନମନ୍ତ୍ରୀ ହେବାପାଇଁ, ସେ ଆଶା ତାଙ୍କର ଶୋଚନୀୟ ଭାବେ ପରାହତ ହେବା ଲକ୍ଷ୍ୟ କରି ଏକ ନୂତନ ଆଳ ସୃଷ୍ଟି କରିଥିଲେ ଯେ ଆଓ୍ୱାମି ଲିଗ୍‌ର ଆଞ୍ଚଳିକ ସ୍ୱତନ୍ତ୍ରତା ସମ୍ପର୍କୀୟ ଦାବୀକୁ ସ୍ୱୀକାର କରିବାକୁ ସେମାନେ ପ୍ରସ୍ତୁତ ନୁହନ୍ତି ଏବଂ ସେହି କାରଣରୁ ଜାତୀୟ ଆସେମ୍ବ୍ଲିରେ ସେମାନେ ଯୋଗ ଦେବେ ନାହିଁ । ଭୁଟ୍ଟୋଙ୍କ ପ୍ରରୋଚନାରେ ଓ ତାହାଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ୟାହିୟା ୧୯୭୧ ମାର୍ଚ୍ଚ ୧ ତାରିଖରେ ଜାତୀୟ ଆସେମ୍ବ୍ଲିକୁ ଅନିର୍ଦ୍ଦିଷ୍ଟ କାଳ ଲାଗି ବନ୍ଦ ରଖିବାକୁ ଘୋଷଣା କରିଥିଲେ ।

**ଦେଶମୁକ୍ତି ଆନ୍ଦୋଳନ :—**

ସେଭଳି ଘୋଷଣାରେ ପୂର୍ବ ବଙ୍ଗର ଜନସାଧାରଣଙ୍କ ମଧ୍ୟରେ ଆତଙ୍କ ଖେଳି ଯାଇଥିଲା ଓ ଆନ୍ଦୋଳନ ଆରମ୍ଭ ହୋଇ କ୍ରମେ କ୍ରମେ ଧ୍ୱଂସାତ୍ମକ କାର୍ଯ୍ୟ-

କାଳପରେ ପରିଣତ ହୋଇଥିଲା ! ପୂର୍ବ-ପାକିସ୍ତାନର ଗଭର୍ଣ୍ଣରଙ୍କ ବଦଳରେ ଜଣେ ସେନାବାହିନୀର ଜେନେରାଲଙ୍କୁ ଶାସନଦାୟିତ୍ୱ ଦିଆଯାଇଥିଲା । ସେଠାରେ ସରକାରବିରୋଧୀ ଆନ୍ଦୋଳନ ଏତେ ବ୍ୟାପକ ହୋଇଥିଲା ଓ ୟାହିୟାଙ୍କ ସୈନ୍ୟ-ବାହିନୀ ଏତେ ନିଷ୍ଠୁର ହୋଇଥିଲେ ଯେ ମାତ୍ର ତିନି ଦିନ ମଧ୍ୟରେ ପ୍ରାୟ ତିନି ଶହରୁ ଅଧିକ ବ୍ୟକ୍ତି ନିହତ ହେବା ସଙ୍ଗେ ସଙ୍ଗେ ପ୍ରାୟ ଅଢ଼େଇ ହଜାର ଲୋକ ଆହତ ହୋଇଥିଲେ ।

ପୂର୍ବବଙ୍ଗବାସୀଙ୍କ ଆନ୍ଦୋଳନରେ ବିଚଳିତ ହୋଇ ମାର୍ଚ୍ଚ ୬ ତାରିଖରେ ୟାହିୟା ପୁଣି ଘୋଷଣା କରିଥିଲେ ଯେ ମାର୍ଚ୍ଚ ୨୫ ତାରିଖରେ ଜାତୀୟ ଆସେମ୍ବ୍ଲି ବସିବ ।

ମାର୍ଚ୍ଚ ୭ ତାରିଖରେ ଢାକାର ଘୋଡ଼ାଦୌଡ଼ ପଡ଼ିଆରେ ଅନୁଷ୍ଠିତ ଏକ ସାଧାରଣ ସଭାରେ ଭାଷଣ ଦେଇ ସମଗ୍ର ପୂର୍ବ-ବଙ୍ଗର ଅପ୍ରତିଦ୍ୱନ୍ଦୀ ନେତା ମୁଜିବୁର ରହିମନ୍ ଘୋଷଣା କରି କହିଥିଲେ, "ବଙ୍ଗଳାଦେଶର ସାଢ଼େ ସାତ କୋଟି ଜନସାଧାରଣଙ୍କ ଆଜିର କାମ୍ୟ ସ୍ୱାଧୀନତା । ସେମାନେ ଚାହାନ୍ତି ଠିକ୍ ମଣିଷ ଭଳି ଏ ଦେଶରେ, ଏ ମାଟିରେ ନିଶ୍ୱରହିବେ ଏବଂ ଚାହାନ୍ତି ମଧ୍ୟ ସେମାନଙ୍କ ମାନବିକ ଅଧିକାର ସାବ୍ୟସ୍ତ କରିବା ଲାଗି । ଏ ଦେଶରେ ଏକ ସମ୍ବିଧାନ ପ୍ରଣୟନ କରିବାଲାଗି ଆପଣମାନେ ଆଓ୍ୱାମି ଲିଗ୍‌କୁ ନିର୍ବାଚିତ କଲେ । ଆପଣମାନେ ଆଶା କରିଥିଲେ ସମ୍ବିଧାନ ପ୍ରଣୟନ ହେବାଦ୍ୱାରା ଏ ଦେଶର ସାଢ଼େ ସାତ କୋଟି ଜନତାର ଆର୍ଥିକ, ସାଂସ୍କୃତିକ ଓ ରାଜନୈତିକ ସ୍ୱାଧୀନତା ହାସଲ ହୋଇ ପାରିବ । କିନ୍ତୁ ଗତ ତିନି ତାରିଖରେ ଅନୁଷ୍ଠିତ ହେବାକୁ ଥିବା ଆସେମ୍ବ୍ଲି ବୈଠକକୁ ସ୍ଥଗିତ ରଖି ଦିଆଯାଇଛି ।"

"ଗତ ୨୩ ବର୍ଷର ଏ ଦେଶର ଇତିହାସ ହେଉଛି ବଙ୍ଗଳା ଜନତାର କରୁଣ କ୍ରନ୍ଦନର ଇତିହାସ; ଏ ଇତିହାସ ହେଉଛି ସାଢ଼େ ସାତ କୋଟି ନିଷ୍ପେଷିତ ଲୋକଙ୍କର ଲୁହ ଏବଂ ଲହୁର ଇତିହାସ ।"

"ଏଠି ଏ ଦେଶର—ବଙ୍ଗଳାଦେଶର ଜନସାଧାରଣଙ୍କୁ ସମୂଳେ ଲୋପ କରିଦେବା ପାଇଁ ଷଡ଼ଯନ୍ତ୍ର ହୋଇଛି । ସେଥିପାଇଁ ସତର୍କ ରହିବାକୁ ପଡ଼ିବ । ଯଦି କେହି ଗୋଟିଏ ଗୁଳି ନିକ୍ଷେପ କରେ, ତା ହେଲେ ତାର ମୁକାବିଲା କରିବା ପାଇଁ ବଙ୍ଗଳାଦେଶର ଘରେ ଘରେ ସୈନ୍ୟ ପ୍ରସ୍ତୁତ କରନ୍ତୁ । ଯଥାସାଧ୍ୟ ଶତ୍ରୁର ସମ୍ମୁଖୀନ ହୁଅନ୍ତୁ । ଶତ୍ରୁମାନଙ୍କୁ ଭୋକ ଓ ଶୋଷରେ ମାରିବାପାଇଁ ସମସ୍ତ କ୍ଷେତ୍ର ପ୍ରସ୍ତୁତ କରନ୍ତୁ । ରାସ୍ତା ଓ କ୍ୟାଣ୍ଟନମେଣ୍ଟସବୁ ବନ୍ଦ କରିଦିଅନ୍ତୁ । ଯଦି ସେତେବେଳେ ଆପଣମାନଙ୍କୁ ପରାମର୍ଶ ଦେବା ପାଇଁ ମୁଁ କିମ୍ବା ମୋର କୌଣସି ସହକର୍ମୀ

ବାହାରେ ନ ଥାନ୍ତି, ତେବେ ଆନ୍ଦୋଳନକୁ ବଞ୍ଚାଇ ରଖିବାର ଭାର ଆପଣମାନଙ୍କ ଉପରେ ।"

"ମୁଁ ଏ ଦେଶର ପ୍ରଧାନମନ୍ତ୍ରୀ ହେବା ପାଇଁ ଚାହୁଁ ନାହିଁ । ମୁଁ ଚାହେଁ ଏ ଦେଶର ଜନସାଧାରଣ ମାନବିକ ଅଧିକାର ପାଆନ୍ତୁ । ତେଣୁ ଆପଣମାନଙ୍କୁ ଏଠାରେ କହିରଖୁଛି, ଆଜିଠାରୁ ହାଇକୋର୍ଟ, ସୁପ୍ରିମ୍‌କୋର୍ଟ ଓ ସମସ୍ତ ନିମ୍ନ କୋର୍ଟଗୁଡ଼ିକ ବନ୍ଦ ରହିବ । ସମସ୍ତ ସରକାରୀ, ଅର୍ଦ୍ଧସରକାରୀ ଓ ବେସରକାରୀ ସଂସ୍ଥା, ସମସ୍ତ ଶିକ୍ଷାନୁଷ୍ଠାନ ଓ ସେକ୍ରେଟାରିଏଟ୍ ମଧ୍ୟ ଆଜିଠାରୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ ରହିବ ।"

ସେ ଭାଷଣ ସବୁସ୍ତରର ଲୋକଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା ଓ ପରିଣାମ ସ୍ୱରୂପ ଯେତେବେଳେ ନୂତନ ସାମରିକ ଗଭର୍ଣ୍ଣର ଜେନେରାଲ ଟିକା ଖାଁଙ୍କୁ ବଙ୍ଗଳାଦେଶର ଶାସନ ଦାୟିତ୍ୱ ଗ୍ରହଣ କରିବାଲାଗି ନିଯୁକ୍ତ ଦିଆଯାଇଥିଲା ତାହାଙ୍କୁ ଶପଥ ପାଠ କରାଇବା ପାଇଁ ମୁଖ୍ୟ ବିଚାରପତିଙ୍କ ସମେତ କୌଣସି ବିଚାରପତି ସମ୍ମତ ହୋଇ ନ ଥିଲେ । ପୁଣି ମାର୍ଚ୍ଚ ୧୪ ତାରିଖରେ ବଙ୍ଗପିତା ମୁଜିବ୍ ଘୋଷଣା କରିଥିଲେ ଯେ, ଯେତେବେଳେ ପର୍ଯ୍ୟନ୍ତ "ବଙ୍ଗଳାଦେଶ" ତାର ନ୍ୟାଯ୍ୟ ଅଧିକାର ହାସଲ କରି ନାହିଁ, ଦେଶମୁକ୍ତି ଆନ୍ଦୋଳନର ପରିସମାପ୍ତି ସମ୍ଭବ ନୁହେଁ । ସେଥିରେ ବିଚଳିତ ହୋଇ ୟାହିଆ ଖାଁ ମାର୍ଚ୍ଚ ୧୬ ତାରିଖରେ ଢାକାରେ ପହଞ୍ଚିଥିଲେ ଓ ଶେଖ୍ ମୁଜିବୁରଙ୍କ ସହିତ ଆଲୋଚନା କରିଥିଲେ । ସେ ଆଲୋଚନାରେ ଅଂଶ ଗ୍ରହଣ କରିବାପାଇଁ ଭୁଟ୍ଟୋଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥିଲା । ଭୁଟ୍ଟୋ ୨୧ ତାରିଖରେ ଢାକାଠାରେ ପହଞ୍ଚିଥିଲେ ଓ ଦୁଇ ଦିନର ଅମୀମାଂସିତ କଥାବାର୍ତ୍ତା ପରେ ଲୁକ୍‌କାୟିତ ଭାବେ ସେଠାରୁ ଅଦୃଶ୍ୟ ହୋଇଯିବା ସଙ୍ଗେ ସଙ୍ଗେ ସୈନ୍ୟବାହିନୀଙ୍କ ଦ୍ୱାରା ପୂର୍ବ-ବଙ୍ଗରେ ଅତ୍ୟାଚାରର ଆତଙ୍କ ସୃଷ୍ଟି କରିଥିଲେ ।

ତାର ଦିନକ ପରେ ମାର୍ଚ୍ଚ ୨୫ ତାରିଖରେ ଏକ ଅଜ୍ଞାତ ବେତାର କେନ୍ଦ୍ରରୁ ଶେଖ୍ ମୁଜିବର ରହମନ୍ ଘୋଷଣା କରିଥିଲେ, "ବଙ୍ଗଳାଦେଶ ଏକ ସ୍ୱାଧୀନ ସାଧାରଣତନ୍ତ୍ର ରାଷ୍ଟ୍ର ହେଲା ।"

ସେଦିନ ରାତିରେ ହିଁ ମୁଜିବଙ୍କୁ ଗିରଫ କରାଯାଇଥିଲା ।

ତାପରେ ଆନ୍ଦୋଳନ ବ୍ୟାପକରୁ ବ୍ୟାପକତର ହେଲା । ୧୯୭୧ ଅପ୍ରେଲ୍ ୧୭ ତାରିଖରେ ମୁଜିବ୍‌ନଗରଠାରେ ବିପୁଳ ଜନତା ଓ ନିର୍ବାଚିତ ପ୍ରତିନିଧିମାନଙ୍କ ସମାବେଶରେ ଘୋଷଣା କରାଯାଇଥିଲା ଯେ ବଙ୍ଗଳାଦେଶ ଏକ ସ୍ୱାଧୀନ, ସାର୍ବଭୌମ ଓ ଗଣତାନ୍ତ୍ରିକ ରାଷ୍ଟ୍ର ଓ ତାର ରାଷ୍ଟ୍ରପତି ଶେଖ୍ ମୁଜିବର ରହମନ୍ । ସେଠାରେ ସେତେବେଳର ପରିସ୍ଥିତିରେ କାର୍ଯ୍ୟନିର୍ବାହ ଲାଗି କାର୍ଯ୍ୟକାରୀ ରାଷ୍ଟ୍ରପତି

ଭାବେ ସସ୍ତୃଦ୍ ନଜରୁଲ ଇସଲାମ୍ ଓ ପ୍ରଧାନମନ୍ତ୍ରୀ ରୂପେ ତାଜୁଦ୍ଦିନ ଅହମ୍ମଦଙ୍କୁ ନିର୍ବାଚିତ କରାଯାଇଥିଲା । ବିଶ୍ୱକବି ରବୀନ୍ଦ୍ରନାଥଙ୍କ 'ଆମାର ସୋନାର ବାଙ୍ଗଲା' ମନୋନୀତ ହୋଇଥିଲା ଜାତୀୟ ସଙ୍ଗୀତ ରୂପେ । 'ବଙ୍ଗଳାଦେଶର ମାନଚିତ୍ର ଥାଇ ଏକ ପତାକାକୁ ଜାତୀୟ ପତାକା ରୂପେ ଗ୍ରହଣ କରାଯାଇଥିଲା । ସ୍ୱତନ୍ତ୍ର ଡାକଟିକଟ ପ୍ରଚଳନ ହେବା ସଙ୍ଗେ ସଙ୍ଗେ ଏକ ଅଜଣା ସ୍ଥାନରେ ସ୍ୱାଧୀନ ବଙ୍ଗଳା ବେତାର କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ସେଠାରେ ସେଇ ସାଧାରଣ ସଭାରେ ପ୍ରଧାନମନ୍ତ୍ରୀ ଅହମ୍ମଦ ବଙ୍ଗଳାଦେଶ ଯେଉଁ ମୁକ୍ତି ଆନ୍ଦୋଳନର ସମ୍ମୁଖୀନ ହୋଇଥିଲା, ସେ ପରିସ୍ଥିତିରେ ତାହାକୁ ସାହାଯ୍ୟ କରିବା ଲାଗି ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କୁ ଆହ୍ୱାନ ଜଣାଇଥିଲେ ।

ସେ ଆହ୍ୱାନର ପରିଣାମ ଭୟାବହ ହୋଇ ପଡ଼ିଥିଲା । ପାକିସ୍ଥାନ ସରକାରର ଅନେକ କର୍ମକର୍ତ୍ତା ଓ ପୃଥିବୀର ବିଭିନ୍ନ ଦେଶରେ ଥିବା ପାକିସ୍ଥାନର ଅନେକ କୂଟନୈତିକ କାର୍ଯ୍ୟାଳୟର କର୍ମଚାରୀବୃନ୍ଦ ଜଣକ ପରେ ଜଣେ ପାକିସ୍ଥାନ ସହ ସମ୍ପର୍କ ଛିନ୍ନ କରି ବଙ୍ଗଳାଦେଶ ପ୍ରତି ଆନୁଗତ୍ୟ ପ୍ରକାଶ କରିଥିଲେ ନିଜ ନିଜ ଇଚ୍ଛାରେ ।

ତେଣେ ପାକିସ୍ଥାନୀ ସୈନ୍ୟମାନଙ୍କର ଅତ୍ୟାଚାରର ମାତ୍ରା ବଙ୍ଗଳାଦେଶରେ ଏତେ ପରିମାଣରେ ବୃଦ୍ଧି ପାଇଥିଲା ଯେ ପୃଥିବୀର ବିଭିନ୍ନ ପତ୍ରପତ୍ରିକା ମନ୍ତବ୍ୟକୁ କରିଥିଲେ, "ପାକିସ୍ଥାନୀ ସୈନ୍ୟମାନଙ୍କର ଆକ୍ରମଣ ଓ ଅତ୍ୟାଚାର ଜର୍ମାନୀର ନାଜୀମାନଙ୍କ ଅତ୍ୟାଚାରଠାରୁ ମଧ୍ୟ ବଳି ପଡ଼ିଥିଲା । ସେ ଅତ୍ୟାଚାରର ଶିକାର ହୋଇପଡ଼ିଥିଲେ ବଙ୍ଗଳାଦେଶର ନିରସ୍ତ୍ର ଜନସାଧାରଣ—ସ୍ତ୍ରୀ, ପୁରୁଷ ଓ ନିରୀହ, ନିଷ୍ପାପ ଶିଶୁସମାଜ । କେତେ ମହିଳା, ଯୁବତୀ ଓ ତରୁଣୀ ସେମାନଙ୍କ ଇଜ୍ଜତ ରକ୍ଷା କରିବାକୁ ଯାଇ ପାକିସ୍ଥାନୀ ସୈନ୍ୟଙ୍କ ଲୋହିତ ଚକ୍ଷୁ ସମକ୍ଷରେ ଶିକାର ହେବା ପୂର୍ବରୁ ଆତ୍ମହତ୍ୟା ମଧ୍ୟ କରିଥିଲେ । ପାକିସ୍ଥାନୀ ସୈନ୍ୟବାହିନୀ ସ୍ୱାର୍ଥନ୍ୱେଷୀଙ୍କ ସହିତ ମନ୍ତ୍ରଣା କରି ବଙ୍ଗଳାଦେଶର ଶିକ୍ଷିତ ଓ ଶ୍ରେଷ୍ଠ ଶିକ୍ଷାବିତ୍, ରାଜନୀତିଜ୍ଞ, ରାଜନୈତିକ ନେତା ତଥା ଅନ୍ୟମାନଙ୍କୁ ଯୋଜନାବଦ୍ଧ ଭାବେ ବିପୁଳ ସଂଖ୍ୟାରେ ହତ୍ୟା କରିଥିଲେ ।"

ସେମାନଙ୍କ କ୍ରୂର କବଳରୁ ରକ୍ଷା ପାଇବାପାଇଁ ବଙ୍ଗଳାଦେଶର ଜନତା ଏକମାତ୍ର ନିରାପଦ ସ୍ଥାନ ଭାରତକୁ ମନେ କରିଥିଲେ । ତେଣୁ ପାକିସ୍ଥାନୀ ସୈନ୍ୟ-ବାହିନୀର ଅମାନୁଷିକ ଅତ୍ୟାଚାର ଓ ଅବିବେକୀ ଧ୍ୱଂସର ତାଣ୍ଡବଲୀଳା ମଧ୍ୟରୁ ମୁକ୍ତି ପାଇବା ପାଇଁ ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଶରଣାର୍ଥୀ ଭାରତର ସୀମା ମଧ୍ୟକୁ ଚାଲିଆସିବା ପାଇଁ ଆପ୍ରାଣ ଉଦ୍ୟମ କରୁଥିଲେ ଜୀବନବିକଳରେ । ଦିନକୁଦିନ ଆତ୍ମରକ୍ଷା ଉଦ୍ଦେଶ୍ୟରେ ଆସୁଥିବା ଶରଣାର୍ଥୀଙ୍କ ସଂଖ୍ୟା ବଢ଼ି ଚାଲିଥିଲା ବିଶେଷ କରି

କଲିକତାରେ । ଅନନ୍ୟୋପାୟ ହୋଇ ଭାରତ ପକ୍ଷରୁ ସେମାନଙ୍କ ଲାଗି ଶିବିରମାନ ସ୍ଥାପନ କରାଯାଇଥିଲା । ତା ଛଡ଼ା ଅନ୍ୟ କୌଣସି ଉପାୟ ନ ଥିଲା । ତେବେ ସେମାନେ ଏତେ ସଂଖ୍ୟାରେ ଭାରତ ଭିତରେ ପ୍ରବେଶ କରିଥିଲେ ଓ କରୁଥିଲେ ଯେ ତାହା ଭାରତ ପାଇଁ ଏକ ସମସ୍ୟାର ପରିଣତ ହୋଇଯାଇଥିଲା ।

## ବଙ୍ଗଳାଦେଶର ମୁକ୍ତି ସଂଗ୍ରାମ ଓ ଶ୍ରୀମତୀ ଗାନ୍ଧୀ :—

ପରିସ୍ଥିତିର ବିଡ଼ମ୍ବନା—ଭାରତୀୟ ବିମାନବାହିନୀର ଗୋଟିଏ ଯାତ୍ରୀବାହୀ ବିମାନକୁ କାଶ୍ମୀରର ଦୁଇ ଜଣ ମୁସଲମାନ ଯୁବକ ଆକସ୍ମିକ ଭାବେ ଉଡ଼ାଇ ନେବାକୁ ବାଧ୍ୟ କରିଥିଲେ ପାକିସ୍ଥାନର ଲାହୋର ବିମାନଘାଟି ପର୍ଯ୍ୟନ୍ତ । ତାହା ଥିଲା ଜାନୁୟାରୀ ୩୦ ତାରିଖ ୧୯୭୧ ମସିହାର ଘଟଣା । ବିମାନଟିକୁ ସେଠାରେ ପୋଡ଼ି ଧ୍ୱଂସ କରି ଦିଆଯାଇଥିଲା । ସେତିକିବେଳକୁ ତେଣେ ବଙ୍ଗଳାଦେଶରେ ଶେଖ୍ ମୁଜିବୁର ରହମାନଙ୍କ ବିପୁଳ ବିଜୟରେ ସ୍ତମ୍ଭୀଭୂତ ଇସଲାମାବାଦର ଶାସକବୃନ୍ଦ ଜାଣିଶୁଣି ସେ ନିର୍ବାଚନକୁ ଉପେକ୍ଷା କରିଥିବା ଯୋଗୁଁ ବଙ୍ଗଳା-ଦେଶରେ ଗଣମୁକ୍ତି ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ୟାହିୟା ଶାସନ ଗଣତନ୍ତ୍ରକୁ ସମ୍ମାନ ଦେବା ପରିବର୍ତ୍ତେ ଢିଲାଢାଲା କରି ହତ୍ୟା କରିବାପାଇଁ ଯେମିତି ଯୋଜନା କରିଥିଲା ।

ତେବେ ଔପନିବେଶବାଦ ବିଲୋପର ସମର୍ଥକ ତଥା ପୃଥିବୀରେ ସ୍ଥାୟୀ ଶାନ୍ତିକାମୀ ଶ୍ରୀମତୀ ଗାନ୍ଧୀ ବିମାନ ଅପହରଣ ଘଟଣାରେ ପାକିସ୍ଥାନୀ ସରକାରଙ୍କ ପ୍ରତିକ୍ରିୟାମୂଳକ କାର୍ଯ୍ୟକଳାପର ଶିଥିଳତା ଲକ୍ଷ୍ୟ କରିଥିଲେ । ତାର ପ୍ରତିକ୍ରିୟା ସ୍ୱରୂପ ଭାରତ ଆକାଶ ଉପରେ ପାକିସ୍ଥାନୀ ବିମାନଚଳନାକୁ ବନ୍ଦ କରିବାପାଇଁ ଦୃଢ଼ ନିଷ୍ପତ୍ତି ନେଇଥିଲେ । ତା ଫଳରେ ସାମରିକ ଶାସନର ଉପାସକ ୟାହିୟାଙ୍କ ସୈନ୍ୟବାହିନୀ ତଥା ସାମରିକ ଉପକରଣଗୁଡ଼ିକ ପାକିସ୍ଥାନରୁ ଢାକା ଆସିବା ପାଇଁ ଅତ୍ୟନ୍ତ ଅସୁବିଧାର ସମ୍ମୁଖୀନ ହେବାକୁ ହୋଇଥିଲା । ଶ୍ରୀ H. N. Panditଙ୍କ ଭାଷାରେ, "ଯେତେବେଳେ ଇସ୍‌ଲାମାବାଦର ମିଲିଟାରୀ ଶାସକମାନେ ପୂର୍ବ-ପାକିସ୍ଥାନର ବଙ୍ଗାଳୀମାନଙ୍କୁ ସୈନ୍ୟବାହିନୀ ସାହାଯ୍ୟରେ ଆୟତ୍ତ କରି ରଖିବା ପାଇଁ ମୁଖ୍ୟ ଲକ୍ଷ୍ୟ ରଖିଥିଲେ, ସେତିକିବେଳେ ଭାରତର ପଦକ୍ଷେପଗୁଡ଼ିକ ଥିଲା ପାକିସ୍ଥାନ ପାଇଁ ଏକ ଗୁରୁତର ଦଣ୍ଡ ସ୍ୱରୂପ । ସେଭଳି ପଦକ୍ଷେପ ଫଳରେ ପୂର୍ବ-ପାକିସ୍ଥାନକୁ ଅସ୍ତ୍ର ଶସ୍ତ୍ର ନେବା ଆଣିବା କରିବା ଦିଗରେ ପ୍ରାପ୍ତ ଅର୍ଦ୍ଧାଧିକ ସୁବିଧା ଏକାବେଳକେ ଅକର୍ମଣ୍ୟ ହୋଇ ଯାଇଥିଲା ।" †

---

† Caravan, Jan. 72—Page 14.

ବଙ୍ଗଳାଦେଶର ମୁକ୍ତି ସଂଗ୍ରାମରେ ଶ୍ରୀମତୀ ଗାନ୍ଧୀଙ୍କ ସହାୟତାର ପ୍ରଥମ ପଦକ୍ଷେପ ସ୍ୱରୂପ ତାହାକୁ ଗ୍ରହଣ କରାଯାଇପାରେ ।

ତେବେ ପାକିସ୍ତାନୀ ସୈନ୍ୟବାହିନୀର ଆକ୍ରମଣ ମାର୍ଚ୍ଚ ୨୫ ତାରିଖରେ ଆରମ୍ଭ ହେବା ପରେ ପରେ ବଙ୍ଗଳାଦେଶର ନରନାରୀ ପ୍ରାଣଭୟରେ ଭାରତରେ ଆଶ୍ରୟ ଗ୍ରହିଥିଲେ । ପାକିସ୍ତାନୀ ସୈନ୍ୟମାନଙ୍କର ଲକ୍ଷ୍ୟ ଥିଲା, ସେଠାରେ ବଙ୍ଗଳା ଭାଷାଭାଷୀ ଲୋକଙ୍କୁ ଯଥାସମ୍ଭବ ହତ୍ୟା କରି କିମ୍ବା ଭାରତକୁ ନିର୍ବାସନ କରି ସଂଖ୍ୟାବହୁଳ ବଙ୍ଗାଳୀ ଲୋକଙ୍କୁ ସଂଖ୍ୟାଲଘୁରେ ପରିଣତ କରିବା । ସେହି ପରିସ୍ଥିତିରେ ଜୀବନରକ୍ଷା କରିବାପାଇଁ ବଙ୍ଗଳାଦେଶର ଅଧିବାସୀମାନେ ଭାରତର ସୀମା ଭିତରକୁ ଚାଲି ଆସୁଥିଲେ ଓ ଆସାମ, ତ୍ରିପୁରା ଏବଂ ପଶ୍ଚିମବଙ୍ଗରେ ପ୍ରବେଶ କରୁଥିଲେ । ଯୁଦ୍ଧ ସମୟରେ ସେଠାରେ ଏତେଟା ଅମାନୁଷିକ ଅତ୍ୟାଚାର କରାଯାଉଥିଲା ଯେ ୧୯୭୧ ମସିହା ମଇ ମାସରେ ଭାରତ ଭିତରେ ପ୍ରତିଦିନ ପ୍ରବେଶ କରୁଥିବା ଶରଣାର୍ଥୀଙ୍କ ସଂଖ୍ୟା ଥିଲା ପ୍ରାୟ ଏକ ଲକ୍ଷ ସତାବନ ହଜାର ।

ସେହି ଲୋକମାନଙ୍କର ଅଇଥାନ ଲାଗି ଜୁଲାଇ ପ୍ରଥମ ସପ୍ତାହ ସୁଦ୍ଧା ୧୧୫୦ ଶରଣାର୍ଥୀ ଶିବିର ସ୍ଥାପନ କରାଯାଇଥିଲା ଓ ଜୁଲାଇ ଶେଷ ସୁଦ୍ଧା ଶରଣାର୍ଥୀଙ୍କ ସଂଖ୍ୟା ଥିଲା ୭୨ ଲକ୍ଷ ଏବଂ ତାହା ବୃଦ୍ଧି ପାଇ ନଭେମ୍ବରରେ ପ୍ରାୟ ଏକ କୋଟି ହୋଇଯାଇଥିଲା ।

ଶ୍ରୀମତୀ ଗାନ୍ଧୀ ୧୯୭୧ ମଇ ମାସ ୨୪ ତାରିଖରେ ଭାଷଣ ପ୍ରସଙ୍ଗରେ 'ବଙ୍ଗଳାଦେଶ' ସମ୍ପର୍କରେ କହିଥିଲେ, "ଯାହାକୁ ପାକିସ୍ତାନ ପ୍ରକୃତରେ ତାର ଆଭ୍ୟନ୍ତରୀଣ ସମସ୍ୟା ବୋଲି ଦାବୀ କରୁଛି, ତାହା ଭାରତ ପାଇଁ ମଧ୍ୟ ଏକ ଆଭ୍ୟନ୍ତରୀଣ ସମସ୍ୟାରେ ପରିଣତ ହୋଇଯାଇଛି । ତେଣୁ ଭାରତର ଶକ୍ତି ବିନିମୟରେ ଓ ଭାରତୀୟ ଭୂମି ଉପରେ ପାକିସ୍ତାନକୁ ତାର ରାଜନୈତିକ ଓ ଅନ୍ୟାନ୍ୟ ସମସ୍ୟା ସମାଧାନ କରିବାକୁ କୌଣସି ମତେ ଦିଆଯିବ ନାହିଁ ।

ସେ ପ୍ରକାର ମତାମତ ସଂପୂର୍ଣ୍ଣ ଯଥାର୍ଥ ଥିଲା । ଲକ୍ଷ ଲକ୍ଷ ଶରଣାର୍ଥୀ ଭାରତ ଭିତରକୁ ପଶିଆସିବା ଫଳରେ ଭାରତର ଅର୍ଥନୀତି ବିପର୍ଯ୍ୟସ୍ତ ହୋଇପଡ଼ିବା ସ୍ୱାଭାବିକ କଥା । ପ୍ରଥମତଃ ଭାରତରେ ଖାଦ୍ୟସମସ୍ୟା ଭଳି ବାସସ୍ଥାନ ଓ ଅନ୍ୟାନ୍ୟ ଅର୍ଥନୈତିକ ସମସ୍ୟା ମୁଣ୍ଡ ଟେକି ରହିଥିବା ବେଳେ ବଙ୍ଗଳାଦେଶର ଶରଣାର୍ଥୀ-ମାନଙ୍କୁ ଅଇଥାନ ତଥା ସେମାନଙ୍କ ପାଇଁ ଖାଦ୍ୟ ଯୋଗାଣ ପ୍ରତି ଗୁରୁତ୍ୱ ଦିଆଯାଇ-ଥିବାରୁ ଭାରତ ପାଇଁ ତାହା ଥିଲା ଏକ ବିରାଟ ସମସ୍ୟା । ଦେଶର ଅର୍ଥନୈତିକ ପ୍ରଗତି ନିମନ୍ତେ ଯେଉଁ ଅର୍ଥ ବିନିଯୋଗ ହୋଇଥାନ୍ତା ତାହା ଶରଣାର୍ଥୀମାନଙ୍କ ପାଇଁ ବିନିଯୋଗ କରାଯାଇଥିଲା । ସେ ପ୍ରକାର ପରିସ୍ଥିତିରେ ଶ୍ରୀମତୀ ଗାନ୍ଧୀ ସମଗ୍ର ବିଶ୍ୱ

ଜନମତକୁ ଜାଗ୍ରତ କରିବାପାଇଁ ଉଦ୍ୟମ କରିଥିଲେ ଓ ଉଦ୍ୟମ କରିଥିଲେ ପୃଥିବୀର ଅନ୍ୟାନ୍ୟ ଶାନ୍ତିକାମୀ ରାଷ୍ଟ୍ରମାନେ ସେ ସମସ୍ୟାରେ ହସ୍ତକ୍ଷେପ କରି ଉଭୟ ଭୂଖଣ୍ଡ ମଧ୍ୟରେ ଶାନ୍ତି ଫେରାଇ ଆଣିବା ପାଇଁ ଉଦ୍ୟମ କରିବେ ।

କେବଳ ସେଇ ଉଦ୍ଦେଶ୍ୟ ନେଇ ଜୁନ୍ ମାସରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପୃଥିବୀର କେତୋଟି ପ୍ରଧାନ ପ୍ରଧାନ ଦେଶର ରାଜଧାନୀକୁ ଭାରତର ପ୍ରତିନିଧିମାନଙ୍କୁ ପଠାଇଥିଲେ । ବୈଦେଶିକମନ୍ତ୍ରୀ ସର୍ଦ୍ଦାର ସ୍ୱରଣ ସିଂ ପ୍ରଥମ ଦଫାରେ ରୁଷିଆ, ଫ୍ରାନ୍‌ସ, ଇଂଲଣ୍ଡ, ପଶ୍ଚିମ ଜର୍ମାନୀ, ଆମେରିକା ଓ କାନାଡ଼ା ଯାତ୍ରା କରିଥିଲେ । ତାଙ୍କ ବ୍ୟତୀତ ବିଭିନ୍ନ ଦେଶର ସରକାର ଓ ଜନଗଣଙ୍କୁ ପାକିସ୍ଥାନ ଓ ବଙ୍ଗଳାଦେଶ ବିବାଦର ପରିଣାମ ସ୍ୱରୂପ ଯେ କି ପ୍ରକାର ବିଷମ ସମସ୍ୟାର ସମ୍ମୁଖୀନ ହୋଇଥିଲି ସେ ସମ୍ପର୍କରେ ଅବହିତ କରାଇବା ପାଇଁ ଓ ପ୍ରଧାନମନ୍ତ୍ରୀଙ୍କ ବ୍ୟକ୍ତିଗତ ମତ ପରିବେଷଣ ପାଇଁ ଅନ୍ୟ ଯେଉଁମାନେ ଯାଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ବିରକଭୂଲ୍ଲା, ଫକରୁଦ୍ଦିନ ଅଲ୍ଲି ଅହମ୍ମଦ, କରଣ ସିଂ, ମଇନୁଲ ହକ୍ ଚୌଧୁରୀ, ମୋହନ କୁମାର ମଙ୍ଗଲମ୍ ଏବଂ ସିଦ୍ଧାର୍ଥଶଙ୍କର ରାୟ । ସେମାନଙ୍କ ବ୍ୟତୀତ ଗାନ୍ଧିଜୀଙ୍କ ଜଣେ ଅନ୍ତରଙ୍ଗ ସହକର୍ମୀ ଶ୍ରୀ ଜୟପ୍ରକାଶ ନାରାୟଣ ତାଙ୍କ ନିଜ ଇଚ୍ଛାରେ ଭାରତ ସପକ୍ଷରେ ଜନମତ ଜାଗ୍ରତ କରିବାପାଇଁ ମଧ୍ୟ ଅନେକ ଦେଶ ଭ୍ରମଣ କରିଥିଲେ । କିନ୍ତୁ ଶ୍ରୀମତୀ ଗାନ୍ଧୀଙ୍କର ସେପ୍ରକାର ପଦକ୍ଷେପ କୌଣସି ପ୍ରକାରେ ଫଳପ୍ରଦ ହୋଇ ନ ଥିଲା ।

ଅଗଷ୍ଟ ୯ ତାରିଖ ୧୯୭୧ ମସିହା ଥିଲା ସେତେବେଳର ପରିସ୍ଥିତିରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଦିନ । ସେହି ଦିନ ରୁଷ ସହିତ ଭାରତ ଏକ ଦୀର୍ଘମିଆଦୀ ଚୁକ୍ତିନାମାରେ ସ୍ୱାକ୍ଷର କରିଥିଲା । ସେ ଚୁକ୍ତିନାମାରେ ଅନ୍ୟାନ୍ୟ ଆଭିମୁଖ୍ୟ ସହିତ ଗୋଟିଏ ଦଫା ଥିଲା ଯେ ଉଭୟ ଦେଶ ମଧ୍ୟରୁ କୌଣସି ଗୋଟିଏ ଦେଶ ଉପରେ ଯଦି କୌଣସି ତୃତୀୟ ପକ୍ଷ ଆକ୍ରମଣ କରେ ବା ଆକ୍ରମଣର ଧମକ ଦିଏ ତେବେ ଅପର ପକ୍ଷ ତୃତୀୟ ରାଷ୍ଟ୍ରକୁ କୌଣସି ପ୍ରକାର ସାମରିକ ସାହାଯ୍ୟ ନ ଦେଇ ବରଂ ଶାନ୍ତି ଫେରାଇ ଆଣିବା ଲାଗି ଚେଷ୍ଟା କରିବା ସଙ୍ଗେ ସଙ୍ଗେ ସମ୍ପୃକ୍ତ ରାଷ୍ଟ୍ରର ନିରାପତ୍ତା ରକ୍ଷା କରିବାପାଇଁ ଉଚିତ ପଦକ୍ଷେପମାନ ଗ୍ରହଣ କରିବ ।

ସେତେବେଳକୁ ପାକିସ୍ଥାନ-ବଙ୍ଗଳାଦେଶ-ଭାରତ ସମସ୍ୟା ଉପରେ ସମଗ୍ର ବିଶ୍ୱବାସୀଙ୍କ ଦୃଷ୍ଟି ଆକର୍ଷିତ ହୋଇଥିଲା କହିଲେ ଚଳେ ଏବଂ ତାର ମୂଳରେ ଥିଲା ଭାରତ । କାରଣ ଭାରତ ସମଗ୍ର ବିଶ୍ୱ ସମକ୍ଷରେ ବଙ୍ଗଳାଦେଶ ସମସ୍ୟାକୁ ଯଥାଯଥ ଭାବରେ ଉପସ୍ଥାପିତ କରୁଥିଲା ଓ ବିଶ୍ୱ ଜନମତ ଜାଗ୍ରତ କରୁଥିଲା । ତେଣୁ ସେ ପରିପ୍ରେକ୍ଷୀରେ ୟାହିୟା ସରକାର ଚିନ୍ତା କରିଥିଲା ଯଦି ଭାରତ ଉପରେ ଆକ୍ରମଣ କରାଯାଏ, ତାହେଲେ ଭାରତ ହୁଏତ କେବଳ ନିଜ ନିରାପତ୍ତା ପ୍ରତି ଦୃଷ୍ଟି ଦେବାକୁ

ବାଧ ହେବ ଏବଂ ତାର ଫଳରେ ବିଶ୍ୱବାସୀ ବଙ୍ଗଳାଦେଶ ସମ୍ପର୍କରେ ଅଧିକ ତଥ୍ୟ ପାଇପାରିବେ ନାହିଁ । କିନ୍ତୁ ସେହି ପରିସ୍ଥିତିରେ ଭାରତ-ସୋଭିଏତ୍ ମୈତ୍ରୀଚୁକ୍ତି ପାକିସ୍ଥାନର ସ୍ୱାହିସ୍ୱା ସରକାରଙ୍କ ସେ ବିଚିରବୁଦ୍ଧିକୁ ବାନ୍ଚବଣା କରିଦେଇଥିଲା ।

ସେତେବେଳେ ସମଗ୍ର ବିଶ୍ୱବାସୀ ଅନୁଭବ କରି ସାରିଥିଲେ ଯେ ପାକିସ୍ଥାନ ସରକାର ଯେଉଁ ନୀତି ପୋଷଣ କରୁଥିଲା, ତାହା କସ୍ମିନ୍‌କାଳେ ଉଚିତ ବୋଲି ବିବେଚିତ ହୋଇ ନ ପାରେ । ବଙ୍ଗଳାଦେଶର ଆଭ୍ୟନ୍ତରୀଣ ପରିସ୍ଥିତି ଓ ତାର ପରିଣାମ ସ୍ୱରୂପ ଭାରତର ଦୁରବସ୍ଥା ସମ୍ପର୍କରେ ସମ୍ପୂର୍ଣ୍ଣ ଧାରଣା ଦେବାପାଇଁ ଓ ବଙ୍ଗଳାଦେଶ ବିରୁଦ୍ଧରେ ଜାଗ୍ରତ ବିଶ୍ୱ ଜନମତକୁ ଉଜ୍ଜୀବିତ କରି ରଖାଇବା ପାଇଁ ନିଜେ ଶ୍ରୀମତୀ ଗାନ୍ଧୀ ୧୯୭୧ ମସିହା ସେପ୍ଟେମ୍ବର ଓ ଅକ୍ଟୋବର ମାସରେ ପୃଥିବୀର କେତେକ ପ୍ରଧାନ ପ୍ରଧାନ ଦେଶ ପରିଭ୍ରମଣରେ ଯାଇଥିଲେ । ସେ ଗସ୍ତକମର ଆଉ ଏକ ଉଦ୍ଦେଶ୍ୟ ଥିଲା ଯେ, ପାକିସ୍ଥାନ ଯାହାକୁ ସେତେବେଳ ପର୍ଯ୍ୟନ୍ତ କେବଳ ଏକ ଘରୋଇ ସମସ୍ୟା ବୋଲି ଆସ୍ଫାଳନ କରୁଛି, ତାହାର କୌଣସି ଭିତ୍ତି ନ ଥିବା କଥା ସମଗ୍ର ବିଶ୍ୱର ନେତୃବୃନ୍ଦ ଅନୁଭବ କରିବା ଆବଶ୍ୟକ ।

୧୯୭୧ ମସିହା ସେପ୍ଟେମ୍ବର ୨୮ ତାରିଖରେ ସେଇ ଉପଲକ୍ଷେ ଆୟୋଜିତ ଏକ ବିରାଟ ସାଧାରଣ ସଭା ରୁଷିଆର ରାଜଧାନୀ ମସ୍କୋଠାରେ ଅନୁଷ୍ଠିତ ହୋଇଥିଲା ଏବଂ ସେଠାରେ ଭାଷଣ ଦେଇ ସେ କହିଥିଲେ, "ପଡ଼ିଶା ଘରେ ନିଆଁ ଲାଗିଲେ ଜଣେ ବିବ୍ରତ ନ ହୋଇ ରହିପାରିବ ନାହିଁ । ପୂର୍ବବଙ୍ଗ, ଯାହାକୁ ପୃଥିବୀ ବଙ୍ଗଳାଦେଶ ବୋଲି କହିଲାଣି, ସେଠାରେ ଯାହା ଘଟିଯାଇଛି, ତାହା ପାକିସ୍ଥାନର ଘରୋଇ ବ୍ୟାପାର ବୋଲି ବୁଝାଯାଇ ନ ପାରେ । ନବେ ଲକ୍ଷରୁ ଅଧିକ ପୂର୍ବବଙ୍ଗର ଅଧିବାସୀ ବର୍ତ୍ତମାନ ଆମ ଦେଶ ଭିତରକୁ ପଶି ଆସିଛନ୍ତି । ତାଙ୍କ ନିଜ ଦେଶରେ କିଛିରହି କାର୍ଯ୍ୟ କରିବାର ଅଧିକାର କ'ଣ ତାଙ୍କର ନାହିଁ ?......ଏହା ଭାରତ-ପାକିସ୍ଥାନ ବିବାଦ ନୁହେଁ, ଏହା ଏକ ଆନ୍ତର୍ଜାତିକ ସମସ୍ୟା । ଏହାର ବୋଝ ଭାରତ ଉପରେ ପଡ଼ୁଛି ଏବଂ ଆମର ସୀମିତ ଅର୍ଥନୈତିକ ଓ ଅନ୍ୟାନ୍ୟ ସମ୍ବଳକୁ ସଙ୍କୁଚିତ କରି ପକାଉଛି ।"

ତା ପରେ ପରେ ଲଣ୍ଡନର ରୟାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଟରନେସନାଲ ଆଫେୟାର୍ସଠାରେ ୧୯୭୧ ଅକ୍ଟୋବର ୨୯ ତାରିଖରେ ସେ କହିଥିଲେ, "କୌଣସି ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନ କରିବା ନୀତିରେ ଆମେ ବିଶ୍ୱାସ ରଖିଛୁ ଏବଂ ଏହି ନୀତି ଆମ୍ଭେ ଦୃଢ଼ତାର ସହିତ ପାଳନ କରୁଛୁ । କିନ୍ତୁ ଏହା କ'ଣ ଏକତରଫା ହୋଇପାରେ ? ଆଜି ଆମ ବ୍ୟାପାରରେ ହସ୍ତକ୍ଷେପ ଘଟିଛି ଏବଂ ଆମ

ଦେଶର ସ୍ଥିତି ଓ ପ୍ରଗତି ବିପନ୍ନ ହୋଇପଡ଼ିଛି । ପୂର୍ବବଙ୍ଗର ଦାରୁଣ ଦୁର୍ଦ୍ଦଶା ଫଳରେ ନବେ ଲକ୍ଷ ଲୋକ ଆମ ସୀମା ଭିତରକୁ ମାଡ଼ି ଆସିଛନ୍ତି ଏବଂ ତଦ୍ଦ୍ୱାରା ଏଭଳି ଏକ ପରିସ୍ଥିତି ସୃଷ୍ଟି ହୋଇଛି ଯେ, ଦେଶବିଭାଜନ କାଳର ଆଲୋଡ଼ନଠାରୁ ମଧ୍ୟ ତାହା ବଳି ପଡ଼ିଛି ।....ପ୍ରବଳ ଉତ୍ତେଜନା ସମ୍ମୁଖରେ ବି ଆମେ ଭାରତବାସୀ ସଂଯତ ଓ ଶାନ୍ତ । କିନ୍ତୁ ଆମ ଦେଶର ସ୍ୱାର୍ଥରକ୍ଷା କରିବା ଆମର ଦାୟିତ୍ୱ ।"

ପୃଥିବୀର ବଡ଼ ବଡ଼ ଛଅଟି ରାଜ୍ୟ ପରିଭ୍ରମଣ କରି ଶ୍ରୀମତୀ ଇନ୍ଦିରା ଭାରତକୁ ଫେରିଆସି ନଭେମ୍ବର ୧୫ ତାରିଖରେ ପାର୍ଲ୍ୟାମେଣ୍ଟରେ ଏକ ବିବୃତି ପ୍ରଦାନ କରିଥିଲେ ଓ ସେଥିରେ ସେ ଉଲ୍ଲେଖ କରିଥିଲେ ଯେ, "ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶର ଲୋକେ ବଙ୍ଗଳାଦେଶର ସମସ୍ୟା ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ । ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କର ସହାନୁଭୂତି ତଥା ନୈତିକ ଓ ରାଜନୈତିକ ସମର୍ଥନ ପ୍ରଶଂସନୀୟ । କିନ୍ତୁ ବୋଝର ଭାର ଆମକୁ ଏବଂ ଆମର ପୂର୍ଣ୍ଣ ସାହାଯ୍ୟ ଓ ସମର୍ଥନ ଲାଭ କରୁଥିବା ବଙ୍ଗଳାଦେଶର ଲୋକଙ୍କୁ ବୋହିବାକୁ ପଡ଼ିବ । ଆମର ନିରାପତ୍ତା ବିପନ୍ନ ହେବା ବିଷୟରେ ଆମକୁ ପ୍ରସ୍ତୁତ ରହିବାକୁ ପଡ଼ିବ ଏବଂ ଆମେ ଆମର ସ୍ୱାଧୀନତା ଓ ଆଞ୍ଚଳିକ ଅଖଣ୍ଡତା ରକ୍ଷା କରିବା ଲାଗି ଦେଶର ଶେଷ ନରନାରୀ ପର୍ଯ୍ୟନ୍ତ ପ୍ରସ୍ତୁତ ଅଛୁ । ବଙ୍ଗଳାଦେଶ ସମସ୍ୟାର ସନ୍ତୋଷଜନକ ସମାଧାନ ନ ହେବା ପର୍ଯ୍ୟନ୍ତ ଆମେ ସୀମାନ୍ତଗୁଡ଼ିକରୁ ସେନାବାହିନୀ ପ୍ରତ୍ୟାହାର କରି ଆଣିପାରିବୁ ନାହିଁ । କାରଣ ତାହା ଆମର ନିରାପତ୍ତା ପ୍ରତି ଏକ ଚରମ ଆତଙ୍କ ହୋଇପଡ଼ିଛି ।"

ପାକିସ୍ଥାନ ପ୍ରେସିଡ଼େଣ୍ଟ ୟାହିୟା ଖାଁ ନଭେମ୍ବର ୨୩ ତାରିଖରେ ପାକିସ୍ଥାନରେ ଜରୁରୀକାଳୀନ ଅବସ୍ଥା ଜାରି କରିଥିଲେ ଓ ତାର ତିନି ଦିନ ପରେ ଏକ ଚମକପ୍ରଦ ଘୋଷଣା କରିଥିଲେ ଯେ ଦଶ ଦିନ ମଧ୍ୟରେ ସେ ଭାରତ ସହିତ ଯୁଦ୍ଧ କରିପାରନ୍ତି । କଣ୍ଟାବାଡ଼ରେ ଲୁଗା ପକାଇ କଳି କରିବା ନ୍ୟାୟରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଙ୍କୁ ସେ ବ୍ୟକ୍ତିଗତ ଭାବେ ଆକ୍ଷେପ କରିବା ସଙ୍ଗେ ସଙ୍ଗେ ଭାରତର ବୈଦେଶିକ ନୀତିର ମଧ୍ୟ କଠୋର ସମାଲୋଚନା କରିଥିଲେ ।

ସତକୁ ସତ ଦଶ ଦିନ ଶେଷ ନ ହେଉଣୁ ଡିସେମ୍ବର ତିନି ତାରିଖ ରାତିରେ ପାକିସ୍ଥାନ ଭାରତର ୧୪ଟି ବିମାନଘାଟି ଉପରେ ଅତର୍କିତ ଭାବରେ ବୋମାବୃଷ୍ଟି କରିଥିଲା । ସେତେବେଳକୁ ଶ୍ରୀମତୀ ଗାନ୍ଧୀ କଲିକତାରେ ଏକ ବିରାଟ ସାଧାରଣ ସଭାରେ ଯୋଗ ଦେବାପାଇଁ ପ୍ରସ୍ତୁତ ହେଉଥିଲେ । ସେଇ ସମ୍ବାଦ ପାଇ ପ୍ରଧାନମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରିବୃନ୍ଦ ସମସ୍ତ କାର୍ଯ୍ୟକ୍ରମ ବାତିଲ କରି ଦିଲ୍ଲୀ ଫେରି ଆସିଥିଲେ ଏବଂ ସେହିଦିନ ରାତି ୧୧ଟା ବେଳେ ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରିଥିଲେ ରାଷ୍ଟ୍ରପତି ।

ବାସ୍ତବିକ୍ ୧୯୭୧ର ଭାରତ-ପାକିସ୍ଥାନ ଯୁଦ୍ଧ ବିଧିବଦ୍ଧ ଭାବେ ଆରମ୍ଭ ହୋଇଥିଲା ଡିସେମ୍ବର ତିନି ତାରିଖରେ । ଭାରତୀୟ ସେନାନୀ ପୂର୍ବ ଓ ପଶ୍ଚିମ

ସୀମାନ୍ତରେ ପାକିସ୍ଥାନୀ ଆକ୍ରମଣକୁ ପ୍ରତିହତ କରି ବଙ୍ଗଳାଦେଶର ମୁକ୍ତିବାହିନୀ ସହିତ ହାତ ମିଳାଇଥିଲେ । ଭାରତୀୟ ସେନାମାନଙ୍କ ପ୍ରଧାନ ଲକ୍ଷ୍ୟ ଥିଲା ବଙ୍ଗଳା-ଦେଶକୁ ମୁକ୍ତ କରିବା ।

ଡିସେମ୍ବର ଛ ତାରିଖ ଦିନ ଭାରତ ବଙ୍ଗଳାଦେଶକୁ କୂଟନୈତିକ ସ୍ୱୀକୃତି ପ୍ରଦାନ କରିଥିଲା ।

ତା ପରଦିନ ବିଧିବଦ୍ଧ ଭାବେ ପାକିସ୍ଥାନ ଭାରତ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା ।

ଯୁଦ୍ଧ ଆରମ୍ଭ ହେବାର ମାତ୍ର ଆଠ ଦିନ ମଧ୍ୟରେ ବଙ୍ଗଳାଦେଶର ଅଧିକାଂଶ ସ୍ଥାନ ପାକିସ୍ଥାନୀ ସୈନ୍ୟଙ୍କ ହାତରୁ ନିଜ ହାତକୁ ନେଇଆସିବା ପରେ ଡିସେମ୍ବର ୧୩ ତାରିଖ ଦିନ ଭାରତୀୟ ସେନାମାନେ ଆକାଶମାର୍ଗରୁ ଅବତରଣ କରି ଡାକା ଦିଗରୁ ଢାକ୍‌କା ଅବରୋଧ କରିଥିଲେ । ସେହିଦିନ ଜେନେରାଲ ମାନେକ୍‌ସା ପାକ୍-ସେନାମାନଙ୍କୁ ଆତ୍ମସମର୍ପଣ କରିବାପାଇଁ ତୃତୀୟ ଥର ଆହ୍ୱାନ ଦେଇଥିଲେ । ସେହିଦିନ ହିଁ ଶ୍ରୀମତୀ ଗାନ୍ଧୀ ବଙ୍ଗଳାଦେଶର ମୁକ୍ତି-ସଂଗ୍ରାମରେ ଭାରତୀୟ ସେନାମାନଙ୍କ ଭୂମିକା ସମ୍ପର୍କରେ ଏକ ବିବୃତିରେ କହିଥିଲେ, "ଆମେ ଏହି ଯେଉଁ ବିପଦର ସମ୍ମୁଖୀନ ହୋଇଛୁ ତାହା ଏକ କ୍ରୀଡ଼ା-କୌତୁକ ନୁହେଁ କିମ୍ବା ଆମେ ଅନ୍ୟ ରାଷ୍ଟ୍ରର କୌଣସି ଅଞ୍ଚଳ ଚାହୁଁ ନା । କୌଣସି ରାଷ୍ଟ୍ରକୁ ଧ୍ୱଂସ କରିଦେବା ମଧ୍ୟ ଆମର ଲକ୍ଷ୍ୟ ନୁହେଁ । ମାତ୍ର ଆମେ ଭଲଭାବେ ଜାଣିପାରୁଛୁ, ଆଜି ବଙ୍ଗଳାଦେଶରେ ଯାହା ଘଟିଯାଉଛି ତାହା ଜନସାଧାରଣଙ୍କ ମୁକ୍ତିର ସ୍ୱର—ସ୍ୱାଧୀନତାର ଦାବୀ । ମୁକ୍ତିପ୍ରେମୀ ବଙ୍ଗଳାଦେଶବାସୀଙ୍କ ହୃଦକନ୍ଦରରୁ ନିର୍ଗତ ଦୀପ୍ତ ଶିଖା ନିର୍ବାପିତ ହୋଇ ନ ପାରେ । ଆମେ ଏକଥା ବି ଜାଣିଥିଲୁ ଯେ ସେହି ମୁକ୍ତିର ସ୍ୱରକୁ ଅବରୋଧ କରାଯାଇଥିଲେ ଆମ ନିଜର ସ୍ୱାଧୀନତା ସାଂଘାତିକ ଭାବେ ବିପର୍ଯ୍ୟସ୍ତ ହୋଇଥାନ୍ତା ଏବଂ ଆମ ସ୍ୱାଧୀନତା ପ୍ରତି ସେହି ଆଘାତର ଅର୍ଥ ହୋଇଥାନ୍ତା ଆମ ମୌଳିକ ନୀତିଗୁଡ଼ିକ ପ୍ରତି ସେହି ଆଘାତ । ଏଇଥିପାଇଁ ଆମେ ଆଜି ସଂଗ୍ରାମରତ ଏବଂ ମୁଁ ଆଗରୁ କହିଛି, କାହାର ରାଜ୍ୟ ଜୟ କରିବା ଲାଗି ଆମେ ଯୁଦ୍ଧ କରୁ ନାହୁଁ କିମ୍ବା କୌଣସି ଦେଶକୁ ଧ୍ୱଂସ କରିଦେବା ଲାଗି ଆମେ ଯୁଦ୍ଧ କରୁନାହୁଁ ।"

"ମୁଁ ଶୁଣିବାକୁ ପାଉଛି ଯେ, କେତେକ ଦେଶ ପାକିସ୍ଥାନ ସହିତ ତାଙ୍କର ଚୁକ୍ତି ବା ରାଜିନାମା ରହିଛି ବୋଲି ଆମକୁ ଧମକ ଦେବାକୁ ଚେଷ୍ଟା କରୁଛନ୍ତି । ଏହା ମୁଁ ଆଗରୁ ଜାଣି ନାହିଁ; କାରଣ ମୁଁ ଯେତେଦୂର ଜାଣେ, ଯେ କୌଣସି ରାଜିନାମା ହେଉନା କାହିଁକି, ତାହା ସାମ୍ୟବାଦ ବିରୁଦ୍ଧରେ ଗଢ଼ା ଯାଇଥିଲା । ଗଣତନ୍ତ୍ର ବିରୁଦ୍ଧରେ ଲଢ଼ିବା ପାଇଁ ସେହି ଚୁକ୍ତି ହୋଇ ନ ଥିଲା । ନ୍ୟାୟର ସ୍ୱର

ବିରୁଦ୍ଧରେ ତାହା ଉଦ୍ଦିଷ୍ଟ ନ ଥିଲା । କାହାର ଧ୍ୱଂସ ସାଧନ ତାର ଲକ୍ଷ୍ୟ ନ ଥିଲା । କିନ୍ତୁ ଯଦି ଏହାହିଁ ଥିଲା ତାହାର ଉଦ୍ଦେଶ୍ୟ, ତେବେ ସେମାନେ ପୃଥିବୀ ସମକ୍ଷରେ ଏକ ମହାନ୍ ମିଥ୍ୟା ବ୍ୟକ୍ତ କରିଥିଲେ ।"

"ଆଜି କେତେକ ଲୋକ ଆମ ନୀତିର ବଦନାମ୍ କରୁଛନ୍ତି । ସେମାନେ କହୁଛନ୍ତି ଯେ, ଆମେ ଭାରତରେ ସାମ୍ୟବାଦକୁ ଉତ୍ସାହିତ କରୁଛୁ ଏବଂ ସେମାନେ ଆମକୁ ଚୀନ କବଳରୁ ରକ୍ଷା କରିବାକୁ ଚାହାନ୍ତି ଓ ଆମେ ତାଙ୍କୁ ସେଥିରେ ସାହାଯ୍ୟ କରୁ ନାହୁଁ । ଏହା ସଙ୍ଗେ ସଙ୍ଗେ ସେମାନେ କହୁଛନ୍ତି ଯେ ଆଜି ଚୀନ ପୃଥିବୀର ଏକ ବୃହତ୍ତ୍ୱ ଶକ୍ତିରେ ପରିଣତ ହୋଇଛି ଏବଂ ତାହାର ପ୍ରତିବନ୍ଧକ ହୋଇ କେହି ନ ଆସିବା ଉଚିତ । ଏହି ପ୍ରକାର ପୃଥିବୀର ଗତିପଥ ବଦଳି ଯାଉଛି । ଯଦି ଆମେ ଅତୀତ ଇତିହାସ ଉପରେ ଦୃଷ୍ଟି ନିକ୍ଷେପ କରିବା ତେବେ ଆମେ ଦେଖିବା କେବଳ ଗୋଟିଏ ଦେଶ—ଭାରତବର୍ଷ, କେବଳ ଗୋଟାଏ ଜାତି ଯେ କି ଆଦର୍ଶ ବଦଳାଇ ନାହିଁ, ଫଳାଫଳରୁ ଓହରି ଯାଇ ନାହିଁ ଏବଂ ଗମ୍ଭୀର ବିବେଚନାପୂର୍ବକ ଏକ ନିର୍ଦ୍ଦିଷ୍ଟ ପନ୍ଥା ଅନୁସରଣ କରିଆସିଛି । ଆରମ୍ଭରୁ ଆମେ ସେହି ପଥରେ ଅଗ୍ରସର ହୋଇ ଚାଲିଛୁ । ଆମେ ଆଜି ଆମ ଲକ୍ଷ୍ୟ ହାସଲ ଦିଗରେ ଦୃଢ଼ ଭାବରେ ଦଣ୍ଡାୟମାନ ଏବଂ ସେହି ମାର୍ଗରେ ହିଁ ଭବିଷ୍ୟତରେ ଆଗେଇବା ପାଇଁ ପ୍ରୟାସୀ ।"

"ମୁଁ ପୁନରାବୃତ୍ତି କରି କହୁଛି ଯେ ଆମେ ଦୁର୍ବଳ ହୋଇପାରୁ; ଆମର ସେନାବାହିନୀ ପୃଥିବୀର ବଡ଼ ବଡ଼ ରାଷ୍ଟ୍ରଙ୍କର ସମକକ୍ଷ ନୁହେଁ । ଯେଉଁମାନେ ଇଉରୋପୀୟ ଦେଶଗୁଡ଼ିକୁ ମଧ୍ୟ ଥରହର କରି ଦେଇଥିଲେ, ତାଙ୍କ ଶକ୍ତି ତୁଳନାରେ ଆମେ କିଛି ନୋହୁଁ । ତାଙ୍କଠାରେ ଥିବା ଅସ୍ତ୍ରଶସ୍ତ୍ର, ଧନଦୌଲତ, ଶିଳ୍ପ କାରଖାନା ଆମର ନାହିଁ । କିନ୍ତୁ ତାଙ୍କଠି ଅଛି ଭାରତର ଆତ୍ମା, ତାର ସଂସ୍କୃତି, ସତ୍ୟପରାୟଣତା ଓ ନ୍ୟାୟପରାୟଣତା । ଆମେ ପୃଥିବୀକୁ ଦେଖାଇ ଦେବାକୁ ଚାହୁଁ ଯେ ସମସ୍ତ ଶକ୍ତି ଆମ ବିରୁଦ୍ଧରେ ହାତ ମିଳାଇଲେ ମଧ୍ୟ ମଣିଷର ଆଭ୍ୟନ୍ତରୀଣ ଉତ୍ସ—ଯାହା ଭାରତର ଆଦର୍ଶ, ତାକୁ ଦଳି ଦେଇପାରିବେ ନାହିଁ କି ଟଳାଇ ଦେଇପାରିବେ ନାହିଁ ।"

"ପାକିସ୍ଥାନ ଆମର ଶତ୍ରୁ ନୁହେଁ । ପାକିସ୍ଥାନର ଜନସାଧାରଣ ମଧ୍ୟ ଆମର ଶତ୍ରୁ ନୁହନ୍ତି । ମୁଁ ନିଶ୍ଚିତ ଯେ ସେମାନେ ମଧ୍ୟ ଯଦି ପରିସ୍ଥିତିର ବାସ୍ତବତା ଉପଲବ୍ଧି କରିବେ, ପରିସ୍ପର ସଂଘର୍ଷର ମାର୍ଗ ଗ୍ରହଣ କରିବେ ନାହିଁ । କିନ୍ତୁ ସେମାନେ ତାଙ୍କୁ ବିପଥରେ ପରିଚାଳିତ କରୁଛନ୍ତି । ଆଜି ଯଦି ପାକିସ୍ଥାନ ଦୁର୍ବଳ, ମୁଁ ଏହା ଦୃଢ଼ ଭାବରେ କହିପାରେ ଯେ ଯେଉଁମାନେ ତାହାକୁ ଅସ୍ତ୍ର ଯୋଗାଉଛନ୍ତି, ସେମାନେ ହିଁ ତାକୁ ଦୁର୍ବଳ କରି ଦେଇଛନ୍ତି । ଆମର ସ୍ୱାଧୀନତା ଯଦି ଦୃଢ଼, ଆମେ କାହାର ସାହାଯ୍ୟ ନ ନେଇ ମଧ୍ୟ ଶକ୍ତିଶାଳୀ ହୋଇପାରିବା, ଆମ୍ଭେ ଯାହା ଚାହିଁବା ହାସଲ କରିପାରିବା ।"

ଏଠାରେ ଉଲ୍ଲେଖ କରାଯାଇପାରେ ଯେ କେତେକ ଦେଶ ପାକିସ୍ଥାନକୁ ଅସ୍ତ୍ରଶସ୍ତ୍ର ଯୋଗାଉଥିଲେ ଓ ଅନ୍ୟ ଉଦ୍ଦେଶ୍ୟ ନେଇ ଦିଆଯାଇଥିବା ଆମେରିକାର ଅସ୍ତ୍ରଶସ୍ତ୍ରଗୁଡ଼ିକୁ ସ୍ୱାଧୀନଙ୍କ ମିଲ୍ଟାରୀବାହିନୀ ବଙ୍ଗଳାଦେଶର ନିରୀହ ଜନତା ଓ ଭାରତୀୟ ସେନାମାନଙ୍କ ଉପରେ ପ୍ରୟୋଗ କରୁଥିଲେ । ଶ୍ରୀମତୀ ଇନ୍ଦିରା ଆମେରିକା ରାଷ୍ଟ୍ରପତି ନିକ୍ସନଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ, ଯେଉଁଥିରେ କି ସ୍ପଷ୍ଟ ପ୍ରତୀୟମାନ ହେଉଥିଲା ଯେ ଭାରତ ଚାହେଁ ଶାନ୍ତି—ସ୍ଥାୟୀ ଶାନ୍ତି ଏବଂ ସେଥିପାଇଁ ସବୁବେଳେ ସେ ଚାହେଁ ଅନ୍ୟମାନଙ୍କ ସହଯୋଗ । ପାକିସ୍ଥାନ ସହିତ ଯୁଦ୍ଧର ଘନଘଟା ମଧ୍ୟରେ ପୃଥିବୀରେ ବିଶେଷ କରି ଭାରତ-ପାକିସ୍ଥାନ ମଧ୍ୟରେ ଶାନ୍ତି ପ୍ରତିଷ୍ଠା ପାଇଁ ଓ ସେଥିପାଇଁ ସହଯୋଗ କରିବା ପାଇଁ ଆମେରିକା ରାଷ୍ଟ୍ରପତିଙ୍କ ନିକଟକୁ ଡିସେମ୍ବର ୧୫ ତାରିଖ ୧୯୭୧ ମସିହାରେ ଶ୍ରୀମତୀ ଗାନ୍ଧୀ ଗୋଟିଏ ପତ୍ର ଲେଖିଥିଲେ—

ମାନନୀୟ ରାଷ୍ଟ୍ରପତି ମହୋଦୟ,

ଯେତେବେଳେ ଆମ ଦୁଇ ଦେଶର ବନ୍ଧୁତା କ୍ଷେତ୍ରରେ ଏକ ଅପ୍ରୀତିକର ପରିବେଶ ସୃଷ୍ଟି ହୋଇଛି, ସେଇ ପରିସ୍ଥିତିରେ ବର୍ତ୍ତମାନ ମୁଁ ଗଭୀର ଦୁଃଖର ସହିତ ଏ ପତ୍ର ଲେଖୁଛି ।

ଇତିହାସରେ ଏଭଳି କେତେକ ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତ ଲିପିବଦ୍ଧ ହୋଇ ରହିଛି, ଯାହାକୁ କି ସ୍ମରଣ କଲେ ବର୍ତ୍ତମାନର ଦୁଃଖ ଅନେକାଂଶରେ ଉପଶମ ହୋଇଥାଏ । ଦିନେ ସେହିଭଳି ଏକ ମୁହୂର୍ତ୍ତ ଆସିଥିଲା, ଯେତେବେଳେ କୋଟି କୋଟି ଜନତା ମୁକ୍ତି ପାଇଁ ମୃତ୍ୟୁବରଣ କରିବାକୁ ଆଗେଇ ଆସିଥିଲେ ଓ ଯୁକ୍ତରାଷ୍ଟ୍ର ଆମେରିକା· ସ୍ୱାଧୀନତା ଘୋଷଣା କରିଥିଲା । ଘୋଷଣାବଳୀରେ କୁହାଯାଇଥିଲା ଯେ—ମଣିଷର ମୁକ୍ତ ଜୀବନଯାପନ, ସ୍ୱାଧୀନତା ଓ ଶାନ୍ତିଲାଭର ଅଧିକାର ପ୍ରତି ଯଦି କୌଣସି ସରକାର କୌଣସି ପ୍ରକାର ଆଞ୍ଚ ଆଣିବାକୁ ଉଦ୍ୟମ କରେ, ତାହେଲେ ସେ ସରକାରକୁ ପୁରାପୁରି ଭାଙ୍ଗିଦେବା କିମ୍ବା ତା ବଦଳରେ ନୂତନ ସରକାର ଗଠନ କରିବାର ଅଧିକାର ଜନସାଧାରଣଙ୍କର ରହିଛି ।

•

ମାର୍ଚ୍ଚ ମାସ ୨୫ ତାରିଖଠାରୁ ବଙ୍ଗଳାଦେଶରେ ଚାଲିଥିବା କରୁଣ ତଥା ହୃଦୟବିଦାରକ ଦୃଶ୍ୟକୁ ବିଶ୍ୱର ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ଦେଖି ଆସୁଛନ୍ତି ଓ ସେଠାକାର ସାଢ଼େ ସାତ କୋଟି ଜନସାଧାରଣଙ୍କର ସଂଗ୍ରାମକୁ ଉପଲବ୍ଧି କରି ଆସୁଛନ୍ତି; ଏହି ଜନସାଧାରଣ ହେଉଛନ୍ତି ସେହିମାନେ, ଯେଉଁମାନଙ୍କ ବଞ୍ଚିରହିବାର ଅଧିକାର, ମୁକ୍ତି ଓ ଶାନ୍ତିର କାମନାକୁ ପ୍ରତ୍ୟାଖ୍ୟାନ କରାଯାଇଛି । ବିଶ୍ୱର ବିଭିନ୍ନ ସମ୍ବାଦପତ୍ର, ରେଡ଼ିଓ ଓ ଟେଲିଭିଜନ୍‌ରେ ଏ ବିଷୟ ବାରମ୍ବାର ପ୍ରଚାର

କରାଯାଇଛି । ଆମେରିକାର ବହୁ ବିଜ୍ଞ ଓ ମେଧାବୀ ବ୍ୟକ୍ତି, ଯେଉଁମାନେ କି ଏହି ଉପମହାଦେଶର ଘଟଣାବଳୀ ସମ୍ପର୍କରେ ପୂର୍ଣ୍ଣ ଅବଗତ ହୋଇ ପାରିଛନ୍ତି, ସେମାନେ ପୂର୍ବବଙ୍ଗ ଜନସାଧାରଣଙ୍କର ହତାଶା ଓ ନିରାଶା ବିଷୟ ଠିକ୍‌ଭାବେ ବର୍ଣ୍ଣନା କରିଛନ୍ତି ।

ଯୁଦ୍ଧ ଆରମ୍ଭ ହେବାର ନ'ମାସ ପୂର୍ବରୁ ଯଦି ବିଶ୍ୱର ବଡ଼ବଡ଼ ନେତାମାନେ ପ୍ରକୃତ ଆନ୍ତରିକତାର ସହିତ ପରିସ୍ଥିତିର ମୌଳିକ କାରଣ ସମ୍ପର୍କରେ ଉପଲବ୍‌ଧି କରିବାକୁ ଉଦ୍ୟମ କରିଥାଆନ୍ତେ ଓ ସମାଧାନର ପନ୍ଥା ବାହାର କରିବା ଦିଗରେ ଠିକ୍ ଧ୍ୟାନ ଦେଇଥାଆନ୍ତେ, ତାହେଲେ ହୁଏତ ଏହି ଯୁଦ୍ଧକୁ ଏଡ଼େଇ ଦିଆଯାଇ ପାରିଥାଆନ୍ତା । ବର୍ତ୍ତମାନର ଏହି ଯୁଦ୍ଧ ଡିସେମ୍ବର ମାସ ୩ ତାରିଖ ଦିନ ଭାରତ ଉପରେ ପାକିସ୍ଥାନର ଆକ୍ରମଣ ଫଳରେ ସୃଷ୍ଟି ହୋଇଥିଲା । ଏହି ବିଷୟଗୁଡ଼ିକୁ ଉଲ୍ଲେଖ କରି ମୁଁ ମଧ୍ୟ ଚିଠି ଲେଖିଥିଲି । ତାପରେ ମୁଁ ଏଭଳି ଏକ ସଙ୍କଟମୟ ପରିସ୍ଥିତିରେ ଦେଶ ଛାଡ଼ି ବିଦେଶ ଭ୍ରମଣରେ ଯାଇଥିଲି, ଯାହା କି ସେତେବେଳେ ଦେଶ ଛାଡ଼ି ବାହାରକୁ ଯିବା ମୋ ପକ୍ଷରେ ଅତ୍ୟନ୍ତ କଷ୍ଟସାଧ୍ୟ ହୋଇ ଉଠିଥିଲା । ତଥାପି ସେହି ଜଟିଳ ମୁହୂର୍ତ୍ତରେ ମୁଁ କେବଳ ଶାନ୍ତିର ସନ୍ଧାନ ପାଇଁ ବିଦେଶ ଗସ୍ତରେ ଯାଇଥିଲି । କେବଳ ମନରେ ମୋର ଏହି ଆଶା ଓ ଆକାଂକ୍ଷା ଥିଲା ଯେ ପରିସ୍ଥିତିକୁ ମୁଁ ଯେପରି ମୋ ନିଜ ଆଖିରେ ଦେଖୁଛି, ବିଶ୍ୱର କେତେଜଣ ନେତାଙ୍କ ସମ୍ମୁଖରେ ତାହାକୁ ଉପସ୍ଥାପନ କରିବି । କିନ୍ତୁ ଏହା ଅତ୍ୟନ୍ତ ଦୁଃଖର ବିଷୟ ଯେ ବିଶ୍ୱର ନେତାମାନେ କେବଳ ଅସହାୟ ଶରଣାର୍ଥୀମାନଙ୍କ ପାଇଁ ସହାନୁଭୂତି ପ୍ରକାଶ କଲେ ସତ, ସମସ୍ୟାର ମୌଳିକ କାରଣ ପ୍ରତି କେହି ଦୃଷ୍ଟିପାତ କଲେ ନାହିଁ ।

ବିଶ୍ୱର ବିଭିନ୍ନ ରାଷ୍ଟ୍ର ବିଶେଷ କରି ଯୁକ୍ତରାଷ୍ଟ୍ର ଆମେରିକା ଶେଖ୍ ମୁଜିବୁର ରହମାନଙ୍କୁ ମୁକ୍ତ କରିଦେବା ଦିଗରେ ଯଦି ପ୍ରଭାବ ଓ ଚାପ ପକାଇଥାଆନ୍ତେ, ତାହେଲେ ଏହି ଶୋଚନୀୟ ଯୁଦ୍ଧକୁ ସହଜରେ ଏଡ଼ାଇ ଦିଆଯାଇ ପାରିଥାଆନ୍ତା । ବରଂ ତା ବଦଳରେ ବେସାମରିକ ଶାସନ ପ୍ରତିଷ୍ଠା କରାଯିବା ବିଷୟ ଆମକୁ କୁହାଗଲା । କିନ୍ତୁ ଏକଥା ସମସ୍ତେ ଜାଣନ୍ତି ଯେ ସେଠାରେ ବେସାମରିକ ଶାସନ ପ୍ରତିଷ୍ଠା କରାଯିବା ବିଷୟଟି ହେଉଛି ଏକ ପ୍ରହସନ ମାତ୍ର, ଯାହା ଆଜି ଏକ ଶୋଚନୀୟ ଅବସ୍ଥାରେ ପରିଣତ ହୋଇଛି ।

ବଙ୍ଗଳାଦେଶ ସମସ୍ୟାର ରାଜନୈତିକ ସମାଧାନ ପାଇଁ କେବଳ ମୁହଁରେ ସହାନୁଭୂତି ପ୍ରକାଶ୍ କରାଯାଉଛି; ମାତ୍ର କାର୍ଯ୍ୟରେ ପରିଣତ କରିବାକୁ କୌଣସି ପଦକ୍ଷେପ ନିଆଯାଉ ନାହିଁ । ବରଂ ବଙ୍ଗଳାଦେଶରେ ଖାଲିପଡ଼ିଥିବା ସ୍ଥାନଗୁଡ଼ିକରେ ପଶ୍ଚିମ-ପାକିସ୍ଥାନର ଶାସକବୃନ୍ଦ ପୁଣି ନିର୍ବାଚନର ପ୍ରହସନ ଚଳାଇଛନ୍ତି ।

ତାହାରୁ କେହି ଜଣେ ହେଲେ ମୁଜିବୁର ରହମନଙ୍କ ସହିତ ଯୋଗାଯୋଗ ରକ୍ଷା କରିବାପାଇଁ ଉଦ୍ୟମ କରୁଛନ୍ତି ବୋଲି ଶୁଣାଗଲା ନାହିଁ । ଶେଖ ମୁଜିବୁର ରହମନଙ୍କୁ ମୁକ୍ତ କରିଦେବା ପାଇଁ ଆମେ ବାରମ୍ବାର ଅନୁରୋଧ କଲୁ । ଏପରି କି ଯଦି ତାଙ୍କୁ ଗିରଫ ରଖାଯାଏ, ତାହେଲେ ତାଙ୍କ ସହିତ ଯୋଗାଯୋଗ ରକ୍ଷା-କରିବାର ବ୍ୟବସ୍ଥା କରାଯିବା ଆବଶ୍ୟକ ବୋଲି କହିଲୁ । କିନ୍ତୁ ତାହାକୁ ଏକ ବାସ୍ତବ ପରାମର୍ଶ ରୂପେ ଗ୍ରହଣ କରାଗଲା ନାହିଁ । ତାହାର ଏକମାତ୍ର କାରଣ ହେଉଛି, ପ୍ରେସିଡ଼େଣ୍ଟ ୟାହିଆ ଖାଁ ଗାଦିଚ୍ୟୁତ ହେଲେ ଭଳି କୌଣସି ନୀତି ଯୁକ୍ତରାଷ୍ଟ୍ର ଆମେରିକା ଅନୁସରଣ କରିବାକୁ ଚାହୁଁ ନ ଥିଲା । ଏହି ପରିସ୍ଥିତିର କେନ୍ଦ୍ର ହେଉଛନ୍ତି ମୁଜିବ୍, ଆମେରିକା ତାହା ଭଲଭାବେ ଜାଣେ ଓ ଶେଷରେ ପାକିସ୍ଥାନ ଯେ ପୂର୍ବ-ପାକିସ୍ଥାନକୁ ସ୍ୱାୟତ୍ତଶାସନ କ୍ଷମତା ଦେବାକୁ ବାଧ୍ୟହେବ, ଆମେରିକା ଏକଥା ମଧ୍ୟ ଯଥାର୍ଥ ଭାବେ ଉପଲବ୍ଧି କରିଛି । କିନ୍ତୁ ପରିସ୍ଥିତିର ଅନିଶ୍ଚିତତା ଦୃଷ୍ଟିରୁ ଓ ୟାହିଆ ଖାଁଙ୍କର ଏହାଦ୍ୱାରା ବିଭିନ୍ନ ପ୍ରକାର ଅସୁବିଧା ହେବ—ଏ ଦୃଷ୍ଟିରୁ ଆମେରିକା ବିଭିନ୍ନ ପ୍ରକାର ଯୁକ୍ତି ଦର୍ଶାଇବାରେ ଲାଗିଛି ।

ମାନନୀୟ ସଭାପତି ମହୋଦୟ, ଦୟାକରି ମୁଁ ଆପଣଙ୍କୁ ଏ ବିଷୟ ପଚାରିପାରେ କି : ଏହି ଯୁଦ୍ଧ ଚଳାଇବା ଅପେକ୍ଷା ଶେଖ୍ ମୁଜିବୁର ରହମାନଙ୍କୁ ଖଲାସ କରିଦେବା କିମ୍ବା ତାଙ୍କ ସହିତ ଗୁପ୍ତରେ କଥାବାର୍ତ୍ତା କରିବା ଅଧିକ ବିପଜ୍ଜନକ ଥିଲା କି ?

ଜୀବନର ମୌଳିକ ତଥ୍ୟକୁ ପାକିସ୍ଥାନର ଶାସକମାନେ ବାରମ୍ବାର ଅବଜ୍ଞା କରି ଆସୁଥିବା ସତ୍ତ୍ୱେ, ଗତ ପ୍ରାୟ ନ'ମାସ ଧରି ଆମ ଉପରେ ଦିନକୁ ଦିନ କ୍ରମଶଃ ପଡ଼ିଆସୁଥିବା ଅଧିକ ଚାପକୁ ସହିନେବା ପାଇଁ ଆମେ ଉଦ୍ୟମ କରି ପାରିଥାଆନ୍ତେ ଓ ଯୁଦ୍ଧକୁ ରୋକାଯାଇ ପାରିଥାଆନ୍ତା; କିନ୍ତୁ ଦୁଃଖର ବିଷୟ ଯେ ୧୯୭୧ ମସିହା ଡିସେମ୍ବର ମାସ ୩ ତାରିଖ ଦିନ ପାକିସ୍ଥାନୀ ଶାସକମାନେ ଏପରି କି ଦିନବେଳେ ଅମୃତସର, ପଠାଣକୋଟ, ଶ୍ରୀନଗର, ଅବନ୍ତୀପୁର, ଉତ୍ତରଲାଇ, ଯୋଧପୁର, ଆମ୍ବାଲା ଓ ଆଗ୍ରା ବିମାନବନ୍ଦର ଉପରେ ବୋମାବର୍ଷଣ ଆରମ୍ଭ କରିଦେଲେ । ସେତେବେଳେ ମୁଁ କଲିକତା ଗସ୍ତରେ ଯାଇଥାଏ, ମୋର ସହକର୍ମୀ ପ୍ରତିରକ୍ଷାମନ୍ତ୍ରୀ ପାଟଣା ଗସ୍ତରେ ଯାଇଥାଆନ୍ତି ଓ ସେଠାରୁ ତାଙ୍କର ପୁଣି ବାଙ୍ଗାଲୋର ଗସ୍ତରେ ଯିବାର କଥା ଥିଲା, ଏବଂ ମୋର ଅନ୍ୟତମ ପୁରୁଣା ସହକର୍ମୀ ଅର୍ଥମନ୍ତ୍ରୀ-ବମ୍ବେ ଗସ୍ତରେ ଯାଇଥିଲେ । ତେଣୁ ରାଜଧାନୀଠାରେ ଆମ୍ଭମାନଙ୍କର ଅନୁପସ୍ଥିତିବେଳେ ପାକିସ୍ଥାନୀ ଶାସକମାନେ ଏଭଳି କାର୍ଯ୍ୟକରିବା ବିଶ୍ୱାସଘାତକତା ମନୋଭାବ ବ୍ୟତୀତ ଅନ୍ୟ କିଛି ନୁହେଁ । ପାକିସ୍ଥାନ କିମ୍ବା ତାର ପରାମର୍ଶଦାତା-ମାନଙ୍କର ଯେ ଶାନ୍ତିପୂର୍ଣ୍ଣ, ଗଠନମୂଳକ ଓ ଯୁକ୍ତିଯୁକ୍ତ ମନୋଭାବ ରହିଛି, ଏହା

ବିଶ୍ୱାସ କରି ଆମେ ଏଭଳି ପରିସ୍ଥିତିରେ ନୀରବ ହୋଇ ବସିରହିବା କ'ଣ ଆମ ପକ୍ଷରେ ସମ୍ଭବ ହୋଇ ପାରିଥାନ୍ତା କି ?

ଆମେ ଆମର ନିଜ ପାଇଁ କିଛି ଚାହୁଁନା । ଆମେ ଚାହୁଁ ପାକିସ୍ଥାନ ସହିତ ସ୍ଥାୟୀ ଶାନ୍ତି ଓ ବନ୍ଧୁତା । ମାତ୍ର ପାକିସ୍ଥାନ ଗତ ୨୪ ବର୍ଷ ହେଲା ଯେଉଁ ଆକାରରେ ଅବିରତ ଆନ୍ଦୋଳନ ସୃଷ୍ଟି କରିଆସୁଛି, ତାହା ସେ ବନ୍ଦ କରିବ କି ? ଭାରତ ପ୍ରତି ପାକିସ୍ଥାନ ଯେଉଁ ଶତ୍ରୁବୈରିତା ଓ ବିଦ୍ୱେଷ ପ୍ରଚାର ଅଭିଯାନ ଚଳାଇଛି, ତାହା ବନ୍ଦ କରିବାକୁ ରାଜି କି ? ଗତ ୨୪ ବର୍ଷ ଭିତରେ ମୁଁ ଓ ମୋର ସ୍ୱର୍ଗତ ପିତା ପାକିସ୍ଥାନକୁ ଅନାକ୍ରମଣ ଚୁକ୍ତି ସ୍ୱାକ୍ଷର କରିବାପାଇଁ କେତେଥର ପ୍ରସ୍ତାବ ଦେଇ ଆସିଛୁଁ । ମାତ୍ର ଯେତେଥର ଏ ପ୍ରସ୍ତାବ ଦିଆଯାଇଛି, ପାକିସ୍ଥାନ ଏହାକୁ ସଙ୍ଗେ ସଙ୍ଗେ ଅଗ୍ରାହ୍ୟ କରିଦେଇଛି ଓ ବର୍ତ୍ତମାନ ଏହା ହେଉଛି ଇତିହାସର ତଥ୍ୟାବଳୀ ।

ଏଭଳି ଅସ୍ୱସ୍ତିକର ପରିସ୍ଥିତି ଆମେ ସୃଷ୍ଟି କରୁଛୁ ଓ ପରିସ୍ଥିତିର ସମାଧାନ ଦିଗରେ ହେଉଥିବା ଉଦ୍ୟମକୁ ବିଫଳ କରିଦେଉଛୁ ବୋଲି ଆମ ବିରୁଦ୍ଧରେ ଯେଉଁ କଳଙ୍କ ଓ ଅପପ୍ରଚାର କରାଯାଉଛି, ସେଥିରେ ଆମେ ଗଭୀର ଦୁଃଖ ଅନୁଭବ କରୁଛୁ । ଏହି ଅପପ୍ରଚାର ପାଇଁ ମୁଖ୍ୟତଃ କିଏ ଦାୟୀ, ତାହା ମୁଁ ଠିକ୍‌ଭାବେ ଜାଣେନା । ୧୯୭୧ ମସିହା ଅଗଷ୍ଟ ମାସରେ ଯେତେବେଳେ ଡଃ କିସିଙ୍ଗର୍ ଭାରତ ପରିଦର୍ଶନରେ ଆସିଥିଲେ, ସେତେବେଳେ ମୁଁ ସମସ୍ୟାର ତୁରନ୍ତ ରାଜନୈତିକ ସମାଧାନ ପ୍ରତି ଗୁରୁତ୍ୱ ଦେଇଥିଲି । କିନ୍ତୁ ଏପର୍ଯ୍ୟନ୍ତ ସେ ଦିଗରେ ସାମାନ୍ୟ ଟିକିଏ ହେଲେ ଉଦ୍ୟମ କରାଯାଇ ନାହିଁ, ବରଂ ପରିସ୍ଥିତି ଯାହା ଥିଲା ବର୍ତ୍ତମାନ ସେହିଭଳି ଅବସ୍ଥାରେ ମଜ୍ଜିରହିଛି ।

ଆମେ କେଉଁଠି ଭୁଲ କରିଛୁ ତାହା ଅନ୍ତତଃ ଆପଣ ବତେଇ ଦେବେ ବୋଲି ମୁଁ ଆଶା କରୁଛି । ମୁଁ ଆପଣଙ୍କୁ ଏଇଥିପାଇଁ ଏ ଅନୁରୋଧ କରୁଛି ଯେ ଆପଣ ହେଉଛନ୍ତି ଜଣେ ମହାନ୍ ଓ ଉଚ୍ଚକୋଟୀର ଜ୍ଞାନୀ ବ୍ୟକ୍ତି ଓ ଯୁକ୍ତରାଷ୍ଟ୍ର ଆମେରିକାର ସଭାପତି ହିସାବରେ ସେଠାକାର ଜନଗଣଙ୍କ ମହାନ୍ ଇଚ୍ଛା, ଆକାଂକ୍ଷା ଓ ଆଦର୍ଶର ଜୀବନ୍ତ ପ୍ରତୀକ ।

ଶ୍ରଦ୍ଧା ଓ ଶୁଭକାମନା ସହ—

ଆପଣଙ୍କର

ଇନ୍ଦିରା ଗାନ୍ଧୀ

ସେ ଯାହାହେଉ, ଡିସେମ୍ବର ୧୭ ତାରିଖ, ୧୯୭୧ ମସିହା ଅପରାହ୍ନ ସାଢ଼େ ଚାରିଟା ଏକତିରିଶି ମିନିଟ ବେଳେ ଭାରତୀୟ ସୈନ୍ୟ ଓ ବଙ୍ଗଳାଦେଶ ମୁକ୍ତି-ବାହିନୀ ନିକଟରେ ପାକିସ୍ଥାନବାହିନୀ ଆତ୍ମସମର୍ପଣ କରିଥିଲା ବିନା ସର୍ତ୍ତରେ ।

ବଙ୍ଗଳାଦେଶ ବିଧିବଦ୍ଧ ଭାବରେ ସ୍ୱାଧୀନତା ଲାଭ କରିଥିଲା ସେହି ଦିନ ।

**ଭାରତର ସର୍ବଶ୍ରେଷ୍ଠ ସମ୍ମାନ :—**

କେବଳ ଭାରତ-ପାକିସ୍ଥାନ କାହିଁକି, ସମଗ୍ର ପୃଥିବୀରେ ଯେତେ ଯେଉଁଠି ଯୁଦ୍ଧ ଘଟିଯାଇଥିଲା ତାର ଇତିହାସ ଯଦି ସଂକଳନ କରାଯାଏ, ତେବେ ଏକ ସ୍ୱର୍ଣ୍ଣ ଅଧ୍ୟାୟ ହେବ ୧୯୭୧ ମସିହା ଡିସେମ୍ବର ମାସର ୧୪ ଦିନିଆ ଯୁଦ୍ଧ । ବଙ୍ଗଳାଦେଶରେ ଯୁଦ୍ଧ କରୁଥିବା ପାକିସ୍ଥାନ ସେନାଙ୍କର ନେତୃତ୍ୱ ନେଇଥିବା ଜେନେରାଲ ନିଆଜୀ ତାଙ୍କର ୮୯,୦୦୦ ସୈନ୍ୟସାମନ୍ତଙ୍କ ସହ ଭାରତୀୟ ସୈନ୍ୟ-ବାହିନୀର ନେତୃତ୍ୱ ନେଇଥିବା ଜେ. ଜେ. ଅରୋରାଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ । ତା ପରଦିନ ଡିସେମ୍ବର ୧୭ ତାରିଖରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପୃଥିବୀ ଯୁଦ୍ଧ-ଇତିହାସରେ ଏକ ନୂତନ ଅଧ୍ୟାୟ ଉନ୍ମୋଚନ କରି ଏକତରଫା ଭାବରେ ପଶ୍ଚିମ ସୀମାନ୍ତରେ ଯୁଦ୍ଧବିରତି ଘୋଷଣା କରିଥିଲେ । ତା ପରେ ପରେ ଏବଂ ତାର ପରିମାଣ ସ୍ୱରୂପ ପାକ୍-ଭାରତ ଯୁଦ୍ଧର ଅବସାନ ଘଟିଥିଲା । ସେ ଯୁଦ୍ଧ ଥିଲା ମାତ୍ର ଚଉଦଦିନିଆ ଯୁଦ୍ଧ । ଯୁଦ୍ଧର ପରିସୀମା ମାତ୍ର ୧୪ ଦିନ ହୋଇଥିଲେ ମଧ୍ୟ ସମଗ୍ର ପୃଥିବୀରେ ତାହା ଗଭୀର ଭାବରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ଶ୍ରୀମତୀ ଗାନ୍ଧୀଙ୍କ ଏକତରଫା ଯୁଦ୍ଧବିରତି ଘୋଷଣା ଭାରତ ପାଇଁ ବା ପାକିସ୍ଥାନ ପାଇଁ କେବଳ ନୁହେଁ, ସମଗ୍ର ପୃଥିବୀ ପାଇଁ ଥିଲା ଏକ ଚମକପ୍ରଦ ଘୋଷଣା ଏବଂ ତାହାହିଁ ଥିଲା ଭାରତ ପାଇଁ ଚରମ ନୈତିକ ବିଜୟ ।

ଭାରତର ସେ ଅସାଧାରଣ ବିଜୟ କେବଳ ଭାରତର ଚଉବନ କୋଟି ଜନତାଙ୍କର ଆନନ୍ଦର କାରଣ ହୋଇ ନ ଥିଲା, ହୋଇଥିଲା ଆଉ ସାଢ଼େ ସାତ କୋଟି ଜନତାଙ୍କ ପରମ ଆନନ୍ଦର କାରଣ । ତାହାହିଁ ଥିଲା ବଙ୍ଗଳାଦେଶର ସ୍ୱାଧୀନତାର କାରଣ । ତାହାହିଁ ଥିଲା ଭାରତର ଏକ ନୂତନ ସହୃଦୟ ପ୍ରତିବେଶୀ ସ୍ୱାଧୀନ ଦେଶ ଗଠନର କାରଣ ଏବଂ ସେସବୁର ପ୍ରଧାନ କାରଣ ସ୍ୱରୂପ ଦଣ୍ଡାୟମାନ ହୋଇଥିଲେ ଭାରତୀୟ ଜନଗଣଙ୍କ ନେତ୍ରୀ ପ୍ରିୟଦର୍ଶିନୀ ଇନ୍ଦିରା ଗାନ୍ଧୀ ।

ବଙ୍ଗଳାଦେଶରେ ଗଣତନ୍ତ୍ରର ପ୍ରଚଳନ ପାଇଁ ଉଦ୍ବେଳିତ ସ୍ୱରକୁ ବନ୍ଦୀକ କରିଦେବା ନିମନ୍ତେ ଇସଲାମାବାଦ୍‌ର ସାମରିକ ସରକାର ଯେଉଁ ତତ୍ପରତା

ପ୍ରକାଶ କରିଥିଲେ, ଧର୍ମର ଦ୍ୱାହି ଦେଇ ବର୍ବରତାର ଯେଉଁ ଚରମ ସୋପାନରେ ଉପନୀତ ହୋଇଥିଲେ, ଔପନିବେଶବାଦକୁ ସଞ୍ଜୀବିତ କରି ରଖିବା ଲାଗି ଯେଉଁ ଆପ୍ରାଣ ଉଦ୍ୟମ କରିଥିଲେ, ସେସବୁର ପରିସମାପ୍ତି ପାଇଁ ଭାରତ ଯେଉଁ ଭୂମିକା ଗ୍ରହଣ କରିଥିଲା ତାର ନିଦର୍ଶନ ବାସ୍ତବିକ୍ କୌଣସି ଦେଶଗଠନ ଇତିହାସରେ ପୃଥିବୀରେ ବିରଳ ।

ସେଇଥିପାଇଁ ଯଥାଯଥ ଭାବେ ଭାରତର ଶ୍ରେଷ୍ଠ ସମ୍ମାନ ଦିଆଯାଇଥିଲା ଭାରତୀୟ ଜନଗଣଙ୍କ ନେତ୍ରୀଙ୍କୁ । ଡିସେମ୍ବର ୨୮ ତାରିଖ ଦିନ ୧୯୭୧ ମସିହା ପାଇଁ 'ଭାରତ ରତ୍ନ' ଉପାଧିରେ ଭୂଷିତ କରାଯାଇଥିଲା ଶ୍ରୀମତୀ ଗାନ୍ଧୀଙ୍କୁ । ପୃଥିବୀରେ ଶାନ୍ତିପ୍ରତିଷ୍ଠା କରିବାପାଇଁ ତାଙ୍କର ଉଦ୍ୟମକୁ ଭୂରିଭୂରି ପ୍ରଶଂସା ମିଳିଥିଲା ପୃଥିବୀର ବିଭିନ୍ନ ଦେଶରୁ । କାନାଡ଼ାର ଗୋଟିଏ ବିଖ୍ୟାତ ଦୈନିକ Globe and Mail ଜୁନ୍ ୨୦ ତାରିଖ ୧୯୭୬ ମସିହାରେ ଏକ ଅଗ୍ରଲେଖାରେ ମତବ୍ୟକ୍ତ କରିଥିଲା— "Mrs. Gandhi's conduct of 1971 dispute with Pakistan over Bangla Desh culmination is the two week war, a formidable display of power politics as any, in modern times. But the earlier behaviour of Pakistan in the area was not calculated to evoke much sympathy for its plight and this was an issue in which vital national interests were at stake. India remains fundamentally committed to a peaceful world order."

୧୯୭୨ ମସିହା ଜାନୁୟାରୀ ଏକ ତାରିଖରେ Caravan ପତ୍ରିକା ତାର ମନ୍ତବ୍ୟ ପ୍ରକାଶ କରିଥିଲା ଯେ ଭାରତ ସହ ପାକିସ୍ଥାନର ୧୪ ଦିନିଆ ଯୁଦ୍ଧ ବାସ୍ତବିକ୍ ଅତ୍ୟନ୍ତ ଶୁଭପ୍ରଦ ଥିଲା । କାରଣ ସେ ଯୁଦ୍ଧର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ସାଧିତ ହୋଇ ପାରିଥିଲା—"ଜନସାଧାରଣ ମର୍ମାନ୍ତିକ ଯନ୍ତ୍ରଣା ଅନୁଭବ କରିବା ପରେ ଲାବଣ୍ୟମୟୀ ବଙ୍ଗଳାଦେଶ ଉପରେ ସ୍ୱାଧୀନତାର ସୂର୍ଯ୍ୟ ଉଦିଁ ଉଠିଥିଲା ।

□ □ □

॥ କୋଡ଼ିଏ ॥

# ନେତ୍ରୀ ଓ ନେତୃତ୍ୱ



କାନାଡ଼ାର ଗୋଟିଏ ଦୈନିକ ସମ୍ବାଦପତ୍ର ଜୁନ କୋଡ଼ିଏ ତାରିଖ ୧୯୭୩ ମସିହାରେ ସମ୍ପାଦକୀୟ ସ୍ତମ୍ଭରେ ତାର ମନ୍ତବ୍ୟ ପ୍ରକାଶ କରିଥିଲା ଯେ—ଶ୍ରୀମତୀ ଗାନ୍ଧୀ ହେଉଛନ୍ତି ଭାରତୀୟ ନେତୃମଣ୍ଡଳୀ ଭିତରେ ଜଣେ ବ୍ୟତିକ୍ରମ । କାରଣ ସେ ଏକାଧିକ୍ରମେ ଭାରତ ସରକାରୀ କଳ ଉପରେ ନିଜର ବ୍ୟକ୍ତିତ୍ୱ ଯେଉଁଭଳି ଭାବରେ ଜାହିର କରି ପାରିଛନ୍ତି, ଠିକ୍ ସେହିଭଳି ଭାବରେ ନିଜ ଦଳର ନୀତି ନିର୍ଦ୍ଧାରଣ କଲାବେଳେ ମଧ୍ୟ ନିଜର ବ୍ୟକ୍ତିଗତ ପ୍ରଭାବ ବିସ୍ତାର କରି ପାରନ୍ତି । ସେଥିପାଇଁ ତାଙ୍କ 'ପିତା ନେହେରୁଙ୍କ ଦ୍ୱାରା ଅନୁସୃତ ସାମାଜିକ ଗଣତାନ୍ତ୍ରିକ ପଦ୍ଧତିର ନିୟମ କାନୁନ୍‌କୁ ସେ ଆଦୌ ପରିହାର କରି ନାହାନ୍ତି । †

ଶ୍ରୀମତୀ ଗାନ୍ଧୀ ଯେ ତାହାଙ୍କ ସମୟରେ ତାଙ୍କ ଦଳର ସଭ୍ୟମାନଙ୍କ ଉପରେ ନିଜର ବ୍ୟକ୍ତିତ୍ୱର ପ୍ରଭାବ ବିସ୍ତାର କରିଥିଲେ ତା ନୁହେଁ, ତା ସଙ୍ଗେ ସଙ୍ଗେ ଭାରତର ଜନଗଣଙ୍କ ନିକଟରେ ମଧ୍ୟ ଅତି ପ୍ରିୟ ହୋଇ ଉଠିଥିଲେ । ତାର କାରଣ ଥିଲା ସର୍ବଜନବିଦିତ । ସେ ବୁଝିଥିଲେ ଇତିହାସର ପୁରାତନ ଶାସନାଧିକାରୀମାନଙ୍କ ଭଳି କିମ୍ବା ପୃଥିବୀର ଅନ୍ୟାନ୍ୟ ଦେଶର ମୁଖ୍ୟଙ୍କ ଭଳି ନିଜକୁ ଖୁବ୍ ଗୌରବାନ୍ୱିତ ମନେ ନ କରି ବରଂ ଜନସାଧାରଣଙ୍କ ପ୍ରଧାନ ଭୃତ୍ୟ ଭାବେ ସେବା କରିଯିବେ । ସେ କେବଳ ଭାରତମାତାର ବିନୀତ ଅନୁଗତ ଭୃତ୍ୟ ନୁହନ୍ତି, ବିଚକ୍ଷଣ ରାଜନୀତିଜ୍ଞ ମଧ୍ୟ ।

ଯଥାର୍ଥରେ ଥରେ ପଣ୍ଡିତ ନେହେରୁ ମତ ପ୍ରକାଶ କରିଥିଲେ—ଭାରତର ପ୍ରଧାନମନ୍ତ୍ରୀ ହେଉଛନ୍ତି ଭାରତମାତାର ପ୍ରଧାନ ସେବକ; ଭାରତୀୟ ଜନଗଣଙ୍କ ପ୍ରଧାନ ସେବକ । ତାଙ୍କ ପୁତ୍ରୀ ଶ୍ରୀମତୀ ଗାନ୍ଧୀ ପଣ୍ଡିତ ନେହେରୁଙ୍କ ପ୍ରଦର୍ଶିତ ମାର୍ଗ ହିଁ

---

† Canadian Daily, "Globe and Mail"

ଅନୁକରଣ ତଥା ଅନୁସରଣ କରିବା ଲାଗି ଥିଲେ ଦୃଢ଼ପରିକର । ପ୍ରତିଦିନ ସକାଳ-ଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ତାଙ୍କର ସମସ୍ତ ଚିନ୍ତା, ଚେତନା ଓ କାର୍ଯ୍ୟକ୍ରମ ଭାରତର ପ୍ରାୟ ପଞ୍ଚଷଠି କୋଟି ଜନତାଙ୍କ ପାଇଁ ହିଁ ଉଦ୍ଦିଷ୍ଟ ।

**ପ୍ରଧାନମନ୍ତ୍ରୀଙ୍କ ଦିନଟିଏ :—**

ପ୍ରତିଦିନ ପୂର୍ବାହ୍ଣରେ ଅଫିସ୍‌କୁ ଯିବା ପୂର୍ବରୁ ପ୍ରାୟ ଘଣ୍ଟାଏ କାଳ ତାହାଙ୍କୁ ସାକ୍ଷାତ୍ କରିବା ଲାଗି ଆସିଥିବା ଅତିଥିମାନଙ୍କ ସହ ସେ ସାକ୍ଷାତ୍ କରିଥାନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥାନ୍ତି କେବଳ ପ୍ରଧାନମନ୍ତ୍ରୀଙ୍କ ଦର୍ଶନାଭିଳାଷୀ । ତାଙ୍କ ବାସଗୃହ ନିକଟରେ ପ୍ରାୟ ଦୁଇ ଶହ ଜଣଙ୍କ ବସିବା ଲାଗି ବ୍ୟବସ୍ଥା କରାଯାଇଥିଲେ ମଧ୍ୟ ସମୟେ ସମୟେ ଅତ୍ୟଧିକ ଅତିଥି ସମାଗମ ହେଲେ ସେମାନେ ତଳେ ବସିବା ଲାଗି ମଧ୍ୟ ବ୍ୟବସ୍ଥା କରାଯାଇଥାଏ । ସେଠାରେ ସମସ୍ତଙ୍କ ସହିତ ଇନ୍ଦିରା ସାକ୍ଷାତ୍ କରିଥାନ୍ତି । ସେମାନଙ୍କ ମଧ୍ୟରେ ଅନେକେ ସେମାନଙ୍କର ଅଭାବ ଅସୁବିଧା ସିଧା-ସଳଖ ପ୍ରଧାନମନ୍ତ୍ରୀଙ୍କୁ ଅବଗତ କରାଇବା ପାଇଁ ଆସିଥାନ୍ତି । ସେଇ ପରିପ୍ରେକ୍ଷୀରେ ଇନ୍ଦିରା ବ୍ୟକ୍ତିଗତ ସେକ୍ରେଟାରୀଙ୍କୁ ସେ ସମସ୍ତ ବିଷୟ ଲେଖିରଖି ତାର ଉଚିତ ବ୍ୟବସ୍ଥା କରାଇବା ପାଇଁ ଆଦେଶ ଦେଇଥାନ୍ତି । ଆଉ ଅନ୍ୟମାନଙ୍କ ମଧ୍ୟରୁ କିଏ ପ୍ରଧାନମନ୍ତ୍ରୀଙ୍କ ଦସ୍ତଖତ ସଂଗ୍ରହ କରିବାପାଇଁ ବା ଅନ୍ୟ କିଏ ତାଙ୍କ ସହ ଏକାଠି ଗୋଟିଏ ଫଟୋ ଉଠାଇବା ଲାଗି ମଧ୍ୟ ଯାଇଥାନ୍ତି । ସ୍ନେହବତ୍ସଳା ଇନ୍ଦିରା ସେମାନଙ୍କୁ ସନ୍ତୁଷ୍ଟ କରାଇଥାନ୍ତି ।

ସବୁଠାରୁ ଉଲ୍ଲେଖନୀୟ ହେଲା, ଯେ କୌଣସି ବ୍ୟକ୍ତି ଇଚ୍ଛାକଲେ ତାଙ୍କର ପ୍ରିୟନେତ୍ରୀ—ଭାରତର ନେତ୍ରୀ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଙ୍କୁ ବିନା ଆୟାସରେ ଦେଖା କରିପାରେ । ସେଥିପାଇଁ ତାଙ୍କ ଦର୍ଶନାଭିଳାଷୀ କୃଷୀ ମୂଲିଆଙ୍କଠାରୁ ଆରମ୍ଭ କରି ସ୍କୁଲ କଲେଜ ଛାତ୍ରଛାତ୍ରୀ ତଥା ବଡ଼ ବଡ଼ ବ୍ୟବସାୟୀମାନେ ସକାଳୁ ସେଇ ଅତିଥି ଭବନରେ ଭିଡ଼ ହୋଇଥାନ୍ତି । ପ୍ରତିଦିନ ସକାଳୁ ଶ୍ରୀମତୀ ଗାନ୍ଧୀ ତାଙ୍କ କାର୍ଯ୍ୟାଳୟରେ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଅତିଥିମାନଙ୍କ ସହିତ ସାକ୍ଷାତ୍ କରିବା ପ୍ରତିଦିନର ପ୍ରଥମ କାର୍ଯ୍ୟ ବୋଲି ବିବେଚନା କରିଥାନ୍ତି । ଦେଶର ସଙ୍କଟସଙ୍କୁଳ ସମୟରେ ମଧ୍ୟ ଦୂରାଗତ ଅତିଥିମାନଙ୍କ ସହିତ ସାକ୍ଷାତ କରିବାକୁ ଭୁଲନ୍ତି ନାହିଁ । ତାଙ୍କର ଏ ସାକ୍ଷାତ୍କାର ସମ୍ପର୍କରେ ଜଣେ ସାମ୍ବାଦିକଙ୍କ ପ୍ରଶ୍ନର ଉତ୍ତରରେ ଶ୍ରୀମତୀ ଗାନ୍ଧୀ କହିଥିଲେ—"ବିଗତ ୨୩ ବର୍ଷ ଧରି ସାଧାରଣ ଜନତା ପ୍ରତିଦିନ ସକାଳେ ଆମ ଘରକୁ ଆସନ୍ତି । ସେଥିପାଇଁ ସେମାନଙ୍କୁ କୌଣସି ପ୍ରକାର ବାଧା ଦିଆଯାଏ ନାହିଁ । ସବୁଦିନ ଭଳି ଆଜି ମଧ୍ୟ ସେମାନେ ଆସିଥିଲେ । ସେମାନେ ସେମାନଙ୍କର ବ୍ୟକ୍ତିଗତ ସମସ୍ୟା ସମ୍ପର୍କରେ ମୋତେ ଅବହିତ କରାନ୍ତି । ସରକାରୀ

କାର୍ଯ୍ୟକଳାପରେ କୌଣସି ପ୍ରକାର ପ୍ରତିବନ୍ଧକ ସୃଷ୍ଟି ନ କରି ମୁଁ ସେମାନଙ୍କ ସମସ୍ୟା, ଅନ୍ତତଃ କିଛିଟା ହେଲେ ମଧ୍ୟ, ସମାଧାନ କରିବାକୁ ଚେଷ୍ଟା କରେ । ଆଉ କିଛି କରିପାରେ ବା ନ କରିପାରେ, ସେମାନଙ୍କ ମନର କଥା ଶୁଣିବା ପରେ ପରେ ସେମାନଙ୍କ ଦୁଃଖର ଗୁରୁତ୍ୱର କିଛିଟା ଲାଘବ ହୋଇଯାଏ ନିଶ୍ଚୟ । *

ପ୍ରଶ୍ନକର୍ତ୍ତା ସାମ୍ବାଦିକ ଥିଲେ ଜଣେ ବିଦେଶୀ ଏବଂ ସାଧାରଣ ଜନତାଙ୍କ ସହିତ ଭାରତର ପ୍ରଧାନମନ୍ତ୍ରୀ ଯେ ପ୍ରକାର ସାକ୍ଷାତ୍ ସମ୍ପର୍କରେ ସେ ଶୁଣିବା ପରେ ପରେ ସେ ଚାହିଁଥିଲେ ନିଜେ ଥରେ ସେଇମିତି ସାକ୍ଷାତ୍ କରିବେ । ସେହିଭଳି ଏକ ସାକ୍ଷାତ୍କାର ବେଳେ ସେ ଏ ମନ୍ତବ୍ୟ ପ୍ରକାଶ କରିଥିଲେ ।

ଅତିଥିମାନଙ୍କ ସହିତ ସାକ୍ଷାତ୍ ପରେ ପରେ ଦିନ ଦଶଟା ବେଳେ ନିଜ କାର୍ଯ୍ୟାଳୟକୁ ଯାଇଥାନ୍ତି ଇନ୍ଦିରା । ସେ ଦିନରେ ପ୍ରାୟ ସୋହଳ ଘଣ୍ଟାରୁ ଅଠର ଘଣ୍ଟା ପରିଶ୍ରମ କରିଥାନ୍ତି । ତାଙ୍କର ସାଉଥ୍ ବ୍ଲକ୍ ଅଫିସ୍‌ରେ ଦୁଇ ଜଣ ସମସାମୟିକ ଚିତ୍ରକରଙ୍କ କଳାକୃତି ସହିତ ପ୍ରଧାନମନ୍ତ୍ରୀଙ୍କ ଆସନ ସମ୍ମୁଖସ୍ଥ କାନ୍ଥରେ ପଣ୍ଡିତ ଜବାହରଲାଲଙ୍କ ଫଟୋ ଏବଂ ବିଶାଳ ଭାରତର ମାନଚିତ୍ର । ଘରେ ନିଜ କାର୍ଯ୍ୟାଳୟରୁ ଫେରୁ ଫେରୁ ପ୍ରାୟ ନଅଟା ବାଜି ଯାଇଥାଏ ଏବଂ ଅନ୍ୟାନ୍ୟ କାର୍ଯ୍ୟ କରିବାକୁ ଯିବା ପୂର୍ବରୁ ପ୍ରଥମେ ତାହାଙ୍କୁ ଅପେକ୍ଷା କରିଥିବା ଦୂରାଗତ ଅତିଥିମାନଙ୍କ ସହିତ କିଛି ସମୟ ଅତିବାହିତ କରିଥାନ୍ତି ଓ ବାର୍ତ୍ତାଳାପ କରିଥାନ୍ତି । ଏ ପ୍ରକାର ଅତିଥିମାନଙ୍କ ସଂଖ୍ୟା ଅପେକ୍ଷାକୃତ ଭାବେ କମ୍ ଥାଏ ।

ସାଧାରଣତଃ ସନ୍ଧ୍ୟା ସମୟ ଦଳୀୟ ଆଲୋଚନା, ପଦସ୍ଥ ବ୍ୟକ୍ତିମାନଙ୍କ ସହିତ ଆଲୋଚନା, ସେହିପରି କିମ୍ବା ବିଦେଶାଗତ ଅତିଥିମାନଙ୍କ ସହିତ ଆଲୋଚନାରେ ହିଁ ଅତିବାହିତ ହୋଇଥାଏ । ବିଶେଷ କରି ଯେତେବେଳେ ପାର୍ଲ୍ୟାମେଣ୍ଟର ଅଧିବେଶନ ଚାଲିଥାଏ, ସବୁଠାରୁ ଅଧିକ ବ୍ୟସ୍ତ ରହିଥାନ୍ତି ସେ । ଯଦିଓ ସଦସ୍ୟମାନଙ୍କ ବିଭିନ୍ନ ପ୍ରଶ୍ନର ଉତ୍ତର ବିଭାଗୀୟ ମନ୍ତ୍ରୀମାନେ ଦେବାର କଥା, ତଥାପି ସମସ୍ତ ବିଷୟ ଓ ପ୍ରଶ୍ନର ଉତ୍ତର ଦେବାପାଇଁ ଶ୍ରୀମତୀ ଗାନ୍ଧୀ ପ୍ରସ୍ତୁତ ହୋଇଥାଆନ୍ତି ଏବଂ ସମସ୍ତ ସମୟରେ ମନ୍ତ୍ରିମଣ୍ଡଳର ନେତ୍ରୀ ହିସାବରେ ସେ ପାର୍ଲ୍ୟାମେଣ୍ଟର ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇଥାନ୍ତି—ପ୍ରଶ୍ନ ଯେ କୌଣସି ବିଭାଗର ହୋଇନା କାହିଁକି, ଯେ କୌଣସି ମନ୍ତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ହୋଇନା କାହିଁକି; କାରଣ ଗଣତନ୍ତ୍ରର ନୀତି To sink or to sail together—ମନ୍ତ୍ରିମଣ୍ଡଳର ଜଣକର ପରାଜୟର ଅର୍ଥ, ମନ୍ତ୍ରିମଣ୍ଡଳର ପରାଜୟ । ତେଣୁ ପାର୍ଲ୍ୟାମେଣ୍ଟ ଚାଲିଥିବା ବେଳେ

* As reported by Sri R. K. Bhatnagar—A Day with Indira : Mirror. Jan , 72—Page 11.

ସେ ସିଧାସଳଖ ତାଙ୍କ ବାସଭବନରୁ ବାହାର ପାର୍ଲ୍ୟାମେଣ୍ଟସ୍ଥିତ ଅଫିସକୁ ଯାଇଥାନ୍ତି । ପ୍ରାୟ ଦନ ଏଗାରଟା ବେଳେ ତାଙ୍କ ବାସଭବନରୁ ଆସିଥିବା କପେ ମାଂସସିଝା ଝୋଳ (Soup) ପିଇଦେଇ ପୁଣି କର୍ମରତ ରହଥାନ୍ତି । ତାପରେ କୌଣସି ସରକାରୀ ମଧ୍ୟାହ୍ନଭୋଜନର ଆୟୋଜନ ନ ଥିଲେ ବାସଭବନକୁ ଯାଇଥାନ୍ତି ପ୍ରାୟ ସାଢ଼େ ଗୋଟାଏ ବେଳେ ଏବଂ ପୁଣି କାର୍ଯ୍ୟାଳୟକୁ ଚାଲି ଆସିଥାନ୍ତି ପ୍ରାୟ ତନଟା ବେଳେ ।

ସନ୍ଧ୍ୟା ପ୍ରାୟ ଛଅ ସାତଟା ସମୟରେ ଅଫିସ୍‌ରୁ ଫେର କପେ ଚାହା ପିଇ ସମସ୍ତ କ୍ଳାନ୍ତି ଦୂର କରବାକୁ ଚେଷ୍ଟା କରଥାନ୍ତି । ତେବେ ଅଧିକାଂଶ ସମୟରେ ରାତ ନଅଟା ବେଳେ ଘରକୁ ଫେରଥାନ୍ତି । ସେତେବେଳେ ତାହାଙ୍କୁ ଅପେକ୍ଷା କରଥିବା ଲୋକଙ୍କୁ ମଧ୍ୟ ସାକ୍ଷାତ୍ ଦେଇଥାନ୍ତି ଅଳ୍ପ ସମୟ ପାଇଁ । ତାଙ୍କ ନକଟକୁ ଆସିଥିବା ଚଠିଗୁଡ଼କର ଅଧିକାଂଶର ଉତ୍ତର ନଜେଇ ଦେବାଲାଗି ଆଗ୍ରହ ପ୍ରକାଶ କରଥାନ୍ତି ସେ । ଦୈନକ ହାରାହାର ଦୁଇ ହଜାର ଦୁଇ ଶହ ଚଠି ପ୍ରଧାନମନ୍ତ୍ରୀଙ୍କ ନାମରେ ଆସିଥାଏ ।

ରାତ୍ରିଭୋଜନ ଶେଷ କରୁ କରୁ ପ୍ରାୟ ଦଶଟା ବାଜ ଯାଇଥାଏ । ତାଙ୍କ ବାସଭବନରେ ଦୁଇ ଜଣ ଘୋଷେଇଆ ଦୀର୍ଘ ୧୭ ବର୍ଷ ଧର ରହ ଆସିଛନ୍ତି । ବଦେଶୀ ଢାଞ୍ଚାରେ ଖାଦ୍ୟ ପ୍ରସ୍ତୁତ କରବା ଲାଗି ନଯୁକ୍ତ ଜେମ୍‌ସ୍ ୧୯୪୬ ମସିହାରୁ ଓ ଭାରତୀୟ ଖାଦ୍ୟ ପ୍ରସ୍ତୁତ କରୁଥିବା ବନୋଦବହାରୀ ବରୁଆ ୧୯୪୭ ମସିହାରୁ ନେହେରୁ ପରବାର ସହତ ସମ୍ପୃକ୍ତ । ଶ୍ରୀମତୀ ଇନ୍ଦରାଙ୍କ ପ୍ରିୟ ଖାଦ୍ୟ ମଧ୍ୟରେ ଶାଗ, କଲରା ଓ ଭେଣ୍ଡି ପ୍ରଧାନ । ସେ ସପ୍ତାହରେ ଦୁଇ ତନ ଦନ ଆମିଷ ଭକ୍ଷଣ କରଥାନ୍ତି । ତା ବ୍ୟତୀତ ସ୍ୱର୍ଗତ ଲାଲବାହାଦୁର ଶାସ୍ତ୍ରୀଙ୍କ ଭଳି ଇନ୍ଦରା ମଧ୍ୟ ଖେଚୁଡ଼ି ଖାଇବାପାଇଁ ଭଲ ପାଇଥାନ୍ତି । ତେବେ ଗସ୍ତ ସମୟରେ କୌଣସି ନର୍ଦ୍ଦିଷ୍ଟ ପ୍ରକାରର ଖାଦ୍ୟ ପ୍ରସ୍ତୁତ କରବା ଲାଗି ସେ ବରାଦ ଦେଇ ନ ଥାନ୍ତି । ଓଡ଼ିଆରେ ଗୋଟିଏ ପ୍ରବଚନ ଅଛି—"ଯେ ଦେଶ ଯାଇ, ସେ ଫଳ ଖାଇ ।" ସେଇ ନୀତ ଅନୁସରଣରେ ବଶେଷ କର ଭାରତରେ ଯେତେବେଳେ ଯେଉଁଠାକୁ ଯାଇଥାନ୍ତି ସେଠାକାର ଖାଦ୍ୟ ଖାଇବାକୁ ସେ ପସନ୍ଦ କରଥାନ୍ତି ।

ରାତ୍ରିଭୋଜନ ଶେଷ କର ପୁଣି କେତେକ ସରକାରୀ ଫାଇଲ୍ ଓ କାଗଜପତ୍ର ନେଇ ଚାଲି ଯାଇଥାନ୍ତି ଶୟନ କକ୍ଷକୁ । ସେ ଫାଇଲ୍‌ଗୁଡ଼କର କାର୍ଯ୍ୟ ଶେଷକର ବଶ୍ରାମ ନେବାକୁ ଯିବାବେଳେ ମଧ୍ୟରାତ୍ରି ପୃଥିବୀକୁ ସ୍ୱାଗତ ଜଣାଇ ସାରଥାଏ । ସମୟେ ସମୟେ ପୃଥିବୀରୁ ବଦାୟ ନେଇ ସାରଥାଏ ମଧ୍ୟ ।

ପୂର୍ବାହ୍ନ ପ୍ରାୟ ଛଅଟା ବେଳେ ଶଯ୍ୟା ତ୍ୟାଗ କର ଦଶ ମିନଟ ପାଇଁ ଯୋଗାସନରେ ନବଷ୍ଟ ରହନ୍ତି ଶ୍ରୀମତୀ ଗାନ୍ଧୀ । ପ୍ରାତଃକର୍ମ ତଥା ସ୍ନାନ ଇତ୍ୟାଦ

ସାରା ପୋଷାକ ପରିଧାନ ଶେଷ କରିବାକୁ ସେ ସାଧାରଣତଃ ପାଞ୍ଚ ମିନିଟ ସମୟ ନେଇଥାଆନ୍ତି । ତା' ପରେ ଦେଶର ପାଞ୍ଚ ଛଅଟି ଦୈନିକ ପତ୍ରିକା ଉପରେ ଆଖି ବୁଲାଇ ଆଣନ୍ତି । ସେଥିରେ ପ୍ରକାଶ ପାଇଥିବା ସରକାରଙ୍କ ସମାଲୋଚିତ ସମ୍ବାଦ-ଗୁଡ଼ିକର ଆବଶ୍ୟକ ପଦକ୍ଷେପ ନେବାପାଇଁ ନିଜର ମତାମତ ସେଥିରେ ଉଲ୍ଲେଖ କରିଥାଆନ୍ତି । ଠିକ୍ ସାତଟା ଦଶ ମିନିଟରେ ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ସରକାରୀ କାଗଜପତ୍ର ସହ ସେ ଦିନର କାର୍ଯ୍ୟ-ନିର୍ଘଣ୍ଟ ନେଇ ଆସିଥାନ୍ତି ତାଙ୍କ ନିକଟକୁ ।

ପ୍ରାୟ ଆଠଟା ସମୟରେ ସେ ତାଙ୍କର ଶୟନକକ୍ଷରେ ହିଁ ସକାଳ ଜଳଖିଆ ଖାଇଥାନ୍ତି । ସେଥିରେ ଅଧିକାଂଶ ସମୟରେ ଥାଏ ଅଧା ସିଝା ଅଣ୍ଡା ଓ କଫି । ବେଳେବେଳେ କିଛି ଫଳ ମଧ୍ୟ ସେ ଖାଇଥାନ୍ତି । ଗରମ ଦିନମାନଙ୍କରେ ଗରମ କଫି ବଦଳରେ ଦହି କିମ୍ବା ଚହ୍ଲା ଖାଇବାରେ ସେ ଆଗ୍ରହ ପ୍ରକାଶ କରିଥାନ୍ତି ।

ଶ୍ରୀମତୀ ଗାନ୍ଧୀଙ୍କ ପରିଧାନପରିପାଟୀ ମଧ୍ୟ ସରଳ ଓ ନିରାଡ଼ମ୍ବର ଖାଦ୍ୟ ଭଳି ଅତି ସରଳ ତଥା ମନୋମୁଗ୍ଧକର । କାର୍ଯ୍ୟାଳୟକୁ ଗଲାବେଳେ ସାଧାରଣତଃ ଧଳା ବା ଗହମ ରଙ୍ଗର ଶାଢ଼ୀ ଖରାଦିନମାନଙ୍କରେ ଓ ଈଷତ୍ ହଳଦିଆ ବା ମାଟିଆ ରଙ୍ଗର ଗରମ ପୋଷାକ ଶୀତଦିନମାନଙ୍କରେ ପିନ୍ଧିବାକୁ ପସନ୍ଦ କରିଥାନ୍ତି ସେ । ତେବେ ଭାରତର ବିଭିନ୍ନ ପ୍ରାନ୍ତରକୁ ଗସ୍ତ କଲାବେଳେ ସେ ସେଠିକାର ଲୋକଙ୍କ ରୁଚି ଅନୁଯାୟୀ ପୋଷାକ ବଦଳାଇବାକୁ କୁଣ୍ଠାବୋଧ କରନ୍ତି ନାହିଁ ଏବଂ ସେଇଥିପାଇଁ ଭାରତର ଜନ୍ ଅଫ୍ ଆର୍କ, ଭାରତର ପ୍ରିୟଦର୍ଶିନୀ ଇନ୍ଦିରା ଭାରତୀୟ ଜନଗଣଙ୍କ ନିକଟରେ ଅତି ଆପଣାର ହୋଇପଡ଼ିବା ସହଜ ଓ ସାଧାରଣ ମନେ ହୁଏ । ଭାରତର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଲୋକେ ଶ୍ରୀମତୀ ଗାନ୍ଧୀଙ୍କ ଜୟଗାନ କରିବାକୁ ପଶ୍ଚାତ୍ପଦ ହୁଅନ୍ତି ନାହିଁ ।

## ଚତୁର୍ଥ ସାଧାରଣ ନିର୍ବାଚନ :—

ଶ୍ରୀମତୀ ଇନ୍ଦିରାଙ୍କ ନାମ ସହିତ ଯାଦୁକରର ଯେଉଁ କାଉଁରୀ ସ୍ପର୍ଶ ଥିଲା, ୧୯୭୨ର ସାଧାରଣ ନିର୍ବାଚନରେ ତାହା ସମ୍ପୂର୍ଣ୍ଣ ପ୍ରମାଣିତ ହୋଇଯାଇଥିଲା । ୧୯୭୧ରେ ପାର୍ଲ୍ୟାମେଣ୍ଟ ନିର୍ବାଚନରେ ଯେପରି ଆଶାତୀତ ଭାବେ ଦୁଇ-ତୃତୀୟାଂଶରୁ କିଛି ଅଧିକ ଆସନ କ୍ଷମତାସୀନ କଂଗ୍ରେସ ଅଧିକାର କରିଥିଲା, ଠିକ୍ ଅନୁରୂପ ହୋଇଥିଲା ସମଗ୍ର ଭାରତର ସାଧାରଣ ନିର୍ବାଚନ ପରେ ଦଳର ପରିସ୍ଥିତି । ବାସ୍ତବିକ୍ ୧୯୬୭ ସାଧାରଣ ନିର୍ବାଚନ ପରେ ପରେ ଦଳ ଭିତରେ ଅନ୍ତର୍ବିବାଦ ଏବଂ ତା ଫଳରେ ଦଳୀୟ ଦୁର୍ନାମ ଯେପରି ଭାବରେ ବୃଦ୍ଧି ପାଇଥିଲା, ତାହା ଦୂର କରିବାକୁ ସମର୍ଥ ହୋଇଥିଲେ ଶ୍ରୀମତୀ ଗାନ୍ଧୀ ୧୯୭୧ ନିର୍ବାଚନ ପରେ ପରେ ।

କରୁ ଦେଶର ୧୯୭୨ ସାଧାରଣ ନିର୍ବାଚନ କଂଗ୍ରେସ ଦଳ ତଥା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସଫଳତାର ଚରମ ସୋପାନରେ ଉପନୀତ କରାଇ ଦେଇଥିଲା ।

ନିର୍ବାଚନ ପୂର୍ବରୁ ବିରୋଧୀ ଦଳମାନେ ସମ୍ମିଳିତ ଉଦ୍ୟମ କରିଥିଲେ କ୍ଷମତାସୀନ କଂଗ୍ରେସକୁ ପରାଜିତ କରାଇବା ପାଇଁ । ତେଣୁ ସମସ୍ତଙ୍କର ମାତ୍ର ଗୋଟାଏ ଧ୍ୱନି ସ୍ପଷ୍ଟ ହୋଇ ଉଠିଥିଲା—"ଇନ୍ଦିରା ହଟାଓ" । ଶ୍ରୀମତୀ ଗାନ୍ଧୀ ଦେଶରୁ 'ଗରିବୀ ହଟାଓ' ଧ୍ୱନି ଦେଉଥିବା ବେଳେ ତାଙ୍କର ବିରୋଧୀଦଳମାନେ ଜଣେ ବ୍ୟକ୍ତିବିଶେଷଙ୍କୁ ଦେଶର ଶାସନକ୍ଷେତ୍ରରୁ ହଟାଇବା ଲାଗି ଧ୍ୱନି ଦେଇଥିଲେ । ଏଥିରୁ ସ୍ପଷ୍ଟ ଅନୁମାନ କରାଯାଇପାରେ ଯେ ଜଣେ ବ୍ୟକ୍ତିବିଶେଷର ପ୍ରଭାବ ଦେଶର ଜନସାଧାରଣଙ୍କ ମଧ୍ୟରେ କିପରି ଭାବରେ ପ୍ରତିଫଳିତ ହୋଇଥିଲା ।

ନିର୍ବାଚନରେ କଂଗ୍ରେସକୁ ଜିଣାଇବା ଲାଗି ଏବଂ ତାର ପ୍ରତିନିଧିମାନଙ୍କ ବିଜୟ ପାଇଁ ଶ୍ରୀମତୀ ଗାନ୍ଧୀ ଯଥାସାଧ୍ୟ ନିର୍ବାଚନ ପ୍ରଚାର ପାଇଁ ଅଗ୍ରସର ହୋଇଥିଲେ । ଦେଶର ବିଭିନ୍ନ ପ୍ରାନ୍ତରର ଜନସାଧାରଣଙ୍କୁ ତାଙ୍କର ନୀତି, କାର୍ଯ୍ୟକଳାପ ଏବଂ ଭବିଷ୍ୟତ୍ କର୍ମପନ୍ଥା ସମ୍ପର୍କରେ ବୁଝାଇବା ଲାଗି ଚେଷ୍ଟା କରିବା ସଙ୍ଗେ ସଙ୍ଗେ ନିଜ ଦଳର ପ୍ରାର୍ଥୀମାନଙ୍କୁ ଜୟଯୁକ୍ତ କରାଇବା ପାଇଁ ସେ ଆହ୍ୱାନ ଦେଇଥିଲେ । ସେ ଜନସାଧାରଣଙ୍କୁ ବୁଝାଇବା ଲାଗି ଚେଷ୍ଟା କରିଥିଲେ ଯେ ସେମାନେ ଯଦି ତାଙ୍କ ନେତୃତ୍ୱ ଗ୍ରହଣ କରିବାକୁ ଇଚ୍ଛୁକ, ତେବେ ତାଙ୍କ ମନୋନୀତ ପ୍ରାର୍ଥୀମାନେ ବିଜୟ ହାସଲ କରି ତାଙ୍କ ହାତମୁଠାକୁ ଟାଣ କରିବାକୁ ହେବ । ସେ ଅନେକ ସଭାରେ ଘୋଷଣା କରିଥିଲେ ଯେ, ଦଳୀୟ ପ୍ରାର୍ଥୀମାନଙ୍କ ଉପରେ ତାଙ୍କର ଅସୀମ ବିଶ୍ୱାସ ଅଛି । କାରଣ କଂଗ୍ରେସର ନୀତି ଅନୁସରଣ କରି ତାର କାର୍ଯ୍ୟକ୍ରମକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିବାପାଇଁ ତାଙ୍କ ଦଳୀୟ ପ୍ରାର୍ଥୀମାନଙ୍କ ନିକଟରେ ସେ ଯେତିକି ଆସ୍ଥା ସ୍ଥାପନ କରିଥିଲେ, ଦେଶର ଜନଗଣ ମଧ୍ୟ ସେତିକି ଆସ୍ଥାବାନ୍ ହେବା ଆବଶ୍ୟକ ।

ଭାରତର ଜନସାଧାରଣ ନିର୍ବାଚନରେ ଉଚିତ ରାୟ ଦେଇଥିଲେ । ଦେଶର ପନ୍ଦରଟି ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳରେ କ୍ଷମତାସୀନ କଂଗ୍ରେସ ଦଳ ବିଜୟ ହାସଲ କରିଥିଲା । ଯେଉଁ ପ୍ରଦେଶଗୁଡ଼ିକରେ କଂଗ୍ରେସ ସଂଖ୍ୟାଗରିଷ୍ଠତା ହାସଲ କରିଥିଲା ସେଗୁଡ଼ିକ ହେଲା ଆନ୍ଧ୍ର, ଆସାମ, ଦିଲ୍ଲୀ, ପଞ୍ଜାବ, ହରିଆନା, ବିହାର, ଗୁଜରାଟ, ହିମାଚଳ ପ୍ରଦେଶ, ଜାମ୍ମୁ-କାଶ୍ମୀର, ମଧ୍ୟପ୍ରଦେଶ, କର୍ଣ୍ଣାଟକ, ମହାରାଷ୍ଟ୍ର, ରାଜସ୍ଥାନ, ପଶ୍ଚିମବଙ୍ଗ, ତ୍ରିପୁରା । ଏ ବିଜୟ ଥିଲା ବିରୋଧୀଦଳ ବିଶେଷ କରି ଜନସଂଘ, ସ୍ୱତନ୍ତ୍ର ଓ ବିରୋଧୀ କଂଗ୍ରେସ ଦଳ ପାଇଁ ଏକ ଶକ୍ତ ପ୍ରହାର—ବଜ୍ରାଘାତ ।

ପଶ୍ଚିମବଙ୍ଗରେ ଦୀର୍ଘ ଦିନ ଧରି ଲାଗିରହିଥିବା ରାଜନୈତିକ ଅସ୍ଥିରତା, ମାର୍କସପନ୍ଥୀ ଏବଂ ନକ୍ସଲପନ୍ଥୀଙ୍କର ସାମାଜିକ ତଥା ରାଜନୈତିକ ଉପଦ୍ରବ ସତ୍ତ୍ୱେ ସେଠାରେ କଂଗ୍ରେସର ବିଜୟ ଥିଲା ଇନ୍ଦିରାଙ୍କ ବ୍ୟକ୍ତିତ୍ୱର ଏକ ଚରମ ବିଜୟ, ଏକ ପ୍ରଶଂସନୀୟ ବିଜୟ । କାରଣ ବିଗତ ଦୀର୍ଘକାଳ ଧରି କଂଗ୍ରେସ ସେଠାରେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲା । ସେଥିପାଇଁ ପଶ୍ଚିମବଙ୍ଗରେ କଂଗ୍ରେସର ବିଜୟକୁ ଶ୍ରୀଯୁକ୍ତ ବାବୁରାଓ ପଟେଲ ମତ ଦେଇଥିଲେ—'ଇନ୍ଦିରାଙ୍କ ପଶ୍ଚିମବଙ୍ଗ ବିଜୟ' । ସେ ସମ୍ପର୍କରେ ଭାରତର ଗୋଟିଏ ଇଂରେଜୀ ଦୈନିକ ହିନ୍ଦୁସ୍ଥାନ ସମାଚାର ତାର ସମ୍ପାଦକୀୟରେ ମତପ୍ରକାଶ କରିଥିଲା, "ପଶ୍ଚିମବଙ୍ଗର ନିର୍ବାଚନମଣ୍ଡଳୀଗୁଡ଼ିକ ମଧ୍ୟ ଇନ୍ଦିରାଙ୍କ କୁହୁକରେ ବଶୀଭୂତ ହୋଇ ଯାଇଛନ୍ତି ଏବଂ ସେଠାରେ ସମସ୍ତ ବିରୋଧୀଦଳ ବୋକା ପାଲଟି ଯାଇଛନ୍ତି । କଂଗ୍ରେସଦଳ ନିର୍ବାଚନରେ ବିଜୟୀ ହୋଇଉଠିବା ସଙ୍ଗେ ସଙ୍ଗେ ସାଂପ୍ରଦାୟିକତା ଓ ଚରମବାଦର ଶକ୍ତିଶାଳୀ ଆହ୍ୱାନ, ଉଜ୍ଜ୍ୱଳ ତରଙ୍ଗ ସମ୍ମୁଖରେ ଦସ୍ୟନୀୟ ଭାବରେ ବିଫଳ ହୋଇଛି । ପଶ୍ଚିମବଙ୍ଗ ଭିନ୍ନ ହୋଇପାରେ, କିନ୍ତୁ ତାହା ଏତେଟା ଭିନ୍ନ ନୁହେଁ ଯେ କାହାସ୍ୱ ରାଜନୀତିର ପ୍ରଖର ପ୍ରବାହରୁ ଦୂର ହୋଇଯିବ ।"†

୧୯୭୨ ସାଧାରଣ ନିର୍ବାଚନରେ କଂଗ୍ରେସ ଦଳ ଦେଶରେ ସର୍ବମୋଟ ୨୫୨୪ ଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦିତା କରାଇଥିଲା ଓ ସେଥିରୁ ବିଜୟ ହାସଲ କରିଥିଲେ ୧୯୨୬ ଜଣ । ୧୯୭୨ ସାଧାରଣ ନିର୍ବାଚନ ପୂର୍ବରୁ ଦେଶର ବିଭିନ୍ନ ବିଧାନସଭା-ଗୁଡ଼ିକରେ କଂଗ୍ରେସର ମୋଟ ପ୍ରତିନିଧିମାନଙ୍କ ସଂଖ୍ୟା ଥିଲା ୧୩୮୨ । ବିରୋଧୀଦଳ କଂଗ୍ରେସ ସେହି ନିର୍ବାଚନରେ ୮୭୨ ଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦିତା କରାଇଥିଲେ ମଧ୍ୟ ମାତ୍ର ସେଥିମଧ୍ୟରୁ ୮୮ ଜଣ କୃତକାର୍ଯ୍ୟ ହୋଇଥିଲେ । କିନ୍ତୁ ନିର୍ବାଚନ ପୂର୍ବରୁ ସେମାନଙ୍କ ସଂଖ୍ୟା ଥିଲା ୨୦୭ ଜଣ । ଠିକ୍ ସେହିପରି ଜନସଂଘର ୧୨୩୨ ଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦିତା କରି ସେଥିରୁ ୧୦୫ ଜଣ ଜୟଯୁକ୍ତ ହୋଇଥିଲେ । କମ୍ୟୁନିଷ୍ଟ ୩୨୫ରୁ ଟିକେଟ ହାସଲ କରିଥିଲେ ୧୧୨ ଓ ମାର୍କସବାଦୀ କମ୍ୟୁନିଷ୍ଟ ୪୭୨ରୁ ମାତ୍ର ୩୪ । ସ୍ୱତନ୍ତ୍ର ଦଳରୁ ୩୦୪ ଜଣ ପ୍ରତିଦ୍ୱନ୍ଦିତା କରି ଜିଣିଥିଲେ ୧୬ ଜଣ ଓ ସୋସାଲିଷ୍ଟ ଦଳ ୬୫୩ ଜଣଙ୍କ ମଧ୍ୟରୁ ପାଇଥିଲେ ୫୮ । ସେ ନିର୍ବାଚନରେ ସ୍ୱାଧୀନ ତଥା ଅନ୍ୟାନ୍ୟ ଦଳଗୁଡ଼ିକର ଅବସ୍ଥା ମଧ୍ୟ ଅନୁରୂପ ହୋଇଥିଲା । ଏଥିରୁ ସ୍ପଷ୍ଟ ଅନୁମାନ କରାଯାଇପାରେ ଯେ, ବିଭିନ୍ନ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳମାନଙ୍କ ବିଧାନସଭାଗୁଡ଼ିକରେ ନିର୍ବାଚନ ପୂର୍ବର ସ୍ଥିତି ସଂପୂର୍ଣ୍ଣ ଭାବେ ଓଲଟ ପାଲଟ ହୋଇ ଯାଇଥିଲା ନିର୍ବାଚନ ପରେ ।

---

† ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ୍—୧୬ ମାର୍ଚ୍ଚ, ୧୯୭୨ ।

୧୯୭୨ର ସାଧାରଣ ନିର୍ବାଚନ କେବଳ ଭାରତର ରାଜନୈତିକ ମଣ୍ଡଳରେ ନାହିଁ, ସମଗ୍ର ପୃଥିବୀରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ଓ ଭାରତର ରାଜନୈତିକ ରଙ୍ଗମଞ୍ଚରେ କଂଗ୍ରେସ ଦଳର ସ୍ଥିତିକୁ ଶକ୍ତ କରି ଦେଇଥିଲା । ୧୯୫୨ ମସିହାଠାରୁ ଆରମ୍ଭ କରି ୧୯୬୭ ପର୍ଯ୍ୟନ୍ତ କୌଣସି ସାଧାରଣ ନିର୍ବାଚନରେ କଂଗ୍ରେସ ଏତେ ମାତ୍ରାରେ ସ୍ଥାନ ସାମୂହିକ ଭାବରେ ହାସଲ କରିପାରି ନ ଥିଲା ବିଧାନସଭା-ମାନଙ୍କରେ । ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସ ବିଭିନ୍ନ ବିଧାନସଭାରେ ୧୯୫୭ ମସିହାରେ ୬୫.୪ ଭାଗ ଓ ୧୯୬୨ ମସିହାରେ ୬୦.୫% ରଖିଥିଲା । ସେଇ କଂଗ୍ରେସ ୧୯୬୭ରେ ରଖିଥିଲା ମାତ୍ର ୪୮.୭% । ସେସବୁ ଦୃଷ୍ଟିରୁ ୧୯୭୨ର ସାଧାରଣ ନିର୍ବାଚନ ଥିଲା ସଂପୂର୍ଣ୍ଣ ଅଲଗା । କଂଗ୍ରେସର ଅନେକ ପୁରାତନ ନେତୃସ୍ଥାନୀୟ ବ୍ୟକ୍ତି ଅଲଗା ହୋଇ ଅନ୍ୟ ଏକ ସମାନ୍ତରାଳ ସଂଗଠନ ତ ଗଠନ କରି ନ ଥିଲେ, ବରଂ ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମ ଆରମ୍ଭ କରି ଦେଇଥିଲେ । ତା ସତ୍ତ୍ୱେ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସ ଦେଶର ବିଭିନ୍ନ ବିଧାନସଭାମାନଙ୍କରେ ପାଇଥିଲା ଶତକଡ଼ା ଏକସ୍ତରି ଭାଗ । ସେ ବିଜୟରେ ସମଗ୍ର ବିଶ୍ୱ ସ୍ତମ୍ଭୀଭୂତ ହୋଇଯାଇଥିଲା । ଆମେରିକାର ଏକ ବିଖ୍ୟାତ ପତ୍ରିକା ମତପ୍ରକାଶ କରିଥିଲା—"ଏହି ନିର୍ବାଚନରେ ଭାରତର ଜନସାଧାରଣ ଯେଉଁ ରାୟ ଦେଲେ, ତା ଫଳରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଆଜି ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରର ଅଦ୍ୱିତୀୟ ନେତ୍ରୀ ରୂପେ ଏବଂ ଭାରତୀୟ ଉପମହାଦେଶର ଶ୍ରେଷ୍ଠ ରାଷ୍ଟ୍ରବିଦ୍‌ରୂପେ ପ୍ରତିଷ୍ଠା ଲାଭ କଲେ ।" †

ସ୍ୱାଧୀନତା ପରେ ପରେ ନେତୃତ୍ୱ ନେଇଥିବା କ୍ଷମତାସୀନ ଦଳର ଓ ଜବାହରଲାଲଙ୍କ ଜଣେ କଠୋର ସମାଲୋଚକ ଶ୍ରୀ ବାବୁରାଓ ପଟେଲ ସାଧାରଣ ନିର୍ବାଚନ ପରେ ପରେ ଶତମୁଖରେ ପ୍ରଶଂସା କରିଥିଲେ ଶ୍ରୀମତୀ ଇନ୍ଦିରାଙ୍କୁ ଓ ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ, "ଇନ୍ଦିରାଙ୍କ ଏହି ବିଜୟ ଅଧିକ କୃତିତ୍ୱପୂର୍ଣ୍ଣ । କାରଣ ଦେଶର ସମସ୍ତ ମାର୍କସବାଦୀ ଓ ମୁସଲମାନ, ଏପରି କି ପ୍ରତ୍ୟେକ ନରନାରୀ ଇନ୍ଦିରାଙ୍କ କଂଗ୍ରେସ ସପକ୍ଷରେ ମତ ଦେଇଛନ୍ତି । ମାର୍କସବାଦୀମାନେ ଇନ୍ଦିରାଙ୍କ ବିରୁଦ୍ଧରେ ଲଢ଼ିଥିଲେ; କାରଣ ସେମାନେ ଇନ୍ଦିରାଙ୍କ ସହଯାତ୍ରୀ ରୂପପନ୍ଥୀ କମ୍ୟୁନିଷ୍ଟମାନଙ୍କ ପନ୍ଥାକୁ ଗ୍ରହଣ କରିପାରୁ ନ ଥିଲେ । ମୁସଲମାନମାନେ ଇନ୍ଦିରାଙ୍କୁ ଘୃଣା କରିବାର କାରଣ ଥିଲା, ସେ ବଙ୍ଗଳାଦେଶକୁ ସ୍ୱୀକୃତି ଦେଇ ଓ ମୁକ୍ତ କରି ଅଖଣ୍ଡ ପାକିସ୍ଥାନକୁ ଦୁଇ ଭାଗ କରି ଦେଇଥିଲେ । × × × ଇନ୍ଦିରା ତାଙ୍କ ପିତାଙ୍କର ପ୍ରତିବନ୍ଧକ ଦ୍ୱାରା ଆକ୍ରାନ୍ତ ନୁହନ୍ତି କି ହେବେ ନାହିଁ । ସେ ( ପଣ୍ଡିତ ନେହେରୁ ) ଯାହା କରିବା ପାଇଁ ପଶ୍ଚାତ୍ପଦ ହେଉଥିଲେ, ଇନ୍ଦିରା ଅତି ସହଜରେ

† ଶ୍ରୀ ସୂର୍ଯ୍ୟନାରାୟଣ ଦାସ—ଯୁଗନେତ୍ରୀ ଇନ୍ଦିରା, ପୃ—୧୫୯ ।

ବାଧା କରିବା ପାଇଁ ସମର୍ଥ । କେନ୍ଦ୍ରୀୟ ସରକାର ସ୍ଥାପନ କରିବାକୁ ଯାଇ ନେହେରୁଙ୍କୁ ତାଙ୍କର ଗଣତାନ୍ତ୍ରିକ ପଥରୁ ଅପସରି ଯିବାକୁ ପଡ଼ିଥିଲା । କିନ୍ତୁ ଇନ୍ଦିରାଙ୍କୁ ବାଧା କରିବାକୁ ପଡ଼ିଲା ନାହିଁ । ଜଣେ ପ୍ରଗତିବାଦୀ ଶାସକ ହିସାବରେ ଇନ୍ଦିରା ଅତୀତ ସହିତ ସମ୍ପୃକ୍ତ ନୁହନ୍ତି । *

ସେଇଥିପାଇଁ ଗତାନୁଗତିକ ଭାବେ ପ୍ରଚଳିତ ଧାରାକୁ ସେ ମାନିନେବା ପାଇଁ ପ୍ରସ୍ତୁତ ନ ଥିଲେ । ସେ ଚାହୁଁ ଥିଲେ ଦେଶର ପ୍ରଗତି ପାଇଁ, ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବାପାଇଁ, ଅର୍ଥନୈତିକ ସ୍ୱଚ୍ଛଳତା ପାଇଁ ବର୍ତ୍ତମାନର ପରିସ୍ଥିତି ତଥା ଭବିଷ୍ୟତରେ ପୃଥିବୀ ସହିତ ଠିକ୍ ପାଦ ମିଳାଇ ଚାଲିବା ପାଇଁ ଯାହା ଦରକାର, ସେପରି ନୀତି ହିଁ ଗ୍ରହଣ କରିବେ ।

## ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି ନିଯୁକ୍ତି :—

୧୯୭୩ ମସିହାର ଶାସନ-ରଙ୍ଗମଞ୍ଚରେ ଯେଉଁ ଦୃଶ୍ୟ ଭାରତର ବୁଦ୍ଧିଜୀବୀ ଜନଜୀବନରେ ଆଲୋଡ଼ନ ସୃଷ୍ଟି କରିଥିଲା ତାହା ଥିଲା ଭାରତର ଉଚ୍ଚତମ ନ୍ୟାୟାଳୟ, ଗଣତନ୍ତ୍ରର ଜାଗ୍ରତ ପ୍ରହରୀ ସୁପ୍ରିମକୋର୍ଟରେ ନୂତନ ବିଚାରପତି ନିଯୁକ୍ତି । କେନ୍ଦ୍ର ମନ୍ତ୍ରିମଣ୍ଡଳର ନିଷ୍ପତ୍ତିକ୍ରମେ ସୁପ୍ରିମକୋର୍ଟର ବୟୋଜ୍ୟେଷ୍ଠ ତିନି ଜଣ ମାନ୍ୟବର ବିଚାରପତିଙ୍କ ବୟସ ବିଚାରକୁ ନିଆ ନଯାଇ କ୍ରମର ଚତୁର୍ଥରେ ଥିବା ମାନ୍ୟବର ଅଜିତ୍‌ନାଥ ରାୟଙ୍କୁ ପ୍ରଧାନ ବିଚାରପତି ନିଯୁକ୍ତି ଦିଆଯାଇଥିଲା । ତାହା ସମଗ୍ର ରାଷ୍ଟ୍ର ତଥା ରାଷ୍ଟ୍ର ବାହାରେ ଅନେକ ଦେଶରେ ଏକ ବିବାଦୀୟ ବିଷୟ ରୂପେ ପ୍ରତିଦିନ ସମ୍ବାଦପତ୍ରମାନଙ୍କ ଲାଗି ଖୋରାକ ଯୋଗାଇଥିଲା ।

ସାଧାରଣତଃ ସୁପ୍ରିମକୋର୍ଟରେ ଯେତେ ଜଣ ବିଚାରପତି ଥାଆନ୍ତି, ପ୍ରଧାନ ବିଚାରପତିଙ୍କୁ ମିଶାଇ ଅନ୍ୟାନ୍ୟମାନଙ୍କ ନାମ ସିନିୟରିଟି ଅନୁଯାୟୀ କ୍ରମାନ୍ୱୟରେ ଲିଖିତ ହୋଇଥିବାରୁ ପ୍ରଧାନ ବିଚାରପତିଙ୍କ ନାମ ତାଲିକାର ସର୍ବପ୍ରଥମେ ହିଁ ରହିଥାଏ । ଯେତେବେଳେ ପ୍ରଧାନ ବିଚାରପତିଙ୍କ କାର୍ଯ୍ୟକାଳର ପରିସମାପ୍ତି ଘଟିଥାଏ କିମ୍ବା ସେ ଇସ୍ତଫା ଦେଇଥାନ୍ତି କିମ୍ବା ଅନ୍ୟ କୌଣସି କାରଣରୁ ସ୍ଥାନ ଖାଲି ପଡ଼େ, ତେବେ କ୍ରମର ଦ୍ୱିତୀୟ ସ୍ଥାନରେ ଯାହାର ନାମ ଥାଏ, (ଅନ୍ୟମାନଙ୍କ ଅପେକ୍ଷା ଯେ ଚାକିରି କ୍ଷେତ୍ରରେ ବୟୋଜ୍ୟେଷ୍ଠ) ସେଇ ବ୍ୟକ୍ତି ହିଁ ପ୍ରଧାନ ବିଚାରପତି ଆସନ ଅଳଂକୃତ କରିବା ଏକ ପ୍ରଚଳିତ ପରମ୍ପରା ।

ତେବେ ପରମ୍ପରା ଅନୁଯାୟୀ ମାନ୍ୟବର ପ୍ରଧାନ ବିଚାରପତି ନିଯୁକ୍ତି ପୂର୍ବରୁ ବିଦାୟ ନେବାକୁ ଥିବା ପ୍ରଧାନ ବିଚାରପତିଙ୍କୁ ତାଙ୍କ ନିକଟରୁ ଦାୟିତ୍ୱ ଗ୍ରହଣ କରିବାକୁ ଥିବା ବ୍ୟକ୍ତିଙ୍କ ନାମ ସୁପାରିଶ କରିବାକୁ ପରାମର୍ଶ ମଗାଯାଇଥାଏ

* ମଦର ଇଣ୍ଡିଆ—ଅପ୍ରେଲ ୧୯୭୨—ପୃ—୩୬ ।

ଭାରତର ପ୍ରଧାନମନ୍ତ୍ରୀଙ୍କଦ୍ୱାରା । ବିଦାୟ ନେବାକୁ ଥିବା ପ୍ରଧାନ ବିଚାରପତି ଯେଉଁ ପରାମର୍ଶ ଦେଇଥାନ୍ତି ତାହା ହିଁ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ବିଚାର କରାଯାଇ ସେହି ପରାମର୍ଶକୁ ହିଁ ରାଷ୍ଟ୍ରପତିଙ୍କ ସ୍ୱୀକୃତି ପାଇଁ ପଠାଇ ଦିଆଯାଇଥାଏ । ବିଦାୟ ନେବାକୁ ଥିବା ପ୍ରଧାନ ବିଚାରପତି ସାଧାରଣତଃ ତାଙ୍କ ବିଚାରପତିମଣ୍ଡଳୀର ସବୁଠାରୁ ବୟୋଜ୍ୟେଷ୍ଠ ବିଚାରପତିଙ୍କ ନାମ ସୁପାରିଶ କରିଥାନ୍ତି । ଭାରତ ଏକ ସ୍ୱାଧୀନ ସାର୍ବଭୌମ ଗଣତନ୍ତ୍ର ରୂପେ ଗଠିତ ହେବା ପରଠାରୁ ଓ ସେ ଗଣତନ୍ତ୍ରର ସୁରକ୍ଷା ପାଇଁ ଏକ ସର୍ବୋଚ୍ଚ ବିଚାରାଳୟ ସୁପ୍ରିମକୋର୍ଟର ପ୍ରତିଷ୍ଠା ହେବା ପରଠାରୁ ଆଜିପର୍ଯ୍ୟନ୍ତ ତାହା ହିଁ ଥିଲା ଆମ ସୁପ୍ରିମ୍‌କୋର୍ଟର ପ୍ରଧାନ ବିଚାରପତି ନିଯୁକ୍ତି ଲାଗି ପ୍ରଚଳିତ ପରମ୍ପରା ।

କିନ୍ତୁ ୧୯୭୩ ମସିହା ଅପ୍ରେଲ ମାସରେ ଯେତେବେଳେ ମାନ୍ୟବର ପ୍ରଧାନ ବିଚାରପତି ଶ୍ରୀ ଏସ୍. ଏମ୍. ସିକ୍ରୀ ଅବସର ଗ୍ରହଣ କରିଥିଲେ, ସେତେବେଳେ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱରେ କେନ୍ଦ୍ର ମନ୍ତ୍ରିମଣ୍ଡଳ ସୁପ୍ରିମ୍ କୋର୍ଟର ବିଚାରପତି-ମାନଙ୍କ ମଧ୍ୟରୁ ସବୁଠାରୁ ବୟୋଜ୍ୟେଷ୍ଠ (ଏବଂ ଜ୍ୟେଷ୍ଠତା କ୍ଷେତ୍ରରେ ସିନିୟରର) ବିଚାରପତିଙ୍କୁ ପ୍ରଧାନ ବିଚାରପତି ପଦରେ ନିଯୁକ୍ତ ନ ଦେଇ କ୍ରମାନ୍ୱୟରେ ତିନି ଜଣ ବିଚାରପତିଙ୍କୁ ବାଦ୍ ଦିଆଯାଇ ତାଙ୍କ ପରେ ( ଚତୁର୍ଥ କ୍ରମରେ ) ଥିବା ମାନ୍ୟବର ଅଜିତ୍‌ନାଥ ରାୟଙ୍କୁ ପ୍ରଧାନ ବିଚାରପତି ନିଯୁକ୍ତ ଦେବା ପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ପରମ୍ପରା ଅନୁଯାୟୀ ଏହା ଥିଲା ପ୍ରଥମ ବ୍ୟତିକ୍ରମ । ଦ୍ୱିତୀୟ ବ୍ୟତିକ୍ରମ ଥିଲା ମାନ୍ୟବର ପ୍ରଧାନ ବିଚାରପତି ସିକ୍ରୀ ଅବସର ନେବା ପୂର୍ବରୁ ତାହାଙ୍କ ଉତ୍ତରାଧିକାରୀ ମନୋନୟନ ସମ୍ପର୍କରେ କୌଣସି ପରାମର୍ଶ ଆହ୍ୱାନ କରାଯାଇ ନ ଥିଲା । ପରନ୍ତୁ ମାନ୍ୟବର ସିକ୍ରୀ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଥିଲେ ଯେତେବେଳେ ସେ ବେତାର ସମ୍ବାଦରୁ ଶୁଣିବାକୁ ପାଇଥିଲେ ମାନ୍ୟବର ପ୍ରଧାନ ବିଚାରପତିଙ୍କ ନିଯୁକ୍ତି ସମ୍ପର୍କୀୟ ଘୋଷଣାନାମା ।

ଯେତେବେଳେ କେନ୍ଦ୍ର ମନ୍ତ୍ରିମଣ୍ଡଳର ସେ ନିଷ୍ପତ୍ତି ପ୍ରକାଶ ପାଇଥିଲା, ତାର ପରିଣାମ ସ୍ୱରୂପ ଠିକ୍ ତାର ପରେ ପରେ ସମଗ୍ର ଦେଶର ଆଇନ୍‌ଜୀବୀମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଓ ପ୍ରତିବାଦ ମଧ୍ୟ ପ୍ରକାଶ ପାଇଥିଲା । ମାନ୍ୟବର ଅଜିତ୍‌ନାଥ ରାୟ ସୁପ୍ରିମ୍ କୋର୍ଟର ପ୍ରଧାନ ବିଚାରପତି ରୂପେ ଶପଥ ଗ୍ରହଣ କରିବାର ମାତ୍ର ଅ.ଠଘଣ୍ଟା ପରେ ତାଙ୍କଠାରୁ ବୟୋଜ୍ୟେଷ୍ଠ ତିନି ଜଣ ସୁପ୍ରିମ କୋର୍ଟର ବିଚାରପତି ଓ ତାଙ୍କର ସହଯୋଗୀ ମାନ୍ୟବର ଶ୍ରୀ ସେଲାଟ୍, ଶ୍ରୀ ଏ. ଏନ୍. ଗ୍ରୋଭର ଓ ଶ୍ରୀ ହେଗ୍‌ଡ଼େ ସେମାନଙ୍କ ଇସ୍ତଫା ପ୍ରଦାନ କରିଥିଲେ ।

ବିଦାୟୀ ବିଚାରପତି ଶ୍ରୀ ସିକ୍ରୀ ସେ ଘଟଣାରେ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରିଥିଲେ ଯେ, ସରକାରଙ୍କ ସେ ପ୍ରକାର ଷ୍ଟତ୍ତିନ ସମ୍ପୂର୍ଣ୍ଣ ରୂପେ ରାଜନୈତିକ

ଭିତ୍ତିଭୂମି ଉପରେ ହିଁ ପ୍ରତିଷ୍ଠିତ । ବିଗତ ଦିନମାନଙ୍କରେ ମୌଳିକ ଅଧିକାର ମାମଲାରେ ସେହି ତିନିଜଣ ବିଚାରପତି ସରକାରଙ୍କ ସପକ୍ଷରେ ସେମାନଙ୍କ ମତ ପ୍ରକାଶ କରିପାରି ନ ଥିବାରୁ ସେମାନଙ୍କୁ ଏ ଦଶା ଭୋଗ କରିବାକୁ ପଡ଼ିଥିଲା ।

ସେ ପୁଣି ମତ ପ୍ରକାଶ କରିଥିଲେ ଯେ ସରକାରଙ୍କ ସପକ୍ଷରେ ସେମାନେ ମତ ଦେଇ ପ୍ରଧାନ ବିଚାରପତି ନିଯୁକ୍ତି ବେଳେ ଉପେକ୍ଷିତ ହୋଇଥିଲେ ସରକାରଙ୍କ ବିଚାରଧାରା ତଥା ସେଭଳି ନିଷ୍ପତ୍ତିକୁ ସେ ସ୍ୱାଗତ କରିଥାନ୍ତେ । ତାଙ୍କ ମତରେ ଯେହେତୁ ରାଜନୈତିକ ଦର୍ଶନର କୌଣସି କଥା ବିଚାରପତିମାନଙ୍କ ଶପଥପାଠରେ ନ ଥିଲା, ତେଣୁ କେବଳ ଏବଂ କେବଳ ସମ୍ବିଧାନର ନିର୍ଦ୍ଦେଶିତ ନୀତିଗୁଡ଼ିକର ଦର୍ଶନ ହିଁ ବିଚାରପତିମାନଙ୍କ ଧ୍ୟେୟ ହେବା ଉଚିତ—ରାଜନୈତିକ ଦର୍ଶନ ନୁହେଁ ।

କେନ୍ଦ୍ର ମନ୍ତ୍ରିମଣ୍ଡଳର ସେ ନିଷ୍ପତ୍ତି ପ୍ରକାଶ ପାଇବା ପରେ ପରେ ସୁପ୍ରିମ୍-କୋର୍ଟ ବାର ଆସୋସିଏସନର ଏକ ଜରୁରୀ ବୈଠକ ବସିଥିଲା । ତାର ସଭାପତି ଡଃ ଏଲ୍, ଏମ୍. ସାଙ୍ଘଭି ସେ ବୈଠକରେ ଅଧ୍ୟକ୍ଷତା କରିଥିଲେ । ସେଠାରେ ଦୀର୍ଘ ୪୫ ମିନିଟ ଧରି ମାନ୍ୟବର ପ୍ରଧାନ ବିଚାରପତି ନିଯୁକ୍ତି ନେଇ ଆଲୋଚନା ଚାଲିଥିଲା ଓ ଯେପରି ଭାବରେ ତିନି ଜଣ ବୟୋଜ୍ୟେଷ୍ଠ ବିଚାରପତିଙ୍କୁ ଅବଜ୍ଞା କରାଯାଇ ମାନ୍ୟବର ରାୟଙ୍କୁ ପ୍ରଧାନ ବିଚାରପତି ନିଯୁକ୍ତି ଦିଆଯାଇଥିଲା, ତାହା ସଂପୂର୍ଣ୍ଣ ରାଜନୈତିକ ଦୃଷ୍ଟିକୋଣରୁ କରାଯାଇଥିଲା ବୋଲି ପ୍ରସ୍ତାବ ଗୃହୀତ ହୋଇଥିଲା । ସେ ପ୍ରସ୍ତାବ ଆଗତ କରିଥିଲେ ଭାରତର ଜଣେ ବିଶିଷ୍ଟ ଆଇନଜ୍ଞ, ବମ୍ବେ ହାଇକୋର୍ଟର ଜଣେ ପୂର୍ବତନ ପ୍ରଧାନ ବିଚାରପତି ତଥା ଆଇନ କମିଶନର ଅନ୍ୟତମ ସଭ୍ୟ ଶ୍ରୀ ଏମ୍ ସି. ଚଗଲା ।

ଭାରତର ପାର୍ଲ୍ୟାମେଣ୍ଟରେ ମଧ୍ୟ ଯେଉଁ ତିନି ଜଣ ମାନ୍ୟବର ବିଚାରପତି ଇସ୍ତଫା ଦେଇଥିଲେ ତା ଉପରେ ବିଚାର ଆଲୋଚନା ପାଇଁ ଲୋକସଭାରେ ଏକ ପ୍ରସ୍ତାବ ଆଗତ କରିଥିଲେ ଶ୍ରୀ ମଧୁ ଲିମାୟାଙ୍କ ସମେତ ଅନ୍ୟ ବିରୋଧୀ ଦଳର ସଭ୍ୟମାନେ । ସରକାରଙ୍କ ସେ ନିଷ୍ପତ୍ତିର ଦୁଇ ଦିନ ପରେ ଭାରତର ଏକ ରାଜନୈତିକ ଦଳ ଜନସଂଘ 'ବିଚାର ବିଭାଗ ସ୍ୱାଧୀନତା ଦିବସ' ମଇ ତିନି ତାରିଖ ୧୯୭୩ ମସିହାରେ ଦେଶର ସର୍ବତ୍ର ପାଳନ କରିବା ଲାଗି ଆହ୍ୱାନ ଦେଇଥିଲେ ।

ଗୋଟିଏ ଗଣତାନ୍ତ୍ରିକ ରାଷ୍ଟ୍ରର ଏକମାତ୍ର ସ୍ୱାଧୀନ ନିରପେକ୍ଷ ଅନୁଷ୍ଠାନ-ବିଚାର ବିଭାଗ ପାଇଁ ସରକାରଙ୍କ ଅନ୍ୟାୟ ନିଷ୍ପତ୍ତି ଏବଂ କ୍ଷମତାସୀନ ଦଳର ଅଯଥା ହସ୍ତକ୍ଷେପ ବୋଲି ଅଭିଯୋଗ କରି ସମଗ୍ର ଭାରତର ବଡ଼ ବଡ଼ ସହରମାନଙ୍କରେ

ଓକିଲମାନେ କୋର୍ଟ କଚେରୀ ବର୍ଜନ କରିଥିଲେ । ଅପ୍ରେଲ ୨୭ ତାରିଖ ଦିନ ଗୁଜୁରାଟ, ବମ୍ବେ, ଦିଲ୍ଲୀ ଓ ଅନ୍ୟାନ୍ୟ ଅନେକ ବଡ଼ ବଡ଼ ସହରରେ ଓକିଲମାନେ କୋର୍ଟକୁ ନ ଯିବା ଫଳରେ କୋର୍ଟ କଚେରୀ ବନ୍ଦ ରହିଥିଲା କହିଲେ ଚଳେ । ବିଚାର ବିଭାଗ ଇତିହାସରେ ତାହା ଏକ କଳଙ୍କିତ ଦିବସ ବୋଲି ଆକ୍ଷେପ କରି ଭାରତର ଜଣେ ସ୍ୱନାମଧନ୍ୟ ଓକିଲ ଶ୍ରୀ ପାଲ୍‌କିଓ୍ୱାଲା ବମ୍ବେ ହାଇକୋର୍ଟ ବାର୍ ଆସୋସିଏସନ୍‌ରେ ଏକ ପ୍ରସ୍ତାବ ଆଗତ କରିଥିଲେ । "ବମ୍ବେ ଆଡ଼ଭୋକେଟ-ମାନଙ୍କର କୋର୍ଟ ବର୍ଜନ ବମ୍ବେ ହାଇକୋର୍ଟର ୧୧୦ ବର୍ଷର ଇତିହାସରେ ସର୍ବପ୍ରଥମ" ଥିଲା । † ସେଦିନ ବମ୍ବେର ତଳ କୋର୍ଟ କଚେରୀଗୁଡ଼ିକ ମଧ୍ୟ ବିନା ଓକିଲରେ ଚାଲିଥିଲା ।

କେନ୍ଦ୍ର ସରକାରଙ୍କ ସେ ନିଷ୍ପତ୍ତି ଫଳରେ ବିଚାର ବିଭାଗର ତଥା ଏକ ଗଣତନ୍ତ୍ର ରାଷ୍ଟ୍ରରେ ଉଚ୍ଚତମ ନ୍ୟାୟାଳୟର ସ୍ୱାଧୀନତାକୁ କ୍ଷୁଣ୍ଣ କରାଯାଇଛି ବୋଲି ଦର୍ଶାଇ ଭାରତର ପୂର୍ବତନ ଆଟର୍ଣ୍ଣି ଜେନେରାଲ ଶ୍ରୀ ଶୀତଲବାଦ ବମ୍ବେ ହାଇକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଶ୍ରୀ ଚଗଲାଙ୍କ ସମେତ ଛଅ ଜଣ ବରିଷ୍ଠ ଆଇନଜ୍ଞ ସେମାନଙ୍କ ପ୍ରତିବାଦ କେନ୍ଦ୍ର ସରକାରଙ୍କୁ ଜଣାଇ ଦେଇଥିଲେ ।

ସରକାରଙ୍କ ସେ ବିବାଦୀୟ ନିଷ୍ପତ୍ତି ପାଇଁ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ହିଁ ଦାୟୀ କରାଯାଇଥିଲା ।

## ସିମଳା ଚୁକ୍ତିନାମା ଓ ତାପରେ :—

ସୁପ୍ରିମ୍‌କୋର୍ଟ ପ୍ରଧାନ ବିଚାରପତି ନିଯୁକ୍ତି ମାମଲା ନେଇ ଶ୍ରୀମତୀ ଗାନ୍ଧୀ ଯେଉଁ ସମାଲୋଚନାର ଶରବ୍ୟ ହୋଇଥିଲେ, ସେସବୁର ପରିସମାପ୍ତି ହୋଇଥିଲା ପାକିସ୍ଥାନ ସହିତ ଅଗଷ୍ଟ ମାସ ଚୁକ୍ତିନାମା ପରେ ପରେ । ବାସ୍ତବିକ୍ ସ୍ୱାଧୀନତା ପରଠାରୁ ଯେଉଁ ତିକ୍ତତା ନେଇ ଦୁଇଟି ଦେଶ ବିଚ୍ଛିନ୍ନ ହୋଇ ରହିଥିଲେ ସେମାନଙ୍କର ପରସ୍ପରର ସହଯୋଗ ତଥା ବନ୍ଧୁତ୍ୱପୂର୍ଣ୍ଣ ପରିବେଶ ସୃଷ୍ଟି ଲାଗି ପ୍ରାଥମିକ ପଦକ୍ଷେପଗୁଡ଼ିକ ସିମଳା ସମ୍ମେଳନରେ ନିଆଯାଇଥିଲେ ମଧ୍ୟ ଅଗଷ୍ଟ ମାସର ଦିଲ୍ଲୀ ଆଲୋଚନା ସେ ଦିଗରେ ଯେ ଏକ ମାଇଲ ଖୁଣ୍ଟ, ଏଥିରେ ସନ୍ଦେହର କୌଣସି ଅବକାଶ ନାହିଁ । ସେ ଦିଗରେ ଶ୍ରୀମତୀ ଗାନ୍ଧୀଙ୍କ ଉଦ୍ୟମ ସ୍ମରଣୀୟ ।

ଦୀର୍ଘ ପଚିଶ ବର୍ଷର ବାଦବିସମ୍ବାଦ, ମନୋମାଳିନ୍ୟ ପରେ ଦୁଇଟି ପଡ଼ୋଶୀ ରାଷ୍ଟ୍ର ଭାରତ ଓ ପାକିସ୍ଥାନ ମଧ୍ୟରେ ସୁସମ୍ପର୍କ ରକ୍ଷା ଦିଗରେ ୧୯୭୨ର ସିମଳା ଚୁକ୍ତିନାମା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏ ସମ୍ପର୍କ ଆରମ୍ଭ ହେବା ପୂର୍ବରୁ ଉଭୟ ଦେଶ ମଧ୍ୟରେ ଦୁଇଟି ରକ୍ତାକ୍ତ ବିପ୍ଳବ ସଂଘଟିତ ହୋଇଯାଇଥିଲା—ଗୋଟିଏ

---

† ପ୍ରଜାତନ୍ତ୍ର—ଅପ୍ରେଲ ୨୮, ୧୯୭୩ ।

୧୯୬୭ ମସିହାରେ ଏବଂ ଅନ୍ୟଟି ୧୯୭୧ ମସିହାରେ । ଦୀର୍ଘଦିନର ବ୍ୟବଧାନ ପରେ ଦୁଇଟି ଦେଶର ଉଚ୍ଚତମ କର୍ତ୍ତାମାନେ ପରସ୍ପର ସିଧାସଳଖ ସମ୍ପର୍କ ସ୍ଥାପନ କରିଥିଲେ, ହାତ ମିଳାଇଥିଲେ, ଏକାଠି ଭୋଜନ କରିଥିଲେ ଏବଂ ସାମ୍ବାଦିକମାନଙ୍କୁ ସାକ୍ଷାତ୍ ଦେଇଥିଲେ । ସେ ସମୟର ସୀମା ଥିଲା ୧୯୭୨ ମସିହା ଜୁନ୍ ୨୮ ତାରିଖଠାରୁ ଜୁଲାଇ ୩ ତାରିଖ ପର୍ଯ୍ୟନ୍ତ । ସ୍ଥାନ ଥିଲା ସିମଲା—ଭାରତର ଏକ ଗ୍ରୀଷ୍ମନିବାସ ।

ପାକିସ୍ଥାନର ପ୍ରଧାନ ରାଷ୍ଟ୍ରନେତା ଭାରତ ସହିତ ପ୍ରତ୍ୟେକ ଦିଗରୁ ସୁସମ୍ପର୍କ ସ୍ଥାପନ କରିବାପାଇଁ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ସହିତ ଆଲୋଚନା କରିବା ଉଦ୍ଦେଶ୍ୟରେ ଜୁନ୍ ୨୮ ତାରିଖରେ ସିମଲାଠାରେ ପହଞ୍ଚିଥିଲେ ଏବଂ ଶାନ୍ତିକାମୀ ଭାରତବାସୀଙ୍କ ପକ୍ଷରୁ ତାହାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେ ସିମଲାରେ ଅନୁଷ୍ଠିତ ଶୀର୍ଷ ସମ୍ମିଳନୀ ପାଇଁ ଦୀର୍ଘ ପାଞ୍ଚ ଦିନ ଅବସ୍ଥାନ କରିଥିଲେ ଓ ସମୁଦାୟ ଦୀର୍ଘ ପାଞ୍ଚ ଘଣ୍ଟା ଶ୍ରୀମତୀ ଗାନ୍ଧୀଙ୍କ ସହିତ ସମାଲୋଚନା ମଧ୍ୟ କରିଥିଲେ ବିଭିନ୍ନ ଦୃଷ୍ଟିକୋଣରୁ । କିନ୍ତୁ ପ୍ରାୟ ଶେଷ ସମୟ ପର୍ଯ୍ୟନ୍ତ ଉଭୟ ଦେଶର ନେତୃବୃନ୍ଦ କୌଣସି ଏକ ଶେଷ ସିଦ୍ଧାନ୍ତରେ ଏକମତ ହୋଇପାରି ନ ଥିଲେ । ନିଜ ଦେଶକୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ପାକିସ୍ଥାନର ମୁଖ୍ୟ ଜୁଲଫିକର ଅଲ୍ଲି ଭୁଟ୍ଟୋଙ୍କ ସମ୍ମାନାର୍ଥେ ଶ୍ରୀମତୀ ଗାନ୍ଧୀଙ୍କ ଦ୍ୱାରା ଆୟୋଜିତ ନୈଶ ଭୋଜିସଭାରେ ଯୋଗ ଦେବାର ମାତ୍ର କେତେ ଘଣ୍ଟା ପୂର୍ବରୁ ଶ୍ରୀ ଭୁଟ୍ଟୋ ସେ ବିଷୟ ମଧ୍ୟ ସ୍ୱୀକାର କରିଥିଲେ ସାମ୍ବାଦିକମାନଙ୍କ ସମ୍ମୁଖରେ । ତଥାପି ମଧ୍ୟ ଯଦି ସେତିକରେ ସେ ସମ୍ମେଳନ ଶେଷ ହୋଇଥାନ୍ତା, ତେବେ ବି ସେ ସମ୍ମେଳନ ଥିଲା ଗୁରୁତ୍ୱପୂର୍ଣ୍ଣ ।

ତେବେ ପରିସ୍ଥିତି ଆହୁରି ଅନେକ ଦୂର ଆଗେଇ ଯାଇଥିଲା ।

ଶେଷ ମୁହୂର୍ତ୍ତରେ ଶ୍ରୀ ଜୁଲଫିକର ଅଲ୍ଲି ଭୁଟ୍ଟୋ ଓ ଶ୍ରୀମତୀ ଗାନ୍ଧୀଙ୍କ ମଧ୍ୟରେ ତଥା ପାକିସ୍ଥାନ ଓ ଭାରତ ମଧ୍ୟରେ ଏକ ରାଜିନାମା ସ୍ୱାକ୍ଷରିତ ହୋଇଥିଲା । ତାହା ହୋଇଥିଲା ଜୁଲାଇ ଦୁଇ ତାରିଖ ମଧ୍ୟରାତ୍ରିର ଅଳ୍ପ ସମୟ ଅତିବାହିତ ହେବା ପରେ ପରେ ତିନି ତାରିଖ ଅଗ୍ରମାରମ୍ଭରେ ( ତିନି ତାରିଖ ଭୋର ଗୋଟାଏ ବେଳେ ) । ସେ ଚୁକ୍ତିନାମା ଥିଲା ଦଶ ଦଫା ସମ୍ବଳିତ ଏବଂ ତାର ଗୋଟାଏ ପାଖରେ ଦସ୍ତଖତ କରିଥିଲେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ—ସାଧାରଣତନ୍ତ୍ର ଭାରତ ( Republic of India )ର ପ୍ରଧାନମନ୍ତ୍ରୀ ଓ ଅନ୍ୟ ପଟରେ ନିଜର ସ୍ୱାକ୍ଷର ଦେଇଥିଲେ ଶ୍ରୀ ଜୁଲଫିକର ଅଲ୍ଲି ଭୁଟ୍ଟୋ—ଇସ୍‌ଲାମିକ ସାଧାରଣତନ୍ତ୍ର ପାକିସ୍ଥାନ ( Islamic Republic of Pakistan )ର ରାଷ୍ଟ୍ରପତି ।

ସିମଲା ଶୀର୍ଷ ସମ୍ମିଳନୀରେ ଯେଉଁସବୁ ଚୁକ୍ତିନାମା ଉଭୟ ଦେଶର କର୍ତ୍ତାମାନେ ମାନି ନେଇଥିଲେ, ତାହା ଥିଲା—ଉଭୟ ଦେଶ ଜାତିସଂଘର ଆଇନ

କାନୁନ୍ ଅନୁଯାୟୀ ପରସ୍ପର ସମ୍ପର୍କ ସ୍ଥାପନ କରିବେ ଏବଂ ଉଭୟ ଦେଶ ମଧ୍ୟରେ ଥିବା ମତଭେଦଗୁଡ଼ିକୁ ଆଲୋଚନା ଦ୍ୱାରା ଶାନ୍ତିପୂର୍ଣ୍ଣ ଉପାୟରେ ସମାଧାନ କରିବେ । କୌଣସି ଦେଶ ଏକଚାଟିଆ ଭାବେ କୌଣସି ପରିସ୍ଥିତିର ପରିବର୍ତ୍ତନ କରିବ ନାହିଁ । ଗୋଟିଏ ଦେଶ ଅନ୍ୟ ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନ କରିବା ସଙ୍ଗେ ସଙ୍ଗେ ସ୍ଥାୟୀ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଲାଗି ଚେଷ୍ଟା କରିବ ଏବଂ ଅନ୍ୟର ସାର୍ବଭୌମତ୍ୱ ପ୍ରତି ଯଥାଯଥ ସମ୍ମାନ ପ୍ରଦର୍ଶନ କରିବ । ଦୀର୍ଘ ପଚିଶ ବର୍ଷର ମନୋମାଳିନ୍ୟଗୁଡ଼ିକୁ ଶାନ୍ତିପୂର୍ଣ୍ଣ ଉପାୟରେ ଦୂରୀକରଣ କରାଯିବ । ଗୋଟିଏ ଦେଶର ଜାତୀୟ ଐକ୍ୟ, ରାଜନୈତିକ ସ୍ୱାଧୀନତା, ସାର୍ବଭୌମତ୍ୱ ତଥା ଭୌଗୋଳିକ ସୀମାରେଖା ପ୍ରତି ଅନ୍ୟ ଦେଶ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବ । ଜାତିସଂଘର ଆଇନ ଅନୁଯାୟୀ ଗୋଟିଏ ଦେଶ ଅନ୍ୟ ଦେଶର ରାଜନୈତିକ ସ୍ୱାଧୀନତା କିମ୍ବା ଆକ୍ରମଣର ଧମକ ଦେବ ନାହିଁ । ଗୋଟିଏ ଦେଶ ଅନ୍ୟର ଅପପ୍ରଚାରରୁ କ୍ଷାନ୍ତ ରହିବା ସଙ୍ଗେ ସଙ୍ଗେ ଉଭୟ ଦେଶ ମଧ୍ୟରେ ଡାକ-ତାର ପ୍ରଚଳନ, ସାଂସ୍କୃତିକ ବିନିମୟ ତଥା ଅନ୍ୟାନ୍ୟ ସମ୍ପର୍କ ପ୍ରତିଷ୍ଠା ପାଇଁ ଉଦ୍ୟମ କରିବେ । ୧୯୭୧ ମସିହା ଯୁଦ୍ଧରେ ଭାରତୀୟ ସେନାମାନେ ପାକିସ୍ଥାନର ଯେଉଁ ଅଞ୍ଚଳ ଦଖଲ କରି ନେଇଥିଲେ ସେଇ ପ୍ରାୟ ପାଞ୍ଚ ହଜାର ବର୍ଗମାଇଲ ପାକିସ୍ଥାନକୁ ଫେରାଇଦେବା ଲାଗି ମଧ୍ୟ ସେଥିରେ ଉଲ୍ଲେଖ ରହିଥିଲା । ତା ସଙ୍ଗେ ସଙ୍ଗେ ସେଥିରେ ଉଲ୍ଲେଖ ଥିଲା ଯେ ଭବିଷ୍ୟତରେ ଉଭୟ ଦେଶର ମୁଖ୍ୟମାନେ ସ୍ଥାୟୀ ଶାନ୍ତି ପାଇଁ ସମୟ ଓ ସୁବିଧା ଅନୁଯାୟୀ ଆଲୋଚନା କରିବେ । ଇତିମଧ୍ୟରେ ସେମାନଙ୍କ ପ୍ରତିନିଧିମାନେ ବିଭିନ୍ନ ସମୟରେ ଆଲୋଚନା କରିବେ ଯୁଦ୍ଧବନ୍ଦୀ ବିନିମୟ, କାଶ୍ମୀର ସମସ୍ୟାର ଆଶୁ ସମାଧାନ ତଥା ଉଭୟ ଦେଶର କୂଟନୈତିକ ବିନିମୟ ଇତ୍ୟାଦି ପ୍ରଶ୍ନ ନେଇ ଏବଂ ଆଲୋଚନା ମାଧ୍ୟମରେ ଉଭୟ ଦେଶରେ ସ୍ଥାୟୀ ଭାବେ ଶାନ୍ତି ପ୍ରତିଷ୍ଠାର ପଥ ଉନ୍ମୋଚନ କରିବେ ।

ବିଗତ ପଚିଶ ବର୍ଷର ଇତିହାସ ଦେଖିବାକୁ ଗଲେ ୧୯୪୭ ମସିହାରେ ଏକ ଅଖଣ୍ଡ ଭାରତ ଦୁଇଟି ଦେଶରେ ଓ ତିନୋଟି ଭୂଖଣ୍ଡରେ ପରିଣତ ହୋଇଥିଲା । ପୁନଶ୍ଚ ୧୯୭୧ ମସିହାରେ ସେଇ ତିନୋଟି ଭୂଖଣ୍ଡ ତିନୋଟି ସାଧାରଣ ସାର୍ବଭୌମ ରାଷ୍ଟ୍ରରେ ପରିଣତ ହୋଇଯାଇଥିଲା । ସେଦିନ ଲର୍ଡ଼ ମାଉଣ୍ଟବେଟନ୍‌ଙ୍କ ସନ୍ଦେହ ଦୀର୍ଘ ପଚିଶ ବର୍ଷ ପରେ ଏକ ସତ୍ୟତାରେ ପରିଣତ ହୋଇଯାଇଥିଲା ।

ଲର୍ଡ଼ ମାଉଣ୍ଟବେଟନ୍ ଭାରତ ବିଭାଜନ ପୂର୍ବରୁ ସେ ସମ୍ପର୍କରେ ମହମ୍ମଦ ଅଲ୍ଲି ଜିନ୍ନାଙ୍କୁ ବାରମ୍ବାର ସତର୍କ କରାଇ ଦେଇଥିଲେ । ଦୀର୍ଘ ଏକ ହଜାର ମାଇଲ ଦୂରରେ ରହିଥିବା ଦୁଇ ଭୂଖଣ୍ଡ ମଧ୍ୟରେ କୌଣସି ପ୍ରକାର ସଂଯୋଗକାରୀ

ସ୍ଥଳଭାଗ ନ ଥିଲା ଏବଂ ଦୁଇ ଭୂଖଣ୍ଡର ଜନସାଧାରଣଙ୍କ ମଧ୍ୟରେ କେବଳ ଧର୍ମଭିତ୍ତିକ ସାମଞ୍ଜସ୍ୟ ବ୍ୟତୀତ ଅନ୍ୟ କୌଣସିଥିରେ ସମାନତା ନ ଥିଲା । ପାକିସ୍ଥାନର ପିତା ଜିନ୍ନା ଭାରତର ଶେଷ ଇଂରେଜ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ମାଉଣ୍ଟବେଟନଙ୍କ ସହିତ ଦୃଢ଼ଭାବେ ଯୁକ୍ତି କରିଥିଲେ ଦେଶ ବିଭାଜନ ସମୟରେ— "We argued back and forth. Mr. Jinnah's main point being that I must make his Pakistan viable. He quoted the example of the partition of Poland as not having been made on the basis of counting of heads or taking in to account the will of the people".*

ଲର୍ଡ଼ ମାଉଣ୍ଟବେଟନଙ୍କ ସେତେବେଳର କାଗଜପତ୍ରରୁ ଏ ପ୍ରକାର ପ୍ରମାଣ ମିଳିଥାଏ । ସେତେବେଳେ ଧର୍ମକୁ ଭିତ୍ତି କରି ଏକ ଦେଶ ଗଠନ କରିବାକୁ ନେତୃତ୍ୱ ନେଇଥିବା ଓ ସଫଳ ମଧ୍ୟ ହୋଇଥିବା ଜିନ୍ନାଙ୍କୁ ଲର୍ଡ଼ ମାଉଣ୍ଟବେଟନ ନୂତନ ଭାବେ ଗଠିତ ହେବାକୁ ଯାଉଥିବା ଦୁଇ ଭୂଖଣ୍ଡ ମଧ୍ୟରେ ସହାବ ରକ୍ଷା କରାଯାଇପାରିବା ସମ୍ପର୍କରେ ଯେଉଁ ସନ୍ଦେହ ପ୍ରକାଶ କରିଥିଲେ ତାହା ଏକ ସତ୍ୟତାରେ ପରିଣତ ହୋଇ ଯାଇଥିଲା । ଇଂରେଜ ଶାସନର ଶେଷ ପର୍ଯ୍ୟାୟରେ ଜଣେ ସାକ୍ଷାତ୍କାରଙ୍କୁ ସେ ମନ୍ତବ୍ୟ କରିଥିଲେ—"I told Jinnah that his moth-eaten Pakistan will not last more than 25 years." † ଆଜି କେବଳ ତାଙ୍କ ସେଦିନର ସେଇ ସନ୍ଦେହ ସତ୍ୟତାରେ ପରିଣତ ହୋଇଛି ତା ନୁହେଁ, ପାକିସ୍ଥାନର ଉଭୟ ଭୂଖଣ୍ଡ ମଧ୍ୟରେ କାଣିଚାଏ ମଧ୍ୟ ସଦ୍ଭାବ ନାହିଁ ।

ତେବେ ଶ୍ରୀମତୀ ଇନ୍ଦିରାଙ୍କ ଉଦ୍ୟମରେ ୧୯୭୨ର ସିମଳା ଶୀର୍ଷ ସମ୍ମେଳନ ଭାରତ-ପାକିସ୍ଥାନ ମଧ୍ୟରେ ଦୀର୍ଘ ୨୫ ବର୍ଷର ଶତ୍ରୁତାକୁ ଦୂରେଇଦେଇ ଦେଶ-ବିଭାଜନ କାଳରୁ ଆଜିପର୍ଯ୍ୟନ୍ତ ଲାଗି ରହିଥିବା ମତଭେଦ ଦୂର କରିବାପାଇଁ ଦ୍ୱାର ଉନ୍ମୁକ୍ତ କରି ଦେଇଥିଲା । ଭାରତ, ବଙ୍ଗଳାଦେଶ ଓ ପାକିସ୍ଥାନ ମଧ୍ୟରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ପାଇଁ ତାହା ଥିଲା ପ୍ରଥମ ପଦକ୍ଷେପ ।

ସିମଳା ଚୁକ୍ତିନାମାର ପରିଣାମ ସ୍ୱରୂପ ଉଭୟ ଦେଶର ପ୍ରଧାନମନ୍ତ୍ରୀମାନଙ୍କ ମଧ୍ୟରେ ତାହାର ପ୍ରାପ୍ତ ଏକ ବର୍ଷ ପରେ ୧୯୭୩ ଅଗଷ୍ଟ ମାସରେ ଭାରତର ରାଜଧାନୀ ଦିଲ୍ଲୀରେ ଆଉ ଏକ ଚୁକ୍ତିନାମାରେ ଭାରତ ପକ୍ଷରୁ ଶ୍ରୀ ପି. ଏନ. ହକ୍ସାର ଓ

---

* Kuldip Nayar - A Prophecy Came Tru — Illustrated Weekly—Aug. 13, 1972.

† Ibid.

ପାକିସ୍ତାନ ପକ୍ଷରୁ ଶ୍ରୀ ଅଜିଜ ଅହମ୍ମଦ ସ୍ୱାକ୍ଷର କରିଥିଲେ । ତେବେ ୧୯୭୩ ମସିହା ଅଗଷ୍ଟ ୨୮ ତାରିଖରେ ଭାରତ ଓ ପାକିସ୍ଥାନ ମଧ୍ୟରେ ଯେଉଁ ରାଜିନାମା ସ୍ୱାକ୍ଷରିତ ହୋଇଥିଲା ସେଥିପାଇଁ ଅନୁଷ୍ଠିତ ହୋଇଯାଇଥିବା ବିଭିନ୍ନ ଆଲୋଚନାଗୁଡ଼ିକରେ ଯଦିଓ ବଙ୍ଗଳାଦେଶର ପ୍ରତିନିଧି ସକ୍ରିୟ ଅଂଶ ପ୍ରତ୍ୟକ୍ଷ ଭାବେ ଗ୍ରହଣ କରି ନ ଥିଲେ, ତଥାପି ପରୋକ୍ଷ ଭାବେ ସେ ଦେଶର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ଯଥାର୍ଥରେ ତିନି ଦେଶର ମୁଖ୍ୟଙ୍କୁ ସାଧୁବାଦ ଦିଆଯାଇପାରେ ।

ଏ ପ୍ରକାର ଏକ ରାଜିନାମା ହୁଏତ ପୂର୍ବରୁ ହୋଇପାରିଥାନ୍ତା ଏବଂ ତିନି ଦେଶ ମଧ୍ୟରେ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ସୃଷ୍ଟି ଲାଗି ତଥା ଶାନ୍ତିପ୍ରତିଷ୍ଠା ଦିଗରେ ଅନେକ କିଛି କାର୍ଯ୍ୟପନ୍ଥା ଗ୍ରହଣ କରାଯାଇ ପାରିଥାନ୍ତା; କିନ୍ତୁ ପାକିସ୍ଥାନର ଭୁଲ ବୁଝାମଣା ଥିଲା ସେଥିପାଇଁ ପୂର୍ଣ୍ଣତଃ ଦାୟୀ । ପାକିସ୍ଥାନ ଆଶଙ୍କା କରିଥିଲା ୧୯୭୧ ଯୁଦ୍ଧରେ ବନ୍ଦୀ ହୋଇଥିବା ପ୍ରାୟ ୯୩ ହଜାର ପାକିସ୍ଥାନୀଙ୍କୁ ଭାରତ ଅଧିକ କାଳ ଅଟକାଇ ରଖି ସେମାନଙ୍କ ପିଛା କୋଟି କୋଟି ଟଙ୍କା ଖର୍ଚ୍ଚ କରିପାରିବ ନାହିଁ, ବିଶେଷତଃ ଭାରତର ଅର୍ଥନୈତିକ ଅସ୍ୱଚ୍ଛଳତା ଦୃଷ୍ଟିରୁ । ଅନ୍ୟ ପକ୍ଷରେ ପାକିସ୍ଥାନୀ ଯୁଦ୍ଧବନ୍ଦୀଙ୍କୁ ଖଲାସ କରିଦେବା ଦିଗରେ ଭାରତରେ ଜନମତ ସୃଷ୍ଟି ହୋଇପାରେ ଏବଂ ଭାରତ ସରକାର ସେଥିରେ ବିବ୍ରତ ହୋଇ ସେ ଦିଗରେ କାର୍ଯ୍ୟପନ୍ଥା ଗ୍ରହଣ କରିପାରନ୍ତି । ପୁନଶ୍ଚ ଭାରତ-ବଙ୍ଗଳାଦେଶର ସୁସମ୍ପର୍କ ଅବ୍ୟାହତ ରହି ନ ପାରିବା ଆଶଙ୍କା ପାକିସ୍ଥାନର ଶାସନକର୍ତ୍ତାଙ୍କୁ ଜଳ ଜଳ ହୋଇ ଦେଖାଯାଇଥିଲା । କିନ୍ତୁ ସେ ଆଶଙ୍କା ସମ୍ପୂର୍ଣ୍ଣ ଭ୍ରମ ପ୍ରମାଣିତ ହୋଇ ଯାଇଥିଲା ।

ଇତିମଧ୍ୟରେ ଭାରତ-ସୋଭିଏତ ମଧ୍ୟରେ ହୋଇଯାଇଥିବା ଏକ ଦୀର୍ଘ-ମିଆଦୀ ଶାନ୍ତିଚୁକ୍ତି ପରି ଭାରତ-ବଙ୍ଗଳାଦେଶ ମଧ୍ୟରେ ମଧ୍ୟ ଠିକ୍ ସେହିପରି ଏକ ଦୀର୍ଘମିଆଦୀ ୨୫ ବର୍ଷ ସ୍ଥାୟୀ ଶାନ୍ତିଚୁକ୍ତି ସ୍ୱାକ୍ଷରିତ ହୋଇଯାଇଥିଲା ୧୯୭୩ ମସିହା ଅପ୍ରେଲ ୧୭ ତାରିଖରେ । ସେହି ଚୁକ୍ତିନାମାରେ ବଙ୍ଗଳାଦେଶ ପକ୍ଷରୁ ସୋନାର ବଙ୍ଗଳାର ଜନ୍ମଦାତା ତଥା ପ୍ରଧାନମନ୍ତ୍ରୀ ଶେଖ ମୁଜିବୁର ରହମାନ ଓ ଭାରତ ପକ୍ଷରୁ ଭାରତର ପ୍ରଧାନମନ୍ତ୍ରୀ ପ୍ରିୟଦର୍ଶିନୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସ୍ୱାକ୍ଷର କରିଥିଲେ ।

ଭାରତ ଓ ପାକିସ୍ଥାନ ମଧ୍ୟରେ—ଦୁଇଟି ସ୍ୱାଧୀନ ସାର୍ବଭୌମ ସାଧାରଣତନ୍ତ୍ର ରାଷ୍ଟ୍ରର ସ୍ୱାଭାବିକ ସମ୍ପର୍କ ପ୍ରତିଷ୍ଠା ଦିଗରେ ପ୍ରଥମ ପାହାଚ ଥିଲା ୧୯୭୨ ମସିହା ଜୁଲାଇ ମାସ ପ୍ରଥମ ସପ୍ତାହର ସିମଲା ରାଜିନାମା—ଶ୍ରୀମତୀ ଗାନ୍ଧୀ ଓ ଶ୍ରୀଯୁକ୍ତ ଭୁଟ୍ଟୋଙ୍କ ସ୍ୱାକ୍ଷରରେ । ତାର ଦ୍ୱିତୀୟ ପାହାଚ ସ୍ୱରୂପ ଶେଖ ମୁଜିବୁର ରହେମାନ ଓ ଶ୍ରୀମତୀ ଗାନ୍ଧୀଙ୍କ ୧୯୭୩ ମସିହା ଅପ୍ରେଲ ୧୭ ତାରିଖର ମିଳିତ ଇସ୍ତାହାରକୁ ଗ୍ରହଣ କରାଯାଇପାରେ । ପ୍ରଥମ ଦୁଇଟିର ପରିଣାମ ସ୍ୱରୂପ ତୃତୀୟ ଓ ସର୍ବଶେଷ ଥିଲା ଭାରତ ଓ ପାକିସ୍ଥାନ ମଧ୍ୟରେ ଦୀର୍ଘ ଆଲୋଚନା ପରେ ଫଳପ୍ରସୂ ହୋଇଥିବା

ଚୁକ୍ତିନାମା, ଯେଉଁଥିରେ କି ଭାରତ ପକ୍ଷରୁ ଶ୍ରୀ ପି. ଏନ୍. ହକ୍‌ସାର ଓ ପାକିସ୍ଥାନ ପକ୍ଷରୁ ଶ୍ରୀ ଅଜିଜ୍ ଅହମ୍ମଦ ସ୍ୱାକ୍ଷର କରିଥିଲେ ୧୯୭୩ ମସିହା ଅଗଷ୍ଟ ୨୮ ତାରିଖ ସନ୍ଧ୍ୟାରେ ।

ସେହିପରି ଏକ ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ସେଥିପାଇଁ ଦୁଇ ଦଫାରେ ଦୀର୍ଘ ୧୯ ଦିନ ଆଲୋଚନା ହୋଇଯାଇଥିଲା ଉଭୟ ଦେଶର ପ୍ରତିନିଧିମାନଙ୍କ ମଧ୍ୟରେ । ପ୍ରଥମେ ୧୯୭୩ ମସିହା ଜୁଲାଇ ୨୪ ତାରିଖଠାରୁ ଜୁଲାଇ ୩୧ ତାରିଖ ପର୍ଯ୍ୟନ୍ତ ଆଠ ଦିନ ଧରି ଏକ ଭାରତୀୟ ପ୍ରତିନିଧି ଦଳ ପାକିସ୍ଥାନର ଏକ ପ୍ରତିନିଧି ଦଳଙ୍କ ସହିତ ଆଲୋଚନା କରିଥିଲେ ପାକିସ୍ଥାନର ରାଜଧାନୀ ରାଓଲପିଣ୍ଡିଠାରେ । ଭାରତୀୟ ଦଳଙ୍କର ନେତୃତ୍ୱ ନେଇଥିଲେ ଶ୍ରୀ ପି. ଏନ. ହକ୍‌ସାର ଓ ପାକିସ୍ଥାନର ପ୍ରତିନିଧିମାନଙ୍କ ନେତୃତ୍ୱ ନେଇଥିଲେ ଶ୍ରୀ ଅଜିଜ୍ ଅହମ୍ମଦ । ସେଠାରେ ଦୀର୍ଘ ଆଠ ଦିନ ଧରି ଉଭୟ ଦଳଙ୍କ ମଧ୍ୟରେ ବିଭିନ୍ନ ଦିଗରୁ ଆଲୋଚନା ହୋଇଥିଲେ ମଧ୍ୟ ସେମାନେ କୌଣସି ଏକ ସିଦ୍ଧାନ୍ତରେ ଉପନୀତ ହୋଇପାରି ନ ଥିଲେ । ତେଣୁ ବାଧ୍ୟ ହୋଇ ସେ ଆଲୋଚନା ସେତିକିରେ ବନ୍ଦ ରହିଥିଲା ଓ ପୁନର୍ବାର ତାହାର ୨ୟ ପର୍ଯ୍ୟାୟ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା ଭାରତର ରାଜଧାନୀ ଦିଲ୍ଲୀ ନଗରୀରେ । ସେହି ଉଭୟ ଦଳଙ୍କ ମଧ୍ୟରେ ୨ୟ ପର୍ଯ୍ୟାୟ ଆଲୋଚନା ଆରମ୍ଭ ହୋଇଥିଲା ଅଗଷ୍ଟ ୧୮ର ତାରିଖରେ । ତାହା ଦୀର୍ଘ ୧୧ ଦିନ ଧରି ଚାଲିଥିଲା ଅଗଷ୍ଟ ୨୮ ତାରିଖ ପର୍ଯ୍ୟନ୍ତ । ଦୁଇ ଦଫାରେ ସର୍ବମୋଟ ୧୯ ଦିନର ଆଲୋଚନା ପରେ ଉଭୟ ଦେଶର ପ୍ରତିନିଧିଗଣ ଦଶଦଫା ସମ୍ବଳିତ ଏକ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ଯଦିଓ ସେ ଆଲୋଚନା ଭାରତ ଓ ପାକିସ୍ଥାନର ପ୍ରତିନିଧିମାନଙ୍କ ମଧ୍ୟରେ ହିଁ ସଂଘଟିତ ହୋଇଥିଲା, ତଥାପି ପରୋକ୍ଷ ଭାବରେ ବଙ୍ଗଳାଦେଶ ଥିଲା ସେଥିରେ ପରିସ୍ଥିତ ଅଂଶଗ୍ରହଣକାରୀ ।

ଉଭୟ ଦେଶର ପ୍ରତିନିଧିମାନେ ଯେଉଁ ମିଳିତ ଚୁକ୍ତିନାମା ପ୍ରକାଶ କରିଥିଲେ ସେଥିରେ ଥିଲା ଆନୁଷଙ୍ଗିକ କାର୍ଯ୍ୟପନ୍ଥା ଗ୍ରହଣ କରାଯାଇବା ପରେ ପରେ ପାକିସ୍ଥାନୀ ଯୁଦ୍ଧବନ୍ଦୀଙ୍କ ଅପସାରଣ କାର୍ଯ୍ୟ ଶୀଘ୍ର ଆରମ୍ଭ କରାଯିବା ଲାଗି ନିର୍ଦ୍ଦିଷ୍ଟ କାର୍ଯ୍ୟନିର୍ଘଣ୍ଟ ଉଭୟ ସରକାର ନିରୂପଣ କରିବେ । ବଙ୍ଗଳାଦେଶରେ ଥିବା ପାକିସ୍ଥାନୀ ଓ ପାକିସ୍ଥାନରେ ଥିବା ବଙ୍ଗାଳୀମାନେ ଏକ ସମୟରେ ସ୍ଥାନାନ୍ତରିତ ହେବେ । ଯୁଦ୍ଧବନ୍ଦୀମାନଙ୍କ ମଧ୍ୟରେ ଦୋଷୀ ସାବ୍ୟସ୍ତ ହୋଇଥିବା ଅପରାଧୀମାନଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଅପସାରିତ ହେବେ । ବଙ୍ଗଳାଦେଶର ସାର୍ବଭୌମତ୍ୱକୁ ସ୍ୱୀକାର କରି ତାର ପ୍ରଧାନମନ୍ତ୍ରୀ ଓ ପାକିସ୍ଥାନର ରାଷ୍ଟ୍ରମୁଖ୍ୟଙ୍କ ମଧ୍ୟରେ ଏକ ଆଲୋଚନା ହେବ । ବଙ୍ଗଳାଦେଶରେ ଥିବା ଅନେକ ମୁସଲମାନ ପାକିସ୍ଥାନ ପ୍ରତି ଆନୁଗତ୍ୟ ପ୍ରକାଶ କରିଥିବା ଯୋଗୁଁ ସେମାନଙ୍କ ସ୍ଥାନାନ୍ତରିତ ପ୍ରଶ୍ନ ହେବ

ସେମାନଙ୍କ ମଧ୍ୟରେ ଆଲୋଚନାର ପ୍ରଧାନ ବିଷୟବସ୍ତୁ । ବଙ୍ଗଳାଦେଶ ପୂର୍ବରୁ ସ୍ଥିର କରିଥିବା ୧୯୭ ଜଣ ଯୁଦ୍ଧ ଅପରାଧୀଙ୍କ ବିଚାର ଯୁଦ୍ଧବନ୍ଦୀଙ୍କ ଅପସାରଣ ସମ୍ପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ କରିବ ନାହିଁ ଏବଂ ସେମାନେ ଭାରତରେ ହିଁ ରହିଥିବେ । ସମସ୍ତ ଯୁଦ୍ଧବନ୍ଦୀ ଅପସାରିତ ହେବା ପରେ ତିନି ଦେଶର ପ୍ରତିନିଧି ଏକାଠି ମିଳିତ ହୋଇ ୧୯୭ ଜଣ ଯୁଦ୍ଧ ଅପରାଧୀଙ୍କ ବିଷୟ ବିଚାର କରିବେ । ବଙ୍ଗଳାଦେଶର ପ୍ରତିନିଧି ଏକ ସ୍ୱାଧୀନ ସାର୍ବଭୌମ ସାଧାରଣତନ୍ତ୍ର ରାଷ୍ଟ୍ରର ପ୍ରତିନିଧି ହିସାବରେ ସେଥିରେ ଯୋଗ ଦେବେ । ଭାରତରେ ଥିବା ଯୁଦ୍ଧବନ୍ଦୀମାନଙ୍କୁ କିପରି ଭାବରେ ଅପସାରିତ କରାଯିବ, ତାହା ନିର୍ଦ୍ଧାରଣ କରିବେ ଭାରତ ସରକାର । ସେଥିପାଇଁ ପାକିସ୍ଥାନ ଓ ବଙ୍ଗଳାଦେଶଙ୍କ ପରାମର୍ଶ ମଧ୍ୟ ଭାରତ ସରକାର ନେବେ । ପୃଥିବୀରେ ମାନବିକ ଦୃଷ୍ଟିକୋଣରୁ ସାହାଯ୍ୟକାରୀ ସଂସ୍ଥାଗୁଡ଼ିକଠାରୁ ସେଥିପାଇଁ ସାହାଯ୍ୟ ତଥା ସହଯୋଗ ଗ୍ରହଣ କରାଯାଇପାରେ । ସେହି କାରଣରୁ ପୃଥିବୀରେ ଯେ-କୌଣସି ସାହାଯ୍ୟକାରୀ ସଂସ୍ଥା ତଥା ସେହି କାର୍ଯ୍ୟ ପାଇଁ ସ୍ୱିଜରଲଣ୍ଡର ଉପସ୍ଥିତ ଆରକ୍ଷୀ ପ୍ରତିନିଧିମାନଙ୍କୁ ତିନି ସରକାର ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ କରିବା ଆବଶ୍ୟକ ।

ତାହା ଥିଲା ଅତୀତରେ ସିମଳା ଚୁକ୍ତିର ଏକ ଚୁକ୍ତିନାମା ।

ସେଇ ଚୁକ୍ତିନାମା ଅନୁସାରେ ଭାରତରୁ ଯୁଦ୍ଧବନ୍ଦୀମାନଙ୍କୁ ପଞ୍ଜାବର ଓ୍ୱାଘା, ହୁସାଇନିଓ୍ୱାଲା ଓ ଫଜଲକା ଘାଟିମାନଙ୍କରୁ ତଥା ରାଜସ୍ଥାନର ଗାଦ୍ରାରୋଡ଼୍-ଠାରୁ ଯାତ୍ରୀକର ଟ୍ରେନ୍ ଯୋଗେ ସ୍ୱଦେଶକୁ ପଠାଇବାଲାଗି ଭାରତ ସରକାର ପ୍ରଥମେ ପରିକଳ୍ପନା କରିଥିଲେ । କିନ୍ତୁ ସେ କାର୍ଯ୍ୟକୁ ତ୍ୱରାନ୍ୱିତ କରାଇବାପାଇଁ କେତୋଟି କାମ୍ବୋଜେଟ୍ ବିମାନ ବ୍ୟବହୃତ ହେବାପାଇଁ ପରେ ସ୍ଥିର କରାଯାଇ ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ କରାଯାଇଥିଲା ।

୧୯୭୪ ମସିହା ମାର୍ଚ୍ଚ ୭ ତାରିଖ ସୁଦ୍ଧା ଭାରତରୁ ୬୪,୪୧୭ ଜଣ ଯୁଦ୍ଧବନ୍ଦୀ ସେଇ ଚୁକ୍ତିନାମା ଅନୁସାରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିସାରିଥିଲେ ଏବଂ ନିର୍ଦ୍ଧାରିତ ସମୟର ବହୁପୂର୍ବରୁ ସମସ୍ତ ପାକିସ୍ତାନୀ ଯୁଦ୍ଧବନ୍ଦୀ ସ୍ୱଦେଶକୁ ଫେରି ଯାଇଥିଲେ ।

ସେହିଭଳି ଏକ ବିରାଟ ସମସ୍ୟାର ସମାଧାନ ପାଇଁ ଭାରତର ପ୍ରଧାନମନ୍ତ୍ରୀ, ଶାନ୍ତିକାମୀ ଜନତାର ନେତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ଅକ୍ଲାନ୍ତ ଉଦ୍ୟମ ଯେ ସମ୍ପୂର୍ଣ୍ଣ ସଫଳ ହୋଇଥିଲା ସେଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ ।



॥ ଏକୋଇଶି ॥

# ଅନ୍ଧକାରର କାବ୍ୟ



ଅନ୍ଧକାରର ମଧ୍ୟ ଚମତ୍କାର କାବ୍ୟ ଥାଏ । ସେ କାବ୍ୟର କାବ୍ୟ-ନାୟିକା ମଧ୍ୟ ଅନୁପମ ସୌନ୍ଦର୍ଯ୍ୟମୟୀ ହୋଇପାରେ; ଏକାଧାରରେ ସେତିକ କାନ୍ତ, କମନୀୟ ଓ ମିଷ୍ଟଭାଷୀ ହୋଇପାରେ, ହୋଇପାରେ ମଧ୍ୟ ସେତିକ ରୁକ୍ଷ ଓ କଦାକାର ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଜୀବନ କାଳ ମଧ୍ୟରେ ଦିଲ୍ଲୀ ଦରବାରରେ ମିଳିତ ଜନତାଦଳ ଯେଉଁ କେତୋଟି ଦିନ ଶାସନାଧିକାର ଲାଭ କରିଥିଲା ସେଇ କେତୋଟି ଦିନର ଇତିହାସ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ସୃଷ୍ଟି କରିଥିଲା ଅନ୍ଧକାରର କାବ୍ୟ । ସେହି କାବ୍ୟ ନାୟିକାର ଅନୁପମ, କମନୀୟ ରୂପ ଯେ ଯେଉଁଭଳି ଭାବରେ ଦେଖନ୍ତୁ ନା କାହିଁକି ବାହାର ପୃଥିବୀକୁ ତାହା ଅତି କଦର୍ଯ୍ୟ ଓ କଦାକାର ରୂପରେ ହିଁ ପ୍ରତିଭାତ ହୋଇଥିଲା ।

ଶ୍ରୀମତୀ ଗାନ୍ଧୀଙ୍କର ସେଇ ଚରମ ଦୁର୍ଦ୍ଦିନମୟ ଦିନଗୁଡ଼ିକର ଆବାହନୀ ମନ୍ତ୍ର ଶୁଣାଇଥିଲା ଦେଶରେ ପ୍ରବର୍ତ୍ତିତ ଜରୁରୀକାଳ ।

## ଜରୁରୀକାଳର ପୂର୍ବାବସ୍ଥା :—

କେବଳ ବ୍ୟକ୍ତିଗତ ବା ପାରିବାରିକ କ୍ଷେତ୍ରରେ ନୁହେଁ, ଭାରତକୁ ନେତୃତ୍ୱ ଦେବାବେଳେ ଅନେକ କ୍ଷେତ୍ରରେ ଶ୍ରୀମତୀ ଗାନ୍ଧୀ ଯଦିଓ ଅନେକଟା ଜିଦ୍‌ଖୋର କାର୍ଯ୍ୟ କରିଥିଲେ, ତଥାପି ସେ ଯେତେବେଳେ ହୃଦବୋଧ କରୁଥିଲେ ଯେ ଗଣତାନ୍ତ୍ରିକ ଭାରତର ବିଭିନ୍ନ ପ୍ରଦେଶ, ଭାଷା ଓ ଜାତିର ଲୋକଙ୍କ ସ୍ୱାର୍ଥରକ୍ଷା କରାଯିବା ଆବଶ୍ୟକ, ସେତେବେଳେ ସେ ନିଜର ଟାଳଟୁଲ ନୀତିରୁ ମଧ୍ୟ ପଛକୁ ହଟିଆସିବା ଲାଗି କୁଣ୍ଠାବୋଧ କରୁ ନ ଥିଲେ । ଏଠାରେ ଉଲ୍ଲେଖ କରାଯାଇ

ପାରେ ଯେ ଆବଶ୍ୟକ ସ୍ଥଳେ ଓ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ଦୃଷ୍ଟିରୁ ବିରୋଧୀ ଦଳର ନେତାମାନଙ୍କ ମତାମତ ପ୍ରତି ସେ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିଲେ । ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ଗୁଜୁରାଟ ପ୍ରଦେଶର ନିର୍ବାଚନକୁ କେନ୍ଦ୍ରକରି ଆରମ୍ଭ କରିଥିବା ଆମରଣ ଅନଶନରୁ ନିବର୍ତ୍ତାଇବା ଲାଗି ଶ୍ରୀମତୀ ଗାନ୍ଧୀଙ୍କ ଉଦ୍ୟମ ସେହି ଦୃଷ୍ଟିକୋଣରୁ ହିଁ ପ୍ରଶଂସନୀୟ ।

ପଣ୍ଡିତ ନେହେରୁଙ୍କ ଜଣେ ସହକର୍ମୀ ତଥା ଭାରତୀୟ ରାଜନୈତିକ ରଙ୍ଗମଞ୍ଚର ଜଣେ ପୁରୁଖା ଅଭିନେତା ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ୧୯୭୫ ମସିହା ଅପ୍ରେଲ ୭ ତାରିଖଠାରୁ ତାହାଙ୍କ ଦିଲ୍ଲୀସ୍ଥ ବାସଭବନଠାରେ ଆମରଣ ଅନଶନ ଆରମ୍ଭ କରିଥିଲେ, ଗୁଜୁରାଟ ପ୍ରଦେଶର ନିର୍ବାଚନ ମଇ ମାସ ଶେଷ ସୁଦ୍ଧା କରାଇବାଲାଗି ସରକାରଙ୍କୁ ପ୍ରସ୍ତାବିତ କରିବା ପାଇଁ । ତା ସହିତ ମଧ୍ୟ ଆଉ କେତେକ ଆନୁଷଙ୍ଗିକ ଦାବୀ ରହିଥିଲା । ସେ ମୁଖ୍ୟତଃ ଅଭିଯୋଗ କରିଥିଲେ ଯେ କେବଳ ରାଜନୈତିକ ଅଭିସନ୍ଧି ନେଇ ଗୁଜୁରାଟର ପ୍ରାଦେଶିକ ନିର୍ବାଚନ ସ୍ଥଗିତ ରଖାଯାଇଥିଲା । ଯେତେବେଳେ ସାଧାରଣ ପରିସ୍ଥିତି କଂଗ୍ରେସ (ଇ)ଦଳ ସପକ୍ଷରେ ଯିବବୋଲି ଅନୁମାନ କରାଯିବ, ସେଇ ସୁଯୋଗ ନେଇ ନିର୍ବାଚନ•ଅନୁଷ୍ଠିତ ହେବା କଂଗ୍ରେସ ସରକାରଙ୍କ ଇଚ୍ଛା ବୋଲି ସେ ଅଭିଯୋଗ ପ୍ରକାଶ କରିଥିଲେ ।

ପ୍ରାଥମିକ ଅବସ୍ଥାରେ ଶ୍ରୀମତୀ ଗାନ୍ଧୀ ସ୍ୱୀକାର କରିଥିଲେ ଯେ ଦେଶର ଯେ-କୌଣସି ଅଞ୍ଚଳର ହେଉନା କାହିଁକି ନିର୍ବାଚନ ସମସ୍ୟାକୁ ଏକ ନିରପେକ୍ଷ, ନିର୍ଭରଶୀଳ, ସ୍ୱାଧୀନ ଅନୁଷ୍ଠାନ ଭାରତର ନିର୍ବାଚନ କମିଶନଙ୍କ ହାତରେ ଛାଡ଼ିଦେବେ ଏବଂ ସେମାନଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ବୋଲି ବିବେଚନା କରାଯିବ । କିନ୍ତୁ ଏକ ଅଶୁଭ ଭବିଷ୍ୟତର ଆଶଙ୍କା କରି ଶ୍ରୀମତୀ ଗାନ୍ଧୀ ସେହି ନିର୍ବାଚନ ଜୁନ୍ ମାସର ପ୍ରଥମ ସପ୍ତାହରେ କରାଇବାଲାଗି ସ୍ଥିର କରିଥିଲେ । ଗୁଜୁରାଟର ପ୍ରାୟ ୧୨୦୦ ଗ୍ରାମ ସେହି ବର୍ଷ ମରୁଡ଼ିର କରାଳ କବଳରୁ ମୁକ୍ତି ପାଇ ନ ଥିଲା । ତେଣୁ ଭୋଟ ଉପରେ କେଉଁଠା ଗୁରୁତ୍ୱ ସହୃଶ୍ୟ ସେହି ପରିସ୍ଥିତିରେ ନିର୍ବାଚନ ନ କରାଇ ବର୍ଷାଋତୁ ପରେ ତାହା କରାଇବାକୁ ମନସ୍ଥ କରିଥିଲେ ଶ୍ରୀମତୀ ଗାନ୍ଧୀ । କିନ୍ତୁ ମୋରାରଜୀଙ୍କ ଅନଶନ ଫଳରେ ସେଭଳି ନିଷ୍ପତ୍ତିର ପରିବର୍ତ୍ତନଲାଗି ସେ ଏକ-ପ୍ରକାର ବାଧ୍ୟ ହୋଇଥିଲେ । ସେ ଆଶଙ୍କା କରୁଥିଲେ ଯେ ନିର୍ବାଚନ କମିଶନଙ୍କ ହାତରେ ସେହି ଚୂଡ଼ାନ୍ତ ତିଥି ନିର୍ଦ୍ଧାରଣ କରିବାଲାଗି ଛାଡ଼ି ଦେଇଥିଲେ ହୁଏତ ସେମାନଙ୍କ ନିଷ୍ପତ୍ତି ଭାରତବାସୀଙ୍କ ପାଇଁ ଏକ ମୂଲ୍ୟବାନ ଜୀବନକୁ ସଙ୍କଟ ଭିତରେ ଝୁଲାଇ ଦେଇଥାନ୍ତା !

ମୋରାରଜୀଙ୍କ ଅନ୍ୟାନ୍ୟ ଦାବୀଗୁଡ଼ିକର ମଧ୍ୟ ଯଥାଯଥ ସ୍ପଷ୍ଟୀକରଣ ଦେଇଥିଲେ ଶ୍ରୀମତୀ ଗାନ୍ଧୀ । ବୋଧହୁଏ ଶ୍ରୀଯୁକ୍ତ ଦେଶାଇ ସେଥିରେ ସନ୍ତୁଷ୍ଟ ହୋଇଥିଲେ ।

ବିରୋଧୀଦଳଗୁଡ଼ିକର ମତଗତ ସମ୍ପର୍କରେ ଶ୍ରୀମତୀ ଗାନ୍ଧୀ ଅନେକବାର ସ୍ପଷ୍ଟ ମତବ୍ୟକ୍ତ କରିଥିଲେ ଯେ ଅନ୍ୟାନ୍ୟ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କରେ ବିରୋଧୀ-ଦଳଗୁଡ଼ିକ ଶାସନ ଦାୟିତ୍ୱରେ ଥିବା ଦଳର ନେତାଙ୍କୁ କେବଳ ସମାଲୋଚନା ତ କରନ୍ତି ନାହିଁ; ବରଂ କାର୍ଯ୍ୟକାରୀ କରାଯାଇ ପାରିବା ଭଳି ଅନେକ ଜନ-ହିତକର ସୃଜନଶୀଳ ପରାମର୍ଶ ଦେଇଥାନ୍ତି । କିନ୍ତୁ ଆମ ଦେଶର ବିରୋଧୀଦଳମାନେ ସମସ୍ତ ସରକାରୀ କାର୍ଯ୍ୟକଳାପକୁ କେବଳ ବିରୋଧ କରିବାପାଇଁ ହିଁ ବିରୋଧ କରିଥାନ୍ତି । ଅନେକ ସମୟରେ ସେମାନଙ୍କର ମତାମତରେ ଆନ୍ତରିକତା ନ ଥାଏ ଏବଂ ଅଧିକାଂଶ ସମୟରେ ଦେଶପକ୍ଷରେ ତାହା ଘୋର କ୍ଷତିକାରକ ମନେ ହୋଇଥାଏ । ଆମ ଦେଶର ବିରୋଧୀଦଳ ନେତାମାନଙ୍କ ପ୍ରରୋଚନାରେ ଜନ-ସାଧାରଣଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିମାନଙ୍କୁ ଇସ୍ତଫା ଦେବାପାଇଁ ବାଧ୍ୟ କରାଯିବା ଏକ ପରିତାପର ବିଷୟ । ବେଳେବେଳେ ସ୍କୁଲ କଲେଜର ଛାତ୍ର ଛାତ୍ରୀମାନଙ୍କୁ ଅଧ୍ୟୟନ ବର୍ଜନ କରି ଆନ୍ଦୋଳନ କରିବାପାଇଁ ପ୍ରବର୍ତ୍ତିତ କରାଯାଇଥାଏ । ବାସ୍ତବରେ ତାହା ଦେଶପକ୍ଷେ ଅହିତକର । ସେତେବେଳେ ଦେଶରେ ଚାଲିଥିବା ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ-ବିପ୍ଳବକୁ ଦୃଷ୍ଟିରେ ରଖି ସେ ଆକ୍ଷେପ କରିଥିଲେ ।

**ସମ୍ପୂର୍ଣ୍ଣ ବିପ୍ଳବ ଓ ଜୟପ୍ରକାଶ :—**

ଦୀର୍ଘ ପ୍ରାୟ ବର୍ଷକ ତଳେ ଆରମ୍ଭ ହୋଇଥିଲା ବିହାର ପ୍ରଦେଶରୁ ଜୟପ୍ରକାଶ ନାରାୟଣଙ୍କ ଆନ୍ଦୋଳନ । ସେ ଆନ୍ଦୋଳନ କରିବାର କାରଣ ଜୟପ୍ରକାଶଜୀ ଦର୍ଶାଇଥିଲେ ଯେ, ଦେଶରୁ ଦୁର୍ନୀତି ଲୋପ କରିବା ସଙ୍ଗେ ସଙ୍ଗେ ଭାରତୀୟ ସମ୍ବିଧାନକୁ ରକ୍ଷା କରିବା ଓ ଭାରତର ଗଣତାନ୍ତ୍ରିକ ପରମ୍ପରାକୁ ରକ୍ଷା କରିବାପାଇଁ ସେ ଚେଷ୍ଟିତ । ତାଙ୍କ ମତରେ ସମାଜର ପ୍ରତ୍ୟେକ ସ୍ତରରେ ଦୁର୍ନୀତି ବ୍ୟାପକ ଭାବରେ ପୂରି ରହିଥିଲା ଏବଂ ସେଥିପାଇଁ ସେ କ୍ଷମତାସୀନ ଦଳକୁ ହିଁ ଦାୟୀ କରିଥିଲେ । ସମାଜରେ ଏକ ବୈପ୍ଳବିକ ପରିବର୍ତ୍ତନ ଲୋଡ଼ାହୁଏ ବୋଲି ମତ ପ୍ରକାଶ କରି ସେ କହିଥିଲେ ଯେ ତାଙ୍କ ପ୍ରେରଣାରେ ଗଢ଼ି ଉଠୁଥିବା ଆନ୍ଦୋଳନ କୌଣସି ବ୍ୟକ୍ତି-ବିଶେଷଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଯଦି ଶାସନ କ୍ଷେତ୍ରରେ ଥିବା ଦୁର୍ନୀତି ଦୂର କରାଯିବା ଲାଗି, ପ୍ରସ୍ତୁତ ପଥରେ ଏବଂ ତାଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା "ସମ୍ପୂର୍ଣ୍ଣ ବିପ୍ଳବ" ବିରୁଦ୍ଧରେ ସରକାର କୌଣସି ଅନ୍ତରାୟ ସୃଷ୍ଟି କରନ୍ତି, ତେବେ ସେମାନଙ୍କୁ ମଧ୍ୟ ବଳପ୍ରୟୋଗ କରି ଚଲାପଥରୁ ଅନ୍ତର କରାଯିବ । *

---

* ବେଲଗ୍ରାଡ଼ାଠାରେ ଏକ ସାଧାରଣ ସଭାରେ ଭାଷଣ ଦେଇଥିବା ଅଂଶବିଶେଷର ମର୍ମ ।

ତାହାଙ୍କର ସ୍ୱପ୍ନର ସଫଳ ରୂପାୟନ ପାଇଁ ଜୟପ୍ରକାଶଜୀ କେବଳ ଜନସାଧାରଣଙ୍କୁ ନୁହେଁ, ଦେଶର ଶାନ୍ତିରକ୍ଷାକାରୀ ପୋଲିସ୍ ଓ ସୈନ୍ୟ ବାହିନୀର ଜବାନ୍‌ମାନଙ୍କୁ ମଧ୍ୟ ଅନ୍ୟାୟ ଆଦେଶ ପାଳନ ନ କରିବାପାଇଁ ପ୍ରୋତ୍ସାହନ ଦେଇଥିଲେ ଓ ସାଧାରଣ ସଭାମାନଙ୍କରେ ଆହ୍ୱାନ ଦେବା ସଙ୍ଗେ ସଙ୍ଗେ ଉତ୍ତେଜିତ ମଧ୍ୟ କରାଉଥିଲେ ବୋଲି ମତ ପ୍ରକାଶ ପାଇଥିଲା । ଦେଶର ଐକ୍ୟ ତଥା ଗଣତନ୍ତ୍ର ବଜାୟ ରଖିବା ଦିଗରେ ତାହା ବିଶେଷ କ୍ଷତିକାରକ ନିଶ୍ଚୟ । କିନ୍ତୁ ପରେ ପରେ ଜୟପ୍ରକାଶଜୀ ସେ ସମ୍ପର୍କରେ ମତ ପ୍ରକାଶ କରିଥିଲେ, "ମୁଁ ପୋଲିସ୍ ବିଭାଗର କର୍ମଚାରୀ ଓ ସୈନ୍ୟ ବାହିନୀକୁ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରି ଆମ ଆନ୍ଦୋଳନ ସହ ସଂଯୁକ୍ତ ହେବାପାଇଁ ଆହ୍ୱାନ ଦେଇ ନ ଥିଲି । ସାଧାରଣ ସଭାଗୁଡ଼ିକରେ ମୁଁ ସବୁବେଳେ ଗୁରୁତ୍ୱ ଦେଇ ଜନଗଣଙ୍କୁ ବୁଝାଇବାକୁ ଚେଷ୍ଟା କରିଥିଲି ଯେ ପୋଲିସ୍ ଅନ୍ୟାୟ ଆଦେଶଗୁଡ଼ିକୁ ପାଳନ କରିବା ଉଚିତ ନୁହେଁ ।"

"ମୁଁ ବାରମ୍ବାର ଘୋଷଣା କରିଥିଲି ଯେ ସୈନ୍ୟବାହିନୀ ଜାତି, ଜାତୀୟ ପତାକା ଓ ସମ୍ବିଧାନ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିବା ଆବଶ୍ୟକ । ଯେକୌଣସି ଦଳ ଦେଶ ଶାସନ କରୁନା କାହିଁକି, ଯଦି ନିଜ ଦଳର ସ୍ୱାର୍ଥରକ୍ଷାପାଇଁ କିମ୍ବା ଏକଛତ୍ରବାଦ ପ୍ରତିଷ୍ଠା ବଜାୟ ରଖିବା ପାଇଁ ସୈନ୍ୟବାହିନୀକୁ ନିୟୋଜିତ କରେ, ତାହାହେଲେ ଦେଶରେ ଗଣତନ୍ତ୍ରକୁ ରକ୍ଷା କରିବାପାଇଁ ସୈନ୍ୟବାହିନୀ ଜାଗ୍ରତ ରହିବା ଆବଶ୍ୟକ । କାରଣ ଭାରତର ସମ୍ବିଧାନ ଗଣତନ୍ତ୍ରବାଦୀ ଏବଂ ତାହାକୁ ରକ୍ଷା କରିବା ଦାୟିତ୍ୱ ସୈନ୍ୟବାହିନୀର । ମୁଁ ଏକଥା କହିବାର ଉଦ୍ଦେଶ୍ୟ ଥିଲି ଇନ୍ଦିରାଜୀ ଏ ଦେଶରୁ ଗଣତନ୍ତ୍ରର ଉଚ୍ଛେଦ ପାଇଁ ସୈନ୍ୟବାହିନୀକୁ ବ୍ୟବହାର କରିପାରନ୍ତି ବୋଲି ମୁଁ ଅନୁଭବ କରିଥିଲି । ସେ ଆମ ଆନ୍ଦୋଳନକୁ ଚପାଇ ଦେବାପାଇଁ ଦେଶର ସୀମାନ୍ତରକ୍ଷୀ ବାହିନୀକୁ ନିୟୋଜିତ କରିଥିଲେ । ତେଣୁ ମୁଁ ପୋଲିସ୍ ଓ ସୈନ୍ୟବାହିନୀକୁ ଯାହା କହିଥିଲି ତାହା ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରିବାପାଇଁ ନୁହେଁ, ପ୍ରକୃତରେ ଏକ ସଙ୍କଟସଙ୍କୁଳ ମୁହୂର୍ତ୍ତରେ ଦେଶକୁ ରକ୍ଷା କରିବାପାଇଁ ଆହ୍ୱାନ ଥିଲି ।" †

ପରିବର୍ତ୍ତିତ ପରିସ୍ଥିତିରେ ଜୟପ୍ରକାଶଙ୍କ ଏ ଉକ୍ତିର ମର୍ମ ଯାହା ହେଉନା କାହିଁକି, ସେତେବେଳେ ତାଙ୍କର ଭାଷଣଗୁଡ଼ିକ ବିପୁଳ ସଂଖ୍ୟାରେ ସମବେତ ହେଉଥିବା ଜନସାଧାରଣଙ୍କୁ ଅତି ମାତ୍ରାରେ ଉତ୍ତେଜିତ କରି ପକାଉଥିଲା । ପରିଣାମତଃ ଦେଶର ଆଇନ ଶୃଙ୍ଖଳା ପରିସ୍ଥିତି କ୍ରମଶଃ ଅଶାନ୍ତ ଓ ଉଦ୍‌ବେଳିତ ହୋଇ ଉଠିବା ସ୍ୱାଭାବିକ ।

† J. P.'s Jail life (1977) (English Edition) P P-29-30.

ଜୟପ୍ରକାଶଙ୍କ ଉକ୍ତ ଆନ୍ଦୋଳନକୁ ଅଗଣତାନ୍ତ୍ରିକ ତଥା ଦେଶର ଫାସିବାଦ୍ ପ୍ରତିଷ୍ଠାର ଉଦ୍ୟମ ବୋଲି ମତ ପୋଷଣ କରିଥିଲେ ଶ୍ରୀମତୀ ଗାନ୍ଧୀ । ତାଙ୍କ ମତରେ ଜୟପ୍ରକାଶଙ୍କୁ ସମର୍ଥନ କରୁଥିବା ରାଜନୈତିକ ଦଳ ତଥା ବ୍ୟକ୍ତି-ବିଶେଷ ଦେଶର କୌଣସି ପ୍ରକୃତ ସମସ୍ୟା ସମାଧାନ କରିବା ଦିଗରେ ସମର୍ଥ ନ ଥିଲେ, ବରଂ ପ୍ରକୃତରେ ସେମାନେ ଦେଶପାଇଁ ବିଭିନ୍ନ ସମସ୍ୟା ସୃଷ୍ଟି କରୁଥିଲେ ଓ ଉପୁଜିଥିବା ସମସ୍ୟାଗୁଡ଼ିକୁ ସମାଧାନ ପରିବର୍ତ୍ତେ ଅଧିକ ଜଟିଳ କରି ପକାଉଥିଲେ । ବିଭିନ୍ନ ନିର୍ବାଚିତ ପ୍ରତିନିଧିମାନଙ୍କୁ ଆନ୍ଦୋଳନକାରୀମାନେ ସେମାନଙ୍କ ମୌଳିକ ଗଣତାନ୍ତ୍ରିକ ଅଧିକାରରୁ ବଞ୍ଚିତ କରାଇବା ପାଇଁ ବିଭିନ୍ନ ପ୍ରକାରର ଧ୍ୱଂସମୂଳକ ଯୋଜନା କରୁଥିଲେ । ଯଦି ଜନସାଧାରଣ ସରକାରଙ୍କ କୌଣସି ମୌଳିକ ନୀତି ତଥା କାର୍ଯ୍ୟକଳାପକୁ ସମର୍ଥନ କରୁଥିଲେ ତାହେଲେ ଆନ୍ଦୋଳନକାରୀମାନେ ସେମାନଙ୍କୁ ଅତି ଉଦ୍‌ଭ୍ରାନ୍ତ ବୋଲି ଅଭିହିତ କରୁଥିଲେ ।†

ଠିକ୍ ସେତିକି ବେଳକୁ ଗୁଜରାଟରେ ଛାତ୍ର ଆନ୍ଦୋଳନ ରାଜ୍ୟ ସରକାରଙ୍କୁ ଅପଦସ୍ଥ କରାଇବା ଦିଗରେ ସଫଳକାମ ହୋଇ ପାରିଥିଲା । ସେ ପରିସ୍ଥିତି ଜୟପ୍ରକାଶଙ୍କ ଆନ୍ଦୋଳନ ପାଇଁ ଅପୂର୍ବ ସୁଯୋଗ ଆଣି ଦେଇଥିଲା । ସେ ତାହାଙ୍କର 'ସମ୍ପୂର୍ଣ୍ଣ ବିପ୍ଳବ' ପାଇଁ ଦେଶର ଯୁବସମାଜ ଓ ଛାତ୍ରମାନଙ୍କୁ ପ୍ରଧାନ ଅସ୍ତ୍ରରୂପେ ବ୍ୟବହାର କରିବା ଲାଗି ଚିନ୍ତା କରିଥିଲେ । ସେଥିପାଇଁ ଗୁଜରାଟ ଭଳି, ବିହାର, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଓ କର୍ଣ୍ଣାଟକରେ ସେହି ପନ୍ଥାରେ ଛାତ୍ର ଆନ୍ଦୋଳନ କରାଇବା ଲାଗି ମନସ୍ଥ କରିଥିଲେ । ତାହାଙ୍କର ଚରମ ଲକ୍ଷ୍ୟ ଥିଲା, ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚିତ ହୋଇଥିବା ବିଧାୟକମାନଙ୍କୁ ଘେରାଉ କରି ସରକାରଙ୍କ କାର୍ଯ୍ୟକଳାପ ଅଚଳ କରାଇଦେବା ।

ବିଭିନ୍ନ ରାଜ୍ୟର ବିଧାନସଭା ତଥା ପାର୍ଲ୍ୟାମେଣ୍ଟ ପାଇଁ ନିର୍ବାଚିତ ସଭ୍ୟମାନଙ୍କୁ ଘେରାଉ କରାଯାଇ ଅଧିବେଶନରେ ଯୋଗଦେବା ସୁଯୋଗ ନ ଦେବା ଅସାମ୍ବିଧାନିକ ହେଲେ ମଧ୍ୟ ଅଗଣତାନ୍ତ୍ରିକ ନୁହେଁ ବୋଲି ସେ ପ୍ରଚାର କରୁଥିଲେ । କିନ୍ତୁ ସେହି ଧରଣର କାର୍ଯ୍ୟକଳାପଗୁଡ଼ିକ ବାସ୍ତବିକ୍ ଯେତିକି ଅଗଣତାନ୍ତ୍ରିକ, ସେହିଭଳି ଅସାମ୍ବିଧାନିକ ବୋଲି ମଧ୍ୟ ଆଚାର୍ଯ୍ୟ ବିନୋବା ଭାବେଙ୍କ ସମେତ ଅନ୍ୟ ଉଚ୍ଚ ନେତାମାନଙ୍କ ପରାମର୍ଶକୁ ସେ ଭ୍ରୂକ୍ଷେପ କରି ନ ଥିଲେ ।

ଦିନକୁଦିନ ତାହାଙ୍କର ଆନ୍ଦୋଳନ ସମ୍ପର୍କରେ ବିଭିନ୍ନ ସମ୍ବାଦ ଖବରକାଗଜମାନଙ୍କରେ ପ୍ରକାଶ ପାଇ ଅଧିକରୁ ଅଧିକ ଜନସମର୍ଥନ ଲାଭ କରୁଥିଲା । ସେ ଯେତେବେଳେ ଯେଉଁଠିକୁ ଯାଉଥିଲେ, ସେଠାରେ ପ୍ରବଳ ଜନସମାଗମ

---

† ଖୁସ୍‌ୱନ୍ତ ସିଂହଙ୍କ ସହିତ ୧୯୭୫ ପ୍ରାରମ୍ଭରେ ହୋଇଥିବା ସାକ୍ଷାତ୍କାର ବେଳେ ଦେଇଥିବା ମତାମତର କିୟଦଂଶ ।

ହେଉଥିଲା । ତାହାଙ୍କ ଦ୍ୱାରା ଆୟୋଜିତ ସଭା ସମିତିଗୁଡ଼ିକରେ ବହୁ ସଂଖ୍ୟାରେ ଲୋକ ଯୋଗ ଦେଉଥିଲେ ।

ଜୟପ୍ରକାଶଜୀ ସେଭଳି ଜନସମର୍ଥନ ଲାଭ କରିବାର କାରଣ ମଧ୍ୟ ଥିଲା ଯଥେଷ୍ଟ । ପ୍ରଥମତଃ ସେ ଥିଲେ ମହାତ୍ମାଗାନ୍ଧୀ, ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ ପ୍ରମୁଖଙ୍କ ସହକର୍ମୀ ତଥା ଜଣେ ତ୍ୟାଗୀ ନେତା । ଦ୍ୱିତୀୟତଃ ସେ ସରକାରଙ୍କ ବିରୋଧୀ ଥିଲେ । ସବୁବେଳେ ସରକାରୀ ବିରୋଧୀ ଧ୍ୱନି ଜନସାଧାରଣଙ୍କୁ ଆଗ୍ରହାନ୍ୱିତ କରାଇବା ସ୍ୱାଭାବିକ । ତୃତୀୟତଃ ତଥା ମୁଖ୍ୟତଃ ଦେଶର ଅର୍ଥନୈତିକ ଅବସ୍ଥା ଶୋଚନୀୟ ଥିଲା । ବିଗତ କେତେ ବର୍ଷ ଧରି ସବୁଜ ବିପ୍ଳବକୁ ସଫଳ କରିବାପାଇଁ ପଦକ୍ଷେପସବୁ ଗ୍ରହଣ କରାଯାଇଥିଲେ ମଧ୍ୟ ୧୯୭୨ ମସିହାରେ ଦେଶର ପ୍ରାୟ ଅନେକ ଅଞ୍ଚଳରେ ମରୁଡ଼ି ଅବସ୍ଥା ସୃଷ୍ଟି ହୋଇଥିଲା । ଅତ୍ୟାବଶ୍ୟକୀୟ ପଦାର୍ଥଗୁଡ଼ିକର ଦରଦାମ ଉଲ୍ଲେଖଯୋଗ୍ୟ ଭାବେ ବୃଦ୍ଧି ପାଇଥିଲା । ଶାସନକଳ ପକ୍ଷରୁ ଦେଶରୁ ଗରିବୀ ହଟାଇବା ପାଇଁ ଉଦ୍ଦେଶ୍ୟ ରଖି କାର୍ଯ୍ୟକ୍ରମ ଗ୍ରହଣ କରାଯାଉଥିଲେ ସୁଦ୍ଧା ଦେଶର ପ୍ରାୟ ଦୁଇ-ତୃତୀୟାଂଶ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ରହୁଥିଲେ । ବେକାରୀଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇଥିଲା ଓ ବାସଗୃହହୀନମାନଙ୍କ ସଂଖ୍ୟା ମଧ୍ୟ ଥିଲା ଉଲ୍ଲେଖଯୋଗ୍ୟ ।

ତତ୍ ପରବର୍ତ୍ତୀ ବର୍ଷରେ ଆର୍ଥନୀତିକ କ୍ଷେତ୍ରରେ କୌଣସି ଦୃଷ୍ଟିରୁ ଉନ୍ନତି ପରିଲକ୍ଷିତ ହୋଇ ନ ଥିଲା । ଦେଶର ଅନେକ ପ୍ରମୁଖ ସାମ୍ବାଦିକ ୧୯୭୩ ମସିହାକୁ ଏକ ଅଭିଶପ୍ତ ବର୍ଷ ବୋଲି ଅଭିହିତ କରି ମତ ଦେଇଥିଲେ ଯେ ସ୍ୱାଧୀନତା ପରଠାରୁ ସେଭଳି ସମୟ କେବେ ଦେଖା ଦେଇ ନ ଥିଲା । ପୁଣି ୧୯୭୪ ଓ ୧୯୭୫ ମସିହା ପ୍ରାରମ୍ଭରେ ଦେଶର ଆର୍ଥନୀତିକ କ୍ଷେତ୍ରରେ ବିଶେଷ କିଛି ଉନ୍ନତି-ମୂଳକ ଅବସ୍ଥା ସୃଷ୍ଟି ହୋଇପାରି ନ ଥିଲା, ବରଂ ଜନସାଧାରଣଙ୍କ ଅବସ୍ଥା ଆହୁରି ଅଧିକ ଅସ୍ୱଚ୍ଛଳ ହୋଇ ପଡ଼ିଥିଲା । ସେଭଳି ପରିସ୍ଥିତିରେ ସାଧାରଣଙ୍କର ନୈତିକମାନ କମିଯିବା ସ୍ୱାଭାବିକ । ସାମାଜିକ ଜୀବନରେ ବିଭିନ୍ନ ବିଶୃଙ୍ଖଳା ସାଙ୍ଗକୁ କଳାବଜାର ଓ ବଜାରରେ ଦରଦାମ ଅସ୍ୱାଭାବିକ ଭାବେ ବୃଦ୍ଧି ପାଇଥିଲା । ତତ୍ ସହିତ ବିଭିନ୍ନ ଆନ୍ତର୍ଜାତିକ କାର୍ଯ୍ୟକଳାପ ବାସ୍ତବ ପରିସ୍ଥିତିକୁ ଆହୁରି ଅଧିକ ଜଟିଳ କରି ପକାଇଥିଲା ।

ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି—"ଅଭାବେ ସ୍ୱଭାବ ନଷ୍ଟ ।" ଦେଶର ଅର୍ଥନୈତିକ ଅସ୍ୱଚ୍ଛଳତା ଜନଗଣଙ୍କ ସାମାଜିକ ଜୀବନକୁ ମଧ୍ୟ ବିପର୍ଯ୍ୟସ୍ତ କରି ପକାଇଥିଲା । ତେଣୁ ଜନସାଧାରଣଙ୍କୁ ସହଜରେ ଜୟପ୍ରକାଶଜୀ ନିଜ ପକ୍ଷକୁ ଟାଣିଆଣିବା ସ୍ୱାଭାବିକ ହୋଇ ପଡ଼ିଥିଲା । ଶୁଦ୍ଧ ଆନ୍ଦୋଳନ ମାଧ୍ୟମରେ ଜୟପ୍ରକାଶଜୀ ବିପର୍ଯ୍ୟସ୍ତ ସାମାଜିକ ଅବସ୍ଥାର କିଛିଟା ଉନ୍ନତି କରିପାରିବେ ବୋଲି

ଆନ୍ତରିକ ଉପଲବ୍ଧି କରି ପାରିଥିଲେ । ତେଣୁ ଯେତେବେଳେ ସେ ଆଇନ ଅମାନ୍ୟ କରିବାପାଇଁ ଡାକରା ଦେଉଥିଲେ, ସେ ବିପୁଳ ଜନସମର୍ଥନ ଲାଭ କରିଥିଲେ ।

ସେହି ସମୟର ଅରାଜକ ଅଭିଜ୍ଞତା ବର୍ଣ୍ଣନା କରି ଦେଶର ଜଣେ ବରିଷ୍ଠ ସାମ୍ବାଦିକ ଶ୍ରୀ ଖୁସ୍ ଓ୍ୱନ୍ତ ସିଂ ପ୍ରକାଶ କରିଥିଲେ—"ଥରେ ଜୟପ୍ରକାଶଙ୍କ ସହିତ ଦୀର୍ଘ ତିନି ଘଣ୍ଟା ଧରି ରେଲରେ ବମ୍ବେରୁ ପୁନା ଯାଉଥିଲି । ସେହି ଅବସରରେ ଯେଉଁ ବିପୁଳ ଉତ୍ସାହ ଓ ଉନ୍‌ମାଦନା ନେଇ ଲୋକେ ତାହାଙ୍କୁ ସ୍ୱାଗତ ଜଣାଉଥିଲେ ତାହା ମୁଁ ନିଜ ଆଖିରେ ଦେଖିଛି ଓ ଆଇନ ଅମାନ୍ୟ କରିବାପାଇଁ ଜନସାଧାରଣଙ୍କୁ ପ୍ରବର୍ତ୍ତନା ଦେବା ମଧ୍ୟ ମୁଁ ଶୁଣିଛି ।" †

**ଅଲ୍ଲାବାଦ ହାଇକୋର୍ଟର ରାୟ :—**

ଜୟପ୍ରକାଶଙ୍କ ଆନ୍ଦୋଳନ ପ୍ରତି ସେଭଳି ଜନସମର୍ଥନ ମିଳୁଥିବାବେଳେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ହୋଇଥିବା ନିର୍ବାଚନ ମକଦ୍ଦମାର ଫଳାଫଳ ୧୯୭୫ ମସିହା ଜୁନ୍ ୧୨ ତାରିଖ ଦିନ ପ୍ରକାଶ ପାଇଥିଲା । ଅଲ୍ଲାବାଦ ହାଇ-କୋର୍ଟର ବିଚାରପତି ମାନ୍ୟବର ଜଗମୋହନଲାଲ ସିହ୍ନା ଶ୍ରୀମତୀ ଗାନ୍ଧୀଙ୍କ ନିର୍ବାଚନକୁ ଅସିଦ୍ଧ ଘୋଷଣା କରି ଏକ ଐତିହାସିକ ରାୟ ଦେଇଥିଲେ । ବିଚାରପତି ମହୋଦୟ ତାହାଙ୍କ ବିଚାରରେ ଶ୍ରୀମତୀ ଗାନ୍ଧୀଙ୍କୁ ଦୁଇଟି ଅପରାଧରେ ଅଭିଯୁକ୍ତ କରିଥିଲେ । ଗୋଟିଏ ଥିଲା—ଶ୍ରୀମତୀ ଗାନ୍ଧୀ ତାହାଙ୍କ ନିଜ ନିର୍ବାଚନ ପ୍ରଚାର ପାଇଁ ଭାରତ ସରକାରଙ୍କ ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଶ୍ରୀ ଯଶପାଲ୍ କାପୁରଙ୍କୁ ନିୟୋଜିତ କରିଥିଲେ । ପୁଣି ଉତ୍ତରପ୍ରଦେଶ ସରକାର ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନିର୍ବାଚନ ପ୍ରଚାର ଲାଗି କେତେଗୁଡ଼ିଏ ସାଧାରଣ ସଭାର ଆୟୋଜନ କରିଥିଲେ ଏବଂ ସେଥିଲାଗି ଆବଶ୍ୟକୀୟ ଖର୍ଚ୍ଚ ମଧ୍ୟ ବହନ କରିଥିଲେ । ଏହା ଥିଲା ତାହାଙ୍କ ପାଇଁ ଦ୍ୱିତୀୟ ଅଭିଯୋଗ । ଏ ଉଭୟ ଅପରାଧ ପାଇଁ ମାନ୍ୟବର ବିଚାରପତି ମହୋଦୟ ତାଙ୍କ ରାୟରେ ଦଣ୍ଡବିଧାନ କରିଥିଲେ ଯେ ଶ୍ରୀମତୀ ଗାନ୍ଧୀ ଆସନ୍ତା ଛଅବର୍ଷ ପାଇଁ ଦେଶର ସାଧାରଣ ନିର୍ବାଚନଗୁଡ଼ିକରେ ଅଂଶ ଗ୍ରହଣ କରି ପାରିବେ ନାହିଁ ।

ଉକ୍ତ ରାୟର ପୁନର୍ବିଚାର କରି ସୁପ୍ରିମ୍ କୋର୍ଟର ଅବସରକାଳୀନ ବିଚାରପତି ଜୁନ୍ ୨୪ ତାରିଖଦିନ ରାୟ ଦେଇଥିଲେ ଯେ ଶ୍ରୀମତୀ ଗାନ୍ଧୀ ଦେଶର ପ୍ରଧାନମନ୍ତ୍ରୀ ରୂପେ କାର୍ଯ୍ୟ କରିପାରିବେ ଏବଂ ପାର୍ଲ୍ୟାମେଣ୍ଟରେ ମଧ୍ୟ ଅଂଶ ଗ୍ରହଣ କରିପାରିବେ । କିନ୍ତୁ ଅପିଲ୍‌ର ଚୂଡ଼ାନ୍ତ ରାୟ ପ୍ରକାଶ ନ ପାଇବା ପର୍ଯ୍ୟନ୍ତ ଭୋଟ ଦେଇପାରିବେ ନାହିଁ ।

---

† Indira Gandhi Returns (1979)—P-70.
(Orient Paper Backs Edition)

ବିରୋଧୀ ଦଳର କର୍ମୀ ଓ ନେତୃବୃନ୍ଦଙ୍କ ସମେତ ଜୟପ୍ରକାଶଜୀ ମଧ୍ୟ ପୁଲକିତ ହୋଇ ଉଠିଥିଲେ ନିଶ୍ଚୟ । ତା' ପରେ ପରେ ପାର୍ଲ୍ୟାମେଣ୍ଟକୁ ଯେଉଁଭଳି ଜଣ ନିର୍ବାଚିତ ସଭ୍ୟମାନଙ୍କୁ କୌଣସି ପ୍ରକାର ଆଇନ ପ୍ରଣୟନ ପାଇଁ ପାର୍ଲ୍ୟାମେଣ୍ଟ ଭବନ ଭିତରକୁ ପ୍ରବେଶ ଦିଆଯିବ ନାହିଁ ବୋଲି ଘୋଷଣା କରିଥିଲେ ଓ ସେଥିପାଇଁ ପ୍ରସ୍ତୁତ ରହିବାଲାଗି ଦେଶର ଜନଗଣଙ୍କୁ ଆହ୍ୱାନ ଦେଇଥିଲେ । ଜୟପ୍ରକାଶଙ୍କ ନେତୃତ୍ୱରେ ଯୁବକ ଓ ଛାତ୍ର ସମାଜ ଆହ୍ଲାଦିତ ହାଇକୋର୍ଟର ନିର୍ଦ୍ଦେଶନାମାକୁ ସମ୍ମାନ ଦେଇ ପ୍ରଧାନମନ୍ତ୍ରୀ ପଦରୁ ଶ୍ରୀମତୀ ଗାନ୍ଧୀ ଇସ୍ତଫା ଦିଅନ୍ତୁ ବୋଲି ଆନ୍ଦୋଳନ ଆରମ୍ଭ କରି ଦେଇଥିଲେ । ସେହି ଉଦ୍ଦେଶ୍ୟରେ ସାରା ଦେଶରେ ୧୯୭୫ ମସିହା ଜୁନ୍ ୨୯ ତାରିଖରୁ ଜୁଲାଇ ୫ ତାରିଖ ମଧ୍ୟରେ ଗଣ-ଅସନ୍ତୋଷ ସରକାରଙ୍କୁ ଜଣାଇବା ପାଇଁ ଜିଲ୍ଲାସ୍ତରୀୟ ବିକ୍ଷୋଭ ପ୍ରଦର୍ଶନର ଆୟୋଜନ କରାଯାଇଥିଲା । ଶ୍ରୀମତୀ ଗାନ୍ଧୀଙ୍କ ସରକାରୀ ବାସଭବନ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରାଯିବା ସଙ୍ଗେ ସଙ୍ଗେ ସେହି ଉଦ୍ଦେଶ୍ୟରେ ଦିଲ୍ଲୀରେ ମଧ୍ୟ ସାଧାରଣ ସଭାର ଆୟୋଜନ କରାଯାଇଥିଲା । ବିଭିନ୍ନ ରାଜ୍ୟରେ ସେଭଳି ଆୟୋଜନ ପାଇଁ ବିରୋଧୀଦଳର ନେତାମାନଙ୍କୁ ଦାୟିତ୍ୱ ଦିଆଯାଇଥିଲା ।

କେବଳ ଭାରତବର୍ଷ ନାହିଁକି, ପୃଥିବୀର ଅନେକ ଦେଶରେ ବେଳେବେଳେ ଏହିଭଳି କେତେକ ଘଟଣା ଘଟେ, ଯାହା ଇତିହାସର ସାଧାରଣ ଧାରାକୁ ହଠାତ୍ ବଦଳାଇ ଦେଇଥାଏ । ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥାର ଅନେକଟା ପରିବର୍ତ୍ତନ ହୋଇଥାଏ ତାର ପରିଣାମ ।

ସେହିପରି ଏକ ବିଷମ ପରିସ୍ଥିତି ସୃଷ୍ଟି ହୋଇଥିଲା ଭାରତର ରାଜନୈତିକ ଆକାଶରେ । ଗୋଟିଏ ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଭାରତର ଶାସନ କଳକୁ ଏକାବେଳକେ ପଙ୍ଗୁ କରି ଦେବାପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ସେଥିରେ କେତେକ ବିଦେଶୀ ରାଷ୍ଟ୍ରର ହାତ ନ ଥିଲା ବୋଲି ମଧ୍ୟ ଦୃଢ଼ ଭାବରେ କୁହାଯାଇ ନ ପାରେ । ପୃଥିବୀର କେତେକ ରାଜନୈତିକ ଋଙ୍ଗନେତା ସେଭଳି ଆଶଙ୍କା ମଧ୍ୟ ପ୍ରକାଶ କରିଥିଲେ । ସେ ଆଶଙ୍କା ଦୃଢ଼ୀଭୂତ ହୋଇଥିଲା ଭାରତର ଏକ ବନ୍ଧୁରାଷ୍ଟ୍ର ବଙ୍ଗଳାଦେଶର ସ୍ରଷ୍ଟା ଓ ବଙ୍ଗବନ୍ଧୁ ନାମରେ ପରିଚିତ ଶେଖ୍ ମୁଜିବୁର ରହମନ ତଥା ତାଙ୍କ ପରିବାରର ସମସ୍ତଙ୍କୁ ନିର୍ମମ ଭାବେ ହତ୍ୟା ଘଟଣା ।

ସେଭଳି ସମସ୍ୟାରେ ଅତ୍ୟନ୍ତ ଉଦ୍‌ବେଳିତ, ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପରିସ୍ଥିତିର ଉଚିତ ମୁକାବିଲା କରିବାପାଇଁ ଶ୍ରୀମତୀ ଗାନ୍ଧୀ ସମ୍ବିଧାନର ୩୫୨ ଧାରା ଅନୁଯାୟୀ ଦେଶରେ ରାଷ୍ଟ୍ରପତି ଶାସନ ଜାରି କରିବାପାଇଁ ରାଷ୍ଟ୍ରପତିଙ୍କୁ ପରାମର୍ଶ ଦେଇଥିଲେ ୧୯୭୫ ମସିହା ଜୁନ୍ ୨୬ ତାରିଖ ସକାଳ ସାତଟାଠାରୁ ଓ ରାଷ୍ଟ୍ରପତି ମଧ୍ୟ ତାହା ଗ୍ରହଣ କରିଥିଲେ । ଏଠାରେ

ଉଲ୍ଲେଖ କରାଯାଇ ପାରେ ଯେ ୧୯୭୫ ମସିହା ନଭେମ୍ବର ୭ ତାରିଖ ଦିନ ସୁପ୍ରିମ୍ କୋର୍ଟ ସର୍ବସମ୍ମତି କ୍ରମେ ଶ୍ରୀମତୀ ଗାନ୍ଧୀଙ୍କ ନିର୍ବାଚନକୁ କାଏମ୍ ରଖିଥିଲେ ।

**ଦେଶରେ ଜରୁରୀ କାଳ :—**

ଜୁନ୍ ୨୬ ତାରିଖଠାରୁ ଦେଶରେ ଜରୁରୀକାଳ ଘୋଷଣା କରାଯିବାବେଳେ ଶ୍ରୀମତୀ ଗାନ୍ଧୀ ପରିକଳ୍ପନା କରିଥିଲେ ଯେ, ସେହିଭଳି ପରିସ୍ଥିତି ଦେଶରେ ମାତ୍ର ଦୁଇମାସ ପାଇଁ ରଖାଯିବ । କାରଣ ସେହି ସମୟ ମଧ୍ୟରେ ଦେଶର ରାଜନୈତିକ ତଥା ସାମାଜିକ ବିଶୃଙ୍ଖଳାଗୁଡ଼ିକ ଦୂରେଇ ସମାହିତ ହୋଇଯାଇ ପାରିବ । ଦେଶରେ ପ୍ରଚଳିତ ଆଇନ କାନୁନ୍ ଭିତରେ କେତେକ ଦୁର୍ବଳତା ଯଥାର୍ଥରେ ରହିଯାଇଥିବା ମଧ୍ୟ ଅନୁଭବ କରାଯାଇଥିଲା । ପରିଣାମ ସ୍ୱରୂପ ଦେଶରେ କେତେକ କଳାବଜାରୀ ସେମାନଙ୍କ ଲୁଚନ୍ତ ଯଥେଷ୍ଟ ଭାବରେ ପ୍ରସାରିତ କରି ଦେଇଥିଲେ । ପୁଣି ମିସା ତଥା ଡ଼ି. ଆଇ. ଆର୍ ଅପେକ୍ଷା ଜରୁରୀକାଳ ହିଁ ଆଇନାନୁମୋଦିତ କର୍ମପନ୍ଥା ରୂପେ ଅଧିକ ଫଳପ୍ରଦ ହୋଇ ପାରିବ ବୋଲି ଆଇନ ମନ୍ତ୍ରୀ ତଥା ଅନ୍ୟ ମନ୍ତ୍ରଣାଳୟଗୁଡ଼ିକ ଶ୍ରୀମତୀ ଗାନ୍ଧୀଙ୍କୁ ପରାମର୍ଶ ଦେଇଥିଲେ ।

ଶ୍ରୀମତୀ ଗାନ୍ଧୀ ଦେଶରେ ଜରୁରୀ କାଳ ଘୋଷଣା କରିବାପାଇଁ ରାଷ୍ଟ୍ରପତିଙ୍କୁ ପ୍ରଥମେ ପରାମର୍ଶ ଦେଇ ପରେ ମନ୍ତ୍ରୀମଣ୍ଡଳର ସମର୍ଥନ ଲାଭ କରିଥିବା ଯୋଗୁଁ ସେ ପରିସ୍ଥିତି ପାଇଁ ତାହାଙ୍କୁ ସମ୍ପୂର୍ଣ୍ଣ ରୂପେ ଦାୟୀ କରାଯାଇଥିଲା । ପୁଣି ସେହି ପରାମର୍ଶ ରାଷ୍ଟ୍ରପତି କାର୍ଯ୍ୟକାରୀ ନ କରାଇବା କ୍ଷମତାର ଅଧିକାରୀ ଥିଲେ ମଧ୍ୟ ଆବଶ୍ୟକ କ୍ଷେତ୍ରରେ ନିଜ କ୍ଷମତା ପ୍ରୟୋଗ ନ କରିଥିବା ଯୋଗୁଁ କେତେକ ସମାଲୋଚକ ତାହାଙ୍କୁ ମଧ୍ୟ ଆଂଶିକ ଭାବେ ଦାୟୀ କରିଥିଲେ ।

ଦେଶରେ ଜରୁରୀ ଅବସ୍ଥା ପାଇଁ ସେ ଯେଉଁମାନେ ଦାୟୀ ହୁଅନ୍ତୁ ନା କାହିଁକି, ଶ୍ରୀମତୀ ଗାନ୍ଧୀ ଲକ୍ଷ୍ୟ କରିଥିଲେ ଯେ ତାର ପରିଣାମ ଭାରତର ସାମାଜିକ କ୍ଷେତ୍ରରେ ଯଥେଷ୍ଟ ଉନ୍ନତି ସାଧନ କରି ପାରିଥିଲା । ସମାଜର ପ୍ରତ୍ୟେକ କ୍ଷେତ୍ରରେ ତୁଳନାତ୍ମକ ଭାବରେ ବହୁତ ଅଧିକ ପରିମାଣରେ ଶୃଙ୍ଖଳା ଦୃଷ୍ଟିଗୋଚର ହୋଇଥିଲା । ସରକାରୀ କାର୍ଯ୍ୟାଳୟଗୁଡ଼ିକରେ ଯଥାସମ୍ଭବ ସୁରୁଖୁରୁରୂପେ କାର୍ଯ୍ୟ ସମ୍ପାଦିତ ହୋଇ ପାରିଥିଲା ଓ ଅନିୟମିତତା ଅନେକାଂଶରେ ଦୂର ହୋଇ ଯାଇଥିଲା । ସମାଜରୁ ହିଂସା ପ୍ରବଣତା ଅନେକାଂଶରେ କମି ଯାଇଥିଲା ।

ଠିକ୍ ସେହିଭଳି ଦେଶର ଆର୍ଥନୀତିକ କ୍ଷେତ୍ରରେ ମଧ୍ୟ ଦୃଷ୍ଟି ଗୋଚର ହୋଇଥିଲା ପ୍ରଭୁତ ଉନ୍ନତି । ଜରୁରୀକାଳ ଘୋଷିତ ହେବା ପୂର୍ବରୁ ଦେଶର

କଳକାରଖାନାଗୁଡ଼ିକରେ କାର୍ଯ୍ୟ କରୁଥିବା ଶ୍ରମିକମାନେ ବାରମ୍ବାର ଓ ବିଭିନ୍ନ ଭାବରେ ଆନ୍ଦୋଳନ, ଧର୍ମଘଟ ପ୍ରଭୃତିରେ ନିଯୋଗ ରହୁଥିଲେ । ପରିଣାମତଃ ଦେଶର ବିଭିନ୍ନ କ୍ଷେତ୍ରରେ ଉତ୍ପାଦନ ବ୍ୟାହତ ହେଉଥିଲା । ଯୋଜନାଗୁଡ଼ିକର ସଫଳତା ଦିଗରେ ନିଆଯାଉଥିବା ସରକାରୀ ପଦକ୍ଷେପଗୁଡ଼ିକ ଯଥାର୍ଥ ଭାବେ କାର୍ଯ୍ୟକାରୀ ହୋଇପାରୁ ନ ଥିଲା । କିନ୍ତୁ ଦେଶରେ ଜରୁରୀ ଅବସ୍ଥା ଜାରିହେବା ପରେ ପରେ ସେସବୁ ପରିସ୍ଥିତିର ସମ୍ପୂର୍ଣ୍ଣ ପରିବର୍ତ୍ତନ ଖୁବ୍ କମ୍ ସମୟ ମଧ୍ୟରେ ସମ୍ଭବପର ହୋଇ ପାରିଥିଲା ।

ଦେଶରେ ଜରୁରୀ ପରିସ୍ଥିତି ଯୋଗୁଁ କେବଳ ଶିଳ୍ପ କ୍ଷେତ୍ରରେ ନୁହେଁ, କୃଷି ଉତ୍ପାଦନ ମଧ୍ୟ ଆଶାତୀତ ଭାବେ ବୃଦ୍ଧି ପାଇଥିଲା । ଜରୁରୀ ଅବସ୍ଥା ଜାରି ହେବାର ସ୍ୱଳ୍ପକାଳ ମଧ୍ୟରେ ଦେଶର ସାମାଜିକ ଓ ଆର୍ଥିନୀତିକ ପରିସ୍ଥିତିର ଦ୍ରୁତ ଅଗ୍ରଗତି ଲକ୍ଷ୍ୟ କରିବା ପରେ ହିଁ ଶ୍ରୀମତୀ ଗାନ୍ଧୀ ନିଜ ପୂର୍ବ ବିଗ୍ରହ ପରିବର୍ତ୍ତନ କରିବା ଲାଗି ଉତ୍ସାହିତ ହୋଇଥିଲେ । "We got caught up in various things and when we found it was showing results and the country is going ahead in every way, it didnot seem the proper moment to stop." * ଶ୍ରୀମତୀ ଗାନ୍ଧୀଙ୍କ ଏହି ମାର୍ମିକ ଅନୁଭବ ଯୋଗୁଁ ଦେଶରେ ମାତ୍ର ଦୁଇ ମାସ ପାଇଁ ଜାରି ହୋଇଥିବା ଜରୁରୀ ଅବସ୍ଥା ଦୀର୍ଘ ୧୯ ମାସ ପାଇଁ ଲମ୍ବି ରହିଥିଲା ।

ତାର ପରିଣତି ଦେଶର ଆର୍ଥନୀତିକ ପ୍ରଗତି ପାଇଁ ସ୍ୱାଗତଯୋଗ୍ୟ ଥିଲା ନିଶ୍ଚୟ । କାରଣ ପୃଥିବୀର ଅନେକ ଆର୍ଥନୀତିକ ସଙ୍ଗଠନ ଭାରତର ଦ୍ରୁତ ପ୍ରଗତି ପାଇଁ ବିସ୍ମୟ ପ୍ରକାଶ କରିଥିଲେ । ପୃଥିବୀବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଭଳି ଅନୁଷ୍ଠାନଗୁଡ଼ିକ ମତ ପ୍ରକାଶ କରିଥିଲେ ଯେ ଭାରତର ଇତିହାସରେ ବିଗତ ଦୀର୍ଘକାଳ ମଧ୍ୟରେ ସେଭଳି ଅର୍ଥନୈତିକ ପ୍ରଗତି କେବେ ହାସଲ ହୋଇପାରି ନ ଥିଲା । ସେହି ସମୟ ମଧ୍ୟରେ ବଜାରରେ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟଗୁଡ଼ିକର ଦରଦାମ ହ୍ରାସ ହେବା ସଙ୍ଗେ ସଙ୍ଗେ ବେକାରୀ ସମସ୍ୟା ବହୁ ପରିମାଣରେ କମି ଯାଇଥିଲା । ସେମାନେ ମଧ୍ୟ ପ୍ରଥମଥର ପାଇଁ ମତ ପ୍ରକାଶ କରିଥିଲେ ଯେ— ଭାରତ ଭଳି ଗୋଟିଏ ପ୍ରଗତିଶୀଳ ଦେଶରେ କିଛିକାଳ ପାଇଁ ସେଭଳି ପରିସ୍ଥିତି ଅବ୍ୟାହତ ରହିଲେ ଦେଶରୁ ଖାଦ୍ୟ ସମସ୍ୟା ସମ୍ପୂର୍ଣ୍ଣ ରୂପେ ଦୂର ହୋଇ ପାରିବା ସମ୍ଭାବନା ଯଥେଷ୍ଟ ବେଶୀ ।

---

* ଜଣେ ବିଦେଶୀ ରାଜନୀତି ବିଜ୍ଞାନର ପ୍ରଫେସର ତଥା ତାଙ୍କ ଜୀବନୀ ଲେଖିକା Mary C. Carras ଙ୍କ ସହ ୧୯୭୫ ରେ ସାକ୍ଷାତ୍କାର ଦେଲେ ପ୍ରକାଶ ।

ସେହି ସମସ୍ତ ମଧ୍ୟରେ ଦେଶର ବୈଦେଶିକ ମୁଦ୍ରା ସର୍ବାଧିକ ପରିମାଣରେ ଗଚ୍ଛିତ ହୋଇ ପାରିଥିଲା ଏବଂ ପ୍ରତିରକ୍ଷା କ୍ଷେତ୍ରରେ ମଧ୍ୟ କ୍ଷମତାବୃଦ୍ଧି ଥିଲା ବିଶେଷ ଉଲ୍ଲେଖଯୋଗ୍ୟ । ଶ୍ରୀମତୀ ଗାନ୍ଧୀ ଯେଉଁଥିଲାଗି ମତ ପ୍ରକାଶ କରିଥିଲେ ଯେ ଜରୁରୀ ଅବସ୍ଥା ଘୋଷିତ ହେବାର ଖୁବ୍ ସ୍ୱଳ୍ପକାଳ ମଧ୍ୟରେ ତାଙ୍କର ରାଜନୈତିକ ଉଦ୍ଦେଶ୍ୟ ସାଧିତ ହୋଇ ଯାଇଥିଲେ ମଧ୍ୟ କେବଳ ଆର୍ଥନୀତିକ ପ୍ରଗତିର ଧାରାକୁ ବଜାୟ ରଖିବା ଲାଗି ଦେଶରେ ଦୀର୍ଘକାଳ ସେହି ପରିସ୍ଥିତିକୁ କାଏମ ରଖାଯାଇଥିଲା ।

ସାମାଜିକ ଓ ଆର୍ଥନୀତିକ କ୍ଷେତ୍ରରେ ଜରୁରୀକାଳ ଯେତେ ଶୁଭଙ୍କର ହେଉନା କାହିଁକି ରାଜନୈତିକ ଦୃଷ୍ଟିକୋଣରୁ ତାହାର ଦୀର୍ଘ କଳେବର ଅତି ଅଯଥାର୍ଥ ମନେ ହୋଇଥିଲା । କେବଳ ସେତିକି ନୁହେଁ, ସେହି ଦୃଷ୍ଟିକୋଣରୁ ଜରୁରୀ ଅବସ୍ଥାର ଅପବ୍ୟବହାର ମଧ୍ୟ ଯଥେଷ୍ଟ ପରିମାଣରେ ହୋଇଥିଲା । ଦଳୀୟ ରାଜନୈତିକ ନେତାମାନେ ବିଭିନ୍ନ ସ୍ତରରେ ନିଜ ନିଜ କ୍ଷମତାର ଅପବ୍ୟବହାର କରିଥିଲେ ନିଶ୍ଚୟ । ଖୋଦ୍ ଶ୍ରୀମତୀ ଗାନ୍ଧୀ ମଧ୍ୟ ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ ଯେ—"ଜରୁରୀ କ୍ଷମତା କେତେକାଂଶରେ ନିଜ ଅକ୍ତିଆରରୁ ବାହାରକୁ ଚାଲିଯାଇଥିଲା । କାରଣ ବିଭିନ୍ନ ବ୍ୟକ୍ତି ବିଭିନ୍ନ କ୍ଷେତ୍ରରେ କ୍ଷମତାର ଅପବ୍ୟବହାର କରିଥିଲେ । *

ଜରୁରୀ ଅବସ୍ଥା ଦେଶରେ ଘୋଷିତ ହେବା ପରେ ପରେ ହିଁ ସମଗ୍ର ଦେଶରେ ବ୍ୟାପକ ଭାବରେ ଗିରଫ କରାଯାଇଥିଲା । ବିଶେଷକରି ବିରୋଧୀ ଦଳର ରାଜନୈତିକ ନେତାମାନେ ଥିଲେ ସେଭଳି ଗିରଫଦାରୀର ପ୍ରଥମ ଶିକାର । ପୁଣି ଅନେକ କ୍ଷେତ୍ରରେ ଅଖଣ୍ଡ କ୍ଷମତାର ଅଧିକାରୀ ଭାବେ ବ୍ୟକ୍ତିଗତ ଶତ୍ରୁତାକୁ ମଧ୍ୟ ରାଜନୈତିକ ରୂପ ଦିଆଯାଇଥିଲା । ସେହି ସମସ୍ତ କାଳ ମଧ୍ୟରେ ନ ହେଲେ ବି ପରେ ପରେ ଶ୍ରୀମତୀ ଗାନ୍ଧୀ ଯେ ସମ୍ପର୍କରେ ଅବହିତ ହୋଇଥିଲେ ଓ ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ "ଆମର କେତେକ ମୁଖ୍ୟମନ୍ତ୍ରୀ କୌଣସି କାରଣ ନ ଥାଇ ଅର୍ଥାତ୍ କେବଳ ବ୍ୟକ୍ତିଗତ ଶତ୍ରୁତାକୁ କେନ୍ଦ୍ରକରି କେତେକ ଲୋକଙ୍କୁ ଗିରଫ କରିଥିଲେ ।" † ଦେଶରେ ଜରୁରୀ ଅବସ୍ଥା ଜନସାଧାରଣଙ୍କ ନିକଟରେ ଅପ୍ରିୟ ହେବାପାଇଁ ତାହାହିଁ ଥିଲା ଏକ ମୁଖ୍ୟ କାରଣ ।

ପୁଣି ଜରୁରୀ କାଳରେ କ୍ଷମତାର ଅପପ୍ରୟୋଗ ହୋଇଥିଲା ଅର୍ଥ ସଂଗ୍ରହ ଲାଗି । ଶ୍ରୀମତୀ ଗାନ୍ଧୀ ତଥା ସଞ୍ଜୟ ଗାନ୍ଧୀଙ୍କ ନାମ ବ୍ୟବହାର କରି ଅନେକ ଅନୁଷ୍ଠାନ ଦେଶର ବିଭିନ୍ନ କ୍ଷେତ୍ରରୁ ଚାନ୍ଦା ଆଦାୟ କରିଥିଲେ । ସେ ଖବର

---

* ଏବଂ † ପୂର୍ବ ସାକ୍ଷାତ୍କାରବେଳେ ମତ ପ୍ରକାଶ ।

ପାଇଥିଲେ ଶ୍ରୀମତୀ ଗାନ୍ଧୀ ଏବଂ ସେଥିରେ ସେ ବ୍ୟସ୍ତ ହୋଇ ଉଠିଥିଲେ । ଅନୁସନ୍ଧାନରୁ ମଧ୍ୟ ଜାଣି ପାରିଥିଲେ ଯେ ତାହାଙ୍କୁ ସେଭଳି ଭାବରେ ବଦନାମ କରାଇବା ପାଇଁ କେତେକ ବୈଦେଶିକ ଶକ୍ତି ମଧ୍ୟ ବଦ୍ଧପରିକର ହୋଇଥିଲେ । ସେଭଳି ଖବର ପାଇ ସୁଦ୍ଧା ସେମାନଙ୍କୁ ଜବତ୍ କରିବାପାଇଁ ସେ ଯଥେଷ୍ଟ ଆବଶ୍ୟକ ସାକ୍ଷ୍ୟ ପ୍ରମାଣ ପାଇପାରୁ ନ ଥିଲେ ।

ଶ୍ରୀମତୀ ଗାନ୍ଧୀ ବାରମ୍ବାର ସ୍ୱୀକାର କରିଥିଲେ ଯେ ଜରୁରୀ କାଳରେ ଦେଶର ସମ୍ବାଦପତ୍ରଗୁଡ଼ିକ ଉପରେ ଯଥେଷ୍ଟ କଟକଣା ଜାରି କରାଯାଇଥିଲା ଏବଂ ଜରୁରୀ କାଳ ଜାରି ହେଲେ ସେଭଳି କଟକଣା ମଧ୍ୟ ସ୍ୱାଭାବିକ ଭାବେ ଆବଶ୍ୟକ । କେତେକ କ୍ଷେତ୍ରରେ ବ୍ୟକ୍ତି-ସ୍ୱାଧୀନତା ମଧ୍ୟ କ୍ଷୁର୍ଣ୍ଣ ହୋଇଥିବା ସେ ଅନୁଭବ କରିଥିଲେ । ତଥାପି ଆଭ୍ୟନ୍ତରୀଣତାର ସହିତ ଶ୍ରୀମତୀ ଗାନ୍ଧୀ ଅନୁଭବ କରିଥିଲେ ଯେ ଭାରତକୁ ଏକ ପରମ ସଂକଟରୁ ରକ୍ଷା କରିବାପାଇଁ ଓ ଆର୍ଥନୈତିକ ପ୍ରଗତି ପାଇଁ ତାହାହିଁ ଥିଲା ଏକମାତ୍ର ପନ୍ଥା ।

## ଜରୁରୀ ଅବସ୍ଥା ଓ ସଞ୍ଜୟ ଗାନ୍ଧୀ :—

ଭବିଷ୍ୟତବାଣୀ ଶୁଣାଇ ଜଣେ ଜ୍ୟୋତିଷ ସଞ୍ଜୟ ଗାନ୍ଧୀଙ୍କୁ କହିଥିଲେ—"For you sporty, flighty, frank but philosophical sagittarian, top, notch achievements will be registered in 1976" * ବାସ୍ତବିକ୍ ତାହାର ସତ୍ୟତା ପ୍ରତିପାଦିତ ହୋଇଥିଲା । ଦେଶରେ ଜରୁରୀକାଳୀନ ଅବସ୍ଥା ଜାରି ହେବା କିଛିଦିନ ପୂର୍ବରୁ ଓ ପରେ ପରେ କ୍ରମଶଃ ଭାରତୀୟ ରାଜନୈତିକ ତଥା ସାମାଜିକ କ୍ଷେତ୍ରରେ ଶ୍ରୀଯୁକ୍ତ ସଞ୍ଜୟ ଗାନ୍ଧୀଙ୍କ ନାମ ଅତ୍ୟନ୍ତ ପ୍ରଭାବଶାଳୀ ମନେ ହୋଇଥିଲା । ତାର ଏକମାତ୍ର କାରଣ ହୁଏତ ଥିଲା ଯେ, ସେ ଥିଲେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ପୁତ୍ର ତଥା ତାଙ୍କର ଜଣେ ମୁଖ୍ୟ ରାଜନୈତିକ ପରାମର୍ଶଦାତା । ଶ୍ରୀମତୀ ଗାନ୍ଧୀ ମଧ୍ୟ ହୁଏତ ଚାହୁଁଥିଲେ ଯେ ତାଙ୍କ ପରେ ଭାରତରେ ରାଜନୈତିକ ଶୂନ୍ୟସ୍ଥାନ ପୂରଣ କରିବାପାଇଁ ସେ ସଞ୍ଜୟଙ୍କୁ ଗଢ଼ି ତୋଳିବେ । ସେସବୁ ଦୃଷ୍ଟିରୁ ଦେଶରେ ତାହାଙ୍କ ଗୁରୁତ୍ୱ ଅସମ୍ଭବ ଭାବରେ ବୃଦ୍ଧି ପାଇବା ସ୍ୱାଭାବିକ ଥିଲା । ପୁଣି ଶ୍ରୀମତୀ ଗାନ୍ଧୀଙ୍କ ପ୍ରିୟପାତ୍ର ହେବାପାଇଁ ଅନେକେ ସଞ୍ଜୟଙ୍କୁ ସନ୍ତୁଷ୍ଟ କରିବା ପନ୍ଥା ମଧ୍ୟ ଗ୍ରହଣ କରିଥିଲେ । ଓଡ଼ିଆରେ କଥାଟିଏ ଅଛି—ମହାଦେବଙ୍କୁ ସନ୍ତୁଷ୍ଟ କରିବାପାଇଁ ପ୍ରଥମେ ଆବଶ୍ୟକ 'ବାସୁଆ ବଳଦ'ର ପୂଜା-ଆରାଧନା ।

---

* Orient Horoscope 1976 —Bajan Daru Walla.

ସେସବୁ କାରଣରୁ ସଞ୍ଜୟ ଗାନ୍ଧୀ ଭାରତୀୟ ରାଜନୈତିକ ଓ ସାମାଜିକ ରଙ୍ଗମଞ୍ଚରେ ଖୁବ୍ କମ୍ ସମୟ ମଧ୍ୟରେ ଆଦୃତ ହୋଇ ଯାଇଥିଲେ । ଡିସେମ୍ବର ୧୯୭୫ ମସିହାରେ ଅନୁଷ୍ଠିତ ହୋଇଥିବା ଚଣ୍ଡୀଗଡ଼ର କୋମାଗାଟାମାରୁ କଂଗ୍ରେସ ଅଧିବେଶନରେ କମ୍ୟୁନିଷ୍ଟମାନଙ୍କ ବିରୋଧ କରୁଥିବା କଂଗ୍ରେସଦଳ ଯଥାର୍ଥରେ ଲକ୍ଷ୍ୟ କରିଥିଲେ ଯେ ଜନସାଧାରଣଙ୍କ ମଧ୍ୟରେ ଯୁବକ ସଞ୍ଜୟ ବେଶ୍ ଆଦୃତ ହୋଇ ପାରିଥିଲେ । ସେ ସୁଯୋଗ ନେଇ ଜନସାଧାରଣଙ୍କ ନିକଟରେ ନିଜ ନିଜକୁ ଅଧିକ ଭାବରେ ପ୍ରତିଷ୍ଠିତ କରାଇବା ପାଇଁ ବିଭିନ୍ନ ପ୍ରଦେଶର ମୁଖ୍ୟମନ୍ତ୍ରୀମାନେ ମଧ୍ୟ ସଞ୍ଜୟ ଗାନ୍ଧୀଙ୍କୁ ଏକ ବଳିଷ୍ଠ ମାଧ୍ୟମରୂପେ ବ୍ୟବହାର କରିବାକୁ ପସନ୍ଦ କରିଥିଲେ । ପ୍ରଧାନମନ୍ତ୍ରୀ ଭାବେ ଶ୍ରୀମତୀ ଗାନ୍ଧୀ ସଦାସର୍ବଦା ବ୍ୟସ୍ତ ରହୁଥିବାରୁ ଏବଂ ସବୁ ରାଜ୍ୟ ଗସ୍ତ କରିବା ସମୟସାପେକ୍ଷ ହୋଇଥିବାରୁ ସେମାନେ ତାଙ୍କ ପରିବର୍ତ୍ତେ ସଞ୍ଜୟଙ୍କୁ ବ୍ୟବହାର କରିବାକୁ ଇଚ୍ଛା କରିଥିଲେ ।

ତାର କାରଣ ଥିଲା ସହଜ । ସେତେବେଳେ ଶ୍ରୀମତୀ ଗାନ୍ଧୀଙ୍କ ଭଳି ସଞ୍ଜୟ ମଧ୍ୟ ଦେଶରେ ଖୁବ୍ ଜନପ୍ରିୟ ହୋଇ ଉଠୁଥିଲେ ଓ ତାହାଙ୍କ ଭାଷଣ ଶୁଣିବାପାଇଁ ଲୋକଙ୍କ ଆଗ୍ରହ ବୃଦ୍ଧି ପାଉଥିଲା । ପୁଣି ଶ୍ରୀମତୀ ଗାନ୍ଧୀଙ୍କ ଅପେକ୍ଷା ସଞ୍ଜୟଙ୍କ ନିକଟରେ ବିଭିନ୍ନ ରାଜ୍ୟର ନେତୃବୃନ୍ଦ ଅବାଧରେ ପହଞ୍ଚି ପାରୁଥିଲେ । ସେଭଳି ସୁଯୋଗକୁ ପ୍ରଥମେ ବିଶେଷ ଭାବରେ ବ୍ୟବହାର କରିଥିଲେ କର୍ଣ୍ଣାଟକର କଂଗ୍ରେସ ନେତା ଶ୍ରୀ ଦେବରାଜ ଅର୍ସ । ସେ ତାଙ୍କୁ କର୍ଣ୍ଣାଟକ ଯିବାପାଇଁ ନିମନ୍ତ୍ରଣ କରିଥିଲେ । ସେହି ନିମନ୍ତ୍ରଣ ରକ୍ଷାକରି ନିଜକୁ ରାଜନୀତିରେ ପ୍ରତିଷ୍ଠିତ କରିବାକୁ ଆଗ୍ରହୀ ସଞ୍ଜୟ ୧୯୭୬ ମସିହା ଜାନୁୟାରୀ ମାସରେ କର୍ଣ୍ଣାଟକ ଯାଇଥିଲେ । ତାହାଙ୍କ ସହିତ ମଧ୍ୟ ଯାଇଥିଲେ ଶ୍ରୀମତୀ ମେନକା ଗାନ୍ଧୀ । ତାଙ୍କ ଉଦ୍ଦେଶ୍ୟରେ ବାଙ୍ଗାଲୋର୍‌ଠାରେ ଆୟୋଜିତ ସାଧାରଣ ସଭାରେ ଅକଳ୍ପନୀୟ ସଂଖ୍ୟାରେ ଜନସାଧାରଣ ଯୋଗ ଦେଇଥିଲେ । କର୍ଣ୍ଣାଟକର ଗ୍ରାମାଞ୍ଚଳଗୁଡ଼ିକରେ ମଧ୍ୟ ସଞ୍ଜୟ ଓ ମେନକାଙ୍କୁ ଅତି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ସେଠାରୁ ଫେରିବା ପରେ ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ସିଦ୍ଧାର୍ଥଶଙ୍କର ରାୟଙ୍କ ନିମନ୍ତ୍ରଣକ୍ରମେ ତତ୍ପରବର୍ତ୍ତୀ ମାସରେ ସେ ଯାଇଥିଲେ ପଶ୍ଚିମବଙ୍ଗ ।

ତାପରେ ଦେଶର ଅନ୍ୟାନ୍ୟ ମୁଖ୍ୟମନ୍ତ୍ରୀମାନଙ୍କ ନିମନ୍ତ୍ରଣ ଅଜାଡ଼ି ହୋଇ ପଡ଼ିଥିଲା ସଞ୍ଜୟଙ୍କ ନିକଟରେ । ସର୍ବଶ୍ରୀ ଶ୍ୟାମାଚରଣ ଶୁକ୍ଳ, ତିୱାରି, ଭେଙ୍ଗଲ୍ ରାଓ, ଜୈଲ ସିଂହ, ହରିଦେଓ ଯୋଶୀ, ବନାରସି ଦାସଗୁପ୍ତାଙ୍କ ନିମନ୍ତ୍ରଣକ୍ରମେ ସେ ମଧ୍ୟପ୍ରଦେଶ, ଉତ୍ତରପ୍ରଦେଶ, ଆନ୍ଧ୍ରପ୍ରଦେଶ, ପଞ୍ଜାବ, ରାଜସ୍ଥାନ, ହରିଆନା ପ୍ରଭୃତି ରାଜ୍ୟ ସମେତ ଦେଶର ଅନ୍ୟାନ୍ୟ ଅଞ୍ଚଳଗୁଡ଼ିକୁ ଅତିଥି ହିସାବରେ ନିମନ୍ତ୍ରିତ ହୋଇ ଯାଇଥିଲେ । ପ୍ରାୟ ପ୍ରତ୍ୟେକ ସ୍ଥାନରେ ତାଙ୍କୁ ଦର୍ଶନ କରିବାପାଇଁ

ଓ ତାଙ୍କ ଭାଷଣ ଶୁଣିବା ପାଇଁ ଜନାରଣ୍ୟ ହେଉଥିଲା, କିନ୍ତୁ ତଥାପି ଏକଥା ଅସ୍ୱୀକାର କରାଯାଇ ନ ପାରେ ଯେ ସେଥିପାଇଁ ରାଜ୍ୟ ସରକାରୀ କଳକୁ ଆଂଶିକ ଭାବେ ନିୟୋଜିତ କରାଯାଉଥିଲା । ଅବଶ୍ୟ ଏକଥା ମଧ୍ୟ ସ୍ମରଣ ରଖିବା ଉଚିତ ଯେ ସଭାସମିତିଗୁଡ଼ିକରେ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଯୋଗ ଦେଉଥିଲେ ଏବଂ ଅନ୍ୟ ପକ୍ଷରେ ଅଧିକାଂଶ କ୍ଷେତ୍ରରେ ସଞ୍ଜୟ ମଧ୍ୟ ଥିଲେ ରାଜ୍ୟ ସରକାରଙ୍କ ଅତିଥି । ସେ ହିସାବରେ ଆଇନ ଶୃଙ୍ଖଳା ରକ୍ଷା ତଥା ସେଭଳି ଆଉ କେତେକ ପଦକ୍ଷେପ ସରକାରୀ ସ୍ତରରେ ନିଆଯିବା ରାଜ୍ୟ ସରକାରଙ୍କ କର୍ତ୍ତବ୍ୟ ତଥା ଦାୟିତ୍ୱ ମଧ୍ୟ । ତେବେ ସ୍ୱତଃସ୍ଫୂର୍ତ୍ତ ଭାବରେ ଜନସାଧାରଣ ଉକ୍ତ ସଭାସମିତିଗୁଡ଼ିକରେ ଯୋଗ ଦେଉଥିଲେ ନିଜ ନିଜର ଉତ୍ସୁକତା ମେଣ୍ଟାଇବା ପାଇଁ ।

ସମ୍ଭବତଃ ତାହାହିଁ ଥିଲା ଏକ ମୁଖ୍ୟ କାରଣ ଯେଉଁଥିପାଇଁ ଦେଶର ବିରୋଧୀ ଦଳର ତୁଙ୍ଗ ନେତୃବୃନ୍ଦ ମଧ୍ୟ ତାହାଙ୍କ ପ୍ରତି ବିଭିନ୍ନ ଆକ୍ଷେପ କରିଥିଲେ । ବିଶିଷ୍ଟ ଗାନ୍ଧୀବାଦୀ ଜୟପ୍ରକାଶ ନାରାୟଣଙ୍କ ଆକ୍ଷେପ ଥିଲା ଯେ, ଦେଶରେ ପାରିବାରିକ ଏକଛତ୍ରବାଦ ପ୍ରତିଷ୍ଠା କରିବାପାଇଁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ନିଶ୍ଚିତ ଉଦ୍ୟମ କରୁଥିଲେ ଏବଂ ସେଥିପାଇଁ ସେ ତାହାଙ୍କ କନିଷ୍ଠ ପୁତ୍ର ସଞ୍ଜୟ ଗାନ୍ଧୀଙ୍କୁ କାଳକ୍ରମେ ଅଧିକରୁ ଅଧିକ କ୍ଷମତାଶାଳୀ କରାଇବା ପାଇଁ ଉଦ୍ୟମ ମଧ୍ୟ କରୁଥିଲେ । ତାଙ୍କ ପରେ ସଞ୍ଜୟଙ୍କୁ ଦେଶର ପ୍ରଧାନମନ୍ତ୍ରୀ କରାଇବା ପାଇଁ ଉଦ୍ୟମ ବିଶେଷକରି ଜରୁରୀ ଅବସ୍ଥା କାଳରେ ଆହୁରି ଅଧିକ ସହଜସାଧ୍ୟ ହୋଇ ଯାଇଥିଲା । ତାଙ୍କ ମତରେ—"After the imposition of Emergency the manner in which Shri Sanjay Gandhi has been elevated to a position of unchallanged power makes it clear that Indiraji wants her son to succeed her as Prime Minister". †

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ସଞ୍ଜୟ ଗାନ୍ଧୀ ସେତେବେଳେ କେନ୍ଦ୍ର ସରକାର କିମ୍ବା କଂଗ୍ରେସ ଦଳର କୌଣସି ଉଚ୍ଚ ପଦାଧିକାରୀ ବ୍ୟକ୍ତି ନ ଥିଲେ, ଥିଲେ ଯୁବ କଂଗ୍ରେସର ଜଣେ ସକ୍ରିୟ ସଭ୍ୟ । ଦେଶରେ ଜରୁରୀ ଅବସ୍ଥା ଜାରି ହେବା ପରେ ପରେ ଶ୍ରୀମତୀ ଗାନ୍ଧୀଙ୍କ କୋଡ଼ିଏ ଦଫା କାର୍ଯ୍ୟକ୍ରମ ଘୋଷିତ ହୋଇଥିଲା । ତା ସାଙ୍ଗକୁ ଯୁବ କଂଗ୍ରେସ ତରଫରୁ ଶ୍ରୀ ସଞ୍ଜୟ ଗାନ୍ଧୀ ଦେଶପାଇଁ ଘୋଷଣା କରିଥିଲେ ଆଉ ପାଞ୍ଚଦଫା କାର୍ଯ୍ୟକ୍ରମ । ସେଥିମଧ୍ୟରେ ଅନ୍ତର୍ଭୁକ୍ତ ଥିଲା ଯୌତୁକ ପ୍ରଥାର ବିରୋଧ କରିବା, ଦେଶରେ ଅଧିକରୁ ଅଧିକ ବୃକ୍ଷରୋପଣ କରିବା, ଜନ୍ମନିୟନ୍ତ୍ରଣକୁ ଗୁରୁତ୍ୱ ଦେବା ଏବଂ ଦେଶର ସହରାଞ୍ଚଳଗୁଡ଼ିକୁ ସର୍ବାଙ୍ଗ ସୁନ୍ଦର କରି

† J. P.'s Jail life (1977)—P-64.

ଗଢ଼ି ତୋଳିବା ପ୍ରଭୃତି କାର୍ଯ୍ୟକ୍ରମ । ଉକ୍ତ କାର୍ଯ୍ୟକ୍ରମକୁ ସମର୍ଥନ ଜଣାଇ ଶ୍ରୀମତୀ ଗାନ୍ଧୀ ୧୯୭୭ ମସିହା ଫେବୃୟାରୀ ୧ ତାରିଖ ଦିନ ଏକ ବକ୍ତୃତା ଦେଇଥିଲେ ।

ପରିସ୍ଥିତି ଓ ପରିବେଶର ସମ୍ପୂର୍ଣ୍ଣ ସୁଯୋଗ ନେଇଥିଲେ ସଞ୍ଜୟ ଗାନ୍ଧୀ । ତାଙ୍କଦ୍ୱାରା ଘୋଷିତ କାର୍ଯ୍ୟକ୍ରମଗୁଡ଼ିକର ସଫଳ ରୂପାୟନ ପାଇଁ ଅଦମ୍ୟ ଉଦ୍ୟମ କରିଥିଲେ । ଭାରତର ରାଜଧାନୀ ଖୋଦ୍ ଦିଲ୍ଲୀର ତୁର୍କମେନ୍ ଗେଟ୍ ଅଞ୍ଚଳକୁ ସୁନ୍ଦର କରିବାପାଇଁ ସେଠିକାର ସହରତଳି ଅଞ୍ଚଳଗୁଡ଼ିକୁ ବୁଲ୍‌ଡୋଜର ବ୍ୟବହାର କରାଯାଇ ସଫାସୁତୁରା କରାଇ ଦିଆଯାଇଥିଲା । ସେଠାରେ ଦୀର୍ଘକାଳରୁ ବସବାସ କରି ରହିଥିବା ନିମ୍ନ ଆର୍ଥିକ ଶ୍ରେଣୀସ୍ଥ ବାସିନ୍ଦାମାନଙ୍କ ପାଇଁ କେତେଗୁଡ଼ିଏ କଲୋନି ଅନ୍ୟ ସ୍ଥାନରେ ନିର୍ମାଣ କରାଯାଇଥିଲା । କିନ୍ତୁ ୧୯୭୭ ମସିହାର ସାଧାରଣ ନିର୍ବାଚନ ବେଳେ କଂଗ୍ରେସ ଦଳର ଅତ୍ୟାଚାର ସମ୍ପର୍କରେ ତାହାହିଁ ଥିଲା ଜନତା ଦଳର ଏକ ମୁଖ୍ୟ ନିର୍ବାଚନ ଇସ୍ତାହାର ।

ସେହିଭଳି ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ସଞ୍ଜୟ ଓ ଇନ୍ଦିରାଙ୍କ ନାମ ସହିତ ସଂଯୋଗ କରାଯାଇଥିଲା ବନ୍ଧ୍ୟାକରଣକୁ ବାଧ୍ୟତାମୂଳକ ଭାବେ କାର୍ଯ୍ୟକାରୀ କରାଯାଉଥିବା ସମ୍ପର୍କରେ । ଦେଶର ଉତ୍ତରାଞ୍ଚଳ ରାଜ୍ୟଗୁଡ଼ିକ ମଧ୍ୟରୁ ମୁଖ୍ୟତଃ ଉତ୍ତରପ୍ରଦେଶ, ବିହାର ଓ ମଧ୍ୟପ୍ରଦେଶର ଅନେକ ଅଞ୍ଚଳରେ ଜନସାଧାରଣଙ୍କୁ ବାଧ୍ୟତାମୂଳକ ଭାବେ ଧରି ନିଆଯାଇ ଡାକ୍ତରଖାନାମାନଙ୍କରେ ପରିବାର ନିୟୋଜନ ଅସ୍ତ୍ରୋପଚାର କରାଯାଇଥିବା କଥା ଖବରକାଗଜମାନଙ୍କରେ ପ୍ରକାଶ ପାଇଥିଲା । ସେହି କାରଣରୁ ଦିନବେଳେ ଲୋକେ ଅତ୍ୟନ୍ତ ଭୟଭୀତ ହୋଇ ଗାଆଁ ଗଣ୍ଡା ଛାଡ଼ି ନିକଟସ୍ଥ ଜଙ୍ଗଲ ଭିତରେ ଲୁଚି ରହିବାପାଇଁ ଶ୍ରେୟସ୍କର ମନେ କରିଥିଲେ । ଅନେକ ରାଜ୍ୟରେ ଜନସାଧାରଣ ସ୍ୱାସ୍ଥ୍ୟ ବିଭାଗର କର୍ମଚାରୀମାନଙ୍କୁ ଦେଖିବାମାତ୍ରେ ଅତିମାତ୍ରାରେ ଆତଙ୍କିତ ହୋଇ ଉଠୁଥିଲେ । ପରବର୍ତ୍ତୀ କାଳରେ କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଡଃ କରଣ ସିଂହ ମଧ୍ୟ ପ୍ରକାଶ୍ୟ ଭାବରେ ଘୋଷଣା କରିଥିଲେ ଯେ, ବାଧ୍ୟତାମୂଳକ ଭାବେ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଯିବା ପାଇଁ ସରକାରୀ ଆଦେଶ ତ ଦୂରର କଥା, କେବେ କାହାକୁ ସେ ସାଧାରଣ ପରାମର୍ଶ ମଧ୍ୟ ଦେଇ ନ ଥିଲେ । ସେ ସମ୍ପର୍କରେ ଯାହାସବୁ କାର୍ଯ୍ୟ ହେଉଥିଲା, ତାହାକୁ କାର୍ଯ୍ୟକାରୀ କରାଉଥିଲେ ଶ୍ରୀଯୁକ୍ତ ସଞ୍ଜୟ ଗାନ୍ଧୀ ଏବଂ ସେଇଥିପାଇଁ ସେ ହିଁ ସମ୍ପୂର୍ଣ୍ଣ ରୂପେ ଦାୟୀ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ସେହି ସମୟରେ ଦେଶରେ ଅନେକ ନେତୃସ୍ଥାନୀୟ ରାଜନୈତିକ ବ୍ୟକ୍ତି, ମନ୍ତ୍ରୀ ତଥା ମୁଖ୍ୟମନ୍ତ୍ରୀ କେବଳ ଶ୍ରୀମତୀ ଗାନ୍ଧୀ ଓ ସଞ୍ଜୟ ଗାନ୍ଧୀଙ୍କୁ କୌଣସି ମତେ ସନ୍ତୁଷ୍ଟ କରିବାପାଇଁ ଯତ୍ନବାନ୍ ହୋଇ ଉଠିଥିଲେ । ସେମାନଙ୍କ ଦ୍ୱାରା ପ୍ରସ୍ତାବିତ କାର୍ଯ୍ୟକ୍ରମଗୁଡ଼ିକ ପାଇଁ ସୀମାତିରିକ୍ତ ଭାବେ ଆଗ୍ରହ ପ୍ରକାଶ କରି ସେସବୁକୁ କାର୍ଯ୍ୟକାରୀ କରାଇବା ଦିଗରେ

ଚଳଚଞ୍ଚଳ ହୋଇ ଉଠିଥିଲେ । ସେହି କାରଣରୁ ଜରୁରୀ କାଳରେ ଅନେକ କ୍ଷେତ୍ରରେ ମନ୍ତ୍ରୀ ତଥା ସରକାରୀ କର୍ମଚାରୀମାନଙ୍କ ଦ୍ୱାରା ସେମାନଙ୍କର କ୍ଷମତା-ଗୁଡ଼ିକର ଯଥାର୍ଥ ପ୍ରୟୋଗ ହେବା ପରିବର୍ତ୍ତେ ଅନେକ କ୍ଷେତ୍ରରେ ଅପପ୍ରୟୋଗ ହିଁ ହୋଇଥିଲା । ବିଶେଷ ଉଲ୍ଲେଖଯୋଗ୍ୟ ଯେ ସେହି କାରଣଗୁଡ଼ିକ ହିଁ ୧୯୭୭ ନିର୍ବାଚନରେ ଶ୍ରୀମତୀ ଗାନ୍ଧୀ ଓ ସଞ୍ଜୟ ଗାନ୍ଧୀଙ୍କ ପାଇଁ ପରାଜୟର ଗ୍ଳାନି ଉପହାର ଦେବାଲାଗି ଯଥେଷ୍ଟ ପ୍ରମାଣିତ ହୋଇଥିଲା ।

ଦେଶରେ ଜରୁରୀ ଅବସ୍ଥା ଘୋଷଣା, ଯୁବନେତା ସଞ୍ଜୟ ଗାନ୍ଧୀଙ୍କୁ ଜାତୀୟ ସ୍ତରରେ ଜଣେ ନେତା ରୂପେ ପ୍ରତିଷ୍ଠିତ ହେବାପାଇଁ ପଥ ଉନ୍ମୁକ୍ତ କରାଇ ଦେଇଥିଲା । ଯଦିଓ ସେ କେନ୍ଦ୍ର ସରକାରରେ କୌଣସି ଉଚ୍ଚ ପଦାଧିକାରୀ ନ ଥିଲେ ବା ନ ଥିଲେ କଂଗ୍ରେସର ଜଣେ ଉଚ୍ଚନେତା, ତଥାପି ସେଇ ସମୟରେ ସେ ହୋଇ ପାରିଥିଲେ ଜଣେ ଖୁବ୍ କ୍ଷମତାଶାଳୀ ବ୍ୟକ୍ତି । ମଣିଷମାତ୍ରଃ କେବଳ ଜନସାଧାରଣ କାହିଁକି, ଦେଶର ନେତା, କେନ୍ଦ୍ର ମନ୍ତ୍ରୀମଣ୍ଡଳର ସଦସ୍ୟବୃନ୍ଦ ଓ ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ତାଙ୍କର ଗୁରୁତ୍ୱ ଯଥେଷ୍ଟ ଭାବରେ ଉପଲବ୍ଧି କରିଥିଲେ । ତେଣୁ ସେହିଭଳି ଭାବରେ ଦେଶର ସର୍ବତ୍ର ଓ ସବୁସ୍ତରରେ ସେ ହୋଇ ପାରିଥିଲେ ଜଣେ ସମ୍ମାନାସ୍ପଦ ବ୍ୟକ୍ତି । ସବୁଠାରେ ତାଙ୍କୁ ଅଭ୍ୟର୍ଥନା ଦେବାପାଇଁ, ସମ୍ମାନିତ କରିବା ପାଇଁ ଓ ଏପରିକି ତାଙ୍କ ଆଦେଶ ପାଳନ କରିବାପାଇଁ ଦେଶର ପ୍ରମୁଖ ନେତାମାନେ ଉତ୍କଣ୍ଠିତ ହୋଇ ରହିଁ ରହୁଥିଲେ, ଏବଂ ତାହାହିଁ ଥିଲା ଶ୍ରୀମତୀ ଗାନ୍ଧୀଙ୍କ ସମେତ ସଞ୍ଜୟ ଗାନ୍ଧୀଙ୍କ ୧୯୭୭ ନିର୍ବାଚନ ବେଳେ ପରାଜୟର ଏକ ମୁଖ୍ୟ କାରଣ ।

## ୧୯୭୭ ନିର୍ବାଚନ : ସଞ୍ଜୟ ଓ ଇନ୍ଦିରା :—

ଭାରତ ଇତିହାସ ପାଇଁ ୧୯୭୭ ମସିହା ମାର୍ଚ୍ଚ ମାସର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନର ଭୂମିକା ଥିଲା ଅନନ୍ୟ ସାଧାରଣ । କେବଳ ଭାରତ କାହିଁକି ପୃଥିବୀର କୌଣସି ନିର୍ବାଚନ ସେଭଳି ସଙ୍କଟପୂର୍ଣ୍ଣ ନ ଥିଲା ବୋଲି ବିଶିଷ୍ଟ ସାମ୍ବାଦିକ ଓ ରାଜନୀତିଜ୍ଞମାନେ ମତପ୍ରକାଶ କରିଥିଲେ । ସ୍ୱାଧୀନତା ହାସଲ ହେବାଠାରୁ ଭାରତୀୟ ଜନସାଧାରଣ ପ୍ରଥମଥର ପାଇଁ କେନ୍ଦ୍ରରୁ କଂଗ୍ରେସ ଦଳ ତଥା ତାଙ୍କର ଦ୍ୱାରା ଗଠିତ ସରକାରକୁ ନାପସନ୍ଦ କରିଥିଲେ ସେହି ନିର୍ବାଚନରେ ।

୧୯୭୭ ମାର୍ଚ୍ଚ ୨୧ ତାରିଖ ଦିନ ବିଗତର ଅନ୍ୟ ନିର୍ବାଚନଗୁଡ଼ିକ ଅପେକ୍ଷା ଅଧିକ ଉଦ୍‌ଗ୍ରୀବ ହୋଇ ଜନସାଧାରଣ ଅପେକ୍ଷା କରି ରହିଥିଲେ ନିର୍ବାଚନ ଘୋଷଣା ଶୁଣିବା ପାଇଁ । ଭାରତର ରାଜଧାନୀ ଦିଲ୍ଲୀରେ ରବିବାରର ସନ୍ଧ୍ୟା କେତେବେଳେ ଆସିଥିଲା ଓ ତାପରେ କେତେବେଳେ ରାତ୍ରୀ ତାର ପକ୍ଷ ବିସ୍ତାର

କରିଥିଲା କେହି ଅନୁଭବ କରିପାରି ନ ଥିଲେ । ଠିକ୍ ଦିବସର ସୂର୍ଯ୍ୟାଲୋକରେ ହେଉଥିବା ଭଳି ସହରସାରା ସେମିତି କୋଳାହଳ, ରାସ୍ତାଗୁଡ଼ିକ ଲୋକାରଣ୍ୟ । କୌଣସି ଗୃହରେ ସେମିତି ଆଲୋକ ନିର୍ବାପିତ ହେଉନାହିଁ ।

କେବଳ ଦିଲ୍ଲୀ କାହିଁକି, ସମଗ୍ର ଭାରତର ଅନେକ ସ୍ଥାନରେ ଅବସ୍ଥା ସେହି ଏକା ରକମର ।

ସରକାରୀ ଭାବରେ ଭୋଟ ଗଣତି ଚାଲିଥିବାବେଳେ ଫଳାଫଳ ପ୍ରଚାର କରାଯିବା ଲାଗି ପୂର୍ବଥରମାନଙ୍କ ଭଳି ବିଭିନ୍ନ ବ୍ୟବସ୍ଥା କରାଯାଇଥିଲା । ଲୋକ ସମ୍ପର୍କ ବିଭାଗ ତରଫରୁ ସାଧାରଣତ ପ୍ରାୟ ୧୦।୧୫ ମିନିଟ ବ୍ୟବଧାନରେ ବିଭିନ୍ନ ବେତାର କେନ୍ଦ୍ରରୁ ଭୋଟ ଗଣତିର ଫଳାଫଳ ଘୋଷଣା କରାଯାଉଥିଲା । ସମଗ୍ର ଦେଶର ବିଭିନ୍ନ ପ୍ରାନ୍ତରରେ ସେହିଭଳି ଫଳ ଘୋଷିତ ହେଉଥିବା ସ୍ଥାନମାନଙ୍କରେ ଅସଂଖ୍ୟ ଲୋକ ଭିଡ଼ । ଦେଶର ପ୍ରମୁଖ ସମ୍ବାଦପତ୍ର କାର୍ଯ୍ୟାଳୟ ସାମନାରେ ସେଭଳି ଫଳାଫଳ ଘୋଷଣା ବ୍ୟବସ୍ଥା ହୋଇଥିଲା । ମୁହୂର୍ମୁହୁ ବିଭିନ୍ନ ସ୍ଥାନର ଭୋଟ ଗଣତି ସମ୍ପର୍କରେ ସୂଚନା ଦିଆଯାଉଥିଲା । ବିଭିନ୍ନ ସ୍ଥାନର ନିର୍ବାଚନ ଫଳାଫଳରୁ କଂଗ୍ରେସ ଦଳ ବିପର୍ଯ୍ୟୟର ସ୍ଥିତି ସ୍ପଷ୍ଟ ପ୍ରତୀୟମାନ ହୋଇଥିଲା । ଜନସାଧାରଣ କରତାଳି, ହୋହାଲ୍ଲା ଓ ଆନନ୍ଦ ଉଲ୍ଲାସର ସହିତ ସେଭଳି ଘୋଷଣା ସବୁକୁ ସ୍ୱାଗତ କରୁଥିଲେ । ଯେଉଁଠାରେ କଂଗ୍ରେସ ଅତି ଲୋକପ୍ରିୟ ଥିଲା, ସେହି ଉତ୍ତର-ଭାରତରେ ମଧ୍ୟ ତାର ସ୍ଥିତି ଅତି ଦୁର୍ବଳଥିବା ସମ୍ବାଦ ପ୍ରକାଶ ପାଉଥିଲା, ଯାହା ପ୍ରାୟ ନ ଥିବା ସହିତ ସମାନ ବୋଲି କୁହାଯାଇପାରେ ।

ସୋମବାରର ଭୋର ଦୁଇଟା ସମୟ···

ଖାକି ପୋଷାକ ପିନ୍ଧି ଜଣେ ଲୋକ ଦିଲ୍ଲୀର ଟାଇମସ୍ ଅଫ ଇଣ୍ଡିଆ ଖବରକାଗଜ ଅଫିସ୍ ସାମନା ନିର୍ବାଚନ ଫଳାଫଳ ଘୋଷଣା କରାଯାଉଥିବା ସ୍ଥାନରେ ଲେଖି ଦେଇଥିଲା ମାତ୍ର ଛଅଟି ଶବ୍ଦ "ଇନ୍ଦିରା ଗାନ୍ଧୀ ଓ ସଞ୍ଜୟ ଗାନ୍ଧୀ ପରାଜିତ ।" ସେମାନଙ୍କର ପରାଜୟର ନିଶ୍ଚିତତା ଜନସାଧାରଣ ଜାଣି ସାରିଥିଲେ । କାରଣ ତତ୍ପୂର୍ବରୁ ବାରମ୍ବାର ଘୋଷିତ ହେଉଥିବା ଫଳାଫଳ ସ୍ପଷ୍ଟ ସଙ୍କେତ ଦେଇଥିଲା ଯେ ରାଏବରେଲିରୁ ଓ ଆମେଥିରୁ ଯଥାକ୍ରମେ ଶ୍ରୀମତୀ ଗାନ୍ଧୀ ତଥା ତାଙ୍କ ପୁତ୍ର ସଞ୍ଜୟ ଗାନ୍ଧୀ ଆଉ ଅଧିକ ଭୋଟ ଲାଭକରି ଜୟଯୁକ୍ତ ହେବାର ସାମାନ୍ୟତମ ସମ୍ଭାବନା ମଧ୍ୟ ନାହିଁ । ତଥାପି ସେକଥା ଶେଷ ସମ୍ବାଦ ଭାବେ ସରକାରଙ୍କ ଦ୍ୱାରା ସମର୍ଥିତ ହୋଇ ଘୋଷଣା କରାଯିବା ପର୍ଯ୍ୟନ୍ତ ଜନସାଧାରଣଙ୍କ ଦୃଷ୍ଟି ବିଚଳିତ ହେଉ ନ ଥିଲା ।

ଭାରତୀୟ ରାଜନୈତିକ ଇତିହାସରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ ରାଏବରେଲି ନିର୍ବାଚନ ମଣ୍ଡଳୀ ୧୯୭୭ ମସିହାରେ ପୃଥିବୀର ଜନସାଧାରଣଙ୍କ

ଦୃଷ୍ଟି ଆକର୍ଷଣ କରିଥିଲା । ଏହି ନିର୍ବାଚନ ମଣ୍ଡଳୀରୁ ଶ୍ରୀ ରାଜନାରାୟଣ ଜନତା ଦଳର ଟିକେଟରେ ୧,୭୭,୭୧୯ ଭୋଟ ପାଇ ନିର୍ବାଚିତ ହୋଇଥିବାବେଳେ କଂଗ୍ରେସ (ଇ) ପ୍ରାର୍ଥୀ ଶ୍ରୀମତୀ ଗାନ୍ଧୀ ପାଇଥିଲେ ୧,୨୨,୫୧୭ ଭୋଟ ।

ସେ ସମ୍ବାଦ ପ୍ରକାଶ ପାଇବା ପରେ ପରେ ଆନନ୍ଦରେ ଅତି ବିହ୍ୱଳ ହୋଇ ଉଠିଥିଲେ ଉପସ୍ଥିତ ଜନସାଧାରଣ । ଜନ-ଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଜଣେ ପ୍ରବୀଣ ସାମ୍ବାଦିକ ମତପ୍ରକାଶ କରିଥିଲେ ଯେ ଜନ-ସାଧାରଣଙ୍କ ମଧ୍ୟରେ ସେଭଳି ବିପୁଳ ଆନନ୍ଦ ଉଚ୍ଛ୍ୱାସ ବଙ୍ଗଳାଦେଶ ମୁକ୍ତ ପାଇବା ବେଳେ ହିଁ ଲକ୍ଷ୍ୟ କରିଥିଲେ । ତାପରେ ସେଭଳି ସାମୂହିକ ଉଲ୍ଲାସ ଭାରତର ଜନଗଣଙ୍କ ମଧ୍ୟରେ ଆଉ ସମ୍ଭବ ହୋଇପାରି ନ ଥିଲା । † କେବଳ ନାଚ, କୁଦ, ତାଳିମାରି ସେମାନେ ଆତ୍ମହରା ହୋଇ ନ ଥିଲେ, ମକେଟରେ ଥିବା ଟଙ୍କା ପଇସା ବାହାରକରି ନିର୍ବାଚନ ଫଳାଫଳ ଘୋଷିତ ହେଉଥିବା ବୋର୍ଡ଼ ଉପରକୁ ପାଗଳଙ୍କ ଭଳି ଫୋପାଡ଼ୁଥିଲେ । ମାତ୍ର କେତୋଟି ମିନିଟର ବ୍ୟବଧାନ ମଧ୍ୟରେ ବୋର୍ଡ଼ କଗୁଆଳୀ ତିନି ଶହ ଟଙ୍କାରୁ ଅଧିକ ଅର୍ଥର ଅଧିକାରୀ ହୋଇ ପାରିଥିଲା ।

ସେତେବେଳ ପର୍ଯ୍ୟନ୍ତ ଦେଶର ଶାସନ କ୍ଷମତାରେ ଥିବା ରାଜନୈତିକ ଦଳ ଦେଶର କେନ୍ଦ୍ରସ୍ଥଳରୁ ପ୍ରାୟତଃ ସମ୍ପୂର୍ଣ୍ଣ ରୂପେ ବିଲୋପ ହୋଇ ଯାଇଥିଲା ।

ମାତ୍ର ଆଠବର୍ଷ ତଳେ ସେହି ସହରର ଜନସାଧାରଣ ରାସ୍ତାରେ ନାଚି ନାଚି ଆନନ୍ଦରେ ଇନ୍ଦିରା ଗାନ୍ଧୀଙ୍କ ଜୟ ଜୟକାର ଧ୍ୱନିରେ ଆକାଶ ପାତାଳ ପ୍ରକମ୍ପିତ କରାଉଥିଲେ, ଯେତେବେଳେ ଦେଶର ବଡ଼ ବଡ଼ ଚଉଦଟି ବ୍ୟାଙ୍କର ଜାତୀୟକରଣ କରାଯାଇଥିଲା । ସେହି ଲୋକେ ପୁଣି ୧୯୭୧ ନିର୍ବାଚନରେ ସେ ବିପୁଳ ବିଜୟ ହାସଲ କରିଥିବା ଯୋଗୁଁ ଆନନ୍ଦରେ ଆତ୍ମହରା ହୋଇ ଉଠିଥିଲେ । ଗତ ପାଞ୍ଚବର୍ଷ ତଳେ ପାକିସ୍ଥାନ ସହିତ ଯୁଦ୍ଧରେ ବିଜୟ ହାସଲ କରିବା ପରେ ପରେ ଭାରତୀୟ ଜନତା ଆନନ୍ଦୋଲ୍ଲାସରେ ଉନ୍ମତ୍ତ ହୋଇ ଇନ୍ଦିରା ଗାନ୍ଧୀଙ୍କ ପୂର୍ବପୁରୁଷମାନଙ୍କ ସମେତ ତାହାଙ୍କର ବିପୁଳ ଜୟଗାନ କରିଥିଲେ । ପୁଣି ସେଇ ଜନତା ହିଁ ୧୯୭୭ ନିର୍ବାଚନ ଫଳାଫଳରେ ପୂର୍ବଥରମାନଙ୍କଠାରୁ ଅଧିକ ଆନନ୍ଦିତ ହୋଇଥିଲେ ଓ ସେଇମାନେ ହିଁ ତାହାଙ୍କୁ ପ୍ରତ୍ୟାଖାନ କରିଦେଇଥିଲେ ।

ଭାରତୀୟ କୋଟି କୋଟି ଜନତା ତାହାଙ୍କୁ ପ୍ରତ୍ୟାଖ୍ୟାନ କରିବା ସପକ୍ଷରେ ମଧ୍ୟ ଯୁକ୍ତିଥିଲା ଅନେକ । ବିଗତ ଦୀର୍ଘ ୧୯ ମାସ କାଳ ଭାରତରେ ଜରୁରୀ ଶାସନ ଘୋଷଣା କରାଯାଇ ତାରି ଛତ୍ର-ଛାୟାତଳେ କରାଯାଇଥିବା ନିପୀଡ଼ନ ତଥା

---

† Indar Malhotra—The Nation's Verdict – Illustrated Weekly march 27—April 2, 1977—P—6.

ଏକଛତ୍ରବାଦୀ କାର୍ଯ୍ୟକଳାପର ତାହାହିଁ ଏକମାତ୍ର ସଠିକ୍ ଉତ୍ତର ଥିଲାବୋଲି ରାଜନୈତିକ ଭାଷ୍ୟକାରମାନେ ଉଲ୍ଲେଖ କରିଥିଲେ । ମାତ୍ରାରେ ପାର୍ଥକ୍ୟ ଥିଲେ ମଧ୍ୟ ଭାରତର ଗୋଟିଏ ପ୍ରାନ୍ତରୁ ଅପର ପ୍ରାନ୍ତପର୍ଯ୍ୟନ୍ତ ଜନସାଧାରଣ ସେଇ ଗୋଟିଏ ଅନୁଭବର ଅଂଶୀଦାର ଥିଲେ ଯେ ସେମାନଙ୍କ ମାନବିକ ଅଧିକାର, ସ୍ୱାଧୀନତା, ସାଧାରଣ ସମ୍ମାନ, ଦେଶରେ ଆଦୌ ନିରାପଦ ନୁହେଁ । ତେଣୁ ସେମାନଙ୍କ ଅନୁଭବର ମୂଳ ସୂତ୍ରଧର ରୂପେ ଥିବା ଶ୍ରୀମତୀ ଗାନ୍ଧୀ ଓ ସଞ୍ଜୟ ଗାନ୍ଧୀଙ୍କୁ ପ୍ରଥମ ସୁଯୋଗର ଉପଯୋଗ କରି ହିଁ ମଞ୍ଚ ଉପରୁ ଅପସାରଣ କରିବା ପାଇଁ ରାୟ ଦେଇଥିଲେ ।

ଅନେକଙ୍କର ଯୁକ୍ତି ଥିଲା, ବାଧ୍ୟତାମୂଳକ ଭାବେ ଜନ୍ମନିୟନ୍ତ୍ରଣର ପରିଣାମ ହିଁ କଂଗ୍ରେସ ପରାଜୟର ମୂଳ କାରଣ । ବାଧ୍ୟବାଧକତା କରାଯାଇ ଉତ୍ତର ପ୍ରଦେଶର, ପଶ୍ଚିମାଞ୍ଚଳ, ପଞ୍ଜାବ ତଥା ହରିଆନାର ଜନସାଧାରଣଙ୍କୁ ନାସବନ୍ଦୀକରଣ ଅସ୍ତ୍ରୋପଚାର କରାଯାଇଥିବା ଯୋଗୁଁ କଂଗ୍ରେସ ଦଳ ସେଠାରୁ କୌଣସି ଆସନ ଲାଭ କରି ନ ଥିଲା । କିନ୍ତୁ କଂଗ୍ରେସର ଅନ୍ୟତମ ଘାଟି ମହାରାଷ୍ଟ୍ର କିମ୍ବା ମାତ୍ର ଦୁଇଟି ଆସନ ଲାଭ କରିଥିବା ପଶ୍ଚିମବଙ୍ଗରେ ସେଭଳି ସମସ୍ୟାର ସମ୍ମୁଖୀନ ହୋଇ ଜନସାଧାରଣ ଅତିଷ୍ଠ ହୋଇ ନ ଥିଲେ ନିଶ୍ଚୟ ।

ଜରୁରୀକାଳର ଅତ୍ୟାଚାର ବିଭିନ୍ନ ରାଜ୍ୟରେ ଭିନ୍ନ ଆକାର ଧାରଣ କରିଥିଲା । କେଉଁଠି ଜନ୍ମନିୟନ୍ତ୍ରଣର ଅତ୍ୟାଚାର ଅଧିକ ହୋଇଥିବା ବେଳେ ଆଉ କେଉଁଠି ସରକାରୀ ପ୍ରାପ୍ୟ ଆଦାୟ କରିବାପାଇଁ ଜନସାଧାରଣଙ୍କ ଉପରେ ଅନ୍ୟାୟୋଚିତ ଅତ୍ୟାଚାର । କେଉଁଠି ବିନା ଦୋଷରେ ଲୋକଙ୍କୁ ଗିରଫ କରିନେଇ ବିଭିନ୍ନ ପ୍ରକାର ଅତ୍ୟାଚାର କରାଯାଇଥିବା ବେଳେ ଆଉ କେଉଁଠି ସହରକୁ ସୁନ୍ଦର କରି ଗଢ଼ି ତୋଳିବା ନାଆଁରେ, ଶହ ଶହ ଗରିବ ଜନତାର ବାସଗୃହ ବୁଲ୍‌ଡୋଜର ସାହାଯ୍ୟରେ ଧୂଳିସାତ୍ କରାଯାଇଥିଲା । ନିୟମ ମୁତାବକ କୋର୍ଟରେ ହାଜର କରାଯାଉଥିଲେ ସୁଦ୍ଧା ହଜାର ହଜାର ଲୋକଙ୍କୁ ଗିରଫ କରାଯାଉଥିଲା । ସବୁଠାରୁ ଉଲ୍ଲେଖଯୋଗ୍ୟ ଥିଲା ଶ୍ରୀମତୀ ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳର କେତେକ ପୁରୁଖା ସଭ୍ୟ ନିଜ ନିଜକୁ ଦେବତୁଲ୍ୟ ମନେ କରିଥିଲେ ଏବଂ ସେମାନଙ୍କ ଅଭୟ କବଚ ପାଇ ସାଧାରଣ ସେବା କ୍ଷେତ୍ରରେ ଥିବା ଅନେକ ଉଚ୍ଚପଦସ୍ଥ କର୍ମଚାରୀ ସାଧାରଣ ଜନତାଙ୍କ ଉପରେ ମନମୁଖୀ ଶାସନ ଚଳାଇଥିଲେ । ପୁଣି ମନ୍ତ୍ରୀମଣ୍ଡଳର କେତେଜଣ ସଦସ୍ୟ ଉଚ୍ଚ ସରକାରୀ କର୍ମଚାରୀମାନଙ୍କୁ ଅତି କଦର୍ଯ୍ୟ ଭାବରେ ବ୍ୟବହାର କରିଥିଲେ ନିଜ ନିଜକୁ ଅତି ବଳଶାଳୀ ମନେକରି । ଏସବୁର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଶ୍ରୀମତୀ ଗାନ୍ଧୀଙ୍କୁ ଖୁସି କରାଇବା, କିନ୍ତୁ ଦୁଃଖର ବିଷୟ ସେଭଳି ଅତ୍ୟାଚାରଗୁଡ଼ିକର ଯଥାର୍ଥ ଖବର ଶ୍ରୀମତୀ ଗାନ୍ଧୀଙ୍କ ନିକଟରେ ପହଞ୍ଚି ପାରୁ-

ନ ଥିଲା । ସେ ପ୍ରକୃତରେ ଜାଣିପାରୁ ନ ଥିଲେ ଯେ ସାଧାରଣ ଲୋକଙ୍କୁ ଓ ଅଫିସରମାନଙ୍କୁ ଉତ୍ପୀଡ଼ିତ କରାଯାଇ ତାହାଙ୍କୁ ଖୁସି କରାଯିବା ଲାଗି ଉଦ୍ୟମ କରାଯାଉଥିଲା ।

ଯେସବୁ କାର୍ଯ୍ୟକଳାପ ବିଭିନ୍ନ ସ୍ତରରେ ହେଉଥିଲେ ମଧ୍ୟ ସାଧାରଣ ଜନତା ବିଶ୍ୱାସ କରୁଥିଲେ ଯେ ସବୁପ୍ରକାର ଅନ୍ୟାୟ ଓ ଅତ୍ୟାଚାର ମୂଳରେ ସଞ୍ଜୟ ଗାନ୍ଧୀଙ୍କ ଅବଦାନ ଥିଲା ସର୍ବପ୍ରଥମ । ବାହାରକୁ ପ୍ରକାଶ କରୁ ନ ଥିଲେ ମଧ୍ୟ ଲୋକଙ୍କ ମନ ଭୀଷଣ ପ୍ରତିହିଂସାଶୀଳ ହୋଇ ଉଠିଥିଲା ଯେ, ଶ୍ରୀମତୀ ଗାନ୍ଧୀ ସ୍ୱତନ୍ତ୍ର ସଞ୍ଜୟଙ୍କୁ ତାହାଙ୍କର ରାଜନୈତିକ ଉତ୍ତରାଧିକାରୀ ରୂପେ ପ୍ରତିଷ୍ଠିତ କରିବାକୁ ଇଚ୍ଛା କରିଥିଲେ । ତାର କାରଣ ସ୍ୱରୂପ, ଅନେକ ରାଜ୍ୟର ମୁଖ୍ୟମନ୍ତ୍ରୀ ତାଙ୍କର ଚାଟୁକାର ହେବାପାଇଁ କୁଣ୍ଠା ପ୍ରକାଶ ନ କରିବା ପ୍ରମାଣ ମିଳିଥିଲା । ତେଣୁ ସାଧାରଣ ଲୋକଙ୍କ ବିଶ୍ୱାସ କ୍ରମଶଃ ଦୃଢ଼ ହେଉଥିଲା ଯେ ସରକାରୀ ଭାବେ ସଞ୍ଜୟଙ୍କ ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ନ ଥିଲେ ମଧ୍ୟ ପ୍ରକୃତରେ ସେ ହିଁ ସବୁକିଛି ।

ସେଭଳି ପରିସ୍ଥିତି ଭିତରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ ତାଙ୍କର ଦଳ ପାଇଁ ସବୁଠାରୁ ବିଶେଷ କ୍ଷତିକାରକ ହୋଇଥିଲା ନିର୍ବାଚନର ସମସ୍ତ ସ୍ଥିରୀକରଣ । ବିଶେଷକରି ଶ୍ରୀମତୀ ଗାନ୍ଧୀ ଓ କଂଗ୍ରେସ (ଇ) ଦଳ ପାଇଁ ସେହି ସମୟ ଆଦୌ ଅନୁକୂଳ ନ ଥିଲା । ଜରୁରୀ ଅବସ୍ଥା କାଳର ମର୍ମଭେଦୀ କାହାଣୀ ଜନଗଣଙ୍କ ହୃଦୟରେ ସେତେବେଳେ ଖୁବ୍ ସତେଜ ଓ ଜୀବନ୍ତ ଥିଲା ।

ତାର ଜବାବ ଦେଇଥିଲେ ଭାରତୀୟ ଜନତା ୧୯୭୭ ନିର୍ବାଚନରେ ।

ଜନସାଧାରଣଙ୍କ ରାୟ ପ୍ରକୃତରେ କୌଣସି ପ୍ରାର୍ଥୀ କିମ୍ବା ତାହାଙ୍କ ଦଳ ସପକ୍ଷରେ ନ ଥିଲା, ଥିଲା କଂଗ୍ରେସ ଓ ତାର ଯୁବଗୋଷ୍ଠୀ ତଥା ଶ୍ରୀମତୀ ଗାନ୍ଧୀ ଓ ସଞ୍ଜୟ ଗାନ୍ଧୀଙ୍କ ବିରୁଦ୍ଧରେ ଜନମତ; ଜନଗଣଙ୍କ ମୌଳିକ ଅଧିକାରକୁ ସୀମିତ କରାଯିବା ବିରୁଦ୍ଧରେ ମତ । ତେଣୁ ଭାରତର ଜଣେ ବିଶିଷ୍ଟ ସାମ୍ବାଦିକ ଖୁସ୍‌ବନ୍ତ ସିଂଙ୍କ ମତରେ ୧୯୭୭ ନିର୍ବାଚନରେ ଜନତାର ମତାମତ ଜୟପ୍ରକାଶଜୀ, ମୋରାରଜୀ ଭାଇ, ଜଗଜ୍ଜୀବନ ରାମ କିମ୍ବା ଜନତା, ସି. ଏଫ୍. ଡି. ଦଳର ସପକ୍ଷରେ ନ ହୋଇ ହୋଇଥିଲା କଂଗ୍ରେସ, ଯୁବ କଂଗ୍ରେସ, ଶ୍ରୀମତୀ ଗାନ୍ଧୀ ଓ ସଞ୍ଜୟ ଗାନ୍ଧୀଙ୍କ ବିରୁଦ୍ଧରେ ଜନମାନସର ତୀବ୍ର ପ୍ରତିକ୍ରିୟା । *

ଦେଶର ଅନେକ ବିଜ୍ଞ ତଥା ପଦସ୍ଥବ୍ୟକ୍ତି ଶ୍ରୀମତୀ ଇନ୍ଦିରାଙ୍କ ଗୌରବମୟ ବ୍ୟକ୍ତିତ୍ୱରେ କଳଙ୍କର କାଳିମା ବୋଲି ଚିନ୍ତା କରୁଥିଲେ ଯେ ଶେଷ ମୁହୂର୍ତ୍ତରେ

---

* Illustrated weekly of India—Editorial,

March 27-April—2, 1977.

ସେ ତାହାଙ୍କର ଯାଦୁଖେଳ ଦେଖାଇ ଦେବେ । ସେମାନେ ଆହ୍ଲାବାଦ ହାଇକୋର୍ଟ ଐତିହାସିକ ରାୟଦେବା ପର ଘଟଣାର ନଜୀର ଦେଉଥିଲେ । ଏଭଳି ମଧ୍ୟ ଏକ ଗୁଜବ ପ୍ରଚାର ହୋଇ ଯାଇଥିଲା ଯେ, ସେ ଦେଶର ସାମରିକ ଶାସନ ପ୍ରଚଳନ କରିବାପାଇଁ ସୈନ୍ୟବାହିନୀକୁ ଆଦେଶ ଦେଇ ସାରିଥିଲେ ନିର୍ବାଚନରେ ପରାଜୟ ଖବର ଶୁଣିବା ପରେ ପରେ । ସେମାନେ କେବେ ଚିନ୍ତାକରି ନ ଥିଲେ ଯେ ଗଣତାନ୍ତ୍ରିକ ପରମ୍ପରାର ଆଦର୍ଶରେ ସିଏ ନିର୍ବାଚନ କରାଯିବାର ନିଷ୍ପତ୍ତି ନେଇଥିଲା ସେ ଜନଗଣଙ୍କ ରାୟକୁ କାହିଁକି ଯଥାଯଥ ସମ୍ମାନ ଦେବନାହିଁ ?

ନିର୍ବାଚନ ଫଳାଫଳ ଘୋଷଣା ହେବା ପରେ ପରେ ୧୯୭୭ ମସିହା ମାର୍ଚ୍ଚ ୨୨ ତାରିଖ ଦିନ ଶ୍ରୀମତୀ ଗାନ୍ଧୀ ତତ୍କାଳୀନ ରାଷ୍ଟ୍ରପତି ଶ୍ରୀ ବି. ଡି. ଜତ୍ତିଙ୍କୁ ନିଜର ଇସ୍ତଫା ପ୍ରଦାନ କରିଥିଲେ ।

ଦେଶର ରାଜନୀତି ବିଶାରଦ ତଥା ପ୍ରବୀଣ ସାମ୍ବାଦିକମାନେ ମଧ୍ୟ ନିର୍ବାଚନ ଫଳାଫଳରେ ଆଶ୍ଚର୍ଯ୍ୟ ପ୍ରକାଶ କରିଥିଲେ । କାରଣ ସେ ସମ୍ପର୍କରେ କୌଣସି ବ୍ୟକ୍ତି କଳ୍ପନା ସୁଦ୍ଧା କରିପାରି ନ ଥିଲେ । ଦେଶ ତଥା ବିଦେଶର ଜନସାଧାରଣଙ୍କ ପାଇଁ ତାହା ନିଶ୍ଚୟ ଆଶ୍ଚର୍ଯ୍ୟଜନକ ଥିଲା । ରାଜନୈତିକ ଟିପ୍ପଣୀକାରମାନେ, କି ଭାରତୀୟ କି ବୈଦେଶିକ, ସମସ୍ତେ ଅନୁମାନ କରିଥିଲେ ଯେ କଂଗ୍ରେସ ଦଳ ହିଁ ବିଜୟ ହାସଲ କରିବ କିନ୍ତୁ କିଛି କମ୍ ସଂଖ୍ୟାଗରିଷ୍ଠ ଦଳ ଭାବେ ଆସୀନ ହେବ । ନିର୍ବାଚନ ପୂର୍ବରୁ ମଧ୍ୟ ଠିକ୍ ସେହି ମର୍ମରେ ଅନେକ ଜ୍ୟୋତିଷ ଭବିଷ୍ୟତ ଗଣନା କରିଥିଲେ । ତେବେ ଏକଥା ନିଶ୍ଚିତ ସତ୍ୟ ଥିଲା ଯେ କୌଣସି ଜ୍ୟୋତିଷ, ସାମ୍ବାଦିକ, ଜନତା ତଥା ନେତା ସାମାନ୍ୟତମ ଆଶଙ୍କା କରି ନ ଥିଲେ ସ୍ୱୟଂ ଇନ୍ଦିରା ଗାନ୍ଧୀ ନିର୍ବାଚନରେ ଶୋଚନୀୟ ଭାବେ ପରାଜିତ ହେବେ ।

□ □ □

## ।। ବାଇଶି ।।

# ଦେବକୀର କାରାବାସ



ନିଜକୁ ମୃତ୍ୟୁ ମୁଖରୁ ରକ୍ଷା କରିବାପାଇଁ ଓ ପୃଥିବୀରୁ ନିଜର ଶତ୍ରୁକୁ ନିପାତ କରି ନିରଙ୍କୁଶ ଭାବରେ ରାଜ୍ୟ ଶାସନ କରିବାପାଇଁ ରାଜା କଂସ ସେଦିନ ଦେବକୀଙ୍କୁ ସୁଦୃଢ଼ କାରାଗୃହରେ ଆବଦ୍ଧ କରିଥିଲେ । କାରଣ ସେ ଆଭାସ ପାଇଥିଲେ ଯେ, ଆପଣାର ଭଗ୍ନୀ ଦେବକୀଙ୍କ ଅଷ୍ଟମ ଗର୍ଭରୁ ଜନ୍ମିତ ସନ୍ତାନ ହେବ ତାର ମୃତ୍ୟୁର କାରଣ । ତେଣୁ ସେ ବୁଝିଥିଲେ ସେଇ କାରାଗୃହ ହିଁ ହେବ ତାର ଶତ୍ରୁ ବିନାଶର ସର୍ବୋତ୍କୃଷ୍ଟ ସ୍ଥାନ ।

ତଥାପି ଶତ୍ରୁ ବିନାଶ ହୋଇପାରି ନ ଥିଲା ।

ସତକୁ ସତ ସେଇଠି ହିଁ ଜନ୍ମ ନେଇଥିଲେ ତାର ବିନାଶକାରୀ । ସେଇ କାରାଗାର ହିଁ ହୋଇଥିଲା ତାର ଧ୍ୱଂସର କାରଣ ।

ଠିକ୍ ସେହିଭଳି ଶ୍ରୀମତୀ ଗାନ୍ଧୀ ଓ ତାଙ୍କ ପରିବାରର ସମସ୍ତଙ୍କ ବିରୁଦ୍ଧରେ ଅଜସ୍ର କୁତ୍ସା ଓ ଅପପ୍ରଚାର କରି, ଦେଶର ଶାସନ-ଶୃଙ୍ଖଳା ପରିବର୍ତ୍ତେ କେବଳ ପ୍ରତିହିଂସା ମନୋଭାବାପନ୍ନ ହୋଇ ପ୍ରତ୍ୟେକେ ନିଜନିଜକୁ ପ୍ରତିଷ୍ଠା କରାଇବା ଅଭିଳାଷରେ ଇନ୍ଦିରା ଗାନ୍ଧୀଙ୍କୁ କୌଣସି ଉପାୟରେ ଜେଲ୍ ହାଜତରେ ଅଟକ ରଖିବାପାଇଁ ଉତ୍କଣ୍ଠା ହିଁ କେନ୍ଦ୍ରରୁ ଜନତା ସରକାରର ପତନପାଇଁ ଥିଲା ଏକ ମୁଖ୍ୟ କାରଣ । କାରାଗାର ଭିତରୁ ଶ୍ରୀମତୀ ଗାନ୍ଧୀ ଅଧିକ ଗୌରବାନ୍ୱିତ ହୋଇ ଫେରିବା-ଦେଲେ ଜନତା ସରକାରଙ୍କ ଦେହରେ ଅଜସ୍ର କଳଙ୍କ ବୋଳି ହୋଇ ଯାଇଥିଲା ।

**କେନ୍ଦ୍ରରେ ଜନତା ସରକାର :—**

୧୯୭୭ ନିର୍ବାଚନ ଫଳାଫଳ ଘୋଷଣା ହେବା ପରେ ପରେ ଶ୍ରୀମତୀ ଗାନ୍ଧୀ ଦେଶରୁ ଜରୁରୀ ଅବସ୍ଥା ସମ୍ପୂର୍ଣ୍ଣରୂପେ ଉଠାଇ ଦେଇଥିଲେ । ତତ୍‌ପୂର୍ବରୁ ଜାନୁୟାରୀ

ମାସରେ ନିର୍ବାଚନ ଦୃଷ୍ଟିରୁ ତାହାକୁ ଆଂଶିକ ଭାବେ କୋହଳ କରାଯାଇଥିଲା । ପରିଣାମତଃ ନିର୍ବାଚନ ହେବା ସମ୍ପର୍କରେ ଘୋଷଣା କରାଯିବା ସଙ୍ଗେ ସଙ୍ଗେ ଅନେକ ରାଜନୈତିକ ବନ୍ଦୀଙ୍କୁ ମଧ୍ୟ ଖଲାସ୍ କରି ଦିଆଯାଇଥିଲା । କିନ୍ତୁ ନିର୍ବାଚନରେ ଶ୍ରୀମତୀ ଗାନ୍ଧୀଙ୍କ ସମେତ ସନ୍ତୁଷ୍ଟଙ୍କ ପରାଜୟ ଥିଲା ଅତିମାତ୍ରାରେ ବିସ୍ମୟକର । କଂଗ୍ରେସ(ଇ) ଦଳର ଦାରୁଣ ବିପର୍ଯ୍ୟୟ ଯଦିଓ ଦେଶର ଓ ପୃଥିବୀର ପ୍ରବୀଣ ସାମ୍ବାଦିକ, ନେତା ତଥା ବୁଦ୍ଧିଜୀବୀ ସମସ୍ତଙ୍କ ମନରେ ଏକପ୍ରକାର ଶିହରଣ ସୃଷ୍ଟି କରିଥିଲା, ତଥାପି ଭାରତର ଗଣତନ୍ତ୍ର ଉପରେ ପୃଥିବୀବାସୀ ଅଧିକ ଆସ୍ଥା ସ୍ଥାପନ କରିଥିଲେ । ସମସ୍ତ ରାଜନୈତିକ ଦଳ ଦେଶର ସାଧାରଣ ଜନତାଙ୍କ ଗୁରୁତ୍ୱ ଯଥାର୍ଥ ଭାବେ ଉପଲବ୍ଧି କରିଥିଲେ ।

ଦେଶର ଜଣେ ପ୍ରମୁଖ ନେତା ଜୟପ୍ରକାଶ ନାରାୟଣ, ମୋରାରଜୀ ଦେଶାଇ ଓ ଚରଣ ସିଂହ ପ୍ରମୁଖଙ୍କ ନେତୃତ୍ୱରେ ପରିଚାଳିତ 'ଇନ୍ଦିରା-ସନ୍ତ୍ରାସ ହଟାଅ' ଆନ୍ଦୋଳନ ସଫଳ ହୋଇଥିଲା । କିନ୍ତୁ ଏକଥା ମଧ୍ୟ ସ୍ପଷ୍ଟ ଯେ, ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦେଶରେ ଗଣତନ୍ତ୍ର ପରିବର୍ତ୍ତେ ଏକଛତ୍ରବାଦ ପ୍ରତିଷ୍ଠା କରିବାକୁ ଚାହାନ୍ତି ବୋଲି ସେମାନଙ୍କ ବାରମ୍ବାର ଆକ୍ଷେପ ଭୁଲ ପ୍ରମାଣିତ ହୋଇ ଯାଇଥିଲା । ସେ ପ୍ରମାଣିତ କରାଇ ଦେଇଥିଲେ ଯେ, ଭାରତ ଗୋଟିଏ ଗଣତାନ୍ତ୍ରିକ ରାଷ୍ଟ୍ରରୂପେ ତାର ସ୍ଥିତି ବଜାୟ ରଖିବା ଦିଗରେ ସେ ଥିଲେ ଅଧିକ ସଚେତନ । ତାହାର ଏକ ଜ୍ୱଳନ୍ତ ଉଦାହରଣ ଥିଲା ନିର୍ବାଚନରେ ତାଙ୍କର ପରାଜୟକୁ ସସମ୍ମାନରେ ସ୍ୱୀକାର କରିବା; ଜନତାର ରାୟକୁ ସର୍ବାଧିକ ଗୁରୁତ୍ୱ ଦେବା ।

ଶ୍ରୀମତୀ ଗାନ୍ଧୀ ଇସ୍ତଫା ଦେଇଥିଲେ । ଭାରତର ସ୍ୱାଧୀନତା ପ୍ରାପ୍ତି ପରଠାରୁ ପ୍ରଥମଥର ପାଇଁ କଂଗ୍ରେସ ଦଳ କେନ୍ଦ୍ର କ୍ଷମତାରୁ ଅପସରି ଯିବାପାଇଁ ବାଧ୍ୟ ହୋଇଥିଲା ।

ବର୍ଷିୟାନ୍ ନେତା ଶ୍ରୀ ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଜନତା ଦଳ ସି. ଏଫ୍. ଡି.ର ସହାୟତା କ୍ରମେ କେନ୍ଦ୍ରରେ ପ୍ରଥମଥର ଲାଗି ମନ୍ତ୍ରିମଣ୍ଡଳ ଗଠନ କରିଥିଲା । ଶ୍ରୀ ଚରଣ ସିଂହ କେନ୍ଦ୍ର ସରୋଜ ବିଭାଗର ଦାୟିତ୍ୱ ନେବାବେଳେ ଶ୍ରୀ ଏଲ୍. କେ. ଆଡ଼ଭାନି ତଥ୍ୟ ଓ ପ୍ରଚାର ବିଭାଗ, ଶ୍ରୀ ଅଟଳବିହାରୀ ବାଜପେୟୀ ବହିର୍ବ୍ୟାପାର ବିଭାଗ, ଶ୍ରୀ ଶାନ୍ତିଭୂଷଣ ଆଇନ ବିଭାଗ ତଥା ଅନ୍ୟମାନେ ଅନ୍ୟାନ୍ୟ ବିଭାଗର ପରିଚାଳନା ଦାୟିତ୍ୱ ନେଇଥିଲେ । ଦେଶର ଶାସନ ଦାୟିତ୍ୱ ଗ୍ରହଣ କରିଥିଲେ ମଧ୍ୟ ଜନସ୍ୱାର୍ଥ ତଥା ସାମୂହିକ ସ୍ୱାର୍ଥ ପାଇଁ କାର୍ଯ୍ୟ କରିବା ଦିଗରେ ସେମାନଙ୍କ ଭୂମିକା ଥିଲା ସମ୍ପୂର୍ଣ୍ଣରୂପେ ଗୌଣ । ଦେଶରେ ଓ ଦେଶ ବାହାରେ ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ ଅସଂଖ୍ୟ ଭିତ୍ତିହୀନ ଅଥଚ ରୋମାଞ୍ଚକର ଗୁଜବ ପ୍ରଚାର କରିବା ଓ କରାଇବା ଦିଗରେ ସେମାନେ ଥିଲେ ଅଗ୍ରଣୀ ।

ମାର୍ଚ୍ଚ ୨୩, ୧୯୭୭ ମସିହା ଦିନ ଜୟପ୍ରକାଶଙ୍କ ନେତୃତ୍ୱରେ ଜନତା ଦଳରେ ଯୋଗ ଦେବାକୁ ଥିବା ପ୍ରତ୍ୟେକ ନିର୍ବାଚିତ ପ୍ରତିନିଧି ରାଜଘାଟରେ ଗାନ୍ଧିଜୀଙ୍କ ସମାଧୀ ପୀଠରେ ଦଳୀୟ ଏକତା ବଜାୟ ରଖିବା ସଙ୍ଗେ ସଙ୍ଗେ ଦେଶରେ ଗଣତନ୍ତ୍ରର ସୁରକ୍ଷା କରି ଦେଶର ସେବା କରିବାପାଇଁ ଶପଥ ନେଇଥିଲେ । ଆନୁଷ୍ଠାନିକ ଭାବେ ୧୯୭୭ ମସିହା ମଇ ପହିଲା ତାରିଖ ଦିନ ଚାରୋଟି ରାଜନୈତିକ ଦଳର ସମ୍ମିଶ୍ରଣରେ ଜନତା ଦଳ ଗଠିତ ହୋଇଥିଲା ।

**ବିଭିନ୍ନ ଗୁଜବ :—**

୧୯୭୭ ନିର୍ବାଚନ ଫଳାଫଳ ଘୋଷଣା ହେବା ପରେ ପରେ ଯେତେବେଳେ ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ଆସନ ଛାଡ଼ିବା ଅପରିହାର୍ଯ୍ୟ ହୋଇ ପଡ଼ିଥିଲା, ଦେଶର ପ୍ରାୟ ସବୁ ପ୍ରାନ୍ତରରେ ବିଭିନ୍ନ ପ୍ରକାରର ଓ ଅସମ୍ଭବ ଧରଣର ଗୁଜବ ବହୁଭାବରେ ପ୍ରଚାରିତ ହୋଇଥିଲା । ସେସବୁ ଗୁଜବ ଜନତା ଦଳ ସରକାରରେ ରହିଥିବା ପର୍ଯ୍ୟନ୍ତ ପ୍ରାୟ ନୂତନ ନୂତନ ରୂପ ନେଇ ଆତ୍ମପ୍ରକାଶ କରୁଥିଲା ।

ପ୍ରଥମେ ଗୋଟିଏ ଗୁଜବ ଉଠିଥିଲା ଯେ ଶ୍ରୀମତୀ ଗାନ୍ଧୀ କୌଣସି ପ୍ରକାରେ ଦେଶର ଶାସନ କ୍ଷମତା ପରିତ୍ୟାଗ କରିବେ ନାହିଁ । ତେଣୁ ନିର୍ବାଚନରେ ପରାଜୟ ବରଣ କରିବା ପରେ ପରେ ସେ ଦେଶରେ ସାମରିକ ଶାସନ ଜାରି କରିବାପାଇଁ ମସୁଧା କରିଥିଲେ । ସେଥିପାଇଁ ତିନିବାହିନୀର ସେନାଧ୍ୟକ୍ଷମାନଙ୍କ ସହିତ ଖୁବ୍ କ୍ଷିପ୍ର ଭାବରେ ମନ୍ତ୍ରଣା କରିଥିଲେ । କିନ୍ତୁ ସେଭଳି ଗୁଜବର ଅବସାନ ମଧ୍ୟ ଖୁବ୍ ଚଞ୍ଚଳ ହୋଇଥିଲା । ତାପରେ ପ୍ରଚାର ଆରମ୍ଭ ହୋଇ ଯାଇଥିଲା ଯେ ଜନତାଦଳ କେନ୍ଦ୍ର ଶାସନରେ ଅଧିଷ୍ଠିତ ହେବା ପୂର୍ବରୁ ଶ୍ରୀମତୀ ଗାନ୍ଧୀ ସପରିବାରେ ଦେଶ ବାହାରର କୌଣସି ଏକ ଅଜ୍ଞାତ ସ୍ଥାନକୁ ଚାଲିଯିବା ପାଇଁ ମସୁଧା ଶେଷ ହୋଇ ଯାଇଥିଲା । ଦେଶବାସୀଙ୍କ ଅଜାଣତରେ କେତେବେଳେ ଦେଶ ଛାଡ଼ି ଚାଲିଯିବେ ତାର କୌଣସି ନିର୍ଦ୍ଦିଷ୍ଟତା ନ ଥିଲା । ଅନେକ ବୈଦେଶିକ ବ୍ୟାଙ୍କରେ ଶ୍ରୀମତୀ ଗାନ୍ଧୀ ଓ ତାଙ୍କର ପରିବାର ସ୍ୱଚ୍ଛନ୍ଦରେ ଚଳିପାରିବା ଭଳି ଅନେକ ଅର୍ଥ ସଞ୍ଚିତ ହୋଇ ରହିଥିବା କଥା ମଧ୍ୟ ତା' ସହିତ ପ୍ରଚାରିତ ହୋଇଥିଲା । କିନ୍ତୁ ତାହାର ମଧ୍ୟ କୌଣସି ଭିତ୍ତି ନ ଥିଲା । ପୁଣି ସେଇ ସ୍ୱଳ୍ପକାଳ ମଧ୍ୟରେ ଆଉ ଏକ ଗୁଜବକୁ ବାସ୍ତବ ମନେ କରାଇବା ପାଇଁ ଶ୍ରୀ ଧନିକଲାଲ ମଣ୍ଡଳ ପ୍ରକାଶ୍ୟରେ ଘୋଷଣା କରିଥିଲେ ଯେ ଶ୍ରୀମତୀ ଗାନ୍ଧୀଙ୍କ ଅନେକ କୁକାର୍ଯ୍ୟ ତାଙ୍କ ପରେ ପରେ ପ୍ରକାଶ ପାଇଯିବା ଆଶଙ୍କା କରି ସେ ପ୍ରାୟ ସାତଶହ ଫାଇଲ ଓ ସେଭଳି କେତେକ କାଗଜପତ୍ର ପୋଡ଼ି ପକାଇଥିଲେ । * କିନ୍ତୁ ସେଭଳି ଆକ୍ଷେପର ମଧ୍ୟ ସାମାନ୍ୟତମ ସତ୍ୟତା ନ ଥିଲା ।

---

* Indira Gandhi Returns—Khuswant Singh P—141

ସେହି ସମୟରେ କେତେକ ପତ୍ର ପତ୍ରିକା ଓ ପୁସ୍ତକ ମଧ୍ୟ ଶ୍ରୀମତୀ ଗାନ୍ଧୀ ଓ ତାଙ୍କ ପରିବାରର କୁତ୍ସାପ୍ରଚାର କରି ଲୋକଙ୍କ ମନରେ ଘୃଣାଭାବ ସୃଷ୍ଟି କରାଇବା ପାଇଁ ବିଭିନ୍ନ ପ୍ରକାରର ଚରମ ଆକ୍ଷେପମୂଳକ, ଭ୍ରାନ୍ତ ତଥ୍ୟପୂର୍ଣ୍ଣ ସମ୍ବାଦ ପ୍ରକାଶ କରିଥିଲେ । ସେ ସମ୍ପର୍କରେ ସାମ୍ବାଦିକ ଖୁସ୍‌ଓ୍ୱନ୍ତ ସିଂହ ତାଙ୍କ ପୁସ୍ତକରେ କିଛିଟା ଆଲୋକପାତ କରିଥିଲେ । ସେଥିରେ ସେ ଉଲ୍ଲେଖ କରିଥିଲେ ଯେ ବ୍ଲିଜ ପତ୍ରିକାରେ ଗୋଟିଏ ସମ୍ବାଦରେ ପ୍ରକାଶ ପାଇଥିଲା ଯେ ଶ୍ରୀ ଯଶପାଲ କପୁର ଶ୍ରୀମତୀ ଗାନ୍ଧୀଙ୍କ ପରିବାର ପାଇଁ କେତେଗୁଡ଼ାଏ ଥଳିରେ ଟଙ୍କା ଭର୍ତ୍ତିକରି ଶ୍ରୀଲଙ୍କା ଦେଇ ମରିଶସ ଯାଇଥିଲେ । ଉମା ବାସୁଦେବ ଇନ୍ଦିରା ଗାନ୍ଧୀଙ୍କ ଜୀବନୀ ସମ୍ପର୍କିତ ଗୋଟିଏ ଗ୍ରନ୍ଥରେ ଚମତ୍କାର ଘଟଣାଟିଏ ବର୍ଣ୍ଣନା କରିଥିଲେ । ସେଥିରେ ସେ ଉଲ୍ଲେଖ କରିଥିଲେ ଯେ ଗୋଟିଏ ଟୋଯୋଟା ଭେନ୍‌ରେ ଟଙ୍କା ଭର୍ତ୍ତିହୋଇ ଶ୍ରୀମତୀ ଗାନ୍ଧୀଙ୍କ ବାସଭବନରୁ ଏକ ଅଜଣା ସ୍ଥାନକୁ ଚାଲି ଯାଇଥିଲା । ୧୯୭୭ ମସିହା ଅକ୍ଟୋବର ୩୧ ତାରିଖ ଦିନ ଶ୍ରୀ ଚରଣ ସିଂହ ଗୋଟିଏ ବକ୍ତୃତାରେ ଉଲ୍ଲେଖ କରିଥିଲେ ଯେ ଶ୍ରୀମତୀ ଗାନ୍ଧୀ ତାଙ୍କର ଅର୍ଥସବୁ ନିରାପଦରେ ରଖିବା ଉଦ୍ଦେଶ୍ୟରେ ଦୁଇଟି ବୈଦେଶିକ ଦୂତାବାସର ସାହାଯ୍ୟ ନେଇଥିଲେ । †

କେନ୍ଦ୍ର ସରକାରଙ୍କ ସହିତ ସମ୍ପୃକ୍ତ ଜଣେ ନେତା ଏଭଳି ବକ୍ତୃତା ସାଧାରଣରେ ଦେବାଫଳରେ ତାହା ବହୁଳ ଭାବରେ ପ୍ରଚାରିତ ହେବା ସ୍ୱାଭାବିକ । ଦେଶର ପତ୍ର-ପତ୍ରିକାଗୁଡ଼ିକ ସେଭଳି ସମ୍ବାଦକୁ ପ୍ରାଧାନ୍ୟ ଦେଇ ପ୍ରକାଶ କରିଥିଲେ । ଜନତା ଓ ବି. ଜେ. ଡି. ଦଳର ପ୍ରାୟ ପ୍ରତ୍ୟେକ ସଭ୍ୟ ଶ୍ରୀମତୀ ଗାନ୍ଧୀଙ୍କ ପରିବାରର ପ୍ରତ୍ୟେକ ସଭ୍ୟଙ୍କ ସମେତ ତାଙ୍କ ସମର୍ଥକମାନଙ୍କୁ ଦେଶର ଜନଗଣଙ୍କ ନିକଟରେ ଅପମାନିତ କରାଇବାଲାଗି ଯଥାସାଧ୍ୟ ଉଦ୍ୟମ କରିଥିଲେ । ସଗଲ, ନିରୀହ ରାଜୀବଗାନ୍ଧୀଙ୍କ ପତ୍ନୀ ସୋନିଆଙ୍କ ନାମରେ ଅପବାଦର କଳଙ୍କ ବୋଳି ଦିଆଯାଇଥିଲା ଯେ, ସେ ତାଙ୍କ ନିଜ ଦେଶ ଇଟାଲିରେ ଅନେକଗୁଡ଼ିଏ ବଡ଼ ବଡ଼ ହୋଟେଲ୍ ନିର୍ମାଣ କରୁଥିଲେ ଏବଂ କେତେକ କ୍ରୟ କରି ସାରିଥିଲେ ମଧ୍ୟ । ୧୯୭୭ ମସିହା ଜୁଲାଇ ମାସ ତାରିଖ ଦିନ ଷ୍ଟେଟସ୍‌ମ୍ୟାନ୍ ଓ ଇଣ୍ଡିଆନ୍ ଏକ୍‌ସପ୍ରେସ (ଦିଲ୍ଲୀ ସଂସ୍କରଣ) ରେ ପ୍ରଥମ ପୃଷ୍ଠାରେ ବେର୍ଣ୍ଣେ କେଣ୍ଟୋନେଲ୍ ବେଙ୍କ୍ (cantonal Bank of Berne) ଦ୍ୱାରା ଦିଆଯାଇଥିବା ଗୋଟିଏ ଡ୍ରାଫ୍‌ଟର ଫଟୋଚିତ୍ର ପ୍ରକାଶ ପାଇଥିଲା । ସେଥିରେ ସଞ୍ଜୟ ଗାନ୍ଧୀ ୧୫,୦୦୦ ଫରାସୀ ମୁଦ୍ରା ଫ୍ରାଙ୍କ୍ ନିଜ ହିସାବରୁ ବାଦଦେଇ ତାଙ୍କ ସ୍ତ୍ରୀ ମେନକାଙ୍କ ହିସାବରେ ମିଶାଇ ଦେବାପାଇଁ ବ୍ୟବସ୍ଥା କରିଥିଲେ ବୋଲି ଆକ୍ଷେପମୂଳକ ବ୍ୟଞ୍ଜନାପୂର୍ଣ୍ଣ ବିବରଣୀ-ମାନ ପ୍ରକାଶ ପାଇଥିଲା । ସେଭଳି ସମ୍ବାଦରେ ଯେ କୌଣସି ସାଧାରଣ ଲୋକ

† Ibid—PP—144

ସନ୍ଦେହ ନ କରିବା ପାଇଁ ଅବକାଶ ରହି ନ ଥିଲା । କେବଳ ତାକୁ ହିଁ ଭିତ୍ତି କରି ମେନକାଙ୍କ ବିଦେଶଗସ୍ତ ପାସ୍‌ପୋର୍ଟ ସବୁ ରଦ୍ଦକରି ଦିଆଯାଇଥିଲା ଓ ପାର୍ଲ୍ୟାମେଣ୍ଟରେ ମଧ୍ୟ ସେଇ ବିଷୟ ପ୍ରସଙ୍ଗରେ ଦୀର୍ଘ ଏକଘଣ୍ଟା କାଳ ସରଗରମ ଆଲୋଚନା ହୋଇଥିଲା । କିନ୍ତୁ ସବୁଠାରୁ ପରମ କୌତୁହଳର ବିଷୟ ଯେ ସେ ସମ୍ବାଦ ମିଥ୍ୟାବୋଲି ପରେ ପରେ ପ୍ରମାଣିତ ହୋଇ ଯାଇଥିଲା ।

କେନ୍ଦ୍ରରେ ଜନତା ସରକାର ଗଠିତ ହେବା ପରେ ପରେ ଦେଶର ରାଜନୈତିକ ପରିବେଶ ଓ ମୁଖ୍ୟତଃ ସାମ୍ବାଦିକତା କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ସଂଗଠିତ ହୋଇଥିଲା । ଯେଉଁ ସମ୍ବାଦପତ୍ରଗୁଡ଼ିକ ଆଜୀବନ ନେହେରୁ ପରିବାରର ପ୍ରଶଂସାରେ ଶତମୁଖ ଥିଲେ, ସେମାନେ ମଧ୍ୟ ରାତାରାତି ସ୍ୱର ବଦଳାଇ ଦେଇଥିଲେ । ଅନେକ ପ୍ରମୁଖ ନେତା ଶ୍ରୀମତୀ ଗାନ୍ଧୀଙ୍କ ପରିବାର ସହ ସମ୍ପର୍କ ନ ରଖିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ସମ୍ବାଦପତ୍ରମାନଙ୍କରେ ଶ୍ରୀମତୀ ଗାନ୍ଧୀ ଓ ବିଶେଷକରି ସଞ୍ଜୟ ଗାନ୍ଧୀଙ୍କ ବିରୁଦ୍ଧରେ ଅନେକ ଆକ୍ଷେପମୂଳକ ତଥା ବିଭିନ୍ନ ତଥ୍ୟ ସମ୍ବଳିତ ଅଥଚ ଭିତ୍ତିହୀନ ସମ୍ବାଦ ପ୍ରକାଶ ପାଉଥିଲା ଦେଶର ଜନସାଧାରଣଙ୍କୁ ବିଭ୍ରାନ୍ତ କରାଇବା ପାଇଁ । ଜରୁରୀ କାଳର ବିଭିନ୍ନ ଘଟଣାକୁ ତଥା ସରକାରୀ ପଦକ୍ଷେପକୁ ବିରୋଧ କରି ଅନେକଗୁଡ଼ିଏ ପୁସ୍ତକ ରଚନା କରାଯାଇଥିଲା ଏବଂ ଦେଶର ସାଂସ୍କୃତିକ କ୍ଷେତ୍ରରେ ସେହି କେତେ-ଦିନ ଧରି ତାହାହିଁ ଥିଲା ଏକ ମୁଖ୍ୟ ବିଭବ । ଅନେକ ସ୍ଥଳରେ ଶ୍ରୀମତୀ ଗାନ୍ଧୀଙ୍କ ସମେତ ସଞ୍ଜୟଙ୍କ ଚରିତ୍ର ସହାର କରାଯାଇ ବିଭିନ୍ନ ମିଥ୍ୟା, ଆକ୍ରୋଶମୂଳକ ଓ ଅତିରଞ୍ଜିତ ତଥ୍ୟ ସବୁ ପ୍ରକାଶ ପାଉଥିଲା । କେବଳ ଭାରତରେ କାହିଁକି, ଭାରତ ବାହାରେ ମଧ୍ୟ ଶ୍ରୀ କୁଲଦୀପ୍ ନାୟାର୍‌ଙ୍କ "ଜଜ୍‌ମେଣ୍ଟ", ଜନାର୍ଦ୍ଦନ ଠାକୁରଙ୍କ "ଅଲ୍ ଦ ପ୍ରାଇମ୍ ମିନିଷ୍ଟରସ୍‌ମେନ୍", ଉମା ବାସୁଦେବଙ୍କ "ଟୁ ଫେସେସ୍ ଅଫ୍ ଇନ୍ଦିରା ଗାନ୍ଧୀ" ପ୍ରଭୃତି ଗ୍ରନ୍ଥଗୁଡ଼ିକ ବହୁଳ ଭାବରେ ବିକ୍ରି ହୋଇଥିଲା । ସାମ୍ବାଦିକ ଶ୍ରୀ କୁଲଦୀପ ନାୟାର୍ ତାଙ୍କର ସେହି ଗ୍ରନ୍ଥ ପାଇଁ ଖୁବ୍ କମ୍ ସମୟର ବ୍ୟବଧାନ ମଧ୍ୟରେ ଉଲ୍ଲେଖଯୋଗ୍ୟ ଅର୍ଥ ରୟାଲଟି ହିସାବରେ ଲାଭ କରିଥିଲେ ।

## କମିଶନ ଓ କମିଶନ୍ :—

କେବଳ ସେଭଳି ଗୁଜବ ପ୍ରଚାର ଓ ପ୍ରକାଶ ଦୃଷ୍ଟିରୁ ନୁହେଁ, ଜନତା ସରକାର ଦେଶର ନେତୃତ୍ୱ ଗ୍ରହଣ କରିବା ପରମୁହୂର୍ତ୍ତରୁ ହିଁ ପୂର୍ବତନ ପ୍ରଧାନମନ୍ତ୍ରୀ ଓ ତାଙ୍କର ପରିବାରର ଅନ୍ୟାନ୍ୟ ସଦସ୍ୟ ତଥା ତାଙ୍କର ସମର୍ଥକମାନଙ୍କୁ ବିଭିନ୍ନ ଭାବରେ ହାଇରାଣ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରତି ଜନସାଧାରଣଙ୍କ ମାନ-ମର୍ଯ୍ୟାଦା ଏବଂ ଆସ୍ଥା ସମ୍ପୂର୍ଣ୍ଣରୂପେ କ୍ଷୁଣ୍ଣ କରାଇବା ଦିଗରେ ଯତ୍ପରୋନାସ୍ତି ଉଦ୍ୟମ କରିଥିଲେ ।

ଦେଶରେ ଜରୁରୀ ଅବସ୍ଥା ଜାରି କରାଯାଇଥିବା କାଳରେ କ୍ଷମତାର ଅପପ୍ରୟୋଗ ଯଥେଷ୍ଟ ଭାବେ କରାଯାଇଥିଲା ବୋଲି ଜନତା ସରକାର ଅନୁଭବ କରି ତାର ଯଥାର୍ଥ୍ୟ ଅନୁସନ୍ଧାନ କରିବାପାଇଁ କେତେଗୁଡ଼ିଏ କମିଶନ୍ ନିଯୁକ୍ତ କରିଥିଲେ । ତନ୍ମଧ୍ୟରୁ ମୁଖ୍ୟ ଥିଲା ସାହା କମିଶନ୍ । ଦିଲ୍ଲୀର ପାଟିଆଲା ହାଉସ୍‌ରେ ସାହା କମିଶନ୍ ବୈଠକ ବସୁଥିଲା । ଯେଉଁଦିନ ଶ୍ରୀମତୀ ଗାନ୍ଧୀ କିମ୍ବା ସଞ୍ଜୟଙ୍କୁ କମିଶନଙ୍କ ଇଜଲାସ୍‌ରେ ହାଜର ହେବାପାଇଁ ଜଷ୍ଟିସ୍ ସାହା ସମନ ଜାରି କରୁଥିଲେ, ସେହି ସେହି ଦିନଗୁଡ଼ିକରେ ଉକ୍ତ କୋଠି ବାହାରେ ୧୪୪ ଧାରା ଜାରି କରାଯାଉ-ଥିଲା । ଅଧିକାଂଶ ସମୟରେ ମାତା ଓ ପୁତ୍ରଙ୍କୁ ଦର୍ଶକ ଗ୍ୟାଲେରୀରୁ ଝୁଦ୍ ତୁଚ୍ଛ ତାଚ୍ଛଲ୍ୟ ପ୍ରଦର୍ଶନ କରାଯାଉଥିଲା ।

ଦ୍ୱିତୀୟଥର ପାଇଁ ସାହା କମିଶନ୍ କୋଠରୀରେ ସଞ୍ଜୟ ପ୍ରବେଶ କଲାବେଳର ଅଭିଜ୍ଞତା ବର୍ଣ୍ଣନା କରି ସାମ୍ବାଦିକ ଖୁସ୍‌ୱନ୍ତ ସିଂ ଲେଖିଥିଲେ ଯେ, ସେମାନେ ସେଠାରେ ପହଞ୍ଚିଲା ବେଳକୁ "କଚେରୀ ଘରର ଦର୍ଶକମାନଙ୍କ ଲାଗି ଉଦ୍ଦିଷ୍ଟ ସ୍ଥାନ ସବୁ ସମ୍ପୂର୍ଣ୍ଣରୂପେ ପୂରି ଯାଇଥିଲା । ବିଭିନ୍ନ ପ୍ରକାରର ବିକୃତ ଶବ୍ଦ, ବିଲେଇର ମିଆଁଉ ମିଆଁଉ ବୋବାଳି ତଥା ଅଭଦ୍ର ପଦାବଳୀ ବ୍ୟବହାର କରାଯାଇ ସେହି କଚେରୀ ଘରକୁ ସଞ୍ଜୟଙ୍କୁ ସ୍ୱାଗତ କରାଯାଇଥିଲା ।" ସେଇ କେତେଦିନ ଯେଭଳି ଜନତା ସରକାରଙ୍କ ମୁଖ୍ୟ କାର୍ଯ୍ୟ ଥିଲା ଶ୍ରୀମତୀ ଗାନ୍ଧୀ, ସଞ୍ଜୟ, ତାଙ୍କ ପରିବାର ତଥା ସମର୍ଥକମାନଙ୍କୁ ଅପମାନିତ କରାଇବା; ଜନସାଧାରଣଙ୍କ ସମ୍ମୁଖରେ ସେମାନଙ୍କ ଭାବମୂର୍ତ୍ତି ସମ୍ପୂର୍ଣ୍ଣ ଧୂଳିସାତ୍ କରାଇ ଦେବା ।

ଜଣେ ଜାତୀୟ ନେତା ହିସାବରେ ତାଙ୍କର ଅସ୍ତିତ୍ୱ ସମ୍ପୂର୍ଣ୍ଣରୂପେ ବିଲୋପ କରିଦେବା ପାଇଁ ସାମୂହିକ ଭାବେ ତଥା ବ୍ୟକ୍ତିଗତ ଭାବେ ମଧ୍ୟ ସେମାନେ ଚେଷ୍ଟା କରିଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ସମେତ ସଞ୍ଜୟ ଓ ମେନକାଙ୍କ ପାସପୋର୍ଟଗୁଡ଼ିକୁ ରଦ୍ଦ କରି ଦିଆଯାଇଥିଲା । ତା ଫଳରେ ଜନସାଧାରଣଙ୍କ ମନରେ ଧାରଣା ସୃଷ୍ଟି କରାଇ ଦିଆଯାଇଥିଲା ଯେ, ସେମାନେ ଦେଶ ଛାଡ଼ି ଚାଲିଯିବା ପାଇଁ ଯେଉଁ ଯୋଜନା କରିଥିଲେ (ତାହା ମଧ୍ୟ ପରିକଳ୍ପିତ), ସେହି ସୁଯୋଗକୁ ପଣ୍ଡ କରାଇ ଦିଆଯାଇଥିଲା । ଶ୍ରୀମତୀ ଗାନ୍ଧୀ ଓ ତାଙ୍କ ପରିବାରର ସମସ୍ତଙ୍କ ଟେଲିଫୋନ୍ ବାର୍ତ୍ତାଳାପକୁ ରେକର୍ଡ଼ କରାଯାଉଥିଲା । ଖୁବ୍ କମ୍ ସମୟର ବ୍ୟବଧାନ ମଧ୍ୟରେ ସରକାରୀ ବାସଭବନ ତ୍ୟାଗ କରିବାପାଇଁ ଏକାଧିକବାର ନୋଟିସ୍‌ମାନ ଦିଆଯାଇଥିଲା । ସେମାନେ ଯେତେବେଳେ ଯେଉଁଠାକୁ ଯାଉଥିଲେ, ସାଦା ପୋଷାକଧାରୀ ପୋଲିସ୍ ସେମାନଙ୍କୁ ଅନୁସରଣ କରୁଥିଲେ ଓ ସେମାନଙ୍କ ନିକଟକୁ ମଧ୍ୟ ଯେଉଁମାନେ ଆସୁଥିଲେ ତାର ସମ୍ପୂର୍ଣ୍ଣ ବିବରଣୀ ମଧ୍ୟ କେନ୍ଦ୍ର ନେତୃବୃନ୍ଦଙ୍କ ନିକଟରେ ପହଞ୍ଚୁଥିଲା ।

ଜରୁରୀ ଅବସ୍ଥା କାଳରେ ଜଣେ ତୁଙ୍ଗନେତା ଭାବେ ସ୍ୱୀକୃତ ଲାଭ କରିଥିବା ସଞ୍ଜୟଙ୍କ ନାମରେ ଦେଶର ବିଭିନ୍ନ ସ୍ଥାନରେ ଏକ ସମୟରେ ପ୍ରାୟ ୩୬ଟି ଫୌଜଦାରୀ କେଶ୍ ଦାୟର୍ କରାଯାଇଥିଲା । ଶ୍ରୀମତୀ ଗାନ୍ଧୀ, ତାଙ୍କ ପରିବାରର ସଦସ୍ୟ ତଥା ତାଙ୍କ ସମର୍ଥକମାନଙ୍କୁ ବେଳେବେଳେ ସେଇ ଏକା ଦିନରେ ଏକାଧିକ ସ୍ଥାନରେ ବିଚାର ବିଭାଗୀୟ କଚେରୀରେ ଉପସ୍ଥିତ ରହିବାପାଇଁ ସମନ ମଧ୍ୟ ଜାରି କରାଯାଇଥିଲା । କେନ୍ଦ୍ର ସମେତ ଦେଶର ବିଭିନ୍ନ ଅଞ୍ଚଳରେ ସେମାନଙ୍କ ବିରୁଦ୍ଧରେ ୪୮ଟି ତଦନ୍ତ କମିଶନ ନିଯୁକ୍ତ କରାଯାଇଥିଲା । ସେଥିପାଇଁ ସ୍ୱାଭାବିକ ଭାବେ ଅଧିକ କର୍ମଚାରୀ ଆବଶ୍ୟକ ପଡ଼ୁଥିଲେ । ତେଣୁ ଯଥେଷ୍ଟ ସଂଖ୍ୟକ ଉଚ୍ଚ ପଦାଧିକାରୀ କର୍ମଚାରୀଙ୍କୁ ନିଯୁକ୍ତ କରାଯାଇଥିଲା କମିଶନ୍‌ଗୁଡ଼ିକୁ ଗତିଶୀଳ କରାଇବା ଲାଗି ବିଭିନ୍ନ ତଥ୍ୟ ସଂଗ୍ରହ ପାଇଁ ।

ଜନତା ସରକାର ଶ୍ରୀମତୀ ଗାନ୍ଧୀ ଓ ତାଙ୍କର ସମର୍ଥକମାନଙ୍କୁ ଜର୍ମାନୀର ନାଜୀ ସରକାରଙ୍କ ସହ ତୁଳନା କରି ସେମାନେ ହିଟଲର୍‌ଙ୍କଠାରୁ ଅଧିକ ଏକଛତ୍ରବାଦୀ ବୋଲି ପ୍ରଖ୍ୟାପିତ କରିଥିଲେ । ବିଗତ ବର୍ଷମାନଙ୍କରେ ସରକାରୀ କାର୍ଯ୍ୟାବଳୀର ଅନୁଧ୍ୟାନ କରିବାପାଇଁ କେତେଗୁଡ଼ିଏ ତଦନ୍ତ କମିଶନ୍ ନିଯୁକ୍ତ ହୋଇଥିଲେ । ହାସପାତାଳରେ ଜୟପ୍ରକାଶଙ୍କୁ ଇଚ୍ଛାକୃତ ଭାବରେ ହିଇରାଣ ହରକତ କରିବା ସମ୍ପର୍କରେ ଅନୁଧ୍ୟାନ କରିବାପାଇଁ ୧୯୭୭ ଅପ୍ରେଲ୍ ୨ୟ ତାରିଖରେ ଡାଃ ପି. କୋଷୀ କମିଶନ ନିଯୁକ୍ତ ହୋଇଥିଲେ । ଜଷ୍ଟିସ୍ ଜେ. ସି. ସାହା ୧୯୭୭ ମଇ ୧୯ ତାରିଖରେ ନିଯୁକ୍ତ ହୋଇଥିଲେ ବିଭିନ୍ନ ପ୍ରକାର କାର୍ଯ୍ୟକ୍ରମରେ ସରକାରୀ ଅପବ୍ୟବହାରର ଅନୁସନ୍ଧାନ କରିବାପାଇଁ । ସେହିଭଳି ଆଉ ଏକ କମିଶନ ତାର ଦୁଇଦିନ ପରେ ନିଯୁକ୍ତ ହୋଇଥିଲେ ସି. କେ. କେ. ଦାସଙ୍କ ଅଧିନାୟକତ୍ୱରେ । ପୁଣି ତାର ଆଉ ଦୁଇଦିନ ପରେ ଜଷ୍ଟିସ୍ ଗ୍ରୋଭର୍ ଶ୍ରୀ ଦେବରାଜ ଅର୍ସଙ୍କ ବିରୁଦ୍ଧରେ ଏବଂ ତାର ଦୁଇଦିନ ପରେ ଜଷ୍ଟିସ୍ ମାଥୁର ମାରୁତି କମ୍ପାନୀ ବିରୁଦ୍ଧରେ ଅନୁଧ୍ୟାନ କରିବାପାଇଁ କମିଶନ ନିଯୁକ୍ତ ହୋଇଥିଲେ ।

ସେହି ଗୀତରେ ସଞ୍ଜୟ ଗାନ୍ଧୀ ବିମାନରେ ଯାତ୍ରା କଲାବେଳେ ପାଇଲଟ୍‌ଙ୍କ ସ୍ଥାନରେ ବସିଥିଲେ କି ନାହିଁ ସେଥିପାଇଁ ଚୌଲିୟାକମିଶନ ଡିସେମ୍ବର ୧୯୭୭ରେ ଗଠିତ ହୋଇଥିଲା । ଜଗମୋହନ କମିଶନ୍ ଜୁନ୍ ମାସରେ ନିଯୁକ୍ତ ହୋଇଥିଲେ ନଗରୱାଲ କେସ୍ ଅନୁସନ୍ଧାନ ପାଇଁ । ଜୁଲାଇ ଓ ଅଗଷ୍ଟ ମାସରେ ସେହିଭଳି ଆହୁରି କେତେକ କମିଶନ୍ ମଧ୍ୟ ନିଯୁକ୍ତ କରାଯାଇଥିଲା ।

ଦୀର୍ଘ ଦଶବର୍ଷ ତଳେ ୧୯୬୬ ମସିହାରେ ସ୍ୱାସ୍ଥ୍ୟଗତ କାରଣରୁ ହସ୍‌ପିଟାଲ୍‌ରେ ମୃତ୍ୟୁବରଣ କରିଥିବା ଡଃ ଲୋହିଆଙ୍କ ମୃତ୍ୟୁ ରହସ୍ୟ ଅନୁଧ୍ୟାନ କରିବାପାଇଁ ମଧ୍ୟ ଗୋଟିଏ ଦୁଇଜଣିଆ କମିଶନ୍ ନିଯୁକ୍ତ ହୋଇଥିଲେ । ଉଭୟ

ଥିଲେ ଜଣେ ଜଣେ ଡାକ୍ତର । କେବଳ ଦିଲ୍ଲୀରେ ବନ୍ଧ୍ୟାକରଣଜନିତ ବାଧ୍ୟ-ବାଧକତା ଅନୁଷ୍ଠାନ କରିବାପାଇଁ ମଧ୍ୟ ଆଉ ଗୋଟିଏ କମିଶନ ନିଯୁକ୍ତ ହୋଇଥିଲା ।

ବିଭିନ୍ନ ତଦନ୍ତକାରୀ କମିଶନର କାର୍ଯ୍ୟାବଳୀ ସମ୍ପର୍କରେ ତଥା କମିଶନ-ଗୁଡ଼ିକ ନିକଟରେ ଉପସ୍ଥାପିତ ହେଉଥିବା ଚମତ୍କାର ଓ ଲୋମହର୍ଷଣକାରୀ ତଥ୍ୟାବଳୀ ସରକାରଙ୍କ ତରଫରୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଭାବେ ବିଜ୍ଞାପିତ ହେଉଥିଲା ।

ତା ସଙ୍ଗେ ସଙ୍ଗେ ମଧ୍ୟ ଆରମ୍ଭ ହୋଇ ଯାଇଥିଲା ବ୍ୟାପକ ଗିରଫଦାରୀ । ବିଗତ ସରକାରର ମୁଖ୍ୟ ସମର୍ଥକମାନଙ୍କ ସମେତ ଶ୍ରୀମତୀ ଗାନ୍ଧୀଙ୍କୁ କିଭଳି ଭାବରେ ଗିରଫ କରାଯିବ ତାହାହିଁ କିଛିକାଳ ପାଇଁ ଜନତା ସରକାରର ମୁଖ୍ୟ ବିଷୟ ହୋଇ ପଡ଼ିଥିଲା । ଯଦିଓ ଦେଶର ବିଭିନ୍ନ ପ୍ରାନ୍ତରରୁ ପି. ସି. ସେଠୀ, ଶ୍ରୀମତୀ ନନ୍ଦିନୀ ଶତପଥୀ, ଯଶପାଲ କାପୁର, ବଂଶୀଲାଲ, ଜ୍ଞାନୀ ଜୈଲ ସିଂହ, ଏନ୍. ଡି. ତିଓ୍ୱାରୀ, ଭି. ସି. ଶୁକ୍ଳ ପ୍ରମୁଖଙ୍କ ସମେତ ହଜାର ହଜାର ସଂଖ୍ୟକ ଗାନ୍ଧୀ ସମର୍ଥକଙ୍କୁ ଅପମାନଜନକ ଭାବେ ଗିରଫ କରାଯାଇଥିଲା, ତଥାପି ଶ୍ରୀମତୀ ଗାନ୍ଧୀ ହିଁ ଥିଲେ ସେମାନଙ୍କ ମୁଖ୍ୟ ଲକ୍ଷ୍ୟ ।

୩ ଅକ୍ଟୋବର ୧୯୭୭ ମସିହାରେ ଗାନ୍ଧୀଙ୍କୁ ଗିରଫ କରାଯାଇଥିଲା । କିନ୍ତୁ ବିଚାରପତି ମହୋଦୟ ତାଙ୍କ ପ୍ରତି ହୋଇଥିବା ଅଭିଯୋଗର କୌଣସି ଯଥାର୍ଥତା ଉପଲବ୍ଧି କରି ନ ପାରି ତତ୍ପରଦିନ ବିନା ସର୍ତ୍ତରେ ଶ୍ରୀମତୀ ଗାନ୍ଧୀଙ୍କୁ ମୁକ୍ତ କରି ଦେଇଥିଲେ । କିନ୍ତୁ ଯେଉଁଭଳି ଅସମ୍ମାନଜନକ ଭାବରେ ଜନତା ସରକାରଙ୍କ ଅଭିଳାଷ ପୂରଣ କରାଯାଇଥିଲା, ତାହା ଦେଶର ଜନଗଣଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

ନିର୍ଦ୍ଦୋଷରେ ଶ୍ରୀମତୀ ଗାନ୍ଧୀଙ୍କୁ କୋର୍ଟ ଖଲାସ କରିଦେବା ପରେ ଜନତା ନେତୃବୃନ୍ଦଙ୍କ ମୁହଁରେ କାଳିମା ବୋଳି ହୋଇ ଯାଇଥିଲା ଯେମିତି । ତେଣୁ କୌଣସିମତେ ଯେ ତାହାଙ୍କୁ ଜେଲ୍ ଭିତରକୁ ପଠାଇବାକୁ ହେବ, ସେଥିପାଇଁ ସେମାନଙ୍କ ମଧ୍ୟରୁ ଅନେକେ ବ୍ୟାକୁଳ ଓ ବ୍ୟଗ୍ର ହୋଇ ଉଠିଥିଲେ । ତେଣୁ ଲୋକସଭାର ଆଶ୍ରୟ ନେଇଥିଲେ । ସେଠାକୁ କୋର୍ଟ କଚେରୀର ପ୍ରବେଶ ଅଧିକାର ନ ଥିଲା । ତେଣୁ ଲୋକସଭାର ବିଶେଷାଧିକାର କମିଟିର ସୁପାରିଶ କ୍ରମେ ପୁଣି ୧୯୭୭ ମସିହା ନଭେମ୍ବର ୨୧ ତାରିଖ ଦିନ ତାହାଙ୍କୁ ଗିରଫ କରାଯାଇ ତିହାର ଜେଲ୍‌ରେ ରଖା ଯାଇଥିଲା । ମାତ୍ର କେତେ ଦିନର ରହଣି ପରେ ୨୬ ତାରିଖ ଦିନ ସେଠାରୁ ଖଲାସ ହୋଇଥିଲେ ।

ତାହାହିଁ ଜନତା ସରକାର ପତନର ଏକ ପ୍ରଧାନ କାରଣ ହୋଇଥିଲା । ଉଲ୍ଲେଖଯୋଗ୍ୟ ଯେ ସେଇ ଜେଲର ରୁଦ୍ଧ କୋଠରୀ ହିଁ ଦିନେ ଶ୍ରୀମତୀ ଗାନ୍ଧୀଙ୍କର

ମଧ୍ୟ ପତନର କାରଣ ହୋଇଥିଲା । ଜରୁରୀ ଅବସ୍ଥା କାଳରେ ଜେଲ୍ ଭିତରେ ଆବଦ୍ଧ ଥିବାବେଳେ ଜନତା ଦଳ ଗଠନ ସମ୍ଭବ ହୋଇଥିଲା ଏବଂ ସମସ୍ତ ବିରୋଧୀଦଳଙ୍କୁ ସଙ୍ଗଠିତ କରାଇବା ପାଇଁ ଅପୂର୍ବ ସୁଯୋଗ ଆଣି ଦେଇଥିଲା । ସେମାନେ ଜେଲ୍‌ରୁ ମୁକ୍ତ ହେବା ପରେ ପରେ କଂଗ୍ରେସ (ଇ) ଦଳ କେନ୍ଦ୍ରରୁ ସ୍ଥାନଚ୍ୟୁତ ହୋଇଥିଲା । ଠିକ୍ ସେହିଭଳି ଶ୍ରୀମତୀ ଗାନ୍ଧୀ ଦୁଇଥରରେ ମାତ୍ର ସ୍ୱଳ୍ପୋକ୍ତି ଦିନର କାରାବାସ ଘଟଣା ଜନତା ଦଳକୁ କେନ୍ଦ୍ରରୁ ପରାଜିତ କରିବାପାଇଁ ସମର୍ଥ ହୋଇଥିଲା ।

**କଂଗ୍ରେସ (ଇ) ଦଳ ବିସର୍ଜନ :—**

୧୯୭୭ ମାର୍ଚ୍ଚ ନିର୍ବାଚନରେ ଶ୍ରୀମତୀ ଗାନ୍ଧୀଙ୍କର ପରାଜୟର ମୁଖ୍ୟ କାରଣ ଥିଲା ତତ୍ପୂର୍ବବର୍ତ୍ତୀ ଦୀର୍ଘ ୧୯ ମାସ ଧରି ଦେଶରେ ଜରୁରୀ ଅବସ୍ଥା ପ୍ରବର୍ତ୍ତନ । ସେତେବେଳେ ତାଙ୍କର ଜଣେ ଘନିଷ୍ଠ ସମର୍ଥକ ଖୁସ୍‌ୱନ୍ତ ସିଂହଙ୍କ ମତରେ "ସେ (ଶ୍ରୀମତୀ ଗାନ୍ଧୀ) ୧୯ ମାସ ପାଇଁ ଅନ୍ୟମାନଙ୍କର ଉପଦେଶ ଗ୍ରହଣ କରି ଦେଶକୁ ପ୍ରାୟ ଜଣେ ଏକଛତ୍ରବାଦୀ ଭଳି ଶାସନ କରିଥିଲେ । କିନ୍ତୁ ଯେଉଁମାନଙ୍କ ଉପଦେଶ ସେ ଗ୍ରହଣ କରୁଥିଲେ, ସେମାନଙ୍କ ମଧ୍ୟରୁ ଅନେକେ ସେଥିପାଇଁ ଥିଲେ ଅଯୋଗ୍ୟ । ଜରୁରୀ ଅବସ୍ଥା କୋହଳ କରାଯିବା ପରେ ହିଁ ସେକଥା ସେ ନିଜେ ମଧ୍ୟ ଅନୁଭବ କରିପାରିଥିଲେ ।" † ତାହା ଜନସାଧାରଣଙ୍କ ମଧ୍ୟରେ ଗଭୀର ଅସନ୍ତୋଷ ସୃଷ୍ଟି କରିବା ପାଇଁ ସମର୍ଥ ଥିଲା । କାରଣ ସେହି ସମୟ ମଧ୍ୟରେ "ଅନେକଗୁଡ଼ିଏ ଜନସ୍ୱାର୍ଥ ବିରୋଧୀ କାର୍ଯ୍ୟ ସରକାରୀ ସ୍ତରରେ କରାଯାଇଥିଲା । ସେଗୁଡ଼ିକ ମଧ୍ୟରେ ଅବଗୃହ ଭାବରେ ଗିରଫ କରିବା, ଗିରଫ ହେବା ପରେ ପରେ ନିୟମାନୁଯାୟୀ କୋର୍ଟରେ ହାଜର ନ କରାଇବା, ସମ୍ବାଦପତ୍ରର ସ୍ୱାଧୀନତା ଉପରେ ହସ୍ତକ୍ଷେପ କରିବା, ପ୍ରମୁଖ ସଂସ୍ଥାଗୁଡ଼ିକ ଉପରେ ବିଭିନ୍ନ ନିୟନ୍ତ୍ରଣ ଜାରି କରିବା ପ୍ରଭୃତି ପ୍ରଧାନ ଥିଲା ।"*

ଜରୁରୀ କାଳରେ ଶ୍ରୀମତୀ ଗାନ୍ଧୀଙ୍କ ବିଭିନ୍ନ ପଦକ୍ଷେପକୁ ଦୃଢ଼ ଭାବରେ ସମର୍ଥନ କରୁଥିଲେ ମନ୍ତ୍ରୀମଣ୍ଡଳର ସଦସ୍ୟ ବୃନ୍ଦ ଏବଂ ଦୃଢ଼ ଭାବରେ ତାଙ୍କୁ ସେଥିପାଇଁ ନୈତିକ ସାହସ ମଧ୍ୟ ଦେଉଥିଲା କଂଗ୍ରେସ (ଇ) ଦଳ । ବିଭିନ୍ନ ସମୟରେ ତାଙ୍କୁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ପ୍ରତ୍ୟେକେ ସେମାନଙ୍କ ସ୍ତରରେ କିଭଳି ଭାବରେ ବିଭିନ୍ନ ପ୍ରସ୍ତାବ ଓ ଯୋଜନାକୁ କାର୍ଯ୍ୟକାରୀ କରାଯାଇ ପାରିବ, ସେଥିପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରୁଥିଲେ । ତାହା ହୋଇ ନ ଥିଲେ ତଥା-

---

† & * Indira Gandhi Returns —PP—113 - 129

କଥିତ ଆକ୍ଷେପିତ ସୀମାତିରିକ୍ତ ଓ ବେଆଇନମୂଳକ କାର୍ଯ୍ୟଗୁଡ଼ିକ ହୁଏତ ସମ୍ଭବପର ହୋଇ ନ ଥାନ୍ତା ।

ଯେଉଁମାନଙ୍କ ସାହାଯ୍ୟ, ସହଯୋଗ ଓ ସମର୍ଥନ ନେଇ ଦେଶରେ ଜରୁରୀ ଅବସ୍ଥା ଜାରି କରାଯାଇଥିଲା, ସେହିମାନେ ହିଁ ଶ୍ରୀମତୀ ଗାନ୍ଧୀ କ୍ଷମତାଚ୍ୟୁତ ହେବା ପରେ ପରେ ତାଙ୍କୁ ଏକାକୀ କରି ଛାଡ଼ି ଚାଲି ଯାଇଥିଲେ । ୧୯୬୯ ମସିହାରେ ଦଳ ବିଭାଜନ ପରେ ପରେ ୧୯୭୭ର ବିଭାଜନ କଂଗ୍ରେସ (ଇ) ଦଳ ପାଇଁ ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଦଳର ଉଚ୍ଚ ନେତୃବୃନ୍ଦଙ୍କ ମଧ୍ୟରୁ ଶ୍ରୀ ଓ୍ୱାଇ. ଭି. ଚଭନ୍‌ଙ୍କ ନେତୃତ୍ୱରେ ସ୍ୱରଣ ସିଂହ, ଟି. ଏ. ପାଇ, କେ. ସି. ପନ୍ଥ, କରଣ ସିଂହ, ସିଦ୍ଧାର୍ଥ ଶଙ୍କର ରାୟ ,ଚନ୍ଦ୍ରଜିତ ଯାଦବ, ବ୍ରହ୍ମାନନ୍ଦ ରେଡ୍ଡି ପ୍ରମୁଖ ନେତାମାନଙ୍କ ସମେତ କେବଳ ସଞ୍ଜୟଙ୍କ ମାଧ୍ୟମରେ ହିଁ ଭାରତୀୟ ନେତୃମଣ୍ଡଳୀରେ ପ୍ରତିଷ୍ଠା ଲାଭ କରିଥିବା ଅମ୍ବିକା ସୋନି ମଧ୍ୟ ତାଙ୍କ ନିକଟରୁ ଦୂରେଇ ଯାଇଥିଲେ ।

ଶ୍ରୀମତୀ ଗାନ୍ଧୀଙ୍କ ସମର୍ଥକମାନେ ଗୋଟିଏ ଶିବିର ଗଠନ କରି ଭବିଷ୍ୟତ କାର୍ଯ୍ୟପନ୍ଥା ସ୍ଥିର କରୁଥିବାବେଳେ ଆଉ ଗୋଟିଏ ଶିବିରରେ ରେଡ୍ଡି ଓ ଚଭନ ଗୋଷ୍ଠୀ ମିଳିତ ହୋଇ ସେମାନଙ୍କ କାର୍ଯ୍ୟପନ୍ଥା ସ୍ଥିର କରୁଥିଲେ । ଅନେକ ରାଜନୈତିକ ପର୍ଯ୍ୟବେକ୍ଷକ କଂଗ୍ରେସ(ଇ)ର ସେଭଳି ବିପର୍ଯ୍ୟସ୍ତବେଳେ ଶ୍ରୀମତୀ ଗାନ୍ଧୀଙ୍କ ପଦକ୍ଷେପକୁ ପସନ୍ଦ କରିପାରି ନ ଥିଲେ । ସେମାନଙ୍କ ମତ ଥିଲା, ଜନତା ସରକାର ଶାସନ କ୍ଷମତା ହାତକୁ ନେବାର ଖୁବ୍ ଅଳ୍ପ ସମୟ ମଧ୍ୟରେ ହିଁ ସାଧାରଣ ଲୋକଙ୍କ ନିକଟରେ ସେମାନଙ୍କ ନିର୍ମଳ ଭାବମୂର୍ତ୍ତି ପ୍ରତିଷ୍ଠା କରିପାରି ନ ଥିଲେ । ସୁତରାଂ ସେଭଳି ପରିସ୍ଥିତିର ସୁଯୋଗ ନେଇ କଂଗ୍ରେସ (ଇ) ଦଳ ମିଳିମିଶି ଏକାଠି କାର୍ଯ୍ୟ କରିଥିଲେ ନିକଟ ଭବିଷ୍ୟତରେ ହେବାକୁ ଥିବା ରାଜ୍ୟ ବିଧାନସଭା-ଗୁଡ଼ିକର ନିର୍ବାଚନରେ ନିଜର ହୃତ ଗୌରବ ଫେରାଇ ଆଣିବା ସୁବିଧାଜନକ ହୋଇପାରି ଥାଆନ୍ତା ।

କିନ୍ତୁ ଶ୍ରୀମତୀ ଗାନ୍ଧୀ ଲକ୍ଷ୍ୟ କରିଥିଲେ ଯେ ଲୋକଙ୍କ ସେବା ଅପେକ୍ଷା ଦଳ ଭିତରେ ରହି ସଭ୍ୟମାନଙ୍କ ଦଳ ବିରୋଧୀ କାର୍ଯ୍ୟ ବହୁଗୁଣରେ ବୃଦ୍ଧି ପାଇଥିଲା । କେତେକ ରାଜ୍ୟ ବିଧାନ ସଭା ନିର୍ବାଚନ ବେଳେ ଜନତା ଦଳର କେତେକ ସଭ୍ୟଙ୍କୁ କଂଗ୍ରେସ ଦଳର କେତେକ କର୍ମୀ ତଥା ନେତା ପରୋକ୍ଷ ଭାବରେ ସାହାଯ୍ୟ କରିଥିଲେ । ରାଜ୍ୟର କଂଗ୍ରେସ (ଇ) ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ଏଚ୍. କେ. ପାଟିଲ୍ ସ୍ୱର ଉତ୍ତୋଳନ କରିଥିଲେ । ବ୍ରହ୍ମାନନ୍ଦ ରେଡ୍ଡିଙ୍କ ସମେତ ଆହୁରି କେତେଜଣ ଉଚ୍ଚ ନେତା ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ ଜନମତ ସୃଷ୍ଟି କରିବାପାଇଁ ତତ୍ପର ହୋଇ ଉଠିଥିଲେ । ଗୁଜରାଟ ଓ ପଶ୍ଚିମବଙ୍ଗ ପ୍ରଭୃତି କେତେକ ରାଜ୍ୟରେ କଂଗ୍ରେସ (ଇ) ଦଳର ସଭ୍ୟମାନଙ୍କୁ ଦଳରୁ ଅଯଥା ବହିଷ୍କାର କରାଯାଇଥିଲା ।

ଅପର ପକ୍ଷରେ ଜନତା ଦଳ ପ୍ରାଣାନ୍ତକ ଉଦ୍ୟମ କରୁଥିଲା ଶ୍ରୀମତୀ ଗାନ୍ଧୀଙ୍କ ପରିବାର ଓ ସମର୍ଥକମାନଙ୍କୁ ତଲାତଲାନ୍ତ କରିଦେବା ପାଇଁ । ସେ ପ୍ରକାର ପରିସ୍ଥିତି ଭିତରେ ଶ୍ରୀମତୀ ଗାନ୍ଧୀ ଇଚ୍ଛା କରିଥିଲେ ଦେଶର ଜନଗଣଙ୍କ ସେବା କରିବାପାଇଁ, ମାତ୍ର ଗୋଟିଏ ଦଳରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟରକ୍ଷି ଯେଉଁ କର୍ମୀମାନେ ଆଗଭର ହେବେ ସେମାନଙ୍କ ସମର୍ଥନ କ୍ରମେ ନିଜ ଦଳ ଗଠନ କରିବେ । ତାଙ୍କୁ ଓ ତାଙ୍କର ନୀତିକୁ ବିରୋଧ କରୁଥିବା ବ୍ୟକ୍ତିବୃନ୍ଦଙ୍କ ସହ ଏକାଠି କାର୍ଯ୍ୟ କରିବା ଯୁକ୍ତିସଙ୍ଗତ ନୁହେଁ ବୋଲି ସେ ଅନୁଭବ କରିଥିଲେ ।

ନେତ୍ରୀ ସେହି ସଙ୍କଟଜନକ ପରିସ୍ଥିତିରେ ମଧ୍ୟ ଦଳର ବିଭାଜନକୁ ହିଁ ଶ୍ରେୟସ୍କର ମନେ କରିଥିଲେ । ନିଜର ସ୍ୱାର୍ଥ ଅପେକ୍ଷା ଦେଶର ଜନଗଣଙ୍କ ସେବାକୁ ମହତ୍ତ୍ୱର ସ୍ଥାନ ଦେଇଥିଲେ । ପରିଣାମତଃ ତାଙ୍କର ଅନେକ ପୁରୁଖା ତଥା ଘନିଷ୍ଠ ସହଯୋଗୀ ବନ୍ଧୁ ଓ ସହକର୍ମୀ ଦୂରେଇ ଯାଇଥିଲେ । ସେଥିଲାଗି ସେ ବିଶେଷ ଚିନ୍ତିତ ନ ଥିଲେ ।

୧୯୭୮ ଜାନୁଆରୀ ମାସରେ କଂଗ୍ରେସର ବିଭାଜନ ପରେ ପରେ ସେ କଂଗ୍ରେସ (ଇ) ଦଳର ସଭାନେତ୍ରୀ ନିର୍ବାଚିତ ହୋଇଥିଲେ ।

୧୯୭୭ ନିର୍ବାଚନ ପୂର୍ବରୁ ଆଜୀବନ କଂଗ୍ରେସ ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିବା ଓ ସ୍ୱାଧୀନତା ପୂର୍ବରୁ ମେ ପର୍ଯ୍ୟନ୍ତ ବିଭିନ୍ନ ମନ୍ତ୍ରିମଣ୍ଡଳରେ ସଦସ୍ୟ ଭାବେ ରହି ଆସିଥିବା ଶ୍ରୀ ଜଗଜ୍ଜୀବନ ରାମ ମଧ୍ୟ ତାଙ୍କୁ ତ୍ୟାଗ କରି ଚାଲି ଯାଇଥିଲେ । ସେ ହୁଏତ ଆଶା କରିଥିଲେ ଜରୁରୀ କାଳ ପାଇଁ ସମସ୍ତ ଅପବାଦ ଶ୍ରୀମତୀ ଗାନ୍ଧୀଙ୍କ ମୁଣ୍ଡରେ ଲଦିଦେଇ ପ୍ରବଳ ଜନସମର୍ଥନ ଲାଭ କରିବେ । ପରିଣାମତଃ ଶ୍ରୀମତୀ ଗାନ୍ଧୀ ଆଗାମୀ ନିର୍ବାଚନରେ ପରାଜିତ ହେବେ ଏବଂ ସେ ହେବେ ଦେଶର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ନେତା ତଥା ଭାରତର ପ୍ରଧାନମନ୍ତ୍ରୀ । ତାଙ୍କର ପ୍ରଥମ ଅଭିଳାଷ ମାତ୍ର କିଛିକାଳ ଲାଗି ପୂର୍ଣ୍ଣ ହୋଇଥିଲେ ମଧ୍ୟ ସେ ଦେଶର ପ୍ରଧାନମନ୍ତ୍ରୀ ହେବା ସମ୍ଭବ ହୋଇ ନ ଥିଲା । ଯଦିଓ ସେ ଆଉ ଗୋଟିଏ ରାଜନୈତିକ ଦଳ ଗଠନ କରିଥିଲେ ଓ ତାଙ୍କର ଦଳର ସମର୍ଥନ କ୍ରମେ ହିଁ କେନ୍ଦ୍ରରେ ମନ୍ତ୍ରିମଣ୍ଡଳ ଗଠନ ସମ୍ଭବ ହୋଇଥିଲା ତଥାପି ପ୍ରଧାନମନ୍ତ୍ରୀ ହୋଇଥିଲେ ଦେଶର ଅନ୍ୟତମ ବର୍ଷୀୟାନ୍ ନେତା ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ।

ଭାରତର ସ୍ୱାଧୀନତା ପ୍ରାପ୍ତି ପରଠାରୁ ପ୍ରଥମଥର ଲାଗି କେନ୍ଦ୍ରରେ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଶ୍ରୀଯୁକ୍ତ ଦେଶାଇ ଗଠନ କରିବା ପରେ ପରେ ରାଜ୍ୟଗୁଡ଼ିକର ବିଧାନସଭାଗୁଡ଼ିକ ପାଇଁ ମଧ୍ୟ ସାଧାରଣ ନିର୍ବାଚନ ୧୯୭୭ ମସିହା ମଇ ମାସରେ କରାଯାଇଥିଲା । ତାର କାରଣ ସ୍ୱରୂପ ଜନତା ଦଳର ଯୁକ୍ତି ଥିଲା ଯେ ଯେଉଁ ରାଜ୍ୟଗୁଡ଼ିକ କେନ୍ଦ୍ର ପାଇଁ ଜନତା ଓ ସି. ଏଫ୍. ଡି. ଦଳକୁ ସମର୍ଥନ

ଜଣାଇଲେ ସେମାନେ ହୁଏତ ରାଜ୍ୟରେ ମଧ୍ୟ ସେହିଭଳି ପରିବର୍ତ୍ତନ ଆଶା କରୁଥିବେ । ସତକୁସତ ଦେଶର ସାତଟି ଉତ୍ତରାଞ୍ଚଳ ରାଜ୍ୟରେ ଶ୍ରୀମତୀ ଗାନ୍ଧୀଙ୍କ କଂଗ୍ରେସଦଳ ମୂଳପୋଛ ହୋଇ ଯାଇଥିଲା । ଏହା ଥିଲା ଭାରତୀୟ ରାଜନୈତିକ ଇତିହାସରେ ସବୁଠାରୁ ଆଶ୍ଚର୍ଯ୍ୟଜନକ ଘଟଣା ।

ରାଏବରେଲି ଓ ଆମେଥି ନିର୍ବାଚନ ମଣ୍ଡଳୀରୁ ଶ୍ରୀମତୀ ଗାନ୍ଧୀ ଓ ସଞ୍ଜୟ ଶୋଚନୀୟ ଭାବେ ପରାଜିତ ହେବା ପରେ ପରେ ବିଜୟୋନ୍ମତ୍ତ ଜନତା ଦଳର ନେତୃବୃନ୍ଦ ଓ ଇନ୍ଦିରା ବିରୋଧୀ ଗୋଷ୍ଠୀ ଗଭୀର ଆଶା ପୋଷଣ କରିଥିଲେ ଯେ, ଶ୍ରୀମତୀ ଗାନ୍ଧୀଙ୍କ ଅସ୍ତିତ୍ୱ ଭାରତୀୟ ରାଜନୀତି କ୍ଷେତ୍ରରୁ ସବୁଦିନ ପାଇଁ ଅସ୍ତମିତ ହୋଇଯିବ । ସେ ଆଉ କସ୍ମିନ୍‌କାଳେ ଦେଶର ଜନଗଣଙ୍କ ନିକଟରେ ଦଣ୍ଡାୟମାନ ହୋଇ ପାରିବେ ନାହିଁ ଏବଂ ସେମାନଙ୍କ ସମର୍ଥନ ଲାଭ କରିବାପାଇଁ ସମର୍ଥ ମଧ୍ୟ ହେବେ ନାହିଁ । ପୁଣି ଦଳର ବିଶ୍ୱଜନ ସେମାନଙ୍କ ସେଭଳି ମତାମତକୁ ଆହୁରି ଅଧିକ ବଳିଷ୍ଠ କରୁଥିଲା ।

କିନ୍ତୁ ପରିସ୍ଥିତିର ବିଡ଼ମ୍ବନା, ଖୁବ୍ ଅଳ୍ପକାଳ ମଧ୍ୟରେ ତାହା ଭୁଲ୍ ପ୍ରମାଣିତ ହୋଇଥିଲା ।

୧୯୭୮ ମସିହା ନଭେମ୍ବର ୮ ରେ କର୍ଣ୍ଣାଟକ ପ୍ରଦେଶର ଚିକମାଗାଲୁର ନିର୍ବାଚନ ମଣ୍ଡଳୀରୁ ଉପନିର୍ବାଚନରେ ଅଂଶ ଗ୍ରହଣ କରି ଶ୍ରୀମତୀ ଗାନ୍ଧୀ ବିଜୟ ହାସଲ କରିଥିଲେ । ତାଙ୍କୁ ସେଠାରେ ପ୍ରତିଦ୍ୱନ୍ଦିତା କରୁଥିଲେ ଜନତା ଦଳର ଜଣେ ମୁଖ୍ୟ କାର୍ଯ୍ୟକର୍ତ୍ତା ଜର୍ଜ ଫର୍ଣ୍ଣାଣ୍ଡିସ୍ । ସେତେବେଳର ସରକାରରେ ରହି ମଧ୍ୟ ଫର୍ଣ୍ଣାଣ୍ଡିସ୍ ଶ୍ରୀମତୀ ଗାନ୍ଧୀଙ୍କ ନିକଟରେ ଶୋଚନୀୟ ଭାବେ ପରାଜିତ ହୋଇଥିଲେ ।

### ଜନତା ଦଳର ଅନ୍ତର୍ଦ୍ୱନ୍ଦ :—

କେନ୍ଦ୍ରରେ ମାତ୍ର ଦୁଇଟି ବର୍ଷର ଶାସନ ପରେ ପରେ ୧୯୭୯ ମସିହାର ପ୍ରାୟ ମଧ୍ୟଭାଗ ବେଳକୁ ଏହା ସ୍ପଷ୍ଟ ହୋଇ ଉଠିଥିଲା ଯେ, ଜନତା ଦଳର ଶାସନ ଆଉ ଦୀର୍ଘକାଳ ସ୍ଥାୟୀ ହୋଇ ପାରିବ ନାହିଁ । ସେହିଭଳି ଆଶଙ୍କାରେ ସର୍ବପ୍ରଥମ ଓ ପ୍ରଧାନ କାରଣ ଥିଲା ଦଳୀୟ ଅନ୍ତର୍ଦ୍ୱନ୍ଦ । ସେମାନଙ୍କ ମଧ୍ୟରେ ଗୋଷ୍ଠୀ ବିବାଦ ଅତି ଉତ୍କଟ ହୋଇ ଯାଇଥିଲା ଏବଂ କେତେଜଣ ପ୍ରମୁଖ ନେତାଙ୍କ ମନରେ ଦେଶର ପ୍ରଧାନମନ୍ତ୍ରୀ ପଦଲାଳସା ଏତେ ମଧୁର ହୋଇଥିଲା ଯେ ସେମାନେ ସେଥିପାଇଁ ଏକପ୍ରକାର ପାଗଳ ହୋଇ ଉଠିଥିଲେ । ତଦ୍‌ବ୍ୟତୀତ ପ୍ରାୟ ମନ୍ତ୍ରିମଣ୍ଡଳ ଗଠିତ ହେବା ଦିନରୁ ହିଁ ପ୍ରତ୍ୟେକେ ଯେ କୌଣସି ଉପାୟରେ ହେଉ, ନିଜ ନିଜକୁ ପ୍ରତିଷ୍ଠିତ କରିବାପାଇଁ ଯେତିକି ବ୍ୟଗ୍ର ଥିଲେ, ସେତିକି ପରିମାଣରେ

ଉଦ୍ୟମୀ ମଧ୍ୟ ଥିଲେ ଏବଂ ସେତକ ପରିମାଣରେ ଆକାଂକ୍ଷିତ ମଧ୍ୟ ଥିଲେ ଶ୍ରୀମତୀ ଗାନ୍ଧୀଙ୍କ ସାମାଜିକ ସମ୍ମାନ କ୍ଷୁଣ୍ଣ କରିବାପାଇଁ । ଦେଶର ପ୍ରଗତି ତଥା ଶାସନ ସେତିକି ସେମାନଙ୍କ ନିକଟରେ ଗୌଣ ମନେ ହୋଇଥିଲା ।

ତେଣୁ ଶାସନ କ୍ଷେତ୍ରରେ ମଧ୍ୟ ଦେଶରେ ଯଥେଷ୍ଟ ବିଶୃଙ୍ଖଳା ସୃଷ୍ଟି ହୋଇ ଯାଇଥିଲା । ଆର୍ଥନୈତିକ, ରାଜନୈତିକ କିମ୍ବା ସାମାଜିକ ଦୃଷ୍ଟିରୁ କୌଣସି କ୍ଷେତ୍ରରେ ଅନ୍ତତଃ ସ୍ଥିରତା ରକ୍ଷା କରାଯାଇ ପାରି ନ ଥିଲା; ଉନ୍ନତି ତ ଦୂରର କଥା । ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ଭାରତର ପୂର୍ବ ସମ୍ମାନ କ୍ଷୁଣ୍ଣ ହୋଇଥିଲା କହିଲେ ଚଳେ ।

ସେ ପ୍ରକାର ପରିସ୍ଥିତି ବେଳେ ଜନତା ସରକାରର ନାଟକୀୟ ଅଧୋ-ପତନର ପ୍ରଥମ ପର୍ବ ଆରମ୍ଭ ହୋଇଥିଲା । ରଙ୍ଗମଞ୍ଚର ପରଦା ଉଠାଇଥିଲେ ସେଇ ରାଜନାରାୟଣ ଯିଏ ଜନତା ଦଳ ଗଠନ ତଥା କେନ୍ଦ୍ର ସରକାରଙ୍କ ଅନ୍ୟତମ ମାଇଲଖୁଣ୍ଟ ସ୍ୱରୂପ ପରିଗଣିତ ହେଉଥିଲେ ।

ପାର୍ଲ୍ୟାମେଣ୍ଟର ବର୍ଷାକାଳୀନ ଅଧିବେଶନ ୧୯୭୯ ମସିହା ଜୁଲାଇ ୯ ତାରିଖରୁ ଆରମ୍ଭ ହେବାଲାଗି ସ୍ଥିର କରାଯାଇଥିଲା । ଅନ୍ୟାନ୍ୟ ଆଲୋଚନା ମଧ୍ୟରେ ମୋରାରଜୀଙ୍କ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ବିରୋଧୀ ଦଳର ନେତା ଶ୍ରୀ ଓ୍ୱାଇ. ଭି. ଚଭନ୍‌ଙ୍କ ଦ୍ୱାରା ଏକ ଅନାସ୍ଥାପ୍ରସ୍ତାବ ଆଗତ ହେବାପାଇଁ ପାର୍ଲ୍ୟାମେଣ୍ଟ ଗୃହରେ ସ୍ଥିରୀକୃତ ହୋଇଥିଲା । ଆଲୋଚନାବେଳେ ସେ ପ୍ରସ୍ତାବକୁ ସମର୍ଥନ ଜଣାଇବା ଲାଗି ତାଙ୍କ ଦଳ ତରଫରୁ ସ୍ୱୀକୃତି ଦେଇଥିଲେ ମଧ୍ୟ ମନେ କରିଥିଲେ ଯେ ସେ ପ୍ରସ୍ତାବ ବିଶେଷ ଫଳପ୍ରଦ ହେବନାହିଁ । କିନ୍ତୁ ତାର ପ୍ରାୟ ୧୫ ଦିନ ପୂର୍ବରୁ ଜୁନ୍ ୨୩ ତାରିଖ ଦିନ ଶ୍ରୀ ରାଜନାରାୟଣ ତାଙ୍କର କେତେଜଣ ସମର୍ଥକଙ୍କ ସହିତ ଜନତା ଦଳରୁ ନିଜ ସମର୍ଥନ ହଠାତ୍ ପ୍ରତ୍ୟାହାର କରି ଆଣିଥିଲେ । ସେ ତାଙ୍କର ଦଳେ ସମର୍ଥକ ସୃଷ୍ଟି କରି ଦଳରୁ ଇସ୍ତଫା ଦେଇ ସାରା ଦେଶରେ ଏକ ରାଜନୈତିକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ ।

ତତ୍ପର ମୁହୂର୍ତ୍ତଠାରୁ ଦିଲ୍ଲୀର ରାଜନୈତିକ ବାତାବରଣ ସରଗରମ ହୋଇ ଉଠିଥିଲା । କିଛିଦିନ ପର୍ଯ୍ୟନ୍ତ କେହି ସଠିକ୍ ଭାବେ ସ୍ଥିର କରିପାରି ନ ଥିଲେ ଯେ ଜନତା ଦଳର ବିଭାଗୀକୃତ ଉଭୟ ଦଳ ମଧ୍ୟରୁ ନିର୍ଦ୍ଦିଷ୍ଟ ଭାବେ କେଉଁ ଦଳରେ କେତେଜଣ ସଭ୍ୟ ଥିଲେ କିମ୍ବା ଜନତା ତଥା ଅନ୍ୟାନ୍ୟ କେତେକ ଛୋଟ ଛୋଟ ରାଜନୈତିକ ଦଳର ପାର୍ଲ୍ୟାମେଣ୍ଟ ସଭ୍ୟଙ୍କର କେଉଁ ନେତାଙ୍କ ପ୍ରତି ଆନୁଗତ୍ୟ ରହିଥିଲା । ପୁଣି ସେହି ପରିସ୍ଥିତିର ସୁଯୋଗ ନେଇ ଶ୍ରୀ ଚରଣ ସିଂହ ନିଜର ସମର୍ଥକ ଗୋଷ୍ଠୀଟିଏ ଗଠନ କରି ସେମାନଙ୍କ ସହିତ ମନ୍ତ୍ରିମଣ୍ଡଳରୁ ଓହରି ଯାଇଥିଲେ ।

ସେହି ପରିସ୍ଥିତିରେ ଶ୍ରୀଯୁକ୍ତ ମୋରାରଜୀ ଦେଶାଇଙ୍କ ପାଇଁ ଅନ୍ୟ କୌଣସି ଉପାୟ ନ ଥିଲା । ସେ ବାଧ୍ୟହୋଇ ଦଳର ନେତା ପଦରୁ ଇସ୍ତଫା ଦେଇଥିଲେ । ତେଣୁ ମନ୍ତ୍ରିମଣ୍ଡଳର ପତନ ଘଟିଥିଲା ।

ତା ପରେ ପରେ ରାଜଧାନୀ ଦିଲ୍ଲୀର ରାଜନୈତିକ ଘଟଣାବଳୀ ଅତି କ୍ଷିପ୍ର ଭାବରେ ଗତି କରିଥିଲା । ପାର୍ଲ୍ୟାମେଣ୍ଟରେ ବିରୋଧୀଦଳର ନେତା ଶ୍ରୀ ଓ୍ୱାଇ. ଭି. ଚଭନ୍‌ଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ପାରମ୍ପରିକ ଭାବରେ ତଥା ସାମ୍ବିଧାନିକ ପଦ୍ଧତି ଅନୁକରଣ କରି ରାଷ୍ଟ୍ରପତି ନିମନ୍ତ୍ରଣ ଜଣାଇଥିଲେ । କିନ୍ତୁ ସେ ସେଥିପାଇଁ ସମର୍ଥ ନ ଥିଲେ । କାରଣ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ଆବଶ୍ୟକ ସଂଖ୍ୟକ ସଭ୍ୟ ତାଙ୍କ ଦଳରେ ନ ଥିଲେ କିମ୍ବା ସମର୍ଥନ ପାଇବା ବି ସମ୍ଭାବନା ନ ଥିଲା । ତେଣୁ ତାଙ୍କର ଅସାମର୍ଥ୍ୟ ରାଷ୍ଟ୍ରପତିଙ୍କୁ ଜଣାଇ ଦେଇଥିଲେ ।

ରାଷ୍ଟ୍ରପତି ତାପରେ ଶ୍ରୀ ଚରଣ ସିଂହଙ୍କୁ ନିମନ୍ତ୍ରଣ କରିଥିଲେ କେନ୍ଦ୍ରରେ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ । କାରଣ ସେ ଦାବୀ କରିଥିଲେ ଯେ ତାଙ୍କ ଗୋଷ୍ଠୀରେ ଜନତା ଦଳର ଅଧିକାଂଶ ସଭ୍ୟ ଥିଲେ ଏବଂ କେବଳ ସଂଖ୍ୟାନ୍ୟୂନ ସଭ୍ୟ ଅନ୍ୟ ନେତାମାନଙ୍କୁ ସମର୍ଥନ କରୁଥିଲେ । ତେବେ ଶ୍ରୀଯୁକ୍ତ ଚରଣ ସିଂହ ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତର ପ୍ରଧାନମନ୍ତ୍ରୀ ଭାବେ ରହିବାଲାଗି ଏକମାତ୍ର ନିରାପଦ ବ୍ୟବସ୍ଥା ହୋଇଥାନ୍ତା, ଯଦି ସେ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱରେ ଥିବା ୭୯ ଜଣିଆ କଂଗ୍ରେସ (ଇ) ଦଳର ସମର୍ଥନ ପାଇଥାନ୍ତେ । ଏବଂ ଶ୍ରୀମତୀ ଗାନ୍ଧୀ ମଧ୍ୟ ସେଥିପାଇଁ ପ୍ରସ୍ତୁତ ଥିଲେ । କିନ୍ତୁ ପରବର୍ତ୍ତୀକାଳରେ ଶ୍ରୀ ଚରଣ ସିଂହ ତତ୍କାଳୀନ ବିରୋଧୀ ଦଳର ନେତା ଶ୍ରୀ ଓ୍ୱାଇ. ଭି. ଚଭନଙ୍କୁ ଉପ-ପ୍ରଧାନମନ୍ତ୍ରୀ ପଦର ପ୍ରଲୋଭନ ଦେଖାଇ ତାଙ୍କ ଦଳର ସମର୍ଥନ ଭିକ୍ଷା କରିଥିଲେ । ଫଳରେ କଂଗ୍ରେସ (ଇ) କ୍ଷୁବ୍‌ଧ ହୋଇଥିଲା ।

ଶ୍ରୀ ଚରଣ ସିଂହ ୧୯୭୯ ମସିହା ଜୁଲାଇ ୨୮ ତାରିଖ ଦିନ ଭାରତର ପ୍ରଧାନମନ୍ତ୍ରୀ ନିର୍ବାଚିତ ହୋଇଥିଲେ ।

ପରିଣାମତଃ ଶ୍ରୀମତୀ ଗାନ୍ଧୀଙ୍କ ଜରୁରୀକାଳୀନ ଅବସ୍ଥାବେଳେ ତାଙ୍କୁ ପ୍ରବଳ ସମର୍ଥନ ଜଣାଇଥିବା ଏବଂ ପରବର୍ତ୍ତୀ ଅବସ୍ଥାରେ କ୍ଷମତାର ଅପବ୍ୟବହାର ସମ୍ପର୍କରେ ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ ସାହା କମିଶନ ନିକଟରେ ଅକଳନ ଅଭିଯୋଗ କରିଥିବା ବ୍ରହ୍ମାନନ୍ଦ ରେଡ୍ଡି, ଟି. ଏ. ପାଇ, କରଣ ସିଂହ ପ୍ରମୁଖଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେଇଥିଲେ ଚରଣ ସିଂହ । ସେ ଆଶା କରିଥିଲେ ରାଷ୍ଟ୍ରପତିଙ୍କ ନିର୍ଦ୍ଦେଶ ଅନୁଯାୟୀ ପାର୍ଲ୍ୟାମେଣ୍ଟରେ ନିଜର ସଂଖ୍ୟାଗରିଷ୍ଠତା ଆବଶ୍ୟକ ପଡ଼ିବାବେଳେ ଶ୍ରୀମତୀ ଗାନ୍ଧୀଙ୍କ ସମର୍ଥନ ସାହାଯ୍ୟ ଭିକ୍ଷା କରିବେ ଏବଂ ପାଇବେ ମଧ୍ୟ ।

କିନ୍ତୁ ଶ୍ରୀମତୀ ଗାନ୍ଧୀ ସେଥିପାଇଁ ସମ୍ମତ ହୋଇ ନ ଥିଲେ । ୧୯୭୯ ଅଗଷ୍ଟ ୨୦ ତାରିଖ ଦିନ ତାଙ୍କ ଦଳ ଶ୍ରୀ ଚରଣ ସିଂହଙ୍କ ପ୍ରତି ସମର୍ଥନ ପ୍ରତ୍ୟାହାର କରି ନେଇଥିଲେ ।

ଶ୍ରୀ ଚରଣ ସିଂହଙ୍କ କୁତବ୍‌ମିନାର ଭଳି ସୁ-ଉଚ୍ଚ ଆଶା ଅଳ୍ପ ସମୟ ମଧ୍ୟରେ ଧୂଳିସାତ୍ ହୋଇ ଯାଇଥିଲା । ସେ ବୋଧେ ଆଶା କରିଥିଲେ, ପ୍ରାଥମିକ ଅବସ୍ଥାରେ ଶ୍ରୀମତୀ ଗାନ୍ଧୀଙ୍କ ସମର୍ଥନ ପାର୍ଲ୍ୟାମେଣ୍ଟରେ ଥରକ ପାଇଁ ପାଇଯିବା ପରେ ସେ ସରକାର ଗଠନର ମୂଳଦୂଆକୁ ଶକ୍ତ କରିପାରିବେ ଏବଂ ତା ପରେ ତାଙ୍କର ବିରୁଦ୍ଧରେ ହିଁ ସମସ୍ତ କ୍ଷମତା ପ୍ରୟୋଗ କରିବେ । ସେତେବେଳେ ଯେଉଁସବୁ କମିଶନ୍ ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ ବସାଯାଇଥିଲା, ସେମାନଙ୍କ କାର୍ଯ୍ୟକଳାପକୁ ତ୍ୱରାନ୍ୱିତ କରାଇ ଦେଶର ଜନଗଣଙ୍କ ମନରେ ଶ୍ରୀମତୀ ଗାନ୍ଧୀଙ୍କ ସମେତ କଂଗ୍ରେସ (ଇ) ଦଳ ବିରୁଦ୍ଧରେ ପ୍ରବଳ ଜନମତ ସୃଷ୍ଟି କରିପାରିବେ । ପୁଣି ବିଭିନ୍ନ ରାଜ୍ୟରେ ବିଭାଜିତ ଜନତା ଦଳରୁ ତାଙ୍କର ବିରୋଧୀ ଗୋଷ୍ଠୀକୁ ମଧ୍ୟ କିଛି ପରିମାଣରେ ଜବଦ୍ କରିବାପାଇଁ ଯଥାସମ୍ଭବ ଚେଷ୍ଟା କରିବେ । ଛଅ ମାସ ପରେ ପୁଣିଥରେ ପାର୍ଲ୍ୟାମେଣ୍ଟ ଅଧିବେଶନ ବସିବା ସମୟ ଆଗତ ହେବା ପୂର୍ବରୁ ନିଜ ସପକ୍ଷରେ ଅନୁକୂଳ ଅବସ୍ଥା ସୃଷ୍ଟି କରାଇ ନିର୍ବାଚନ କରାଇବେ ।

କିନ୍ତୁ ଶ୍ରୀମତୀ ଗାନ୍ଧୀଙ୍କ ସମର୍ଥନ ନ ପାଇବା ଯୋଗୁଁ ତାଙ୍କର ସମସ୍ତ ସ୍ୱପ୍ନ ଅଳୀକ ହୋଇ ଯାଇଥିଲା । ମାତ୍ର ୨୪ ଦିନ ବିଶାଳ ଭାରତର ପ୍ରଧାନମନ୍ତ୍ରୀ ଭାବେ ରହି ସେ ନିଜର ଇସ୍ତଫାପତ୍ର ୧୯୭୯ ମସିହା ଅଗଷ୍ଟ ୨୦ ତାରିଖ ଦିନ ରାଷ୍ଟ୍ରପତିଙ୍କ ନିକଟକୁ ପଠାଇ ଦେଇଥିଲେ । ନଚେତ୍ ପାର୍ଲ୍ୟାମେଣ୍ଟରେ ସେ ଶୋଚନୀୟ ଭାବେ ପରାଜିତ ହେବା ନିଶ୍ଚିତ ଥିଲା ।

ରାଷ୍ଟ୍ରପତି ଶ୍ରୀ ସଞ୍ଜୀବ ରେଡ୍ଡି ତା ପରେ ପାର୍ଲ୍ୟାମେଣ୍ଟକୁ ଅଗଷ୍ଟ ୨୨ ତାରିଖ ଦିନ ଭାଙ୍ଗି ଦେଇଥିଲେ ଓ ଦେଶରେ ସାଧାରଣ ନିର୍ବାଚନ କରାଇବା ଲାଗି ନିଷ୍ପତ୍ତି ନେଇଥିଲେ । ପରମ୍ପରାନୁକ୍ରମେ ସେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଚରଣ ସିଂହଙ୍କୁ ଆନୁଷ୍ଠାନିକ ଅନୁରୋଧ ଜଣାଇଥିଲେ ନୂତନ ମନ୍ତ୍ରିମଣ୍ଡଳ ଗଠିତ ହେବା ପର୍ଯ୍ୟନ୍ତ କାମଚଳା ପ୍ରଧାନମନ୍ତ୍ରୀ ଭାବେ କାର୍ଯ୍ୟନିର୍ବାହ କରିବାପାଇଁ ।

## ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ :—

୧୯୮୦ ମସିହା ଜାନୁୟାରୀ ତିନି ତାରିଖରେ ଅନୁଷ୍ଠିତ ହେବାକୁ ଥିବା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଯେଉଁମାନେ ପ୍ରାର୍ଥୀ ଥିଲେ ପ୍ରାୟ ସେମାନଙ୍କ ନେତୃତ୍ୱ ନେଇଥିଲେ ଶ୍ରୀମତୀ ଗାନ୍ଧୀ, ଶ୍ରୀ ଚରଣ ସିଂହ ଓ ଶ୍ରୀ ଜଗଜ୍ଜୀବନ ରାମ ।

ନିର୍ବାଚନରେ ଅବତୀର୍ଣ୍ଣ ଏଇ ତିନିଜଣଙ୍କ ମଧ୍ୟରେ ଜଣେ ଯେ ପ୍ରଧାନମନ୍ତ୍ରୀ ହେବେ ସେଥିରେ କାହାର ସନ୍ଦେହ ନ ଥିଲା । ତଥାପି ସେ ପଦବୀର କିଏ ଅଧିକାରୀ ହୋଇ ପାରିବ, ୧୯୭୭ ଅଭିଜ୍ଞତାରୁ ତାହା କେହି ସ୍ପଷ୍ଟ ଭାବରେ ଅନୁମାନ କରିବାପାଇଁ ସମର୍ଥ ହୋଇପାରୁ ନ ଥିଲେ । କିନ୍ତୁ ଜନତା ଦଳର ବିଗତ କାର୍ଯ୍ୟକଳାପରୁ ଲୋକେ ଯେ ସେମାନଙ୍କ ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରୁ ନ ଥିଲେ, ସମୟକ୍ରମେ ତାହା ସ୍ପଷ୍ଟ ହୋଇ ଉଠିଥିଲା । ତେଣୁ ଶ୍ରୀମତୀ ଗାନ୍ଧୀଙ୍କ ପ୍ରତି ଦେଶର ଜନସାଧାରଣଙ୍କ ଆଗ୍ରହ ଓ ଆସ୍ଥା ପୁଣିଥରେ ନୂଆ ରୂପ ନେଇଥିଲା ।

ଅପରପକ୍ଷରେ ଦୀର୍ଘ ଦୁଇ ବର୍ଷର ରାଜନୈତିକ ନିର୍ବାସନ ଶ୍ରୀମତୀ ଗାନ୍ଧୀ ଓ ତାଙ୍କ ଦଳକୁ ଖୁବ୍ ଅସୁବିଧାରେ ପକାଇ ଦେଇଥିଲା । ଦେଶର ୫୪୨ଟି ଆସନରେ ପ୍ରାର୍ଥୀ ପ୍ରତିଦ୍ୱନ୍ଦିତା କରାଇବା ପାଇଁ ତାଙ୍କର ସାଙ୍ଗଠନିକ ଅଭାବ ଅସୁବିଧା ଯେଉଁଳି ଥିଲା, ସେଉଳି ମଧ୍ୟ ଥିଲା ଅର୍ଥାଭାବ । ପ୍ରକୃତରେ ଆଇନ ଅନୁସାରେ ଜଣେ ପ୍ରାର୍ଥୀ ନିର୍ବାଚନମଣ୍ଡଳୀରେ ନିରପେକ୍ଷ ପ୍ରଚାର ଲାଗି ୩୫ ହଜାର ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରିପାରିବେ (ବର୍ତ୍ତମାନ ତାହା ପରିବର୍ତ୍ତିନ କରାଯାଇ ସାରିଲାଣି) ବୋଲି ନିର୍ଦ୍ଧାରଣ କରାଯାଇଥିଲେ ମଧ୍ୟ ବାସ୍ତବରେ ତାହାର କୌଣସି ସୀମା ନ ଥାଏ । ଗୋଟିଏ ଗୋଟିଏ ନିର୍ବାଚନମଣ୍ଡଳୀରେ ଅନେକ କ୍ଷେତ୍ରରେ ଜଣେ ପ୍ରାର୍ଥୀ ତିନି ଲକ୍ଷରୁ ପାଞ୍ଚ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରିଥିବା ସମ୍ବାଦ ପତ୍ରପତ୍ରିକାରେ କିଛି ନୂଆ କଥା ନୁହେଁ । ସେହି ପରିପ୍ରେକ୍ଷୀରେ ବିଚାର କରିବାକୁ ଗଲାବେଳେ ଶ୍ରୀମତୀ ଗାନ୍ଧୀ ହିଁ ସେତେବେଳେ ସବୁଠାରୁ ଗରିବ ବୋଲି ମନେହେବା ସ୍ୱାଭାବିକ । କାରଣ ଖୁବ୍ ପ୍ରଚାର ହୋଇ ଯାଇଥିଲା ଯେ, ସେହି ନିର୍ବାଚନ ପାଇଁ ଶ୍ରୀ ଜଗଜ୍ଜୀବନ ରାମ ପ୍ରଭୃତି ଅର୍ଥ ବ୍ୟବସ୍ଥା କରିଥିଲେ । ଚରଣ ସିଂହ ତ ସେତେବେଳେ ଥିଲେ ପ୍ରଧାନମନ୍ତ୍ରୀ । ତେଣୁ ନିର୍ବାଚନ ପ୍ରଚାର ପାଇଁ ଅର୍ଥ ବ୍ୟବସ୍ଥା କରିବା ତାହାଙ୍କ ଲାଗି ହୁଏତ ବିଶେଷ କଷ୍ଟକର ବ୍ୟାପାର ନ ଥିଲା ।

ପୁଣି ଆକାଶବାଣୀ, ଦୂରଦର୍ଶନ ତଥା ଅନ୍ୟ ପ୍ରଚାର ମାଧ୍ୟମଗୁଡ଼ିକ ସରକାରଙ୍କୁ ସମର୍ଥନ କରିବା ସ୍ୱାଭାବିକ । ସେତିକିବେଳେ ଦେଶର ବଡ଼ ବଡ଼ ଖବରକାଗଜ ସଂସ୍ଥାଗୁଡ଼ିକ ମଧ୍ୟରୁ ପ୍ରାୟ ସମସ୍ତେ ଚରଣ ସିଂହ କିମ୍ବା ଜଗଜ୍ଜୀବନ ରାମଙ୍କୁ ସମର୍ଥନ କରୁଥିଲେ । 'ହିନ୍ଦୁସ୍ଥାନ ଟାଇମସ୍' ଚରଣ ସିଂହଙ୍କୁ ଓ 'ଦି ଇଣ୍ଡିଆନ୍ ଏକ୍ସପ୍ରେସ୍' ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ତଥା ଜନସଂଘ ଓ ଜଗଜ୍ଜୀବନ ରାମଙ୍କୁ ସମର୍ଥନ କରୁଥିଲା । କେବଳ 'ଦି ଟାଇମ୍ସ ଅଫ୍ ଇଣ୍ଡିଆ' ବ୍ୟତୀତ ଅନ୍ୟ ସବୁ ଖବରକାଗଜ ଶ୍ରୀମତୀ ଗାନ୍ଧୀଙ୍କ ଜରୁରୀକାଳର ଘଟଣାବଳୀ ତଥା ତାଙ୍କ ଏକଛତ୍ରବାଦ ମନୋବୃତ୍ତି ସମ୍ପର୍କୀୟ କାହାଣୀସବୁ ବିଭିନ୍ନ ଭାବରେ ଅତିରଞ୍ଜିତ କରି ଉଦାହରଣ ସହିତ ପ୍ରକାଶ କରୁଥିଲେ ।

ସେଭଳି ପରିସ୍ଥିତି ଭିତରେ ନିର୍ବାଚନ ପ୍ରସ୍ତୁତି ଖୁବ୍ ଜୋର୍‌ସୋର୍‌ରେ ଆରମ୍ଭ ହୋଇ ଯାଇଥିଲା । ଜନତା, ଲୋକଦଳ ଓ କଂଗ୍ରେସ (ଇ) ନିଜ ନିଜର ପ୍ରାର୍ଥୀ ମନୋନୟନ କରି ସମାଘୋଟ ନିର୍ବାଚନ ପ୍ରଚାର ଚଳାଇଥିଲେ ।

**ନିର୍ବାଚନର ଫଳାଫଳ :—**

ନିର୍ବାଚନ ନିକଟରୁ ନିକଟତର ହେବା ସଙ୍ଗେ ସଙ୍ଗେ ପ୍ରଚାର ଯେଭଳି ଦେଶରେ ସେନେଇ ଉଠିଥିଲା, ଦେଶର ତଥା ବିଦେଶର ପତ୍ର-ପତ୍ରିକା, ଠାକୁର ପୂଜକ, ତାନ୍ତ୍ରିକ ଏବଂ ପ୍ରମୁଖ ଜ୍ୟୋତିଷମାନେ ମଧ୍ୟ ସେହିଭଳି ତତ୍ପର ହୋଇ ଉଠିଥିଲେ । ସାମ୍ବାଦିକ ଏରିକ୍ ଡ. କୋଷ୍ଟା ୧୯୮୦ ମସିହା ପ୍ରାରମ୍ଭରେ ହେବାକୁ ଥିବା ନିର୍ବାଚନରେ କେଉଁ ଦଳ ସଂଖ୍ୟାଗରିଷ୍ଠତା ହାସଲ କରିବ ଓ କିଏ ଦେଶର ପରବର୍ତ୍ତୀ ପ୍ରଧାନମନ୍ତ୍ରୀ ହେବ, ସେଥିଲାଗି ଜନସାଧାରଣଙ୍କ ମତାମତ ସଂଗ୍ରହ କରିଥିଲେ । ତାଙ୍କ ସର୍ଭେ ପରେ ପରେ ୧୯୭୯ ମସିହା ଅଗଷ୍ଟ ମାସ ପ୍ରାୟ ଶେଷ ବେଳକୁ ସର୍ଭେ ଫଳାଫଳ ପ୍ରକାଶ କରିଥିଲେ ଯେ, ଶ୍ରୀମତୀ ଗାନ୍ଧୀ ପୁଣି ଭାରତର ପ୍ରଧାନମନ୍ତ୍ରୀ ହେବା ନିଶ୍ଚିତ । ତାଙ୍କ ସର୍ଭେ ରିପୋର୍ଟରେ ଜନସାଧାରଣଙ୍କ ମତାମତର ପ୍ରତିଫଳନ ପ୍ରକାଶ କରି ସେ ଉଲ୍ଲେଖ କରିଥିଲେ ଯେ, ଦେଶର ସହରାଞ୍ଚଳଗୁଡ଼ିକରେ ଶ୍ରୀମତୀ ଗାନ୍ଧୀଙ୍କର ଲୋକପ୍ରିୟତା ଶ୍ରୀ ଜଗଜ୍ଜୀବନ ରାମଙ୍କ ତୁଳନାରେ ପାଞ୍ଚଗୁଣ ଓ ଶ୍ରୀ ଚରଣ ସିଂହଙ୍କ ତୁଳନାରେ ପ୍ରାୟ ଆଠ ଗୁଣ ଅଧିକ । ପୁଣି ଗ୍ରାମାଞ୍ଚଳଗୁଡ଼ିକରେ ମଧ୍ୟ ଶ୍ରୀମତୀ ଗାନ୍ଧୀ ଯେତିକି ଲୋକପ୍ରିୟ, ଶ୍ରୀ ଜଗଜ୍ଜୀବନ ରାମ ତାର ପ୍ରାୟ ସାତ ଭାଗରୁ ଭାଗେ ଏବଂ ଶ୍ରୀ ଚରଣ ସିଂହ ସାତ ଭାଗରୁ ଦୁଇ ଭାଗ ଲୋକ-ସମର୍ଥନ ପାଇବା ସମ୍ଭାବନା ।

ଶ୍ରୀ ଚରଣ ସିଂହ ଭାରତୀୟ କୃଷିକୁଳର ନେତା ଭାବରେ ବେଶ୍ ଜଣାଶୁଣା ଥିବାବେଳେ ଶ୍ରୀ ଜଗଜ୍ଜୀବନ ରାମ ଥିଲେ ଦେଶର ହରିଜନ ଗୋଷ୍ଠୀର ପ୍ରଧାନ ସମର୍ଥିତ ବ୍ୟକ୍ତି । କିନ୍ତୁ ପ୍ରାୟ ସେଭଳି କୌଣସି ଗୋଷ୍ଠୀର ସମର୍ଥନ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ସହଜଲଭ୍ୟ ନ ଥିଲା । ସବୁ ଜାତି, ସବୁ ଗୋଷ୍ଠୀ, ସବୁ ଧର୍ମ ସମ୍ପ୍ରଦାୟର ବ୍ୟକ୍ତିବୃନ୍ଦଙ୍କ ସମର୍ଥନ ସେ ସମାନ ଭାବରେ ଲାଭ କରୁଥିଲେ ଏବଂ ହୁଏତ ସେଇଥିପାଇଁ ହିଁ ସେ ଦେଶକୁ ବଳିଷ୍ଠ ନେତୃତ୍ୱ ଦେବାପାଇଁ ସମର୍ଥ ଥିଲେ । ତେବେ ଦେଶର ଶିଖ, ମୁସଲିମ୍ ଓ ଖ୍ରୀଷ୍ଟିୟାନ୍‌ମାନେ କଂଗ୍ରେସ (ଇ)କୁ ଅଧିକ ସମର୍ଥନ ଦେଖାଇ ଆସୁଥିଲେ ମଧ୍ୟ ସେମାନେ ସମ୍ମିଳିତ ଭାବରେ ଦେଶର ଥିଲେ ପ୍ରାୟ ୧୭ ଭାଗ । ୧୯୭୭ ମସିହାର ନିର୍ବାଚନ ବେଳେ ସେମାନଙ୍କ ମଧ୍ୟରେ ବୃହତ୍ତମ ଅଂଶୀଦାର - ଶତକଡ଼ା ୧୨ ଭାଗ ଥିବା ମୁସଲିମ୍ ସମ୍ପ୍ରଦାୟଙ୍କ ମଧ୍ୟରୁ ଅଧିକାଂଶ ଭୋଟଦାତା ଜନତା ସପକ୍ଷରେ ହିଁ ଭୋଟ ଦେଇଥିଲେ । କିନ୍ତୁ ଜନତା ଶାସନ-

କାଳରେ ମୁଖ୍ୟତଃ ଆଲିଗଡ଼ର ହିନ୍ଦୁ-ମୁସଲମ୍ ଦଙ୍ଗା ଓ ଅନ୍ୟାନ୍ୟ ଘଟଣା ସେହି ଗୋଷ୍ଠୀକୁ ଜନତାଦଳ ପ୍ରତି ବିରାଗଭାଜନ କରାଇ ଦେଇଥିଲା ।

ଲୋକଦଳ ଓ ଜନତା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ନିଜ ନିଜର ଅପାରଗତା ଯୋଗୁଁ କ୍ରମଶଃ ପୁଣି ଥରେ ପ୍ରବଳ ଜନସମର୍ଥନ ଲାଭ କରୁଥିବା ଶ୍ରୀମତୀ ଗାନ୍ଧୀ ଓ କଂଗ୍ରେସ (ଇ) ଦଳ ବିରୁଦ୍ଧରେ ପ୍ରଚାର କରିବାପାଇଁ କେବଳ ସେହି ପୁରାତନ ହୋଇ ଯାଇଥିବା ସ୍ଲୋଗାନ— 'ଜରୁରୀକାଳୀନ କ୍ଷମତାର ଅପବ୍ୟବହାର'—ବ୍ୟତୀତ ଆଉ କିଛି ନ ଥିଲା । କିନ୍ତୁ ତାହାହିଁ ତ ଥିଲା ୧୯୭୭ ମସିହାରେ ନିର୍ବାଚନ ପ୍ରଚାରବେଳେ ତାଙ୍କୁ ଗାଦୀଚ୍ୟୁତ କରିବାର ଅମୋଘ ଅସ୍ତ୍ର ! ତାକୁ ପାଇଁ ମଧ୍ୟ ସେମାନେ ଉପଯୁକ୍ତ ବ୍ୟବହାର କରିପାରି ନ ଥିଲେ । ତେଣୁ ସେଇ ଅସ୍ତ୍ରର ଧାରସବୁ ସେମିତି ଦୁର୍ବଳ ହୋଇ ଯାଇଥିଲା । ଦେଶର ଜନସାଧାରଣ ଚାହୁଁଥିଲେ ପୁଣି ସେଇ ପୁରାତନ ନେତୃତ୍ୱ । ଦେଶର ସାମାଜିକ, ଆର୍ଥନୀତିକ ଓ ରାଜନୈତିକ କ୍ଷେତ୍ରରେ ଅରାଜକତା ଓ ଚରମ ବିଶୃଙ୍ଖଳା ପରିବର୍ତ୍ତେ ବରଂ ଜରୁରୀ ଅବସ୍ଥା କାଳର ଶାସନକୁ ସ୍ୱୀକାର କରିନେବା ଉଚିତ୍ ବୋଲି ଦେଶର ଜନସାଧାରଣ ସେମାନଙ୍କ ମତ ପରିବର୍ତ୍ତନ କରୁଥିଲେ ।

ବିଭିନ୍ନ ରାଜନୈତିକ କାରଣରୁ ଅତୀତରେ ଦଳ ତ୍ୟାଗକରି ଚାଲି ଯାଇଥିବା ବହୁ ପ୍ରବୀଣ ବ୍ୟକ୍ତି ସେହି ଅବସରରେ ପୁଣି ଶ୍ରୀମତୀ ଗାନ୍ଧୀଙ୍କ ସହ ହାତ ମିଳାଇଥିଲେ । ସେମାନଙ୍କ ମଧ୍ୟରେ ମୁଖ୍ୟତଃ ଥିଲେ ଶ୍ରୀ ଶଙ୍କର ରାଓ ଚୌହାନ୍, ହେମବତୀ ନନ୍ଦନ ବହୁଗୁଣା, ବ୍ରହ୍ମାନନ୍ଦ ରେଡ୍ଡିଙ୍କ ଭଳି ନେତାଗଣ । ସାଧାରଣ ଜନମତ ଶ୍ରୀମତୀ ଗାନ୍ଧୀଙ୍କ ସପକ୍ଷରେ ଯାଉଥିଲେ ମଧ୍ୟ ଯଦି ଶ୍ରୀ ସଞ୍ଜୟ ଗାନ୍ଧୀଙ୍କୁ କଂଗ୍ରେସ (ଇ) ତରଫରୁ ପାର୍ଲ୍ୟାମେଣ୍ଟ ପ୍ରତିନିଧି ପାଇଁ ପ୍ରତିଦ୍ୱନ୍ଦିତା କରିବାକୁ ସୁଯୋଗ ଦିଆଯାଏ ଏବଂ ତାଙ୍କ ଦ୍ୱାରା ସମର୍ଥିତ ପ୍ରାର୍ଥୀମାନଙ୍କୁ ଟିକଟ ଦିଆ ନ ଯାଏ, ତାହାହେଲେ ପରିବେଶ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ଅସୁବିଧା ସୃଷ୍ଟି କରିବ ବୋଲି ଅନେକ ସାମ୍ବାଦିକ ମନ୍ତବ୍ୟକ୍ତ କରିଥିଲେ । ତଥାପି ଶ୍ରୀ ସଞ୍ଜୟ ଗାନ୍ଧୀଙ୍କ ସମେତ ତାଙ୍କର ଶ୍ରେଷ୍ଠ ସମର୍ଥକ ରୂପେ ପରିଚିତ ବଂଶୀଲାଲ ଓ ବିଦ୍ୟାଚରଣ ଶୁକ୍ଳ ଇତ୍ୟାଦି ପ୍ରାୟ ଏକ ଶହ ବ୍ୟକ୍ତି ଉକ୍ତ ପାର୍ଲ୍ୟାମେଣ୍ଟ ନିର୍ବାଚନରେ ପ୍ରାର୍ଥୀ ଭାବେ କଂଗ୍ରେସ (ଇ) ଦଳ ତରଫରୁ ମନୋନୀତ ହୋଇଥିଲେ ।

ସେଭଳି ପ୍ରତିକୂଳ ମନେ ହେଉଥିବା ପରିସ୍ଥିତି ଭିତରେ ନିର୍ବାଚନର ଫଳାଫଳ କଣ ହେବ, ସେ ସମ୍ପର୍କରେ ବିଭିନ୍ନ ମହଲରୁ ବିଭିନ୍ନ ପ୍ରକାରର ମତବାଦ ପ୍ରକାଶ ପାଇଥିଲା । ବିଶେଷକରି ବିଭିନ୍ନ ପତ୍ରପତ୍ରିକାଗୁଡ଼ିକ ଅନେକ ବିରୋଧାତ୍ମକ ଆଲୋଚନା ପ୍ରକାଶ କରିଥିଲେ । 'ଇଣ୍ଡିଆ ଟୁଡେ'ର ମତ ଅନୁଯାୟୀ କଂଗ୍ରେସ(ଇ) ଦଳ ଲୋକସଭାରେ ୨୯୧ ଆସନ ପାଇବ ବୋଲି ଖବର ପ୍ରକାଶ ପାଇଥିଲାବେଳେ,

'କରେଣ୍ଟ୍' ସେ ସଂଖ୍ୟାରୁ ୧୦ କମାଇ ୨୮୧ ହେବ ବୋଲି ମତବ୍ୟକ୍ତ କରିଥିଲା । ନରେନ୍ଦ୍ରବାର ଜଣେ ତାନ୍ତ୍ରିକ ଗଣକ ଶ୍ରୀ ପ୍ରବୀଣ ତଲାତ ନିଜ ଶକ୍ତି ପ୍ରୟୋଗ କରି ଫଳାଫଳର ସୂଚନା ଦେଇଥିଲେ ଯେ ଦଳର ସଂଖ୍ୟା ୨୮୯ ହେବ । ତତ୍ ସହିତ ସେ ମଧ୍ୟ ଏକ ଅତି ଉଦ୍‌ଭଟ ମତପ୍ରଦାନ କରିଥିଲେ ଯେ, ଯଦିଓ କଂଗ୍ରେସ (ଇ) ଦଳ ସଂଖ୍ୟାଗରିଷ୍ଠତା ହାସଲ କରିବ ତଥାପି ଶ୍ରୀ ଜଗଜ୍ଜୀବନ ରାମ ଭାରତର ପ୍ରଧାନମନ୍ତ୍ରୀ ହେବେ । ୧୯୮୦ ମସିହା ମାର୍ଚ୍ଚ ମାସରେ ଶ୍ରୀ ରାମଙ୍କ ଆକସ୍ମିକ ମୃତ୍ୟୁ ହେବ ଏବଂ ତାପରେ ଶ୍ରୀମତୀ ଗାନ୍ଧୀ ଦେଶର ନେତୃତ୍ୱ ଗ୍ରହଣ କରିବେ ବୋଲି ସେ ଯୋଗ ସାଧନା କରି ଜାଣି ପାରିଥିଲେ । କିନ୍ତୁ ତାଙ୍କର ସମସ୍ତ ସାଧନା ମିଥ୍ୟା ପ୍ରମାଣିତ ହୋଇଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, କେବଳ ସେହି ତାନ୍ତ୍ରିକ ପଣ୍ଡିତ ମହାଶୟ ୧୯୭୭ ମସିହାରେ ଶ୍ରୀମତୀ ଗାନ୍ଧୀଙ୍କ ପରାଜୟ ହେବ ବୋଲି ଗଣନା କରିଥିଲେ ଓ ତାଙ୍କର କଥା ହିଁ ସତ୍ୟ ହୋଇଥିଲା । ବୋଧହୁଏ ସେହି କାରଣରୁ ୧୯୮୦ ମସିହା ସମ୍ପର୍କରେ ସେ ଆହୁରି ଅନେକ ଅଧିକ ଗଣନା କରିଥିଲେ ।

ସେମାନଙ୍କ ସହିତ ଦେଶ ବିଦେଶର ଆହୁରି ଅନେକ ପ୍ରବୀଣ ସାମ୍ବାଦିକ ଓ ରାଜନୀତିଜ୍ଞ ସେହି ନିର୍ବାଚନରେ କଂଗ୍ରେସ (ଇ) ପାର୍ଲ୍ୟାମେଣ୍ଟରେ ଅତି ଅଧିକ ହେଲେ ଦୁଇଶହ ସଭ୍ୟ ବିଶିଷ୍ଟ ହେବେ ବୋଲି ମତ ଦେଉଥିବାବେଳେ ପୁଣି କେତେକ ସେହି ସଂଖ୍ୟା ଏକ ଶହରୁ ଅଧିକ ହୋଇ ପାରିବ ନାହିଁ ବୋଲି ସ୍ପଷ୍ଟ ମତ ପ୍ରକାଶ କରିଥିଲେ ।

ଦିନକୁ ଦିନ ନିର୍ବାଚନ ପ୍ରଚାର ଖୁବ୍ ଜୋର୍‌ସୋରରେ ଆରମ୍ଭ ହୋଇ ଯାଇଥିଲା । ଜନତା ଓ ଲୋକଦଳରେ ଅନେକ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ ମଧ୍ୟ କଂଗ୍ରେସ (ଇ)ରେ ପ୍ରଚାର ପାଇଁ ଥିଲେ ମାତ୍ର ଜଣେ ବଳିଷ୍ଠ ବ୍ୟକ୍ତିତ୍ୱ ସମ୍ପନ୍ନ ନେତ୍ରୀ—ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ସେ ସେଇ କେତେଦିନ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଦେଶର ଏ କୋଣରୁ ସେ କୋଣ ପର୍ଯ୍ୟନ୍ତ ଗସ୍ତକରି ନିର୍ବାଚନ ପ୍ରଚାର କରିବାପାଇଁ କ୍ଳାନ୍ତ ଅନୁଭବ କରି ନ ଥିଲେ । ସେହି ସମୟ ମଧ୍ୟରେ ପ୍ରାୟତଃ ପ୍ରତିଦିନ ୧୪ରୁ ୨୦ଟି ପର୍ଯ୍ୟନ୍ତ ନିର୍ବାଚନ ସଭାରେ ଭାଷଣ ଦେବାକୁ ପଡ଼ୁଥିଲା । ପୁଣି ପ୍ରତିଦିନ ଦୀର୍ଘ ପଥ ମଧ୍ୟ ଅତିକ୍ରମ କରିବାକୁ ପଡ଼ୁଥିଲା । ତଥାପି କୌଣସିଟି ପାଇଁ ଯେମିତି ତାଙ୍କର ଅବସାଦ ନ ଥିଲା ।

ଶେଷରେ ଆସିଥିଲା ଜାନୁୟାରୀ ୩ ତାରିଖ, ୧୯୮୦ ମସିହା ।

ସେହି ଦିନଟି ଦେଶ ତଥା ବିଦେଶର ରାଜନୀତିଜ୍ଞ, ସାଧାରଣ ଜନତା, ସାମ୍ବାଦିକ, ଗଣକ ତଥା ଅନ୍ୟାନ୍ୟ ଦେଶର ସରକାରଙ୍କ ପାଇଁ ମଧ୍ୟ ଥିଲା ଏକ

ଅସାଧାରଣ ଦିନ । ଅନେକଙ୍କ ହୃଦୟରେ ଭରି ଦେଇଥିଲା ବିଭିନ୍ନ ସମ୍ଭାବନାଯୁକ୍ତ ଉଦ୍‌ବେଳନ ।

ସେହିଦିନ ଭାରତର ପାର୍ଲ୍ୟାମେଣ୍ଟ ପାଇଁ ମଧ୍ୟବର୍ତ୍ତିକାଳୀନ ନିର୍ବାଚନ ସମାପ୍ତ ହୋଇଥିଲା ।

ତାର ଫଳାଫଳ କିନ୍ତୁ ଅଧିକାଂଶ ଲୋକଙ୍କୁ ସ୍ତମ୍ଭିଭୂତ କରାଇ ଦେଇଥିଲା । ଏକା ଶ୍ରୀମତୀ ଗାନ୍ଧୀ ଥିଲେ ଅବିଚଳ ଓ ସ୍ଥିରମନା । ୧୯୭୭ର ନିର୍ବାଚନ ଫଳ ଭଳି ସେଥରର ନିର୍ବାଚନ ଫଳାଫଳ ଘୋଷଣା ମଧ୍ୟ ସମସ୍ତଙ୍କ ମନରେ ଏକ ନାଟକୀୟ ଉତ୍କଣ୍ଠା ସୃଷ୍ଟି କରିଥିଲା । ଶ୍ରୀମତୀ ଗାନ୍ଧୀଙ୍କ ଏକାଗ୍ର ଉଦ୍ୟମର ପରିଣାମ ମଧ୍ୟ ଖୁବ୍ ଆଶ୍ଚର୍ଯ୍ୟଜନକ ଥିଲା । କଂଗ୍ରେସ (ଇ) ଦଳ ପାଇଥିଲା ୩୫୧ଟି ଆସନ । ତେଣୁ ପାର୍ଲ୍ୟାମେଣ୍ଟରେ ଶ୍ରୀମତୀ ଗାନ୍ଧୀଙ୍କ ଦଳ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ହାସଲ କରିଥିଲା । ଦୁଇ-ତୃତୀୟାଂଶରୁ ଅଧିକ ପାର୍ଲ୍ୟାମେଣ୍ଟ ସଭ୍ୟଙ୍କ ସମର୍ଥନ ପାଇ ଆବଶ୍ୟକ ହେଲେ ସମ୍ବିଧାନ ସଂଶୋଧନ କରିବା କ୍ଷମତା ମଧ୍ୟ ସେ ହାସଲ କରି ପାରିଥିଲେ । ଶ୍ରୀ ଜଗଜ୍ଜୀବନ ରାମଙ୍କ ନେତୃତ୍ୱରେ ପରିଚାଳିତ ଜନତା ଦଳ ମାତ୍ର ୩୧ଟି ଆସନ ପାଇ ତୃତୀୟ ସ୍ଥାନରେ ଥିଲେ ଓ ଚରଣ ସିଂହଙ୍କ ନେତୃତ୍ୱରେ ପରିଚାଳିତ ଦଳ ଥିଲେ ସଂଖ୍ୟାନୁଯାୟୀ ଦ୍ୱିତୀୟ ବୃହତ୍ତମ ଗୋଷ୍ଠୀ ।

୧୯୮୦ ମସିହା ଜାନୁୟାରୀ ସାତ ତାରିଖରେ ପ୍ରକାଶିତ ନିର୍ବାଚନ ଫଳାଫଳରୁ ଜଣା ପଡ଼ିଥିଲା ଯେ, ଶ୍ରୀମତୀ ଗାନ୍ଧୀ ଉତ୍ତରପ୍ରଦେଶର ରାୟବରେଲି ଓ ଓ ଆନ୍ଧ୍ରପ୍ରଦେଶର ମେଡ଼ାକ୍ ନିର୍ବାଚନମଣ୍ଡଳୀରୁ ବହୁ ଅଧିକ ଭୋଟରେ ଜୟଯୁକ୍ତ ହୋଇଥିବାବେଳେ ଶ୍ରୀଯୁକ୍ତ ସଞ୍ଜୟ ଗାନ୍ଧୀ ମଧ୍ୟ ଆମେଥିରୁ ନିର୍ବାଚିତ ହୋଇ ପାର୍ଲ୍ୟାମେଣ୍ଟକୁ ଆସିଥିଲେ ।

ଦେଶରେ ଚତୁର୍ଥଥର ପାଇଁ ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କରିଥିଲେ ୧୯୮୦ ମସିହା ଜାନୁୟାରୀ ୧୪ ତାରିଖ ଦିନ ।

□ □ □

## ॥ ତେଇଶି ॥

# ଆନ୍ତର୍ଜାତିକ କ୍ଷେତ୍ରରେ ଭାରତ



ଭାରତକୁ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠିତ କରାଇବା ପାଇଁ ଶ୍ରୀମତୀ ଗାନ୍ଧୀଙ୍କ ଆନ୍ତରିକ ଉଦ୍ୟମ ନିଶ୍ଚିତ ପ୍ରଣିଧାନ ଯୋଗ୍ୟ । ବିଶେଷକରି ତାଙ୍କ ନେତୃତ୍ୱର ଶେଷ ବର୍ଷଗୁଡ଼ିକ ପୃଥିବୀ ଇତିହାସରେ ଭାରତର ବଳିଷ୍ଠ ସ୍ୱାକ୍ଷର ଲିପିବଦ୍ଧ କରିବାପାଇଁ ସମର୍ଥ ହୋଇଥିଲା । କେବଳ ଭାରତକୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରାଇବା ଲାଗି ସେ ବ୍ୟାକୁଳ ନ ଥିଲେ, ସତତ ଚେଷ୍ଟିତ ଥିଲେ ଭାରତର ଗରିବ, ନିଃସ୍ୱ ଜନସାଧାରଣଙ୍କ ଉନ୍ନତିପାଇଁ ।

ଶ୍ରୀମତୀ ଗାନ୍ଧୀ ଆନ୍ତରିକ ଉପଲବ୍ଧି କରିଥିଲେ ଯେ, ଏହି ଭୂଖଣ୍ଡରେ ଦୀର୍ଘ ଉପନିବେଶବାଦ ହିଁ ଭାରତର ନିଃସ୍ୱତାର ଏକମାତ୍ର କାରଣ ଏବଂ ସେଥିରୁ ମୁକ୍ତି ପାଇବାପାଇଁ ଆବଶ୍ୟକ ବିଭିନ୍ନ ପ୍ରକାରର ବୈଜ୍ଞାନିକ ଗବେଷଣା ଓ ତାର ଯଥାଯଥ ପ୍ରୟୋଗ । * ସେଥିଲାଗି ସେ ସରକାରୀ ସ୍ତରରେ ଏକ ସ୍ୱତନ୍ତ୍ର ବିଭାଗ—ପରିପାର୍ଶ୍ୱ ବିଭାଗ ପ୍ରତିଷ୍ଠା କରି କେତେଜଣ ବିଶିଷ୍ଟ ବୈଜ୍ଞାନିକଙ୍କୁ ସେହି ବିଭାଗର ଉଚ୍ଚପଦବୀରେ ଅବସ୍ଥାପିତ କରିଥିଲେ । ତାଙ୍କର ସେପ୍ରକାର ମନୋବୃତ୍ତି ତଥା କାର୍ଯ୍ୟକଳାପଗୁଡ଼ିକର ସମୀକ୍ଷା କରି ଲଣ୍ଡନରୁ ପ୍ରକାଶ ପାଉଥିବା ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ପତ୍ରିକା 'ନେଚର' ଭାରତରେ ବିଜ୍ଞାନର ଅଗ୍ରଗତି ସମ୍ପର୍କିତ ଏକ ସ୍ୱତନ୍ତ୍ର ପ୍ରବନ୍ଧରେ ଶ୍ରୀମତୀ ଗାନ୍ଧୀଙ୍କୁ "ଭାରତୀୟ ବିଜ୍ଞାନର ନାୟିକା" ବୋଲି ଅଭିହିତ କରିଥିଲା । ପ୍ରକୃତରେ ବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ଭାରତୀୟ ବୈଜ୍ଞାନିକ ପ୍ରଗତିକୁ ଗତିଶୀଳ କରାଇ ପାରିଥିଲା ଓ ଭାରତକୁ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠିତ କରାଇବାରେ ସହାୟକ ହୋଇ ପାରିଥିଲା ।

---

ଲଣ୍ଡନର 'ନେଚର' ପତ୍ରିକା ପ୍ରତିନିଧିଙ୍କ ସହିତ ୧୯୮୪ ଅପ୍ରେଲ୍ ମାସରେ ସାକ୍ଷାତ୍କାର ବେଳେ ମତ ପ୍ରକାଶ ।

**ପ୍ରଥମ ଆଣବିକ ବିସ୍ଫୋରଣ :—**

୧୯୭୪ ମସିହା ମଇ ୧୮ ତାରିଖ ଭାରତର ବୈଜ୍ଞାନିକ ତଥା ଅର୍ଥନୈତିକ ପ୍ରଗତିର ଇତିହାସପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଦିନ । ସେଦିନ ପୃଥିବୀର ଆଣବିକ ଶକ୍ତି ଉତ୍ପାଦନ କରୁଥିବା ରାଷ୍ଟ୍ରମାନଙ୍କ ସହିତ ପ୍ରଥମେ ଯୋଗଦେଇ ଭାରତ ଏକ ନୂତନ ଶିହରଣ ସୃଷ୍ଟି କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ରାଜସ୍ଥାନର ମରୁ ଅଞ୍ଚଳ-ପୋକାରନ୍‌ର ଭୂତଳରେ ଭାରତ ତାର ପ୍ରଥମ ଆଣବିକ ବିସ୍ଫୋରଣ ଘଟାଇଥିଲା । ଭାରତର ଆଣବିକ କମିଶନର ଅଧ୍ୟକ୍ଷ ଘୋଷଣା କରି କହିଥିଲେ ଯେ, ଭାରତ ସରକାରଙ୍କ ଇଚ୍ଛା ଆଣବିକ ଶକ୍ତିକୁ ସମ୍ପୂର୍ଣ୍ଣ ରୂପେ ଶାନ୍ତି ଉଦ୍ଦେଶ୍ୟରେ ପ୍ରୟୋଗ କରିବେ । ସେଥିପାଇଁ ସେମାନେ ସଙ୍କଳ୍ପବଦ୍ଧ । କେବଳ ସେହି ଉଦ୍ଦେଶ୍ୟରେ ସେମାନେ ଭୂପୃଷ୍ଠର ପ୍ରାୟ ୧୦୦ ମିଟର ତଳେ ସେଭଳି ପରୀକ୍ଷା କରିବାପାଇଁ ସେମାନେ ନିଷ୍ପତ୍ତି ନେଇଥିଲେ । ସେ ବିସ୍ଫୋରଣର ଶକ୍ତି, ୧୯୪୫ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଜାପାନର ହିରୋସୀମା ଓ ନାଗାସାକୀ ଉପରେ ନିକ୍ଷେପ କରି ଆମେରିକା ଯୁଦ୍ଧର ଅବସାନ ଘଟାଇଥିବା ବୋମାର ଶକ୍ତି ଅପେକ୍ଷା କୌଣସି ଗୁଣରେ କମ୍ ନ ଥିଲା । ସେହି ପରୀକ୍ଷାମୂଳକ ବିସ୍ଫୋରଣର ପରିଣାମ ସ୍ୱରୂପ ଉକ୍ତ ଭୂଭାଗର ମାନଚିତ୍ର ସମ୍ପୂର୍ଣ୍ଣ ରୂପେ ବଦଳି ଯାଇଥିଲା ।

ପୃଥିବୀର ଶକ୍ତିଶାଳୀ ଦେଶମାନଙ୍କ ତାଲିକାରେ ଭାରତର ନାମ ଯୋଡ଼ି ହୋଇଯିବା ଲାଗି ତାହା ଯଥେଷ୍ଟ କାରଣ ସ୍ୱରୂପ ହୋଇ ପାରିଥିଲା । ପୃଥିବୀର ଅନ୍ୟାନ୍ୟ ଧନୀ ତଥା ପରମାଣୁ ବିଜ୍ଞାନ ଓ କାରିଗରୀ କ୍ଷେତ୍ରରେ ଯଥେଷ୍ଟ ଉନ୍ନତ ଥିବା ରାଷ୍ଟ୍ରମାନେ ସାଧାରଣତଃ ସାତରୁ ଦଶ ବର୍ଷ ନେଉଥିବାବେଳେ, ଭାରତୀୟ ବୈଜ୍ଞାନିକମାନେ ସେ ପ୍ରକାର ଗବେଷଣା ପାଇଁ ମାତ୍ର ତିନି ବର୍ଷ ସମୟ ନେଇଥିଲେ । ପୁଣି ସେଭଳି ପରୀକ୍ଷା ପାଇଁ ଯେତିକି ଅର୍ଥ ସାଧାରଣତଃ ବିନିଯୋଗ କରାଯାଇଥାଏ ତାଠାରୁ ଯଥେଷ୍ଟ କମ୍ ଖର୍ଚ୍ଚରେ ତାହା ସମ୍ଭବ ହୋଇ ପାରିଥିଲା । କେବଳ ଉକ୍ତ ପରୀକ୍ଷାପାଇଁ ଖର୍ଚ୍ଚ ହୋଇଥିଲା ୩୦ ଲକ୍ଷ ଟଙ୍କା । ଭାରତୀୟ ବୈଜ୍ଞାନିକ-ମାନେ ଅନ୍ୟ ଉନ୍ନତ ରାଷ୍ଟ୍ରର ବୈଜ୍ଞାନିକମାନଙ୍କଠାରୁ କୌଣସି ଗୁଣରେ କମ୍ ନ ଥିଲେ—ଏକଥା ପ୍ରମାଣିତ ହେବା ସଙ୍ଗେ ସଙ୍ଗେ ପ୍ରମାଣିତ ମଧ୍ୟ ହୋଇଥିଲା ଯେ ନିକଟ ଭବିଷ୍ୟତରେ କମ୍ପା ଆବଶ୍ୟକ କ୍ଷେତ୍ରରେ ଆହୁରି ଉନ୍ନତତର ବୈଜ୍ଞାନିକ ଗବେଷଣା ତଥା ଉଦ୍‌ଭାବନ ଭାରତର ବୈଜ୍ଞାନିକମାନଙ୍କ ନିକଟରେ ଅସମ୍ଭବ ନୁହେଁ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଭାରତର ନୀତି ସମ୍ପର୍କରେ ସେତେବେଳେ ସ୍ପଷ୍ଟ ଘୋଷଣା କରିଥିଲେ ଯେ, ଆଣବିକ ଶକ୍ତିକୁ ଭାରତ

କେବଳ ଶାନ୍ତି ଉଦ୍ଦେଶ୍ୟରେ ହିଁ ବିନିଯୋଗ କରିବ । ସେଥିରେ କେହି କୌଣସି ପ୍ରକାର ସନ୍ଦେହ ପୋଷଣ କରିବା ଅନୁଚିତ । ଭାରତର ଆର୍ଥନୀତିକ ପ୍ରଗତି କ୍ଷେତ୍ରରେ ଯେଉଁ ପ୍ରତିବନ୍ଧକମାନ ରହିଛି, ହୁଏତ ଆଣବିକ ଶକ୍ତି ବିନିଯୋଗ କରାଯାଇ ସେ କ୍ଷେତ୍ରରେ ପରିବର୍ତ୍ତନ ଅଣାଯାଇ ପାରିବ । ସେକଥା ସେହିଦିନ ହିଁ ଶ୍ରୀମତୀ ଗାନ୍ଧୀ ଏକ ସାମ୍ବାଦିକ ସମ୍ମିଳନୀରେ ଘୋଷଣା କରିଥିଲେ ।

କିନ୍ତୁ ସେ ବିସ୍ଫୋରଣ ପରେ ପରେ ପୃଥିବୀର ଶକ୍ତିଶାଳୀ ଦେଶମାନଙ୍କରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ଆଣବିକ ଶକ୍ତିର ପ୍ରଥମ ଉତ୍ପାଦକ ଆମେରିକା ସେ ଘଟଣାରେ ଏକପ୍ରକାର ହତୋତ୍ସାହ ହୋଇ ଆଶଙ୍କାପୂର୍ଣ୍ଣ ଘୋଷଣା କରିଥିଲା ଯେ ଭାରତର ଆଣବିକ ଗବେଷଣା ପୃଥିବୀର ବର୍ତ୍ତମାନର ଜଟିଳ ପରିସ୍ଥିତିକୁ ଆହୁରି ଅଧିକ ଜଟିଳ କରିଦେବ । ଜାପାନ ମଧ୍ୟ ସେ ବିସ୍ଫୋରଣରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି ପ୍ରତିବାଦ ଜଣାଇଥିଲା ଏବଂ ପ୍ରକାରାନ୍ତରେ ଧମକ ଦେଇଥିଲା ଯେ, ଭାରତକୁ ଜାପାନ ଦେଉଥିବା ସାହାଯ୍ୟ ନୀତିଗୁଡ଼ିକରେ ପରିବର୍ତ୍ତନ ମଧ୍ୟ ହୋଇପାରେ । ସବୁଠାରୁ ଅଧିକ ପ୍ରତିକ୍ରିୟାଶୀଳ ହୋଇ ଉଠିଥିଲା ପାକିସ୍ଥାନ । ଭାରତର ଆଣବିକ ବିସ୍ଫୋରଣର ଗଭୀର ନିନ୍ଦାବାଦ କରି ତତ୍‌କାଳୀନ ରାଷ୍ଟ୍ରପତି ଭୁଟ୍ଟୋ ପାକିସ୍ଥାନର ପ୍ରତିରକ୍ଷା ପାଇଁ ତାହା ଏକ ପରମ ବିପଦ ବୋଲି ଆକ୍ଷେପ କରି ସେ ଘୋଷଣା କରିଥିଲେ ଯେ ଭାରତର ପଦକ୍ଷେପସବୁ ଆଣବିକ ଶକ୍ତି ପ୍ରସ୍ତୁତ କରୁ ନଥିବା ରାଷ୍ଟ୍ରଗୁଡ଼ିକ ପାଇଁ ବିପଦର ଆହ୍ୱାନ । ସ୍ୱର୍ଗତ ଭୁଟ୍ଟୋଙ୍କ ସେଦିନର ପ୍ରତିକ୍ରିୟା ପ୍ରକୃତରେ ଅଦ୍‌ଭୁତ ଥିଲା । ସେ ଆକ୍ଷେପ କରିଥିଲେ ଯେ ଆଣବିକ ବିସ୍ଫୋରଣ ଭାରତ ଓ ପାକିସ୍ଥାନ ମଧ୍ୟରେ ଯୁଦ୍ଧ ନ ହେବାଲାଗି ଚୁକ୍ତି କରିବାରେ ପ୍ରଧାନ ଅନ୍ତରାୟ । ଜାତିସଂଘର ନିରାପତ୍ତା ପରିଷଦରେ ସେ ସମ୍ପର୍କରେ ପାକିସ୍ଥାନ ପ୍ରଶ୍ନ ଉଠାଇବ ବୋଲି ମଧ୍ୟ ସେ ଘୋଷଣା କରିଥିଲେ ।

ଆଣବିକ ଶକ୍ତି ଉତ୍ପାଦନ ଲାଗି କାନାଡ଼ା ଭାରତକୁ କୌଣସି ପ୍ରକାର ସାହାଯ୍ୟ ଦେବନାହିଁ ବୋଲି ଘୋଷଣା କରିଥିଲା । କେବଳ ସେତିକି ନୁହେଁ, କାନାଡ଼ାର ଅନ୍ୟାନ୍ୟ ସ୍ଥାନ ସମେତ ମଣ୍ଟ୍ରିଲ୍‌ରେ ଆଣବିକ ଗବେଷଣା ଦିଗରେ ସହାୟତା କରୁଥିବା ବୈଜ୍ଞାନିକମାନଙ୍କଠାରୁ ସମସ୍ତ ପ୍ରକାରର ସାହାଯ୍ୟ ସହଯୋଗ ପ୍ରତ୍ୟାହାର କରାଇ ନିଆଯାଇଥିଲା । କିନ୍ତୁ ଅପର ପକ୍ଷରେ ସୋଭିଏତ୍ ରୁଷ, ଯୁଗୋସ୍ଲୋଭିଆ, ଫ୍ରାନ୍‌ସ ଏ ପ୍ରକାର ଗବେଷଣାତ୍ମକ ବିସ୍ଫୋରଣର ପ୍ରଶଂସା କରିଥିଲେ । ଯୁଗୋସ୍ଲୋଭିଆ ସରକାର ମତ ଦେଇଥିଲେ "ଆଣବିକ ଶକ୍ତିକୁ ଶାନ୍ତିପୂର୍ଣ୍ଣ ବିନିଯୋଗ କରିବା ପାଇଁ ଆଗ୍ରହୀଥିବା ଶାନ୍ତିକାମୀ ରାଷ୍ଟ୍ରଗୁଡ଼ିକର ଉଦ୍ୟୋଗ ଦିଗରେ ଏହା ଏକ ମହତ୍ତ୍ୱପୂର୍ଣ୍ଣ ଅବଦାନ ।" ଚୀନର ମତାମତ ଯଦିଓ ସେଭଳି ବିରୋଧାତ୍ମକ ନ ଥିଲା, ତଥାପି ଭାରତ ସପକ୍ଷରେ ମଧ୍ୟ ସେଭଳି

ଉତ୍ସାହପ୍ରଦ ନ ଥିଲା । ଭାରତର ଏକ ପାକ୍ଷିକ ପତ୍ରିକା ଏ ବିଷ୍ଫୋରଣର ଯଥେଷ୍ଟ ପୂର୍ବରୁ ଥରେ ତାର ମତାମତ ପ୍ରକାଶ କରିଥିଲା ଯେ, ଭାରତ ଯଦି ତାର ବକ୍ତବ୍ୟ ପୃଥିବୀର ଦରବାରରେ ଉପସ୍ଥାପିତ କରିବାକୁ ଚାହେଁ ତାହେଲେ ତାକୁ ଆଣବିକ ଉତ୍ପାଦନ ପାଇଁ ଆବଶ୍ୟକୀୟ ଆର୍ଥନୀତିକ ପଦକ୍ଷେପସବୁ ଗ୍ରହଣ କରି ସେହି ଦିଗରେ ଗବେଷଣାକୁ ତ୍ୱରାନ୍ୱିତ କରିବାକୁ ହେବ । † ବାସ୍ତବିକ୍ ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ସମ୍ମାନ ବୃଦ୍ଧି କରାଇବା ଲାଗି ତାହାଥିଲା ଏକ ଦୃଢ଼ ପଦକ୍ଷେପ । ସେହିପରି ଆଉ ଏକ ପଦକ୍ଷେପ ଥିଲା ଶ୍ରୀମତୀ ଗାନ୍ଧୀଙ୍କ ମହାକାଶ ଗବେଷଣା ପାଇଁ ପ୍ରୋତ୍ସାହନ ।

ଲଣ୍ଡନର ବିଖ୍ୟାତ ବିଜ୍ଞାନ ପତ୍ରିକା 'ନେଚର'ର ପ୍ରତିନିଧିଙ୍କ ସହ ଥରେ ସାକ୍ଷାତ୍କାର ବେଳେ ଶ୍ରୀମତୀ ଗାନ୍ଧୀ କହିଥିଲେ ଯେ, ଶୈଶବରୁ ହିଁ ବିଜ୍ଞାନ ପ୍ରତି ତାଙ୍କର ଅଧିକ ମମତା ଥିଲା । ଗରିବଙ୍କ ପାଇଁ ମହାକାଶ ବିଜ୍ଞାନ ବିଶେଷ ସହାୟକ ହେବାକୁ ଥିବାଯୋଗୁଁ ତାଙ୍କ ସରକାର ସେ କ୍ଷେତ୍ରରେ ଗବେଷଣା ପାଇଁ ଅଧିକ ଯତ୍ନଶୀଳ । ତାର ପରିଣାମ ସ୍ୱରୂପ ମହାକାଶଯାନ ଆର୍ଯ୍ୟଭଟ୍ଟରୁ ଆରମ୍ଭ କରି ତାଙ୍କରି ନେତୃତ୍ୱ କାଳରେ ସ୍କ୍ୱାର୍ଡ଼ନ୍ ଲିଡ଼ର୍ ରାକେଶ ଶର୍ମା ପର୍ଯ୍ୟନ୍ତ ଅନ୍ତରୀକ୍ଷକୁ ଯାଇ ଗବେଷଣା କରିବା ଦିଗରେ ସଫଳକାମ ହୋଇ ପାରିଥିଲେ ।

**ମହାକାଶ ଗବେଷଣାରେ ସଫଳତା :—**

ମାନବ ଜାତିର ସୁଖ ସମୃଦ୍ଧି ବୃଦ୍ଧି କରିବାପାଇଁ ମହାକାଶ ଗବେଷଣାର ଅବଦାନ କୌଣସି ଗୁଣରେ କମ୍ ନୁହେଁ । ଭାରତୀୟ ବୈଜ୍ଞାନିକମାନଙ୍କ ଦ୍ୱାରା ମହାକାଶ ଗବେଷଣା ଦିଗରେ ଲବ୍ଧ ସହାୟତା ବିଶେଷ ପ୍ରଣିଧାନଯୋଗ୍ୟ । ସେଥିପାଇଁ ଶ୍ରୀମତୀ ଗାନ୍ଧୀଙ୍କ ବୈଦେଶିକ ନୀତି ମଧ୍ୟ ଅତ୍ୟନ୍ତ ଉପାଦେୟ । ଦେଶର ପ୍ରଧାନମନ୍ତ୍ରୀ ଭାବରେ ମହାକାଶ ଗବେଷଣା ପାଇଁ ତାଙ୍କର ଉତ୍ସାହ ଓ ଉଦ୍ଦୀପନାର ପରିଣାମ ସ୍ୱରୂପ ଭାରତ ନିଜ ଉଦ୍ୟମରେ କୃତ୍ରିମ ଉପଗ୍ରହ ଆର୍ଯ୍ୟଭଟ୍ଟ ଭାସ୍କର—୧ ଓ ଭାସ୍କର—୨ କୁ ମହାକାଶ ଗବେଷଣା ଉଦ୍ଦେଶ୍ୟରେ ପ୍ରେରଣ କରିଥିଲା । ମହାକାଶ ଗବେଷଣା କାର୍ଯ୍ୟକ୍ରମକୁ ଉତ୍ସାହିତ କରିବାପାଇଁ ୧୯୭୨ ମସିହାରେ କେନ୍ଦ୍ରରେ ଏକ ସ୍ୱତନ୍ତ୍ର ବିଭାଗ ମଧ୍ୟ ସୃଷ୍ଟି କରିଥିଲେ ।

ସେହି ଉଦ୍ଦେଶ୍ୟରେ ବାଙ୍ଗାଲୋରଠାରେ ଏକ ବହୁମୁଖୀ ସଂସ୍ଥା ସ୍ଥାପିତ ହୋଇଥିଲା । ଉକ୍ତ ବୈଜ୍ଞାନିକ କେନ୍ଦ୍ରରେ ଭାରତୀୟ ବୈଜ୍ଞାନିକମାନଙ୍କ ଦ୍ୱାରା ନିର୍ମିତ ୩୬୦ କିଲୋଗ୍ରାମ ଓଜନର ପ୍ରଥମ କୃତ୍ରିମ ଉପଗ୍ରହ ୧୯୭୫ ମସିହା ଅପ୍ରେଲ ୧୯ ତାରିଖ ଦିନ ରୁଷର ଏକ ଉତ୍ତୋଳନ ଘାଟିରୁ ଦିନ ପ୍ରାୟ ଗୋଟାଏ ବେଳେ

---

† Caravan—March 1, 1974. P—8

ଆକାଶକୁ ଛଡ଼ା ଯାଇଥିଲା । ଉକ୍ତ ନୀଳ ଓ ବାଇଗଣୀ ରଙ୍ଗର ଉପଗ୍ରହଟିର ବ୍ୟାସ ୧୦୭ ସେ. ମି. ଓ ଉଚ୍ଚତା ୧୧୬ ସେ. ମି. । ପୃଥିବୀର ବାୟୁମଣ୍ଡଳ, ସୂର୍ଯ୍ୟ ତଥା ବାହ୍ୟ ଅନ୍ତରୀକ୍ଷ ସମ୍ପର୍କରେ ଅନେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସଂଗ୍ରହ କରିବା ପାଇଁ ଉପଗ୍ରହଟି ବିନିଯୋଗ କରାଯାଇଥିଲା ।

ଭାରତୀୟ ମହାକାଶ କମିଶନ୍‌ର ଅଧ୍ୟକ୍ଷ ଅଧ୍ୟାପକ ସତୀଶ୍ ଧାବନ୍ ସାମ୍ବାଦିକ-ମାନଙ୍କ ସହ ଏକ ସାକ୍ଷାତ୍‌କାରରେ କହିଥିଲେ ଯେ ଶ୍ରୀମତୀ ଗାନ୍ଧୀଙ୍କ ଅଭିଳାଷ ଅନୁଯାୟୀ ଭାରତୀୟ ପ୍ରଥମ ଉପଗ୍ରହର ନାମ ଆର୍ଯ୍ୟଭଟ୍ଟ ରଖାଯାଇଥିଲା । ଆର୍ଯ୍ୟଭଟ୍ଟ ଥିଲେ ଅତୀତ ଭାରତର ଜଣେ ବିଶିଷ୍ଟ ଜ୍ୟୋତିର୍ବିଜ୍ଞାନୀ ତଥା ଗଣିତଜ୍ଞ । ସେ ପୁରାତନ ପାଟଳିପୁତ୍ର ( ବର୍ତ୍ତମାନ ବିହାର ପ୍ରଦେଶର ପାଟନା ) ନିକଟବର୍ତ୍ତୀ କୁସୁମପଡ଼ାରେ ୪୭୬ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ମାତ୍ର ୨୩ ବର୍ଷ ବୟସରେ ପ୍ରଥମ ଗବେଷଣାମୂଳକ ପୁସ୍ତକ ରଚନା କରିଥିଲେ । ସୂର୍ଯ୍ୟ, ପୃଥିବୀ, ଗ୍ରହ, ବିଭିନ୍ନ ଉପଗ୍ରହ ତଥା ନକ୍ଷତ୍ରର ସ୍ଥିତି ଓ ପରସ୍ପରର ସମ୍ପର୍କ ନେଇ ଅନେକ ତଥ୍ୟ ସେ ସେଥିରେ ସନ୍ନିବେଶିତ କରିଥିଲେ । ତାଙ୍କରି ନାମାନୁସାରେ ଭାରତର ପ୍ରଥମ ଉପଗ୍ରହକୁ ନାମିତ କରି ପ୍ରତିଭାର ପୂଜା କରିବା ଶ୍ରୀମତୀ ଗାନ୍ଧୀଙ୍କ ପ୍ରଥମ ଉଦ୍ଦେଶ୍ୟ ଥିଲା ।

ଏହି ଐତିହାସିକ ସଫଳତା ଫଳରେ ଭାରତ ମହାକାଶ ଯୁଗରେ ପାଦ ଦେଇଥିଲା । ମହାକାଶକୁ ଉପଗ୍ରହ ପ୍ରେରଣରେ ଭାରତର ସ୍ଥାନ ଥିଲା ଏକାଦଶ । ତା ପୂର୍ବରୁ ଆମେରିକା, ରୁଷ, ପଶ୍ଚିମ ଜର୍ମାନୀ, ଚୀନ, ଫ୍ରାନ୍ସ, ବ୍ରିଟେନ୍, ଅଷ୍ଟ୍ରେଲିଆ, କାନାଡ଼ା, ଜାପାନ୍ ଓ ଇଟାଲି ମହାକାଶକୁ ଉପଗ୍ରହମାନ ପ୍ରେରଣ କରି ସାରିଥିଲେ ।

ଭାରତୀୟ ମହାକାଶ ଗବେଷଣା ସଂସ୍ଥା ଓ ସୋଭିଏତ୍ ବିଜ୍ଞାନ ଏକାଡ଼େମୀ ମଧ୍ୟରେ ସ୍ୱାକ୍ଷରିତ ହୋଇଥିବା ୧୯୭୨ ମସିହା ମଇ ମାସ ୧୦ ତାରିଖରେ ଚୁକ୍ତି ଅନୁଯାୟୀ ସୋଭିଏତ୍ ରୁଷର ଇଣ୍ଟର କସମସ ରକେଟ୍ ସାହାଯ୍ୟରେ ମହାଶୂନ୍ୟକୁ ଆର୍ଯ୍ୟଭଟ୍ଟ ଯାତ୍ରା କରିଥିଲା । ଏହି ଉପଗ୍ରହର ଯୋଜନା ପ୍ରସ୍ତୁତ ଓ ପରୀକ୍ଷା ସନ୍ତୋଷଜନକ ପରିକଳ୍ପନା ବାଙ୍ଗାଲୋରଠାରେ ଡିସେମ୍ବର ୧୯୭୨ ମସିହାରେ ଆରମ୍ଭ ହୋଇ ୧୯୭୫ ଅପ୍ରେଲରେ ସଫଳତାର ସହିତ କାର୍ଯ୍ୟକାରୀ ହୋଇ ପାରିଥିଲା ।

ଭୂପୃଷ୍ଠରୁ ଆର୍ଯ୍ୟଭଟ୍ଟ ଆକାଶକୁ ଉତ୍‌କ୍ଷେପଣ ହେବା ଦିନ ଶ୍ରୀମତୀ ଗାନ୍ଧୀ ପଣ୍ଡିଚେରୀ ଗସ୍ତରେ ଥିଲେ । ଯେତେବେଳେ ସେ ଆର୍ଯ୍ୟଭଟ୍ଟର ସଫଳତା ଶୁଣିଥିଲେ ଅତି ଆନନ୍ଦ ବିହ୍ୱଳ ହୋଇ ସେ ମତପ୍ରକାଶ କରିଥିଲେ ଯେ ଜାତୀୟ ଉନ୍ନୟନ କ୍ଷେତ୍ରରେ ବିଜ୍ଞାନକୁ ଯଥାଯଥ ଭାବେ ପ୍ରୟୋଗ କରିବା ପାଇଁ ଭାରତ କ୍ରମାଗତ ଭାବେ ଉଦ୍ୟମ ଚଳାଇ ଆସିଛି । ସେହି ଦୃଷ୍ଟିରୁ ଆର୍ଯ୍ୟଭଟ୍ଟର ସଫଳତା ଏକ

ଗୁରୁତ୍ୱପୂର୍ଣ୍ଣ ଘଟଣା । ସେହି ଅବସରରେ ଆନ୍ତରିକ ସହାନୁଭୂତି ପାଇଁ ସୋଭିଏତ ରୁଷକୁ ଧନ୍ୟବାଦ ଜଣାଇଥିଲେ ଶ୍ରୀମତୀ ଗାନ୍ଧୀ ।

ଆର୍ଯ୍ୟଭଟ୍ଟ ପୃଥିବୀର କକ୍ଷ ପଥରେ ପରିକ୍ରମା କରିବା ଲାଗି ସର୍ବୋଚ୍ଚ ୬୨୩ କି. ମି ଏବଂ ସର୍ବନିମ୍ନ ୫୦୪ କି. ମି. ମଧ୍ୟରେ ପୃଥିବୀକୁ ପ୍ରଦକ୍ଷିଣ କରୁଥିଲା ଏବଂ ପ୍ରତି ପ୍ରଦକ୍ଷିଣ ପାଇଁ ୯୬.୪୧ ମିନିଟ ଲାଗିଥିଲା । ଶ୍ରୀହରିକୋଟା କେନ୍ଦ୍ରଠାରୁ ଉପଗ୍ରହକୁ ସମ୍ବାଦ ପଠାଯାଇଥିଲା ଓ ସଂଗ୍ରହ ମଧ୍ୟ କରାଯାଇଥିଲା ।

ଆର୍ଯ୍ୟଭଟ୍ଟ ପରେ ପରେ ବାଙ୍ଗାଲୋରସ୍ଥ ମହାକାଶ ଗବେଷଣା ସଂସ୍ଥା ଦ୍ୱାରା ଭାସ୍କର—୧ ଓ ଭାସ୍କର—୨ ନାମରେ ଆଉ ଦୁଇଟି କୃତ୍ରିମ ଉପଗ୍ରହ ରୁଷ ମହାକାଶ କେନ୍ଦ୍ରରୁ ପ୍ରେରିତ ହୋଇଥିଲା । ଭାରତ ତାର ପ୍ରଥମ ପରୀକ୍ଷାମୂଳକ ଯୋଗାଯୋଗ ଉପଗ୍ରହ ଆପେଲ୍‌କୁ ୧୯୮୧ ମସିହା ଜୁନ୍ ୧୯ ତାରିଖରେ ଫ୍ରେଞ୍ଚ ଗାଏନାର କ୍ୟୁରୋ ରକେଟ୍‌କ୍ଷେପଣ ଘାଟୀରୁ ମହାକାଶକୁ ପ୍ରେରଣ କରାଯାଇଥିଲା । ପୁଣି ଆମେରିକାର କେପ୍-କାନାଭେରାଲ୍‌ଠାରୁ ୧୯୮୨ ମସିହା ଅପ୍ରେଲ ମାସ ୧୦ ତାରିଖ ଦିନ ଇନ୍‌ସାଟ୍—୧ (କ) ପ୍ରେରିତ ହୋଇଥିଲା । ତାହା କିନ୍ତୁ ପରିକଳ୍ପିତ ସଫଳତା ହାସଲ କରିପାରି ନ ଥିଲା । ପୁଣି ସେହିଠାରୁ ହିଁ ୧୯୮୩ ମସିହା ଅଗଷ୍ଟ ୩୦ ତାରିଖ ଦିନ ଇନ୍‌ସାଟ-୧ (ଖ) ଚ୍ୟାଲେଞ୍ଜର ମହାକାଶ ଯାନ ଦ୍ୱାରା ପ୍ରେରିତ ହୋଇଥିଲା ।

ଭାରତର ଇତିହାସ ପାଇଁ ୧୯୮୦ ମସିହା ଜୁଲାଇ ୧୮ ତାରିଖ ଏକ ସ୍ମରଣୀୟ ଦିବସ । ନିଜ ଦେଶରେ ନିର୍ମିତ ରୋହିଣୀ-୧ ରକେଟ୍ ଦ୍ୱାରା ଶ୍ରୀହରିକୋଟା କେନ୍ଦ୍ରରୁ ଏକ କୃତ୍ରିମ ଉପଗ୍ରହ ମହାକାଶକୁ ପ୍ରେରିତ ହୋଇଥିଲା । ଏହା ଫଳରେ ଆମେରିକା, ରୁଷିଆ, ଫ୍ରାନ୍‌ସ, ଜାପାନ ଓ ଚୀନ ପରେ ପରେ ଷଷ୍ଠ ଦେଶ ରୂପେ ଭାରତ ସ୍ୱୀକୃତି ଲାଭ କରିଥିଲା । ନିଜ ଦେଶରେ ପ୍ରସ୍ତୁତ ହୋଇଥିବା ଏସ୍. ଏଲ୍. ଭି-୩ ନାମକ ରକେଟ୍ ସାହାଯ୍ୟରେ ୧୯୮୧ ମସିହା ମଇ ୧୦ ତାରିଖ ଦିନ ରୋହିଣୀ-୧ (ଡ) କୃତ୍ରିମ ଉପଗ୍ରହ ସେହି କେନ୍ଦ୍ରରୁ ହିଁ ପ୍ରେରଣ କରାଯାଇଥିଲା, କିନ୍ତୁ ତାହା ଆକାଂକ୍ଷିତ ଲକ୍ଷ୍ୟ ପୂରଣ କରିପାରି ନ ଥିଲା । ତେବେ ପୁଣି ସେହି କେନ୍ଦ୍ରରୁ ୧୯୮୩ ମସିହା ଅପ୍ରେଲ୍ ୧୩ ତାରିଖ ଦିନ ରୋହିଣୀ-୨ (ଡ) କୃତ୍ରିମ ଉପଗ୍ରହ ମହାକାଶକୁ ପ୍ରେରଣ କରାଯାଇଥିଲା । ଏହା ନିଶ୍ଚିତଭାବେ ସ୍ୱୀକାର କରାଯାଇପାରେ ଯେ, ମହାକାଶ ଗବେଷଣା ଦିଗରେ ଶ୍ରୀମତୀ ଗାନ୍ଧୀଙ୍କ ଉତ୍ସାହ ଦାନର ଏହାହିଁ ଉପଯୁକ୍ତ ପ୍ରତିଫଳନ ।

ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱକାଳରେ ମହାକାଶ ଗବେଷଣା ଦିଗରେ ଶେଷ ସଫଳତା ଥିଲା ମହାକାଶରେ ରାକେଶ ଶର୍ମାଙ୍କ ଉପସ୍ଥିତି ।

**ମହାଶୂନ୍ୟରେ ରାକେଶ ଶର୍ମା :—**

ପୃଥିବୀର ପ୍ରଥମ ମହାକାଶଚାରୀ ରୁଷୀୟ ବୈଜ୍ଞାନିକ ୟୁରି ଗାଗାରିନ୍ ୧୯୬୧ ମସିହା ଅପ୍ରେଲ୍ ୧୨ ତାରିଖରେ ମହାଶୂନ୍ୟକୁ ଯାତ୍ରା କରିଥିବାବେଳେ ଭାରତୀୟ ପ୍ରଥମ ମହାକାଶଚାରୀ ସ୍କ୍ୱାଡ୍ରନ୍ ଲିଡ଼ର ଶ୍ରୀ ରାକେଶ ଶର୍ମା ୧୯୮୪ ମସିହା ଅପ୍ରେଲ ୩ ତାରିଖ ଦିନ ଅନ୍ୟ ଦୁଇଜଣ ରୁଷୀୟ ସହଯାତ୍ରୀ ୟୁରି ମାଲିସେଭ୍ ଓ ଗେନାଡ଼ି ଷ୍ଟ୍ରେକାଲୋଭଙ୍କ ସହ ମହାକାଶ ଯାତ୍ରା କରିଥିଲେ । ସେ ପ୍ରଥମ ଭାରତୀୟ ହୋଇଥିଲେ ମଧ୍ୟ ପୃଥିବୀର ୧୩୮ତମ ଓ ଇଣ୍ଟର କସମସ୍ ଯୋଜନାରେ ଏକାଦଶ ମହାକାଶଚାରୀ । ୟୁରି ଗାଗାରିନ୍ ଭୋଷ୍ଟକ୍-୧ ଯାନ ବ୍ୟବହାର କରି ମହାକାଶରେ ମାତ୍ର ୧୦୮ ମିନିଟ ବିତାଇ ପୃଥିବୀ କକ୍ଷରେ ପରିକ୍ରମା କରିଥିବାବେଳେ ଶ୍ରୀ ଶର୍ମା ଦୀର୍ଘ ନଅଦିନକାଳ ମହାକାଶରେ ବିତାଇ, ସାଙ୍ଗରେ ନେଇଥିବା ଶକ୍ତିଶାଳୀ କ୍ୟାମେରାରେ ଭାରତର ପ୍ରାୟ ଶତକଡ଼ା ଚାଳିଶ ଅଂଶର ଫଟୋ ଉଠାଇ ନେଇଥିଲେ ।

ଭାରତୀୟ ସମୟ ଅପରାହ୍ଣ ୬ ଘଣ୍ଟା ୪୮ ମିନିଟ ବେଳେ ସୋୟୁଜ-ଟି-୧୧କୁ ୩୦୦ ଟନ୍ ଓଜନ ବିଶିଷ୍ଟ ଏକ ରକେଟ୍ ବୋହିନେଇ ବୈକାନୁର ଗବେଷଣା କେନ୍ଦ୍ରରୁ ମହାକାଶକୁ ଯାତ୍ରା ଆରମ୍ଭ କରିଥିଲା । ୬୮୫୦ କିଲୋଗ୍ରାମ ଓଜନର ଏହି ଯାନଟି ମହାକାଶରେ ମିନିଟକୁ ୨୪୦ କି. ମି. ବେଗରେ ପୃଥିବୀର କକ୍ଷପଥରେ ଘୂରି ବୁଲୁଥିଲା । ପୂର୍ବରୁ ମହାକାଶରେ ସୋୟୁଜ-ଟି-୭ ଯାନ ସହ ଗବେଷଣାରତ ଥିବା ତିନିଜଣ ରୁଷୀୟ ମହାକାଶଚାରୀ ଲିଓନିଦ୍ କିଜିନ୍, ଭ୍ଲାଦିମିର ସୋଲୋଭ୍ୟୋର ଓ ଓଲେଗ୍ ଆଟୋକୋଭଙ୍କ ନିକଟକୁ ସୋୟୁଜ ଟି-୧୧ରେ ଯାଇଥିବା ଶ୍ରୀ ରାକେଶ ଶର୍ମାଙ୍କ ସହିତ ଅନ୍ୟ ଦୁଇଜଣ ମହାକାଶଚାରୀ ମହାଶୂନ୍ୟରେ ଭାସମାନ ଅବସ୍ଥାରେ ଯାଇଥିଲେ । ପୂର୍ବ ଯାନଟି ୧୯୮୨ ମସିହା ଅପ୍ରେଲ ୧୯ ତାରିଖରୁ ମହାକାଶରେ ପରିକ୍ରମା କରୁଥିଲା । ଉକ୍ତ ଯାନଟିର ଦୈର୍ଘ୍ୟ ଥିଲା ପ୍ରାୟ ୧୫ ମିଟର ଓ ଓଜନ ଥିଲା ୧୮,୦୦୦ କିଲୋଗ୍ରାମ । ସେହି ଯାନରେ ଦୀର୍ଘକାଳ ଧରି ରହି ଗବେଷଣା ଚଳାଇଥିବା ମହାକାଶଚାରୀମାନେ ଶ୍ରୀ ରାକେଶ ଶର୍ମାଙ୍କୁ ଅଭିନନ୍ଦନ ଜଣାଇଥିଲେ ଓ ଶ୍ରୀ ଶର୍ମା ଭାରତର ରାଷ୍ଟ୍ରପତି ତଥା ପ୍ରଧାନମନ୍ତ୍ରୀ ଦେଇଥିବା ଶୁଭବାର୍ତ୍ତା ସେମାନଙ୍କୁ ଜଣାଇ ଦେଇଥିଲେ ।

ମହାକାଶରେ ଥାଇ ପୃଥିବୀ ପରିକ୍ରମା କରୁଥିବା ସମୟରେ ଶ୍ରୀ ଶର୍ମା ଭାରତର ଅନେକ ଆଭ୍ୟନ୍ତରୀଣ ତଥ୍ୟ ସଂଗ୍ରହ କରି ପାରିଥିଲେ । ସେ ସେଠାରୁ ଏଠିକାର ଜଙ୍ଗଲରେ ଲାଗିଥିବା ନିଆଁ ଏବଂ ଏଭେରେଷ୍ଟ ଶୃଙ୍ଗ ଆରୋହଣକାରୀଙ୍କୁ ମଧ୍ୟ ଚିହ୍ନଟ କରି ପାରିଥିଲେ । ତାଙ୍କ ସଙ୍ଗେ ସଙ୍ଗେ ମହାକାଶରେ ଯୋଗାଭ୍ୟାସ କଲେ

ତାହା ଶରୀର ଉପରେ କି ପ୍ରକାର ପ୍ରଭାବ ପକାଇପାରେ ତତ୍ ସମ୍ପର୍କରେ ମଧ୍ୟ ଗବେଷଣା ଅବ୍ୟାହତ ରଖିଥିଲେ ।

ଅପ୍ରେଲ ୪ ତାରିଖ ଦିନ ମହାକାଶରେ ଥାଇ ପୃଥିବୀ ପରିକ୍ରମା କରିବା ଅବସରରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ସହିତ ସିଧାସଳଖ ୧୦ ମିନିଟକାଳ କଥାବାର୍ତ୍ତା କରିଥିଲେ । ସେତେବେଳେ ଶ୍ରୀମତୀ ଗାନ୍ଧୀ ତାଙ୍କୁ, ତାଙ୍କ ସହଯାତ୍ରୀ ତଥା ଗବେଷଣାରତ ଥିବା ବୈଜ୍ଞାନିକମାନଙ୍କୁ ଅଭିନନ୍ଦନ ଜଣାଇ ସେମାନଙ୍କ ନିରାପଦ ପ୍ରତ୍ୟାବର୍ତ୍ତନ କାମନା କରିବା ସଙ୍ଗେ ସଙ୍ଗେ ସେମାନେ ସମସ୍ତେ ଭାରତରେ ଆସି ଶୀଘ୍ର ପହଞ୍ଚିବେ ବୋଲି ଆଶା ପ୍ରକାଶ କରିଥିଲେ । ତାପରେ ଶ୍ରୀ ଶର୍ମାଙ୍କୁ ସେ ପ୍ରଶ୍ନ କରିଥିଲେ ଯେ, ମହାକାଶରୁ ଭାରତର ଦୃଶ୍ୟ ଦେଖିବାକୁ କିପରି ଦେଖା ଯାଉଥିଲା । ତାର ଉତ୍ତର ଦେଇ ଶ୍ରୀ ଶର୍ମା କହିଥିଲେ, "ସାରେ ଜହାଁସେ ଅଚ୍ଛା"—ଭାରତ ପୃଥିବୀର ସବୁ ଅଞ୍ଚଳଠାରୁ ସୁନ୍ଦର ଦେଖା ଯାଉଥିବା କଥା ସେ ପ୍ରକାଶ କରିଥିଲେ ।

ନୂଆଦିଲ୍ଲୀରେ ଭାରତୀୟ ବିମାନବାହିନୀ କାର୍ଯ୍ୟାଳୟ ବାୟୁ ଭବନରେ ସମ୍ବାଦ ପରିବହନ କେନ୍ଦ୍ରରୁ ମହାକାଶରେ ପୃଥିବୀ ପରିକ୍ରମା କରୁଥିବା ଶ୍ରୀ ରାକେଶ ଶର୍ମାଙ୍କ ସହ କଥାବାର୍ତ୍ତା କରିଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ସହ ସେହି ଐତିହାସିକ କଥାବାର୍ତ୍ତା ସିଧାସଳଖ ଟେଲିଭିଜନ ଓ ରେଡ଼ିଓ ଯୋଗେ ପ୍ରଚାର କରାଯାଇଥିଲା । ଶ୍ରୀମତୀ ଗାନ୍ଧୀ ଶ୍ରୀ ରାକେଶ ଶର୍ମାଙ୍କ ସହ କଥାବାର୍ତ୍ତା କରିବାବେଳେ ପୁଣି ଥରେ ସ୍ପଷ୍ଟରୂପେ ଘୋଷଣା କରିଥିଲେ ଯେ, ମହାକାଶ ରହସ୍ୟ ଉଦ୍‌ଘାଟନ କରିବା ସଙ୍ଗେ ସଙ୍ଗେ ପରିପାର୍ଶ୍ୱ ଉପରେ ଆମ ଗ୍ରହର କଣ ପ୍ରତ୍ୟକ୍ଷ ପ୍ରଭାବ ପଡ଼ୁଛି, ତାହା ପୃଥିବୀବାସୀଙ୍କୁ ଜଣାଇ ମାନବ ଜାତିର ଜ୍ଞାନ ଭଣ୍ଡାର ବୃଦ୍ଧି କରାଇବା ଦିଗରେ ତାହା ସହାୟକ ହେବ । ସେହି ଗବେଷଣା ଫଳରେ ଯେଉଁ ତଥ୍ୟ ସବୁ ଆବିଷ୍କାର ହେବ, ସେ ସବୁକୁ ଶାନ୍ତିପୂର୍ଣ୍ଣ ଉଦ୍ଦେଶ୍ୟରେ ତଥା ଜଗତର କଲ୍ୟାଣପାଇଁ ହିଁ ବିନିଯୁକ୍ତ କରାଯିବ ।

ଶ୍ରୀ ରାକେଶ ଶର୍ମା ମହାଶୂନ୍ୟରୁ ଭାରତର ତତ୍‌କାଳୀନ ପ୍ରତିରକ୍ଷା ମନ୍ତ୍ରୀ ଶ୍ରୀ ଭେଙ୍କଟ ରମଣ ଓ ବିମାନବାହିନୀର ମୁଖ୍ୟ ଏୟାର ମାର୍ଶାଲ୍ ଦିଲ୍‌ବାଗ ସିଂହଙ୍କ ସହିତ ମଧ୍ୟ କଥାବାର୍ତ୍ତା କରିଥିଲେ ।

ପାର୍ଲ୍ୟାମେଣ୍ଟର ଲୋକସଭା ଅଧିବେଶନ ବେଳେ ସଭ୍ୟମାନେ ଦଳମତ ନିର୍ବିଶେଷରେ ସମବେତ କଣ୍ଠରେ ପ୍ରଥମ ଭାରତୀୟ ମହାକାଶଚାରୀଙ୍କୁ ଅଭିନନ୍ଦନ ଜଣାଇଥିଲେ । ସେମାନଙ୍କ ସହ କଣ୍ଠ ମିଳାଇ ଶ୍ରୀମତୀ ଗାନ୍ଧୀ ଆଶା ପ୍ରକାଶ କରିଥିଲେ ଯେ, ଗାନ୍ଧୀଜୀ ଓ ପଣ୍ଡିତଜୀ ସାରା ପୃଥିବୀର ଜନଗଣଙ୍କ ପାଇଁ ଶାନ୍ତି,

ପ୍ରୀତି ଓ ମୈତ୍ରୀର ଯେଉଁ ବାର୍ତ୍ତା ଶୁଣାଇଥିଲେ ତାହାର ଏକ ପ୍ରତୀକ ରୂପେ ଏହି ମିଳିତ ମହାକାଶ ଯାତ୍ରା ବିବେଚିତ ହେବ ।

ଶ୍ରୀମତୀ ଗାନ୍ଧୀ ଆନ୍ତରିକ ଭାବେ ଯାହା ଅନୁଭବ କରୁଥିଲେ ତାହା ପ୍ରକାଶ କରୁଥିଲେ ଏବଂ ଯାହା ପ୍ରକାଶ କରୁଥିଲେ ତାହାକୁ କାର୍ଯ୍ୟକ୍ଷେତ୍ରରେ ମଧ୍ୟ ପ୍ରୟୋଗ କରିବାକୁ ଉଦ୍ୟମ କରୁଥିଲେ । ଭୌଗୋଳିକ ଭୂଖଣ୍ଡ ନିର୍ବିଶେଷରେ ସମଗ୍ର ମାନବ ଜାତି ଭ୍ରାତୃତ୍ୱର ବନ୍ଧନରେ ବାନ୍ଧିହୋଇ ରହୁ, ଏହାହିଁ ଥିଲା ତାଙ୍କର ହାର୍ଦ୍ଦିକ ଅଭିଳାଷ । ସେହି ଦୃଷ୍ଟିରୁ ଆନ୍ତର୍ଜାତିକ ଶାନ୍ତି, ପ୍ରୀତି ଓ ମୈତ୍ରୀରେ ବିଶ୍ୱାସ କରୁଥିବା ଶ୍ରୀମତୀ ଗାନ୍ଧୀ ଭାରତରେ କେତୋଟି ଆନ୍ତର୍ଜାତୀୟ ଅନୁଷ୍ଠାନର ଆୟୋଜନ ପାଇଁ ସମସ୍ତ ପ୍ରକାରର ଉତ୍ସାହ ପ୍ରଦାନ କରିଥିଲେ । ସେଥିମଧ୍ୟରୁ ତାଙ୍କ ନେତୃତ୍ୱର ଶେଷ ଦୁଇ ତିନୋଟି ବର୍ଷର କାର୍ଯ୍ୟକଳାପ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ସେଇ ସମସ୍ତ ମଧ୍ୟରେ ଭାରତରେ ଏସିଆଡ୍, ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ଶିଖର ସମ୍ମିଳନୀ ତଥା ରାଜ୍ୟଗୋଷ୍ଠୀ ସମ୍ମିଳନୀର ନାମ ବିଶେଷ ଉଲ୍ଲେଖ-ଯୋଗ୍ୟ ।

**ଏସିଆଡ୍-୧୯୮୨ :**

ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ସମ୍ମାନ ବୃଦ୍ଧି ଦିଗରେ ଭାରତରେ ଅନୁଷ୍ଠିତ ହୋଇଥିବା ତିନୋଟି ଘଟଣା ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ସେଥିରୁ ଗୋଟିଏ "ସପ୍ତମ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ଶିଖର ସମ୍ମିଳନୀ", ଦ୍ୱିତୀୟଟି "ରାଜ୍ୟଗୋଷ୍ଠୀ ସମ୍ମିଳନୀ" ଏବଂ ଅନ୍ୟଟି ଏସିଆଡ୍—୧୯୮୨ ।" ସେ ସମସ୍ତ ଅନୁଷ୍ଠାନର ସଫଳତା ଦିଗରେ ଭାରତର ପ୍ରଧାନମନ୍ତ୍ରୀଭାବେ ଶ୍ରୀମତୀ ଗାନ୍ଧୀଙ୍କ ଉଦ୍ୟମ ବିଶେଷ ପ୍ରଶଂସନୀୟ ।

ସମଗ୍ର ପୃଥିବୀରେ ଅନୁଷ୍ଠିତ ହେଉଥିବା କ୍ରୀଡ଼ା ପ୍ରତିଯୋଗିତାଗୁଡ଼ିକ ମଧ୍ୟରେ ଅଲିମ୍ପିକ ଓ କମନ୍‌ୱେଲ୍‌ଥ ଗେମସ୍‌ର ନାମ ଉଲ୍ଲେଖ କରାଯାଇପାରେ । ଏହି ପ୍ରତିଯୋଗିତାଗୁଡ଼ିକ ଅତ୍ୟନ୍ତ ବ୍ୟୟବହୁଳ ଏବଂ ପ୍ରତି ଚାରି ବର୍ଷରେ ଥରେ ଲେଖାଏଁ ଅନୁଷ୍ଠିତ ହୋଇଥାଏ । ଏସିଆନ୍ ଗେମ୍‌ସ୍ ଦୀର୍ଘ ୩୧ ବର୍ଷ ତଳେ ଆରମ୍ଭ ହୋଇଥିଲା ଏବଂ ତାର ଶୁଭାରମ୍ଭ ବେଳେ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲଙ୍କ ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କ୍ରୀଡ଼ା କସରତର ପ୍ରସାର ତଥା ଖେଳାଳିମାନଙ୍କୁ ପ୍ରେରଣା ଦେବାଲାଗି ଅଲିମ୍ପିକ ସଙ୍ଗଠନ ଆରମ୍ଭ ହୋଇଥିଲା । ତାର କିଛିବର୍ଷ ପରେ ଆରମ୍ଭ ହୋଇଥିଲା କମନ୍ ୱେଲ୍‌ଥ ଗେମ୍‌ସ୍ । ସେହି ଦୁଇଟି ଅନୁଷ୍ଠାନ ଦୀର୍ଘକାଳଧରି ଚାଲିବା ପରେ ଯେତେବେଳେ ଏସିଆ ମହାଦେଶର କ୍ରୀଡ଼ା କୃତିତ୍ୱ ଆନ୍ତର୍ଜାତିକ

କ୍ଷେତ୍ରରେ ଉଚ୍ଚ ପ୍ରଶଂସାଲାଭ କରିଥିଲା, ଏସିଆ ମହାଦେଶରେ ସେଭଳି ଏକ ଅନୁଷ୍ଠାନ ଗଠନ କରିବାପାଇଁ ଅନେକ ଅମୀମାଂସିତ ଆଲୋଚନା ଓ ବୈଠକ ଅନୁଷ୍ଠିତ ହୋଇ ଯାଇଥିଲା ।

ସେତିକବେଳେ ଭାରତର ଜଣେ କ୍ରୀଡ଼ାବିତ୍ ପ୍ରଫେସର ଗୁରୁଦତ୍ତ ସୋନ୍ଧୀ ବର୍ତ୍ତମାନର ଖ୍ୟାତ ସମ୍ପନ୍ନ-ଏସିଆ କ୍ରୀଡ଼ା ସଙ୍ଗଠନର ଏକ ନିର୍ଦ୍ଦିଷ୍ଟ ରୂପରେଖ ଦେବାପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ମାନିଲାଠାରେ ଗୋଟିଏ ବୈଠକରେ ଏକପ୍ରକାର ଆଞ୍ଚଳିକ ଭିତ୍ତିରେ ଓରିଏଣ୍ଟ ଚମ୍ପିଆନ୍ ସିପ୍ ଗେମ୍‌ସ୍ ନାମରେ ଏକ ସଙ୍ଗଠନ ହୋଇ ଅଲମ୍ପିକ୍ ଉତ୍ସବର ଦୁଇବର୍ଷ ପରେ ତାହାର ପ୍ରଥମ ମିଳନ ଟୋକିଓଠାରେ ଅନୁଷ୍ଠିତ କରାଯିବା ପାଇଁ ସ୍ଥିର କରାଯାଇଥିଲା । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଯୋଗୁଁ ତାହା ସମ୍ଭବପର ହୋଇପାରି ନ ଥିଲା ।

ପୁଣିଥରେ ୧୯୪୭ ମସିହାରେ ସେହି ଯୋଜନାକୁ ଗତିଶୀଳ କରାଇ କାର୍ଯ୍ୟକାରୀ କରାଇବା ପାଇଁ ପ୍ରଫେସର ସୋନ୍ଧୀ ଓ ପାତିଆଲା ମହାରାଜା ଶ୍ରୀ ଯଶୋବନ୍ତ ସିଂହ ଉଦ୍ୟମ କରିଥିଲେ । ସେମାନେ ଅନେକ ଦେଶର ପ୍ରତିନିଧିଙ୍କୁ ନିମନ୍ତ୍ରଣ କରି ଦିଲ୍ଲୀଠାରେ ଏକ ବୈଠକର ଆୟୋଜନ କରିଥିଲେ । ସେଠାରେ ଏହି ଅନୁଷ୍ଠାନର ନାମ "ଏସିଆଟିକ୍ ଗେମ୍‌ସ୍" ରଖାଯିବା ଲାଗି ପ୍ରସ୍ତାବ ହୋଇଥିଲେ ମଧ୍ୟ ପଣ୍ଡିତ ନେହେରୁଙ୍କ ପ୍ରସ୍ତାବ ଥିଲା "ଏସିଆନ୍ ଗେମସ୍" ନାମରେ ଅନୁଷ୍ଠାନକୁ ନାମିତ କରିବାଲାଗି । ସେ ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା । ଆନୁଷ୍ଠାନିକ ଭାବେ ୧୯୪୮ ମସିହାରେ ଏହି ପ୍ରତିଯୋଗିତାର ଆୟୋଜନ କରାଯିବା ଲାଗି ସ୍ଥିର ହୋଇଥିଲା । ସେହି ବର୍ଷ ଅଲମ୍ପିକ ଗେମ୍‌ସ୍ ଅନୁଷ୍ଠିତ ହେଉଥିବା ଯୋଗୁଁ ତାହା ସ୍ଥଗିତ ରଖାଯାଇ ୧୯୫୧ ମସିହାରେ ଏହାର ପ୍ରଥମ ପ୍ରତିଯୋଗିତା କରାଯିବା ଲାଗି ସ୍ଥିର ହୋଇଥିଲା । ଏହା ମଧ୍ୟ ସେତେବେଳେ ସ୍ଥିର କରାଯାଇଥିଲା ଯେ, ପ୍ରଥମ ଏସିଆନ୍ ଗେମ୍‌ସ୍ ଦିଲ୍ଲୀଠାରେ ଅନୁଷ୍ଠିତ ହେବ । ସେଥିପାଇଁ ଭାରତର ନେସନାଲ୍ ସ୍ପୋର୍ଟସ୍ କ୍ଲବ ଏକଲକ୍ଷ ଟଙ୍କା ଦେବା ସଙ୍ଗେ ସଙ୍ଗେ ପାତିଆଲା ମହାରାଜା ଅର୍ଥ ଆକାରରେ ତଥା ଅନ୍ୟଭାବରେ ମଧ୍ୟ ସାହାଯ୍ୟ କରିଥିଲେ । ଭାରତର ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ମାର୍ଚ୍ଚ ଚାରି ତାରିଖ ଦିନ ତାହାକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ନେସନାଲ୍ ଷ୍ଟାଡ଼ିୟମଠାରେ ଏହି ପ୍ରତିଯୋଗିତାର ଆୟୋଜନ କରାଯାଇଥିଲା ।

ପ୍ରଥମ ପ୍ରତିଯୋଗିତାରେ ଏସିଆର ମାତ୍ର ଏଗାରଟି ରାଷ୍ଟ୍ର ଯୋଗ ଦେଇଥିଲେ ଓ ଅଳ୍ପସଂଖ୍ୟକ ଖେଳର ଆୟୋଜନ କରାଯାଇଥିଲା । କିନ୍ତୁ ପରବର୍ତ୍ତୀ କାଳରେ ତାହାର ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ପ୍ରାୟ ପ୍ରତ୍ୟେକଥର କୌଣସି ନା କୌଣସି ନୂଆ ରାଷ୍ଟ୍ର ସେଥିରେ ଅଂଶ ଗ୍ରହଣ କରିଥିଲେ ।

ପ୍ରତି ଚାରି ବର୍ଷରେ ଥରେ ଉକ୍ତ ପ୍ରତିଯୋଗିତାର ଆୟୋଜନ କରା-ଯାଇଥିଲା । ଦିଲ୍ଲୀ ପରେ ପରେ ଯଥାକ୍ରମେ ମାନିଲା, ଟୋକିଓ, ଜାକର୍ତ୍ତା, ଥାଇଲାଣ୍ଡ, ଦକ୍ଷିଣ କୋରିଆ ଓ ଇରାନ୍‌ରେ ଅନୁଷ୍ଠିତ ହେବାପରେ ୧୯୭୮ ମସିହାରେ ପାକିସ୍ଥାନରେ ଅଷ୍ଟମ ଏସିଆନ୍ ଗେମସ୍ ହେବାପାଇଁ ସ୍ଥିର ହୋଇଥିଲା । କିନ୍ତୁ ଉକ୍ତ ରାଷ୍ଟ୍ରର ଆଭ୍ୟନ୍ତରୀଣ ଅସ୍ଥିରତା ଯୋଗୁଁ ସେଠାରେ ଏହା ଅନୁଷ୍ଠିତ କରାଇବା ଅସମ୍ଭବ ହୋଇ ପଡ଼ିଥିଲା । ତେଣୁ ପରିଚାଳନା କମିଟି ତରଫରୁ ସେହି ଦାୟିତ୍ୱ ନେବାପାଇଁ ବିଭିନ୍ନ ରାଷ୍ଟ୍ରଙ୍କୁ ଅନୁରୋଧ କରାଯାଇଥିଲା । ସ୍ୱଳ୍ପ ସମୟର ବ୍ୟବଧାନ ମଧ୍ୟରେ ବିଶାଳ ଆୟୋଜନ କରିବା ପାଇଁ ଜାପାନ୍, କୋରିଆ, ମାଲୟେସିଆ ପ୍ରଭୃତି ରାଷ୍ଟ୍ର ଅସ୍ୱୀକାର କରିଥିଲେ ଏବଂ ଭାରତ ତତ୍ ପରବର୍ତ୍ତୀ ଅନୁଷ୍ଠାନର ଦାୟିତ୍ୱ ନେବାପାଇଁ ସ୍ୱୀକୃତ ଦେଇଥିଲା । ତେଣୁ ସେହିଥର ଥାଇଲାଣ୍ଡରେ ଯଥା ତଥା ଅଷ୍ଟମ କ୍ରୀଡ଼ା ପ୍ରତିଯୋଗୀତା ନିର୍ବାହ ହୋଇଥିଲା ।

ନବମ ଏସିଆନ୍ ଗେମସର ଦାୟିତ୍ୱ ଥିଲା ଭାରତ ଉପରେ । ଯଦିଓ ୧୯୭୬ ମସିହାରୁ ଏହା ସ୍ଥିର ହୋଇଥିଲା ତଥାପି ଇତି ମଧ୍ୟରେ ଭାରତରେ କିଛି ସମୟ ପାଇଁ ରାଜନୈତିକ ଅସ୍ଥିରତା ଓ ଜନତା ଦଳର ଶାସନ ନବମ ଏସୀୟ କ୍ରୀଡ଼ା ପ୍ରତିଯୋଗିତା ଆୟୋଜନରେ ଶିଥିଳତା ଆଣି ଦେଇଥିଲା । କିନ୍ତୁ ଶ୍ରୀମତୀ ଗାନ୍ଧୀ ପୁଣିଥରେ କ୍ଷମତାକୁ ଆସିବା ପରେ ପରେ ଭାରତର ଖେଳୁଆଡ଼ ଓ ଖେଳପ୍ରେମୀମାନଙ୍କୁ ଉତ୍ସାହିତ କରିବାପାଇଁ ସରକାରୀ କଳକୁ ତ୍ୱରାନ୍ୱିତ କରାଇଥିଲେ ।

ଭାରତରେ ନବମ ଏସିଆଡ଼ ଉତ୍ସବ ଅନୁଷ୍ଠାନକୁ ପୂର୍ଣ୍ଣ ସଫଳତାର ସହିତ ଭାରତରେ ସମ୍ପାଦନ କରାଯିବା ଉଦ୍ଦେଶ୍ୟରେ ବିଭିନ୍ନ ପଦକ୍ଷେପ ନେବାପାଇଁ ଶ୍ରୀମତୀ ଗାନ୍ଧୀ ଆୟୋଜକମାନଙ୍କୁ ଅଧିକ ପ୍ରେରଣା ଓ ଉତ୍ସାହ ପ୍ରଦାନ କରିଥିଲେ । ସେ ମଧ୍ୟ ସରକାରୀସ୍ତରରେ ସେଥିପାଇଁ ଅନୁକୂଳ ମନୋଭାବାପନ୍ନ କାର୍ଯ୍ୟାନୁଷ୍ଠାନ-ମାନ ଗ୍ରହଣ କରିଥିଲେ । ସେଥିପାଇଁ ଦେଶର ବିରୋଧୀଦଳଗୁଡ଼ିକ ବିଭିନ୍ନ ପ୍ରକାରର ସମାଲୋଚନା କରିଥିଲେ ଏବଂ ସେସବୁକୁ ଭ୍ରୂକ୍ଷେପ ନକରି ଶ୍ରୀମତୀ ଗାନ୍ଧୀ ଅଧିକ ଯତ୍ନଶୀଳ ହୋଇ ଉଠିଥିଲେ ସେ ଅନୁଷ୍ଠାନର ସଫଳ ରୂପାୟନପାଇଁ । ତାଙ୍କର ନିଷ୍ଠାପର ଉଦ୍ୟମ ଆୟୋଜକମାନଙ୍କୁ ଅଧିକ ପ୍ରେରଣା ଦେଇଥିଲା । ପରିଣାମତଃ ଅତି ଅଳ୍ପ ସମୟ ମଧ୍ୟରେ କ୍ରୀଡ଼ା ସୂଚୀ ଅନୁଯାୟୀ ପ୍ରସ୍ତୁତି କାର୍ଯ୍ୟ ଶେଷ ହୋଇ ପାରିଥିଲା ।

ଏହାର ଆୟୋଜନ ପାଇଁ ୧୯୭୬ ମସିହାରେ ପ୍ରାୟ ୧୦ କୋଟି ଟଙ୍କା ଖର୍ଚ୍ଚ ହେବ ବୋଲି ଅଟକଳ କରାଯାଇଥିଲେ ମଧ୍ୟ ତାହା ବାସ୍ତବରେ ବହୁ ପରିମାଣରେ ବୃଦ୍ଧି ପାଇଥିଲା ଏବଂ ଶ୍ରୀମତୀ ଗାନ୍ଧୀ ସେଥିପାଇଁ କୌଣସି ପ୍ରକାର

କୁଣ୍ଠା ପ୍ରକାଶ କରି ନ ଥିଲେ । କେବଳ ସେହି କାରଣରୁ ଦିଲ୍ଲୀରେ ଜନତା ସରକାର (ପ୍ରାୟ ୮୦ କୋଟି ଖର୍ଚ୍ଚ ହେବା ଆଶଙ୍କା କରି) ଏହାର ଆୟୋଜନ ଭାରତରେ କରାଇବା ଲାଗି ଦ୍ୱିଧା ପ୍ରକାଶ କରିଥିଲେ । କିନ୍ତୁ ଆନ୍ତର୍ଜାତିକ କ୍ଷେତ୍ରରେ ନିଜର ସମ୍ମାନ ପାଇଁ, ବନ୍ଧୁତା ଅର୍ଜନ ପାଇଁ, ସହଯୋଗ ପାଇଁ ତଥା ଭାରତକୁ ପ୍ରତିଷ୍ଠିତ କରାଇବା ପାଇଁ ବ୍ୟୟ ଅଟକଳରୁ ଆବଶ୍ୟକ ମନେହେଲେ ଯଥେଷ୍ଟ ଅଧିକ ଖର୍ଚ୍ଚ କରାଯିବା ଲାଗି ଶ୍ରୀମତୀ ଗାନ୍ଧୀ ସାମାନ୍ୟତମ କୁଣ୍ଠା ପ୍ରକାଶ କରି ନ ଥିଲେ ।

ଅପରପକ୍ଷରେ ସେହି କ୍ରୀଡ଼ା ଆୟୋଜନ ଅବସରରେ ଦିଲ୍ଲୀ ସହରର ଅଭୂତ ପୂର୍ବ ଉନ୍ନତି ହୋଇ ପାରିଥିଲା । ସେହି ଉଦ୍ଦେଶ୍ୟରେ ଯେଉଁଭଳି ପ୍ରସ୍ତୁତି ସବୁ ହୋଇଥିଲା ଇତିହାସ ସୃଷ୍ଟିକାରୀ ସେଉଁଭଳି ମନ ମୁଗ୍‌ଧକର ପ୍ରସ୍ତୁତି ଏହା ପୂର୍ବରୁ କୌଣସି ଉତ୍ସବାନୁଷ୍ଠାନରେ ହୋଇ ନ ଥିଲା ବୋଲି ମତ ପ୍ରକାଶ ପାଇଥିଲା । ସେହି ସମୟରେ ସହରରେ ଯାତାୟତ କରୁଥିବା ଯାନବାହନଗୁଡ଼ିକର ଗତିପଥ ନିୟନ୍ତ୍ରଣ କରାଯିବା ପାଇଁ ଅନେକଗୁଡ଼ିଏ ରାସ୍ତା ଓ ଓଭରବ୍ରିଜ୍ ନିର୍ମାଣ କରାଯାଇ-ଥିଲା । ସେଗୁଡ଼ିକ ସବୁଦିନ ପାଇଁ ଦିଲ୍ଲୀର ଶୋଭା ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ଯାନବାହନ ଗମନାଗମନ ଦିଗରେ ସହାୟକ ହୋଇ ପାରିଥିଲା । ସେହି ଦୃଷ୍ଟିରୁ ଶ୍ରୀମତୀ ଗାନ୍ଧୀଙ୍କ ଉତ୍ସାହ ଓ ପ୍ରେରଣା ନେଇ ୧୯୮୨ ନଭେମ୍ବର ମାସରେ ଅନୁଷ୍ଠିତ ହୋଇଥିବା ନବମ ଏସୀୟ କ୍ରୀଡ଼ା ପ୍ରତିଯୋଗିତା ଦିଲ୍ଲୀ ସହରର ଭୌଗୋଳିକ ରୂପ ପରିବର୍ତ୍ତନ କରିଦେବାପାଇଁ ସମର୍ଥ ହୋଇଥିଲା ବୋଲି କୁହାଯାଇ ପାରେ । ଭାରତର ରାଜଧାନୀ ଦିଲ୍ଲୀ ପୂର୍ବ ତୁଳନାରେ ଆହୁରି ସୁନ୍ଦର ଓ ଆହୁରି ଅଧିକ ମନୋମୁଗ୍‌ଧକର ହୋଇ ପାରିଥିଲା ।

ନବମ ଏସିଆଡ୍ ପାଇଁ ପ୍ରାୟ ୭୫ ହଜାର ଦର୍ଶକ ବସିପାରିବା ଭଳି ନେହେରୁ ଷ୍ଟାଡ଼ିୟମ୍ ନିର୍ମାଣ କରାଯାଇଥିଲା । ସେଥିପାଇଁ ଆଉ ଯାହାସବୁ ନିର୍ମାଣ କରାଯାଇଥିଲା ସେଥିମଧ୍ୟରେ ପ୍ରାୟ ୨୫ ହଜାର ଦର୍ଶକ ବସି ଉପଭୋଗ କରିପାରିବା ଭଳି ଏକ ଇନ୍‌ଡୋର୍ ଷ୍ଟାଡ଼ିୟମ୍ ନିର୍ମାଣ କରାଯାଇଥିଲା । ଏହା ଏସିଆର ପ୍ରଥମ ତଥା ପୃଥିବୀର ତୃତୀୟ ଥିଲା । ଭାରତର ସର୍ବବୃହତ୍ ସନ୍ତରଣକାରୀ କୁଣ୍ଡ, ଦେଶରେ ପ୍ରଥମଥର ପାଇଁ ନିର୍ମିତ ସାଇକେଲ ଚାଳନା ପ୍ରତିଯୋଗୀତା ପାଇଁ ପଡ଼ିଆ, (Velodrome) ପ୍ରଭୃତି ନବମ ଏସିଆନ୍ ଉଦ୍ଦେଶ୍ୟରେ ନିର୍ମିତ ହୋଇଥିଲେ ମଧ୍ୟ ସବୁଦିନ ପାଇଁ ଭାରତର ଗୌରବ ହୋଇ ରହି ଯାଇଥିଲା । ପୁଣି ଉଲ୍ଲେଖ-ଯୋଗ୍ୟ ଯେ ବିଭିନ୍ନ ଦେଶର ପ୍ରତିଯୋଗୀମାନଙ୍କ ରହିବା ପାଇଁ ୮୫୦ ଫ୍ଲାଟ ବିଶିଷ୍ଟ ଏକ ସ୍ୱତନ୍ତ୍ର ଆଧୁନିକ ସହର "ଏସିଆନ୍ ଭିଲେଜ୍" ନିର୍ମାଣ କରାଯାଇଥିଲା ଯାହାର ଶୟନ କକ୍ଷର ସଂଖ୍ୟା ଥିଲା ୨୫୦୦ । ଏସିଆନ୍ ଗେମସ୍ ପରେ ମଧ୍ୟ

ସେଗୁଡ଼ିକର ଆବଶ୍ୟକତା କୌଣସି ଗୁଣରେ ନ୍ୟୂନ ହୋଇନାହିଁ । ପୁଣି ସେଗୁଡ଼ିକ ସହରକୁ ସୁନ୍ଦର କରି ଗଢ଼ି ତୋଳିବାରେ ସହାୟକ ହୋଇଛି ନିଶ୍ଚୟ ।

୧୯୮୨ ମସିହା ନଭେମ୍ବର ୧୯ ତାରିଖ ଦିନ ଭାରତର ରାଷ୍ଟ୍ରପତି ଏହି ଉତ୍ସବକୁ ଉଦ୍‌ଘାଟନ କରିଥିଲେ । ବିଶେଷ ଭାବେ ତାଲିମ୍ ପ୍ରାପ୍ତ ୧୧ ମାସର ଏକ ହାତୀଛୁଆ 'ଆପୁ' ରାଷ୍ଟ୍ରପତିଙ୍କୁ ପୁଷ୍ପମାଲ୍ୟ ଅର୍ପଣ କରିଥିଲା । ଅପୂର୍ବ ଯୋଗାଯୋଗ ଯେ, ସେଦିନ ଥିଲା ଶ୍ରୀମତୀ ଗାନ୍ଧୀଙ୍କ ଜନ୍ମ ଦିବସ । ସେ ସେହିଦିନ ସେହି ଉତ୍ସବ ଲାଗି ସ୍ୱତନ୍ତ୍ର ଭାବେ ନିର୍ମିତ ନେହେରୁ ଷ୍ଟାଡ଼ିଅମ୍‌କୁ ଉଦ୍‌ଘାଟନ କରିଥିଲେ । ୧୯୮୨ ଏସିଆଡ଼୍‌ରେ ଯୋଗଦେବା ପାଇଁ ୩୩ଟି ଏସୀୟ ରାଷ୍ଟ୍ରରୁ ପ୍ରାୟ ୫ ହଜାର କ୍ରୀଡ଼ାବିତ୍ ଯୋଗ ଦେଇଥିଲେ । ଏହି ସମାବେଶ ଡିସେମ୍ବର ୪ ତାରିଖ ଦିନ ଉଦ୍‌ଯାପିତ ହୋଇଥିଲା ।

୧୭ଟି ଷ୍ଟାଡ଼ିଅମ୍‌ରେ ପ୍ରାୟ ୨୧ ପ୍ରକାରର ଖେଳ ପ୍ରତିଯୋଗୀତାର ଆୟୋଜନ ହେବା ସଙ୍ଗେ ସଙ୍ଗେ ଘୋଡ଼ାଦୌଡ଼ ଓ ନୌକାଚାଳନା ପାଇଁ ଅନ୍ୟ ସ୍ଥାନମାନଙ୍କରେ ଆୟୋଜନ ହୋଇଥିଲା । ଯେଉଁଭଳି ଭାବରେ ଶୃଙ୍ଖଳାପୂର୍ଣ୍ଣ ବାତାବରଣ ଭିତରେ ନବମ ଏସିଆଡ଼୍ ଅନୁଷ୍ଠିତ ହୋଇଥିଲା ତାହା ଦେଖି ଅଲିମ୍ପିକର ସଙ୍ଗଠକମାନେ ମଧ୍ୟ ଆଶ୍ଚର୍ଯ୍ୟାମ୍ବିତ ଭାବେ ଅଭିଭୂତ ହୋଇ ପଡ଼ିଥିଲେ ।

ଭାରତର ଖେଳୁଆଡ଼ମାନଙ୍କ ପାଇଁ ଏସିଆଡ଼୍—୧୯୮୨ର ଆୟୋଜନ ନିଶ୍ଚିତଭାବେ ଅତିମାତ୍ରାରେ ପ୍ରେରଣାଦାୟକ ବୋଲି ଆଲୋଚକମାନେ ଯଥାର୍ଥରେ ମତ ପ୍ରଦାନ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ, ସେହି ପ୍ରତିଯୋଗିତାରେ ଭାରତର ଖେଳାଳିମାନେ ୧୩ଟି ସ୍ୱର୍ଣ୍ଣ, ୧୯ଟି ରୌପ୍ୟ ଓ ୨୫ଟି ବ୍ରୋଞ୍ଜ ପଦକ ହାସଲ କରି ପଞ୍ଚମ ସ୍ଥାନର ଅଧିକାରୀ ହୋଇ ପାରିଥିଲେ । ଯଥାକ୍ରମେ ଚୀନ, ଜାପାନ, ଦକ୍ଷିଣ-କୋରିଆ ଓ ଉତ୍ତର-କୋରିଆ ପ୍ରଥମରୁ ଚତୁର୍ଥ ସ୍ଥାନ ଅଧିକାର କରିଥିଲେ । ଏଠାରେ ପ୍ରଥମ ଏସିଆଡ଼୍ କଥା ସ୍ମରଣ କରିଯାଇପାରେ । ସେତେବେଳେ ଭାରତ ୧୫ଟି ସ୍ୱର୍ଣ୍ଣ, ୬ଟି ରୌପ୍ୟ ଓ ୨୧ଟି ବ୍ରୋଞ୍ଜ ପଦକ ପାଇଥିଲା । କିନ୍ତୁ ସେତେବେଳେ ପ୍ରତିଯୋଗୀ ରାଷ୍ଟ୍ରଙ୍କ ସଂଖ୍ୟା ଥିଲି କମ୍ ।

ଯେ ଯାହାହେଲେ ବି ଭାରତବାସୀଙ୍କ ମନରେ ଏସିୟକ୍ରୀଡ଼ା ପ୍ରତିଯୋଗିତା ଏକ ସ୍ୱତନ୍ତ୍ର ଆସନ ଅଧିକାର କରିବା ସଙ୍ଗେ ସଙ୍ଗେ କ୍ରୀଡ଼ାବିତ୍ ତଥା କ୍ରୀଡ଼ାପ୍ରେମୀ-ମାନଙ୍କ ମନରେ ନୂତନ ଉନ୍ମାଦନା ସୃଷ୍ଟି କରିବାପାଇଁ ସମର୍ଥ ହୋଇଥିଲା । ଅନ୍ୟ କ୍ଷେତ୍ରରେ ଯେହି ଆୟୋଜନ ଭାରତର ମର୍ଯ୍ୟାଦା ପୃଥିବୀରେ ବୃଦ୍ଧି ପାଇବାରେ ମଧ୍ୟ ନିଶ୍ଚିତଭାବେ ସହାୟକ ହୋଇ ପାରିଥିଲା । ସେଥିପାଇଁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଅଧିକ ପ୍ରଶଂସାର ପାତ୍ର ।

କ୍ରୀଡ଼ାର ପ୍ରସାର ଓ କ୍ରୀଡ଼ାବିତ୍ମାନଙ୍କୁ ଉତ୍ସାହିତ କରିବା ଦିଗରେ ଶ୍ରୀମତୀ ଗାନ୍ଧୀଙ୍କ ବିଶିଷ୍ଟ ଅବଦାନ ଯୋଗୁଁ ୧୯୮୩ ମସିହା ମାର୍ଚ୍ଚ ୨୫ ତାରିଖ ଦିନ ତାଙ୍କୁ ଶ୍ରେଷ୍ଠ ସମ୍ମାନ "ଅଲମ୍ପିକ୍ ଗୋଲ୍ଡ଼ ଅର୍ଡ଼ର" ସମ୍ମାନରେ ଭୂଷିତ କରାଯାଇଥିଲା । ସେ ତାହାକୁ ଦେଶର ଯୁବକମାନଙ୍କ ପକ୍ଷରୁ ଗ୍ରହଣ କରିଥିଲେ । ସେଥିପାଇଁ ଅନ୍ତଃରାଷ୍ଟ୍ରୀୟ ଅଲମ୍ପିକ କମିଟିର ୮୬ତମ ଅଧିବେଶନ ଦିଲ୍ଲୀର ବିଜ୍ଞାନ ଭବନଠାରେ ଅନୁଷ୍ଠିତ ହୋଇଥିଲା । ଶ୍ରୀମତୀ ଗାନ୍ଧୀ ଥିଲେ ଏହି ସର୍ବୋଚ୍ଚ ଅଲମ୍ପିକ ସମ୍ମାନ ଲାଭ କରିବାରେ ଏସିଆରେ ପ୍ରଥମ । ଏହା ପୂର୍ବରୁ କୌଣସି ମହିଳା ଏ ସମ୍ମାନ ଲାଭ କରି ନ ଥିଲେ ।

ଠିକ୍ ସେହିଭଳି ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ସୁନାମ ପ୍ରତିଷ୍ଠା ଦିଗରେ ଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା ସପ୍ତମ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ଶିଖର ସମ୍ମିଳନୀର ଆୟୋଜନ ନିଶ୍ଚିତଭାବେ ଉଲ୍ଲେଖଯୋଗ୍ୟ । ସେହି ଆୟୋଜନ ପାଇଁ ମଧ୍ୟ ଶ୍ରୀମତୀ ଗାନ୍ଧୀ ଆନ୍ତରିକ ଉଦ୍ୟମ କରିଥିଲେ ଓ ସଫଳକାମ ମଧ୍ୟ ହୋଇଥିଲେ ।

**ଗୋଷ୍ଠୀ ନିରପେକ୍ଷ ସମ୍ମିଳନୀ :—**

୧୯୬୧ ମସିହାରେ ପ୍ରଥମ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ଶିଖର ସମ୍ମିଳନୀ ବେଲଗ୍ରେଡ୍ଠାରେ ଆରମ୍ଭ ହୋଇ ୧୯୮୩ ମାର୍ଚ୍ଚ ୭ ତାରିଖ ଦିନ ୧୦୧ ରାଷ୍ଟ୍ର ସଭ୍ୟ ଶ୍ରେଣୀଭୁକ୍ତ ଏହି ଅନୁଷ୍ଠାନର ସପ୍ତମ ଅଧିବେଶନ ଭାରତରେ ଅନୁଷ୍ଠିତ ହୋଇଥିଲା । ଏହି ଅନୁଷ୍ଠାନର ଆରମ୍ଭ ବେଳେ ମାତ୍ର ୨୫ଟି ରାଷ୍ଟ୍ର ସଭ୍ୟଶ୍ରେଣୀଭୁକ୍ତ ହୋଇଥିଲେ । ସମୟକ୍ରମେ ଏ ସଂଗଠନ ସହିତ ଅନ୍ୟାନ୍ୟ ରାଷ୍ଟ୍ର ଯୋଗ ଦେଇଥିଲେ । ପରିଣାମତଃ ଏହାର ଗୁରୁତ୍ୱ ଓ ପ୍ରଭାବ ମଧ୍ୟ ନିଶ୍ଚିତଭାବେ ବୃଦ୍ଧି ପାଇଥିଲା । ସେହି ପ୍ରଥା ବର୍ତ୍ତମାନ ଯୁଦ୍ଧା ଚାଲୁ ରହିଛି । ଏହା ନିଶ୍ଚିତଭାବେ ପ୍ରମାଣିତ କରି ଦେଇପାରେ ଯେ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ଶିଖର ସମ୍ମିଳନୀର ଉପାଦେୟତା ସଭ୍ୟଦେଶମାନେ ଯଥାଯଥ ଭାବେ ଅନୁମାନ ଓ ଅନୁଭବ କରି ପାରିଥିଲେ । ତାହାହିଁ ଏକମାତ୍ର, କାରଣ ଯେଉଁଥିପାଇଁ କାଳକ୍ରମେ ଏହାର କଳେବର ବୃଦ୍ଧି ପାଇବାରେ ଲାଗିଥିଲା ଓ ସମ୍ମାନଜନକ ଅବସ୍ଥାରେ ପହଞ୍ଚି ପାରିଥିଲା । ସେଇଥିପାଇଁ ଅନେକ ରାଷ୍ଟ୍ର ନିଜ କାର୍ଯ୍ୟକଳାପରେ ଯୁଦ୍ଧଖୋର ପ୍ରବୃତ୍ତି ଦେଖାଇ ମଧ୍ୟ ଓ ବିଭିନ୍ନ ମିଳିଟାରୀ ଚୁକ୍ତି କରି ମଧ୍ୟ ଏ ଅନୁଷ୍ଠାନର ସଭ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ । ସେଥିପାଇଁ ଏହାର ସମାଲୋଚକମାନେ ସାଧାରଣତଃ ମତ ଦେଇଥାନ୍ତି—"ଏହାର ଛତ୍ରଚ୍ଛାୟାତଳେ ଯେଉଁମାନେ ଅଛନ୍ତି, ସେମାନେ ଶ୍ରେଣୀବଦ୍ଧ ଭାବେ ଗୋଟିଏ ଗୋଷ୍ଠୀ ଗଠନ କରିଥିଲେ ମଧ୍ୟ ସେମାନେ ନିଜ ନିଜର ଚିନ୍ତାଧାରାରେ ବିଶୃଙ୍ଖଳ; ଅନେକେ ବିଭିନ୍ନ ସାମରିକ ଚୁକ୍ତି ସପକ୍ଷରେ ମତ ପ୍ରଦାନ

କରୁଥିଲା ବେଳେ, ଏହି ଅନୁଷ୍ଠାନର ଆକର୍ଷଣକୁ ଏଡ଼ାଇ ନ ପାରି ଏହାର ସଦସ୍ୟ ଶ୍ରେଣୀଭୁକ୍ତ ହୋଇଥାନ୍ତି ।"†

ଏହାର ଏକମାତ୍ର କାରଣ ହୋଇପାରେ, ଏହି ଅନୁଷ୍ଠାନର ଉପାଦେୟତା । ଶ୍ରେଷ୍ଠ, ମଧ୍ୟମ କିମ୍ବା ଯେତେବଡ଼ ରାଷ୍ଟ୍ର ହେଉନା କାହିଁକି, ସେ ସବୁହେଁ ନାହିଁ କାହାରି ବଶ୍ୟତା ସ୍ୱୀକାର କରିବ । ସେ ସବୁହେଁ ନିଜର ଅର୍ଥନୈତିକ ସ୍ୱଚ୍ଛଳତା ପାଇଁ ଅନ୍ୟ ରାଷ୍ଟ୍ରର ସାହାଯ୍ୟ, ସହଯୋଗ । ତେଣୁ ସେହି ମୌଳିକ ସମସ୍ୟାଗୁଡ଼ିକର ସମାଧାନ କରିପାରିବା ଦିଗରେ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ଶିଖର ସମ୍ମିଳନୀ ସହାୟକ ହୋଇପାରିବ ବୋଲି ଏସିଆର ନିରପେକ୍ଷ ରାଷ୍ଟ୍ରଗୁଡ଼ିକ ଅନୁଭବ କରିଥିବା ସେମାନଙ୍କ କାର୍ଯ୍ୟକଳାପରୁ ସ୍ପଷ୍ଟ ଲକ୍ଷ୍ୟ କରାଯାଇପାରେ ।

ଏହିଭଳି ଏକ ଆନ୍ତର୍ଜାତିକ ସମ୍ମାନଜନକ ସମ୍ମିଳନୀର ଆୟୋଜନ କରାଯିବା ଲାଗି ସାଧାରଣତଃ ତିନି ବର୍ଷ ସମୟ ଆବଶ୍ୟକ ହୋଇଯାଏ । କିନ୍ତୁ ଭାରତକୁ ସପ୍ତମ ସମ୍ମିଳନୀର ଦାୟିତ୍ୱ ଦିଆଯିବା ପରେ ତାର ଆୟୋଜନ ପାଇଁ ମାତ୍ର କେତୋଟି ମାସ ସମୟ ମିଳିଥିଲା । ଆୟୋଜକମାନଙ୍କ ନିଷ୍ଠାପର ଉଦ୍ୟମ ଓ ସେଥିପାଇଁ ଶ୍ରୀମତୀ ଗାନ୍ଧୀଙ୍କ ପ୍ରେରଣା ସେଭଳି ଏକ ଆୟୋଜନର ସଫଳତା ପାଇଁ ଥିଲା ବିଶେଷ ଉଲ୍ଲେଖଯୋଗ୍ୟ ।

ମାର୍ଚ୍ଚ ୧୯୮୩ ମସିହାରେ ଦିଲ୍ଲୀରେ ଅନୁଷ୍ଠିତ ସପ୍ତମ ରାଷ୍ଟ୍ର ଶିଖର ସମ୍ମିଳନୀରେ ଆସନ୍ତା ତିନି ବର୍ଷ ପାଇଁ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଅଧ୍ୟକ୍ଷାଭାବେ ଶ୍ରୀମତୀ ଗାନ୍ଧୀଙ୍କୁ ନିର୍ବାଚିତ କରାଯାଇଥିଲା । ଯେତେ ଆନୁଷ୍ଠାନିକ ପଦ୍ଧତି ବୋଲି କୁହାଗଲେ ମଧ୍ୟ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ସଂଘର ନେତୃତ୍ୱ ଗ୍ରହଣ କରି ଶ୍ରୀମତୀ ଗାନ୍ଧୀ ବିଶ୍ୱ ରାଜନୈତିକ ଦରବାରରେ ଯେ ଏକ ଉଚ୍ଚ ଆସନରେ ଅଧିକାରିଣୀ ହୋଇ ପାରିଥିଲେ ତାହା ନିଶ୍ଚୟ ସ୍ୱୀକାର୍ଯ୍ୟ । ଦୀର୍ଘ ୧୮ ବର୍ଷର ଶାସନକାଳ ମଧ୍ୟରେ ଏଭଳି ଏକ ଶୀର୍ଷ ଆସନରେ ଆସୀନ ହୋଇ ବିଶ୍ୱ ରାଜନୀତିରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବା ଥିଲା ତାହା ପ୍ରଥମ ସୁଯୋଗ ।

ସେଥିପାଇଁ ଯଥାର୍ଥରେ ରୁଷ ସମ୍ବାଦ ସରବରାହ ସଂସ୍ଥା 'ଟାସ୍'ରେ ପ୍ରକାଶ ପାଇଥିଲା ଯେ, ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱରେ ଭାରତ ଆନ୍ତର୍ଜାତିକ କ୍ଷେତ୍ରରେ ଉଚ୍ଚ ସମ୍ମାନର ଅଧିକାରୀ ହୋଇ ୧୯୮୪ ମସିହାରେ ପଦାର୍ପଣ କରିଛି । ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନରେ ଭାରତର ଭୂମିକାକୁ ଭୂୟସୀ ପ୍ରଶଂସା କରି

---

† A Crucial Conference—Surya India, March (1—15) 1984. P-25.

ସେଥିରେ ପ୍ରକାଶ ପାଇଥିଲା ଯେ, ପୃଥିବୀର ସମସ୍ତ ଶାନ୍ତିକାମୀ ଦେଶ ଭାରତର ଗଠନମୂଳକ ବୈଦେଶିକ ନୀତିର ପ୍ରଶଂସା କରୁଛନ୍ତି । କାରଣ ଅସ୍ତ୍ର ପ୍ରତିଯୋଗିତା ଓ ପରମାଣୁ ଯୁଦ୍ଧର ଆଶଙ୍କା ହ୍ରାସ କରିବାପାଇଁ ସେଥିରେ ଗୁରୁତ୍ୱ ଦିଆଯାଉଥିବା ସ୍ପଷ୍ଟ ପ୍ରମାଣିତ ।

ନିରପେକ୍ଷ ଗୋଷ୍ଠୀ ଗୋଷ୍ଠୀର ଅଧ୍ୟକ୍ଷାଭାବେ ସେ ଦୀର୍ଘକାଳ ଧରି ଲାଗି ରହିଥିବା ଇରାନ୍-ଇରାକ୍ ସଂଘର୍ଷର ଅବସାନ ଘଟାଇବା ଦିଗରେ ନିଷ୍ଠାପର ଭାବେ ଚେଷ୍ଟା କରିବାପାଇଁ ଦୃଢ଼ପରିକର ଥିଲେ ଓ ସେ ଦିଗରେ ଉଦ୍ୟମ ମଧ୍ୟ ଆରମ୍ଭ କରିଥିଲେ । ପୁଣି କେନ୍ଦ୍ରୀୟ ଆମେରିକାରେ ଆମେରିକୀୟ ହସ୍ତକ୍ଷେପ ଯେଉଁଭଳି ଭାବରେ ବନ୍ଦ ହୁଏ, ସେଥିପାଇଁ ଲୋକଙ୍କୁ ପ୍ରବର୍ତ୍ତନା ଦେବା ଦାୟିତ୍ୱ ରାଜ୍ୟଗୋଷ୍ଠୀ ତରଫରୁ ଶ୍ରୀମତୀ ଗାନ୍ଧୀଙ୍କୁ ଦିଆଯାଇଥିଲା ।

ରାଜନୈତିକ ପ୍ରସ୍ତାବଗୁଡ଼ିକ ସହିତ ବିଶ୍ୱରେ ଏକ ନୂତନ ଅର୍ଥନୈତିକ ସୁ-ସମ୍ପର୍କ ସ୍ଥାପନ କରିବା ଦିଗରେ ଦିଲ୍ଲୀ ସମ୍ମିଳନୀରେ ଯେଉଁ ଆହ୍ୱାନ ଦିଆଯାଇଥିଲା ଓ ପ୍ରସ୍ତାବ ଗୃହୀତ ହୋଇଥିଲା, ତାହାକୁ କାର୍ଯ୍ୟକାରୀ କରାଇବା ପାଇଁ ଉଦ୍ୟମ ଆରମ୍ଭ କରି ଦେଇଥିଲେ ଶ୍ରୀମତୀ ଗାନ୍ଧୀ । ଦିଲ୍ଲୀ ସମ୍ମିଳନୀରେ ଗୃହୀତ ହୋଇଥିବା ପ୍ରସ୍ତାବଗୁଡ଼ିକ ସହିତ ବିଶ୍ୱର ବିଶିଷ୍ଟ ନେତୃବୃନ୍ଦଙ୍କୁ ପତ୍ର ମାଧ୍ୟମରେ ଜଣାଇଥିଲେ, ସେ ସବୁକୁ କାର୍ଯ୍ୟକାରୀ କରାଇବା ଦିଗରେ ସମ୍ମିଳିତ ଉଦ୍ୟମ ତଥା ସାହାଯ୍ୟ-ସହଯୋଗ କରିବାପାଇଁ । ଅସନ୍ତାବର୍ଷ ସଂଘର ସାଧାରଣ ଅଧିବେଶନ ବେଳେ ବିଶ୍ୱ ନେତୃବୃନ୍ଦ ଏକତ୍ରିତ ହୋଇ ନୂତନ ଅର୍ଥନୈତିକ ପ୍ରଗାଢ଼ ପ୍ରସ୍ତାବ ବିଷୟରେ ଆଲୋଚନା କରିବାପାଇଁ ଶ୍ରୀମତୀ ଗାନ୍ଧୀ ଉଦ୍ୟମ ଆରମ୍ଭ କରି ଦେଇଥିଲେ ।

ବିଶ୍ୱ ରାଜନୀତିକୁ ନିରପେକ୍ଷ ଗୋଷ୍ଠୀ ଗୋଷ୍ଠୀର ଅଧ୍ୟକ୍ଷା ଭାବେ ଶ୍ରୀମତୀ ଗାନ୍ଧୀ ଯେ, କ୍ରମଶଃ ଅଧିକରୁ ଅଧିକ ନିୟନ୍ତ୍ରଣ କରିବା ସୁଯୋଗ ଲାଭ କରିଥିଲେ ସେଥିରେ କୌଣସି ସନ୍ଦେହ ଥାଇ ନ ପାରେ । କିନ୍ତୁ ତାହା କେତେଦୂର ଫଳପ୍ରଦ ହୋଇ ପାରିଥାନ୍ତା, ତାହା ନିର୍ଭର କରୁଥିଲା ନିଷ୍ଠୁର ସମୟର ରଥଚକ ଉପରେ । ସେ କାର୍ଯ୍ୟ ରୂପାୟିତ ହେବା ପୂର୍ବରୁ ମହାକାଳ ହିଁ ଅତି କ୍ରୁର ହୋଇ ଉଠିଥିଲା । ତେବେ ଏକଥା ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇପାରେ ଯେ, ସମଗ୍ର ବିଶ୍ୱରେ ସ୍ଥାୟୀ ଭାବରେ ଶାନ୍ତି ପ୍ରତିଷ୍ଠା କରିବାପାଇଁ ଶ୍ରୀମତୀ ଗାନ୍ଧୀଙ୍କ ବ୍ୟକ୍ତିଗତ ଆକାଂକ୍ଷା ଯେତିକି ପରିମାଣରେ ଥିଲା, ସେତିକି ପରିମାଣରେ ସୁଯୋଗ ରାଜ୍ୟଗୋଷ୍ଠୀର ଅଧ୍ୟକ୍ଷା ପଦବୀ ମଧ୍ୟ ଆଣି ଦେଇଥିଲା । ସେ ସବୁ ସୁବିଧା ସୁଯୋଗର ସଦ୍‌ବ୍ୟବହାର କରିବା ଲାଗି ସେ ସଚେଷ୍ଟ ହୋଇ ଉଠିଥିଲେ ମଧ୍ୟ । କିନ୍ତୁ ତାକୁ ସମ୍ପୂର୍ଣ୍ଣରୂପେ କାର୍ଯ୍ୟକାରୀ କରିବା ପୂର୍ବରୁ ତାଙ୍କର ମୃତ୍ୟୁ ହୋଇଥିଲା ।

ନିରପେକ୍ଷ ରାଷ୍ଟ୍ରଗୋଷ୍ଠୀ ସମ୍ମେଳନର ସଫଳତା ପରେ ପରେ ଭାରତର ସମ୍ମାନ ପୃଥିବୀ ଦରବାରରେ ବୃଦ୍ଧି କରିଥିଲା ଦିଲ୍ଲୀରେ ଅନୁଷ୍ଠିତ ରାଜ୍ୟଗୋଷ୍ଠୀ ସମ୍ମିଳନୀ । ସେଥିପାଇଁ ଭାରତର ସୁନାମ ସାଙ୍ଗକୁ ଶ୍ରୀମତୀ ଗାନ୍ଧୀଙ୍କର ବ୍ୟକ୍ତିତ୍ୱର ଭୂୟସୀ ପ୍ରଶଂସା ମଧ୍ୟ ସାରା ପୃଥିବୀରେ ବହୁଳ ଭାବରେ ପ୍ରଚାରିତ ହୋଇଥିଲା । ବିକାଶଶୀଳ ରାଷ୍ଟ୍ରମାନଙ୍କ ପାଇଁ ତାଙ୍କର ଦରଦ ସମଗ୍ର ପୃଥିବୀର ରାଜନୈତିକ ନେତୃବୃନ୍ଦଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିଲା ।

**ରାଜ୍ୟଗୋଷ୍ଠୀ ସମ୍ମିଳନୀ :—**

୧୯୮୩ ମସିହା ନଭେମ୍ବର ମାସ ୨୩ ତାରିଖ ଦିନ ଭାରତର ରାଜଧାନୀ ଦିଲ୍ଲୀର ବିଜ୍ଞାନ ଭବନଠାରେ ଅନୁଷ୍ଠିତ ହୋଇଥିବା ରାଜ୍ୟଗୋଷ୍ଠୀ ସମ୍ମିଳନୀ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରି ପାରିଥିଲା । ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ମଧ୍ୟ ସ୍ୱାଭାବିକ ଭାବେ ତାହାର କେନ୍ଦ୍ରବିନ୍ଦୁ ରୂପେ ପ୍ରତିଭାତ ହୋଇଥିଲେ । ପୃଥିବୀର ରାଜନୈତିକ ପର୍ଯ୍ୟବେକ୍ଷକମାନେ ମତବ୍ୟକ୍ତ କରିଥିଲେ ଯେ, ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ପାଇଁ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱ ଉଲ୍ଲେଖଯୋଗ୍ୟ ଥିଲା । ସେମାନେ ଯଥାର୍ଥରେ ମତବ୍ୟକ୍ତ କରିଥିଲେ ଯେ, ତାଙ୍କ ଲାଗି ୧୯୮୩ ମସିହାଟି "ଆନ୍ତର୍ଜାତିକ ସହଯୋଗିତାର ବର୍ଷ" ରୂପେ ବିବେଚିତ ହୋଇଥିଲା । ପୂର୍ବରୁ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ସମ୍ମିଳନୀରେ ଉତ୍ତର-ଦକ୍ଷିଣ ସହଯୋଗ ଦିଗରେ ବିଶିଷ୍ଟ ଆଭିମୁଖ୍ୟ ଗ୍ରହଣ କରିଥିବା ଶ୍ରୀମତୀ ଗାନ୍ଧୀ ଏପ୍ରତି ରାଜ୍ୟଗୋଷ୍ଠୀ ସମ୍ମିଳନୀରେ ବିକାଶଶୀଳ ରାଷ୍ଟ୍ରମାନଙ୍କ ଆର୍ଥିକ ସମ୍ବଳ ବୃଦ୍ଧି ପାଇଁ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ବିଶ୍ୱାସଥିଲା ଯେ, ବିକାଶଶୀଳ ଦେଶଗୁଡ଼ିକର ବିକାଶ ପାଇଁ ଏକାନ୍ତ ଆବଶ୍ୟକ ଆନ୍ତର୍ଜାତିକ ଆର୍ଥନୀତିକ ସହଯୋଗିତା । ଦିଲ୍ଲୀ ରାଜ୍ୟଗୋଷ୍ଠୀ ସମ୍ମିଳନୀରେ ସେ ତାଙ୍କର ଆନ୍ତରିକ ଅଭିଳାଷ ଅଧିକ ଗୁରୁତ୍ୱପୂର୍ଣ୍ଣ ଭାବେ ଆଲୋଚନାର ପରିସରଭୁକ୍ତ କରାଇ ଉନ୍ନତ ରାଷ୍ଟ୍ରଗୁଡ଼ିକର ଦୃଷ୍ଟି ଆକର୍ଷଣ କରିବାପାଇଁ ଚେଷ୍ଟା କରିଥିଲେ ।

ଦୀର୍ଘ ଏକ ସପ୍ତାହ ବ୍ୟାପୀ ହୋଇଥିବା ଏହି ସମ୍ମିଳନୀ ଭାରତରେ ପ୍ରଥମଥର ଲାଗି ଅନୁଷ୍ଠିତ ହୋଇଥିଲା । ଏହା ପ୍ରତି ଦୁଇ ବର୍ଷରେ ଥରେ ଲେଖାଏଁ ଅନୁଷ୍ଠିତ ହୋଇଥାଏ । ବିଗତ ଦୁଇ ବର୍ଷ ତଳେ ଅଷ୍ଟ୍ରେଲିଆରେ ଏହାର ଅଧିବେଶନ ଅନୁଷ୍ଠିତ ହୋଇଥିଲା ଓ ଆସନ୍ତା ସମ୍ମିଳନୀ ୧୯୮୫ ମସିହାରେ ବାହାମାରେ ଅନୁଷ୍ଠିତ ହେବାଲାଗି ଭାରତରେ ଶୀର୍ଷ ସମ୍ମିଳନୀ କାଳରେ ବାହାମାର ନିମନ୍ତ୍ରଣକୁ ରାଜ୍ୟଗୋଷ୍ଠୀର ନେତାମାନେ ଗ୍ରହଣ କରିଥିଲେ । ଏଥରର ସମ୍ମିଳନୀରେ ୩୯ଟି ରାଷ୍ଟ୍ରର ରାଷ୍ଟ୍ରମୁଖ୍ୟ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ୧୫ଟି ରାଷ୍ଟ୍ରର ରାଷ୍ଟ୍ରପତି ଓ ୧୯ ଦେଶର ପ୍ରଧାନମନ୍ତ୍ରୀ । ସେମାନଙ୍କ ବ୍ୟତୀତ

୧୩ଟି ଦେଶର ବୈଦେଶିକ ମନ୍ତ୍ରୀ ତଥା ଅନ୍ୟାନ୍ୟ ବିଶିଷ୍ଟ ନେତା । ପ୍ରାୟ ୫୬ଟି ସଭ୍ୟରାଷ୍ଟ୍ରର ପ୍ରତିନିଧି ଦଳ ଉକ୍ତ ବୈଠକରେ ଅଂଶ ଗ୍ରହଣ କରିଥିଲେ ।

ଏହି ରାଜ୍ୟଗୋଷ୍ଠୀର ସଦସ୍ୟ ରାଷ୍ଟ୍ରସଂଖ୍ୟା ୪୮ ଏବଂ ସେସମସ୍ତ ରାଷ୍ଟ୍ର ଅତୀତରେ ବ୍ରିଟେନର କୌଣସି କୌଣସି ଉପନିବେଶ ଥିଲେ । ସ୍ୱାଧୀନତା ହାସଲ କରିବା ପରେ ପରେ ସେମାନେ ରାଜ୍ୟଗୋଷ୍ଠୀର ସଦସ୍ୟ ହେବାକୁ ପସନ୍ଦ କରିଥିଲେ । ତେଣୁ ଆପାତତଃ ପ୍ରାୟ ୪୮ଟି ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ରର ଏକ ସଙ୍ଗଠନ ଏହି ରାଜ୍ୟଗୋଷ୍ଠୀ ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କର ଏହି ଅନୁଷ୍ଠାନ ପାଇଁ ଅବଦାନ ବିଶେଷ ସ୍ମରଣୀୟ । ୧୯୪୭ ମସିହାରେ ଭାରତ ସ୍ୱାଧୀନ ରାଷ୍ଟ୍ରରୂପେ ଜନ୍ମଲାଭ କରିବା ପରେ, ବ୍ରିଟେନ୍ ସହିତ ଅତୀତର ସମସ୍ତ ବୈଷମ୍ୟ ବିସ୍ମରଣ କରି ନୂତନ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା କରିବାପାଇଁ ସେ ଆଗେଇ ଯାଇଥିଲେ । ୧୯୪୯ ମସିହାରେ ଅନୁଷ୍ଠିତ ରାଜ୍ୟଗୋଷ୍ଠୀ ଲଣ୍ଡନ ବୈଠକରେ ପଣ୍ଡିତ ନେହେରୁଙ୍କ ଉଦ୍ୟମ ଫଳେ ସାଙ୍ଗଠନିକ ଦୃଷ୍ଟିକୋଣରୁ ଉକ୍ତ ଅନୁଷ୍ଠାନରେ ଏକ ବୈପ୍ଳବିକ ପରିବର୍ତ୍ତନ ଅଣାଯାଇଥିଲା । ଫଳରେ ଭାରତ ଓ ପାକିସ୍ଥାନ ରାଜ୍ୟ-ଗୋଷ୍ଠୀର ସର୍ବପ୍ରଥମ ଅଶ୍ୱେତାଙ୍ଗ ରାଷ୍ଟ୍ର ସଦସ୍ୟରାଷ୍ଟ୍ର ହୋଇଥିଲେ । ତତ୍ପୂର୍ବରୁ ବର୍ତ୍ତମାନର ରାଜ୍ୟଗୋଷ୍ଠୀକୁ ବ୍ରିଟିଶ୍ ରାଜ୍ୟଗୋଷ୍ଠୀ ବୋଲି କୁହାଯାଉଥିଲା ଏବଂ ଏଥିରେ ମାତ୍ର ପାଞ୍ଚଟି ସଦସ୍ୟରାଷ୍ଟ୍ର ଥିଲେ । ଭାରତ ଓ ପାକିସ୍ଥାନ-ଦୁଇ ଅଶ୍ୱେତାଙ୍ଗ ରାଷ୍ଟ୍ରକୁ ବାଦ୍‌ଦେଇ ଆଉ ଯେଉଁ ରାଷ୍ଟ୍ରଗୁଡ଼ିକ ଥିଲେ ସେମାନେ ହେଲେ ବ୍ରିଟେନ୍, କାନାଡ଼ା, ଅଷ୍ଟ୍ରେଲିଆ, ନିଉଜିଲଣ୍ଡ ତଥା ଦକ୍ଷିଣ-ଆଫ୍ରିକା ଶ୍ୱେତାଙ୍ଗ ରାଷ୍ଟ୍ର ।

ଏହି ରାଜ୍ୟଗୋଷ୍ଠୀର ଆନୁଷ୍ଠାନିକ ମୁଖ୍ୟ ହେଉଛନ୍ତି ବ୍ରିଟେନ୍‌ର ମହାରାଣୀ ।

ଭାରତ ରାଜ୍ୟଗୋଷ୍ଠୀର ସଦସ୍ୟ ହେବା ପୂର୍ବରୁ ବ୍ରିଟେନ୍‌ର ରାଜା ବା ରାଣୀଙ୍କୁ ପ୍ରତ୍ୟେକ ସଦସ୍ୟରାଷ୍ଟ୍ର ତାଙ୍କୁ ମୁଖ୍ୟ ରୂପେ ଗ୍ରହଣ କରି ଆସୁଥିଲେ । କିନ୍ତୁ ଭାରତ ଏକ ଜନରାଜ୍ୟ ରୂପେ ପ୍ରତିଷ୍ଠିତ ହୋଇଥିବାରୁ ସେ ବ୍ୟବସ୍ଥାର ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇ ଉଠିଥିଲା । ତା ପରେ ପରେ ବ୍ରିଟେନର ରାଣୀ କେବଳ ରାଜ୍ୟଗୋଷ୍ଠୀର ଆନୁଷ୍ଠାନିକ ମୁଖ୍ୟ ରୂପେ ବିବେଚିତ ହୋଇଥିଲେ ଓ ହୋଇଆସୁଛନ୍ତି ମଧ୍ୟ । ବର୍ତ୍ତମାନ ସଦସ୍ୟ ରାଷ୍ଟ୍ରମାନଙ୍କ ମଧ୍ୟରୁ ୨୬ଟି ରାଜ୍ୟ ଜନରାଜ୍ୟ ଥିବାବେଳେ ୧୮ଟି ରାଜ୍ୟରେ ରାଜତନ୍ତ୍ର ପ୍ରଚଳିତ । ଦ୍ୱିତୀୟ ଶ୍ରେଣୀସ୍ଥ ରାଜ୍ୟଗୁଡ଼ିକ ବର୍ତ୍ତମାନ ସୁଦ୍ଧା ବ୍ରିଟେନର ରାଣୀଙ୍କୁ ତାଙ୍କର ରାଷ୍ଟ୍ରମୁଖ୍ୟ ଭାବେ ସ୍ୱୀକାର କରୁଛନ୍ତି । ଆଉ ଅନ୍ୟ ଗୁଡ଼ିଏ ରାଷ୍ଟ୍ରର ମୁଖ୍ୟ ହେଉଛନ୍ତି ରାଜା ବା ବାଦ୍‌ସାହ ।

ତଥାପି ବ୍ରିଟିଶ୍ ରାଣୀ ହିଁ ରାଜ୍ୟଗୋଷ୍ଠୀର ମୁଖ୍ୟ ।

ସେଇ ହିସାବରେ ଦିଲ୍ଲୀ ବୈଠକରେ ଯୋଗ ଦେବାପାଇଁ ବ୍ରିଟେନର ରାଣୀ ଏଲିଜାବେଥ୍ ନଭେମ୍ବର ୧୭ ତାରିଖ ଦିନ ତାଙ୍କ ସ୍ୱାମୀ ପ୍ରିନ୍ସ୍ ଫିଲିପ୍ଙ୍କ ସହ ନଅଦିନିଆ ଭାରତ ଗସ୍ତରେ ଆସି ପାଲାମ ବିମାନ ଘାଟିରେ ପହଞ୍ଚିଥିଲେ । ସେଠାରେ ତାଙ୍କୁ ଭାରତର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ମନ୍ତ୍ରୀମଣ୍ଡଳର ସଦସ୍ୟ, ସାମରିକ ବାହିନୀର ମୁଖ୍ୟ, ପାର୍ଲ୍ୟାମେଣ୍ଟ ସଦସ୍ୟ ତଥା କୂଟନୀତିଜ୍ଞମାନେ ସ୍ୱାଗତ ଜଣାଇଥିଲେ । ସେଠାରେ ତାଙ୍କୁ ଗାର୍ଡ଼ ଅଫ୍ ଅନର ମଧ୍ୟ ଜ୍ଞାପନ କରାଯାଇଥିଲା । ଏହା ଥିଲା ତାଙ୍କର ଦ୍ୱିତୀୟ ଭାରତ ଗସ୍ତ । ଏହାର ୨୨ ବର୍ଷ ପୂର୍ବରୁ ସେ ୧୯୬୧ ମସିହାରେ ପ୍ରଥମଥର ଭାରତ ଆସି ଏଠାରେ ରହିଥିଲେ ପ୍ରାୟ ୨୧ ଦିନ ।

ଏହି ଅବସରରେ ରାଣୀ ଏଲିଜାବେଥ୍ ୨୪ ତାରିଖ ଗୁରୁବାର ଦିନ ନୋବେଲ୍ ପୁରସ୍କାର ବିଜେତା ମଦର ଟେରେସାଙ୍କୁ ବ୍ରିଟେନ୍‌ର ସର୍ବୋଚ୍ଚ ସମ୍ମାନସୂଚକ ଉପାଧି "ଅର୍ଡ଼ର ଅଫ୍ ଦି ମେରିଟ୍" ଭାରତର ରାଷ୍ଟ୍ରପତି ଭବନରେ ଆୟୋଜିତ ଏକ ସ୍ୱତନ୍ତ୍ର ଉତ୍ସବରେ ପ୍ରଦାନ କରିଥିଲେ । ଏହାଥିଲା ମଦର ଟେରେସାଙ୍କ ପ୍ରତି ବ୍ରିଟେନ୍ ରାଣୀଙ୍କର ଏକ ବ୍ୟକ୍ତିଗତ ଉପହାର । ଏ ଉପହାର ପାଇବାରେ ମଦର ଟେରିସା ଥିଲେ ୪ର୍ଥ ଅଣ-ବ୍ରିଟିସ୍ ନାଗରିକ । ତାଙ୍କ ପୂର୍ବରୁ ଯେଉଁ ଅଣବ୍ରିଟିସ୍ ନାଗରିକମାନେ ଏ ଉପାଧି ପାଇଥିଲେ ସେମାନେ ହେଲେ ଭାରତର ପୂର୍ବତନ ରାଷ୍ଟ୍ରପତି ଡଃ ରାଧାକୃଷ୍ଣନ୍ ; ଆମେରିକାର ପୂର୍ବତନ ରାଷ୍ଟ୍ରପତି ଡ଼୍. ଜି. ଆଇଜେନ୍ ହାଓ୍ୱାର ଓ ଡ. ଆଲ୍‌ବର୍ଟ ସୁଇଟ୍‌ଜର ।

୧୯୪୯ ଲଣ୍ଡନ ସମ୍ମିଳନୀରେ ପଣ୍ଡିତ ନେହେରୁ ରାଜ୍ୟଗୋଷ୍ଠୀ ସମ୍ମିଳନୀରେ ସ୍ୱାଧୀନ ଭାରତ ସଦସ୍ୟରାଷ୍ଟ୍ର ହେବା ସପକ୍ଷରେ ଯେଉଁ ଯୁକ୍ତି ପ୍ରଦର୍ଶନ କରିଥିଲେ ତାହା ସବୁଦିନ ପାଇଁ ଅକାଟ୍ୟ ହୋଇ ରହିଯାଇଥିଲା । ସେ ଭାଷଣ ପ୍ରସଙ୍ଗରେ ଉଲ୍ଲେଖ କରିଥିଲେ ଯେ, ଗାନ୍ଧିଜୀଙ୍କ ଅହିଂସା ନୀତି ଅନୁସରଣରେ ଭାରତର ସ୍ୱାଧୀନତା ହାସଲ ହେବା ପରେ ପୂର୍ବତନ ଔପନିବେଶିକ ଶକ୍ତି ବ୍ରିଟେନ୍ ପ୍ରତି ଭାରତର ବା ଭାରତବାସୀଙ୍କର କୌଣସି ଘୃଣା, ବିଦ୍ୱେଷ କିମ୍ବା ଶତ୍ରୁତାର ପ୍ରଶ୍ନ ଉଠେନାହିଁ । ପୁଣି ରାଜ୍ୟ ଗୋଷ୍ଠୀଭୁକ୍ତ ସଦସ୍ୟ ରାଷ୍ଟ୍ରମାନଙ୍କ ମଧ୍ୟରେ ସହଯୋଗ କେବଳ ଶାନ୍ତିପୂର୍ଣ୍ଣ ତଥା ଗଠନମୂଳକ ଉଦ୍ଦେଶ୍ୟକୁ ହିଁ ପୁଷ୍ଟ କରିବ । କାରଣ ସଙ୍ଗଠନ ନିକଟରେ ସମସ୍ତ ରାଷ୍ଟ୍ର ସମାନ ଏବଂ ସମସ୍ତେ ସ୍ୱାଧୀନ ।

ସେହି ରାଜ୍ୟଗୋଷ୍ଠୀ ଅନୁଷ୍ଠାନର ସଦସ୍ୟ ହେବାପାଇଁ ଭାରତ ଆଗ୍ରହୀ ହେବାର କାରଣ ସମ୍ପର୍କରେ ପଣ୍ଡିତ ନେହେରୁ କହିଥିଲେ ଯେ, "ଭାରତର ସ୍ୱାର୍ଥରକ୍ଷା ମୋର ପ୍ରଥମ କର୍ତ୍ତବ୍ୟ । ବିଶ୍ୱର ବୃହତ୍ତର କଲ୍ୟାଣ ମଧ୍ୟରେ ମୋର ସେହି କର୍ତ୍ତବ୍ୟର ପରିକଳ୍ପନା ମୁଁ ବରାବର କରି ଆସିଛି । ଆଜି ବିଶ୍ୱର ପରିସ୍ଥିତି ଘୋର ବିବାଦପୂର୍ଣ୍ଣ । ଚାରିଆଡ଼େ ଘୋର ବିପର୍ଯ୍ୟୟର ସୂଚନା ଦେଖାଯାଉଛି ।

ମାନବ ହୃଦୟରେ ପୂର୍ବ ରହିଛି ଉତ୍କଟ ଘୃଣା, ଭୟ ଏବଂ ସନ୍ଦେହ । ଏହି ଉତ୍ତେଜନାକୁ ଯେତେ ସାମାନ୍ୟ ପରିମାଣରେ ହେଲେ ମଧ୍ୟ ଯେଉଁ ପଦକ୍ଷେପ ହ୍ରାସ କରିବାରେ ସାହାଯ୍ୟ କରିବ ତାହା ସ୍ୱାଗତଯୋଗ୍ୟ । ଭାରତ ଏବଂ ବ୍ରିଟେନ ମଧ୍ୟରେ ଅତୀତରେ ଥିବା ବିବାଦ ଯେଉଁଭଳି ବନ୍ଧୁତ୍ୱପୂର୍ଣ୍ଣ ପରିବେଶରେ ତୁଟି ଯାଇଛି ତାହା ଭବିଷ୍ୟତ ପାଇଁ ଏକ ଶୁଭସଙ୍କେତ ବହନ କରୁଛି । ଏହି ବନ୍ଧୁତ୍ୱ ଉଭୟ ରାଷ୍ଟ୍ରର ମହତ୍ତ୍ୱ ବୃଦ୍ଧି କରିଛି ।"

ପଣ୍ଡିତ ନେହେରୁଙ୍କ ସେ ଯୁକ୍ତି ରାଜ୍ୟଗୋଷ୍ଠୀର ସଦସ୍ୟ ରାଷ୍ଟ୍ରଗୁଡ଼ିକୁ ସମ୍ମୋହିତ କରାଇ ଦେଇଥିଲା ଏବଂ ପରିଣାମ ହୋଇଥିଲା ଶୁଭଙ୍କର । ଭାରତ ଓ ପାକିସ୍ଥାନ ତାର ସଦସ୍ୟ ହୋଇଥିଲେ । ପରେ ପରେ ବ୍ରିଟିଶ୍ ସାମ୍ରାଜ୍ୟର ଯେଉଁ ଉପନିବେଶଗୁଡ଼ିକ ସ୍ୱାଧୀନତା ଲାଭ କରିଥିଲେ, ସେମାନେ ମଧ୍ୟ ରାଜ୍ୟଗୋଷ୍ଠୀର ସଦସ୍ୟ ହୋଇ ରହିବାକୁ ପସନ୍ଦ କରିଥିଲେ । ସେହିଭଳି ଭାବରେ ୧୯୭୦ ପରେ ଚାଲିଶଟି ରାଷ୍ଟ୍ର ସଦସ୍ୟ ହେବା ଫଳରେ ବର୍ତ୍ତମାନ ତାର ସଭ୍ୟ ସଂଖ୍ୟା ୪୮ ।

ସଭ୍ୟ ରାଷ୍ଟ୍ରଗୁଡ଼ିକ ମଧ୍ୟରେ ଭାରତ ଭଳି ପ୍ରାୟ ୭୦ କୋଟି ଜନସଂଖ୍ୟା ବିଶିଷ୍ଟ ଦେଶ ସମେତ ମାତ୍ର ୨୧ ବର୍ଗ କିଲୋମିଟରର ଆୟତନ ତଥା ୭୨୫୦ ଜନସଂଖ୍ୟା ବିଶିଷ୍ଟ କ୍ଷୁଦ୍ର ଦ୍ୱୀପ ନାଉରୁ ମଧ୍ୟ ସଦସ୍ୟ ରୂପେ ସମାନ ଅଧିକାର ଜାହିର୍ କରିପାରୁଛି । ଏହି ରାଜ୍ୟଗୋଷ୍ଠୀରେ ଭାରତ ସମେତ ପ୍ରାୟ ୪୮ ଟି ସଦସ୍ୟ ରାଷ୍ଟ୍ର ଦରିଦ୍ର, ବିକାଶଶୀଳ, ତୃତୀୟ ବିଶ୍ୱର ରାଷ୍ଟ୍ର ଏବଂ ବ୍ରିଟେନ୍, କାନାଡ଼ା, ନିଉଜିଲ୍ୟାଣ୍ଡ ଓ ଅଷ୍ଟ୍ରେଲିଆ ବଳଶାଳୀ ରାଷ୍ଟ୍ର । ପୁଣି ଆହୁରି କେତେକ ମଧ୍ୟ ସାମରିକ ମେଣ୍ଟଭୁକ୍ତ ରାଷ୍ଟ୍ର । ତେବେ ଅଧିକାଂଶ ନିରପେକ୍ଷରାଷ୍ଟ୍ର ଗୋଷ୍ଠୀଭୁକ୍ତ ।

ଏହା ଗ୍ରେଟକାଟର ଏକ ମିଳିତ ଜାତିସଂଘ । କୌଣସି ରାଷ୍ଟ୍ର ଅନ୍ୟ କାହାରି ଉପରେ ନିଜ ମତ ଜାହିର ନ କରିବା ପାଇଁ କିମ୍ବା କେହି କାହାରି ନୀତି ନିର୍ଦ୍ଧାରଣରେ ସାମାନ୍ୟ ରୂପ ପ୍ରଭାବ ପ୍ରୟୋଗ ନ କରିବା ଭଳି ମୌଳିକ ନୀତି ଅନୁସରଣ କରି ଚାଲିଥିବାରୁ ରାଜ୍ୟଗୋଷ୍ଠୀ ଆକର୍ଷଣୀୟ ତିଷ୍ଠି ରହିଛି । ମନଖୋଲି ଭାବେ ଓ ପରସ୍ପରର ସ୍ୱାର୍ଥଜଡ଼ିତ ବିଷୟାବଳୀ ଉପରେ ବିସ୍ତୃତ ଆଲୋଚନା କରି ବୈଠକଗୁଡ଼ିକରେ ସମସ୍ତଙ୍କ ଅନୁକୂଳ ଆଭିମୁଖ୍ୟ ଗ୍ରହଣ କରାଯିବାଲାଗି ଚେଷ୍ଟା କରାଯାଇଥାଏ ।

ଭାରତରେ ଅନୁଷ୍ଠିତ ହେଉଥିବା ସମ୍ମିଳନୀର ଗୁରୁତ୍ୱ ସମ୍ପର୍କରେ ସଙ୍ଗଠନର ମହାସଚିବ ଶ୍ରୀ ରାମଫାଲ୍ ପ୍ରକାଶ କରିଥିଲେ ଯେ ବିଶ୍ୱରେ ସେତେବେଳେ ଯେଉଁ ସଙ୍କଟ ଦେଖା ଦେଇଥିଲା ୧୯୪୦ ମସିହା ପରଠାରୁ ସେଭଳି କେବେ ଦେଖା ଦେଇ ନ ଥିଲା । ବିଶ୍ୱର ଦୁଇ ବୃହତ୍ ଶକ୍ତିଙ୍କ ବିଭେଦ ଯୋଗୁଁ ଏବଂ ମହା-

ଧ୍ୱଂସକାରୀ ପାରମାଣବିକ ଯୁଦ୍ଧ ପାଇଁ ଅସ୍ତ୍ର ପ୍ରତିଯୋଗିତାର ଆୟୋଜନ ଯୋଗୁଁ ବିଶ୍ୱରେ ଦରିଦ୍ର ଜନତାର ଦୁଃଖ ଅନ୍ତର ଅଧିକ ବୃଦ୍ଧି ପାଇଥିଲା ଓ ସାମାଜିକ ବିଶୃଙ୍ଖଳା ତୀବ୍ରତର ହୋଇଥିଲା । ଯଦିଓ ସେଭଳି ସମସ୍ୟାର ସମାଧାନ ରାଜ୍ୟଗୋଷ୍ଠୀ କରିପାରିବ ନାହିଁ ତଥାପି ଅତୀତର ଅଭିଜ୍ଞତାରୁ ଯଥେଷ୍ଟ ସୁଫଳ ମିଳିଥିବା ପ୍ରକାଶ କରି ସେ କହିଥିଲେ ଯେ ତାହା ନିଶ୍ଚୟ ବୃହତ୍ ଶକ୍ତିଗୁଡ଼ିକ ଉପରେ ଉଲ୍ଲେଖଯୋଗ୍ୟ ପ୍ରଭାବ ପକାଇବ । ସେ ପ୍ରକାଶ କରିଥିଲେ ଯେ ଆମନ୍ତ୍ରଣକାରୀ ରାଷ୍ଟ୍ର ଭାବରେ ଭାରତ ଯେଉଁ ଯେଉଁ ଭୂମିକା ଗ୍ରହଣ କରିଥିଲା ସେ ଦୃଷ୍ଟିରୁ ତାହାର ଫଳାଫଳ ମଧ୍ୟ ଭାରତର ମର୍ଯ୍ୟାଦାକୁ ପ୍ରଭାବିତ କରିବ ।

ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ନଭେମ୍ବର ୨୩ ତାରିଖ ଦିନ ସକାଳେ ରାଜ୍ୟଗୋଷ୍ଠୀ ଶୀର୍ଷ ସମ୍ମିଳନୀର ଦିଲ୍ଲୀ ଅଧିବେଶନ ଉଦ୍‌ଘାଟନ କରି ପୃଥିବୀରେ ଚାଲିଥିବା ଆଣବିକ ଅସ୍ତ୍ର ପ୍ରତିଯୋଗିତା ବନ୍ଦ କରାଯିବା ଦିଗରେ ଦୁଇ ବୃହତ୍‌ଶକ୍ତିଙ୍କ ଉପରେ ଚାପ ପକାଇବା ପାଇଁ ପ୍ରସ୍ତାବ ବାଢ଼ିଥିଲେ । ସେ ରାଜ୍ୟ-ଗୋଷ୍ଠୀର ନେତାମାନଙ୍କୁ ଦୃଢ଼ ଆହ୍ୱାନ ଜଣାଇଥିଲେ ଯେ କୌଣସି ରାଷ୍ଟ୍ର ଦ୍ୱାରା ଅନ୍ୟରାଷ୍ଟ୍ର ଉପରେ ବଳ ପ୍ରୟୋଗକୁ ଦୃଢ଼ ନିନ୍ଦା କରିବାପାଇଁ ତଥା ଅନ୍ୟାୟ ଓ ପରାଧୀନତା ବିରୋଧରେ ସ୍ୱର ଉତ୍ତୋଳନ ପାଇଁ ସେମାନେ ପାରସ୍ପର ସହିତ ଆଗେଇ ଆସିବା ଆବଶ୍ୟକ ।

ପୃଥିବୀର ରାଜନୈତିକ ଓ ଅର୍ଥନୈତିକ ପରିବେଶର ସମୀକ୍ଷା କରିବା ସଙ୍ଗେ ସଙ୍ଗେ ଶାନ୍ତି ଓ ଉନ୍ନୟନ ପ୍ରତି ଦେଖା ଦେଇଥିବା ପ୍ରତିବନ୍ଧକଗୁଡ଼ିକ ସମ୍ପର୍କରେ ମଧ୍ୟ ଉଲ୍ଲେଖ କରି ସେ ଗ୍ରେନେଡା ଘଟଣାବଳୀ, ନାମ୍ବିଆର ସ୍ୱାଧୀନତା, ସାଇପ୍ରସ୍‌ରେ ତୁର୍କୀମାନଙ୍କ ଏକତରଫା ବେଆଇନ ସ୍ୱାଧୀନତା ଘୋଷଣା ତଥା ବିପଦ୍‌ଜନକ ଭାବେ ଭାରତୀୟ ମହାସାଗରରେ ବଢ଼ି ଚାଲିଥିବା ସମରସଜ୍ଜା ସମ୍ପର୍କରେ ସଦସ୍ୟ ରାଷ୍ଟ୍ରମାନଙ୍କ ଦୃଷ୍ଟି ସେ ଆକର୍ଷଣ କରିଥିଲେ । ସେ ମତ ଦେଇଥିଲେ—ପୃଥିବୀର ଧନୀ ଓ ନିର୍ଦ୍ଧନ ରାଷ୍ଟ୍ରଙ୍କ ଭାଗ୍ୟ ପରସ୍ପର ସହ ଜଡ଼ିତ ଥିବାରୁ ଦରିଦ୍ର ରାଷ୍ଟ୍ରଙ୍କ ଯଥେଷ୍ଟ ଉନ୍ନତି ନ ହେଲେ ଧନୀ ରାଷ୍ଟ୍ରଙ୍କ ଅର୍ଥ-ନୈତିକ ପୁନରୁଦ୍ଧାର ଅସମ୍ଭବ । ସେଥିପାଇଁ ପୃଥିବୀର ସବୁ ଶକ୍ତି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ଅହସ୍ତକ୍ଷେପର ନୀତିକୁ ଅକ୍ଷରେ ଅକ୍ଷରେ ପାଳନ କରିବା ଆବଶ୍ୟକ ବୋଲି ସେ ଜୋର ଦେଇ କହିଥିଲେ ।

ସେଦିନ ଅପରାହ୍ଣରେ ଅନୁଷ୍ଠିତ ରାଜ୍ୟଗୋଷ୍ଠୀ ଶୀର୍ଷ ସମ୍ମିଳନୀରେ ପ୍ରଥମ କାର୍ଯ୍ୟକାରୀ ବୈଠକରେ ଶ୍ରୀମତୀ ଗାନ୍ଧୀ ଗୁରୁତ୍ୱର ସହିତ ପ୍ରସ୍ତାବ ଦେଇଥିଲେ ଯେ ପୃଥିବୀରେ ଅସ୍ତ୍ର ଶସ୍ତ୍ର ନିୟନ୍ତ୍ରଣ ଦିଗରେ ପୃଥିବୀର ଦୁଇ ବୃହତ୍ ଶକ୍ତିର କଥାବାର୍ତ୍ତା ଚାଲୁ ରଖାଯାଇ ଅନ୍ତତଃ ଗୋଟିଏ ବା ଦୁଇଟି ଦିଗରେ ନିର୍ଦ୍ଦିଷ୍ଟ ପଦକ୍ଷେପ ସ୍ଥିର

କରାଯିବାପାଇଁ ନିବେଦନ କରାଯାଉ । ପୁଣି ସେମାନଙ୍କ କଥାବାର୍ତ୍ତାର ଅଗ୍ରଗତି ସମ୍ପର୍କରେ ଜାତିସଂଘର ସାଧାରଣ ପରିଷଦ କିମ୍ବା ନିରାପତ୍ତା ପରିଷଦକୁ ଜଣାଇବାର ବ୍ୟବସ୍ଥା କରାଯାଉ ।

ରାଜ୍ୟଗୋଷ୍ଠୀ ସମ୍ମିଳନୀରେ ଶ୍ରୀମତୀ ଗାନ୍ଧୀଙ୍କ ଭାଷଣରେ ଉପସ୍ଥାପିତ ଏ ଦୁଇଟି ଭାବଧାରା ସପ୍ତାହ ବ୍ୟାପୀ ଆଲୋଚନା ପାଇଁ ପଥ ଉନ୍ମୁକ୍ତ କରି ଦେଇଥିଲା । ତାଙ୍କ ପରେ ପରେ ଭାଷଣ ଦେଉଥିବା ନେତାମାନେ ସମସ୍ତେ ସେହି ବିଷୟ ପ୍ରସଙ୍ଗରେ ହିଁ ବିଶେଷ ଭାବେ ଆଲୋଚନା କରିଥିଲେ ଓ କ୍ଷୁଦ୍ରତର ରାଷ୍ଟ୍ର-ଗୁଡ଼ିକର ସ୍ୱାଧୀନତା ଓ ନିରାପତ୍ତା ପ୍ରତି ଦେଖା ଦେଇଥିବା ବିପଦାବଳୀ ସମ୍ପର୍କରେ ଶ୍ରୀମତୀ ଗାନ୍ଧୀଙ୍କ ଉଦ୍‌ବେଗ ସହିତ ସ୍ୱର ମିଳାଇଥିଲେ । ପ୍ରାୟ ସମସ୍ତଙ୍କ ଭାଷଣରେ ସେହି ଗୋଟିଏ କଥା ପ୍ରକାଶ ପାଇଥିଲା ଯେ, ସେଥିପାଇଁ କେତେକ ପଦକ୍ଷେପ ନିଆଯିବା ଆବଶ୍ୟକ ।

ଭାରତରେ ଅନୁଷ୍ଠିତ ରାଜ୍ୟଗୋଷ୍ଠୀ ସମ୍ମିଳନୀ ନୂଆଦିଲ୍ଲୀ ଓ ଗୋଆ— ଏହିଭଳି ଦୁଇଟି ପର୍ଯ୍ୟାୟରେ ଶେଷ ହୋଇଥିଲା । ଗୋଆରେ ତିନି ଦିନ ରହିବା ପରେ ସେହି ପ୍ରସ୍ତାବ ଉପରେ ରାଜ୍ୟଗୋଷ୍ଠୀର ନେତାମାନେ ଦିଲ୍ଲୀ ଅଭିମୁଖେ ଯାତ୍ରା କରିବା ପୂର୍ବରୁ ୨୭ ତାରିଖ ପୂର୍ବାହ୍ଣରେ ଅନୁଷ୍ଠିତ ଏକ ବୈଠକରେ ଚୂଡ଼ାନ୍ତ ଘୋଷଣାନାମା ପ୍ରକାଶ କରିଥିଲେ । ସେଥିରେ କୁହାଯାଇଥିଲା ଯେ, ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ବାରମ୍ବାର ଗୁରୁତ୍ୱ ଦେଇ ଆସୁଛନ୍ତି, ପୃଥିବୀରୁ ଉତ୍ତେଜନା ହ୍ରାସ ଲାଗି ପ୍ରଥମ ଆବଶ୍ୟକତା ନିରସ୍ତ୍ରୀକରଣ; ଏବଂ ସେ ଦିଗରେ ଅଗ୍ରଗତି ଲାଗି ଆଣବିକ ପ୍ରତିଯୋଗିତା ବନ୍ଦ ରହିବା ସର୍ବପ୍ରଧାନ ଆବଶ୍ୟକତା । ବିପଦପୂର୍ଣ୍ଣ ପୃଥିବୀକୁ ରକ୍ଷାକରିବା ଦିଗରେ ତାହାହିଁ ଏକମାତ୍ର ଜରୁରୀ ପନ୍ଥା । ତେଣୁ ରାଜ୍ୟଗୋଷ୍ଠୀ ନେତାମାନେ ସମ୍ମିଳିତ ଭାବେ ସେହି ଘୋଷଣାନାମାରେ ଆନ୍ତର୍ଜାତୀୟ ନିରାପତ୍ତା ପାଇଁ ତଥା କ୍ଷୁଦ୍ରତର ଦେଶଗୁଡ଼ିକର ସୁରକ୍ଷା ପାଇଁ ଦୁଇ ବୃହତ୍ ଶକ୍ତି, ଆମେରିକା ଓ ରୁଷିଆ ମଧ୍ୟରେ ରାଜନୈତିକ ଆଲୋଚନା କରନ୍ତୁ ବୋଲି ନିବେଦନ କରିଥିଲେ ।

ଦିଲ୍ଲୀ ସମ୍ମିଳନୀର ଫଳାଫଳ ସମ୍ପର୍କରେ ପୃଥିବୀର ବିଭିନ୍ନ ଦେଶରେ ପ୍ରକାଶ ପାଇଥିବା ଅନୁକୂଳ ଓ ପ୍ରତିକୂଳ ମନ୍ତବ୍ୟ ନେଇ ଏକ ସାମ୍ବାଦିକ ସମ୍ମିଳନୀରେ ଶ୍ରୀମତୀ ଗାନ୍ଧୀ କହିଥିଲେ ଯେ, ଯାହାହେଲେ ବି ପୃଥିବୀରୁ ଅସ୍ତ୍ର ପ୍ରତିଯୋଗିତା ବନ୍ଦ କରାଇବା ତଥା ଆଉ ଏକ ମହାଯୁଦ୍ଧଜନିତ ବିପଦରୁ ରକ୍ଷା କରିବା ଦିଗରେ ରାଜ୍ୟଗୋଷ୍ଠୀ ସମସ୍ତ ପ୍ରକାର ଉଦ୍ୟମ କରିଚାଲିବ । ଅନୁଷ୍ଠାନର ମହାସଚିବ ଶ୍ରୀଧର ରାମଫାଲ୍ ମତବ୍ୟକ୍ତ କରିଥିଲେ ଯେ, ନୂଆଦିଲ୍ଲୀ ଶୀର୍ଷ ସମ୍ମିଳନୀ ରାଜ୍ୟଗୋଷ୍ଠୀ ପ୍ରତି ପୃଥିବୀର ଅନ୍ୟାନ୍ୟ ଦେଶଗୁଡ଼ିକର ଆସ୍ଥା ବୃଦ୍ଧି କରିଥିଲା ଏବଂ ଏହା ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟାନୁଷ୍ଠାନ ପାଇଁ ନୂତନ ରାସ୍ତା ଉନ୍ମୋଚିତ କରିଥିଲା ।

ରାଜ୍ୟଗୋଷ୍ଠୀ ସମ୍ମିଳନୀରେ ଯୋଗ ଦେଇଥିବା ବୈଦେଶିକ ମନ୍ତ୍ରୀମାନେ ଭାରତର ଐତିହାସିକ ଓ ସାଂସ୍କୃତିକ ଜୀବନ ସମ୍ପର୍କରେ ଅଧିକତର ଅବଧାରଣା ପାଇଁ ରାଜସ୍ଥାନ ଯାଇଥିଲେ । ସେଠାରେ ସେମାନେ ଦୀର୍ଘ ୩୦ ଘଣ୍ଟା ବିତାଇବା ଅବସରରେ କୌଣସି ରାଜନୈତିକ କିମ୍ବା ରାଜ୍ୟଗୋଷ୍ଠୀ ସମ୍ମିଳନୀ ସମ୍ପର୍କୀୟ ବିଷୟ ଆଲୋଚନା କରି ନ ଥିଲେ । ସେ ଗସ୍ତଥିଲା ସମ୍ପୂର୍ଣ୍ଣ ସାଂସ୍କୃତିକ । ଭାରତର ସାଂସ୍କୃତିକ ବିଭବ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ସ୍ତମ୍ଭିଭୂତ କରାଇ ଦେଇଥିଲା ।

ରାଜ୍ୟଗୋଷ୍ଠୀ ଶୀର୍ଷ ସମ୍ମିଳନୀ ତଥା ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ର ଶିଖର ସମ୍ମିଳନୀ ନୂଆଦିଲ୍ଲୀରେ ଅନୁଷ୍ଠିତ କରାଇବା ଦିଗରେ ଶ୍ରୀମତୀ ଗାନ୍ଧୀଙ୍କ ବିପୁଳ ସଂଗଠନଶକ୍ତି, କୂଟନୈତିକ ଉଦ୍ୟମଗୁଡ଼ିକ ଦ୍ୱାରା ଶ୍ରୀଲଙ୍କା ସଙ୍କଟକୁ ସରଳୀକୃତ କରାଇବା ଓ ବିଭିନ୍ନ ଆଭ୍ୟନ୍ତରୀଣ ସମସ୍ୟାପୂର୍ଣ୍ଣ ପୃଥିବୀର ବୃହତ୍ତମ ଗଣତନ୍ତ୍ରକୁ ସୁଦୃଢ଼ କରିରଖିବା ଲାଗି ଦକ୍ଷତା ପ୍ରଦର୍ଶନ କରିଥିବା ଯୋଗୁଁ ଏସିଆର ରେଡ଼ିଓ ଶ୍ରୋତାମାନେ ୧୯୮୩ ମସିହା ପାଇଁ ଶ୍ରୀମତୀ ଗାନ୍ଧୀଙ୍କୁ ଏସିଆର ଶ୍ରେଷ୍ଠ ବ୍ୟକ୍ତିରୂପେ ନିର୍ବାଚିତ କରିଥିଲେ ।

ନେଦରଲାଣ୍ଡ ରେଡ଼ିଓ ଉକ୍ତ ସର୍ଭେ କରାଇଥିଲା । ରେଡ଼ିଓ ଶ୍ରୋତାମାନେ ପୃଥିବୀର କେତେକ ପ୍ରତିଷ୍ଠିତ ବ୍ୟକ୍ତି, କେତେକ ଦେଶର ରାଷ୍ଟ୍ରମୁଖ୍ୟ, ପ୍ରଧାନମନ୍ତ୍ରୀ, ନୋବେଲ୍ ପୁରସ୍କାର ବିଜେତା ତଥା କଳା, ବିଜ୍ଞାନ, କ୍ରୀଡ଼ା ପ୍ରଭୃତି କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା ବ୍ୟକ୍ତିବୃନ୍ଦଙ୍କୁ ପ୍ରତ୍ୟାଖ୍ୟାନ କରି ୧୯୮୩ ମସିହା ପାଇଁ ଏସିଆର ଶ୍ରେଷ୍ଠ ବ୍ୟକ୍ତି ରୂପେ ଶ୍ରୀମତୀ ଗାନ୍ଧୀଙ୍କୁ ନିର୍ବାଚିତ କରିଥିଲେ । ସେଥିପାଇଁ ୧୯୮୪ ମସିହା ଅପ୍ରେଲ୍ ୧୨ ତାରିଖ ଦିନ ନୂଆଦିଲ୍ଲୀରେ ଏକ ମନୋଜ୍ଞ ଉତ୍ସବରେ ନେଦରଲାଣ୍ଡର ରାଷ୍ଟ୍ରଦୂତ ଶ୍ରୀ ଭି· ଡି. ଓ୍ୱାଲମେନ୍ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କୁ ଏହି ସମ୍ମାନରେ ଭୂଷିତ କରିଥିଲେ । ପରିଣାମ ସ୍ୱରୂପ ଆନ୍ତର୍ଜାତିକ କ୍ଷେତ୍ରରେ କେବଳ ଶ୍ରୀମତୀ ଗାନ୍ଧୀଙ୍କର ନୁହେଁ, ଭାରତର ମର୍ଯ୍ୟାଦା ମଧ୍ୟ ବୃଦ୍ଧି ପାଇଥିଲା ।

□ □ □

॥ ଚବିଶି ॥

# ଅପବାଦ ଓ ଉପହାର



ମାର୍କ ଟ୍ୱେନ୍‌ଙ୍କ ମତରେ ପୃଥିବୀର ପ୍ରତ୍ୟେକ ମଣିଷ ଗୋଟିଏ ଗୋଟିଏ ଚନ୍ଦ୍ର । ଚନ୍ଦ୍ରର ଶୁଭ୍ର ତଥା ସ୍ନିଗ୍ଧ ଜ୍ୟୋତ୍ସ୍ନାଭଳି ପ୍ରତ୍ୟେକ ମଣିଷର ମନ ଓ ହୃଦୟ ଅନେକ ସଦ୍‌ଗୁଣରେ ଭରପୂର । ପୁଣି ଚନ୍ଦ୍ରର ସେଇ ନିତ୍ୟ ନୂତନ ଓ ସତେଜ ମନେ ହେଉଥିବା କାଶତଣ୍ଡି ଶୁଭ୍ରତା ଭିତରେ ମଧ୍ୟ ଲୁଚି ରହିଥାଏ କିଛି ନା କିଛି କଳଙ୍କର ଦାଗ । ଠିକ୍ ସେହିଭଳି ପ୍ରତ୍ୟେକ ମଣିଷର ମଧ୍ୟ ଗୋଟିଏ ଅନ୍ଧକାରାଚ୍ଛନ୍ନ କଳଙ୍କିତ ଦିଗ ଥାଏ । ସେ କଳଙ୍କର ଦାଗଗୁଡ଼ିକୁ ଲୁଚାଇ ଛପାଇ ନିସ୍ତେଜ କରି ରଖିବା ଲାଗି ମଣିଷ ସବୁବେଳେ ଥାଏ ଉଦ୍ୟମରତ ।

ଭାରତୀୟ ସାମାଜିକ ଓ ରାଜନୈତିକ ଜୀବନର ବେଦୀ ଉପରକୁ ଲମ୍ଫ ଦେବା ପରେ ପରେ ଶ୍ରୀମତୀ ଗାନ୍ଧୀଙ୍କ ସଦ୍‌ଗୁଣଗୁଡ଼ିକ ଯେଉଁଭଳି ଭାବରେ ସମ୍ପୂର୍ଣ୍ଣ ବିକାଶଲାଭ କରିଥିଲା, ସେହିଭଳି ଅସ୍ପଷ୍ଟ ଭାବରେ ହେଲେ ମଧ୍ୟ ପ୍ରକାଶ ପାଇଥିଲା ତାଙ୍କ ଜୀବନର କଳଙ୍କିତ ରେଖାଚିତ୍ର—ସଞ୍ଜୟ ଗାନ୍ଧୀଙ୍କ ମୃତ୍ୟୁ ପରେ ପରେ ସଦ୍ୟ ବିଧବା ମେନକା ତାଙ୍କ ପରିବାର ତ୍ୟାଗକରି ଚାଲି ଯାଇଥିବା ଯୋଗୁଁ । ଶ୍ରୀମତୀ ଗାନ୍ଧୀ ଯେଉଁ ଆଦର୍ଶ ଓ ମହତ୍ ଉଦ୍ଦେଶ୍ୟକୁ ଅତି ଆପଣାର ଓ ଏକାନ୍ତ କରି ସେଗୁଡ଼ିକ ପ୍ରତି ଆନୁଗତ୍ୟ ଦେଖାଇବାକୁ ଯାଇ ବରଂ ମେନକାଙ୍କୁ ନିଜ ପରିବାର ନିକଟରୁ ଦୂରେଇ ଦେବାପାଇଁ ଶ୍ରେୟସ୍କର ମନେ କରିଥିଲେ । ତାହା ଦେଶର ଜନସାଧାରଣଙ୍କ ମଧ୍ୟରୁ ଅନେକେ ଯଥାର୍ଥଭାବେ ହୃଦୟଙ୍ଗମ କରିବାକୁ କୁଣ୍ଠିତ ଥିଲେ ନିଶ୍ଚୟ । କାରଣ ସେମାନଙ୍କ ମତରେ ଜଣେ ଶାଶୁ ଏବଂ ହିନ୍ଦୁ ପରିବାରର ମୁଖ୍ୟ ହିସାବରେ ଜୀବନ ତଥା ସମାଜ ସମ୍ପର୍କରେ ସେତେଟା ଅଭିଜ୍ଞତା ନ ଥିବା ମେନକାଙ୍କ ପ୍ରତି ସେ ଆଉ ଟିକିଏ ଅଧିକ ସମ୍ବେଦନଶୀଳ ହେବା ଉଚିତ ହୋଇଥାନ୍ତା । ଆବଶ୍ୟକ ମନେ କରିଥିଲେ ପାରିବାରିକ ହିତଦୃଷ୍ଟିରୁ ତାଙ୍କୁ ଦୃଢ଼

ଭାବରେ ଶାସନ କରିଥିଲେ ତାଙ୍କ ମହତ୍ତ୍ୱ ହୁଏତ ବୃଦ୍ଧି ପାଇଥାନ୍ତା । ତାହା ନ ହୋଇ ମେନକା ଶ୍ରୀମତୀ ଗାନ୍ଧୀଙ୍କ ପରିବାର ଓ ଗୃହତ୍ୟାଗ କରି ଚାଲିଯିବା ପରେ ଦେଶର ଅନେକାଂଶରେ ଅପବାଦର ଏକ ମୃଦୁ ଗୁଞ୍ଜରଣ ସୃଷ୍ଟି ହୋଇଥିଲା ।

କିନ୍ତୁ ସେ ଅପବାଦ ଅପେକ୍ଷା ଭାରତୀୟ ରାଜନୀତି କ୍ଷେତ୍ରକୁ ଶ୍ରୀମତୀ ଗାନ୍ଧୀଙ୍କ ଶ୍ରେଷ୍ଠ ଉପହାର ଥିଲେ ଶ୍ରୀ ରାଜୀବ ଗାନ୍ଧୀ । ତେବେ ଏକଥା ମଧ୍ୟ ନିଶ୍ଚୟ ସ୍ୱୀକାର କରାଯିବା ଉଚିତ ହେବ ଯେ, ଶ୍ରୀ ସଞ୍ଜୟ ଗାନ୍ଧୀଙ୍କ ଅକାଳ ମୃତ୍ୟୁ ହୋଇ ନ ଥିଲେ ହୁଏତ ଭାରତୀୟ ରାଜନୀତିରେ ରାଜୀବ ଗାନ୍ଧୀ ପ୍ରବେଶ କରି ନ ଥାନ୍ତେ ।

**ସଞ୍ଜୟଙ୍କ ମୃତ୍ୟୁ :—**

୧୯୮୦ ମସିହା ଜୁନ୍ ୨୩ ତାରିଖ ଦିନ ସକାଳେ ଆକସ୍ମିକ ଭାବରେ ଭାରତର ଉଦୀୟମାନ ଯୁବନେତା ସଞ୍ଜୟ ଗାନ୍ଧୀଙ୍କ ମୃତ୍ୟୁ ହୋଇଥିଲା ।

ମୃତ୍ୟୁବେଳକୁ ତାଙ୍କର ବୟସ ହୋଇଥିଲା ମାତ୍ର ୩୪ ବର୍ଷ । ୧୯୪୬ ମସିହା ଡିସେମ୍ବର ୧୪ ତାରିଖ ଦିନ ସକାଳ ୯ ଘଣ୍ଟା ୨୭ ମିନିଟ ବେଳେ ଦିଲ୍ଲୀର ଓ୍ୱିଲିଙ୍ଗଡନ୍ ହାସ୍‌ପାତାଳରେ ସେ ଜନ୍ମଲାଭ କରିଥିଲେ । ମହାକାବ୍ୟ ମହାଭାରତର ଏକ ବଳିଷ୍ଠ ଚରିତ୍ର ସଞ୍ଜୟଙ୍କ ନାମାନୁସାରେ ତାଙ୍କର ନାମକରଣ କରାଯାଇଥିଲା । ଯେତେବେଳେ ତାଙ୍କର ପିତାମାତା ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ୧୭ ୟର୍କ ରୋଡ଼ସ୍ଥ ଅସ୍ଥାୟୀ ବାସଭବନରେ ରହୁଥିଲେ । ବାଲ୍ୟ-ବୟସରୁ ହିଁ ସଞ୍ଜୟ ଓ ରାଜୀବ ଦୁଇଭାଇଙ୍କ ମଧ୍ୟରେ ଖୁବ୍ ସୌହାର୍ଦ୍ଦପୂର୍ଣ୍ଣ ସମ୍ପର୍କ ଥିଲା ଓ ରାଜୀବଙ୍କ ପ୍ରତି ସଞ୍ଜୟଙ୍କର ସମ୍ମାନ ମଧ୍ୟ ଥିଲା । ଶ୍ରୀମତୀ ଗାନ୍ଧୀଙ୍କ ନିର୍ଦ୍ଦେଶ କ୍ରମେ ସେମାନେ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ରହି ମଧ୍ୟ ଖୁବ୍ ଶୃଙ୍ଖଳିତ ଭାବରେ ଜୀବନଯାପନ କରୁଥିଲେ । ଯଦିଓ ଘରେ ଓ ବାହାରେ ଅନେକ ସମୟରେ ବିଭିନ୍ନ ପ୍ରକାରର ପାର୍ଟିର ଆୟୋଜନମାନ କରାଯାଉଥିଲା, ତଥାପି ସେଥିରୁ ପ୍ରାୟ କୌଣସିଟିରେ ଅଂଶ ଗ୍ରହଣ କରିବା କିମ୍ବା ସାଧାରଣ ଭାବେ ଯୋଗଦେବା ସୁଯୋଗ ସେମାନଙ୍କୁ ଦିଆଯାଉ ନ ଥିଲା । ବାଲ୍ୟ ଓ କିଶୋର ବୟସରୁ ହିଁ ସଞ୍ଜୟ ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବାପାଇଁ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିଲେ ।

ଦୁଇ ଭାଇ ଶ୍ରୀମତୀ ଏଲିଜାବେଥ୍ ଗୌବାଙ୍କ ଦ୍ୱାରା ଗାର୍ଡେନ୍ ସ୍କୁଲ ଶିବ-ନିକେତନରେ ପ୍ରାୟ ତିନି ବର୍ଷ ଅଧ୍ୟୟନ କରିଥିଲେ । ଉକ୍ତ ସ୍କୁଲଟି ବର୍ତ୍ତମାନର କସ୍ତୁରବା ମାର୍ଗ (ସେତେବେଳକାର କର୍ଜନ୍ ରୋଡ଼)ରେ ଅବସ୍ଥାପିତ ହୋଇଥିଲା । ଭାରତର ପ୍ରଧାନମନ୍ତ୍ରୀ ଜବାହାରଲାଲଙ୍କ ନାତି ହିସାବରେ ସଞ୍ଜୟ କେବେହେଁ ଗର୍ବିତ ନ ଥିଲେ । ଅଧ୍ୟବସାୟ ଦୃଷ୍ଟିରୁ ସେ ଥିଲେ ଜଣେ ସାଧାରଣ ଛାତ୍ର । ଶ୍ରେଣୀର

ପଛ ବେଞ୍ଚରେ ବସିବାପାଇଁ ତାଙ୍କର ଆଗ୍ରହ ଥିଲା ବେଶୀ । ବିଶେଷକରି କ୍ଲାସରେ ଇଂରେଜୀ ବିଷୟ ପଢ଼ା ହେଉଥିବା ବେଳେ ସେ ଅନ୍ୟାନ୍ୟ ବହି ଓ ପତ୍ରପତ୍ରିକା ପଢ଼ିବାପାଇଁ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ତାଙ୍କର ଜଣେ ସହପାଠୀ ଶ୍ରୀ ଗୌତମ ଘୋଷ ଡୁନ୍‌ରେ ପଢୁଥିବା ସମୟ ସମ୍ପର୍କରେ ମନ୍ତବ୍ୟ ଦେଇଥିଲେ—"ସଞ୍ଜୟ ଜଣେ ମେଧାବୀ ଛାତ୍ର ନ ଥିଲେ । ଇଂରାଜୀ କ୍ଲାସରେ ସେ ମୋ ସହିତ ସବୁ ପଛବେଞ୍ଚରେ ବସୁଥିଲେ । ଆମେ ସବୁ ଲେରନା ଡୋନେ, ଇୟୁଫାଟାନ୍‌ର ହାଜିବାବା ପରି କେତେକ ମଜାମଜା ଭଲ ବହି ପଢ଼ୁ ....." *; ତେବେ ସେତେବେଳେ ବି ସେ ଥିଲେ ଖୁବ୍ ଆତ୍ମବିଶ୍ୱାସୀ ।

ଖାଦ୍ୟ ଭିତରେ ଅଣ୍ଡା ଖାଇବାକୁ ସେ ଖୁବ୍ ଭଲ ପାଉଥିଲେ । ତେବେ ସିଗାରେଟ୍ ଓ ମଦ୍ୟପାନ ନିକଟରୁ ଖୁବ୍ ଦୂରରେ ରହୁଥିଲେ ସଞ୍ଜୟ ।

ଏଲିଜାବେଥ୍ ଗୌବାଙ୍କ ସ୍କୁଲରେ ଶିକ୍ଷା ଶେଷ ହେବା ପରେ ପରେ ମଶୋବ୍ରାର ୱେଲହାମ୍ ସ୍କୁଲରେ ସେ ଯୋଗ ଦେଇଥିଲେ । ସେଠିକାର ଶିକ୍ଷା ପରେ କାଶ୍ମୀର ହାଉସରେ ଯୋଗଦେବା ଉଦ୍ଦେଶ୍ୟରେ ସେ ଯାଇଥିଲେ ଡୁନ୍ । ସ୍କୁଲ ଶିକ୍ଷା ସମାପ୍ତ କରି ତାଙ୍କର ବାଲ୍ୟକାଳର ସ୍ୱପ୍ନ ପୂରଣ ପାଇଁ ସଞ୍ଜୟ ଇଂଲଣ୍ଡ ଯାଇଥିଲେ । ମଟରକାର୍ ତିଆର କରିବା କୌଶଳ ସେଠାରେ ଶିକ୍ଷା କରିବା ଥିଲା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ । ସେଠିକାର ରୋଲ୍‌ସ୍ ରୟ୍ ( Rolls-Royce ) କାରଖାନାରେ ଜଣେ ଶିକ୍ଷାନବିଶ୍ ଭାବରେ ଦୀର୍ଘ ତିନି ବର୍ଷକାଳ ସେ କାର୍ଯ୍ୟ କରିଥିଲେ ।

ପିଲାଦିନରୁ ସଞ୍ଜୟ ବିଭିନ୍ନ ପ୍ରକାରର ଯନ୍ତ୍ରପାତି ଖୋଲିବା ଓ ଯୋଡ଼ିବାରେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ତାଙ୍କର ପିତା ଫିରୋଜଙ୍କ ମଧ୍ୟ ସେହିଭଳି ଗୁଣ ଥିଲା । ତେଣୁ କୁହାଯାଇପାରେ ଯେ ପିତାଙ୍କର ସେହି ଗୁଣଟିର ଉତ୍ତରାଧିକାରୀ ହୋଇ ପାରିଥିଲେ ସେ । ନେହେରୁ ପରିବାରରେ ୧୯୬୪ ମସିହା ପର୍ଯ୍ୟନ୍ତ ରହି ସଞ୍ଜୟଙ୍କ ସମଗ୍ର ବାଲ୍ୟକାଳର ସାଥି ହୋଇଥିବା ଭିମଲା ସିନ୍ଧଙ୍କ ମତରେ "ସେ (ସଞ୍ଜୟ) ମେକାନିକ୍ କାର୍ଯ୍ୟ ତଥା ବିଭିନ୍ନ ପ୍ରକାରର ଯୋଡ଼ାଯୋଡ଼ି କାର୍ଯ୍ୟ କରିବାପାଇଁ ଖୁବ୍ ଭଲ ପାଉଥିଲେ । ନିଜ କୋଠରୀଟିକୁ ପ୍ରାୟ ଗୋଟିଏ ଶ୍ରେଷ୍ଠ କାରଖାନା ଭଳି ସଜାଇ ସବୁବେଳେ ବିଭିନ୍ନ ପ୍ରକାରର ପରୀକ୍ଷା ନିରୀକ୍ଷା ଚଳାଇଥିଲେ । †

ବିଦେଶରୁ ଫେରିବା ପରେ ପରେ ସେ ନିଜ ପୋଥିଗତ ବିଦ୍ୟା ଓ ନିଜ ବୁଦ୍ଧି ସମୂହକୁ ବୃତ୍ତିରେ ପରିଣତ କରିବାପାଇଁ ଆଗ୍ରହୀ ହୋଇ ଉଠିଥିଲେ । ତେଣୁ

---

* Indira Gandhi Returns - Sri Khuswant Singh. P 89
† Ibid—P-87

ଅତି ସାଦାସିଧା ଭାବରେ ସେ ଆରମ୍ଭ କରିଥିଲେ ମଟର ସଜାଡ଼ିବା ପାଇଁ ଗୋଟିଏ କର୍ମଶାଳା । ପ୍ରାରମ୍ଭିକ ଅବସ୍ଥାରେ ମାତ୍ର ତିନିଜଣ କର୍ମଚାରୀଙ୍କୁ ନେଇ ନିଜର ଭବିଷ୍ୟତ କର୍ମକ୍ଷେତ୍ର ପାଇଁ ପ୍ରସ୍ତୁତି ଆରମ୍ଭ କରିଥିଲେ । ସେଥିପାଇଁ ସ୍ଥାନ ନିର୍ବାଚନ କରିଥିଲେ ଦିଲ୍ଲୀର ସୁବ୍‌ଜୀମଣ୍ଡି ଅଞ୍ଚଳ । ସେହି ଫାଉଣ୍ଡ୍ରୀରେ ମଟର ଇଞ୍ଜିନ୍‌ସବୁ ମରାମତି ଓ ଗ୍ରନ୍ଥ କରିବାରେ ସାଧାରଣ ସେମାନେ ଅତିବାହିତ କରୁଥିଲେ । ସେହିଭଳି ଭାବରେ କର୍ମରତ ରହି ୧୯୬୧ ମସିହା ବେଳକୁ ଠିକ୍ ସେହି ଧରଣର ଇଞ୍ଜିନ ତିଆରି କରିବା କ୍ଷମତା ସେମାନେ ହାସଲ କରି ପାରିଥିଲେ । ତାପରେ ସଞ୍ଜୟ ଯୋଜନା କରିଥିଲେ ଯେ ତାଙ୍କର କାରଖାନାରେ ଗ୍ରେଟ ଧରଣର ମଟର ଗାଡ଼ି ପ୍ରସ୍ତୁତ କରିବେ ।

ଗ୍ରେଟ ଗାଡ଼ି ନିର୍ମାଣ ପ୍ରକଳ୍ପ ବ୍ୟକ୍ତିଗତ ଉଦ୍ୟମରେ ତିଆରି ହେବାପାଇଁ ଭାରତ ସରକାର ପୂର୍ବରୁ ଅନୁମୋଦନ କରି ସାରିଥିଲେ । ସେହି ଉଦ୍ଦେଶ୍ୟରେ ସରକାରଙ୍କ ନିକଟରେ ସେତେବେଳକୁ ୧୬ ଟି ଦରଖାସ୍ତ ପହଞ୍ଚିଥିଲା । ଆବେଦନ-କାରୀଙ୍କ ମଧ୍ୟରେ ଟେଲ୍‌କୋ (TELCO), ବାଙ୍ଗାଲୋରର ହିନ୍ଦୁସ୍ଥାନ୍ ଏରୋନେଟିକ୍‌ସ୍ ଲିମିଟେଡ୍, ଫିଆଟ୍‌କାର ପ୍ରସ୍ତୁତକାରୀ କମ୍ପାନୀ ପ୍ରିମିଏର୍ ଅଟୋମୋବାଇଲ୍‌ସ୍ ପ୍ରମୁଖଙ୍କ ସମେତ ସଞ୍ଜୟ ମଧ୍ୟ ଥିଲେ ଅନ୍ୟତମ । ସେମାନଙ୍କ ମଧ୍ୟରୁ ୧୩ ଜଣ ଦରଖାସ୍ତକାରୀ ବିଭିନ୍ନ କାରଣରୁ ଉକ୍ତ ଲାଇସେନ୍‌ସ ପାଇବା ପାଇଁ ପ୍ରତିଯୋଗିତାରୁ ଓହରି ଯାଇଥିଲେ । ଉପରୋକ୍ତ ତିନୋଟି ପ୍ରତିଷ୍ଠାନ ଚାହିଁଥିଲେ ଗ୍ରେଟ ମଟରଗାଡ଼ି ତିଆରିପାଇଁ ବିଦେଶର ସହଯୋଗ । କିନ୍ତୁ ଏକା ସଞ୍ଜୟ ଆଗେଇ ଆସିଥିଲେ କୌଣସି ବୈଦେଶିକ ଯନ୍ତ୍ରପାତି ଆମଦାନୀ ଉପରେ ନିର୍ଭର ନ କରି ଗ୍ରେଟ କାର୍ ତିଆରି କରିବାପାଇଁ । ତେଣୁ ସେ ସେଥିପାଇଁ ଅନୁମତି ପାଇଥିଲେ । ସଞ୍ଜୟଙ୍କ ପ୍ରକଳ୍ପରେ ତିଆରି ହେବାକୁ ଥିବା ଗ୍ରେଟ ଏବଂ ଶସ୍ତା ମଟର କାର୍‌ର ନାମକରଣ କରିଥିଲେ—ପବନସୁତ-"ମାରୁତି ।"

ସେହି ଗାଡ଼ିର ଏକ ନମୁନା ପ୍ରଥମେ ଦାଖଲ କରିବାପାଇଁ ସରକାରଙ୍କ ତରଫରୁ ତାହାଙ୍କୁ କୁହାଯାଇଥିଲା । ଯଥା ସମୟରେ ସେ ଦାଖଲ ମଧ୍ୟ କରିଥିଲେ । ତାପରେ ତାଙ୍କ ଯୋଜନାକୁ ଯଥାର୍ଥ ରୂପରେଖ ଦେବାପାଇଁ ଓ ଶୀଘ୍ର କାର୍ଯ୍ୟକାରୀ କରିବାପାଇଁ ୧୯୭୦ ମସିହା ନଭେମ୍ବର ମାସରେ ତାଙ୍କୁ ଅନୁମତି ଦିଆଯାଇଥିଲା । କିନ୍ତୁ ବିଭିନ୍ନ ସାଙ୍ଗଠନିକ କାରଣରୁ ଯଥାସମୟରେ ତାହାର ଉତ୍ପାଦନ ଆରମ୍ଭ ହୋଇ ପାରି ନ ଥିଲା । ଯେଉଁ ଦାମରେ ତାହା ଖାଉଟିମାନଙ୍କୁ ଦିଆଯିବା ବ୍ୟବସ୍ଥା ହୋଇ ପାରିବ ବୋଲି ପରିକଳ୍ପନା କରାଯାଇଥିଲା, ତାହାମଧ୍ୟ ସମ୍ଭବ ହୋଇ ନ ଥିଲା । ଶସ୍ତାଦାମରେ ହିଁ ଲୋକଙ୍କୁ ତାହା ଯୋଗାଇଦେବା ଥିଲା ସରକାରଙ୍କ ପ୍ରଧାନ ଉଦ୍ଦେଶ୍ୟ ।

ଯଥା ସମୟରେ ଓ ଅପେକ୍ଷାକୃତ କମ୍ ଦରରେ ମାରୁତ ବଜାରକୁ ଆସିପାରି ନ ଥିବା ଯୋଗୁଁ କେବଳ ସଞ୍ଜୟ ନୁହନ୍ତି, ଶ୍ରୀମତୀ ଗାନ୍ଧୀଙ୍କୁ ମଧ୍ୟ ଯଥେଷ୍ଟ ଆକ୍ଷେପ କରାଯାଇଥିଲା ଏବଂ ବିରୋଧୀ ଦଳମାନଙ୍କର 'କଟୁସମାଲୋଚନାର ଶିକାର ହେବାକୁ ହୋଇଥିଲା ସେମାନଙ୍କୁ । ଏ ଥିଲା ଦେଶରେ ଜରୁରୀ ଅବସ୍ଥାକାଳର ପୂର୍ବସମୟର ଘଟଣା ।

ଜରୁରୀ ଅବସ୍ଥା କାଳରେ ଯେ ସମାଲୋଚନାଗୁଡ଼ିକର ସ୍ୱର ସାମାନ୍ୟ କୋମଳ ହୋଇ ଯାଇଥିଲେ ମଧ୍ୟ ଠିକ୍ 'ତା ପରେ ପରେ ଆଗ୍ନେୟଗିରିର ଲାର୍ଭା ଉଦ୍‌ଗୀରଣ ହେବାଭଳି ଏକ ସମୟରେ ତାହା ଉଭୟ ମାତା ଓ ପୁତ୍ରଙ୍କ ପାଇଁ ଅଭିଶାପରେ ପରିଣତ ହୋଇ ଯାଇଥିଲା ଯେମିତି । ଜରୁରୀ କାଳରେ ସରକାରୀ କଳର ବିଭିନ୍ନ ଅପପ୍ରୟୋଗ ପାଇଁ ସଞ୍ଜୟ ହିଁ ମୁଖ୍ୟତଃ ଦାୟୀ ବୋଲି ଆକ୍ଷେପ କରାଯାଇଥିଲା । ବାଧ୍ୟତାମୂଳକ ଭାବେ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଯିବା, ବୁଲ୍‌ଡୋଜର ଲଗାଇ ସହରସବୁ ସଫା କରାଯିବା, ରାଜନୈତିକ ଉଦ୍ଦେଶ୍ୟ ସାଧନ ଲାଗି ବହୁ ମାତ୍ରାରେ ନେତୃବୃନ୍ଦଙ୍କୁ ଗିରଫ କରାଯିବା ପ୍ରଭୃତି କାର୍ଯ୍ୟ କେବଳ ତାଙ୍କର ନିର୍ଦ୍ଦେଶରେ କରାଯାଉଥିଲା ବୋଲି ପ୍ରଚାର କରାଯାଇଥିଲା ।

ସାମ୍ବାଦିକମାନେ ମନ୍ତବ୍ୟକ୍ତ କରିଥିଲେ ଯେ ଦେଶରେ ଜରୁରୀଅବସ୍ଥା ଜାରି କରାଯାଇଥିବା କାଳରେ ଅତି ଅସାଧାରଣ ଓ ଅଣ-ସାମ୍ବିଧାନିକ କ୍ଷମତା ପ୍ରୟୋଗ କରିବା ଅଧିକାର ପାଇଥିଲେ ଦେଶର ଜଣେମାତ୍ର ବ୍ୟକ୍ତି—ଶ୍ରୀ ସଞ୍ଜୟ ଗାନ୍ଧୀ । ତା ଫଳରେ ଦେଶର ଜଣେ ଅତି କ୍ଷମତାଶାଳୀ ବ୍ୟକ୍ତି ସେ ହୋଇ ପାରିଥିଲେ । ଏପରିକି ଭାରତୀୟ ଶାସନ କ୍ଷେତ୍ରରେ ମଧ୍ୟ ସେ ଆତଙ୍କ ସୃଷ୍ଟି କରି ପାରିଥିଲେ । ଭାରତୀୟ ରାଜନୈତିକ ଦରବାରରେ ଜଣେ ମୁଖ୍ୟବ୍ୟକ୍ତି ବା ନେତା ହେବାପାଇଁ ତାହା ଏକ ଆବଶ୍ୟକ ଯୋଗ୍ୟତା ବୋଲି କେତେକ ସମ୍ବାଦିକ ମନ୍ତବ୍ୟକ୍ତ କରିଥିଲେ । * ସଞ୍ଜୟଙ୍କ ରାଜନୈତିକ କାର୍ଯ୍ୟକଳାପ ପାଇଁ ସମାଲୋଚକମାନେ ଶ୍ରୀମତୀ ଗାନ୍ଧୀଙ୍କୁ ଯେତିକି ନିନ୍ଦା କରିଥିଲେ ତାଙ୍କ ମୃତ୍ୟୁପରେ ମେନକାଙ୍କ ଯୋଗୁଁ ତାଠାରୁ ଢେର ଅଧିକ ନିନ୍ଦା କରିଥିଲେ । 'ଏପରିକି ଅନେକ ସାଧାରଣ ଲୋକ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କୁ ନିନ୍ଦା କରିଥିଲେ ସେଥିପାଇଁ ।

**ମେନକା : ଭିନ୍ନମୂର୍ତ୍ତି ଧାରଣ ବାହାରେ :—**

ଅତି ଅପ୍ରତ୍ୟାଶିତ ଭାବରେ ଶ୍ରୀମତୀ ଗାନ୍ଧୀଙ୍କ ପରିବାରରୁ ୧୯୮୨ ମସିହା ମାର୍ଚ୍ଚ ୨୯ ତାରିଖ ରାତିରେ ମେନକାଙ୍କ ବିଦାୟ ସାରା ଦେଶରେ ଏକ ପ୍ରକାର

---

* Readying the ranks—Sumit Mitra & Prabhu Chawla India Today—Sept. 15, 1983—Page-20

ଗୁଞ୍ଜରଣ ସୃଷ୍ଟି କରିଥିଲା । ଭାରତୀୟ ଯୌଥ ପରିବାର ପରମ୍ପରାରେ ପାରିବାରିକ କନ୍ଦଳ ସେଭଳି କିଛି ନୂଆକଥା ନ ଥିଲା । ତଥାପି ବିଖ୍ୟାତ ନେହେରୁ ପରିବାରରେ ସେଭଳି କନ୍ଦଳ ଯେ ଏଭଳି ଏକ ରୂପ ନେଲା, ତାହାହିଁ ଥିଲା ବିଶେଷ ବିସ୍ମୟକର ।

୧୯୮୦ ମସିହା ପର୍ଯ୍ୟନ୍ତ ଏଭଳି ଏକ ଅପ୍ରୀତିକର ଘଟଣା ସେହି ପରିବାରରେ ଘଟିବା ସମ୍ଭବ ବୋଲି କେହି ସ୍ୱପ୍ନରେ ସୁଦ୍ଧା ଚିନ୍ତା କରିପାରି ନ ଥିଲେ । ସଞ୍ଜୟଙ୍କ ମୃତ୍ୟୁ ପରେ ପରେ ଶ୍ରୀମତୀ ଗାନ୍ଧୀ ଭାରତୀୟ ରାଜନୈତିକ କ୍ଷେତ୍ରରେ ସେହି ଖାଲିସ୍ଥାନ ପୂରଣ କରିବାପାଇଁ ମେନକାଙ୍କ ଅପେକ୍ଷା ରାଜୀବଙ୍କୁ ଅଧିକ ଗୁରୁତ୍ୱ ଦେଇଥିଲେ ଏବଂ ତାହାହିଁ ଥିଲା ପ୍ରଧାନ କାରଣ—ଯାହାର ଶେଷ ପରିଣତି ହୋଇଥିଲା ସେହି ପରିବାରରୁ ମେନକାଙ୍କ ବିଦାୟ ।

ଶ୍ରୀମତୀ ଇନ୍ଦିରାଙ୍କ ପରିବାରରେ ଶୀତଳ ଯୁଦ୍ଧ ସଞ୍ଜୟଙ୍କ ମୃତ୍ୟୁ ପରେ ପରେ ଆରମ୍ଭ ହୋଇ ଲକ୍ଷ୍ନୌରେ ଅନୁଷ୍ଠିତ କଂଗ୍ରେସ (ଇ)ର ବିରୋଧୀ ଯୁବଗୋଷ୍ଠୀ ଦ୍ୱାରା ଆୟୋଜିତ ସମ୍ମିଳନୀରେ ଶେଷ ହୋଇଥିଲା । ବିଶେଷଭାବେ ଉଲ୍ଲେଖ କରାଯାଇପାରେ ଯେ, ଉକ୍ତ ସମ୍ମିଳନୀରେ ସ୍ୱର୍ଗତ ସଞ୍ଜୟଙ୍କ ଦ୍ୱାରା ପ୍ରବର୍ତ୍ତିତ ପାଞ୍ଚଦଫା କାର୍ଯ୍ୟକ୍ରମକୁ କିଭଳି ଭାବରେ କାର୍ଯ୍ୟକାରୀ କରାଯାଇ ପାରିବ ତାହାହିଁ ଆଲୋଚନା କରାଯାଇଥିଲା । ଶ୍ରୀମତୀ ମେନକା ସେହି ସମ୍ମିଳନୀର ଉଦ୍‌ଘାଟିକା ତଥା ଜଣେ ମୁଖ୍ୟ ଭାବେ ଭାଷଣ ଦେଇଥିଲେ । ସଞ୍ଜୟ ଗାନ୍ଧୀଙ୍କୁ ସମର୍ଥନ ଜଣାଉଥିବା ଓ ତାଙ୍କ ମୃତ୍ୟୁ ପରେ ପରେ ସେମାନଙ୍କ ମଧ୍ୟରୁ ଅଧିକାଂଶ କଂଗ୍ରେସ ଦଳ ପାଇଁ ହଠାତ୍ ଅବାଞ୍ଛିତ ହୋଇ ପଡ଼ିଥିବା ବହୁ କର୍ମୀ ସେଥିରେ ଯୋଗ ଦେଇଥିଲେ । ସେଠାରେ ଉପସ୍ଥିତ ଥିବା କଂଗ୍ରେସ ଦଳର କର୍ମୀମାନେ ମେନକାଙ୍କୁ ହାର୍ଦ୍ଦିକ ସମର୍ଥନ ଓ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । କିନ୍ତୁ ହୁଏତ ଶ୍ରୀମତୀ ଗାନ୍ଧୀଙ୍କର ଇଚ୍ଛା ଓ ଆଗ୍ରହ ଥିଲା ରାଜୀବ ସେହି ସମ୍ମାନର ଅଧିକାରୀ ହୁଅନ୍ତୁ । ଏଠାରେ ମନେ ରଖାଯାଇପାରେ ଯେ, ପ୍ରକୃତରେ ରାଜୀବ ତା ଅପେକ୍ଷା ଯଥେଷ୍ଟ ଅଧିକ ସମ୍ମାନର ଅଧିକାରୀ ହେବା ଯୋଗ୍ୟ ଥିଲେ ।

୧୯୮୨ ମାର୍ଚ୍ଚ ୨୮ ତାରିଖ ସନ୍ଧ୍ୟାରେ ଲକ୍ଷ୍ନୌ ଅଧିବେଶନରୁ ଦିଲ୍ଲୀ ଫେରିବା ପରେ ବିମାନ ଘାଟିଠାରେ ହିଁ ପ୍ରାୟ ୭୦ରୁ ୮୦ ଜଣ ଯୁବକଂଗ୍ରେସ (ଇ) ସଭ୍ୟ ତାଙ୍କର ମୁର୍ଦ୍ଦାବାଦ ଧ୍ୱନି ଦେବା ସଙ୍ଗେ ସଙ୍ଗେ "ରାଜୀବ ଗାନ୍ଧୀ ଜିନ୍ଦାବାଦ", "ସି. ଆଇ. ଏ· ଏଜେଣ୍ଟ ଓ୍ୱାପସ୍ ଯାଓ" ଇତ୍ୟାଦି ଧ୍ୱନି ଦେଇଥିଲେ । ଏପରିକି ତାଙ୍କୁ ସେଠାରେ ଠେଲାପେଲା ମଧ୍ୟ କରାଯାଇଥିଲା । ସେସବୁ ପ୍ରତି ଭ୍ରୂକ୍ଷେପ ନ କରି ସେ ପ୍ରଧାନମନ୍ତ୍ରୀଙ୍କ ବାସଭବନକୁ ଫେରି ଆସିଥିଲେ । ସେ ଘରକୁ ଫେରିବାବେଳକୁ ଶ୍ରୀମତୀ ଗାନ୍ଧୀଙ୍କ ସମେତ ରାଜୀବ ଓ ସୋନିଆ ରାତ୍ରୀଭୋଜନ ଶେଷକରି ଯେ ଯାହାର କୋଠରୀକୁ ବିଶ୍ରାମ ନେବାପାଇଁ ଚାଲି ଯାଇଥିଲେ ।

ପୁଣି ସବୁଦିନ ଭଳି ଶ୍ରୀମତୀ ଗାନ୍ଧୀ ତତ୍ପରଦିନ ( ମାର୍ଚ୍ଚ ୨୯ ତାରିଖ ) ତାଙ୍କ ବାସଭବନ ହତାରେ ସମବେତ ଦର୍ଶନାଭିଳାଷୀମାନଙ୍କୁ ସାକ୍ଷାତ୍ ଦେବା ପୂର୍ବରୁ ପରିବାରର ଅନ୍ୟାନ୍ୟ ସଭ୍ୟମାନଙ୍କ ସହ ଜଳଖିଆ ଖାଇବା ଅବସରରେ ଅନ୍ୟ ଦିନଗୁଡ଼ିକ ଭଳି ମେନକା ଯୋଗ ଦେଇ ପାରି ନ ଥିଲେ । ତା'ର ଏକମାତ୍ର କାରଣ ଥିଲା ମେନକା ପ୍ରାୟତଃ ସାମାନ୍ୟ ବିଳମ୍ବରେ ଶଯ୍ୟାତ୍ୟାଗ କରୁଥିଲେ । ତେଣୁ ସବୁଦିନ ଭଳି ସେ ତାଙ୍କର ଦୈନନ୍ଦିନ କାର୍ଯ୍ୟ ଶେଷକରି ସାଢ଼େ ଦଶଟାବେଳେ ନିଜ କାର୍ଯ୍ୟାଳୟକୁ ଯାଇଥିଲେ । ସଞ୍ଜୟ ଗାନ୍ଧୀଙ୍କ ଦ୍ୱାରା ପ୍ରତିଷ୍ଠିତ "ରାଜଧାନୀ ଜେନେରାଲ୍ ଟ୍ରେଡ଼ର୍ସ" ନାମକ ଏକ ପରିବହନ କମ୍ପାନୀ ଥିଲା ତାଙ୍କର କାର୍ଯ୍ୟସ୍ଥଳୀ । ପୁଣି ଯଥାବିଧି ମଧ୍ୟାହ୍ନଭୋଜନ ପାଇଁ ସେ ଘରକୁ ଫେରିଥିଲେ ।

କିନ୍ତୁ ସେଦିନ ହିଁ ଥିଲା ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ଅସ୍ଥାୟୀ ବାସଭବନରେ ତାଙ୍କର ଶେଷ ଦିନ ।

ସେଦିନ ବିଭିନ୍ନ ରାଜ୍ୟର ରାଜଧାନୀଗୁଡ଼ିକରୁ ରାଜ୍ୟସଭା ପାଇଁ ନିର୍ବାଚନର ଶେଷ ଖବର ଜାଣିବା ପରେ ପରେ ପ୍ରାୟ ସାଢ଼େ ଗୋଟାଏବେଳେ ଶ୍ରୀମତୀ ଗାନ୍ଧୀ ମେନକାଙ୍କୁ ଡକାଇ ଥିଲେ । ତା'ପରେ ଶାଶୂ-ବୋହୂ ଉଭୟଙ୍କ ମଧ୍ୟରେ ଯୁକ୍ତିତର୍କ ଓ ମନୋମାଳିନ୍ୟ ହୋଇଥିଲା ଲକ୍ଷ୍ନୌ ଅଧିବେଶନ ନେଇ । ଶ୍ରୀମତୀ ଗାନ୍ଧୀ କୁଆଡ଼େ ସ୍ପଷ୍ଟଭାବେ କହିଥିଲେ ଯେ, ସେହି ସମ୍ମିଳନୀରେ ଯୋଗଦେବା ପରେ ତାଙ୍କ ସହ ମେନକା ଏକାଠି ରହିବା ଅସଂଗତ । "ହଠାତ୍ ମେନକା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପରିବାର ଭିତରେ ଏଭଳି ଭାବରେ ଅବାଞ୍ଛିତ ହୋଇଯିବେ ବୋଲି ଆଶଙ୍କା ମଧ୍ୟ କରି ନ ଥିଲେ । † ଅକାଳରେ ବଜ୍ରପାତ ହେବା ପରେ ମେନକାଙ୍କ ଆଖି ଛଳଛଳ ହୋଇ ଯାଇଥିଲା । ତେବେ ନିଜ ଦୃଢ଼ତା ନ ହରାଇ ସେ କହିଥିଲେ ଯେ, ଯଦି ସେ ଉକ୍ତ ପରିବାରରେ ଅବାଞ୍ଛିତ ବୋଲି ଶ୍ରୀମତୀ ଗାନ୍ଧୀ ଅନୁଭବ କରୁଥାଆନ୍ତି, ତେବେ ସେ ବରଂ ତାଙ୍କ ବାସଭବନ ଛାଡ଼ି ଚାଲିଯିବେ ।

ସେହି ନୂତନ ପରିସ୍ଥିତିର ମୁକାବିଲା କରିବାପାଇଁ ସେ ସଙ୍ଗେ ସଙ୍ଗେ ପ୍ରସ୍ତୁତି ଆରମ୍ଭ କରି ଦେଇଥିଲେ । ଗୋଟିଏ ଟେମ୍ପୋ ଭଡ଼ାକରି ଅଣାଇଥିଲେ ନିଜର ଜିନିଷପତ୍ର ସେଠାରୁ ନେଇଯିବାପାଇଁ । ସେତିକିବେଳେ ଶ୍ରୀମତୀ ଗାନ୍ଧୀଙ୍କ ଅତି ନିକଟତମ ମନେ କରାଯାଉଥିବା କର୍ମଚାରୀ ଶ୍ରୀ ଆର୍. କେ. ଧାୱନ ଓ ତାଙ୍କ ପରିବାର ସହ ଘନିଷ୍ଠ ଭାବେ ସମ୍ପୃକ୍ତ ତଥା ହିତାକାଂକ୍ଷୀ ମନେ କରାଯାଉଥିବା ସ୍ୱାମୀ ଧୀରେନ୍ଦ୍ର ବ୍ରହ୍ମଚାରୀ ଆସି ମେନକାଙ୍କ ସମସ୍ତ ଜିନିଷପତ୍ର ପ୍ରଥମେ ତନଖି ହେବା-

† Split in the family—By Subrata Bhattacharya, Sunday 11-17, April—1982. P-17.

ପରେ ବାହାରକୁ ଛାଡ଼ି ଦିଆଯିବ ବୋଲି ଆଦେଶ ଦେଇଥିଲେ । ସେଥିପାଇଁ ଶ୍ରୀମତୀ ମେନକାଙ୍କ ଭାଇ ଓ ସାନଭଉଣୀଙ୍କ ସହିତ ସେମାନଙ୍କ ଅନେକ ବାକ୍‌ବିତଣ୍ଡା ମଧ୍ୟ ହୋଇଥିଲା । ସେତେବେଳେ ଶ୍ରୀମତୀ ଗାନ୍ଧୀ ସେଠାରେ ଉପସ୍ଥିତ ହୋଇ ମେନକାଙ୍କ ଭାଇ ଓ ଭଉଣୀଙ୍କୁ ବାହାରକୁ ଚାଲିଯିବା ପାଇଁ ଆଦେଶ ଦେଇଥିଲେ । ଶେଷରେ ପ୍ରାୟ ସାତଟାବେଳେ ତାଙ୍କର ଜିନିଷପତ୍ର ସବୁ ବାହାରକୁ ଛାଡ଼ି ଦିଆଯାଇଥିଲା । ଶ୍ରୀ ଧାବନ ଓ ବ୍ରହ୍ମଚାରୀ ମେନକାଙ୍କ ସହିତ କୁଆଡ଼େ ଯୁକ୍ତି ମଧ୍ୟ କରିଥିଲେ ଯେ, ତାଙ୍କ ପୁତ୍ର ଫିରୋଜ ବରୁଣଙ୍କୁ ସେ ନେଇ ପାରିବେ ନାହିଁ । କିନ୍ତୁ ଅପରପକ୍ଷରେ ମେନକା ମଧ୍ୟ ଯୁକ୍ତି କରିଥିଲେ ଯେ, ତାଙ୍କ ପୁତ୍ରଙ୍କୁ ଛାଡ଼ି ସେ ଆଦୌ ସେ ସ୍ଥାନ ତ୍ୟାଗକରି ବାହାରକୁ ଯିବେନାହିଁ । ବହୁବାର ସେହିକଥା କହିବା ପରେ ରାତି ପ୍ରାୟ ନଅଟା ପର୍ଯ୍ୟନ୍ତ ମେନକାଙ୍କ ନିକଟକୁ ଯେତେବେଳେ ବରୁଣଙ୍କୁ ଅଣାଗଲା ନାହିଁ, ଶେଷରେ ସେ ପ୍ରାୟ ଧମକ ଦେଇଥିଲେ ଯେ, ସେଥିପାଇଁ ସେ ଶ୍ରୀମତୀ ଗାନ୍ଧୀଙ୍କ ସରକାରୀ ବାସଭବନ ସମ୍ମୁଖରେ ଧାରଣା ଦେବେ । ତା'ପରେ ଯାଇ ବରୁଣଙ୍କୁ ତାଙ୍କ ନିକଟକୁ ଅଣାଯାଇଥିଲା । †

ଖୁବ୍ ଏକ କରୁଣ ପରିବେଶ ଭିତରେ ମେନକା ଗୃହତ୍ୟାଗ କରିଥିଲେ । ସେହିଦିନ ଶ୍ରୀମତୀ ଗାନ୍ଧୀଙ୍କ ଏକ ଆକ୍ଷେପ ମୂଳକ ପତ୍ରର ଉତ୍ତର ଦେଇ ମେନକା ତାଙ୍କୁ ମନେ ପକାଇ ଦେଇଥିଲେ ଯେ, ସେହି ପରିବାରର ସମ୍ମାନ ରକ୍ଷା କରିବା-ପାଇଁ ଜଣେ ବୋହୂ ହିସାବରେ କେବଳ ସେ ଅନେକ ଅତ୍ୟାଚାର ଇତିମଧ୍ୟରେ ସହ୍ୟ କରିଯାଇଥିଲେ; ବିଶେଷ କରି ସଞ୍ଜୟଙ୍କ ମୃତ୍ୟୁ ପରେ ପରେ । ସେ ମଧ୍ୟ ମନେପକାଇ ଦେଇଥିଲେ ଯେ, କର୍ତ୍ତବ୍ୟ ଦୃଷ୍ଟିରୁ ତାଙ୍କର ଦୁଃସମୟ ବେଳେ ଓ ପରିବାରର ଅନ୍ୟ ସଭ୍ୟମାନେ ନିଜ ନିଜକୁ ରକ୍ଷା କରିବାପାଇଁ ବ୍ୟସ୍ତ ଓ ବ୍ୟାକୁଳ ହୋଇ ଉଠିଥିବା ବେଳେ, ସେ ପରିବାରର ସମ୍ମାନ ରକ୍ଷା କରିବାପାଇଁ ଅଣ୍ଟାଭିଡ଼ି ଆଗେଇ ଆସିଥିଲେ । ବର୍ତ୍ତମାନ ସେ ଯଦି ଗୃହତ୍ୟାଗ କରୁଥାନ୍ତି ତାହା ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ । ଶାଶୁଙ୍କ ଗୋଟିଏ ଚିଠିର ଉତ୍ତର ଦେଇ ମେନକା ଲେଖିଥିଲେ "ସଞ୍ଜୟଙ୍କ ମୃତ୍ୟୁର ଅବ୍ୟବହିତ ପରେ ପରେ ଆପଣ ମତେ ସବୁ ଦୃଷ୍ଟିରୁ ଅତ୍ୟାଚାର କରିବା ଆରମ୍ଭ କରି ଦେଇଥିଲେ । ମୁଁ ଦୀର୍ଘଦିନ ସେ ସବୁ ନୀରବରେ ସହ୍ୟ କରିଯିବାର ପ୍ରଥମ କାରଣ ଥିଲା, ସଞ୍ଜୟଙ୍କ ସମ୍ମାନ ଏବଂ ଦ୍ୱିତୀୟ କାରଣ ଥିଲା ମୁଁ ଆପଣଙ୍କ ବୋହୂ··· । ଆଜି ଆପଣ ଦୁଇଜଣ ବାହାର ଲୋକଙ୍କ ସାମନାରେ ଗୃହତ୍ୟାଗ କରିବାପାଇଁ ଆଦେଶ ଦେଲେ । ପୁଣି ଘରର ଚାକର-ବାକରଙ୍କ ସମ୍ମୁଖରେ ଅପମାନିତ କଲେ, ମୋ ଜିନିଷପତ୍ର ତନଖିକରି ବାହାରକୁ ଛାଡ଼ିବାପାଇଁ ଆଦେଶ ଦେଲେ ଏବଂ ମୋ ପୁଅକୁ ମଧ୍ୟ ମୋଠାରୁ ଅପହରଣ

---

* Sunday—28-3, April. 1982

କରନେଇ ମୁଁ ତାଙ୍କୁ ମୋ ସାଙ୍ଗରେ ନେଇ ପାରିବି ନାହିଁ ବୋଲି ମଧ୍ୟ ମତେ ଜଣାଇ ଦେଲେ । କେବଳ ସେତିକ ନୁହେଁ, ମୋ ବଂଶ ପରମ୍ପରା ପ୍ରତି ଅପମାନ ଦେଇ ସର୍ବସାଧାରଣଙ୍କ ସାମନାରେ ମତେ ଗାଳି ଗୁଲଜ କରିବା ସଙ୍ଗେ ସଙ୍ଗେ ମୋର ଚାକର-ବାକରମାନଙ୍କୁ ମୋ ନିକଟରୁ ପ୍ରତ୍ୟାହାର କରି ନେଇଥିଲେ ।" * ସେସବୁ କାରଣ ଦର୍ଶାଇ ସେ ଲେଖିଥିଲେ ଯେ ସେଭଳି ପରିସ୍ଥିତିରେ ଗୃହତ୍ୟାଗ କରିବା ବ୍ୟତୀତ ତାଙ୍କ ପାଇଁ ଆଉ ଦ୍ୱିତୀୟ ପନ୍ଥା କିଛି ନ ଥିଲା । ଶାଶୁ ଓ ବୋହୂଙ୍କ ମଧ୍ୟରେ ଅତିରିକ୍ତ ତିକ୍ତତାର ତାହା ହିଁ ହୋଇଥିଲା ପରିଣାମ ।

ନିଜର ସମସ୍ତ ଜିନିଷପତ୍ର ୧୫୪, ଜୋରବାଗସ୍ଥ ନିଜ ମାତାଙ୍କ ବାସ-ଭବନକୁ ପଠାଇ ଦେଇଥିଲେ । ନିଜେ କିନ୍ତୁ ସେଠାକୁ ଯାଇ ନ ଥିଲେ । ତାଙ୍କର ଯୁକ୍ତିଥିଲା ଯେ, ବିବାହ ପରେ ନାରୀମାନେ ବାପଘରକୁ ସେମାନଙ୍କ ଆଶ୍ରୟସ୍ଥଳ ରୂପେ ବିବେଚନା କରିବା ଆଦୌ ଠିକ୍ ନୁହେଁ । ତେଣୁ ଅନ୍ୟ ଏକ ଘରର ବ୍ୟବସ୍ଥା କରିବାପର୍ଯ୍ୟନ୍ତ ତାଙ୍କର କେତେକ ବନ୍ଧୁ ଇଉ୍ଷ୍ଟିକ୍ ମୋଟେଲ୍‌ରେ ତାଙ୍କ ପାଇଁ ବ୍ୟବସ୍ଥା କରାଇ ଦେଇଥିଲେ । ତେଣୁ ରାତି ପ୍ରାୟ ୯ ଘଣ୍ଟା ୧୫ ମିନିଟ ବେଳେ ୨୫ ବର୍ଷ ବୟସ୍କା ବିଧବା ମେନକା, ଶ୍ରୀମତୀ ଗାନ୍ଧୀଙ୍କ ବାସଭବନ ଛାଡ଼ି ଯାଇଥିଲେ ଏକ ନୂତନ ଝଡ଼ଝଞ୍ଜାପୂର୍ଣ୍ଣ ଜୀବନର ସାମନା କରିବାପାଇଁ ।

ଶ୍ରୀମତୀ ଗାନ୍ଧୀଙ୍କ ରାଜନୈତିକ ଜୀବନର ଚରମ ବିପର୍ଯ୍ୟୟ କାଳରେ ପରିବାର ପ୍ରତି ଯାହାର ସାହାଯ୍ୟ ଓ ସହଯୋଗ ଅତି ଉପାଦେୟ ମନେ ହୋଇଥିଲା, ତାହାର ସ୍ଥିତି ସେହି ପରିବାରରେ ଖୁବ୍ କମ୍ ସମୟ ମଧ୍ୟରେ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା ।

ସଞ୍ଜୟଙ୍କ ମୃତ୍ୟୁ ପରେ ପରେ ଶ୍ରୀମତୀ ଗାନ୍ଧୀଙ୍କ ହୃଦ୍‌ବୋଧ ହୋଇଥିଲା ଯେ ନିଜ ନିଜର ସ୍ୱାର୍ଥ ହାସଲ କରିବାପାଇଁ ଦଳେ ଲୋକଙ୍କ ଶିକାର ହୋଇ ପଡ଼ୁଥିଲେ ମେନକା । ସେମାନଙ୍କ ନିକଟରୁ ତାଙ୍କୁ ଦୂରେଇ ରଖିବାପାଇଁ ସେ ଉଦ୍ୟମ କରି ବ୍ୟର୍ଥ ହୋଇଥିଲେ । ନିଜେ ଅସ୍ୱୀକାର କରୁଥିଲେ ମଧ୍ୟ ରାଜନୈତିକ କ୍ଷେତ୍ର ମଧ୍ୟକୁ ନିଜ ଅଜାଣତରେ ମେନକା କ୍ରମଶଃ ଟାଣି ହୋଇ ଯାଇଥିଲେ । କିନ୍ତୁ ଶ୍ରୀମତୀ ଗାନ୍ଧୀ ଚାହୁଁଥିଲେ ସେହି ସ୍ଥାନ ରାଜୀବ ଅଧିକାର କରିବା ଉଚିତ । ତାଙ୍କର ସେହି ଆନ୍ତରିକ ଇଚ୍ଛା ମଧ୍ୟ ସେ ପ୍ରକାଶ କରିଥିଲେ । ତଥାପି କେତେଜଣ ସଞ୍ଜୟ-ଅନୁଗତ ରାଜୀବଙ୍କ ସହିତ ମେନକା ମଧ୍ୟ ସକ୍ରିୟ ରାଜନୀତିରେ ପ୍ରବେଶ କରିବା ଉଚିତ ବୋଲି ମତବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ସେଥିପାଇଁ ଉଦ୍ୟମ ମଧ୍ୟ କରିଥିଲେ ।

---

* ୧୯୮୨ ମସିହା ମାର୍ଚ୍ଚ ୨୯ ତାରିଖରେ ଶ୍ରୀମତୀ ଗାନ୍ଧୀଙ୍କ ପତ୍ରର ଉତ୍ତର ଦେଇ ମେନକା ଲେଖିଥିବା ଚିଠିର କିୟଦଂଶ ।

ଠିକ୍ ସେତକବେଳେ ଅନୁଷ୍ଠିତ ହୋଇଥିଲା ଲକ୍ଷ୍ନୌ ଅଧିବେଶନ। ସ୍ୱର୍ଗତ ସଞ୍ଜୟଙ୍କ ଅନୁଗାମୀମାନେ ଉତ୍ତର ପ୍ରଦେଶ ଯୁବକଂଗ୍ରେସ ନେତା ମି. ଆକବର ଅହମ୍ମଦଙ୍କ ନେତୃତ୍ୱରେ ତାହାର ଆୟୋଜନ କରାଇଥିଲେ । ସେଥିରେ ସଞ୍ଜୟ ଗାନ୍ଧୀଙ୍କ ଦ୍ୱାରା ପ୍ରବର୍ତ୍ତିତ ପାଞ୍ଚଦଫା କାର୍ଯ୍ୟକ୍ରମର ସଫଳତା ଦିଗରେ ଆଲୋଚନା କରାଯିବା ପାଇଁ ପ୍ରସ୍ତାବ ରହିଥିଲା । କିନ୍ତୁ ତଥାପି ଉତ୍ତର-ପ୍ରଦେଶ ଓ କେନ୍ଦ୍ର କଂଗ୍ରେସ କର୍ମକର୍ତ୍ତାମାନେ ତାହାକୁ ଭଣ୍ଡୁର କରାଇ ଦେବାପାଇଁ ମସୁଧା କରିଥିଲେ ବୋଲି ଆକ୍ଷେପ କରାଯାଇଥିଲା । କାରଣ ସେମାନେ ମନେ କରିଥିଲେ ଯେ ତାହା କଂଗ୍ରେସର ବିରୋଧୀ ଗୋଷ୍ଠୀର ଏକ ସମ୍ମେଳନ । ଏପରିକି ଶ୍ରୀମତୀ ଗାନ୍ଧୀ ମଧ୍ୟ ଲୁଆଡ଼େ ଆକ୍ଷେପ କରିଥିଲେ ଯେ ଉକ୍ତ ସମ୍ମିଳନୀର ଆୟୋଜନ କରାଇବାରେ ଶ୍ରୀ ଅହମ୍ମଦଙ୍କ ଅପେକ୍ଷା ଆର୍. ଏସ୍. ଏସ୍.ର ସ୍ୱାର୍ଥ ଥିଲା ଅଧିକ । କିନ୍ତୁ ସେହିଦିନ ହିଁ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ଜଣେ ଉଚ୍ଚନେତା ଶ୍ରୀ ନାନାଜୀ ଦେଶମୁଖ ଉକ୍ତ ଅଭିଯୋଗକୁ ଦୃଢ଼ଭାବେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

ତଥାପି ସେହି ସମ୍ମିଳନୀର କାର୍ଯ୍ୟସୂଚୀ ପ୍ରକାଶ ପାଇବା ପରେ ପରେ ସମ୍ମିଳନୀର ଆୟୋଜକ ଆକବର ଅହମ୍ମଦଙ୍କୁ ଦଳରୁ ବହିଷ୍କାର କରାଯାଇଥିଲା । ତଥାକଥିତ କଂଗ୍ରେସ ବିରୋଧୀ ଗୋଷ୍ଠୀର ଉକ୍ତ ସମ୍ମିଳନୀରେ, ଅନ୍ତତଃ ଉତ୍ତର ପ୍ରଦେଶ ବିଧାନସଭାର ତତ୍କାଳୀନ ସଭ୍ୟମାନଙ୍କ ମଧ୍ୟରୁ ଅସନ୍ତୁଷ୍ଟ ଗୋଷ୍ଠୀ ଯୋଗ ଦେବାର ଆଶଙ୍କା କରି ମୁଖ୍ୟମନ୍ତ୍ରୀ ରାଜ୍ୟର ସବୁ ବିଧାୟକମାନଙ୍କର ଏକ ବୈଠକ ଉକ୍ତ ଦିନ ଠିକ୍ ସେହି ସମୟରେ ହିଁ ଆୟୋଜନ କରାଇଥିଲେ । ଶ୍ରୀ ଅହମ୍ମଦଙ୍କ ବୈଠକକୁ ଭଣ୍ଡୁର କରାଇଦେବା ପାଇଁ କେନ୍ଦ୍ର କର୍ତ୍ତୃପକ୍ଷଙ୍କ ତରଫରୁ ମଧ୍ୟ ଆୟୋଜନ କରାଯାଇଥିଲା ବୋଲି ଆକ୍ଷେପ କରାଯାଇଥିଲା ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ବାସ୍ତବିକ୍ ସମ୍ମିଳନୀର ଅନ୍ୟ ଏକ ମୁଖ୍ୟ ଅଥଚ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା ୰ସଞ୍ଜୟଙ୍କ ସମର୍ଥକମାନଙ୍କୁ ଏକତ୍ରିତ କରାଇବା ଓ ମେନକା ଗାନ୍ଧୀଙ୍କୁ ରାଜନୈତିକ କ୍ଷେତ୍ରରେ ପ୍ରତିଷ୍ଠିତ କରାଇବା । ଅନ୍ୟ ଦିଗରୁ ଦେଖିବାକୁ ଗଲେ ରାଜୀବ ଗାନ୍ଧୀଙ୍କ ପ୍ରତି କଂଗ୍ରେସ ଯୁବଗୋଷ୍ଠୀ ପକ୍ଷରୁ ସେଭଳି ସମର୍ଥନ ନ ଥିବା କଥା ପରୋକ୍ଷ ଭାବରେ ପ୍ରକାଶ ପାଉଥିଲା ।

ଆଗାମୀ ଝଡ଼ର ସୂଚନା ପାଇ ମେନକା ଉକ୍ତ ସମ୍ମିଳନୀରେ ଯୋଗ ଦେବାପାଇଁ ଆୟୋଜକକାରୀଙ୍କ ନିମନ୍ତ୍ରଣ ରକ୍ଷା କରିବେ କି ନାହିଁ ସେ ସମ୍ପର୍କରେ ପ୍ରଥମେ ଶ୍ରୀମତୀ ଗାନ୍ଧୀଙ୍କ ମତାମତ ବୁଝିଥିଲେ । କିନ୍ତୁ ମାର୍ଚ୍ଚ ୨୭ ତାରିଖ ସୁଦ୍ଧା କୌଣସି ମତାମତ ନ ପାଇ ସେଥିରେ ଯୋଗ ଦେବାଲାଗି ସ୍ଥିର କରିଥିଲେ ବୋଲି ସେ ସେହିଦିନ ଲିଖିତ ଏକ ପତ୍ରରେ ଶ୍ରୀମତୀ ଗାନ୍ଧୀଙ୍କୁ ଜଣାଇ ଦେଇଥିଲେ ।

ଉକ୍ତ ମଜ୍‌ଲିସରେ ମେନକାଙ୍କ ଅତି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ମୁଖ୍ୟ ଅତିଥି ଭାବେ ସେଠାରେ ଯୋଗଦେଇ ସେ ଶ୍ରୀମତୀ ଗାନ୍ଧୀଙ୍କ ସମ୍ପର୍କରେ ବି ଭାଷଣ ଦେଇଥିଲେ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଉକ୍ତ ମଜ୍‌ଲିସରେ ସେ ଯୋଗ ଦେବାପାଇଁ ଶ୍ରୀମତୀ ଗାନ୍ଧୀଙ୍କ ସମର୍ଥନ ନ ଥିବା କଥା ସେ ସ୍ପଷ୍ଟଭାବେ ଜାଣିଥିଲେ ।

ସଞ୍ଜୟଙ୍କ ମୃତ୍ୟୁ ପରେ ପରେ ମେନକାଙ୍କ ରାଜନୀତିରେ ପ୍ରବେଶକୁ ଶ୍ରୀମତୀ ଗାନ୍ଧୀ ସମର୍ଥନ କରୁ ନ ଥିବା କଥା ଅନେକ ଘଟଣାରୁ ସ୍ପଷ୍ଟ ହୋଇ ଯାଇଥିଲା । ଯୁବକଂଗ୍ରେସ ସଭ୍ୟମାନେ ଶ୍ରୀ ରାଜୀବ ଗାନ୍ଧୀଙ୍କୁ ସମର୍ଥନ ଜଣାଇବା ପାଇଁ ଶ୍ରୀମତୀ ଗାନ୍ଧୀ ସମସ୍ତ ଉଦ୍ୟମ କରିଥିଲେ । ଉଲ୍ଲେଖ କଲେ ଭୁଲ ହେବନାହିଁ ଯେ, ସଞ୍ଜୟଙ୍କ ଅମଳରେ ଯୁବକଂଗ୍ରେସର କିଏ କଣ ତାହା ଶ୍ରୀମତୀ ଗାନ୍ଧୀ ଆଦୌ ଜାଣି ନ ଥିଲେ କହିଲେ ଚଳେ । ସଞ୍ଜୟଙ୍କ ପରିକୁ ଯୁବକଂଗ୍ରେସ ବିଷୟରେ ସର୍ବାଧିକ ଜାଣିଥିବା ବ୍ୟକ୍ତି ଥିଲେ ମେନକା । ତେଣୁ ସେହି ଦୃଷ୍ଟିରୁ ଯୁବକଂଗ୍ରେସର ସଭ୍ୟମାନେ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ରହୁଥିବା ମେନକାଙ୍କ ନିକଟକୁ ବିଭିନ୍ନ ଆନୁଷ୍ଠାନିକ ସମସ୍ୟା ନେଇ ଆସୁଥିଲେ ମଧ୍ୟ ରାଜୀବଙ୍କ ନିକଟକୁ ଯାଉ ନ ଥିଲେ ।

କିନ୍ତୁ ହୁଏତ ଶ୍ରୀମତୀ ଗାନ୍ଧୀଙ୍କର ଇଚ୍ଛା ଥିଲା ଠିକ୍ ବିପରୀତଧର୍ମୀ ।

ସେହି କାରଣରୁ ଯୁବକଂଗ୍ରେସର ସଭ୍ୟମାନଙ୍କ ଗତିବିଧି ଉପରେ କଡ଼ା ନଜର ରଖାଯାଇଥିଲା । ରାଜୀବଙ୍କୁ ସମର୍ଥନ ଜଣାଉଥିବା ସଭ୍ୟମାନଙ୍କୁ ନେଇ ଯୁବକଂଗ୍ରେସର ପୁନର୍ଗଠନ କରାଯାଇଥିଲା ବୋଲି ବିଭିନ୍ନ ମହଲରୁ ମତବ୍ୟକ୍ତ କରାଯାଇଥିଲା । ପରିଣାମତଃ ଏକ ସମୟରେ ମେନକାଙ୍କ ସମର୍ଥକମାନଙ୍କ ଉପରେ ପ୍ରଧାନମନ୍ତ୍ରୀଙ୍କ ବାସଭବନ ଭିତରକୁ ଯିବା ଆସିବା କରିବା ଦିଗରେ କଡ଼ା ନିୟନ୍ତ୍ରଣ ଜାରି କରାଯାଇଥିଲା ବୋଲି ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । ଘର ଭିତରେ ଯଦିଓ ସେ ଗ୍ରୁପ୍ ଗ୍ରୁପ୍ ବସି ସମୟ ଅତିବାହିତ କରୁଥିଲେ, ତଥାପି ମେନକା ଘରେ ନାହାନ୍ତି ବୋଲି କହି ତାଙ୍କ ନିକଟକୁ ଆସୁଥିବା ବ୍ୟକ୍ତିମାନଙ୍କୁ ବାହାରୁ ବାହାରୁ ହିଁ ଗୃହରକ୍ଷୀଙ୍କ ଦ୍ୱାରା ଫେରାଇ ଦିଆଯାଉଥିଲା ।

ଶ୍ରୀମତୀ ଗାନ୍ଧୀଙ୍କ ସେ ବିରକ୍ତିଭାବ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ପ୍ରତିଫଳିତ ହୋଇଥିଲା । ମେନକାଙ୍କ ଦ୍ୱାରା ପରିଚାଳିତ ପତ୍ରିକା "ସୂର୍ଯ୍ୟ" କାଳକ୍ରମେ ଘୋର ଆର୍ଥିକ ଅନାଟନ ଭିତରକୁ ଟାଣିହୋଇ ଯାଇଥିଲା । କାରଣଗୁଡ଼ିକ ମଧ୍ୟରୁ ମୁଖ୍ୟ ଥିଲା ବିଜ୍ଞାପନର ଉତ୍କଟ ଅଭାବ । ସେଥିପାଇଁ ମେନକାଙ୍କ ସମର୍ଥକମାନେ ଶ୍ରୀମତୀ ଗାନ୍ଧୀଙ୍କୁ ହିଁ ଆକ୍ଷେପ କରିଥିଲେ । ପୁଣି ଠିକ୍ ସେତିକବେଳେ ରାଜସ୍ଥାନର ଜଣେ କଂଗ୍ରେସମନ୍ତ୍ରୀ 'ସୂର୍ଯ୍ୟ' ବିରୁଦ୍ଧରେ ଏକ ମାନହାନି ମକଦ୍ଦମା ଦାଏର୍ କରିଥିଲେ ।

ତେଣୁ ବାଧ୍ୟ ହୋଇ "ସୂର୍ଯ୍ୟ"ର ସ୍ୱତ୍ୱ ଓ ପ୍ରକାଶନ ଭାର ଅତି ଗୋପନ ଭାବରେ ଅନ୍ୟକୁ ହସ୍ତାନ୍ତର କରି ଦିଆଯାଇଥିଲା ।

ଏହିଭଳି ବିଭିନ୍ନ ଘଟଣାବଳୀରୁ ଏକଥା ସ୍ପଷ୍ଟ ଯେ ସଦ୍ୟ ବିଧବା ଯୁବତୀ ମେନକା ଗାନ୍ଧୀ, କଣ୍ଟକପୂର୍ଣ୍ଣ ତଥା ପିଚ୍ଛିଳ ରାଜନୈତିକ କ୍ଷେତ୍ରରେ ଯୋଗ ନ ଦେବା ପାଇଁ ଶ୍ରୀମତୀ ଗାନ୍ଧୀଙ୍କ ଆକାଂକ୍ଷାକୁ ଯଥାର୍ଥରେ ହୃଦୟଙ୍ଗମ କରିପାରି ନ ଥିଲେ । ଅନ୍ୟ ପକ୍ଷରେ ଏହାମଧ୍ୟ ସମ୍ଭବ ହୋଇପାରେ ଯେ ଯୁବକଂଗ୍ରେସ କର୍ମୀମାନଙ୍କ ଦ୍ୱାରା ଅତି ମାତ୍ରାରେ ପ୍ରୋତ୍ସାହିତ ହୋଇ ସକ୍ରିୟ ରାଜନୀତିରେ ଯୋଗଦେବାର ପ୍ରଲୋଭନକୁ ସମ୍ବରଣ କରିପାରି ନ ଥିଲେ ମେନକା । ହୁଏତ ସେ ରଙ୍ଗୀନ ସ୍ୱପ୍ନ ଦେଖିଥିଲେ ଶାଶୁଙ୍କ ଭଳି ସେ ମଧ୍ୟ ରାଜନୈତିକ କ୍ଷେତ୍ରରେ ସୁପ୍ରତିଷ୍ଠିତ ହୋଇ ପାରିବେ । କିନ୍ତୁ ଗୋଟିଏ ହିନ୍ଦୁ ପରିବାରର ବୋହୂ ହିସାବରେ ଶାଶୁଙ୍କ ଅଭିଳାଷକୁ ସମ୍ମାନ ଦେବା ଯେ ଏକ କର୍ତ୍ତବ୍ୟ ତାହା ମେନକାଙ୍କ ହୃଦୟରେ କୌଣସି ପ୍ରଭାବ ପକାଇ ପାରି ନ ଥିଲା । ସେ ଅନୁଭବ କରିପାରି ନ ଥିଲେ ଯେ ପୃଥିବୀ ସମ୍ପର୍କରେ ବିଶେଷ ଭାବେ ଅଭିଜ୍ଞ ଜଣେ ଶାଶୁ ଜଣେ ଅନଭିଜ୍ଞ ବୋହୂଙ୍କୁ ସକ୍ରିୟ ରାଜନୀତିରେ ସମ୍ପୂର୍ଣ୍ଣ ଅଂଶ ଗ୍ରହଣ କରିବା ଲାଗି କାହିଁକି ଅନାଗ୍ରହୀ । ପୁଣି ବିଶେଷ ଉଲ୍ଲେଖଯୋଗ୍ୟ ଯେ, ଯେଉଁ ବ୍ୟକ୍ତିବୃନ୍ଦ ତଥା ଅନୁଷ୍ଠାନକୁ ଶ୍ରୀମତୀ ଗାନ୍ଧୀ ଓ କଂଗ୍ରେସ (ଇ) ତାର ପରିପନ୍ଥୀ ବୋଲି ବିଚାର କରିଥିଲା ତାର ମୁଖ୍ୟ ପୁରୋଧା ଭାବେ ସେ ଯୋଗ ଦେବାପାଇଁ ଆଗ୍ରହୀ ହୋଇ ଉଠିଥିଲେ । ସେଭଳି କାର୍ଯ୍ୟରେ ଯେ କୌଣସି ମୁରବୀ ବା ଅଭିଭାବକ କ୍ଷୁବ୍ଧ ହେବା ସ୍ୱାଭାବିକ ।

ତେଣୁ ତାର ପରିଣାମ ଶ୍ରୀମତୀ ଗାନ୍ଧୀଙ୍କ ପାରିବାରିକ କ୍ଷେତ୍ରରେ ଏକ ଅପ୍ରୀତିକର ପରିବେଶ ସୃଷ୍ଟି କରିଥିଲା ।

### ରାଷ୍ଟ୍ରୀୟ ସଞ୍ଜୟ ମଞ୍ଚ :—

ଉଭୟ ଶାଶୁ ଓ ବୋହୂଙ୍କ ମଧ୍ୟରେ ସେହି ପାରିବାରିକ ବୈରିତାର ମୂଳ କାରଣ ଥିଲା ଭାରତୀୟ ରାଜନୈତିକ କ୍ଷେତ୍ରରେ ମେନକାଙ୍କ ସକ୍ରିୟ ଅଂଶ ଗ୍ରହଣ ଆକାଂକ୍ଷାକୁ ଶ୍ରୀମତୀ ଗାନ୍ଧୀ ସମର୍ଥନ ନ ଦେବା । ଉକ୍ତ ପରିବାରରୁ ମେନକା ନିଜକୁ ବିଚ୍ଛିନ୍ନ କରିପାରିବା ପରେ ପରେ ବିଭିନ୍ନ ରାଜନୈତିକ କାର୍ଯ୍ୟକଳାପରେ ନିଜକୁ ସଂଶ୍ଳିଷ୍ଟ କରିଥିଲେ । ସେ ମଧ୍ୟ ବୋଧହୁଏ ମନ ମଧ୍ୟରେ ଆଶା ପୋଷଣ କରିଥିଲେ ଶ୍ରୀମତୀ ଗାନ୍ଧୀଙ୍କର ବିକଳ୍ପ ହେବାପାଇଁ ।

ପରିସ୍ଥିତିର ସୁଯୋଗ ନେଇ ଭାରତର କେତେକ ବିରୋଧୀ ଦଳ ଓ ପତ୍ର ପତ୍ରିକା ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା ନେଇ ଓ ରାଜନୈତିକ

କ୍ଷେତ୍ରରେ ନିର୍ଣ୍ଣିତ ପ୍ରତିଷ୍ଠା ସମ୍ପର୍କରେ ଅନେକ ଆକାଶ କୁସୁମ ସୃଷ୍ଟିକରି ଦେଇ-ଥିଲେ ତାଙ୍କ ସାମନାରେ । ସେଥିରେ ସ୍ୱଏତ ମେନକା ମଧ୍ୟ ସ୍ତିମିତ ହୋଇ ନ ଥିଲେ, ବରଂ ଉଲ୍ଲସିତ ହୋଇ ଉଠିଥିଲେ ।

ସମ୍ଭବତଃ ସେହି କାରଣରୁ ୧୯୮୩ ଅପ୍ରେଲ୍ ତିନି ତାରିଖ ଦିନ ତାଙ୍କ ସମର୍ଥକମାନଙ୍କ ସହାୟତାରେ ଏକ ସ୍ୱତନ୍ତ୍ରଭାବରେ ନୂତନ ରାଜନୈତିକ ଦଳ 'ରାଷ୍ଟ୍ରୀୟ ସଞ୍ଜୟ ମଞ୍ଚ' ଗଠନ କରିଥିଲେ । ଉକ୍ତ ରାଜନୈତିକ ଦଳକୁ ଭାରତର ପ୍ରମୁଖ ବିରୋଧୀ ଦଳମାନେ ସ୍ୱାଗତ ଜଣାଇବା ସ୍ୱାଭାବିକ ଥିଲା ।

କିନ୍ତୁ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ତାହା କୌଣସି ସମସ୍ୟା ସୃଷ୍ଟି କରିବା ସମ୍ଭାବନା ନ ଥିଲା । ବରଂ ତାଙ୍କର ଜୀବନ କାଳ ମଧ୍ୟରେ ସଞ୍ଜୟ ବିଗ୍ରେଡ଼ ମଞ୍ଚ ଗୋଟିଏ ପ୍ରମୁଖ ବିରୋଧୀଦଳ ହିସାବରେ ମଧ୍ୟ ପ୍ରତିଷ୍ଠା ଲାଭ କରିପାରି ନ ଥିଲା । ତେଣୁ ଶ୍ରୀମତୀ ଗାନ୍ଧୀଙ୍କ ବିକଳ୍ପ ହେବା ସ୍ୱପ୍ନ ନିଶ୍ଚିତ ଅବାସ୍ତବ ହୋଇ ଯାଇଥିଲା ବୋଲି ସ୍ୱଏତ ମେନକା ଅନୁଭବ କରିଥିବେ ।

**କଚଡ଼ରୀରେ ଶାଶୂ ଓ ବୋହୂ :—**

ଶ୍ରୀମତୀ ଗାନ୍ଧୀ ଓ ମେନକାଙ୍କ ମଧ୍ୟରେ ଶାଶୂ-ବୋହୂ ସମ୍ପର୍କ ଅତି ଉତ୍କଟ ହୋଇଯିବା ପରେ ଉକ୍ତ କନ୍ଦଳ ପାରିବାରିକ ସ୍ତରରୁ ଯାଇ ରାଜନୈତିକ ସ୍ତରରେ ପହଞ୍ଚିବା ସଙ୍ଗେ ସଙ୍ଗେ ଶ୍ରେଷ୍ଠ ଶ୍ରେଷ୍ଠ କଥାରେ କୋର୍ଟ କଚେରୀକୁ ଯିବା ପାଇଁ ମଧ୍ୟ ପଶ୍ଚାତ୍‌ପଦ ହୋଇ ନ ଥିଲେ । ସଞ୍ଜୟଙ୍କ ଉତ୍ତରାଧିକାରୀ ରୂପେ ତାଙ୍କର ଚଳନ୍ତି ଓ ଅଚଳନ୍ତି ସମ୍ପତ୍ତି ଉପରେ ନିଜର ଅଧିକାର ଜାହିର କରିବାପାଇଁ ନିଜ ପକ୍ଷରୁ ତଥା ତାଙ୍କ ପୁତ୍ର ବରୁଣଙ୍କ ପକ୍ଷରୁ ମେନକା ଦିଲ୍ଲୀ ଯେସନ୍‌ସ୍ କର୍ଟଙ୍କ ଅଦାଲତର ଆଶ୍ରୟ ନେଇଥିଲେ । ସେଥିରେ ସେ ଆବେଦନ କରିଥିଲେ ଯେ ସ୍ୱତନ୍ତ୍ର ବିବାହ ଆଇନ ଅନୁଯାୟୀ ତାଙ୍କର ବିବାହ ହୋଇଥିବା ଯୋଗୁଁ ଉତ୍ତରାଧିକାର ଆଇନ ଅନୁସାରେ ମୃତ ବ୍ୟକ୍ତିର ମା' ଉକ୍ତ ସମ୍ପତ୍ତିର ଅଂଶୀଦାର ହୋଇ ପାରିବେ ନାହିଁ ।

ଅପର ପକ୍ଷରେ ଶ୍ରୀମତୀ ଗାନ୍ଧୀ ମଧ୍ୟ ତାହାର ପ୍ରତିବାଦ କରି ହିନ୍ଦୁ ଉତ୍ତରାଧିକାର ଆଇନର ପ୍ରଥମ ଧାରା ଅନୁଯାୟୀ ମୃତ ସଞ୍ଜୟଙ୍କ ସମ୍ପତ୍ତିରେ ତାଙ୍କର ଦାବୀ ଜାହିର କରିବାପାଇଁ ମଧ୍ୟ କୋର୍ଟରେ ଆବେଦନ କରିଥିଲେ । ସେ ଇଚ୍ଛା ପ୍ରକାଶ କରିଥିଲେ ଯେ ସଞ୍ଜୟଙ୍କ ସମ୍ପତ୍ତିରୁ ବରୁଣଙ୍କ ଅଂଶ ଓ ତାଙ୍କର ଅଂଶ ଉଭୟ ଅଂଶ ବରୁଣ ଭୋଗ କରିବେ । ତେବେ ସେ ସେଥିପାଇଁ ସର୍ତ୍ତ ଆରୋପ କରିଥିଲେ ସେ ସମ୍ପତ୍ତିର ଉଭୟ ଅଂଶ ଶିଶୁପୁତ୍ରର ହିତଦୃଷ୍ଟିରୁ ବର୍ତ୍ତମାନ ପାଇଁ ସଂରକ୍ଷିତ ରହିବା ଆବଶ୍ୟକ । ଅନ୍ୟ କୌଣସି ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଦୁରୁପଯୋଗ କରି ନ ଯାଉ ବୋଲି କୋର୍ଟରେ ପ୍ରାର୍ଥନା କରିଥିଲେ ଶ୍ରୀମତୀ ଗାନ୍ଧୀ ।

ବିମ୍ବସ୍ତ ପ୍ରସଙ୍ଗରେ ସେ ମଧ୍ୟ ଉଲ୍ଲେଖ କରିଥିଲେ ଯେ, ଜେଜେମା ହିସାବରେ ବରୁଣ ପ୍ରତି ନିଜର ବାତ୍ସଲ୍ୟ ମମତା ପ୍ରଦର୍ଶନ କରିବା ସୁଯୋଗରୁ ଉଦ୍ଦେଶ୍ୟମୂଳକ ଭାବେ ତାହାଙ୍କୁ ବଞ୍ଚିତ କରାଯାଇଥିଲା । ମେନକା ଗାନ୍ଧୀ ଶ୍ରୀମତୀ ଗାନ୍ଧୀଙ୍କ ବାସ-ଭବନ ଛାଡ଼ିବା ପରେ ବରୁଣ ପ୍ରତି ରବିବାର ଦିନ କିଛି ସମୟ ପାଇଁ ତାଙ୍କ ନିକଟକୁ ଯାଉଥିଲେ । କ୍ରମଶଃ ସେ ସାକ୍ଷାତ କମ୍ କରାଯାଇ ୧୯୮୨ ଅକ୍ଟୋବର ମାସଠାରୁ ତାଙ୍କୁ ଆଦୌ ଶ୍ରୀମତୀ ଗାନ୍ଧୀଙ୍କ ନିକଟକୁ ପଠାଯାଉ ନ ଥିଲା । କେବଳ ୧୯୮୩ ମାର୍ଚ୍ଚ ୧୩ ତାରିଖ ଦିନ ମାତ୍ର ଅଧଘଣ୍ଟାକ ପାଇଁ ଜେଜେମାଙ୍କ ନିକଟକୁ ବରୁଣ ଯାଇଥିଲେ । ଏହା ଉଦ୍ଦେଶ୍ୟମୂଳକ ଭାବେ କରାଯାଇଥିଲା ।

ତାହାର ଉତ୍ତର ଦେଇ ମେନକା କହିଥିଲେ ଯେ, ଶିଶୁଟି ପ୍ରତି ଯେତିକି ସ୍ନେହ ଓ ଶ୍ରଦ୍ଧା ଦିଆ ଯାଉଥିଲା ତଦପେକ୍ଷା ଅଧିକ ଶୋଷଣ କରାଯାଉଥିଲା । ତାଙ୍କର ଅଭିଯୋଗ ଥିଲା ଯେ ରାଜନୈତିକ ଲାଭ ଉଠାଇବା ଲାଗି ବରୁଣଙ୍କୁ ଦୂରଦର୍ଶନ ତଥା ଫଟୋଗ୍ରାଫର୍‌ମାନଙ୍କ ସମ୍ମୁଖରେ ଅବାଞ୍ଛିତ ଭାବେ ପ୍ରଦର୍ଶନ କରାଯାଉଥିଲା । ଏ ଆକ୍ଷେପ ଅତି ଅହେତୁକ ମନେ ହେଉଥିଲେ ମଧ୍ୟ ଶ୍ରୀମତୀ ଇନ୍ଦିରାଙ୍କ ଶବମୂର୍ତ୍ତି ଉପରେ ଆଖି ଆଣିଥିଲେ ନିଶ୍ଚୟ ।

ତେବେ ଜିଲ୍ଲା ଜଜ୍ ଶ୍ରୀ ଗୁପ୍ତଲ ତାଙ୍କ ରାୟରେ ଶ୍ରୀମତୀ ଗାନ୍ଧୀଙ୍କୁ ଜଣେ ମହତ୍ ହୃଦୟା ପିତାମହୀର ମନୋଭାବ ପ୍ରଦର୍ଶନ କରିଥିବା କଥା ଉଲ୍ଲେଖ କରି ମନ୍ତବ୍ୟ ଦେଇଥିଲେ ଯେ ସେ, ବରୁଣଙ୍କୁ ରାଜନୈତିକ ଉଦ୍ଦେଶ୍ୟରେ ବ୍ୟବହାର କରୁଥିଲେ ବୋଲି ଶ୍ରୀମତୀ ମେନକା ଗାନ୍ଧୀଙ୍କ ଅଭିଯୋଗ ଏକ ଭ୍ରାନ୍ତ ତଥା ଅତି ଅବାନ୍ତର; ବରଂ ତାହାହିଁ ରାଜନୈତିକ ବିଚାର ପ୍ରଣୋଦିତ ।

ଉକ୍ତ ସମ୍ପତ୍ତି ସମ୍ବନ୍ଧୀୟ ପ୍ରୋବେଟ ମାମଲାରେ ଦିଲ୍ଲୀର ଜିଲ୍ଲାଜଜ୍ ଶ୍ରୀ ଏମ୍. କେ. ଗୁପ୍ତଲ ରାୟ ଦେଇଥିଲେ ଯେ ସଞ୍ଜୟଙ୍କ ତ୍ୟକ୍ତ ସମ୍ପତ୍ତି ତିନି ସମାନ ଭାଗରେ ବିଭକ୍ତ ହେବ । ଶ୍ରୀମତୀ ମେନକା ଗାନ୍ଧୀ, ଶ୍ରୀମତୀ ଗାନ୍ଧୀ ଓ ଫିରୋଜ ବରୁଣ ଗାନ୍ଧୀ ସମାନ ଭାବେ ସେ ସମ୍ପତ୍ତିରେ ଅଂଶୀଦାର ହେବେ ।

ତାପରେ କୋର୍ଟ କଚେରୀରେ ଶ୍ରୀମତୀ ଗାନ୍ଧୀ ପାଇଥିବା ସ୍ୱର୍ଗତ ସଞ୍ଜୟଙ୍କ ତ୍ୟକ୍ତ ସମ୍ପତ୍ତିର ଏକ ତୃତୀୟାଂଶକୁ ସ୍ୱେଚ୍ଛାକୃତ ଭାବରେ ନାତି ବରୁଣଙ୍କୁ ଦାନ କରି ଦେଇଥିଲେ । ସେ କୋର୍ଟକୁ ମଧ୍ୟ ନିବେଦନ କରିଥିଲେ ଯେ, ବରୁଣଙ୍କ ସମ୍ପତ୍ତିର ପରିଚାଳନା ପାଇଁ ଜଣେ ତୃତୀୟ ପକ୍ଷ ନିଯୁକ୍ତ କରାଯାଉ । କାରଣ ସେ ଆଶଙ୍କା କରିଥିଲେ ଯେ, ସେ ସମ୍ପତ୍ତି ମେନକା ପରିଚାଳନା କଲେ ତାହା ପ୍ରକୃତରେ ବରୁଣଙ୍କ ସ୍ୱାର୍ଥର ଅନୁକୂଳ ହୋଇପାରିବ ନାହିଁ ।

ଶ୍ରୀ ଗୁପ୍ତଲ ମେନକାଙ୍କୁ ଆଠଟି ସର୍ତ୍ତରେ ବରୁଣଙ୍କ ସମ୍ପତ୍ତିର ପରିଚାଳନା ଦାୟିତ୍ୱ ଦେଇଥିଲେ । ସେଥିରେ ସେ ଉଲ୍ଲେଖ କରିଥିଲେ ଯେ ଫିରୋଜ ବରୁଣ

ଗାନ୍ଧୀଙ୍କ ଅଂଶ ଅଦାଲତଙ୍କ ବିନା ଅନୁମତିରେ ବିକ୍ରି କରାଯାଇ ପାରିବ ନାହିଁ । ତାଙ୍କ ଅଂଶର ପ୍ରାପ୍ତ ଲାଭ ତାଙ୍କ ନାମରେ ହିଁ ଜମା ରଖାଯିବ । ତାହା ବରୁଣଙ୍କ ନା ବାଳକତ୍ୱ ମଧ୍ୟରେ ଉଠାଯାଇ ପାରିବ ନାହିଁ ।

ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ବିଭିନ୍ନ କମ୍ପାନୀରେ ସ୍ୱର୍ଗତ ସଞ୍ଜୟଙ୍କ ଯେଉଁ ଅଂଶ ଥିଲା ତାର ମୂଲ୍ୟ ପ୍ରାୟ ଦୁଇ ଲକ୍ଷ ପଞ୍ଚସ୍ତରି ହଜାର ଟଙ୍କାରୁ ଅଧିକ ହେବବୋଲି ଅନୁମାନ କରାଯାଇଥିଲା ।

ଏଭଳି ସମସ୍ତ ପ୍ରତିକୂଳ ପାରିବାରିକ ପରିବେଶ ସୃଷ୍ଟି ହୋଇଥିବା ସତ୍ତ୍ୱେ ଶ୍ରୀମତୀ ଗାନ୍ଧୀ ନିଜ ସମ୍ପତ୍ତିରୁ ଉପଯୁକ୍ତ ମନେହେଉଥିବା ଅଂଶ ନାତି ବରୁଣ ପାଇଁ ଦାନ କରିଥିଲେ !

**ଶ୍ରୀମତୀ ଗାନ୍ଧୀଙ୍କ ସମ୍ପତ୍ତି ଉଇଲ :—**

୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ସୁଦ୍ଧା ଶ୍ରୀମତୀ ଗାନ୍ଧୀଙ୍କର ମୋଟ ସମ୍ପତ୍ତିର ପରିମାଣ ୨୧ ଲକ୍ଷ ୭୮ ହଜାର ଟଙ୍କା ଥିଲା ବୋଲି ତାଙ୍କର ଶେଷ ଉଇଲ୍‌ରୁ ଜଣା ପଡ଼ିଥିଲା । ଏଥିରେ ଗୃହଜମି ଓ ଫାର୍ମ ହାଉସ୍‌ର ମୂଲ୍ୟ ୧୨ ଲକ୍ଷ ୨୫ ହଜାର ୫୧୫ ଟଙ୍କା, ବ୍ୟାଙ୍କରେ ଗଚ୍ଛିତ ୩ ଲକ୍ଷ ୪୭ ହଜାର ୪୧୧ ଟଙ୍କା ଓ ଅଳଙ୍କାର ପ୍ରଭୃତି ପଦାର୍ଥର ମୂଲ୍ୟ ୩୭ ହଜାର ୧୫୦ ଟଙ୍କା ଅନ୍ତର୍ଭୁକ୍ତ । ସେହି ଉଇଲ୍‌ଟିକୁ ଶ୍ରୀ ରାଜୀବ ଗାନ୍ଧୀ ପ୍ରୋବେଟ୍ ପାଇଁ ଦିଲ୍ଲୀ ହାଇକୋର୍ଟରେ ୧୯୮୫ ମସିହା ମଇ ୨ ତାରିଖ ଦିନ ଆବେଦନ କରିଥିଲେ ।

ଉକ୍ତ ଉଇଲ୍‌ନାମା ସମ୍ପର୍କରେ ଶ୍ରୀମତୀ ଗାନ୍ଧୀ ମତବ୍ୟକ୍ତ କରିଥିଲେ ଯେ, ସମସ୍ତ ଅବସ୍ଥାରୁ ତରବରିଆ ଭାବରେ ତାହା ଲେଖା ଯାଇଥିବା ଯୋଗୁଁ ତାକୁ ଯଥାର୍ଥ ଉଇଲ୍ ଭାବେ ଗ୍ରହଣ କରାଯିବା ଉଚିତ । ସେଥିରେ ସେ ଉଲ୍ଲେଖ କରିଥିଲେ, ଦୀର୍ଘ ୩୦ ବର୍ଷ ଶାସନ କ୍ଷମତାରେ ରହିବା ପରେ ମଧ୍ୟ ଦେଶର ସ୍ୱାଧୀନତା ବେଳକୁ ତାଙ୍କ ପରିବାରର ଯାହା ସମ୍ପତ୍ତି ଥିଲା, ତାହା ୧୯୮୪ ମସିହା ବେଳକୁ ବହୁ ପରିମାଣରେ କମି ଯାଇଥିଲା । ତାର ଏକ କାରଣ ଥିଲା, ତାଙ୍କର ପୂର୍ବ ବାସଗୃହ ଆନନ୍ଦଭବନ ତତ୍‌ସଂଲଗ୍ନ ଜମି ଓ ସେଥିରେ ଥିବା ଲାଇବ୍ରେରୀ ସମେତ ସବୁ ଜବାହରଲାଲ ନେହେରୁ ସ୍ମୃତି ପାଣ୍ଠିକୁ ଦାନ । ପୁଣି ପଣ୍ଡିତ ନେହେରୁଙ୍କ ବ୍ୟକ୍ତିଗତ କାଗଜପତ୍ର ସବୁ ନେହେରୁ ସ୍ମୃତି ମ୍ୟୁଜିୟମ୍ ଓ ଲାଇବ୍ରେରୀକୁ ଦାନ କରାଯାଇଥିଲା ।

ଉତ୍ତରାଧିକାର ସୂତ୍ରରେ ପାଇଥିବା ଓ ପରେ ପରେ ବ୍ୟକ୍ତିଗତ ଉଦ୍ଦେଶ୍ୟରେ ଦାନ ଓ ଉପହାର ରୂପେ ପାଇଥିବା ଅନେକ ଅଳଙ୍କାର ପ୍ରଭୃତି ସେ ପୂର୍ବରୁ ପୁଅ, ବୋହୂ ତଥା ନାତି ନାତୁଣୀଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ସେଥିସହିତ ଅନେକ ଅସ୍ଥାବର ସମ୍ପତ୍ତି ମଧ୍ୟ ପୂର୍ବରୁ ଉଭୟ ପୁତ୍ରଙ୍କୁ ଦେଇ ଦେଇଥିଲେ ।

ମେହେରାଉଲିଠାରେ ଥିବା ତାଙ୍କର ଘ୍ରେଟିଆ କୃଷି ଫାର୍ମଟିକୁ ରାଜୀବଙ୍କ ପରିବାରର ସଭ୍ୟମାନଙ୍କୁ ସମାନ ଭାବରେ ଦାନ କରି ଦେଇଥିଲେ ।

ପଣ୍ଡିତ ନେହେରୁଙ୍କ ରଚନାବଳୀରୁ ପ୍ରାପ୍ୟ ସବୁ ଫିରୋଜ ବରୁଣଙ୍କ ପାଇଁ ଉଇଲ୍ କରି ଦେଇଥିଲେ । ନେହେରୁଙ୍କ କେତେକ ଅନ୍ୟାନ୍ୟ ରଚନାର ପାରିଶ୍ରମିକ ପ୍ରିୟଙ୍କା ଓ ନିଜର ସେହିଭଳି ପ୍ରାପ୍ୟ ସବୁ ରାହୁଲ ପାଇବେ ବୋଲି ଉଇଲ୍‌ରେ ଉଲ୍ଲେଖ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ପଣ୍ଡିତ ନେହେରୁଙ୍କ ରୟାଲଟି ଅର୍ଥରେ ସେ ନିଜେ ବିଦେଶରେ ବିଦ୍ୟାଧ୍ୟୟନ କରିଥିଲେ । ତାଙ୍କ ନାମରେ ଥିବା ସେୟାର ଓ ସିକ୍ୟୁରିଟି ବଣ୍ଡ୍, ୟୁନିଟ୍ ଟ୍ରଷ୍ଟଗୁଡ଼ିକ ତିନି ନାତି ନାତୁଣୀଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟି ଦେଇଥିଲେ ।

ନିଜେ ବ୍ୟବହାର କରୁଥିବା ଅଳଙ୍କାର ଓ ପ୍ରାଚୀନ କଳା ସାମଗ୍ରୀଗୁଡ଼ିକ ନାତୁଣୀ ପ୍ରିୟଙ୍କାକୁ ଦାନ କରି ଦେଇଥିଲେ । ନାତି ରାହୁଲଙ୍କୁ ବ୍ୟକ୍ତିଗତ କାଗଜପତ୍ର ଦେବା ସଙ୍ଗେ ସଙ୍ଗେ ଶ୍ରୀମତୀ ଗାନ୍ଧୀଙ୍କ ଜୀବନର ଅତି ପ୍ରିୟ କଳା, ପର୍ବତ ସମ୍ପର୍କୀୟ ଦୁଷ୍ପ୍ରାପ୍ୟ ପ୍ରକାଶନଗୁଡ଼ିକ ସମେତ ଆନୁଷଙ୍ଗିକ ଅନ୍ୟାନ୍ୟ ସମ୍ପତ୍ତି ସବୁ ପ୍ରିୟଙ୍କା ଓ ରାହୁଲଙ୍କ ମଧ୍ୟରେ ସମାନ ଭାବରେ ବଣ୍ଟାଯିବା ପାଇଁ ଉଇଲ୍ କରି ଦେଇଥିଲେ । ବ୍ୟାଙ୍କ୍‌ରେ ନିଜ ନାମରେ ଗଚ୍ଛିତ ଥିବା ଟଙ୍କାରୁ ବକେୟା କର, ଟିକସ ଋଣ ଓ ବିଲ୍ ସବୁ ପରିଶୋଧ କରାଯିବା ପରେ ଅବଶିଷ୍ଟ ଅର୍ଥ ଫିରୋଜ ବରୁଣଙ୍କୁ ଦେଇ ଦେବାପାଇଁ ଇଚ୍ଛାପ୍ରକାଶ କରିଥିଲେ । ସେଥିପାଇଁ ସେ ନିର୍ଦ୍ଦେଶ ଦେଇଥିଲେ ଯେ, ତାଙ୍କର ସବୁ ପ୍ରାପ୍ୟ ପ୍ରଥମେ ଆଦାୟ କରାଯାଇ ବ୍ୟାଙ୍କ୍‌ରେ ପୂର୍ବରୁ ଥିବା ଅର୍ଥ ସହିତ ଗଚ୍ଛିତ ହେବ । ତାପରେ ଦେୟ ସବୁ ପରିଶୋଧ କରାଯିବା ବ୍ୟବସ୍ଥା ହେବ । ଯଦି ତାହା ସେଥିପାଇଁ ଯଥେଷ୍ଟ ନ ହୁଏ, ତେବେ ଉପକୃତ ହେଉଥିବା ପକ୍ଷମାନେ ପାଇବାକୁ ଥିବା ଅଂଶ ଅନୁପାତରେ ତାହା ଭରଣା କରିବେ ।

ସ୍ୱର୍ଗତ ସଞ୍ଜୟ ଗାନ୍ଧୀଙ୍କ ସମ୍ପତ୍ତିରୁ ତାଙ୍କର ପ୍ରାପ୍ୟ ଅଂଶ ସେ ଫିରୋଜ ବରୁଣଙ୍କୁ ଦାନ କରିଦେବା କଥା ଉଇଲ୍‌ରେ ଉଲ୍ଲେଖ କରିଥିଲେ ।

ତିନି ନାତି-ନାତୁଣୀ ରାହୁଲ, ପ୍ରିୟଙ୍କା ତଥା ବରୁଣ ପ୍ରାପ୍ତବୟସ୍କ ହେବା ପର୍ଯ୍ୟନ୍ତ ସେମାନଙ୍କୁ ଦିଆଯାଇଥିବା ସମସ୍ତ ସମ୍ପତ୍ତିର ଟ୍ରଷ୍ଟିଭାବେ ରାଜୀବ ଓ ସୋନିଆଙ୍କ ମାର୍ଫତରେ ରଖାଯିବା ଉଚିତ ବୋଲି ସେ ଉଇଲ୍‌ରେ ଇଚ୍ଛା ପୋଷଣ କରିଥିଲେ । ଉକ୍ତ ଉଇଲ୍‌ଟିକୁ କାର୍ଯ୍ୟକାରୀ କରାଇବା ପାଇଁ ଶ୍ରୀ ରାଜୀବ ଗାନ୍ଧୀଙ୍କୁ ସେ ନିଯୁକ୍ତ କରି କ୍ଷମତା ପ୍ରଦାନ କରିଥିଲେ ଯେ, ଉଇଲ୍ ସମ୍ପର୍କରେ କୌଣସି ମତ-ମତାନ୍ତର ହେଲେ ରାଜୀବଙ୍କ ନିଷ୍ପତ୍ତି ହିଁ ଚୂଡ଼ାନ୍ତ ବୋଲି ଗ୍ରହଣ କରାଯିବ ।

ବାସ୍ତବ ଦୃଷ୍ଟିକୋଣରୁ ସ୍ୱର୍ଗତ ସଞ୍ଜୟଙ୍କ ପତ୍ନୀ ଓ ପୁତ୍ର ଶ୍ରୀମତୀ ଗାନ୍ଧୀଙ୍କ ପରିବାର ତ୍ୟାଗକରି ଚାଲି ଯାଇଥିଲେ ମଧ୍ୟ ଓ କୌଣସି ସମ୍ପର୍କ ସେମାନଙ୍କ ସହ ରଖିବା ଲାଗି ଆଗ୍ରହୀ ନ ଥିଲେ ମଧ୍ୟ ନୈତିକ ଦୃଷ୍ଟିରୁ ଜେଜେମାଆ ହିସାବରେ ସବୁ ନାତି ଓ ନାତୁଣୀଙ୍କ ପାଇଁ ଶ୍ରୀମତୀ ଗାନ୍ଧୀଙ୍କର ସ୍ନେହ ମମତାପୂର୍ଣ୍ଣ ଏକ ଛଳଛଳ ହୃଦୟର ପରିଚୟ ସ୍ପଷ୍ଟ ।

**ରାଜନୀତିରେ ରାଜୀବ :—**

ଶ୍ରୀଯୁକ୍ତ ସଞ୍ଜୟ ଗାନ୍ଧୀଙ୍କ ମୃତ୍ୟୁ ପରେ ପରେ ଶ୍ରୀମତୀ ଗାନ୍ଧୀ ଏକ ପ୍ରକାର ଆତ୍ମୀୟ ନିଃସଙ୍ଗତା ଅନୁଭବ କରିଥିଲେ । ପୁଣି ବୟସର ଚାପକୁ ଅସ୍ୱୀକାର କରିବାର ସାଧ୍ୟ ବା କାହାର ଅଛି । ତେଣୁ ସେ କାମନା କରିଥିଲେ ଜଣେ ଅତ୍ୟନ୍ତ ଅନ୍ତରଙ୍ଗର ଆତ୍ମୀୟ ସାହାଯ୍ୟ; ଏବଂ ସେଇ କାରଣରୁ ହିଁ ସେ ଚାହିଁଥିଲେ ତାଙ୍କର ଜ୍ୟେଷ୍ଠପୁତ୍ର ରାଜୀବ ଭାରତୀୟ ବିମାନ ବାହିନୀରୁ ଇସ୍ତଫା ଦେଇ ଚାଲିଆସୁ ।

ତାହାହିଁ ହୋଇଥିଲା ।

ଲଜ୍ୟାଶୀଳ ରାଜୀବ ଗାନ୍ଧୀ ନିଜ ଚାକିରିରୁ ଇସ୍ତଫା ଦେଇଥିଲେ । ଯେଉଁଦିନ ସେ ଭାରତୀୟ ବିମାନ ବାହିନୀ ତ୍ୟାଗ କରିଥିଲେ, ସେହିଦିନ ହିଁ ସେ କଂଗ୍ରେସ (ଇ)ର ପ୍ରାଥମିକ ସଭ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ ।

ସେତେବେଳେ ତାଙ୍କର ପ୍ରଥମ ଓ ପ୍ରଧାନ କାର୍ଯ୍ୟ ଥିଲା ବେସରକାରୀ ଭାବେ ଶ୍ରୀମତୀ ଗାନ୍ଧୀଙ୍କୁ ସାହାଯ୍ୟ କରିବା । ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ରକ୍ଷଣା-ବେକ୍ଷଣ କରିବା, ଅଣଆନୁଷ୍ଠାନିକ ଭାବେ ସାକ୍ଷାତ୍ କରିବାପାଇଁ ଆସୁଥିବା ଲୋକଙ୍କ କଥା ବୁଝିବା ଓ ଯୁବସମାଜର ଚିନ୍ତା, ଚେତନା ଓ ଆସୁଥିବା ନୂତନ ପ୍ରସ୍ତାବଗୁଡ଼ିକ ସହିତ ନିଜକୁ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ କରାଇବା । ଏଭଳି ବିଭିନ୍ନ ଘରୋଇ କାର୍ଯ୍ୟର ପରିଚାଳନା ଦିଗରେ ଶ୍ରୀମତୀ ଗାନ୍ଧୀ ତାହାଙ୍କୁ ନିଯୁକ୍ତ କରିଥିଲେ । ଉଲ୍ଲେଖ କରାଯାଇପାରେ ଯେ ଏକଦା ପିତାଙ୍କ ନିକଟରେ ରହି ଶ୍ରୀମତୀ ଗାନ୍ଧୀଙ୍କୁ ମଧ୍ୟ ଠିକ୍ ସେହିଭଳି କାର୍ଯ୍ୟ ସବୁ ସମ୍ପାଦନ କରିବାପାଇଁ ହୋଇଥିଲା ।

ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ନିକଟରେ ରହି ଯେଉଁଭଳି ଭାବରେ ଶ୍ରୀମତୀ ଗାନ୍ଧୀ ତାଙ୍କୁ ସାହାଯ୍ୟ କରିଥିଲେ ଠିକ୍ ସେହିଭଳି ରାଜୀବ ମଧ୍ୟ ତାଙ୍କ ମାତାଙ୍କ ପାଇଁ ହୋଇଥିଲେ ଜଣେ ପ୍ରଧାନ ସହାୟକ ତଥା ସହକର୍ମୀ । କମଳାଙ୍କ ମୃତ୍ୟୁ ପରେ ପଣ୍ଡିତ ନେହେରୁଙ୍କ ଅବସ୍ଥା ଯେଉଁଭଳି ଥିଲା ଓ ଜୀବନର ଶେଷାବସ୍ଥାରେ ସେ ଯେଉଁଭଳି ନିଃସଙ୍ଗ ମନେ କରିଥିଲେ, ଠିକ୍ ସେହିଭଳି ଶ୍ରୀମତୀ ଗାନ୍ଧୀ ମଧ୍ୟ ଅନୁଭବ କରିଥିଲେ ଫିରୋଜ ଓ ସଞ୍ଜୟଙ୍କ ମୃତ୍ୟୁ ତଥା ମେନକାଙ୍କ ଗୃହତ୍ୟାଗ ଘଟଣା ପରେ ପରେ । ପୁଣି ଯେଉଁଭଳି ଭାବରେ ଶ୍ରୀମତୀ

ଗାନ୍ଧୀ ପିତାଙ୍କର ଅତି ନିକଟରେ ରହି ଦେଶର ତଥା ଦେଶ ବାହାରର ଅବସ୍ଥା ଅନୁଧ୍ୟାନ କରିବା ଏବଂ ଦେଶର ପ୍ରମୁଖ ନେତୃବୃନ୍ଦଙ୍କ ସାହଚର୍ଯ୍ୟରେ ରାଜନୈତିକ ପରିସ୍ଥିତିଗୁଡ଼ିକର ଯଥାର୍ଥ ଅନୁଧ୍ୟାନ କରିବା ସୁଯୋଗ ପାଇଥିଲେ, ରାଜୀବଙ୍କୁ ମଧ୍ୟ ଠିକ୍ ସେହିଭଳି ଏକ ପରିସ୍ଥିତି ସହ ସାମିଲ୍ ହେବାକୁ ପଡ଼ିଥିଲା । ତଥାପି ମଧ୍ୟରେ ଏତିକିଥିଲା ଯେ ଶ୍ରୀମତୀ ଗାନ୍ଧୀ ମଞ୍ଚର କେନ୍ଦ୍ରସ୍ଥଳକୁ ଆସିବାପାଇଁ ଯାହା ସମୟ ଲାଗିଥିଲା କିନ୍ତୁ ସେ ସମୟର ସୀମା ରାଜୀବଙ୍କ ପାଇଁ ସଙ୍କୁଚିତ ହୋଇ ଯାଇଥିଲା । ଖୁବ୍ ଶୀଘ୍ର ସେ ମଞ୍ଚର ମଧ୍ୟସ୍ଥଳରେ ପହଞ୍ଚି ପାରିଥିଲେ । ବୃତ୍ତି ତ୍ୟାଗ କରିବା ଦିନ ହିଁ ସେ କଂଗ୍ରେସର ସଭ୍ୟ ହୋଇଥିଲେ ଏବଂ ଚାରି ମାସକ ପରେ ଜନତାର ସମର୍ଥନ କ୍ରମେ ଆମେଥି ନିର୍ବାଚନ ମଣ୍ଡଳୀର ପ୍ରତିନିଧି ଭାବେ ପାର୍ଲ୍ୟାମେଣ୍ଟରେ ଗୋଟିଏ ଆସନର ଅଧିକାରୀ ହୋଇ ପାରିଥିଲେ । କାରଣ କେବଳ ପରିବାର ପରିଚାଳନା ଉଦ୍ଦେଶ୍ୟ ବ୍ୟତୀତ ଶ୍ରୀମତୀ ଗାନ୍ଧୀଙ୍କର ମଧ୍ୟ ଇଚ୍ଛାଥିଲା ରାଜୀବ ସକ୍ରିୟ ରାଜନୀତିରେ ପ୍ରବେଶ କରୁ ।

କିନ୍ତୁ ରାଜୀବ ରାଜନୀତି ପ୍ରତି ପ୍ରଥମରୁ ହିଁ ଆଗ୍ରହୀ ନ ଥିଲେ । ସେ ଥିଲେ ଜଣେ ଶାନ୍ତ, ସରଳ, ନିର୍ଭୀକ ତଥା ଦକ୍ଷ ପାଇଲଟ । ରାଜନୀତି ଅପେକ୍ଷା ସେ ଅଧିକ ଭଲ ପାଉଥିଲେ ସଙ୍ଗୀତକୁ । ଭାରତର ଅଧିକାଂଶ ନେତା କେବଳ କ୍ଷମତା କିମ୍ବା ଅର୍ଥଲୋଭରେ ରାଜନୀତି କରୁଥିଲେ ବୋଲି ତାଙ୍କର ମତ ଥିଲା । ସଭା ସମିତିରେ ଯୋଗଦେବା, ଫୁଲମାଳ, କରତାଳି, ବାହାବା ପ୍ରଭୃତି କାର୍ଯ୍ୟକଳାପଗୁଡ଼ିକ ନିକଟରୁ ଦୂରେଇ ରହିବାପାଇଁ ତାଙ୍କର ଆଗ୍ରହ ଥିଲା ଅଧିକ ।

କିନ୍ତୁ ସଞ୍ଜୟଙ୍କ ମୃତ୍ୟୁ ପରେ ପରେ ସେ ଅବସ୍ଥାର ପରିବର୍ତ୍ତନ ହୋଇଥିଲା । ହୁଏତ ମାଆଙ୍କର ଇଚ୍ଛା ପୂରଣ କରିବାପାଇଁ ସେ ତାଙ୍କର ମତ ପରିବର୍ତ୍ତନ କରିଥିଲେ; ରାଜନୀତିକୁ ଆପଣାର କରିଥିଲେ । ଦେଶର ନେତୃବୃନ୍ଦଙ୍କ ସହିତ ବିଭିନ୍ନ ରାଜନୈତିକ ସମସ୍ୟା ତଥା ଅନ୍ୟାନ୍ୟ ସମସ୍ୟା ସମ୍ପର୍କରେ ଆଲାପ ଆଲୋଚନା ଆରମ୍ଭ କରି ଦେଇଥିଲେ । ଦେଶର ରାଜନୈତିକ ଅବସ୍ଥା, ଦଳର ସାଂଗଠନିକ କାର୍ଯ୍ୟ, ଭାରତର ବୈଦେଶିକ ନୀତି, ପୃଥିବୀର ବିଭିନ୍ନ ଦେଶ ସହିତ ଆମ ଦେଶର ସମ୍ପର୍କ ପ୍ରଭୃତି ବିଷୟରେ ଅଧିକରୁ ଅଧିକ ଜାଣିବା ଲାଗି ଆଗ୍ରହ ପ୍ରକାଶ କରିଥିଲେ । ସେଥିଲାଗି ସେ ମିଳାମିଶା କରିଥିଲେ କଂଗ୍ରେସ (ଇ)ର ସେକ୍ରେଟାରୀ ତଥା ଭିନ୍ନ ନେତାମାନଙ୍କ ସହ, ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ସହ ଏବଂ ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ତଥା ଦଳର ବଡ଼ପଣ୍ଡାମାନଙ୍କ ସହ । ଏସବୁ ସେ କରିଥିଲେ ନିଜର ରାଜନୈତିକ ଅଭିଜ୍ଞତା ପାଇଁ ।

ପୂର୍ବରୁ, ରାଜୀବ ରାଜନୀତିରେ ଅଂଶ ଗ୍ରହଣ କରନ୍ତୁ ବୋଲି ଅନୁରୋଧ ଜଣାଇ ପ୍ରାୟ ତିନିଶହ ପାର୍ଲ୍ୟାମେଣ୍ଟ ସଭ୍ୟ ଆବେଦନ ଜଣାଇଥିଲେ,

କଂଗ୍ରେସର ଶହ ଶହ ସଭ୍ୟ ଦାବୀ କରିଥିଲେ ଏବଂ ବିଭିନ୍ନ ରାଜ୍ୟରୁ କଂଗ୍ରେସ ସଭ୍ୟ ତଥା ସମର୍ଥକମାନେ ପ୍ରଧାନମନ୍ତ୍ରୀଙ୍କ ବାସଭବନ ସମ୍ମୁଖରେ ଉପସ୍ଥିତ ହୋଇ ସେଇ ଅନୁରୋଧ ମଧ୍ୟ ଜଣାଇଥିଲେ । ତତ୍କାଳୀନ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଜ୍ଞାନୀ ଜୈଲ ସିଂହଙ୍କ ସମେତ ଅନ୍ୟ ଅନେକ ନେତୃସ୍ଥାନୀୟ ବ୍ୟକ୍ତି ତଥା କେତେକ ବରିଷ୍ଠ ଶିଳ୍ପପତି ଓ ବ୍ୟବସାୟୀ ମଧ୍ୟ ସେଇ ଇଚ୍ଛା ପୋଷଣ କରିଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ଇଚ୍ଛା ସହିତ ଦେଶବାସୀଙ୍କ ଇଚ୍ଛା ଏକାକାର ହୋଇ ଯାଇଥିଲା ।

ଶ୍ରୀ ରାଜୀବ ଚାକିରୀ ତ୍ୟାଗ କରିବାର ଅବ୍ୟବହିତ ପରେ ପରେ, ୧୯୮୧ ମସିହା ମଇ ମାସରେ କଂଗ୍ରେସ (ଇ) ପାର୍ଲ୍ୟାମେଣ୍ଟାରୀ ବୋର୍ଡ଼ ଆମେଥି ନିର୍ବାଚନ ମଣ୍ଡଳୀର ଉପନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା ପାଇଁ ତାଙ୍କ ନାମ ପ୍ରସ୍ତାବ କରିଥିଲା । ଚାକିରୀରୁ ରାଜନୈତିକ କ୍ଷେତ୍ରକୁ ରାଜୀବ ଲମ୍ଫ ପ୍ରଦାନ କରିଥିଲେ । ଯେଉଁଥିପାଇଁ ତାଙ୍କର ମାନସିକ ପରିବର୍ତ୍ତନ ସହିତ ବେଶ ପୋଷାକରେ ମଧ୍ୟ ପରିବର୍ତ୍ତନ ଚାହିଁଥିଲେ ଶୁଭେଚ୍ଛୁ ବୃନ୍ଦ ।

ଆମେଥି ନିର୍ବାଚନ ମଣ୍ଡଳୀରେ ନିର୍ବାଚନ ପ୍ରଚାର ପାଇଁ ଯିବା ପୂର୍ବରୁ ତାଙ୍କର ଶୁଭେଚ୍ଛୁମାନେ ବିସ୍ତାର ସହିତ ଆଲୋଚନା କରିଥିଲେ ଯେ, ସେ କଂଗ୍ରେସୀ ଟୋପୀଟିଏ ପରିଧାନ କଲେ ପଣ୍ଡିତ ନେହେରୁଙ୍କ ଚେହେରାର ଅନେକ ସାମଞ୍ଜସ୍ୟ ବଜାୟ ରଖିପାରିବେ । ସେମାନଙ୍କ ମୀମାଂଶାକୁ ରାଜୀବ ଗ୍ରହଣ କରି ନେଇଥିଲେ । ବିମାନ ବାହିନୀର ଧଳା କ୍ୟାପ୍ ପରିବର୍ତ୍ତେ କଂଗ୍ରେସ ଟୋପୀ ପରିଧାନ କରିବା ଆରମ୍ଭ କରିଥିଲେ ସେ । ୧୯୮୧ ମସିହା ଜୁନ୍‌ରେ ଅନୁଷ୍ଠିତ ସେହି ଉପନିର୍ବାଚନରେ ସେ ବିଜୟ ଲାଭକରି ଜଣେ ପାର୍ଲ୍ୟାମେଣ୍ଟ ସଭ୍ୟଭାବରେ ଶପଥ ଗ୍ରହଣ କରିଥିଲେ । ଆନୁଷ୍ଠାନିକ ଭାବେ ୩୬ ବୟସରେ ତାଙ୍କର ରାଜନୈତିକ ଜୀବନ ସେଠାରୁ ଆରମ୍ଭ ହୋଇଥିଲା ।

ପାର୍ଲ୍ୟାମେଣ୍ଟ ସଭ୍ୟ ଭାବେ ଶପଥ ଗ୍ରହଣ କରିସାରିବା ପରେ ପରେ ଦଳର ଏମ୍ ପି. ମାନେ ଦାବୀ କରିଥିଲେ ଯେ ଦଳ ସଙ୍ଗଠନ ଦିଗରେ ତାଙ୍କୁ ଏକ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟଭାର ଦିଆଯାଉ । ଦଳର ଜଣେ ସାଧାରଣ ସେକ୍ରେଟାରୀ ଭାବେ ରାଜୀବଙ୍କୁ ଗ୍ରହଣ କରାଯିବା ଲାଗି ସେମାନେ ଅନୁରୋଧ କରିଥିଲେ ଦଳର ହାଇକମାଣ୍ଡଙ୍କୁ । କିନ୍ତୁ ବ୍ୟକ୍ତିଗତ ଭାବେ ରାଜୀବ ନିଜେ ତାହା ଇଚ୍ଛା କରୁନଥିଲେ । କାରଣ ପ୍ରଥମରୁ ନିଜମାତା ପ୍ରତି ବିଶ୍ୱସ୍ତ ରାଜୀବ ଚାହୁଁଥିଲେ କ୍ରମଶଃ ସେ ବିଭିନ୍ନ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ଗ୍ରହଣ କରିବେ । ତା ଫଳରେ ଦେଶ ବିଦେଶର ତଥା ଦଳର ବିଭିନ୍ନ କାର୍ଯ୍ୟକଳାପ ତଥା ବିଭିନ୍ନ ପ୍ରକାରର ପରିସ୍ଥିତିଗୁଡ଼ିକୁ ଗମ୍ଭୀର ଭାବରେ ଅନୁଧ୍ୟାନ କରିବା ସୁଯୋଗ ସେ ପାଇ ପାରିବେ । ତଥାପି ପଞ୍ଜାବ, ହରିଆନା, ମଧ୍ୟପ୍ରଦେଶ ପ୍ରଭୃତି ପ୍ରାଦେଶିକ କମିଟିଗୁଡ଼ିକ ପ୍ରସ୍ତାବ ଦେଇଥିଲେ ଯେ ଶ୍ରୀମତୀ ଗାନ୍ଧୀ ସଦ୍ୟ

କଂଗ୍ରେସ (ଇ) ର ସଭାନେତ୍ରୀ ପଦବୀ ତ୍ୟାଗ କରନ୍ତି ତାହେଲେ ସେହି ଦାୟିତ୍ୱ ରାଜୀବଙ୍କୁ ଦିଆଯିବା ଉଚିତ ।

ତା ପରେ ପରେ ରାଜୀବ କଂଗ୍ରେସ (ଇ) ଦଳ ପାଇଁ କିଛି କିଛି କାର୍ଯ୍ୟ କରିବା ଆରମ୍ଭ କରି ଦେଇଥିଲେ । ଆନ୍ଧ୍ର ପ୍ରଦେଶ, ହରିଆନା ଓ ହିମାଚଳ ପ୍ରଦେଶ-ଗୁଡ଼ିକର ବିଧାନସଭା ନିର୍ବାଚନ ପାଇଁ ପାର୍ଟି ତରଫରୁ ପ୍ରାର୍ଥୀ ତାଲିକା ଚୂଡ଼ାନ୍ତ କରିବା ଦିଗରେ ସେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ସେଥର ଆନ୍ଧ୍ର ପ୍ରଦେଶରେ ଦଳର ଚରମ ବିପର୍ଯ୍ୟୟ ଘଟିଥିଲା । ରାମାରାଓଙ୍କ ନେତୃତ୍ୱରେ ନବଗଠିତ ତେଲୁଗୁ ଦେଶମ୍ ଦଳର ସାଫଲ୍ୟ ଆନ୍ଧ୍ରପ୍ରଦେଶ ପାଇଁ ଥିଲା ଉଲ୍ଲେଖଯୋଗ୍ୟ ।

ନିର୍ବାଚନରେ ଜୟ ପରାଜୟ କେବଳ ପ୍ରାର୍ଥୀଙ୍କ ଉପରେ ନିର୍ଭର କରେ ନାହିଁ । ସେଥିପାଇଁ ଅନ୍ୟାନ୍ୟ ଅନେକ କାରଣ ଥାଇପାରେ । ତଥାପି ଆନ୍ଧ୍ରରେ କଂଗ୍ରେସର ପରାଜୟ ଲାଗି ରାଜୀବଙ୍କ ବିରୁଦ୍ଧରେ ମୃଦୁ ଗୁଞ୍ଜରଣ ସୃଷ୍ଟି ହୋଇଥିଲା । ରାଜନୀତିର ମୁଖ୍ୟ ସ୍ରୋତ ନିକଟରୁ ସେ ବହୁ ଦୂରରେ ରହି ପ୍ରାର୍ଥୀ ନିର୍ବାଚନ କରିଥିବା ଯୋଗୁଁ ଏପରି ଅବସ୍ଥା ଭୋଗ କରିବାକୁ ପଡ଼ିଥିଲା ବୋଲି ଅନେକେ ମତବ୍ୟକ୍ତ କରିଥିଲେ । ତେଣୁ ଦଳ ସହିତ ନିବିଡ଼ ଭାବରେ ସଂଶ୍ଳିଷ୍ଟ ରହିବାପାଇଁ ଏବଂ କଂଗ୍ରେସର ସଭ୍ୟ, ସମର୍ଥକ ତଥା ରାଜ୍ୟ କଂଗ୍ରେସ (ଇ) କମିଟିର ସଭ୍ୟମାନଙ୍କ ଦାବୀକୁ ଗ୍ରହଣ କରାଯାଇ ରାଜୀବଙ୍କୁ ୧୯୮୩ ମସିହା ଫେବୃୟାରୀ ୨ ତାରିଖରେ କଂଗ୍ରେସ (ଇ) ଦଳର ଜଣେ ସାଧାରଣ ସମ୍ପାଦକ ଭାବେ ମନୋନୟନ କରା-ଯାଇଥିଲା । କେବଳ ସେତିକି ନ ଥିଲା, ତା ପୂର୍ବରୁ ଓ ପରେ ମଧ୍ୟ ତାହାଙ୍କୁ କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ସ୍ଥାନ ଦିଆଯାଉ ବୋଲି ଅନେକ ଦାବୀ ହୋଇଥିଲା । କିନ୍ତୁ ଶ୍ରୀମତୀ ଗାନ୍ଧୀ ସେ ଦାବୀକୁ ମାନିନେବା ଲାଗି ଆଦୌ ପ୍ରସ୍ତୁତ ନ ଥିଲେ, କାରଣ ସେ ମନେ-କରିଥିଲେ ସେଥିପାଇଁ ଆହୁରି ଅନେକ ଅଭିଜ୍ଞତା ଆବଶ୍ୟକ ।

କିନ୍ତୁ ତଥାପି ରାଜୀବ କ୍ରମେ କ୍ରମେ ଭାରତୀୟ ରଙ୍ଗମଞ୍ଚରେ ଏକ ଗୁରୁତ୍ୱ-ପୂର୍ଣ୍ଣ ସ୍ଥାନର ଅଧିକାରୀ ହୋଇ ପାରିଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ପଛକୁ ତାଙ୍କର ସ୍ଥାନ ନିରୂପଣ କରି ବିଭିନ୍ନ ପତ୍ର ପତ୍ରିକା ଓ ନେତାମାନେ ମଧ୍ୟ ମତପ୍ରକାଶ କରିଥିଲେ । ସି. ଏମ୍. ଷ୍ଟିଫେନ୍ ସେତେବେଳେ ଅନେକବାର ପ୍ରକାଶ କରିଥିଲେ "ଯଦି ସେ (ରାଜୀବ) ଜଣେ ଯୋଗ୍ୟ ସ୍ୱାମୀ ଓ ଉତ୍ତମ ପାଇଲଟ ହୋଇପାରନ୍ତି ତେବେ ସେ ମଧ୍ୟ ଜଣେ ଅତି ଶ୍ରେଷ୍ଠ ନେତା ହୋଇ ପାରିବେ । ସେତେବେଳକାର ମୁଖ୍ୟମନ୍ତ୍ରୀ ଅର୍ଜ୍ଜୁନ ସିଂହ ମତବ୍ୟକ୍ତ କରିଥିଲେ "ଦେଶର ଜଣେ ପ୍ରମୁଖ ନେତା ହିସାବରେ ରାଜୀବଙ୍କ ନିକଟରେ ବୁଦ୍ଧ, ବିବେକାନନ୍ଦ, ତିଳକ, ଗାନ୍ଧୀ ଓ ନେହେରୁଙ୍କ ଗୁଣା-ବଳୀରେ ସମାହାର ହୋଇଥିଲା ।" ବିହାରର ତତ୍କାଳୀନ ମୁଖ୍ୟମନ୍ତ୍ରୀ ମତ

ଦେଇଥିଲେ "କେବଳ ଜଣେ ମାତ୍ର ବ୍ୟକ୍ତି-ରାଜୀବଙ୍କ ଉପରେ କଂଗ୍ରେସ ଦଳ ତାର ସମ୍ପୂର୍ଣ୍ଣ ଆସ୍ଥା ସ୍ଥାପନ କରିପାରେ ।" *

ସେନ୍‌ସମିଷ୍ଟରଙ୍କ ସ୍ୱଷ୍ୟ ଅନୁଯାୟୀ ଶ୍ରୀ ରାଜୀବ ଗାନ୍ଧୀଙ୍କୁ ମହାନ୍ କରାଇ ଦିଆଯାଇଥିଲା । ସେ ମହାନ୍ ହୋଇ ଜନ୍ମଗ୍ରହଣ କରି ନ ଥିଲେ କିମ୍ବା ପରିବେଶ ଓ ପରିସ୍ଥିତି ମଧ୍ୟ ସେଥିପାଇଁ ତାଙ୍କୁ ସହାୟକ ହୋଇ ନ ଥିଲା । କିନ୍ତୁ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ଉକ୍ତ ଉନ୍ନ ଧରଣର କଳ୍ପନା କିଛି ଅବଦାନ ଥିଲା ।

**ରାଜୀବ : ଶ୍ରୀମତୀ ଗାନ୍ଧୀଙ୍କ ଶ୍ରେଷ୍ଠ ଉପହାର :—**

ଥରେ ଆମେରିକାର ଗୋଟିଏ ସମ୍ବାଦ ପତ୍ରରେ ପ୍ରତିନିଧିଙ୍କ ସହ ସାକ୍ଷାତ୍‌କାର ବେଳେ ଶ୍ରୀମତୀ ଗାନ୍ଧୀ ପ୍ରକାଶ କରିଥିଲେ—"ରାଜୀବ ମୋର ଉତ୍ତରାଧିକାରୀ ହେଉବୋଲି ମୁଁ ଚାହେଁ ନାହିଁ । ମୁଁ ଚାହେଁ ଜନସାଧାରଣ ଯାହାକୁ ମନୋନୀତ କରିବେ ସେଇହିଁ ମୋର ଉତ୍ତରାଧିକାରୀ ହୁଅନ୍ତୁ ।" ତଥାପି ସେ ଚାହିଁଥିଲେ ରାଜୀବ ଯାହା କରୁନା କାହିଁକି, ସେ ଦେଶର ଜନଗଣଙ୍କ ସେବା କରିବା ଉଚିତ । କାରଣ ସମ୍ପର୍କରେ ସେ ମତାମତ ଦେଇଥିଲେ ଯେ ତାହାହିଁ ତାଙ୍କ ପରିବାରର ପରମ୍ପରା । ସେ ସମ୍ପର୍କରେ ସେ ପୁଣି ମତ ଦେଇଥିଲେ ଯେ, ସ୍ୱାଧୀନତା ସଂଗ୍ରାମ ବେଳେ ଆମ୍ଭେମାନେ ଯେଉଁ ସ୍ୱପ୍ନ ଦେଖିଥିଲୁ, ତାହା ଏପର୍ଯ୍ୟନ୍ତ ବାସ୍ତବରେ ପରିଣତ ହୋଇ ନାହିଁ ।

ଆଉ ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ସେ ମତପ୍ରକାଶ କରିଥିଲେ ଯେ "ମୁଁ ସତ କହୁଛି, କିନ୍ତୁ କେହି ମତେ ବିଶ୍ୱାସ କରିବେ ନାହିଁ ଯେ ମୁଁ ଏହି ପଦବୀ ଚାହିଁ ନ ଥିଲି ।" —ତାହାହେଲେ ପୃଥିବୀର ସେହି କଷ୍ଟକର ଦାୟିତ୍ୱ ତୁଲାଇ ଯଦି ସେ କ୍ଳାନ୍ତ ହୋଇ ପଡ଼ିଥିଲେ ତାହେଲେ ସେହି କଷ୍ଟକର କାର୍ଯ୍ୟରୁ କାହିଁକି ଅବ୍ୟାହତି ନେଉ ନାହାନ୍ତି ବୋଲି ପ୍ରଶ୍ନର ଉତ୍ତରରେ ସେ କହିଥିଲେ ଯେ "ତୁମେ ଯଦି ଥରେ ବାଘ ଉପରେ ସବାର ହୋଇଯାଅ, ତେବେ ସେ ବାଘ ଉପରୁ ଓହ୍ଲାଇବା ଏତେ ସହଜସାଧ୍ୟ ନୁହେଁ ।"†

ହୁଏତ ସେତେବେଳେ ଶ୍ରୀମତୀ ଗାନ୍ଧୀ ନିଜେ ବାଘ ଉପରେ ସବାର ହୋଇ ଇଚ୍ଛାକଲେ ମଧ୍ୟ ଓହ୍ଲାଇ ନ ପାରିବାର କଷ୍ଟ ଅନୁଭବ କରିପାରିବା ପରେ ରାଜୀବ ସେ କଷ୍ଟ ଅନୁଭବ ନ କରୁ ବୋଲି ସେ ସେତେବେଳେ ଚିନ୍ତା କରିଥିଲେ ।

* Selling of Rajiv Gandhi – By Janardan Thakur Illustrated weekly. Oct. 9, 19⁸3—P—20

† ସମାଜ—25.3.84

ତଥାପି ସେଇ ମହାବଳ ବାଘ ଉପରେ ସବାର ହେବାକୁ ହିଁ ପଡ଼ିଥିଲା ଶ୍ରୀ ରାଜୀବ ଗାନ୍ଧୀଙ୍କୁ । କାରଣ ଥରେ ରାଜନୀତିରେ ପ୍ରବେଶ କରିସାରିବା ପରେ ତାଙ୍କ ପାଇଁ ଆଉ ଅନ୍ୟ କୌଣସି ମୁକ୍ତିର ପଥ ନ ଥିଲା ଏବଂ ଏହା ମଧ୍ୟ ଉଲ୍ଲେଖ କରାଯାଇ ପାରେ ଯେ ରାଜନୀତିରେ ରାଜୀବଙ୍କ ପାଇଁ ଶ୍ରୀମତୀ ଗାନ୍ଧୀ ଏକ ପ୍ରଶସ୍ତ ରାସ୍ତା ଉନ୍ମୋଚନ କରି ଦେଇଥିଲେ । ଏହା ହୁଏତ ଏଇଥିପାଇଁ ହୋଇପାରେ ଯେ ଶ୍ରୀମତୀ ଗାନ୍ଧୀଙ୍କ ଆନ୍ତରିକ ଅନୁଭବ ଥିଲା—"ରାଜନୀତିରେ ପ୍ରବେଶ ନ କଲେ ପ୍ରକୃତ ଜନସେବା କରିହେବ ନାହିଁ ଏବଂ ଦେଶର ସ୍ୱାଧୀନତା ଆନ୍ଦୋଳନ ବେଳର ଲକ୍ଷ୍ୟ ତଥା ବର୍ତ୍ତମାନ ଭାରତର ଉଦ୍ଦେଶ୍ୟ ପୂରଣ ହୋଇ ପାରିବ ନାହିଁ ।"

ଶ୍ରୀମତୀ ଗାନ୍ଧୀଙ୍କ ଭାରତୀୟ ରାଜନୀତି ପାଇଁ ଉପହାରର ମୂଲ୍ୟଥିଲା ପ୍ରକୃତରେ ମୂଲ୍ୟବାନ । କାରଣ ଅତି ଅଳ୍ପ ସମୟ ମଧ୍ୟରେ ଶ୍ରୀ ରାଜୀବ ଗାନ୍ଧୀ ଦେଶର ମୁଖ୍ୟ ସ୍ଥାନ କେବଳ ଅଧିକାର କରି ନ ଥିଲେ, ନିଜର କାର୍ଯ୍ୟ କଳାପରେ ଚରମ ଉତ୍କର୍ଷତା ପ୍ରତିପାଦନ କରିଥିଲେ ମଧ୍ୟ । ତାଙ୍କର ଯୁବମାନସର ଚିନ୍ତା ଓ ପ୍ରତିଫଳନ ଚେତନା ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀମାନଙ୍କ ଅପେକ୍ଷା ଅଧିକ ଶ୍ରେଷ୍ଠତା ପ୍ରତିପାଦନ କରି ପାରିଥିଲା ।

□ □ □

॥ ପଚିଶି ॥

# ସମସ୍ୟାର ବ୍ୟୂହଭେଦ



ଆମେରିକାର ଜଣେ ବିଶିଷ୍ଟ ଶିକ୍ଷାବିତ୍ ତଥା ସମାଲୋଚକ ଆଡ୍‌ଲାଇ ଇ. ଷ୍ଟିଭେନ୍‌ସନ୍ ରାଷ୍ଟ୍ରପତି ଜନ୍‌ସନ୍‌ଙ୍କ ନେତୃତ୍ୱ ସମ୍ପର୍କରେ ଥରେ ତାଙ୍କର ଭାଷଣ ଓ ରଚନା ସଙ୍କଳିତ ଏକ ପୁସ୍ତକର ମୁଖବନ୍ଧରେ ମତବ୍ୟକ୍ତ କରିଥିଲେ—"ଜଣେ ପ୍ରବୀଣ ରାଜନୈତିକ ନେତା ହିଁ ସମସ୍ତ ପ୍ରତିକୂଳ ପରିବେଶରେ ମଧ୍ୟ ଜନତାଙ୍କୁ ସଠିକ୍ ମାର୍ଗରେ ପରିଚାଳିତ କରିପାରେ । ଉଚିତ ମନେକଲେ ପରିସ୍ଥିତିର ମୁକାବିଲା କରିବାପାଇଁ ନିଜ ମତରେ ଟାଳଟୁଳ ନ ରହି ସାମାନ୍ୟ ପଛକୁ ହଟି ଆସିବାଲାଗି କୁଣ୍ଠାବୋଧ କରେ ନାହିଁ । କିନ୍ତୁ ସେ ସବୁବେଳେ ନିଜେ ଦୃଢ଼ ରହି, ନିଜ ମନକୁ ଶୃଙ୍ଖଳିତ କରି, ରାଜନୈତିକ ଝଡ଼ଝଞ୍ଜା ପ୍ରତି ସାମାନ୍ୟ ଭ୍ରୂକ୍ଷେପ ନ କରି ଜନଗଣଙ୍କୁ ଉଚିତ୍ ମାର୍ଗରେ ପରିଚାଳିତ କରିବା କର୍ତ୍ତବ୍ୟ ବୋଲି ମନେ କରିଥାଏ । ରାଜନୈତିକ କ୍ଷେତ୍ରରେ କାର୍ଯ୍ୟ କରୁଥିବା ନେତୃବୃନ୍ଦ ସମାଲୋଚନାର ଶରବ୍ୟ ହେବା ଏକ ସାଧାରଣ କଥା !"

ଭାରତର ସ୍ୱର୍ଗତ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ କ୍ଷେତ୍ରରେ ମଧ୍ୟ ସେ ଉକ୍ତିକୁ ପ୍ରୟୋଗ କରାଯାଇପାରେ । *

ଚୀନ ଓ ପାକିସ୍ତାନ ଭଳି ପଡ଼ୋଶୀ ଦେଶଗୁଡ଼ିକ ତରଫରୁ ବହିଃ ଆକ୍ରମଣଜନିତ ସମସ୍ୟା ସହିତ ଭାରତ ଭଳି ଏକ ବିଭିନ୍ନ ଭାଷା ଓ ଧର୍ମାବଲମ୍ବୀ ରାଷ୍ଟ୍ରରେ ବିଭିନ୍ନ ପ୍ରଦେଶଗୁଡ଼ିକର ଆଭ୍ୟନ୍ତରୀଣ ସମସ୍ୟାଗୁଡ଼ିକ ଶ୍ରୀମତୀ ଗାନ୍ଧୀଙ୍କ ଶାସନ କାଳରେ ଅନେକ ବ୍ୟୂହ ରଚନା କରିଥିଲା । ତଥାପି ସେ ବ୍ୟୂହଭେଦ

---

* A Time for action—Lyndan B. Johnson, Washington Square Press Inc P-10.

କରିବାପାଇଁ ଶ୍ରୀମତୀ ଗାନ୍ଧୀ ଅନବରତ ଉଦ୍ୟମଶୀଳ ଥିଲେ । ପ୍ରାୟ ତାଙ୍କର ଉଦ୍ୟମରେ ଅବହେଳା ନ ଥିଲେ ମଧ୍ୟ କେବଳ ପଞ୍ଜାବ ସମସ୍ୟା ହିଁ ତାଙ୍କର ଜୀବଦ୍ଦଶା ମଧ୍ୟରେ ସମାହିତ ହୋଇପାରି ନ ଥିଲା । ଆସାମର ଉଦ୍‌ବେଳିତ ଅବସ୍ଥାର ଅବସାନ ଘଟିବା ସଙ୍ଗେ ସଙ୍ଗେ, ସିକିମର ଆଭ୍ୟନ୍ତରୀଣ ସମସ୍ୟାକୁ ସମାଧାନ କରିବାପାଇଁ ଭାରତ ସହ ତାର ସମ୍ମିଶ୍ରଣ କରାଇବା ସମେତ ଭାରତରେ ବଙ୍ଗଳାଦେଶ ଓ ପାକିସ୍ଥାନର ପ୍ରତିନିଧିମାନଙ୍କୁ ନେଇ ଏକ ତ୍ରିପକ୍ଷୀୟ ସମ୍ମେଳନ ଅନୁଷ୍ଠିତ କରାଇ ତିନି ଦେଶରେ ଶାନ୍ତି ପ୍ରତିଷ୍ଠା ପାଇଁ ସଫଳ ଉଦ୍ୟମ କରିଥିଲେ । ପୁଣି ପ୍ରାୟ ସ୍ୱାଧୀନତା ପରଠାରୁ କାଶ୍ମୀରରେ ଲାଗି ରହିଥିବା ରାଜନୈତିକ ଅବସ୍ଥାର ସମାଧାନ ପାଇଁ ତାଙ୍କ ଉଦ୍ୟମ ନିଶ୍ଚୟ ସ୍ମରଣୀୟ । ସମସ୍ୟାଗୁଡ଼ିକର ସମାଧାନ କରିବାପାଇଁ କେତେବେଳେ ସେ ନିଜ ନୀତିରେ ଟାଳଟୁଳ ରହିବାବେଳେ ଆଉ କେତେବେଳେ ନିଜ ନୀତିରୁ ମଧ୍ୟ କିଛିଟା ଓହରି ଆସିବାପାଇଁ କୁଣ୍ଠିତ ନ ଥିଲେ । କିନ୍ତୁ ସେଇ ଗୋଟିଏ ଆଦର୍ଶ—ଜନଜୀବନର ସାମୂହିକ ଉନ୍ନତି ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ।

**କାଶ୍ମୀର ଭାରତର ଅବିଚ୍ଛେଦ୍ୟ ଅଙ୍ଗ :—**

ଆକୁମାରୀ ହିମାଚଳ ପର୍ଯ୍ୟନ୍ତ ଭାରତର ଜାତୀୟ ଅଖଣ୍ଡତା ରକ୍ଷା କରିବାପାଇଁ ଶ୍ରୀମତୀ ଗାନ୍ଧୀ ଆଜୀବନ ଆନ୍ତରିକ ଉଦ୍ୟମ କରିଥିଲେ । ସେହି ଦୃଷ୍ଟିରୁ ଭାରତର ଏକ ସୀମାନ୍ତ ଅଞ୍ଚଳ କାଶ୍ମୀରରେ ଦୀର୍ଘକାଳ ଧରି ଲାଗି ରହିଥିବା ସାମାଜିକ ଉଦ୍‌ବେଳନର ପରିସମାପ୍ତି ଘଟାଇବା ପାଇଁ ସେଠିକାର ଅପ୍ରତିଦ୍ୱନ୍ଦୀ ନେତା ଶେଖ୍ ଅବଦୁଲ୍ଲାଙ୍କ ସହ ଆପୋଷ ମିଳାମିଶା ଉଦ୍ୟମ ନିଶ୍ଚୟ ଉଲ୍ଲେଖଯୋଗ୍ୟ ।

ଶ୍ରୀମତୀ ଗାନ୍ଧୀ ଦୃଢ଼ ଭାବରେ ବିଶ୍ୱାସ କରିଥିଲେ ଯେ, ଜାମ୍ମୁ ଓ କାଶ୍ମୀରର ଶାସନ ଦାୟିତ୍ୱ ଶେଖ୍ ଅବଦୁଲା ଗ୍ରହଣ କଲେ ହିଁ ସେଠାରେ ପ୍ରାୟ ଭାରତର ସ୍ୱାଧୀନତା ପରଠାରୁ ଲାଗି ରହିଥିବା ରାଜନୈତିକ ତଥା ସାମାଜିକ ଅସ୍ଥିରତାର ଅବସାନ ଘଟିବ । ତେଣୁ ଶ୍ରୀମତୀ ଗାନ୍ଧୀ ନିଜେ ଶେଖ୍ ଅବଦୁଲା ତଥା ତାହାଙ୍କ ତରଫରୁ ପ୍ରତିନିଧିମାନଙ୍କ ସହିତ ଆଲୋଚନା ଆରମ୍ଭ କରିଥିଲେ । ତାପରେ ତାହାଙ୍କୁ ଜାମ୍ମୁ-କାଶ୍ମୀରର ଦାୟିତ୍ୱ ଦିଆଯିବା ସ୍ଥିର ହୋଇଥିଲା ଏବଂ ସେ ସମ୍ପର୍କରେ ଶ୍ରୀମତୀ ଗାନ୍ଧୀ ପାର୍ଲ୍ୟାମେଣ୍ଟରେ ଏକ ଘୋଷଣା କରିଥିଲେ ।

ଉଭୟ ପକ୍ଷର କଥାବାର୍ତ୍ତାରେ ସ୍ଥିର ହୋଇଥିଲା ଯେ ତତ୍‌କାଳୀନ କାଶ୍ମୀରର ମୁଖ୍ୟମନ୍ତ୍ରୀ ସୟଦ୍ ମିର କାସିମ୍‌ଙ୍କ ସ୍ୱେଚ୍ଛାକୃତ ଇସ୍ତଫା ପରେ ପରେ ଅବ୍‌ଦୁଲ୍ଲା ମେଠି କଂଗ୍ରେସର ନେତୃତ୍ୱ ଗ୍ରହଣ କରିବେ; ସେଥିପାଇଁ ଜାମ୍ମୁ-କାଶ୍ମୀର କଂଗ୍ରେସ ଦଳର କିମ୍ବା ବିଧାନସଭାର କୌଣସି ସାଙ୍ଗଠନିକ ପରିବର୍ତ୍ତନ ହେବ

ନାହିଁ । ପରେ ପରେ ଶେଖ୍ ଜନସାଧାରଣଙ୍କ ପ୍ରତିନିଧି ହେବାପାଇଁ ବ୍ୟବସ୍ଥା କରିବେ । ପ୍ରାଥମିକ ଅବସ୍ଥାରେ ସେ ସମସ୍ତ ଅଞ୍ଚଳକୁ ପ୍ରତିନିଧିତ୍ୱ କରୁଥିବା ଓ ସମସ୍ତଙ୍କ ଆସ୍ଥାଭାଜନ ହୋଇ ପାରୁଥିବା ଭଳି ଗୋଟିଏ ଛୋଟିଆ ମନ୍ତ୍ରୀମଣ୍ଡଳ ଗଠନ କରିବେ । ପୁନଶ୍ଚ ଭାରତୀୟ ସମ୍ବିଧାନର ୩୭୦ ଧାରା ଅନୁଯାୟୀ ଜାମ୍ମୁ-କାଶ୍ମୀରର ଅଧିବାସୀମାନେ ଯେଉଁସବୁ ସ୍ୱତନ୍ତ୍ର ସୁବିଧା ଉପଭୋଗ କରୁଥିଲେ, ସେମାନେ ସେଥିରୁ ମଧ୍ୟ ବଞ୍ଚିତ ହେବେ ନାହିଁ ।

୧୯୫୩ ମସିହାରେ ଶାସନ ଦାୟିତ୍ୱରୁ ଅବ୍ୟାହତି ପାଇଥିବା ଶେଖ୍ ଅବଦୁଲ୍ଲା ପୁନଶ୍ଚ ଜାମ୍ମୁ-କାଶ୍ମୀରର ଶାସନ ପରିଚାଳନା ଦାୟିତ୍ୱ ଗ୍ରହଣ କରିଥିଲେ ୧୯୭୫ ମସିହାରେ । ଭାରତର ଏକ ସମସ୍ୟା ବହୁଳ ସୀମାନ୍ତ ଅଞ୍ଚଳରେ ଶାନ୍ତି ଫେରାଇ ଆଣିବାଲାଗି ଶ୍ରୀମତୀ ଗାନ୍ଧୀଙ୍କ ଉଦ୍ୟମ ସଫଳ ହୋଇଥିଲା । ଯେଉଁ ସମସ୍ୟା ପଣ୍ଡିତ ନେହେରୁଙ୍କ ଦ୍ୱାରା ସମାଧାନ କରାଯାଇ ପାରି ନ ଥିଲା ଶ୍ରୀମତୀ ଇନ୍ଦିରାଗାନ୍ଧୀ ସେ ସମାଧାନର ସୂତ୍ର ଆବିଷ୍କାର କରି ପାରିଥିଲେ ।

ଭାରତର ଆଭ୍ୟନ୍ତରୀଣ ବ୍ୟାପାରରେ କାଶ୍ମୀର ସମସ୍ୟା ନେଇ ଭାରତୀୟ ନେତୃବୃନ୍ଦଙ୍କ ମନୋମାଳିନ୍ୟକୁ ଦୂର କରିବାପାଇଁ ସମାଧାନର ସୂତ୍ର ଦେଶବାସୀଙ୍କ ନିକଟରେ ଯେତିକି ଗୁରୁତ୍ୱପୂର୍ଣ୍ଣ ଥିଲା, ଠିକ୍ ସେମିତି ଆନ୍ତର୍ଜାତିକ କ୍ଷେତ୍ରରେ ପାକିସ୍ଥାନ ଓ ବଙ୍ଗଳାଦେଶ ମଧ୍ୟରେ ଥିବା ମତପାର୍ଥକ୍ୟ ଓ କେତେକ ଅଛିଣ୍ଡା ସମସ୍ୟାର ଚିର ଅବସାନ ନିମନ୍ତେ ଶ୍ରୀମତୀ ଗାନ୍ଧୀଙ୍କ ଉଦ୍ୟମ ଥିଲା ତାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଏଥିରେ କେବଳ ଯେ ଦୁଇ ଦେଶର ସ୍ୱାର୍ଥ ଜଡ଼ିତ ନ ଥିଲା, ଭାରତର ମଧ୍ୟ ଅନେକ ସ୍ୱାର୍ଥ ରହିଥିଲା ।

**ଏକ ତ୍ରିପକ୍ଷୀୟ ସମ୍ମିଳନୀ :—**

୧୯୭୧ ମସିହା ବଙ୍ଗଳା ଦେଶର ମୁକ୍ତି ସଂଗ୍ରାମ ପରେ ପରେ ପାକିସ୍ଥାନ ଓ ବଙ୍ଗଳା ଦେଶ ମଧ୍ୟରେ ଯେଉଁ ଭୁଲ ବୁଝାମଣା ସୃଷ୍ଟି ହୋଇଥିଲା, ତାର ପରିସମାପ୍ତି ପାଇଁ ଶ୍ରୀମତୀ ଗାନ୍ଧୀଙ୍କ ଅବ୍ୟାହତ ଉଦ୍ୟମ ଫଳରେ ପାକିସ୍ଥାନ ଓ ବଙ୍ଗଳାଦେଶ ସହିତ ଭାରତର ସହଯୋଗ କ୍ରମେ ଏକ ତ୍ରିପକ୍ଷୀୟ ସମ୍ମିଳନୀ ସମ୍ଭବ ହୋଇ ପାରିଥିଲା । ସେଥିଲାଗି ୧୯୭୪ ମସିହା ଅପ୍ରେଲ ମାସରେ ଦିଲ୍ଲୀଠାରେ ଅନୁଷ୍ଠିତ ସମ୍ମିଳନୀରେ ତିନି ଦେଶର ବୈଦେଶିକ ମନ୍ତ୍ରୀଙ୍କ ସମେତ ପାକିସ୍ଥାନର ଦେଶରକ୍ଷାମନ୍ତ୍ରୀ ଯୋଗ ଦେଇଥିଲେ । ଉକ୍ତ ସମ୍ମିଳନୀରେ ମୁଖ୍ୟ ଆଲୋଚନାର ବିଷୟ ଥିଲା ୧୯୭୧ ଯୁଦ୍ଧ ପରେ ଭାରତରେ ଅଟକଥିବା ୧୯୫ ଜଣ ପାକିସ୍ଥାନୀ ଯୁଦ୍ଧବନ୍ଦୀଙ୍କ ବଙ୍ଗଳାଦେଶରେ ବିଚାର ଓ ବଙ୍ଗଳାଦେଶରେ ରହିଥିବା ପାକିସ୍ଥାନୀ ମୁସଲମାନମାନଙ୍କ ଅପସାରଣ ।

ବଙ୍ଗଳାଦେଶ ଯୁଦ୍ଧ ସମୟରେ ଅତି ଅମାନୁଷିକ ତଥା ବର୍ବର କାର୍ଯ୍ୟ-କଳାପରେ ଅଭିଯୁକ୍ତ ୧୯୫ ଜଣ ଯୁଦ୍ଧବନ୍ଦୀଙ୍କ ବିଚାର ପ୍ରକାଶ୍ୟ ଅଦାଲତରେ ଏକ ସ୍ୱତନ୍ତ୍ର କମିଶନ୍ ବିଚାର କରିବେ ବୋଲି ଶେଖ୍ ମୁଜିବୁର ରହ୍ମମନଙ୍କ ସରକାର ପୂର୍ବରୁ କିଷ୍ପତ୍ତି ଗ୍ରହଣ କରିଥିଲେ । ଅପରପକ୍ଷରେ ପାକିସ୍ଥାନର ରାଷ୍ଟ୍ରପତି ଭୁଟ୍ଟୋ ସେମାନଙ୍କ ଆଚରଣରେ ବଙ୍ଗଳା ଦେଶବାସୀ ଓ ସରକାର କ୍ଷୁବ୍ଧ ନ ହୋଇ ଉଦାର ଚିତ୍ତରେ କ୍ଷମା ଦେବାପାଇଁ ମଧ୍ୟ ଅନୁରୋଧ ଜଣାଇଥିଲେ । ଦିଲ୍ଲୀରେ ଅନୁଷ୍ଠିତ ତ୍ରିପକ୍ଷୀୟ ଆଲୋଚନା ବେଳେ ରାଷ୍ଟ୍ରପତି ଭୁଟ୍ଟୋଙ୍କ କ୍ଷମା ପ୍ରାର୍ଥନା ସ୍ମରଣ କରାଇ ପାକିସ୍ଥାନର ପ୍ରତିନିଧିମାନେ ଭାରତରେ ଅଟକଥିବା ୧୯୫ ଜଣ ଯୁଦ୍ଧବନ୍ଦୀଙ୍କ ଅପରାଧ କ୍ଷମା କରିବାପାଇଁ ପୁନର୍ବାର ଅନୁରୋଧ କରିଥିଲେ । ବଙ୍ଗଳାଦେଶରେ ଥିବା ମୁସଲମାନମାନଙ୍କ ଅପସାରଣ କ୍ଷେତ୍ରରେ ପାକିସ୍ଥାନ ଯେଉଁ ନୀତି ଗ୍ରହଣ କରିଥିଲା ତାହା କୋହଳ କରାଯିବା ସମ୍ପର୍କରେ ମଧ୍ୟ ସ୍ୱୀକୃତି ଦେଇଥିଲେ । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ 'ପୂର୍ବରୁ ଯେଉଁମାନେ ବଙ୍ଗଳାଦେଶରୁ ପାକିସ୍ଥାନ ଚାଲିଯିବା ପାଇଁ ଆବେଦନ କରିଥିଲେ, ପାକିସ୍ଥାନ ସେନା କାରଣରେ ସେଗୁଡ଼ିକୁ ଅଗ୍ରାହ୍ୟ କରି ଦେଇଥିଲା ।

କିନ୍ତୁ ଶ୍ରୀମତୀ ଗାନ୍ଧୀଙ୍କ ଉଦ୍ୟମରେ ସେହି ସମ୍ମିଳନୀରେ ଯେଉଁଚୁକ୍ତି ସ୍ୱାକ୍ଷରିତ ହୋଇଥିଲା, ସେଥିରେ ଥିଲା ଗୁରୁତର ଅମାନୁଷିକ ଅପରାଧରେ ଅପରାଧୀ ୧୯୫ ଜଣ ଯୁଦ୍ଧବନ୍ଦୀଙ୍କୁ ଅନ୍ୟାନ୍ୟମାନଙ୍କ ସହିତ ବଙ୍ଗଳା ଦେଶ ସରକାର କ୍ଷମା ପ୍ରଦାନ କରିବେ । ଅନ୍ୟ ପକ୍ଷରେ ବଙ୍ଗଳା ଦେଶରୁ ପାକିସ୍ଥାନକୁ ଚାଲିଯିବା ପାଇଁ ଆବେଦନ କରିଥିବା ପ୍ରତ୍ୟେକଟି ଦରଖାସ୍ତ ଭୁଟ୍ଟୋ ସରକାର ଯଥାର୍ଥ ଭାବେ ବିଚାର କରିବେ । ଯେଉଁଗୁଡ଼ିକ ଅଗ୍ରାହ୍ୟ କରାଯିବ ସେସବୁର କାରଣ ମଧ୍ୟ ଦର୍ଶାଇ ଦିଆଯିବ ।

ଉକ୍ତ ତ୍ରିପକ୍ଷୀୟ ସମ୍ମିଳନୀ ପରେ ପରେ ଅତୀତରେ ହୋଇଥିବା ଶ୍ରୀମତୀ ଗାନ୍ଧୀ ଓ ଶ୍ରୀ ଭୁଟ୍ଟୋଙ୍କ ମଧ୍ୟରେ ହୋଇଥିବା ସିମଳା ରାଜିନାମାର ଅଗ୍ରଗତି ସମ୍ପର୍କରେ ଭାରତ ଓ ପାକିସ୍ଥାନ ମଧ୍ୟରେ ଏକ ଦ୍ୱିପକ୍ଷୀୟ ଆଲୋଚନା ମଧ୍ୟ ସେହି ଅବସରରେ ହୋଇଥିଲା । ଏଥିରେ ସ୍ଥିର ହୋଇଥିଲା ଯେ, ବିଗତ ୧୯୭୧ ଯୁଦ୍ଧ ପରେ ପରେ ନିଖୋଜ ହୋଇଥିବା ସାମରିକ ତଥା ଅର୍ଦ୍ଧ ସାମରିକ ବ୍ୟକ୍ତିମାନଙ୍କର ସନ୍ଧାନ ଆନ୍ତର୍ଜାତୀୟ ରେଡ଼କ୍ରସ ସଂସ୍ଥାର ସହାୟତା କ୍ରମେ ବ୍ୟବସ୍ଥା କରାଯିବ । ତତ୍ସଙ୍ଗେ ସଙ୍ଗେ ଉଭୟ ଦେଶର ଅଟକ ରହିଥିବା ବ୍ୟକ୍ତିବୃନ୍ଦଙ୍କୁ ସ୍ୱଦେଶକୁ ପଠାଇ ଦିଆଯିବାର ବ୍ୟବସ୍ଥା କରାଯିବ । ୧୯୭୪ ମସିହା ଅପ୍ରେଲ ୯ ତାରିଖ ଦିନ ହୋଇଥିବା ଉକ୍ତ ରାଜିନାମାରେ ଭାରତ ପକ୍ଷରୁ ବୈଦେଶିକ ମନ୍ତ୍ରୀ ସର୍ଦ୍ଦାର ସ୍ୱରଣ ସିଂହ ତଥା ପାକିସ୍ଥାନ ପକ୍ଷରୁ ଶ୍ରୀ ଅଜିଜ୍ ଅହମ୍ମଦ ସ୍ୱାକ୍ଷର କରିଥିଲେ । ଉକ୍ତ

ରାଜନାମାରେ ମଧ୍ୟ ଉଲ୍ଲେଖ ରହିଥିଲା ଯେ ଉଭୟ ଦେଶ ମଧ୍ୟରେ ଡାକ-ତାର ଚଳାଚଳ ଏବଂ ଜନସାଧାରଣଙ୍କ ଦେଶ ଭ୍ରମଣ ତଥା ତୀର୍ଥଯାତ୍ରା ପାଇଁ ସୁବିଧା ଦେବାଲାଗି ନୂତନ କରି କଥାବାର୍ତ୍ତା ଆରମ୍ଭ କରିବାପାଇଁ ପଦକ୍ଷେପ ଯଥାଶୀଘ୍ର ନିଆଯିବା ଆବଶ୍ୟକ ।

କିନ୍ତୁ ତାର ପ୍ରାୟ ମାସକ ପରେ ଯେତେବେଳେ ଭାରତ ଭୂଗର୍ଭରେ ଏକ ଆଣବିକ ବିସ୍ଫୋରଣ ଘଟାଇଥିଲା, ସେଇ ଆଳ ଦେଖାଇ ପାକିସ୍ଥାନର ପ୍ରଧାନମନ୍ତ୍ରୀ ଭୁଟ୍ଟୋ ଏକତରଫା ଭାବେ ୧୯୭୪ ମସିହା ଜୁନ୍ ଏକ ତାରିଖ ଦିନ ଘୋଷଣା କରିଥିଲେ ଯେ, ପୁନର୍ବାର ସେହି ବର୍ଷ ଜୁନ୍ ଦଶ ତାରିଖରେ ଅନୁଷ୍ଠିତ ହେବାକୁ ଥିବା ଭାରତ ଓ ପାକିସ୍ଥାନ ମଧ୍ୟରେ ଆଲୋଚନା ହେବା ସମ୍ଭବ ନୁହେଁ । ତାର କାରଣ ସେ ଦର୍ଶାଇ କହିଥିଲେ, ଭାରତର ଆଣବିକ ବିସ୍ଫୋରଣ ଯୋଗୁଁ ଯେଉଁ ପ୍ରତିକୂଳ ବାତାବରଣ ସୃଷ୍ଟି ହୋଇଥିଲା, ତାହା ସ୍ଥିର ନ ହେବା ପର୍ଯ୍ୟନ୍ତ ସେଭଳି ଆଲୋଚନା ହୋଇ ପାରିବ ନାହିଁ । ଯଦିଓ ସିମଲା ରାଜିନାମାରେ ସେ ସମ୍ପର୍କରେ ସ୍ପଷ୍ଟ ଉଲ୍ଲେଖ ଥିଲା ତଥାପି ବିଭିନ୍ନ ଆଳ ଦେଖାଇ ପାକିସ୍ଥାନ ଡାକ-ତାର ଚଳାଚଳ ତଥା ଦେଶ ଭ୍ରମଣରେ ଯିବାଆସିବା କରିବା ଲାଗି ଆଲୋଚନା ପାଇଁ ବିଭିନ୍ନ ଅନ୍ତରାୟ ସୃଷ୍ଟି କରୁଥିଲା । ତେଣୁ ଯଥାର୍ଥରେ ଶ୍ରୀମତୀ ଗାନ୍ଧୀ ଜୁନ୍ ୧୫ ତାରିଖ ଦିନ ବିଦେଶୀ ସାମ୍ବାଦିକମାନଙ୍କ ଏକ ସମ୍ମେଳନରେ ଦିଲ୍ଲୀଠାରେ ପାକିସ୍ଥାନ ବିରୁଦ୍ଧରେ ଅଭିଯୋଗ କରିଥିଲେ ଯେ, ଉଭୟ ଦେଶ ମଧ୍ୟରେ ସ୍ୱାଭାବିକ ସମ୍ପର୍କ ଫେରାଇ ଆଣିବା ଲାଗି ଶ୍ରୀ ଭୁଟ୍ଟୋ ବିଭିନ୍ନ ପ୍ରକାରର ଅନ୍ତରାୟ ସୃଷ୍ଟି କରୁଥିଲେ । ଆମ ଦେଶର ଆଣବିକ ବିସ୍ଫୋରଣ ତାର ଯଥାର୍ଥ କାରଣ ଆଦୌ ନୁହେଁ ବୋଲି ଶ୍ରୀମତୀ ଗାନ୍ଧୀଙ୍କ ଅଭିଯୋଗ ସ୍ପଷ୍ଟ ଥିଲା ।

ସେହିଭଳି ଯେତେବେଳେ ସେ ସିକିମ୍‌ର ଜନସାଧାରଣଙ୍କ ନିକଟରୁ ସ୍ପଷ୍ଟ ଅଭିଯୋଗ ପାଇଥିଲେ ଯେ, ସେ ହସ୍ତକ୍ଷେପ ନ କଲେ ସେଠିକାର ଆଭ୍ୟନ୍ତରୀଣ ସମସ୍ୟା କେବେହେଁ ସମାହିତ ହୋଇ ପାରିବ ନାହିଁ ଏବଂ ସାଧାରଣ ଜନତାର ନିପୀଡ଼ନର ପରିସମାପ୍ତି ହେବ ନାହିଁ; ସେ ସେମାନଙ୍କ ସମସ୍ୟାର ଚିର ସମାଧାନ କରିବାଲାଗି ନିର୍ଦ୍ଦିଷ୍ଟ ପଦକ୍ଷେପ ନେଇଥିଲେ ।

**ଭାରତର ଗୋଟିଏ ନୂତନ ରାଜ୍ୟ :—**

ଭାରତୀୟ ଜାତୀୟ ଜୀବନରେ ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଲା ୧୯୭୫ ମସିହା ଅପ୍ରେଲ ୨୬ ତାରିଖ ଦିନ ସିକିମ୍ ଭାରତର ୨୨ତମ ରାଜ୍ୟରେ ପରିଣତ ହେବା । ସେଥିପାଇଁ ଶ୍ରୀମତୀ ଗାନ୍ଧୀଙ୍କ ଅବଦାନ ଅବଶ୍ୟ ସ୍ମରଣୀୟ ।

ସିକିମ୍‌ର ସାମ୍ବିଧାନିକ ରାଷ୍ଟ୍ରମୁଖ୍ୟ ଚୋଗ୍ୟାଲ୍‌ଙ୍କୁ ତାହାଙ୍କ ଗାଦିରୁ ହଟାଇ ଦିଆଯାଇ ସେ ଅଞ୍ଚଳକୁ ଭାରତର ଏକ ପୂର୍ଣ୍ଣାଙ୍ଗ ରାଜ୍ୟରୂପେ ଗ୍ରହଣ କରାଯିବା ପାଇଁ

ସେଠିକାର ଜନସାଧାରଣ ପୂର୍ବରୁ ବହୁବାର ଅନୁରୋଧ ଜଣାଇଥିଲେ । ସେମାନଙ୍କ ଅଭିଯୋଗ ଥିଲା ଯେ ଚୋଗ୍ୟାଲ୍ ସେଠାକାର ଜନସାଧାରଣଙ୍କ ପ୍ରତି ବିଭିନ୍ନ ପ୍ରକାର ଅତ୍ୟାଚାର ଚଳାଇବା ସଙ୍ଗେ ସଙ୍ଗେ ନିଜର ସ୍ୱାର୍ଥ ପାଇଁ ବିଭିନ୍ନ ପ୍ରକାରର ହିଂସାତ୍ମକ କାର୍ଯ୍ୟକଳାପକୁ ପ୍ରୋତ୍ସାହିତ କରୁଥିବା ଯୋଗୁଁ ସେଠାରେ ଗଣତାନ୍ତ୍ରିକ ଶାସନ ଅସମ୍ଭବ । ଅପର ପକ୍ଷରେ ଭାରତ ସରକାର ସିକିମ୍‌ର ନିର୍ବାଚିତ ପ୍ରତିନିଧି, ମୁଖ୍ୟମନ୍ତ୍ରୀ ତଥା ଜନସାଧାରଣଙ୍କୁ ଅତିଷ୍ଠିତ ନ ହେବାଲାଗି ପରାମର୍ଶ ଦେବା ସଙ୍ଗେ ସଙ୍ଗେ ଚୋଗ୍ୟାଲ୍‌ଙ୍କୁ ମଧ୍ୟ ସାମ୍ବିଧାନିକ ମୁଖ୍ୟ ହିସାବରେ ନିଜ କର୍ତ୍ତବ୍ୟ ସମ୍ପାଦନ କରିବାକୁ ତାଗିଦ୍ କରିଥିଲେ ।

କିନ୍ତୁ ତାର ପରିଣାମ ବିଶେଷ ଫଳପ୍ରଦ ହୋଇ ନ ଥିଲା ।

ସିକିମ୍‌ର କ୍ଷମତାସୀନ କଂଗ୍ରେସ ଦଳର ମୁଖ୍ୟମନ୍ତ୍ରୀ ଶ୍ରୀ କାଜି ଲେଣ୍ଡୁପ୍ ଦୋର୍ଜି, ସେଠିକାର ମନ୍ତ୍ରୀ ପରିଷଦ ଏବଂ କ୍ଷମତାସୀନ ଦଳ ବାଧ୍ୟ ହୋଇ ୧୯୭୫ ମସିହା ଅପ୍ରେଲ ୯ ତାରିଖ ଦିନ ଚୋଗ୍ୟାଲଙ୍କ ଅତ୍ୟାଚାରରୁ ମୁକ୍ତି ପାଇଁ ଶେଷ ସଂଗ୍ରାମ ଚଳାଇବା ଲାଗି ରାଜ୍ୟର ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ । ସିକିମ୍ ଭାରତର ଏକ ଅଙ୍ଗ-ରାଜ୍ୟ ରୂପେ ସ୍ୱୀକୃତି ଲାଭ କରୁ ବୋଲି ମଧ୍ୟ ସେମାନେ ମତପ୍ରକାଶ ଗ୍ରହଣ କରିଥିଲେ । ତା ପୂର୍ବଦିନ ମୁଖ୍ୟମନ୍ତ୍ରୀ ଶ୍ରୀ ଦୋର୍ଜି ଭାରତର ପଲିଟିକାଲ୍ ଅଫିସର ଶ୍ରୀ ଗୁରୁବଚନ ସିଂହଙ୍କ ଜରିଆରେ ଏକ ଜରୁରୀ ବାର୍ତ୍ତା ପଠାଇ ଅନୁରୋଧ ଜଣାଇଥିଲେ ଯେ, ପ୍ରଥମେ ସିକିମ୍‌ରକ୍ଷୀ ବାହିନୀଙ୍କୁ ଭାରତୀୟ ସେନା ସାହାଯ୍ୟରେ ନିରସ୍ତ୍ର କରାଯାଉ ଏବଂ ଭାରତର ଅନ୍ୟାନ୍ୟ ରାଜ୍ୟ ସରକାରମାନଙ୍କୁ ଯେଉଁସବୁ ଦାୟିତ୍ୱ ଓ ଅଧିକାର ଦିଆଯାଇଛି ସେସବୁ ସେଠିକାର ନିର୍ବାଚିତ ପ୍ରତିନିଧିମାନଙ୍କୁ ମଧ୍ୟ ମିଳୁ ।

ଶ୍ରୀମତୀ ଗାନ୍ଧୀ ସିକିମ୍‌ର ନିର୍ବାଚିତ ପ୍ରତିନିଧିଙ୍କ ବାର୍ତ୍ତା ଓ ପରାମର୍ଶ ଗ୍ରହଣ କରିଥିଲେ ସେଠାରେ ଗଣତନ୍ତ୍ରର ପ୍ରତିଷ୍ଠାପାଇଁ ।

ସିକିମ୍ ଜନସାଧାରଣଙ୍କ ଇଚ୍ଛା ପୂର୍ତ୍ତି କରିବାପାଇଁ ପ୍ରଥମ ପଦକ୍ଷେପ ସ୍ୱରୂପ ଭାରତୀୟ ସେନା ବାହିନୀର ଜବାନ୍‌ମାନଙ୍କ ଦ୍ୱାରା ପ୍ରାସ୍ତ ରାଜକୀୟ ସିକିମ୍‌ରକ୍ଷୀ କର୍ମଚାରୀଙ୍କ ନିକଟରୁ ସମସ୍ତ ଅସ୍ତ୍ରଶସ୍ତ୍ର ପ୍ରତ୍ୟାହାର କରି ନିଆଯାଇ ନିରାପଦରେ ରଖାଯାଇଥିଲା । ଆଶ୍ଚର୍ଯ୍ୟର କଥା, ସିକିମ୍ ରାଜପ୍ରାସାଦ ରକ୍ଷୀ ବାହିନୀର କ୍ୟାପଟେନ୍ ପ୍ରକାଶ କରିଥିଲେ ଯେ, ଦେଶରେ ଅରାଜକତା ସୃଷ୍ଟି କରିବା, ତଥା କଂଗ୍ରେସ ବ୍ୟକ୍ତିମାନଙ୍କୁ ହତ୍ୟା କରିବା ଇତ୍ୟାଦି କାର୍ଯ୍ୟକଳାପରେ ଚୋଗ୍ୟାଲ୍ କେବଳ ଜଡ଼ିତ ନ ଥିଲେ, ସେସବୁ କାର୍ଯ୍ୟ ସମ୍ପାଦନ କରିବାପାଇଁ ଉପଯୁକ୍ତ ପୁରସ୍କାରର ପ୍ରଲୋଭନ ମଧ୍ୟ ଦେଖାଉଥିଲେ । ରାଜପ୍ରାସାଦ ଭିତରୁ ଦୁଇଟି ଅସ୍ତ୍ରାଗାର ପୋଲିସ୍ ଜବତ୍ କରିଥିଲେ ।

ବାରମ୍ବାର ସମ୍ବିଧାନ ସଂଶୋଧନ କରିବାଦ୍ୱାରା ଭାରତର ଜନସାଧାରଣଙ୍କ ଆସ୍ଥା କମି ଯାଉଛି ବୋଲି ଯଦିଓ ଶ୍ରୀମତୀ ଗାନ୍ଧୀ ଅନେକବାର ସମାଲୋଚନାର ଶରବ୍ୟ ହେଉଥିଲେ, ତଥାପି ସେଭଳି ପରିସ୍ଥିତିର ଯେ ଆବଶ୍ୟକତା ରହିଥିଲା ତାହା ଅସ୍ୱୀକାର କରିହେବ ନାହିଁ । ସିକମ୍‌କୁ ଭାରତର ପୂର୍ଣ୍ଣାଙ୍ଗ ରାଜ୍ୟ କରିବାପାଇଁ ସମ୍ବିଧାନର ଏକ ସଂଶୋଧନ ବିଲ୍ ୧୯୭୫ ଅପ୍ରେଲ ୨୩ ତାରିଖରେ ବହୁ ଅଧିକ ଭୋଟରେ ଲୋକସଭାରେ ଗୃହୀତ ହୋଇଥିଲା । ତାର ଦିନଦିନ ପରେ ରାଜ୍ୟସଭାରେ ଉକ୍ତ ବିଲ୍ ସପକ୍ଷରେ ୧୫୭ଟି ଓ ବିପକ୍ଷରେ ମାତ୍ର ତିନୋଟି ଭୋଟ ମିଳିଥିଲା । ତେଣୁ ତାହା ଗୃହୀତ ହୋଇ ସିକମ୍ ଭାରତର ୨୨ତମ ରାଜ୍ୟ ରୂପେ ପରିଗଣିତ ହୋଇଥିଲା ।

ସେଇ ଅବସରରେ ଶ୍ରୀମତୀ ଗାନ୍ଧୀ ସିକମ୍‌ର ଜନସାଧାରଣଙ୍କୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ନିର୍ବାଚିତ ପ୍ରତିନିଧିମାନଙ୍କ ଦ୍ୱାରା ଗଠିତ ସରକାରଙ୍କୁ ମଧ୍ୟ ଶୁଭେଚ୍ଛା ଜ୍ଞାପନ କରିଥିଲେ । ସେ ମଧ୍ୟ ଘୋଷଣା କରିଥିଲେ ଯେ, ସିକମ୍ ସମ୍ବନ୍ଧରେ ଯେଉଁ ସମ୍ବିଧାନ ସଂଶୋଧନ ବିଲ୍ ଅପ୍ରେଲ ୨୬ ତାରିଖ ଦିନ ପାର୍ଲ୍ୟାମେଣ୍ଟରେ ଗୃହୀତ ହୋଇଥିଲା, ତାହା ବିଭିନ୍ନ ରାଜ୍ୟ ସରକାର ତଥା ରାଷ୍ଟ୍ରପତିଙ୍କ ଦ୍ୱାରା ଅନୁମୋଦନ ପାଇବାକୁ ଥିଲେ ମଧ୍ୟ ତାହା ଅପ୍ରେଲ ୨୬ ତାରିଖଠାରୁ ବଳବତ୍ତର ହେଲା ବୋଲି ଧରି ନିଆଯିବ । ସେହି ବ୍ୟାପାରରେ ଶ୍ରୀମତୀ ଗାନ୍ଧୀ ବିରୋଧୀ ଦଳମାନଙ୍କ ସମର୍ଥନ ପ୍ରାୟ ପୂର୍ଣ୍ଣତଃ ପାଇଥିଲେ କହିଲେ ଚଳେ ।

ତଥାପି ଯେ ସେ ସମାଲୋଚନାର ଶିକାର ହେଉ ନ ଥିଲେ ତା ନୁହେଁ, ଦେଶ ବାହାରେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ କିଛି କିଛି ସମାଲୋଚନା ହେଉଥିଲା । ସେ ସମାଲୋଚନା ଖବରକାଗଜମାନଙ୍କ ଭଳି ରେଡ଼ିଓ, ଟି. ଭି. ତଥା ପ୍ରାମାଣିକ ଚଳଚ୍ଚିତ୍ର ମାଧ୍ୟମରେ ବି ହେଉଥିଲା ।

**ଜର୍ମାନ୍ ଟେଲିଭିଜନ୍‌ର ପ୍ରଚାର :—**

ଦେଶର ଆଭ୍ୟନ୍ତରୀଣ ତଥା ବାହ୍ୟ ସମସ୍ୟାଗୁଡ଼ିକର ଚକ୍ରବ୍ୟୂହ ଭେଦକରି ସମାଧାନର ସୂତ୍ର ଆବିଷ୍କାର ପାଇଁ ସଦାସର୍ବଦା ଉଦ୍ୟମରତ ଥିଲେ ମଧ୍ୟ ପୃଥିବୀର ପଶ୍ଚିମାଞ୍ଚଳରୁ ସର୍ବପ୍ରଥମେ ଶ୍ରୀମତୀ ଗାନ୍ଧୀଙ୍କ ବିରୁଦ୍ଧରେ କୁତ୍ସା ପ୍ରଚାର ଆରମ୍ଭ ହୋଇଥିଲା । ୧୯୮୦ ମସିହା ଫେବୃୟାରୀ ୫ ତାରିଖ ଦିନ ଜର୍ମାନୀର ବନ୍‌ସ୍ଥ ଗୋଟିଏ ପ୍ରସିଦ୍ଧ ଟେଲିଭିଜନ୍ ଷ୍ଟେସନ୍ (ARD)ରୁ "ଭାରତର ରାଣୀ ଇନ୍ଦିରା ଗାନ୍ଧୀ" —ନାମରେ ଗୋଟିଏ ପ୍ରାମାଣିକ ଚଳଚ୍ଚିତ୍ର ପ୍ରଦର୍ଶନ କରାଯାଇଥିଲା । ସେଥିରେ ଅନେକ କପୋଳକଳ୍ପିତ ଏବଂ ତ୍ରୁଟିପୂର୍ଣ୍ଣ ତଥ୍ୟ ପରିବେଷିତ ହୋଇଥିଲା ବୋଲି ବିଭିନ୍ନ ମହଲରୁ ଆକ୍ଷେପ କରାଯାଇଥିଲା । ସେଭଳି ଚଳଚ୍ଚିତ୍ର ନିର୍ମାଣ ଓ ପ୍ରଦର୍ଶନ

କରିବା ଦିଗରେ ଜର୍ମାନୀକୁ ହୁଏତ ଆମେରିକା ପ୍ରଭାବିତ ତଥା ଉତ୍ସାହିତ କରିଥିବା ଆଶଙ୍କା ମଧ୍ୟ ପ୍ରକାଶ ପାଇଥିଲା । ସେଭଳି ଚଳଚ୍ଚିତ୍ର ପ୍ରଦର୍ଶିତ ହେବା ପରେ ପରେ ସେଇ ବନ୍‌ରେ ଅବସ୍ଥାପିତ ବିଭିନ୍ନ ଦେଶର କୂଟନୀତିଜ୍ଞମାନେ ମଧ୍ୟ ବିସ୍ମୟ ପ୍ରକାଶ କରିଥିଲେ ।

ସେହି ଚଳଚ୍ଚିତ୍ରରେ ଶ୍ରୀମତୀ ଗାନ୍ଧୀ କେବଳ ଛଳନା କରି ନିଜ ସରଳତାର ପରିଚୟ ଦେବା ଉଦ୍ଦେଶ୍ୟରେ ଶସ୍ତା ସୂତା ଶାଢ଼ୀ ପିନ୍ଧି ନିଜ କାର୍ଯ୍ୟାଳୟ ତଥା ବିଭିନ୍ନ ସଭାସମିତି ଓ ବିଭିନ୍ନ ସ୍ଥାନକୁ ଗସ୍ତରେ ଯିବା, ଭାରତରେ ଗଣତନ୍ତ୍ରମୂଳକ ଶାସନ ପଦ୍ଧତି ପ୍ରଚଳନ କରାଇବା, ଜନସାଧାରଣ ଓ ନିର୍ବାଚିତ ପ୍ରତିନିଧିମାନଙ୍କ ପ୍ରକୃତରେ ଅବିଶ୍ୱାସଭାଜନ ହୋଇ ମଧ୍ୟ ସେମାନଙ୍କ ବିଶ୍ୱାସଭାଜନ ଥିବାଭଳି ଛଳନା କରିବା, ସେମାନଙ୍କ ଉପରେ ନିଜର କର୍ତ୍ତୃତ୍ୱ ଆରୋପ କରାଉଥିବା ପ୍ରଭୃତି ତଥ୍ୟାବଳୀ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଥିଲା ।

ବୋଧହୁଏ ଏଠାରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇପାରେ ଯେ, ଶ୍ରୀମତୀ ଗାନ୍ଧୀ ମହାତ୍ମାଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ପରଠାରୁ କେବଳ ସୂତାଶାଢ଼ୀ ପିନ୍ଧିବାକୁ ଭଲ ପାଉଥିଲେ ଓ ତାଙ୍କର ପରିଧେୟ ପ୍ରାୟତଃ ତାହାହିଁ ଥିଲା । ଯେତେବେଳେ ଦେଶର ଯେଉଁ ଅଞ୍ଚଳକୁ ଗସ୍ତ କରୁଥିଲେ, ସେତେବେଳେ ସେହି ଅଞ୍ଚଳର ପ୍ରିୟ ପୋଷାକ ପିନ୍ଧିବାଲାଗି ଆଗ୍ରହୀ ଥିଲେ । ନିଜ କାର୍ଯ୍ୟାଳୟକୁ ଗଲାବେଳେ ତାଙ୍କର ସାଧାରଣ ପରିଧାନ ଥିଲା ପ୍ରାୟତଃ ସୂତାଶାଢ଼ୀ ।

ସେହି ପ୍ରାମାଣିକ ଚଳଚ୍ଚିତ୍ରରେ ମଧ୍ୟ ଶ୍ରୀ ରାଜୀବ ଗାନ୍ଧୀଙ୍କ ସମ୍ପର୍କରେ କୁହାଯାଇଥିଲା ଯେ, କାଳେ ଭାରତର ଶାସନ କ୍ଷମତା ଗାନ୍ଧୀ ପରିବାରରୁ ବାହାରକୁ ଚାଲିଯିବ, ସେଇ ଉଦ୍ଦେଶ୍ୟରେ ଭାରତର ପ୍ରଧାନମନ୍ତ୍ରୀ ତାଙ୍କର ଜ୍ୟେଷ୍ଠପୁତ୍ରଙ୍କୁ ସ୍ୱର୍ଗତ କନିଷ୍ଠ ପୁତ୍ରର ରାଜନୈତିକ ପଦାଙ୍କ ଅନୁସରଣ କରିବାପାଇଁ ବାଧ୍ୟ କରିଥିଲେ । କାରଣ ସେତେବେଳେ ପର୍ଯ୍ୟନ୍ତ ସେ ଥିଲେ ଜଣେ ବିମାନ ଚାଳକ ଏବଂ ରାଜନୈତିକ ମଞ୍ଚରେ ତାଙ୍କର କୌଣସି ଅଭିଜ୍ଞତା ନ ଥିଲା କିମ୍ବା ରାଜ୍ୟ ଶାସନ ପାଇଁ ମଧ୍ୟ କୌଣସି ଆଗ୍ରହ ନ ଥିଲା । ରାଜୀବ କେବଳ ତାଙ୍କ ମାଆଙ୍କ କଥା ରକ୍ଷା କରିବାକୁ ଯାଇ ହୋଇଥିଲେ ନୂତନ ଯୁବରାଜ ।

ସେଭଳି ଆକ୍ଷେପର ମଧ୍ୟ କିଛି ଯୁକ୍ତିଯୁକ୍ତତା ଥାଇ ନ ପାରେ । ଏକାକୀତ୍ୱ ଅନୁଭବ କରୁଥିବା ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ସାହାଯ୍ୟ କରିବାପାଇଁ ସେ ଅତି ଅନ୍ତରଙ୍ଗ ଓ ନିକଟତମ ବ୍ୟକ୍ତି ତାଙ୍କ କନ୍ୟା ଶ୍ରୀମତୀ ଗାନ୍ଧୀଙ୍କୁ ହିଁ ବାଛିଥିଲେ । ଯେତେବେଳେ ଶ୍ରୀମତୀ ଗାନ୍ଧୀ ଠିକ୍ ସେହିଭଳି ଏକ ପରିସ୍ଥିତିରେ ପଡ଼ିଥିଲେ, ସେ ମଧ୍ୟ ଜଣେ ଅତି ଅନ୍ତରଙ୍ଗ ବ୍ୟକ୍ତିର ସାହାଯ୍ୟ କାମନା କରିବା ସ୍ୱାଭାବିକ । ନିଜ ପୁଅ ଥାଉ ଥାଉ ସେଭଳି ସାହାଯ୍ୟ ଆଉ କାହା

ନାକଟରୁ ବା ଆଶା କରନ୍ତେ ! କିନ୍ତୁ ତାର ଅର୍ଥ ନ ଥିଲା ସେ ରାଜୀବଙ୍କୁ ପ୍ରଧାନମନ୍ତ୍ରୀ କରିବାପାଇଁ ଚାହୁଁଥିଲେ ଏବଂ ତାହା ମଧ୍ୟ ପ୍ରମାଣିତ ହୋଇ ଯାଇଥିଲା । ମୁଖ୍ୟତଃ ତାଙ୍କର ଅଭିଳାଷ ଥିଲା ତାଙ୍କର ବିଭିନ୍ନ କାର୍ଯ୍ୟକଳାପରେ ରାଜୀବ ତାଙ୍କୁ ସାହାଯ୍ୟ କରିବେ । ପରେ ରାଜନୀତିରେ ପ୍ରବେଶ କରିବା ପରେ ପରେ ନିଜର ଯୋଗ୍ୟତା ପ୍ରମାଣ କରି ରାଜୀବ ରାଜନୈତିକ କ୍ଷେତ୍ରରେ ବିଭିନ୍ନ ପଦପଦବୀ ଗ୍ରହଣ କରିଥିଲେ । ଯେହେତୁ ଶ୍ରୀମତୀ ଗାନ୍ଧୀ ଗଣତନ୍ତ୍ରରେ ପୂର୍ଣ୍ଣ ବିଶ୍ୱାସ କରୁଥିଲେ, ତେଣୁ ସେଇ ପଦ୍ଧତି ଅନୁସରଣ କରି ହିଁ ରାଜୀବ ମଧ୍ୟ ବିଭିନ୍ନ ଆନୁଷ୍ଠାନିକ ପଦବୀପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । ସେଇ ଏକା ମତ ଅନୁସରଣକ୍ରମେ ହିଁ ହୋଇ ପାରିଥିଲେ ଭାରତର ପ୍ରଧାନମନ୍ତ୍ରୀ ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଦେଶର ଏକ ସଙ୍କଟସନ୍ଧି କାଳରେ କଣ୍ଟକମୟ ଆସନରେ ଅଧିଷ୍ଠିତ ହୋଇ ଯେଉଁ ବିଚକ୍ଷଣ ଶାସନ କ୍ଷମତା ପ୍ରଦର୍ଶନ କରିଥିଲେ, ତାହାକୁ ପୃଥିବୀର ନେତୃବୃନ୍ଦ ସମସ୍ୱରରେ ଭୂୟସୀ ପ୍ରଶଂସା କରିଥିଲେ । ସେଥିରୁ ପ୍ରାମାଣିକ ଚଳଚିତ୍ରର ଆକ୍ଷେପ କେବଳ ଭ୍ରାନ୍ତ ପ୍ରମାଣିତ ହୋଇ ନ ଥିଲା ବରଂ ତାହା ଶ୍ରୀମତୀ ଗାନ୍ଧୀଙ୍କ ଗୌରବକୁ ମଧ୍ୟ ବୃଦ୍ଧି କରିଥିଲା ।

ପ୍ରାମାଣିକ ଚଳଚିତ୍ର ପ୍ରସ୍ତୁତକାରୀଙ୍କ ଉଦ୍ଭଟ କଳ୍ପନା ଥିଲା ଭାରତରେ ରାଷ୍ଟ୍ରପତିମୂଳକ ଶାସନ ପଦ୍ଧତିର ପ୍ରଚଳନ କରାଇବା ଲାଗି ଶ୍ରୀମତୀ ଗାନ୍ଧୀଙ୍କ ଯୋଜନା ସମ୍ପର୍କରେ । କିନ୍ତୁ ଗଣତାନ୍ତ୍ରିକ ଶାସନ ପଦ୍ଧତି ଉପରେ ସମ୍ପୂର୍ଣ୍ଣ ଆସ୍ଥାବାନ୍ ରହି ଶ୍ରୀମତୀ ଗାନ୍ଧୀ ତାଙ୍କ ପିତାଙ୍କ ଭଳି ଏବଂ ବରାବର ସେହି ଲକ୍ଷ୍ୟ ରଖି ହିଁ କାର୍ଯ୍ୟ କରି ଆସିଥିଲେ । ଲୋକମତ ଉପରେ ତାଙ୍କର ଗଭୀର ଶ୍ରଦ୍ଧା ଓ ସମ୍ମାନ ଥିଲା । ତା' ହୋଇ ନ ଥିଲେ ଦେଶରେ ଜନତା ସରକାରର ପ୍ରଶ୍ନ ହିଁ ଉଠି ନ ଥାନ୍ତା ।

ପୁଣି ପାର୍ଲ୍ୟାମେଣ୍ଟକୁ ନିର୍ବାଚିତ ପ୍ରତିନିଧିମାନଙ୍କ ମଧ୍ୟରୁ କଂଗ୍ରେସ (ଇ) ସଭ୍ୟମାନଙ୍କର ସମ୍ପୂର୍ଣ୍ଣ ଆସ୍ଥାଭାଜନ ସେ ଥିଲେ । କହିବାକୁ ଗଲେ ସେଇମାନଙ୍କର ନୈତିକ ସାହସ ହିଁ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ଥିଲା ଏକମାତ୍ର ସମ୍ବଳ, ସେଇମାନଙ୍କ ଅକୁଣ୍ଠ ସମର୍ଥନ ହିଁ ଥିଲା ଦେଶକୁ ତାଙ୍କ ଦୀର୍ଘ ନେତୃତ୍ୱ ଦାନର ପ୍ରଧାନ କାରଣ । ଶ୍ରୀମତୀ ଗାନ୍ଧୀ, ତାଙ୍କ ଦଳର କର୍ମୀ ତଥା ପ୍ରତିନିଧିମାନଙ୍କ ପାରସ୍ପରିକ ସହଯୋଗ, ଉତ୍ତମ ବୁଝାମଣା ପାଇ ହିଁ ତାଙ୍କର ଚରମ ବିପର୍ଯ୍ୟୟ କାଳରେ ମଧ୍ୟ ଦଳ ବିଭାଜନ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ଏବଂ ପୁଣି ଥରେ ଶକ୍ତଭାବେ ଦଳକୁ ଗଢ଼ି ତୋଳିବା ପାଇଁ ସମର୍ଥ ହୋଇଥିଲେ । ଦଳରେ ସମସ୍ତଙ୍କର ପରସ୍ପର ପ୍ରତି ଗଭୀର ଆସ୍ଥା ଥିବା ଯୋଗୁଁ ଓ ତାଙ୍କୁ ଦଳର ନେତ୍ରୀ ହିସାବରେ ଗ୍ରହଣ କରୁଥିବା ଯୋଗୁଁ ହିଁ ଦଳ ଭିତରେ ଶୃଙ୍ଖଳା ରକ୍ଷା କରିବାପାଇଁ ସେ ସବୁବେଳେ ସମର୍ଥ ହୋଇ ପାରୁଥିଲେ ।

ସେସବୁ ଦୃଷ୍ଟିରୁ ବିଗ୍ଭର କଲେ ବାସ୍ତବିକ ଶ୍ରୀମତୀ ଗାନ୍ଧୀ ଥିଲେ ଭାରତର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ନେତ୍ରୀ ।

ଦେଶର ପ୍ରମୁଖ ନେତାମାନଙ୍କର ତଥା ରାଜନୈତିକ ଦଳଗୁଡ଼ିକ ମଧ୍ୟରୁ କେଉଁ ଦଳଗୁଡ଼ିକ ଓ କେଉଁ ନେତାମାନେ ପ୍ରକୃତରେ ଜନପ୍ରିୟ ଓ ଆଦୃତ ସେ ସମ୍ପର୍କରେ ୧୯୮୩ ମସିହା ଡିସେମ୍ବର ମାସରେ ଦିଲ୍ଲୀର ଏକ ପାକ୍ଷିକ ପତ୍ରିକା ପକ୍ଷରୁ, ୧୪ଟି ରାଜ୍ୟର ରାଜଧାନୀରେ ୫୭୧୫ ଜଣ ବ୍ୟକ୍ତିଙ୍କଠାରୁ ଲୋକମତ ସଂଗ୍ରହ କରାଯାଇଥିଲା । ସେଥିରୁ ସୂଚୀତ ହୋଇଥିଲା ଯେ ରାଜସ୍ଥାନର ରାଜଧାନୀ ଜୟପୁରରେ କଂଗ୍ରେସ ଅପେକ୍ଷା ଜନତାଦଳ ଅଧିକ ଲୋକପ୍ରିୟ କିନ୍ତୁ ଗୁଜରାଟରେ ଶ୍ରୀମତୀ ଗାନ୍ଧୀଙ୍କ ଲୋକପ୍ରିୟତା ଅନ୍ୟାନ୍ୟ ନେତାମାନଙ୍କ ସହିତ ପ୍ରାୟ ସମାନ । ବାକି କଲିକତା, ଦିଲ୍ଲୀ, ମାଦ୍ରାଜ ଓ ଲକ୍ଷ୍ନୌରେ ଶ୍ରୀମତୀ ଗାନ୍ଧୀ ଅନ୍ୟମାନଙ୍କ ଅପେକ୍ଷା ଅନ୍ୟୂନ ଶତକଡ଼ା ୫୦ ଭାଗରୁ ଅଧିକ ଜନପ୍ରିୟ ଯଦିଓ ବିରୋଧୀ ଦଳମାନେ ସେତେବେଳେ କଲିକତା ଓ ମାଦ୍ରାଜରେ ସରକାର ଗଠନ କରିଥିଲେ ।

ଦେଶର ସାଧାରଣ ପରିସ୍ଥିତି ଅସନ୍ତୋଷଜନକ ବୋଲି ଦୁଇ-ତୃତୀୟାଂଶ ମତଦାତା ମତ ପୋଷଣ କରିଥିଲେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ପ୍ରତି ଜନସମର୍ଥନ ବହୁ ଅଧିକ ପରିମାଣରେ ସୂଚୀତ ହୋଇଥିଲା । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ପଞ୍ଜାବ ଓ ଆସାମରୁ ଲୋକମତ ନିଆଯାଇ ନ ଥିଲା ।

ଶ୍ରୀମତୀ ଗାନ୍ଧୀଙ୍କ ସେଭଳି ଲୋକପ୍ରିୟତାର କାରଣ ଥିଲା ଭାରତୀୟ ଜନଜୀବନର ଉନ୍ନତି ପାଇଁ ତାଙ୍କର ଆନ୍ତରିକ ଅଭିଳାଷ । ବିଭିନ୍ନ ସମୟରେ ଉଦ୍ଭବ ହେଉଥିବା ବିଭିନ୍ନ ସମସ୍ୟାର ସମାଧାନ କରିବା ସଙ୍ଗେ ସଙ୍ଗେ ସାଧାରଣ ଜନତାର ମାନ ବୃଦ୍ଧି କରିବାପାଇଁ ସେ ଥିଲେ ସଦାସର୍ବଦା ଚିନ୍ତିତ । କେବଳ ସେଇ ଉଦ୍ଦେଶ୍ୟରେ ଦେଶର ସର୍ବାଙ୍ଗୀନ ଉନ୍ନତିପାଇଁ ଦେଶରେ ବିଂଶସୂତ୍ରୀ କାର୍ଯ୍ୟକ୍ରମର ପ୍ରଚଳନ କରାଇଥିଲେ ।

**ବିଂଶସୂତ୍ରୀ କାର୍ଯ୍ୟକ୍ରମ :—**

ବିଂଶସୂତ୍ରୀ କାର୍ଯ୍ୟକ୍ରମ ପ୍ରଚଳନର ପରମ ଉଦ୍ଦେଶ୍ୟ ଥିଲା ଦେଶରୁ ଗରିବୀ ଲୋପ କରିବା ଓ ଦେଶକୁ ସମୃଦ୍ଧିଶାଳୀ କରାଇବା । ସେଥିପାଇଁ ଶ୍ରୀମତୀ ଗାନ୍ଧୀ ଦୃଢ଼ ଭାବରେ ଆସ୍ଥାବାନ୍ ଥିଲେ ଯେ ଯଦି ଦେଶର ଜନସାଧାରଣ ଏକାଗ୍ରତା ତଥା ଦୃଢ଼ ଶୃଙ୍ଖଳା ରକ୍ଷାକରି ସେଥିପାଇଁ କଠିନ ପରିଶ୍ରମ କରିବେ, ତାହେଲେ କୌଣସି କାର୍ଯ୍ୟକ୍ରମ ଅସଫଳ ହେବନାହିଁ । କେନ୍ଦ୍ରରେ ଅଢ଼େଇ ବର୍ଷ ଜନତା ଶାସନକାଳରେ ଅତିଷ୍ଠିତ ଜନସାଧାରଣ ଶ୍ରୀମତୀ ଗାନ୍ଧୀଙ୍କୁ ପୁନର୍ବାର ନେତୃତ୍ୱ ଦେବାପାଇଁ ନିର୍ବାଚିତ କରିବା ପରେ ୧୯୮୦ ମସିହା ଜାନୁୟାରୀ ୧୪ ତାରିଖ ଦିନ

ଜାତି ଉଦ୍ଦେଶ୍ୟରେ ବେତାର ଭାଷଣ ଦେଇ ନୂତନ ବିଂଶସୂତ୍ରୀ କାର୍ଯ୍ୟକ୍ରମର ଘୋଷଣା କରିଥିଲେ । ୧୯୭୫ ମସିହାର ନଜିର ଦେଇ ସେ ନୂତନ କାର୍ଯ୍ୟକ୍ରମ ଘୋଷଣା କରିବାପରେ ଦେଶବାସୀଙ୍କ ପ୍ରତି ଆହ୍ୱାନ ଦେଇଥିଲେ "କୌଣସି ଦୁର୍ଗମ ଓ କଠିନ ରାସ୍ତାରେ ଯାଉଥିବା ବେଳେ ବିଶ୍ରାମ ନେବାର ଅବକାଶ ନ ଥାଏ । ଏକଲୟରେ ଚାଲିବା ନିତାନ୍ତ ଆବଶ୍ୟକ ହୋଇଥାଏ । ଦେଶର ପ୍ରଗତି ପଥରେ ଚାଲିବା ମଧ୍ୟ ଠିକ୍ ସେହିଭଳି । ଆମର ଜାତୀୟ ଆଦର୍ଶ ହେଉଛି—ସତ୍ୟମେବ ଜୟତେ । ଅର୍ଥାତ୍ ସତ୍ୟରେ ହିଁ ନିଶ୍ଚିତ ବିଜୟ ନିହିତ । ଆମେ ଆମର ଦୈନନ୍ଦିନ ଜୀବନରେ ଆଉ ଗୋଟିଏ ନୂଆ ଆଦର୍ଶକୁ ଧ୍ୟେୟ କରିନେବା ଉଚିତ । ତାହା ହେଉଛି-ଶ୍ରମ ଏବ ଜୟତେ । କଠିନ ପରିଶ୍ରମରେ ବିଜୟ ସୁନିଶ୍ଚିତ । ସତ୍ୟ; ନିଷ୍ଠା, କଠୋର ପରିଶ୍ରମ ହିଁ ସମ୍ମାନ, ପ୍ରଗତି ଓ ସମୃଦ୍ଧିର ଏକମାତ୍ର ନିଶ୍ଚିତ ଉପାୟ ।" †

ଶ୍ରୀମତୀ ଗାନ୍ଧୀଙ୍କ ଆନ୍ତରିକ ବିଶ୍ୱାସ ଥିଲା ଭାରତୀୟ ଅର୍ଥନୀତିର ଗତିପଥ ସ୍ୱଚ୍ଛଳ ଥିବାଯୋଗୁଁ ଜନସାଧାରଣ ଇଚ୍ଛାକଲେ ତାହାକୁ ସମୁନ୍ନତ କରି ପାରିବେ । ସେଥିପାଇଁ ଏକମାତ୍ର ଆବଶ୍ୟକତା ଜନସାଧାରଣଙ୍କ ନିଷ୍ଠାପର ଉଦ୍ୟମ ଓ ଦକ୍ଷତାର ସହିତ ସେ ଯାହାର କାର୍ଯ୍ୟ ସମ୍ପାଦନ କରିବା । ପ୍ରତ୍ୟେକ କୃଷକ, ଶ୍ରମିକ, କାରିଗର ଓ ସରକାରୀ କର୍ମଚାରୀ ତାହା ଯଥାର୍ଥ ଭାବେ ଅନୁଭବ କରିପାରିଲେ ଖର୍ଚ୍ଚ ହେଉଥିବା ପ୍ରତି ଟଙ୍କା ବିନିମୟରେ ଅଧିକ ଉତ୍ପାଦନ ତଥା ସାଫଲ୍ୟ ଯେ ନିଶ୍ଚୟ ସମ୍ଭବ ହେବ ସେଥିରେ ସେ ଦ୍ୱିମତ ନ ଥିଲେ । ଯେତେବେଳେ ଦେଶରେ ପ୍ରଥମଥର ପାଇଁ ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ପ୍ରଚଳନ କରାଇଥିଲେ ସେତେବେଳେ ମଧ୍ୟ ସେଇକଥା ହିଁ ସେ ଘୋଷଣା କରିଥିଲେ ।

ବିଂଶସୂତ୍ରୀ ଅର୍ଥନୈତିକ କାର୍ଯ୍ୟକ୍ରମ ସର୍ବପ୍ରଥମେ ୧୯୭୫ ମସିହା ଜୁଲାଇ ପହିଲାଦିନ ଦେଶରେ ପ୍ରଚଳନ କରାଯାଇଥିଲା । ସେତେବେଳେ ଦେଶରେ ଜରୁରୀକାଳ ଘୋଷିତ ହୋଇଥିଲା । ଦେଶରେ ପ୍ରଚଳିତ ସାଧାରଣ ଯୋଜନା ଓ ବିଭିନ୍ନ କାର୍ଯ୍ୟକ୍ରମଗୁଡ଼ିକର କୌଣସି ପରିବର୍ତ୍ତନ କରାଯାଇ ନ ଥିଲା । ପଞ୍ଚବାର୍ଷିକ ଯୋଜନା ଅନ୍ତର୍ଭୁକ୍ତ କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟରୁ କେତେକ ଜରୁରୀ ମନେ ହେଉଥିବା ଅଥଚ ସାଧାରଣରେ ବିଶେଷ ଗୁରୁତ୍ୱ ଦିଆଯିବା ଭଳି ମନେ ହେଉ ନ ଥିବା କାର୍ଯ୍ୟକ୍ରମକୁ ଗୁରୁତ୍ୱର ସହିତ ସୁଚାରୁରୂପେ ପରିଚାଳିତ କରାଇବା ସଙ୍ଗେ ସଙ୍ଗେ ତାହା ଉପରେ ଦେଶର ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରାଯାଇ ପାରିବ ଓ କିପରି ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇପାରିବ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଜରିଆରେ ସେତେବେଳେ ସେହି ଉଦ୍ଦେଶ୍ୟ ଆରୋପିତ ହୋଇଥିଲା । କେବଳ ଗୋଟିଏ ଦୁଇଟି

† ୧୯୮୨ ଜାନୁୟାରୀ ୧୪ ତାରିଖ ଦିନ ଦେଇଥିବା ବେତାର ଭାଷଣର କିୟଦଂଶ ।

ନୂଆ ବିଷୟ ସେଥିରେ ସଂଯୋଜିତ ହୋଇଥିଲା । କିନ୍ତୁ ସେସବୁଗୁଡ଼ିକୁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ରୂପେ ଆରୋପିତ କରାଯିବା ଫଳରେ ଯଥାର୍ଥ ଭାବେ ସମସ୍ତଙ୍କ ଦୃଷ୍ଟି ଆକର୍ଷିତ ହୋଇ ପାରିଥିଲା । ପରିଣାମତଃ ସେଥିମଧ୍ୟରୁ ଅନେକଟା ଯଥାସମୟରେ ତାର ଉଦ୍ଦେଶ୍ୟ ସାଧନ କରିପାରିଥିଲା ।

ଦେଶରେ ବିଂଶ ସୂତ୍ରୀ କାର୍ଯ୍ୟକ୍ରମଗୁଡ଼ିକ ଯେଉଁ ସ୍ଥାନରେ ଯଥାର୍ଥ ରୂପେ କାର୍ଯ୍ୟକାରୀ କରାଯାଇଥିଲା ସେଠାରେ ସାଧାରଣ ଜନତାର ପ୍ରକୃତ ଉନ୍ନତି ସାଧିତ ହୋଇ ପାରିଥିଲା । ସେହି ଅଞ୍ଚଳରେ ଜନସାଧାରଣଙ୍କ ଜୀବନଧାରାର ଉଲ୍ଲେଖନୀୟ ପରିବର୍ତ୍ତନ ସମ୍ଭବ ହୋଇଥିଲା । ସେହି ଯୋଜନାରେ ଅନ୍ତର୍ଭୁକ୍ତ କାର୍ଯ୍ୟକ୍ରମଗୁଡ଼ିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ବିଶେଷ ଭାବେ ଆଦୃତ ହୋଇଥିଲା । ଗୋତି ଶ୍ରମିକ ଓ ବେଠି ପ୍ରଥାର ବିଲୋପ ପାଇଁ ୧୯୭୬ ମସିହାରେ ଆଇନ ପ୍ରଣୟନ କରାଯାଇଥିଲା । କଳାବଜାରୀ କରି କିମ୍ବା ଅନ୍ୟ ଯେ କୌଣସି ଉପାୟରେ କଳାଧନ ମହଜୁଦ୍ କରି ରଖିଥିବା ବ୍ୟକ୍ତି ବିଶେଷଙ୍କର ସମ୍ପତ୍ତି ବାଜ୍ୟାପ୍ତି କରିବାପାଇଁ ବିଭିନ୍ନ ପଦକ୍ଷେପ ନିଆଯାଇଥିଲା । ସଡ଼କ ପରିବହନ ବ୍ୟବସ୍ଥାର ନିୟନ୍ତ୍ରଣ ପାଇଁ ରାଷ୍ଟ୍ରୀୟ ପରମିଟ୍ ବ୍ୟବସ୍ଥା ପ୍ରଚଳନ ହୋଇଥିଲା । ୧୯୭୫ ମସିହାର ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ପ୍ରାୟ ୫୦ ହଜାର ହେକ୍ଟରର କୃଷି ଜମିକୁ ଜଳସେଚନର ସୁବିଧା ଯୋଗାଇ ଦିଆଯାଇଥିଲା । ଭୂତଳର ଜଳସମ୍ପଦର ଉପଯୋଗ କରିବା ପାଇଁ ଏକ ଜାତୀୟ ପରିକଳ୍ପନା ମଧ୍ୟ କାର୍ଯ୍ୟକାରୀ ହୋଇଥିଲା । ପୁଣି ଦେଶରେ ବିଦ୍ୟୁତ୍ ଶକ୍ତିର ବୃଦ୍ଧି ପୂରଣ ପାଇଁ କେତେକ ବୃହତ୍ ତାପଜ କେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା । ସେହିଭଳି ନିମ୍ନ ତଥା ମଧ୍ୟବିତ୍ତ ଆୟ ଗୋଷ୍ଠୀର ଲୋକେ ଆୟକର ଭାରରୁ ମୁକ୍ତ ହେବାପାଇଁ ମଧ୍ୟ ଆଇନ ପ୍ରଣୟନ କରାଯାଇଥିଲା ।

କିନ୍ତୁ ୧୯୭୭ ନିର୍ବାଚନ ପରେ ପରେ କେନ୍ଦ୍ରରେ ଯେତେବେଳେ ଜନତା ସରକାର ଅଧିଷ୍ଠିତ ହୋଇଥିଲେ, ସେମାନେ ଏହି କାର୍ଯ୍ୟକ୍ରମ ଉପରେ ବିଶେଷ ଗୁରୁତ୍ୱ ଆରୋପ କରି ନ ଥିଲେ । ପୁଣି ୧୯୮୦ ମସିହାରେ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱ ପ୍ରତି ପ୍ରବଳ ଜନସମର୍ଥନ ମିଳିଥିଲା । ପୁଣିଥରେ ସେ କେନ୍ଦ୍ରରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ଅତୀତର ଅଭିଜ୍ଞତାକୁ କେନ୍ଦ୍ରକରି ସେ ସ୍ଥିର କରିଥିଲେ ଯେ, ପୁଣି ଥରେ ଦେଶରେ ବିଂଶସୂତ୍ରୀ କାର୍ଯ୍ୟକ୍ରମକୁ ପ୍ରଚଳନ କରାଇବେ ।

ପୂର୍ବରୁ ପ୍ରଚଳିତ ବିଂଶସୂତ୍ରୀ କାର୍ଯ୍ୟକ୍ରମ ମଧ୍ୟରୁ ଅନେକ ଧାର୍ଯ୍ୟ ଲକ୍ଷ୍ୟ ପୂରଣ ହୋଇ ସାରିଥିବା ଯୋଗୁଁ ଏବଂ ସମୟକ୍ରମେ ସାମାଜିକ ପରିସ୍ଥିତିର ପରିବର୍ତ୍ତନ ହୋଇ ଯାଇଥିବା ଯୋଗୁଁ ସେହି କାର୍ଯ୍ୟକ୍ରମଗୁଡ଼ିକର ମଧ୍ୟ ପରିବର୍ତ୍ତନ ଆବଶ୍ୟକ ହୋଇ ପଡ଼ିଥିଲା । ତେଣୁ ସରକାରଙ୍କ ବିଭିନ୍ନ ବିଭାଗ ସହିତ ଯୋଗଯୁକ୍ତ

ରଖି, ଯୋଜନା କମିଶନଙ୍କ ସହ ବିଶେଷ ଭାବେ ବିସ୍ତୃତ ବିମର୍ଶ କରି ଶ୍ରୀମତୀ ଗାନ୍ଧୀ ପ୍ରସ୍ତୁତ କରିଥିଲେ ଏକ ନୂତନ କାର୍ଯ୍ୟକ୍ରମ । ସେଥିପାଇଁ ସେ ବ୍ୟକ୍ତିଗତ ଭାବେ ମଧ୍ୟ ବିଶେଷ ପରିଶ୍ରମ କରିବାକୁ ପଡ଼ିଥିଲା । ଉକ୍ତ ନୂତନ କାର୍ଯ୍ୟକ୍ରମରେ ପୂର୍ବତନ କାର୍ଯ୍ୟକ୍ରମର ଧାର୍ଯ୍ୟଲକ୍ଷ୍ୟ ପୂରଣ ହୋଇ ନ ଥିବା କାର୍ଯ୍ୟଗୁଡ଼ିକ ସମେତ ଚଳିତ ପଞ୍ଚବାର୍ଷିକ ଯୋଜନା ଅନ୍ତର୍ଭୁକ୍ତ ବିଷୟ ଓ ସଞ୍ଜୟ ଗାନ୍ଧୀଙ୍କ ଦ୍ୱାରା ପ୍ରବର୍ତ୍ତିତ ପାଞ୍ଚଦଫା କାର୍ଯ୍ୟକ୍ରମକୁ ମଧ୍ୟ ନୂତନ କାର୍ଯ୍ୟକ୍ରମର ପରିସରଭୁକ୍ତ କରାଯାଇଥିଲା ।

ନୂତନ କାର୍ଯ୍ୟକ୍ରମର ପ୍ରଧାନ ଭିତ୍ତି ଥିଲା—ହରିଜନ ଓ ଆଦିବାସୀମାନଙ୍କ ସର୍ବବିଧ ଉନ୍ନତି ପାଇଁ ଉଦ୍ୟମ । ତତ୍ ସହିତ ଦେଶର ପଲ୍ଲୀଗୁଡ଼ିକର ସୁସ୍ଥିତିଙ୍କ ବିକାଶପାଇଁ ମଧ୍ୟ ଗୁରୁତ୍ୱ ଦିଆଯାଇଥିଲା । ଅନ୍ୟାନ୍ୟ କାର୍ଯ୍ୟକ୍ରମଗୁଡ଼ିକରେ ଥିଲା ଦେଶରେ ପାନୀୟ ଜଳ ଯୋଗାଣର ବ୍ୟବସ୍ଥା, ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ପାଇଁ ସରକାରୀ ସାହାଯ୍ୟ ବ୍ୟତୀତ ସହଜରେ ବ୍ୟାଙ୍କ୍ ଋଣ ପ୍ରାପ୍ତି, ଦେଶର ୧୪ ବର୍ଷ ବୟସ୍କ ସବୁ ବାଳକ ବାଳିକାଙ୍କୁ ମାଗଣାରେ ଶିକ୍ଷାଦାନ, କୃଷି ଉତ୍ପାଦନ ବିଶେଷକରି ଡାଲି ଓ ତୈଳବୀଜ ଜାତୀୟ ଫସଲ ଉତ୍ପାଦନ ବୃଦ୍ଧି ଓ ବଣ୍ଟନ ଦିଗରେ ଅନୁକୂଳ ବାତାବରଣ ସୃଷ୍ଟି କରିବା, ଦେଶରେ ପରିବାର ନିୟୋଜନ ବ୍ୟବସ୍ଥାର ଗତି ପୂର୍ବପରି ବଜାୟ ରଖିବା, ଦେଶରେ ସ୍ତ୍ରୀ ଶିକ୍ଷାର ପ୍ରସାର କରାଇବା, ଅପଚୟ ହେଉଥିବା ପଦାର୍ଥଗୁଡ଼ିକର ପୁନର୍ବ୍ୟବହାର କରାଇବା ପ୍ରଭୃତି ।

ଦେଶର ଆର୍ଥିନୀତିକ ଉନ୍ନତି କଳେ ଶୁଷ୍କ ଜମିଗୁଡ଼ିକର ସଦୁପଯୋଗ, ଗୃହୋପଯୋଗୀ ଜମିର ସୀମା ନିର୍ଦ୍ଧାରଣ କରାଯାଇ ବଳକା ଜମିର ବଣ୍ଟନ ପାଇଁ ଶାସନଗତ ଅସୁବିଧାଗୁଡ଼ିକର ନିରାକରଣ, କୃଷି ମଜୁରିଆମାନଙ୍କ ପାଇଁ ସର୍ବନିମ୍ନ ମଜୁରି ବ୍ୟବସ୍ଥାକୁ ଯଥାଯଥ ଭାବରେ କାର୍ଯ୍ୟକାରୀ କରାଇବା, ଗୋତି ପ୍ରଥା ଉଚ୍ଛେଦ କରିବା, ଗ୍ରାମାଞ୍ଚଳ ଗରିବ ଲୋକଙ୍କୁ ଗୃହୋପଯୋଗୀ ଜମି ଯୋଗାଇଦେବା, ସହରତଳି ଅଞ୍ଚଳର ଉନ୍ନତି ସଙ୍ଗେ ସଙ୍ଗେ ଆର୍ଥିନୀତିକ ଅସ୍ୱଚ୍ଛଳ ବ୍ୟକ୍ତିମାନଙ୍କ ପାଇଁ ଗୃହନିର୍ମାଣ ବ୍ୟବସ୍ଥା ଇତ୍ୟାଦି କାର୍ଯ୍ୟକ୍ରମଗୁଡ଼ିକୁ କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମ ଭିତରେ ଅନ୍ତର୍ଭୁକ୍ତ କରିବା ପୂର୍ବରୁ ଶ୍ରୀମତୀ ଗାନ୍ଧୀ ବ୍ୟକ୍ତିଗତ ଭାବେ ଉକ୍ତ ସମସ୍ୟାଗୁଡ଼ିକର ଗଭୀର ଅନୁଧ୍ୟାନ କରିଥିଲେ । ସେହିଭଳି ସାମାଜିକ ପ୍ରଗତି ପାଇଁ ସାଧାରଣ ସ୍ୱାସ୍ଥ୍ୟ ବ୍ୟବସ୍ଥାର ଉନ୍ନତି, ଅଧିକ ବିଦ୍ୟୁତ୍ ଶକ୍ତି ଉତ୍ପାଦନ, ନୂତନ ବନୀକରଣ, କଳା-ବଜାରୀ ଓ ବିଭିନ୍ନ କର ଫାଙ୍କୁଥିବା ବ୍ୟକ୍ତି ବିଶେଷଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ବ୍ୟବସ୍ଥା କରିବା ଭଳି କେତେକ ବିଷୟ ନୂତନ କୋଡ଼ିଏ ସୂତ୍ରୀ କାର୍ଯ୍ୟକ୍ରମ ମଧ୍ୟରେ ଅନ୍ତର୍ଭୁକ୍ତ କରିଥିଲେ ।

ସେହି ନୂତନ କାର୍ଯ୍ୟକ୍ରମର ଲକ୍ଷ୍ୟ ସମ୍ପର୍କରେ ସେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ ଆହ୍ୱାନ ଦେଇଥିଲେ, "ଏହି ନୂତନ କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ଲୋକଙ୍କୁ ସୁଖୀ

ଓ ସମୃଦ୍ଧିଶାଳୀ କରାଇବା ଏବଂ ଆମର ଏହି ବିଶାଳ ରାଷ୍ଟ୍ରକୁ ବିକଶିତ ଓ ସମୃଦ୍ଧ କରି ଗଢ଼ି ତୋଳିବା । ଯେଉଁ ଜାତିର ମନ୍ତ୍ର ହେଉଛି ସୁଚିନ୍ତିତ, ଜାଗ୍ରତ ଓ ଚରୈବେତି—ତାହାପାଇଁ ଏହା ଅତ୍ୟନ୍ତ ଉପାଦେୟ । ଆଜି ଏହି ଶୁଭଦିନରେ ମୁଁ ଆପଣମାନଙ୍କୁ ନିବେଦନ କରୁଛି—ଆସନ୍ତୁ ସମସ୍ତେ ମିଳିମିଶି ଅଧିକରୁ ଅଧିକ କଠିନ ପରିଶ୍ରମ କରିବାକୁ ସଙ୍କଳ୍ପ ଗ୍ରହଣ କରିବା । ଏହି କାର୍ଯ୍ୟକ୍ରମ ଆମ ସମସ୍ତଙ୍କର ଓ ରାଷ୍ଟ୍ରର । ଆମ ରାଷ୍ଟ୍ରର ସେବା, ବିକାଶ ଓ ନିର୍ମାଣ ଆମର ପରମ କର୍ତ୍ତବ୍ୟ । ଆସନ୍ତୁ ଏହାକୁ ସମ୍ପୂର୍ଣ୍ଣ ସଫଳ କରିବାପାଇଁ ଏକନିଷ୍ଠ ଉଦ୍ୟମ କରିବା ।" †

ଶ୍ରୀମତୀ ଗାନ୍ଧୀଙ୍କ ଉକ୍ତ କାର୍ଯ୍ୟକ୍ରମଗୁଡ଼ିକ ପ୍ରଥମଥର ଭଳି ଦେଶର ସର୍ବତ୍ର ଆଦୃତ ହୋଇ ପାରିଥିଲା । ତଥାପି ସେଗୁଡ଼ିକ କାର୍ଯ୍ୟକାରୀ କରାଇବା ବେଳେ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ପ୍ରକାରର ପ୍ରତିବନ୍ଧକ ସୃଷ୍ଟି ହେଉଥିଲା । ତେଣୁ କିପରି ଭାବରେ ସେଗୁଡ଼ିକର ମୁକାବିଲା କରାଯାଇ ପାରିବ ତାହା ଥିଲା ଶ୍ରୀମତୀ ଗାନ୍ଧୀଙ୍କ ମୁଖ୍ୟ ବିଚାରର ବିଷୟ । ସେଥିପାଇଁ ପ୍ରତ୍ୟେକ ସ୍ତରରେ ଆଲୋଚନାମାନ କରାଯାଇ ପ୍ରତିବନ୍ଧକଗୁଡ଼ିକର ପ୍ରତିକାର ପାଇଁ ବିଭିନ୍ନ ପଦକ୍ଷେପ ନେବାଲାଗି ସେ ସରକାରୀ-କଳକୁ ସମ୍ପୂର୍ଣ୍ଣ ସଜାଗ କରି ରଖିଥିଲେ । ସେହି ଉଦ୍ଦେଶ୍ୟରେ ସବୁ ସ୍ତରରେ ନିୟମିତ ଭାବେ ସମୀକ୍ଷାମାନ କରାଯାଉଥିଲା ଓ ସରକାରଙ୍କ ବିଭିନ୍ନ ବିଭାଗ ତଥା ଜନଗଣଙ୍କ ସହାୟତା ପାଇଁ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ବିଂଶସୂତ୍ରୀ କାର୍ଯ୍ୟକ୍ରମ ସମେତ ଯୋଜନା ଅନ୍ତର୍ଭୁକ୍ତ କାର୍ଯ୍ୟକ୍ରମଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ଯଥେଷ୍ଟ ଗୁରୁତ୍ୱ ଦେବାକୁ ସେ ସବୁବେଳେ ପରାମର୍ଶ ଦେଉଥିଲେ ।

ସେ ମଧ୍ୟ କେବଳ ବିଂଶସୂତ୍ରୀ କାର୍ଯ୍ୟକ୍ରମର ସମୀକ୍ଷା କରିବାପାଇଁ ରାଜ୍ୟ ମୁଖ୍ୟମନ୍ତ୍ରୀମାନଙ୍କ ସମ୍ମିଳନୀର ଆୟୋଜନ କରାଇଥିଲେ । ଉଦ୍ଦେଶ୍ୟ, ସେ ସମ୍ପର୍କରେ ବିଭିନ୍ନ କ୍ଷେତ୍ରରେ କିଭଳି ପ୍ରଗତି ହୋଇପାରିଛି, ତାହା ଜାଣିବା ସଙ୍ଗେ ସଙ୍ଗେ ଯେଉଁସବୁ ପ୍ରତିବନ୍ଧକମାନ ସୃଷ୍ଟି ହେଉଛି ତାର କିପରି ନିରାକରଣ କରାଯାଇ ପାରିବ ତାହା ଆଲୋଚନା କରିବା । ଥରେ ସେଭଳି ଏକ ସମ୍ମିଳନୀରେ ସେ ସ୍ୱୀକାର କରିଥିଲେ ଯେ, ପ୍ରକୃତରେ ସରକାରୀ କଳ ଖୁବ୍ ମନ୍ଥର ଗତିରେ ଗତି କରୁଥିଲା । ତେଣୁ କେନ୍ଦ୍ର ଓ ରାଜ୍ୟ ପ୍ରତ୍ୟେକସ୍ତରରେ ଶାସନକଳକୁ ପୁନର୍ଜୀବନ ପ୍ରଦାନ ନ କଲେ ଯେ କୌଣସି ସରକାରୀ କାର୍ଯ୍ୟକ୍ରମ ଫଳପ୍ରଦ ହୋଇ ପାରିବ ନାହିଁ ଓ ସାଧାରଣ ଜନତାର ହିତ ସାଧନ ହୋଇ ପାରିବ ନାହିଁ । ସେଇ ପରିପ୍ରେକ୍ଷୀରେ ସେ ପ୍ରକାଶ କରିଥିଲେ—"ଆପଣମାନଙ୍କୁ ମୁଁ ପୁଣି ଥରେ ମନେପକାଇ ଦେଇଚାହେଁ

---

† ୧୯୮୨ ଜାନୁୟାରୀ ୧୪ ତାରିଖ ଦିନ ଶ୍ରୀମତୀ ଗାନ୍ଧୀ ଜାତି ଉଦ୍ଦେଶ୍ୟରେ ଦେଇଥିବା ବେତାର ଭାଷଣର କିୟଦଂଶ ।

ସେ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଏକ ରାଷ୍ଟ୍ରୀୟ କାର୍ଯ୍ୟକ୍ରମ । ସାରାଦେଶର ସାମୂହିକ ବିକାଶ ଲାଗି ଏହାର ପରିକଳ୍ପନା । ଏହାକୁ କେବଳ ପ୍ରଧାନମନ୍ତ୍ରୀ କିମ୍ବା କୌଣସି ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଦଳର କାର୍ଯ୍ୟକ୍ରମ ମନେକରି କମ୍ ଗୁରୁତ୍ୱ ଦେବା ଆଦୌ ଉଚିତ ନୁହେଁ । ଯଦି ଆପଣମାନେ ଏହା ପଛରେ କିଛି ରାଜନୀତି ରହିଥାଇପାରେ ବୋଲି ଚିନ୍ତା କରୁଥାନ୍ତି ତାହା କେବଳ ଜନସାଧାରଣଙ୍କ ରାଜନୀତି । †

ସେ ମଧ୍ୟ ଅନୁଭବ କରିଥିଲେ ଯେ ଦେଶର ସାମାଜିକ ଓ ଅର୍ଥନୈତିକ ପ୍ରଗତି ପାଇଁ ରାଜନୈତିକ ସ୍ଥିରତା ଏକାନ୍ତ ଆବଶ୍ୟକ । ସେହି ଦୃଷ୍ଟିରୁ ଆସାମ ଆନ୍ଦୋଳନର ଅବସାନ ନିମନ୍ତେ ସେ ଯଥାସାଧ୍ୟ ଉଦ୍ୟମ କରିଥିଲେ ଓ ଏକପ୍ରକାର ସଫଳ ମଧ୍ୟ ହୋଇଥିଲେ ।

**ଆସାମ ଆନ୍ଦୋଳନ :—**

ଏକ ସମୟରେ ଅତି ଉଗ୍ର ତଥା ମାରାତ୍ମକ ରୂପ ନେଇଥିବା ଆସାମ ଆନ୍ଦୋଳନ ଆରମ୍ଭ ହୋଇଥିଲା ୧୯୭୯ ମସିହା ଅଗଷ୍ଟ ମାସରେ । ଆସାମର ଭୋଟର ତାଲିକାରୁ ତଥାକଥିତ ବିଦେଶୀମାନଙ୍କ ନାମ ବାଦ ଦେବାପାଇଁ ସେଠିକାର ସ୍ଥାୟୀ ବାସିନ୍ଦାମାନଙ୍କ ତରଫରୁ ଭାରତୀୟ ସାମାଜିକ ଓ ଆର୍ଥନୀତିକ କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟିକାରୀ ଆନ୍ଦୋଳନ କରାଯାଇଥିଲା । ସେଇ ଆନ୍ଦୋଳନ ଆରମ୍ଭ ହେବା ବେଳକୁ କେନ୍ଦ୍ରରେ କୌଣସି ବଳିଷ୍ଠ ସରକାର ନ ଥିଲେ । ଶ୍ରୀମତୀ ଗାନ୍ଧୀ କ୍ଷମତାରୁ ଯାଇ ପୁଣି ଥରେ ଜନସମର୍ଥନ ଲାଭକରି ମାତ୍ର ଅଢ଼େଇ ବର୍ଷ ପରେ କ୍ଷମତାକୁ ଫେରିଆସିବା ବେଳକୁ ଆସାମରେ ଏକ ବିରାଟ ଆନ୍ଦୋଳନ ମୁଣ୍ଡ ଟେକି ଉଠିଥିଲା ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସୀମିତ ସମୟ ମଧ୍ୟରେ ଆନ୍ଦୋଳନକାରୀମାନଙ୍କ କାର୍ଯ୍ୟକଳାପ ଏତେ ମାତ୍ରାରେ ବୃଦ୍ଧି ପାଇଥିଲା ଯେ, ୧୯୮୦ ମସିହା ଜାନୁୟାରୀ ମାସରେ ହୋଇଥିବା ଲୋକସଭା ନିର୍ବାଚନରେ ଆସାମର ୧୪ଟି ଆସନ ମଧ୍ୟରୁ ମାତ୍ର ଦୁଇଟିରେ ନିର୍ବାଚନ ପରିଚାଳିତ ହେବା ସମ୍ଭବପର ହୋଇ ପାରିଥିଲା । ଶ୍ରୀମତୀ ଗାନ୍ଧୀଙ୍କ ଭାଷାରେ, ଆସାମର ପରିସ୍ଥିତି ଥିଲା ଦାରୁଣ ଦୁଃଖଦାୟକ । "ଏହା କେବଳ ଏଇଥିପାଇଁ ଦୁଃଖଦାୟକ ନୁହେଁ ଯେ, ଲୋକେ ଏତେ ସାଂଘାତିକ ଭାବରେ ଦୁର୍ଦ୍ଦଶା ଭୋଗ କରିଛନ୍ତି । ନିରାପତ୍ତା ଦୃଷ୍ଟିରୁ ଏହା ଆମ ଦେଶର ଏକ ଘାଟି ସ୍ଥାନ । ଏଠାରେ ଆମେ ଏମିତି ଏକ ପରିସ୍ଥିତି ଉପୁଜିବାକୁ

---

† ୧୯୮୩ ଅପ୍ରେଲ ମାସରେ ନୂଆଦିଲ୍ଲୀରେ ଅନୁଷ୍ଠିତ ମୁଖ୍ୟମନ୍ତ୍ରୀମାନଙ୍କ ସମ୍ମିଳନୀରେ ଶ୍ରୀମତୀ ଗାନ୍ଧୀ ଦେଇଥିବା ଅଭିଭାଷଣର ଅଂଶବିଶେଷ ।

ଦେଇ ପାରିବୁ ନାହିଁ—ଯେଉଁଠି କୌଣସି ଗୋଷ୍ଠୀର ଲୋକେ ଅନୁଭବ କରିବେ ଯେ ସେମାନେ ଯାହା ଚାହିଁବେ, ତାହା କରିପାରିବେ ।" *

ପ୍ରାଥମିକ ଅବସ୍ଥାରେ ଆନ୍ଦୋଳନଗୁଡ଼ିକ ପ୍ରାୟ ଯେତେ ନୀତିବାନ୍ ତଥା ଆଦର୍ଶସ୍ଥାନସ୍ଥ ହୋଇ ଆରମ୍ଭ ହୋଇଥିଲେ ସୁଦ୍ଧା ପ୍ରାୟତଃ ସବୁଗୁଡ଼ିକ ଦୀର୍ଘକାଳ ଲାଗି ରହିବା ଫଳରେ ଅଧିକାଂଶ କ୍ଷେତ୍ରରେ ଆନ୍ଦୋଳନକାରୀମାନେ ସେମାନଙ୍କ ଉଦ୍ଦେଶ୍ୟ ହାସଲ ପାଇଁ ଧୈର୍ଯ୍ୟଚ୍ୟୁତ ହୋଇ ହିଂସାତ୍ମକ କାର୍ଯ୍ୟକଳାପରେ ଲିପ୍ତ ହୋଇ ଯାଇଥାନ୍ତି । ଆସାମ ଆନ୍ଦୋଳନ କ୍ଷେତ୍ରରେ ମଧ୍ୟ ତାହାହିଁ ହୋଇଥିଲା । ଆନ୍ଦୋଳନର ପ୍ରାଥମିକ ଅବସ୍ଥାରୁ ହିଁ ହିଂସାତ୍ମକ କାର୍ଯ୍ୟକଳାପ ଯଥେଷ୍ଟ ଭାବରେ ବୃଦ୍ଧି ପାଇବା ଲକ୍ଷ୍ୟ କରାଯାଇଥିଲା ।

ଆସାମ ଆନ୍ଦୋଳନର ମୂଳ ସମସ୍ୟାଟି ଥିଲା ବିଦେଶୀ ନାଗରିକମାନଙ୍କୁ ସେଠାରୁ ବହିଷ୍କାର ଦାବୀ । ଯେଉଁମାନେ ଅନେକ ବର୍ଷ ପୂର୍ବରୁ ପାକିସ୍ଥାନ କିମ୍ବା ବଙ୍ଗଳାଦେଶରୁ ସେଠାକୁ ଆସି ପରିବାର କରି ସ୍ଥାୟୀଭାବେ ବସବାସ କରି ରହିଥିଲେ, ସେମାନଙ୍କୁ ଆସାମର ବାସିନ୍ଦା ବୋଲି ଗ୍ରହଣ କରିବାକୁ ସେଠିକାର କେତେକ ଲୋକ ପ୍ରସ୍ତୁତ ନ ଥିଲେ । ବିଶେଷକରି ଆନ୍ଦୋଳନକାରୀମାନେ ଦାବୀ କରିଥିଲେ ଯେ, ଯେଉଁମାନେ ୧୯୬୧ ପୂର୍ବରୁ ସେଠାକୁ ଆସିଥିଲେ କେବଳ ସେମାନଙ୍କୁ ସେଠିକାର ନାଗରିକ ରୂପେ ଗ୍ରହଣ କରାଯାଉ । ତାପରେ ଆସିଥିବା ପରିବାରଗୁଡ଼ିକୁ ବିଦେଶୀ ବୋଲି ଚିହ୍ନଟ କରାଯାଉ । କିନ୍ତୁ ଶ୍ରୀମତୀ ଗାନ୍ଧୀ ୧୯୬୧ ପରିବର୍ତ୍ତେ ୧୯୭୧ ମସିହାକୁ ମୂଳ ସମୟ ରୂପେ ଗ୍ରହଣ କରିବାପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ଆନ୍ଦୋଳନକାରୀମାନେ ତାହାକୁ ଗ୍ରହଣ କରି ନ ଥିଲେ ।

ସେମାନଙ୍କ ଦାବୀ ହାସଲ ନ ହେଲେ ଆନ୍ଦୋଳନକାରୀମାନେ ସରକାରଙ୍କ ଗଣତାନ୍ତ୍ରିକ କାର୍ଯ୍ୟକଳାପରେ ବାଧା ସୃଷ୍ଟି କରିବାପାଇଁ ଆଗେଇ ଆସିଥିଲେ । ଆଇନସମ୍ମତ କର୍ତ୍ତୃପକ୍ଷଙ୍କ କ୍ଷମତାଗୁଡ଼ିକୁ ସୀମିତ କରିବାପାଇଁ ପ୍ରବଳ ଉଦ୍ୟମ କରିଥିଲେ ସେମାନେ । ସେ ସରକାରୀ କର୍ମଚାରୀ ହୁଅନ୍ତୁ ବା ହୁଅନ୍ତୁ ଯେ କୌଣସି ଲୋକ, ଆନ୍ଦୋଳନକାରୀଙ୍କ ପ୍ରତି ସେମାନେ ସମ୍ବେଦନଶୀଳ ନ ହେଲେ ଓ ସେମାନଙ୍କୁ ସମର୍ଥନ ନ କଲେ ବିଭିନ୍ନ ପ୍ରକାର ଅତ୍ୟାଚାର ସେମାନଙ୍କୁ କରିବାପାଇଁ ଏପରିକି ହତ୍ୟା କରିବାପାଇଁ ସେମାନେ କୁଣ୍ଠିତ ନ ଥିଲେ । କଳେ, ବଳେ କିମ୍ବା କୌଶଳରେ ଜନସମର୍ଥନ ଲାଭ କରିବାପାଇଁ ସେମାନେ ଥିଲେ ଉଦ୍ୟମରତ । ତେଣୁ ବୋଧହୁଏ ପ୍ରଥମରୁ ହିଁ ସନ୍ତ୍ରାସବାଦକୁ ସେମାନେ ଅଗ୍ରାଧିକାର ଦେଇଥିଲେ ।

---

* ଅପ୍ରେଲ ୪, ୧୯୮୩ ମସିହାରେ ନୂଆଦିଲ୍ଲୀରେ ଅନୁଷ୍ଠିତ ମୁଖ୍ୟମନ୍ତ୍ରୀମାନଙ୍କ ସମ୍ମିଳନୀରେ ଶ୍ରୀମତୀ ଗାନ୍ଧୀଙ୍କ ଭାଷଣର ଅଂଶବିଶେଷ ।

ଆସାମରେ ସେଭଳି ସନ୍ତ୍ରାସବାଦ ଫଳରେ ଜନସାଧାରଣ ଆତଙ୍କିତ ହୋଇ ପଡ଼ିବା ସ୍ୱାଭାବିକ କଥା । ତାହାହିଁ ଥିଲା ଆନ୍ଦୋଳନକାରୀଙ୍କ ଲକ୍ଷ୍ୟ । ତା ଫଳରେ ସେମାନଙ୍କ ପ୍ରତି ସମର୍ଥନ କରିବାକୁ ସାଧାରଣ ଜନତାର ଇଚ୍ଛା ଥାଉ ବା ନ ଥାଉ, ସେମାନେ ସେଥିପାଇଁ ବାଧ୍ୟ ହେଉଥିଲେ । ସନ୍ତ୍ରାସବାଦୀମାନେ ବିଧାନସଭାର ସଭ୍ୟ ତଥା ସରକାରୀ କର୍ମଚାରୀଙ୍କ ଉପରେ ଆକ୍ରମଣ କରୁଥିଲେ । ପରିଣାମ ସ୍ୱରୂପ ଜଣେ ଡେପୁଟି କମିଶନରଙ୍କ ସମେତ, ଆହୁରି କେତେକ କର୍ତ୍ତବ୍ୟରତ ସରକାରୀ କର୍ମଚାରୀଙ୍କ ଅକାଳ ମୃତ୍ୟୁ ହୋଇଥିଲା । ଗୋଟିଏ ସରକାରୀ ରିପୋର୍ଟରେ ୧୯୭୯ ମସିହାରୁ ୧୯୮୨ ମଧ୍ୟରେ ଆସାମରେ ୨୭୨ଟି ହତ୍ୟା, ୧୪୦୪ଟି ଆକ୍ରମଣ, ୪୨୫ଟି ଅଗ୍ନିକାଣ୍ଡ ଓ ୩୩୦ଟି ବିସ୍ଫୋରଣ ଘଟିଥିବା କଥା ପ୍ରକାଶ ପାଇଥିଲା । ଆସାମ ଆନ୍ଦୋଳନରେ ବିଭିନ୍ନ ହିଂସାକାଣ୍ଡ ଓ ହତ୍ୟାକାଣ୍ଡ ଫଳରେ ପ୍ରାୟ ୧୭୦୦ ଲୋକ ପ୍ରାଣ ହରାଇଥିବା କଥା ସରକାରୀ ଭାବେ ପ୍ରକାଶ ପାଇଥିଲା ।

ସ୍ୱାଭାବିକ ଭାବେ ତାର ପ୍ରତିକ୍ରିୟା ଆସାମ ବ୍ୟତୀତ ଅନ୍ୟାନ୍ୟ ପଡ଼ୋଶୀ ରାଜ୍ୟଗୁଡ଼ିକରେ ମଧ୍ୟ ପ୍ରକାଶ ପାଇଥିଲା । ବିଶେଷକରି ୧୯୮୦ ମସିହା ଜୁନ୍ ମାସରେ ତ୍ରିପୁରାରେ ଅନେକଗୁଡ଼ିଏ ହିଂସାକାଣ୍ଡ ସଂଘଟିତ ହୋଇଯାଇଥିଲା ଓ ବଙ୍ଗଳାର କେତେକ ସ୍ଥାନରେ ମଧ୍ୟ ତାର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ।

ଆସାମରେ ଆନ୍ଦୋଳନ ଫଳରେ କେବଳ ଆସାମ ପ୍ରଦେଶର ନୁହେଁ, ସମଗ୍ର ଦେଶର ଆର୍ଥିକ ପ୍ରଗତିରେ ପ୍ରତିବନ୍ଧକ ସୃଷ୍ଟି ହୋଇଥିଲା । ଦୀର୍ଘ ପ୍ରାୟ ଏକ ବର୍ଷରୁ ଅଧିକକାଳ ଧରି ଆନ୍ଦୋଳନକାରୀମାନେ ଆସାମର ତୈଳ ଖଣିମାନଙ୍କରୁ ତୈଳ ଯୋଗାଣ ବନ୍ଦ କରିବାପାଇଁ ବାଧ୍ୟ କରିଥିଲେ । ସେଗୁଡ଼ିକ ସମେତ ଅନ୍ୟାନ୍ୟ ଅନେକ କଳକାରଖାନାକୁ ମଧ୍ୟ ସେମାନେ ଅବରୋଧ କରି ରଖିଥିଲେ ଦୀର୍ଘକାଳ ଲାଗି । ପରିଣାମତଃ ଆସାମର ସମସ୍ତ ପ୍ରକାର ଉତ୍ପାଦନ ଓ ସୁଷମ ବଣ୍ଟନ ପ୍ରାୟତଃ ବାଧାପ୍ରାପ୍ତ ହୋଇଥିଲା । ନିରବଚ୍ଛିନ୍ନ ଭାବରେ ସେହି ଆନ୍ଦୋଳନ ଜାରି ରହିବା ଯୋଗୁଁ ଆସାମବାସୀଙ୍କ ଆର୍ଥିକ ବିକାଶ ସମେତ ସ୍ୱାଭାବିକ ଜୀବନଯାପନର ଧାରା ବାଧାପ୍ରାପ୍ତ ହୋଇଥିଲା ।

ସର୍ବାପେକ୍ଷା ଅଧିକ କ୍ଷତିକାରକ ଥିଲା ସେହି ଆନ୍ଦୋଳନକୁ କେନ୍ଦ୍ର କରି ଦେଶରେ ବିଭିନ୍ନ ଗୋଷ୍ଠୀ ଓ ସଂପ୍ରଦାୟ ମଧ୍ୟରେ ଅସଦ୍‌ଭାବର ଉଦ୍ରେକ ଓ ସ୍ୱାଧୀନତା କ୍ଷୁଣ୍ଣ ହେବା ଘଟଣା । ୧୯୮୦ ମସିହାରେ ଶ୍ରୀମତୀ ଗାନ୍ଧୀ କାର୍ଯ୍ୟଭାର ଗ୍ରହଣ କରିବା ପରେ ପରେ ସର୍ବପ୍ରଥମେ ଆସାମ ସମସ୍ୟାର ସମାଧାନ କରିବାପାଇଁ ପଦକ୍ଷେପ ଗ୍ରହଣ କରିଥିଲେ । ଆସାମ ଆନ୍ଦୋଳନ ହିଂସାତ୍ମକ ହେବା ଯୋଗୁଁ ସେଠାରେ ଶାନ୍ତିରକ୍ଷା ଲାଗି ସୈନ୍ୟବାହିନୀକୁ ନିଯୁକ୍ତ କରାଯାଇଥିଲା । ୧୯୮୦

ଫେବୃୟାରୀ ମାସରେ ଆସାମର ଆନ୍ଦୋଳନକାରୀ ସଂଗଠନ "ନିଖିଳ ଆସାମ ଛାତ୍ର ୟୁନିଅନ୍"ର ପ୍ରତିନିଧି ଦଳଙ୍କ ସହ ଆଲୋଚନା କରିଥିଲେ । ତା ପରେ ପରେ ସେମାନଙ୍କ ଆଉ ଏକ ସହଯୋଗୀ ଅନୁଷ୍ଠାନ "ନିଖିଳ ଆସାମ ଗଣସଂଗ୍ରାମ ପରିଷଦ"ର ନେତୃବୃନ୍ଦଙ୍କ ସହ ମଧ୍ୟ ସାକ୍ଷାତ ଆଲୋଚନା କରିଥିଲେ । ୧୯୮୧ ମସିହା ନଭେମ୍ବର ମଧ୍ୟରେ ସେମାନଙ୍କ ସହ ପ୍ରାୟ ୧୪ ଥର ଆଲୋଚନା ହୋଇଥିଲା । ପରେ ପରେ ଉକ୍ତ ଆଲୋଚନାମାନଙ୍କରେ ବିରୋଧୀ ଦଳମାନେ ମଧ୍ୟ ଅଂଶ ଗ୍ରହଣ କରିଥିଲେ । ୧୯୮୩ ମସିହା ଜାନୁୟାରୀ ୫ ତାରିଖ ସୁଦ୍ଧା ସେହିଭଳି ଆଉ ୭ଟି ବୈଠକର ଆୟୋଜନ କରାଯାଇଥିଲା । ଏଥିରୁ ଶାନ୍ତିପୂର୍ଣ୍ଣ ମାଧ୍ୟମରେ ଦେଶର ସମସ୍ୟାଗୁଡ଼ିକ ସମାଧାନ କରିବା ଦିଗରେ ଶ୍ରୀମତୀ ଗାନ୍ଧୀଙ୍କ ଉଦ୍ୟମ ଓ ଅଭିଳାଷ ସ୍ପଷ୍ଟ ।

ଶ୍ରୀମତୀ ଗାନ୍ଧୀଙ୍କର ସେ ସମସ୍ତ ଉଦ୍ୟମ ସତ୍ତ୍ୱେ ଆନ୍ଦୋଳନକାରୀଙ୍କର ସଦିଚ୍ଛାର ଅଭାବ ଯୋଗୁଁ ସରକାର ଓ ସେମାନଙ୍କ ମଧ୍ୟରେ କୌଣସି ବୁଝାମଣା ହୋଇ ପାରି ନ ଥିଲା । ଇତି ମଧ୍ୟରେ ଆସାମ ବିଧାନସଭା ପାଇଁ ନିର୍ବାଚିତ ପ୍ରତିନିଧିମାନଙ୍କ କାର୍ଯ୍ୟକାଳ ପୂରି ଯାଇଥିଲା ଓ ସେଠାରେ ରାଷ୍ଟ୍ରପତି ଶାସନ ଜାରି କରାଯାଇଥିଲା । ଆନ୍ଦୋଳନକାରୀମାନେ ଧମକ ଦେଇଥିଲେ ଯେ, ଆସାମରେ ବିଦେଶୀ ନାଗରିକ ସମସ୍ୟାର ସମାଧାନ ହେବା ପୂର୍ବରୁ ନିର୍ବାଚନ ଅନୁଷ୍ଠିତ ହେଲେ ସାରା ଦେଶରେ ସେମାନେ ରକ୍ତର ନଦୀ ବୁହାଇ ଦେବେ । କିନ୍ତୁ ଅପର ପକ୍ଷରେ ଆସାମରେ ମାର୍ଚ୍ଚ ୧୯୮୩ ପୂର୍ବରୁ ନିର୍ବାଚନର ଆବଶ୍ୟକତା ବିଶେଷ ଜରୁରୀ ଥିଲା । କାରଣ ଦେଶରେ ଜରୁରୀ କାଳ ଘୋଷଣା ହୋଇ ନ ଥିଲା କିମ୍ବା ସେଠାରେ ନିର୍ବାଚନ ଅନୁଷ୍ଠିତ ହୋଇ ପାରିବ ନାହିଁ ବୋଲି ନିର୍ବାଚନ କମିଶନର ଘୋଷଣା କରି ନ ଥିଲେ । ତେଣୁ ୧୯୭୮ ମସିହାର ୪୪ ତମ ସମ୍ବିଧାନ ସଂଶୋଧନ ବିଲ୍ ଅନୁଯାୟୀ ଆସାମରେ ଏକ ବର୍ଷରୁ ଅଧିକ କାଳ ରାଷ୍ଟ୍ରପତି ଶାସନ ପାଇଁ ସାମ୍ବିଧାନିକ ବିଧି ବିଧାନ ନ ଥିବା ଦୃଷ୍ଟିରୁ ନିର୍ବାଚନ ବ୍ୟତୀତ ସରକାରଙ୍କ ପାଇଁ ଅନ୍ୟ କୌଣସି ପନ୍ଥା ନ ଥିଲା ।

ସେହି ପରିପ୍ରେକ୍ଷୀରେ ସମସ୍ୟାର ସମାଧାନ ପାଇଁ ଶ୍ରୀମତୀ ଗାନ୍ଧୀ ଘୋଷଣା କରିଥିଲେ ଯେ ରାଜ୍ୟର ପ୍ରତ୍ୟେକ ନିର୍ବାଚନମଣ୍ଡଳୀ ପାଇଁ ଗୋଟିଏ ଗୋଟିଏ ଟ୍ରିବ୍ୟୁନାଲ୍ ଗଠନ କରାଯିବ । ଟ୍ରିବ୍ୟୁନାଲ୍‌ଗୁଡ଼ିକ ପ୍ରତି ଭୋଟରଙ୍କ ନାଗରିକତ୍ୱ ସମ୍ପର୍କରେ ସିଦ୍ଧାନ୍ତ ଗ୍ରହଣ କରିବ ଏବଂ ସେମାନଙ୍କ ନାମ ଭୋଟର ତାଲିକାରେ ଅନ୍ତର୍ଭୁକ୍ତ କରିବା ବା ନ କରିବା ବ୍ୟବସ୍ଥା ଗ୍ରହଣ କରିବ । କିନ୍ତୁ ଆନ୍ଦୋଳନ-କାରୀମାନେ ସେ ପ୍ରସ୍ତାବକୁ ଗ୍ରହଣ କରି ନ ଥିଲେ କିମ୍ବା ସେମାନଙ୍କ ଦ୍ୱାରା ଗ୍ରହଣ-ଯୋଗ୍ୟ କୌଣସି ସମାଧାନର ସୂତ୍ର ଆବିଷ୍କାର ହୋଇ ପାରି ନ ଥିଲା । ସେମାନେ

ଦେଶରେ ସନ୍ତ୍ରାସବାଦର ପ୍ରସାର କରାଇବା ପାଇଁ ଥିଲେ ଆଗୁସାର । ସମସ୍ତ ଆସାମରେ କେବଳ ଭୟ ଓ ଭୟର ବହ୍ନିଶିଖା ।

ଦୃଢ଼ ଭାବରେ ଆନ୍ଦୋଳନକାରୀଙ୍କ ମୁକାବିଲା କରିବା ପାଇଁ ଶ୍ରୀମତୀ ଗାନ୍ଧୀ ମନସ୍ଥ କରିଥିଲେ । ମନସ୍ଥ କରିଥିଲେ ଆସାମରେ ନିର୍ବାଚନ ଅନୁଷ୍ଠିତ କରାଇ ସେଠି ଜନଗଣଙ୍କ ମନୋଭାବ ଜାଣିବାପାଇଁ ।

ଆସାମରେ ୧୯୮୩ ମସିହା ଫେବୃୟାରୀ ୨୨ ତାରିଖ ଦିନ ନିର୍ବାଚନ ହେବା ଘୋଷଣା ପ୍ରକାଶ ପାଇବା ପରେ ପରେ ଆନ୍ଦୋଳନକାରୀମାନେ ଖୁବ୍ ସଜାଗ ହୋଇ ଉଠିଥିଲେ ଓ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ବୃଦ୍ଧି ପାଇଥିଲା । ପ୍ରଥମେ ସେମାନେ ନିର୍ବାଚନରେ ଅଂଶ ଗ୍ରହଣ କରିବା ସମ୍ଭାବନା ଥିବା ପ୍ରାର୍ଥୀମାନଙ୍କ ଉପରେ ବଳ ପ୍ରୟୋଗ କରିବା, ସେମାନଙ୍କୁ ଅଟକ ରଖିବା କିମ୍ବା ଅପହରଣ କରିନେବା, ଏପରିକି ହତ୍ୟା କରିବାପାଇଁ ମଧ୍ୟ କୁଣ୍ଠିତ ନ ଥିଲେ । କେବଳ ପ୍ରାର୍ଥୀ ନୁହନ୍ତି, ସେମାନଙ୍କ ପରିବାରର ସଭ୍ୟ, ବନ୍ଧୁ ତଥା ସମର୍ଥକମାନଙ୍କୁ ମଧ୍ୟ ଆନ୍ଦୋଳନକାରୀଙ୍କ ଦୌରାମ୍ୟ ସହ୍ୟ କରିବାକୁ ପଡ଼ିଥିଲା । ସେହି ସମୟରେ ଏକପ୍ରକାର ଆତଙ୍କପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇଥିଲା ଆସାମରେ !

ଶ୍ରୀମତୀ ଗାନ୍ଧୀ ଦୃଢ଼ ଭାବରେ ସେ ସନ୍ତ୍ରାସବାଦର ମୁକାବିଲା କରିବାପାଇଁ ଉଦ୍ୟମ କରିଥିଲେ । ତାଙ୍କର ଦୃଢ଼ ମତ ଥିଲା ଯେ, ସେଠିକାର ଅଧିକାଂଶ ଲୋକ ସେଭଳି ଆନ୍ଦୋଳନ ଚାହୁଁ ନ ଥିବା ଦୃଷ୍ଟିରୁ ଲୋକପ୍ରିୟ ସରକାର ଗଠିତ ହେବା ଅଧିକ ଯୁକ୍ତିଯୁକ୍ତ । ଗଣତାନ୍ତ୍ରିକ ବ୍ୟବସ୍ଥା ଉପରେ ଆସ୍ଥାବାନ୍ ଜନସାଧାରଣ କେବଳ ଅସହାୟ ଭାବରେ ଉଗ୍ରପନ୍ଥୀମାନଙ୍କର ନିର୍ଯାତନା ଭୋଗ କରିବା ଆଦୌ ଶ୍ଳାଘନୀୟ ନୁହେଁ । ସେଥିପାଇଁ ସରକାରଙ୍କ ଦୃଢ଼ତା ହିଁ ସର୍ବାଦୌ ଆବଶ୍ୟକ । ତାଙ୍କ ଭାଷାରେ "ମୋଟାମୋଟି ଭାବରେ ଆସାମର ଜନସାଧାରଣ ନିର୍ବାଚନ ଚାହୁଁଥିଲେ, ଆନ୍ଦୋଳନକାରୀ ଗୋଷ୍ଠୀ ଏହା ଚାହୁଁ ନ ଥିଲେ । କିନ୍ତୁ ଆସାମର ଜନସାଧାରଣ, ବିଶେଷକରି ସଂଖ୍ୟାଲଘୁ ଶ୍ରେଣୀର ଲୋକେ—ଯେଉଁମାନେ ଧର୍ମ ବା ଭାଷା ଦୃଷ୍ଟିରୁ ସଂଖ୍ୟାଲଘୁ, ତଫସିଲଭୁକ୍ତ ଜାତିର ଲୋକମାନେ ଓ ବ୍ୟବସାୟୀ ଗୋଷ୍ଠୀ—ସମସ୍ତେ ଅନୁଭବ କରିଥିଲେ ଯେ ଯଦି ନିର୍ବାଚନ ନ ହୁଏ ତେବେ ଆନ୍ଦୋଳନକାରୀ ଦଳଙ୍କ ନିକଟରେ ଏହା ଆତ୍ମସମର୍ପଣ ସ୍ୱରୂପ ହିଁ ହେବ । ତେଣୁ ସେମାନେ ନୀରବଦରେ ରହିପାରିବେ ନାହିଁ । ସବୁ ଭାଷା ଓ ଶ୍ରେଣୀ ସମେତ ଅନେକ ଗୋଷ୍ଠୀର ଲୋକେ ମୋତେ ସେଇ ଗୋଟିଏ କଥା କହିଛନ୍ତି । ସେମାନେ ଅନୁଭବ କରିଥିଲେ ଯେ, ଯଦି ଆମେ ଆନ୍ଦୋଳନକାରୀଙ୍କ ଦାବୀ ମାନିନେବୁ ଓ

ନିଷ୍ପମିତ କାର୍ଯ୍ୟ ବନ୍ଦ କରିଦେବୁ ତେବେ ସେମାନଙ୍କୁ ତଳିତଲାନ୍ତ କରି ଦିଆଯିବ ।" †

ସେହିସବୁ ଦୃଷ୍ଟିକୋଣରୁ ଆସାମରେ ନିର୍ବାଚନ କରାଯିବା ଓ ସନ୍ତ୍ରାସବାଦୀଙ୍କୁ ଦୃଢ଼ ଭାବରେ ଦମନ କରାଯିବା ସପକ୍ଷରେ ଶ୍ରୀମତୀ ଗାନ୍ଧୀ ଦୃଢ଼ ମତପୋଷଣ କରିଥିଲେ ଓ ସେଥିପାଇଁ ଯଥାଯଥ ପଦକ୍ଷେପମାନ ମଧ୍ୟ ନେଇଥିଲେ ।

ରାଜନୈତିକ ଦଳ, ପ୍ରାର୍ଥୀ, ସେମାନଙ୍କ ପରିବାର ଓ ସମର୍ଥକ, କର୍ମୀ ଏବଂ ନିର୍ବାଚନ ପରିଚାଳନା କରିବାକୁ ଥିବା ସରକାରୀ କର୍ମଚାରୀ ପ୍ରମୁଖଙ୍କୁ ଚରମ ପରିଣତିର ଧମକ ଆନ୍ଦୋଳନକାରୀଙ୍କ ପକ୍ଷରୁ ଦିଆଯାଇଥିବା ସତ୍ତ୍ୱେ ଆସାମର ୧୨୬ଟି ବିଧାନସଭା ଓ ୧୨ଟି ଲୋକସଭା ସ୍ଥାନ ପାଇଁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ନିର୍ବାଚନ ସୁରୁଖୁରୁରେ କାର୍ଯ୍ୟକାରୀ ହେବାପାଇଁ ବ୍ୟାପକ ବ୍ୟବସ୍ଥା କରାଯାଇଥିଲା । କେବଳ ବିଶେଷ ଭାବେ ଚରମପନ୍ଥୀ କାର୍ଯ୍ୟକଳାପ ଉପଦ୍ରୁତ ଅଞ୍ଚଳ ଦିବ୍ରୁଗଡ଼, ଶିବସାଗର ଓ ଉତ୍ତର ଲକ୍ଷ୍ମୀପୁର ଜିଲ୍ଲାଗୁଡ଼ିକୁ ବାଦ୍‌ଦେଲେ ଅନ୍ୟାନ୍ୟ ସ୍ଥାନଗୁଡ଼ିକରେ ଶତକଡ଼ା ୬୮ରୁ ୭୨ ଭାଗ ପର୍ଯ୍ୟନ୍ତ ଭୋଟଦାତା ଭୋଟ ଦେଇଥିଲେ । ସେଥିରୁ ଶ୍ରୀମତୀ ଗାନ୍ଧୀଙ୍କ ଅନୁମାନ ସତ୍ୟ ପ୍ରମାଣିତ ହୋଇଥିଲା ଯେ ଆସାମର ଜନସାଧାରଣ ଗଣତନ୍ତ୍ରରେ ଅଧିକ ଆଗ୍ରହୀ—ସନ୍ତ୍ରାସବାଦରେ ନୁହେଁ ।

ନିର୍ବାଚନରେ କଂଗ୍ରେସ (ଇ) ଦଳ ସମ୍ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା । କଂଗ୍ରେସ ଦଳର ବିଧାୟକମାନଙ୍କ ନେତା ଭାବେ ଶ୍ରୀ ହିତେଶ୍ୱର ସାଇକିଆ ଫେବୃଆରୀ ୨୭ ତାରିଖ ଦିନ ଲୋକପ୍ରିୟ ସରକାର ଗଠନ କରିଥିଲେ ।

ଆସାମରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପକୁ ଦମନ କରିବାପାଇଁ ତଥା ସେଠାରେ ଆଇନ ଶୃଙ୍ଖଳା ରକ୍ଷା କରିବାପାଇଁ କେନ୍ଦ୍ର ସରକାର ରାଜ୍ୟ ସରକାରଙ୍କୁ ଯଥେଷ୍ଟ ସଂଖ୍ୟକ ପୋଲିସ ବାହିନୀ ଯୋଗାଇ ଦେଇଥିଲେ । ଅପର ପକ୍ଷରେ ବିଦେଶୀ ନାଗରିକ ସମସ୍ୟାର ସମାଧାନ ପାଇଁ ମଧ୍ୟ ଅନେକଗୁଡ଼ିଏ ସରକାରୀ ପଦକ୍ଷେପ ଗ୍ରହଣ କରାଯାଇଥିଲା । ବଙ୍ଗଳା ଦେଶରୁ ବେଆଇନ ଅନୁପ୍ରବେଶ ରୋକିବା ପାଇଁ ସୀମାନ୍ତରେ ପହରା ବ୍ୟବସ୍ଥାକୁ ଆହୁରି କଡ଼ାକଡ଼ି କରାଇ ଦିଆଯାଇଥିଲା । ବିଦେଶୀ ଅନୁପ୍ରବେଶ ପ୍ରତିରୋଧ ଯୋଜନା ଅନୁଯାୟୀ ପୋଲିସ୍ ବାବଦରେ ଖର୍ଚ୍ଚ ହେଉଥିବା ସମସ୍ତ ଅର୍ଥ କେନ୍ଦ୍ରୀୟ ସରକାର ବହନ କରିଥିଲେ । ପୁଣି ସୀମାନ୍ତରେ ତାରବାଡ଼ର ବ୍ୟବସ୍ଥା, ସୀମା କଡ଼େ କଡ଼େ ରାସ୍ତା ତିଆରି, ସୀମାନ୍ତ ଇଲାକାରେ ଜନବସତିହୀନ ଅଞ୍ଚଳ ସୃଷ୍ଟି କରାଇବା, ଭୋଟରମାନଙ୍କ

---

† ନୂଆଦିଲ୍ଲୀରେ ଅନୁଷ୍ଠିତ ମୁଖ୍ୟମନ୍ତ୍ରୀମାନଙ୍କ ସମ୍ମିଳନୀରେ ୧୯୮୩ ମସିହା ଅପ୍ରେଲ ୪ରେ ପ୍ରଦତ୍ତ ଶ୍ରୀମତୀ ଗାନ୍ଧୀଙ୍କ ଭାଷଣର ଅଂଶବିଶେଷ ।

ଟ୍ରାକ୍ଟପାଇଁ ଫଟୋସହ ଏକ ଟ୍ରାକ୍ଟକାର୍ଡ଼ର ପ୍ରଚଳନ କରାଇବା, ନାଗରିକତା ସାର୍ଟିଫିକେଟ୍ କେବଳ କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରଦାନ କରାଯିବା ପ୍ରଭୃତି ପ୍ରସ୍ତାବ କାର୍ଯ୍ୟକାରୀ କରାଯିବାପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଥିଲା ।

ସେସବୁ ପଦକ୍ଷେପ ନିଆଯିବା ତଥା ସେଠାରେ ଲୋକପ୍ରିୟ ସରକାର ଗଠିତ ହେବା ଫଳରେ ଆସାମ ସମସ୍ୟାର ସମାଧାନ ଦଗରେ ଏକ ନୂତନ ପଥ ଉନ୍ମୁକ୍ତ ହୋଇଥିଲା ଏବଂ ସେଥିପାଇଁ ଶ୍ରୀମତୀ ଗାନ୍ଧୀଙ୍କ ଅବଦାନ ଥିଲା ସର୍ବାପେକ୍ଷା ଅଧିକ । ଦେଶର ସେହି ଅଞ୍ଚଳଭଳି ଇତିମଧ୍ୟରେ ଆଉ ଏକ ଆଞ୍ଚଳିକ ସମସ୍ୟା ମୁଣ୍ଡଟେକି ଉଠିଥିଲା ପଞ୍ଜାବ ପ୍ରଦେଶରେ । ବିଦେଶାଶ୍ରିତ କେତେକ ଉଗ୍ରପନ୍ଥୀ ଶିଖଙ୍କ ପ୍ରରୋଚନା କ୍ରମେ ସେଠାରେ ଯେଉଁ ସମସ୍ୟା ପର୍ବତର କ୍ଷୀଣ ଜଳଧାର ହୋଇ ଝରଣାଟିଏ ଭଳି ଆରମ୍ଭ ହୋଇଥିଲା ତାହା ଧିରେ ମହାସାଗରରେ ପରିଣତ ହୋଇଥିଲା ଏବଂ ସେହି ସମସ୍ୟାର ଦୃଢ଼ ମୁକାବିଲା କରିବାକୁ ଉଦ୍ୟମ କରି ସବୁଠାରୁ ଦୁଃଖଦାୟକ ଓ ଦେଶ ତଥା ପୃଥିବୀ ପାଇଁ ମର୍ମାନ୍ତିକ ଯନ୍ତ୍ରଣାଦାୟକ ଚରମ ପରିଣତି ଭୋଗ କରିଥିଲେ ଶ୍ରୀମତୀ ଗାନ୍ଧୀ ।

**ପଞ୍ଜାବ ସମସ୍ୟା :—**

ପରକାଳରେ ବାରମ୍ବାର ଅସ୍ୱୀକାର କରାଯାଇଥିଲେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କ ସମୟରେ ପଞ୍ଜାବ ଆନ୍ଦୋଳନ ଏକ ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ରୂପେ ଦେଶର ପ୍ରାୟ ସବୁ ଶ୍ରେଣୀର ଲୋକଙ୍କ ଦ୍ୱାରା ଆକ୍ଷେପିତ ହୋଇଥିଲା । ଯଥାର୍ଥ ଭାବେ ଶ୍ରୀମତୀ ଗାନ୍ଧୀ ମଧ୍ୟ ଆନ୍ଦୋଳନର ପ୍ରତ୍ୟେକ ଦିଗ ହୃଦୟଙ୍ଗମ କରି ପାରିଥିଲେ । ତେଣୁ ଉକ୍ତ ସମସ୍ୟାର ସମାଧାନ ପାଇଁ ସମୟୋପଯୋଗୀ ପଦକ୍ଷେପମାନ ନେବାଲାଗି ସଙ୍କଳ୍ପ କରିଥିଲେ ।

ତେବେ ଶିଖ ସମ୍ପ୍ରଦାୟର ଏକ ପରମ ତୀର୍ଥସ୍ଥଳ ଅମୃତସରସ୍ଥ ସ୍ୱର୍ଣ୍ଣ ମନ୍ଦିରକୁ ସୈନ୍ୟବାହିନୀ ଦ୍ୱାରା କବଳିତ କରାଇ ଆତଙ୍କବାଦୀ ଓ ବିଚ୍ଛିନ୍ନତାବାଦୀ ଆନ୍ଦୋଳନର କର୍ତ୍ତାମାନଙ୍କୁ ଅପ୍ରୀତିକର ଭାବରେ କବଳିତ କରିବାପାଇଁ ବହୁତ ପଦକ୍ଷେପ ନେବାର ପୂର୍ବମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଥିଲେ ଆଶାବାଦୀ । ସେ ଆଶା କରୁଥିଲେ ଯେ ପରିସ୍ଥିତି ହୃଦୟଙ୍ଗମ କରି ଆନ୍ଦୋଳନର ନେତାମାନେ ଆଲୋଚନା ମାଧ୍ୟମରେ ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ପନ୍ଥା ଉନ୍ମୁକ୍ତ କରିବେ ।

କିନ୍ତୁ ଶ୍ରୀମତୀ ଗାନ୍ଧୀଙ୍କ ଆଶା ଆଶାରେ ହିଁ ରହି ଯାଇଥିଲା ।

ପରିସ୍ଥିତି କ୍ରମଶଃ ଉଦ୍‌ବେଳିତ ହୋଇ ଉଠିଥିଲା । ଆତଙ୍କବାଦୀମାନଙ୍କ କାର୍ଯ୍ୟକଳାପ ଦେଶବାସୀ ତଥା ସରକାରଙ୍କ ପାଇଁ ଅସହ୍ୟ ହୋଇ ଉଠିଥିଲା ।

ସ୍ୱର୍ଣ୍ଣମନ୍ଦିର ପରିସର ମଧ୍ୟରେ ରହି ଭିନ୍ଦ୍ରନ୍‌ୱାଲା ଓ ତାଙ୍କର ସମର୍ଥକମାନେ ରାଜ୍ୟରେ ବ୍ୟାପକ ହିଂସାକାଣ୍ଡ ଲାଗି ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ ଉତ୍ସାହିତ କରୁଥିଲେ । ସେହିମାନଙ୍କ ପ୍ରୋତ୍ସାହନ କ୍ରମେ ଭାରତୀୟ ବିମାନସବୁ ଅପହରଣ କରି ନିଆଯାଉଥିଲା, ଯୋଜନାବଦ୍ଧ ଭାବେ କର୍ତ୍ତବ୍ୟରତ ଦେଶରକ୍ଷା ତଥା ସରକାରୀ କର୍ମଚାରୀମାନଙ୍କୁ ମର୍ମନ୍ତୁଦ ଭାବେ ହତ୍ୟା କରାଯାଇଥିଲା ।

ଅକାଳୀ ଦଳ ପକ୍ଷରୁ ୧୯୮୨ ଅଗଷ୍ଟ ୪ ରେ ଆୟୋଜିତ ମୋର୍ଚ୍ଚାକୁ ଧର୍ମଯୁଦ୍ଧ ବୋଲି ଆଖ୍ୟାୟିତ କରାଯାଇଥିଲା । ଅକ୍ଟୋବର ମାସରେ ସରକାରଙ୍କ ତରଫରୁ ବନ୍ଦୀ ଅକାଳୀ ନେତାଙ୍କୁ ରିଲିଜ କରାଯାଇଥିଲା ଆଲୋଚନା ମାଧ୍ୟମରେ ସମସ୍ୟାର ସମାଧାନ ପାଇଁ ଆଗେଇ ଆସିବାଲାଗି । କିନ୍ତୁ ତତ୍ପରବର୍ତ୍ତୀ ଦଳ ୧୯୮୨ ନଭେମ୍ବରରୁ ଦୀର୍ଘ ନଅମାସ ଧରି ଧାରାବାହିକ ଭାବେ ରାଜ୍ୟରେ ତଥା ଦେଶରେ ବିଭିନ୍ନ ପ୍ରକାରର ଆନ୍ଦୋଳନର ଘୋଷଣା କରିଥିଲା । ତା ପରେ ପରେ ସାମ୍ପ୍ରଦାୟିକ ବିଚାରଧାରା ତଥା ଚରମପନ୍ଥୀ କାର୍ଯ୍ୟକଳାପର ପ୍ରସାର ଲାଗି ବିଭିନ୍ନ ସ୍ଥାନରେ 'ଗୁରୁମାତ୍' ଶିବିରମାନ ଆୟୋଜିତ ହୋଇଥିଲା ।

ସେଭଳି କାର୍ଯ୍ୟକଳାପ ଫଳରେ ରାଜ୍ୟରେ ହିଂସାକାଣ୍ଡ ଓ ସାମ୍ପ୍ରଦାୟିକ ଭାବ ପ୍ରବଳରୁ ପ୍ରବଳତର ହୋଇଥିଲା । ସ୍ପଷ୍ଟ ଦିବାଲୋକରେ ୧୯୮୩ ମସିହା ଅକ୍ଟୋବର ମାସରେ ଆତଙ୍କବାଦୀମାନେ ଗୋଟିଏ ଯାତ୍ରୀବାହୀ ବସ୍‌କୁ ଅପହରଣ କରି ଛଅଜଣ ହିନ୍ଦୁ ଯାତ୍ରୀଙ୍କୁ ହତ୍ୟା କରିଥିଲେ । ଠିକ୍ ସେହିଭଳି ଭାବରେ ତତ୍ପରବର୍ତ୍ତୀ ମାସରେ ଅମୃତସରରେ ଚାରିଜଣ ହିନ୍ଦୁ ଅମାନୁଷିକ ଭାବେ ପ୍ରାଣ ହରାଇଥିଲେ ।

ପଞ୍ଜାବର ସାମାଜିକ ଓ ରାଜନୈତିକ ପରିସ୍ଥିତି ବାଧାଜନକ ରୂପେ ବିପର୍ଯ୍ୟସ୍ତ ହୋଇ ପଡିଥିବା ଯୋଗୁଁ ମୁଖ୍ୟମନ୍ତ୍ରୀ ଦରବାରା ସିଂହ ଇସ୍ତଫା ଦେଇଥିଲେ ଓ ସେଠାରେ ରାଷ୍ଟ୍ରପତି ଶାସନ ଜାରି କରାଯାଇଥିଲା । ୧୯୮୩ ମସିହା ଡିସେମ୍ବର ୧୫ ତାରିଖ ଦିନ ଭିନ୍ଦ୍ରନ୍‌ୱାଲା ଗୁରୁନାନକ ନିବାସ ପରିତ୍ୟାଗ କରି ଅକାଲ ତାକତ୍‌କୁ ନିଜ କାର୍ଯ୍ୟକଳାପର କେନ୍ଦ୍ରସ୍ଥଳୀ ରୂପେ ନିର୍ବାଚିତ କରିଥିଲେ । ଉଲ୍ଲେଖ କରାଯାଇପାରେ ଯେ ୧୯୮୨ ଜୁଲାଇ ୧୯ରେ ଅଖିଲ ଭାରତ ଶିଖ୍ ଛାତ୍ର ମହାସଂଘର ସଭାପତି ଶ୍ରୀ ଅମରିକ ସିଂହଙ୍କୁ ଏକ ହତ୍ୟାକାଣ୍ଡ ଘଟଣାରେ ସମ୍ପୃକ୍ତ ଥିବା ଅଭିଯୋଗରେ ଗିରଫ କରାଯିବା ପରେ ପରେ ଭିନ୍ଦ୍ରନ୍‌ୱାଲା ମେହେନ୍ତା ଚୌକରେ ଥିବା ତାହାଙ୍କ କାର୍ଯ୍ୟାଳୟ ବନ୍ଦକରି ସ୍ୱର୍ଣ୍ଣ ମନ୍ଦିରରେ ଥିବା ନାନକ ନିବାସକୁ ଚାଲି ଯାଇଥିଲେ । ସେଥିରୁ ହିଁ ଅମରିକ ସିଂହଙ୍କ ସମେତ ସେ ନିଧି ରାଜ୍ୟର ହିଂସାତ୍ମକ କାର୍ଯ୍ୟକଳାପ ସହିତ ସମ୍ପୃକ୍ତ ଥିବା ସମ୍ପର୍କରେ ସନ୍ଦେହ ଘନୀଭୂତ ହୋଇଥିଲା ।

ତେବେ ସେଭଳି ହିଂସାତ୍ମକ ଓ ଧର୍ମ ବିଦ୍ୱେଷୀ କାର୍ଯ୍ୟକଳାପ ପ୍ରତି ଯେ ସମସ୍ତ ଶିଖ୍ ଜାତିର ସମର୍ଥନ ଥିଲା ତାହା ଆଦୌ ନୁହେଁ । ବରଂ ଯେଉଁ ଶିଖମାନେ ସେଭଳି ଚରମପନ୍ଥୀ କାର୍ଯ୍ୟକଳାପର ବିରୋଧ କରୁଥିଲେ ସେମାନଙ୍କୁ ଅତି ନିର୍ମମ ଓ ନିଷ୍ଠୁର ଭାବରେ ହତ୍ୟା କରାଯାଉଥିଲା । ସେଥିପାଇଁ ସାଧାରଣ ଲୋକେ ଆତଙ୍କ-ବାଦୀଙ୍କ ସମ୍ପର୍କରେ ମୁହଁ ଖୋଲିବା ଲାଗି ସାହସ କରୁ ନ ଥିଲେ ।

ରାଜ୍ୟର ସେଭଳି ଉଦ୍‌ବେଳିତ ପରିସ୍ଥିତି ଭିତରେ ଅକାଲୀ ଦଳ ଜାତୀୟ ଏକତାକୁ ନଷ୍ଟଭ୍ରଷ୍ଟ କରିବାଭଳି କେତେକ ପଦକ୍ଷେପ ଗ୍ରହଣ କରିଥିଲା । ୧୯୮୪ ସାଧାରଣତନ୍ତ୍ର ଦିବସରେ ଭାରତୀୟ ସମ୍ବିଧାନକୁ ପୋଡ଼ିବା ପାଇଁ ଦଳ ନିଷ୍ପତ୍ତି ନେଇଥିଲା । ତାହାକୁ ସାକାର ରୂପ ଦେବାପାଇଁ ପ୍ରକାଶ ସିଂହ ବାଦଲଙ୍କ ଭଳି ବିଶିଷ୍ଟ ନେତା ଜଣେ ଭୀରୁ ଓ କାପୁରୁଷତାର ପରିଚୟ ଦେଇ ଜଣେ ଟ୍ରକ୍ ଡ୍ରାଇଭର ରୂପେ ଦିଲ୍ଲୀ ଯାଇଥିଲେ ପୋଲିସ୍ ଦୃଷ୍ଟିରୁ ନିଜକୁ ରକ୍ଷା କରିବାପାଇଁ । ପୁଣି ଫେବୃୟାରୀ ୮ ତାରିଖରେ ଦଳ ତରଫରୁ ପଞ୍ଜାବ ବନ୍ଦ ପାଳନ କରା-ଯାଇଥିଲା । ତାର ଉତ୍ତରରେ ହିନ୍ଦୁ ସୁରକ୍ଷା ସମିତି ପକ୍ଷରୁ ପୁଣିଥରେ ରାଜ୍ୟରେ ବନ୍ଦ ପାଳିତ ହୋଇ ଉଭୟ ଦଳର ସଂଘର୍ଷରେ ୧୧ ଜଣ ବ୍ୟକ୍ତି ପ୍ରାଣ ହରାଇଥିଲେ ।

ମଇ ମାସ ବେଳକୁ ପ୍ରାୟ ସମଗ୍ର ପଞ୍ଜାବରେ ଅତି ଅସ୍ଥିର ବାତାବରଣ ସୃଷ୍ଟି ହୋଇଥିଲା । ରାଜ୍ୟରେ ବ୍ୟାପକ ହତ୍ୟା ସାଙ୍ଗକୁ ପୋଡ଼ାଜଳା କାର୍ଯ୍ୟ ଫଳରେ ସ୍କୁଲ କଲେଜଗୁଡ଼ିକର ବିଭିନ୍ନ ପରୀକ୍ଷା ସ୍ଥଗିତ ରହିବାକୁ ବାଧ୍ୟ ହୋଇଥିଲା ।

୧୯୮୪ ମଇ ୧୧ ତାରିଖ ଦିନ ମେହେତା ଚୌକ ଗୁରୁଦ୍ୱାରରେ ଗୋଟିଏ ଲଙ୍ଗରସେବା ଟ୍ରକ୍‌ରୁ ବିପୁଳ ପରିମାଣରେ ମାରଣାସ୍ତ୍ର ଜବତ୍ କରାଯାଇଥିଲା । ତାହା ବିରୁଦ୍ଧରେ ସରକାରୀ କାର୍ଯ୍ୟାନୁଷ୍ଠାନ ହେଲେ ଗ୍ରାମାଞ୍ଚଳରେ ହିନ୍ଦୁ ସମ୍ପ୍ରଦାୟର ବ୍ୟକ୍ତି ତଥା କେନ୍ଦ୍ର ସରକାରୀ କର୍ମଚାରୀମାନଙ୍କୁ ହତ୍ୟା କରାଯିବା ପାଇଁ ଆତଙ୍କବାଦୀ ଅନୁଚରମାନଙ୍କୁ ଭିନ୍ଦ୍ରନୱାଲ୍ଲେ ନିର୍ଦ୍ଦେଶ ଦେଇଥିଲେ ।

ପୁଣି ଠିକ୍ ସେତିକବେଳକୁ, ୧୯୮୪ ଜୁନ୍ ୩ ତାରିଖଠାରୁ ଅକାଳୀଦଳ ତରଫରୁ ଏକ ନୂତନ ଆନ୍ଦୋଳନର ଆହ୍ୱାନ ଦିଆଯାଇଥିଲା । ଶ୍ରୀମତୀ ଗାନ୍ଧୀ ତତ୍ପୂର୍ବଦିନ ଜାତି ଉଦ୍ଦେଶ୍ୟରେ ଏକ ବେତାର ଭାଷଣ ଦେଇ ଦେଶରେ ଶାନ୍ତିପୂର୍ଣ୍ଣ ପରିବେଶ ରକ୍ଷାଲାଗି ତଥା ସବୁ ସମସ୍ୟାର ସମାଧାନ ଆଲୋଚନା ମାଧ୍ୟମରେ ତୁଟାଯିବା ଲାଗି ଆହ୍ୱାନ ଦେଇଥିଲେ । କିନ୍ତୁ ତାହା କୌଣସି ପ୍ରଭାବ ସୃଷ୍ଟି କରିପାରି ନ ଥିଲା । କାରଣ ସେମାନେ ହିଂସା ପ୍ରମତ୍ତ ଥିଲେ; ଥିଲେ ଉନ୍ମତ୍ତ ।

ପଞ୍ଜାବରେ ଶାନ୍ତିରକ୍ଷା କରିବାପାଇଁ ରାଜ୍ୟର ବେସାମରିକ [illegible] ସାହାଯ୍ୟ କରିବାପାଇଁ ୧୯୮୪ ମସିହା ଜୁନ୍ ୨ ତାରିଖରେ ସୈନ୍ୟବାହିନୀକୁ

ନିଯୁକ୍ତ କରାଯାଇଥିଲା । ସାଂପ୍ରଦାୟିକ ବିଭେଦକାରୀ ଶକ୍ତିକୁ ଦମନ କରିବା, ବେଆଇନ ଅସ୍ତ୍ରଶସ୍ତ୍ର ଜବଦ୍ କରିବା ପ୍ରଭୃତି କାର୍ଯ୍ୟ ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ନିରାପତ୍ତା ପ୍ରତି ଦୃଷ୍ଟି ଦେବାପାଇଁ ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା । ଅଧୋପତନର ପରିସ୍ଥିତିର ସୁରକ୍ଷା ପାଇଁ ଯଥାଶୀଘ୍ର ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାପାଇଁ ସାମରିକ କର୍ତ୍ତୃପକ୍ଷ ନିଷ୍ପତ୍ତି ନେଇଥିଲେ । କାର୍ଯ୍ୟାନୁଷ୍ଠାନ ବେଳେ ଧର୍ମାନୁଷ୍ଠାନଗୁଡ଼ିକ ପ୍ରତି ଗଭୀର ସମ୍ମାନ ପ୍ରଦର୍ଶନ କରାଯିବା ପାଇଁ ଓ ଯଥାସମ୍ଭବ କମ୍ କ୍ଷତି ଘଟାଇବା ପାଇଁ ଶ୍ରୀମତୀ ଗାନ୍ଧୀ ସ୍ପଷ୍ଟ ତଥା ଦୃଢ଼ ନିର୍ଦ୍ଦେଶ ଦେଇଥିଲେ । ସାମରିକ କର୍ତ୍ତୃପକ୍ଷ କଠୋର ପଦକ୍ଷେପ ଗ୍ରହଣ ପୂର୍ବରୁ ଡାକବାଜିଯନ୍ତ୍ର ସାହାଯ୍ୟରେ ସାଲିସ୍ ପାଇଁ ବାରମ୍ବାର ନିର୍ଦ୍ଦେଶ ଦେଇଥିଲେ ।

ସେ ନିର୍ଦ୍ଦେଶ ଯଥାଯଥ ଭାବେ କାର୍ଯ୍ୟକାରୀ କରାଯାଇଥିଲା । ନିଜର ପ୍ରଭୂତ କ୍ଷତି ଘଟାଇଥିଲେ ମଧ୍ୟ ସୈନ୍ୟବାହିନୀ ଅତ୍ୟନ୍ତ ସହନଶୀଳ ହୋଇଥିଲେ ଏବଂ ଚରମ ବିପର୍ଯ୍ୟୟ କାଳରେ ମଧ୍ୟ ଧୈର୍ଯ୍ୟଚ୍ୟୁତ ହୋଇ ନ ଥିଲେ ।

ଆତଙ୍କବାଦୀମାନେ ସ୍ୱର୍ଣ୍ଣମନ୍ଦିରର ପରିସର ମଧ୍ୟରେ ସମ୍ପୂର୍ଣ୍ଣ ସାମରିକ ଢାଞ୍ଚାରେ ପ୍ରସ୍ତୁତ କରିଥିଲେ ଯେକୌଣସି ଆକ୍ରମଣର ମୁକାବିଲା କରିବାପାଇଁ । ସେଠାରେ ଏପରି ଆୟୋଜନ ହୋଇଥିଲା ଯେ, ବାସ୍ତବରେ ତାହା ଥିଲା ଯେ-କୌଣସି ଆଧୁନିକ ସାମରିକ ବାହିନୀ ଦ୍ୱାରା ପ୍ରସ୍ତୁତ ଏକ ସୁରକ୍ଷିତ ଦୁର୍ଗ । ଏପରିକି ଆବଶ୍ୟକ ହେଲେ ତାହା ମଧ୍ୟରେ କିଛିକାଳ ଚଳିଯିବା ଲାଗି ମଧ୍ୟ ଖାଦ୍ୟଶସ୍ୟ ଗଚ୍ଛିତ ହୋଇ ରହିଥିଲା ।

ଆତଙ୍କବାଦୀମାନଙ୍କ କବଳରୁ ମୁକ୍ତ ହେବାପାଇଁ ପବିତ୍ର ଧର୍ମପୀଠ ସ୍ୱର୍ଣ୍ଣ ମନ୍ଦିରରେ ସୈନ୍ୟ ବାହିନୀର ପ୍ରବେଶ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ୧୯୮୪ ଜୁନ ୫ ତାରିଖ ଦିନ ବାରମ୍ବାର ଡାକବାଜ ଯନ୍ତ୍ର ସାହାଯ୍ୟରେ ଅନୁରୋଧ କରିବା ପରେ ୧୨୯ ଜଣ ଆତଙ୍କବାଦୀ ସେମାନଙ୍କ ଅସ୍ତ୍ର ଶସ୍ତ୍ର ସହ ଆତ୍ମସମର୍ପଣ କରିଥିଲେ । ସେଦିନ ସନ୍ଧ୍ୟାରେ ସ୍ୱର୍ଣ୍ଣମନ୍ଦିରରେ ପ୍ରବେଶ ପାଇଁ ସୈନ୍ୟବାହିନୀ ପ୍ରାଥମିକ ପଦକ୍ଷେପ ଗ୍ରହଣ କରିଥିଲେ । ଅପରପକ୍ଷରେ ଆତଙ୍କବାଦୀମାନେ ହରି ମନ୍ଦିର ସାହେବ ଓ ଅକାଲ ତକତ୍‌ରୁ ମେସିନ୍ ଗନ୍ ଚଳାଇ ପ୍ରବଳ ଗୁଳିଗୋଳା ବର୍ଷଣ କରିଥିଲେ ।

କେବଳ ଶ୍ରୀମତୀ ଗାନ୍ଧୀଙ୍କ ନିର୍ଦ୍ଦେଶ ପାଳନ କରିବାକୁ ଯାଇ ସେନା-ବାହିନୀ ଅସୀମ ଧୈର୍ଯ୍ୟ ପ୍ରଦର୍ଶନ କରିଥିଲେ ନଚେତ୍ ପାଲଟା ଆକ୍ରମଣରେ ସେମାନେ ଆତଙ୍କବାଦୀମାନଙ୍କୁ କାବୁ କରି ପାରିଥାନ୍ତେ ଓ ନିଜ ଦଳର ଏତେ କ୍ଷୟକ୍ଷତି ହୋଇ ନ ଥାନ୍ତା । କେବଳ ମେସିନ୍‌ଗନ୍ ନୁହେଁ, ସେମାନେ ଟ୍ୟାଙ୍କ୍

ବିଧ୍ୱଂସୀ ରକେଟସବୁ ବ୍ୟବହାର କରି ସୈନ୍ୟବାହିନୀର ଗୋଟିଏ ଯାନ୍ତ୍ରିକ ଗାଡ଼ିକୁ ମଧ୍ୟ ଅଚଳ କରି ପକାଇଥିଲେ ।

ସନ୍ଥ ପ୍ରାପ୍ତ ଗୋଟାଏ ବେଳେ ସନ୍ଥ ଲଙ୍ଗଓ୍ୱାଲ, ଜି. ଏସ୍. ଟୋହ୍ରା ଓ ତାଙ୍କର ପ୍ରାୟ ୩୫ ଜଣ ସମର୍ଥକ ସୈନ୍ୟ ବାହିନୀ ନିକଟରେ ଆତ୍ମସମର୍ପଣ କରିଥିଲେ । ତତ୍ ପରଦିନ ଅନନ୍ୟୋପାୟ ହୋଇ ଆହୁରି ପ୍ରାୟ ୨୦୦ ଜଣ ଆତଙ୍କବାଦୀ ମଧ୍ୟ ସେମାନଙ୍କ ସହ ଯୋଗ ଦେଇଥିଲେ । ଖୋଜ ଖୋଜ ପରେ ଅକାଲ ତଖତ୍‌ର ତଳ ମହଲାରୁ ଭିନ୍ଦ୍ରାନ୍‌ଓ୍ୱାଲା ଓ ଅମରିକ୍ ସିଂହଙ୍କ ସମେତ ଅନ୍ୟ ୩୪ ଜଣଙ୍କ ମୃତ ଦେହ ଉଦ୍ଧାର କରାଯାଇଥିଲା ।

କେବଳ ସ୍ୱର୍ଣ୍ଣ ମନ୍ଦିର ନୁହେଁ, ସେଭଳି ପ୍ରାୟ ୪୨ଟି ଧର୍ମପୀଠ ଆତଙ୍କବାଦୀମାନଙ୍କ କାର୍ଯ୍ୟକଳାପର କେନ୍ଦ୍ରସ୍ଥଳୀ ରୂପେ ବ୍ୟବହୃତ ହେଉଥିଲା । ଜୁନ୍ ୭ ତାରିଖ ସନ୍ଧ୍ୟା ସୁଦ୍ଧା ଉଗ୍ର ଆତଙ୍କବାଦୀମାନଙ୍କୁ ନିୟନ୍ତ୍ରଣାଧୀନ କରାଯାଇଥିଲା । ସ୍ୱର୍ଣ୍ଣମନ୍ଦିରର ପରିସର ମଧ୍ୟରୁ ବହୁ ପରିମାଣରେ ଅସ୍ତ୍ରଶସ୍ତ୍ର, ବିସ୍ଫୋରକ ଦ୍ରବ୍ୟ, ସ୍ୱୟଂଚାଳିତ ଆଗ୍ନେୟାସ୍ତ୍ର, ଷ୍ଟେନ୍‌ଗନ୍ ତଥା ଗ୍ରେନେଡ୍ ପ୍ରସ୍ତୁତକାରୀ ଗୋଟିଏ କ୍ଷୁଦ୍ରକାୟ କାରଖାନା ମଧ୍ୟ ଉଦ୍ଧାର କରାଯାଇଥିଲା । ସେହିଭଳି ରାଜ୍ୟର ବିଭିନ୍ନ ଧର୍ମପୀଠଗୁଡ଼ିକରୁ ମଧ୍ୟ ବହୁ ପରିମାଣରେ ଗୁଳିଗୋଳା ଜବତ ହୋଇଥିଲା ।

ଏକ ପବିତ୍ର ଧର୍ମପୀଠ ସ୍ୱର୍ଣ୍ଣ ମନ୍ଦିରର ପବିତ୍ରତାକୁ ସମ୍ପୂର୍ଣ୍ଣ ଧ୍ୱଂସ କରି ଦେଇଥିବା ଆତଙ୍କବାଦୀ ଓ ବିଚ୍ଛିନ୍ନତାବାଦୀମାନେ ଦେଶରେ ଅରାଜକତା ସୃଷ୍ଟି ପାଇଁ ବୈଦେଶିକ ସାହାଯ୍ୟ ଯଥେଷ୍ଟ ପରିମାଣରେ ପାଉଥିଲେ । ତାର ନିର୍ଦ୍ଦିଷ୍ଟ ପ୍ରମାଣ ସରକାରଙ୍କ ନିକଟରେ ମଧ୍ୟ ଥିଲା । ତଥାପି ସେକଥା ସାଧାରଣ ସ୍ୱାର୍ଥଦୃଷ୍ଟିରୁ ଶ୍ରୀମତୀ ଗାନ୍ଧୀ ତାଙ୍କ ଜୀବଦ୍ଦଶା ମଧ୍ୟରେ ପ୍ରକାଶ କରି ନ ଥିଲେ ମଧ୍ୟ ତାଙ୍କ ମୃତ୍ୟୁ ପରେ ପରେ ଗିରଫ ହୋଇଥିବା ସନ୍ତ୍ରାସବାଦୀମାନଙ୍କ ନିକଟରୁ ହିଁ ପ୍ରକାଶ ପାଇଥିଲା । ପୁଣି ପଞ୍ଜାବର ଆନ୍ଦୋଳନକାରୀଙ୍କ ମନଭିତରେ ବିଚ୍ଛିନ୍ନତାବାଦୀ ଚିନ୍ତାଧାରା ଓ ସ୍ୱତନ୍ତ୍ର ଖଲିସ୍ତାନ ଗଠନ ଚିନ୍ତାଧାରାକୁ ପୁଷ୍ଟ କରିବା ଦିଗରେ ସୁଦୂର ବିଦେଶରେ ରହୁଥିବା ଶ୍ରୀ ଜଗଜିତ ସିଂହ ଚୌହାନଙ୍କ ଅବଦାନ ଥିଲା ସର୍ବାଧିକ ।

ଅସ୍ତ୍ରମାରମ୍ଭ ବେଳେ ପଞ୍ଜାବ ଆନ୍ଦୋଳନର ଗତି ଓ ପ୍ରକୃତି ଯାହା ଥିଲା, ପରବର୍ତ୍ତୀ କାଳରେ ତାହା ସମ୍ପୂର୍ଣ୍ଣ ଭିନ୍ନ ରୂପ ଗ୍ରହଣ କରିଥିଲା । ବସ୍ତୁତଃ ବହୁ ଚର୍ଚ୍ଚିତ ଆନନ୍ଦପୁର ସାହେବ ପ୍ରସ୍ତାବକୁ ସରକାର ଗ୍ରହଣ କରିବା ଉଦ୍ଦେଶ୍ୟରେ ପଞ୍ଜାବର ଅକାଲୀଦଳ ଆନ୍ଦୋଳନ ଆରମ୍ଭ କରିଥିଲା । ୧୯୭୩ ମସିହା ଅକ୍ଟୋବର ୧୬ ଓ ୧୭ ତାରିଖ ଦିନ ପଞ୍ଜାବର ଆନନ୍ଦପୁରଠାରେ ଅନୁଷ୍ଠିତ ଦଳର କାର୍ଯ୍ୟକାରୀ ବୈଠକରେ ଗୃହୀତ ସେହି ପ୍ରସ୍ତାବ ୧୯୭୭ ଅଗଷ୍ଟ ୨୮ ତାରିଖ ଦିନ ଦଳର ସାଧାରଣ ବୈଠକରେ ଅନୁମୋଦିତ ହୋଇଥିଲା ।

ସେଥିରେ ଗୁମ୍ଫିତ ଦାବୀଗୁଡ଼ିକ ମଧ୍ୟରେ ମୁଖ୍ୟ ଥିଲା ଚଣ୍ଡୀଗଡ଼ ସମେତ ପଡ଼ୋଶୀ ପ୍ରଦେଶଗୁଡ଼ିକରେ ଥିବା ପଞ୍ଜାବୀ ଭାଷାଭାଷୀ ଅଞ୍ଚଳକୁ ପଞ୍ଜାବ ପ୍ରଦେଶ ଅନ୍ତର୍ଗତ କରାଇବା ସଙ୍ଗେ ସଙ୍ଗେ ନଦୀ ଜଳଗୁଡ଼ିକରେ ସୁଷମ ବଣ୍ଟନ, ପଞ୍ଜାବୀ ଭାଷାକୁ ପଡ଼ୋଶୀ ରାଜ୍ୟଗୁଡ଼ିକରେ ଦ୍ୱିତୀୟ ଭାଷାର ସମ୍ମାନ ପ୍ରଦାନ, କେନ୍ଦ୍ରରୁ ଯଥାର୍ଥ ଅର୍ଥଦାନର ବ୍ୟବସ୍ଥା, ଅମୃତସରକୁ ପବିତ୍ର ନଗରୀ ରୂପେ ଗ୍ରହଣ, ସ୍ୱର୍ଣ୍ଣ ମନ୍ଦିରରୁ ଗୁରୁବାଣୀକୁ ଆକାଶବାଣୀ ମାଧ୍ୟମରେ ପ୍ରଚାର, ଶିଖମାନଙ୍କ ଦ୍ୱାରା ବ୍ୟବହୃତ "କରପାନ୍" ଉପରେ ଆରୋପିତ କଟକଣାର ଉଚ୍ଛେଦ, କୃତିତ୍ୱ ଭିତ୍ତିରେ ସାମରିକ ବାହିନୀରେ ପଞ୍ଜାବୀମାନଙ୍କ ନିଯୁକ୍ତି ପ୍ରଭୃତି ।

ଆନନ୍ଦପୁର ସାହେବ ପ୍ରସ୍ତାବରେ ଥିବା ଦାବୀଗୁଡ଼ିକ ମଧ୍ୟରୁ କେତେକ ଯୁକ୍ତିଯୁକ୍ତ ଥିବାବେଳେ ଆଉ କେତେକ ସେଭଳି ବଳିଷ୍ଠ ଭିତ୍ତି ଉପରେ ପ୍ରତିଷ୍ଠିତ ନ ଥିବା କଥା ରାଜନୀତିଜ୍ଞମାନେ ବିବେଚନା କରିଥିଲେ । ସେ ଯାହାହେଉ ଠିକ୍ ସେତିକିବେଳେ, ୧୯୬୭ ମସିହା ଜୁଲାଇ ମାସରେ ଡଃ ଜଗଜିତ ଚୌହାନ ଭାରତ ଆସି ଅକ୍ଟୋବର ବେଳକୁ ଦଲ ଖାଲସା ସଙ୍ଗଠନକୁ ସୁଦୃଢ଼ କରାଇବା ଦିଗରେ ସାହାଯ୍ୟ କରିଥିଲେ । ତାଙ୍କରି ପ୍ରରୋଚନାକ୍ରମେ ଖାଲସା ପକ୍ଷରୁ ଦୁଇଦଫା କାର୍ଯ୍ୟକ୍ରମ ଘୋଷଣା କରାଯାଇଥିଲା । ସେଥିରୁ ଗୋଟିଏ ଥିଲା ସ୍ୱାଧୀନ ଖଲିସ୍ଥାନ ଗଠନ ଓ ଅନ୍ୟଟି ଶିଖ ସମ୍ପ୍ରଦାୟକୁ ସେମାନଙ୍କ ଧର୍ମ ସମ୍ପର୍କରେ ସଚେତନ କରାଇବା ।

ଶିଖ ସମ୍ପ୍ରଦାୟର ବୃହତ୍ତର ଧାର୍ମିକ ଅନୁଷ୍ଠାନ ଶିରୋମଣୀ ଗୁରୁଦ୍ୱାର ପ୍ରବନ୍ଧକ କମିଟି ପାଇଁ ଭିନ୍ଦ୍ରନ୍‌ୱାଲାଙ୍କ ସମର୍ଥନ କ୍ରମେ ଦଲ ଖାଲସା ୧୯୭୯ ନିର୍ବାଚନରେ ଅକାଲୀ ଦଲ ବିରୁଦ୍ଧରେ ଅଂଶ ଗ୍ରହଣ କରିଥିଲା । ଯଦିଓ ସେହି ନିର୍ବାଚନରେ କଂଗ୍ରେସ (ଇ) ଅଂଶ ଗ୍ରହଣ କରି ନ ଥିଲା ତଥାପି ଅକାଲୀ ବିରୋଧୀ ଗୋଷ୍ଠୀଙ୍କୁ ସମର୍ଥନ କରିଥିଲା । କେତେକ ରାଜନୈତିକ ଟିପ୍ପଣୀକାରଙ୍କ ମତରେ ପ୍ରାଥମିକ ସ୍ତରରେ କଂଗ୍ରେସ (ଇ) ଦଳ ତରଫରୁ ହିଁ ଅକାଲୀଦଳ ବିରୁଦ୍ଧରେ କାର୍ଯ୍ୟ କରିବା ପାଇଁ ଭିନ୍ଦ୍ରନ୍‌ୱାଲା ସର୍ବାଧିକ ଉତ୍ସାହିତ ହୋଇଥିଲେ ।

ତାହାର ପରିଣାମ ହିଁ ହୋଇଥିଲା ଅତି ଭୟଙ୍କର ।

୧୯୭୯ ନଭେମ୍ବର ୧୨ ତାରିଖ ଦିନ ଶ୍ରୀ ଚୌହାନ ସ୍ୱର୍ଣ୍ଣ ମନ୍ଦିର ପରିସର ମଧ୍ୟରେ ଗୋଟିଏ ଗ୍ଲେଟିଆ ଟ୍ରାନ୍‌ସ ମିଟର ପ୍ରତିଷ୍ଠା କରିଥିଲେ । ସେଥିପାଇଁ ସେ ବେଶ୍ ଜନସମର୍ଥନ ପାଇଥିବେ ନିଶ୍ଚୟ । ତଦ୍ୱାରା ଉତ୍ସାହିତ ହୋଇ ୧୯୮୦ ମାର୍ଚ୍ଚ ମାସରେ ଆନନ୍ଦପୁର ସହରର କେଶଗଡ଼ ଗୁରୁଦ୍ୱାରରେ ସ୍ୱତନ୍ତ୍ର ଖଲିସ୍ଥାନ ପତାକା ଉତ୍ତୋଳନ କରିଥିଲେ । ଅପ୍ରେଲ ୧୨ ତାରିଖ ଦିନ ୧୨ଜଣିଆ ଖଲିସ୍ଥାନ ଜାତୀୟ ପରିଷଦ ଗଠିତ ହେବାର ଘୋଷଣା କରାଯାଇଥିଲା । ଭାରତରେ ଖଲିସ୍ଥାନ

ଆନ୍ଦୋଳନର ଜଣେ ମୁଖ୍ୟ ପ୍ରବକ୍ତା ଶ୍ରୀ ବଲବିର ସିଂହ ଜୁନ୍ ୮ ତାରିଖ ଦିନ ଏକ ସାମ୍ବାଦିକ ସମ୍ମିଳନୀରେ ଘୋଷଣା କରିଥିଲେ ଯେ ଆସନ୍ତା ୧୬ ତାରିଖ ସୁଦ୍ଧା ଖଲିସ୍ଥାନ ସରକାର ଗଠନ ହେବା ଘୋଷଣା ସ୍ୱର୍ଣ୍ଣମନ୍ଦିରର ଅକାଲତାଖତ-ଠାରୁ କରାଯିବ ଓ ଡ଼ଃ ଚୌହାନ୍ ବିଦେଶରୁ ମନ୍ତ୍ରୀମଣ୍ଡଳର ନାମ ତାଲିକା ଘୋଷଣା କରିବେ ।

ସେତେବେଳକୁ ସରକାରଙ୍କ ଦୃଷ୍ଟି ଆକର୍ଷିତ ହୋଇ ସାରିଥିଲା ଏବଂ କର୍ତ୍ତୃପକ୍ଷଙ୍କ ଅଗୋଚରରେ ଶ୍ରୀ ଚୌହାନ ଭାରତ ଛାଡ଼ି ବିଦେଶକୁ ଚାଲି ଯାଇଥିଲେ ।

ବ୍ରିଟେନ୍‌ରେ ଥାଇ ଶ୍ରୀ ଚୌହାନ ପୂର୍ବଘୋଷିତ ଦିନ ଏକତରଫା ଭାବେ ନିଜକୁ ଖଲିସ୍ଥାନର ରାଷ୍ଟ୍ରପତି ବୋଲି ଘୋଷଣା କରିଥିଲେ । ଏଣେ ଭାରତରେ ଶ୍ରୀ ସାନ୍ଧୁ ଅନ୍ୟ ସ୍ୱାଧୀନ ରାଷ୍ଟ୍ରଗୁଡ଼ିକୁ ଅନୁରୋଧ ଜଣାଇଥିଲେ ଯଥାଶୀଘ୍ର ନୂତନ ସରକାରଙ୍କୁ ସ୍ୱୀକୃତ ଦେବାପାଇଁ ଓ ଭାରତସରକାରଙ୍କୁ ମଧ୍ୟ ଚେତାବନୀ ଶୁଣାଇ ଦେଇଥିଲେ ଯେ, ଯଦି ଖଲିସ୍ଥାନ ବିରୁଦ୍ଧରେ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରାଯାଏ ତେବେ ସେ ପୃଥିବୀର ଦୁଇ ବୃହତ୍ତମ ରାଷ୍ଟ୍ରଙ୍କୁ ସାହାଯ୍ୟଭିକ୍ଷା କରିବେ ।

ଯଦିଓ ଶିରୋମଣି ଗୁରୁଦ୍ୱାର କମିଟି ଓ ଅକାଲତାଖତର ସମର୍ଥନ ନ ଥିଲା, ତଥାପି ଖଲିସ୍ଥାନ ଦାବୀ ପ୍ରତି ଦଳ ଖାଲସା ଦୃଢ଼ ସମର୍ଥନ ଜଣାଉଥିଲା । ଦଳ ଖାଲସା ଥିଲା ଅକାଲୀଦଳର ଯୁବଶାଖା, ଶିଖ ଯୁବକ ସଂଘ, ଶିଖ ନଉଜବାନସଭା, ନଉଜବାନ ଅକାଲୀଦଳ ପ୍ରମୁଖ ଅନୁଷ୍ଠାନର ସମାହାର । ମୁଖ୍ୟତଃ ଯୁବସମାଜ ଥିଲେ ତାର ସଭ୍ୟ ।

ଶ୍ରୀ ଚୌହାନଙ୍କ ପ୍ରରୋଚନାକ୍ରମେ ସେମାନେ ସେହି ବିଚ୍ଛିନ୍ନତାବାଦୀ ଚିନ୍ତାଧାରାକୁ ସାକାର ରୂପ ଦେବାପାଇଁ ବିମାନ ଅପହରଣଠାରୁ ଆରମ୍ଭ କରି ଦେଶରେ ସନ୍ତ୍ରାସବାଦର ଭୟାନକ ବାତାବରଣ ସୃଷ୍ଟି କରିଥିଲେ । ସେହି ସନ୍ତ୍ରାସବାଦର ଶିକାର ହୋଇ ସମଗ୍ର ପଞ୍ଜାବ ଏକ ଅସ୍ଥିର ବାତାବରଣ ଭିତରେ ରହିବାକୁ ବାଧ୍ୟ ହୋଇଥିଲା । ଶିକ୍ଷିତ, ବୁଦ୍ଧିଜୀବୀ ଓ ବିରୋଧୀଦଳ ସମସ୍ତେ ନିଜ ନିଜର ଅନିଚ୍ଛାସତ୍ତ୍ୱେ ମଧ୍ୟ ସେମାନଙ୍କୁ ସମର୍ଥନ କରିବାପାଇଁ କିଛିଦିନ ବାଧ୍ୟ ହୋଇଥିଲେ । ସ୍ୱର୍ଣ୍ଣମନ୍ଦିର ଭଳି ପବିତ୍ର ଧର୍ମପୀଠକୁ ସମ୍ପୂର୍ଣ୍ଣ ଅପବିତ୍ର କରିବାକୁ କୁଣ୍ଠିତ ନ ଥିଲେ ସେମାନେ । ପ୍ରତିମୁହୂର୍ତ୍ତରେ ନିଜର ଧନ, ଜୀବନ ପ୍ରତି ଶଙ୍କାକୁଳ ଥିଲେ ପଞ୍ଜାବବାସୀ ।

ସେହି ପରିସ୍ଥିତିରୁ ମୁକୁଳାଇବା ଲାଗି ଆବଶ୍ୟକ ହୋଇ ପଡ଼ିଥିଲା ସ୍ୱର୍ଣ୍ଣମନ୍ଦିରରେ ସୈନ୍ୟବାହିନୀର ପ୍ରବେଶ । ନିର୍ଦ୍ଦିଷ୍ଟ ସମୟ ନ ଦେଇ ଯଥାସମୟରେ ଆବଶ୍ୟକୀୟ କର୍ମପନ୍ଥା ଗ୍ରହଣ କରିବାପାଇଁ ସେମାନଙ୍କୁ କ୍ଷମତା ଦେଇଥିଲେ ସେ ।

ସ୍ୱର୍ଣ୍ଣମନ୍ଦିରରେ ସୈନ୍ୟବାହିନୀର ପ୍ରବେଶ ଘଟଣାକୁ ଭାରତର ସବୁ ପ୍ରାନ୍ତରରୁ ତଥା ସବୁ ରାଜନୈତିକ ଦଳ ତରଫରୁ ସମର୍ଥନ କରାଯାଇଥିଲା । ସେଭଳି ପଦକ୍ଷେପ ବହୁ ପୂର୍ବରୁ ନଆସିବା ଉଚିତ ଥିଲା ବୋଲି ମଧ୍ୟ ମତପ୍ରକାଶ ପାଇଥିଲା । ସେଥି କାର୍ଯ୍ୟ ପାଇଁ ଶ୍ରୀମତୀ ଗାନ୍ଧୀ ଓ ସୈନ୍ୟବାହିନୀର ଭୂୟସୀ ପ୍ରଶଂସା କରାଯାଇଥିଲା । କିନ୍ତୁ ବାସ୍ତବିକ୍ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ତାହା ଥିଲା ଏକ ଦାରୁଣ ଦୁଃଖଦାୟକ ନିଷ୍ପତ୍ତି । ପବିତ୍ର ଧର୍ମପୀଠରେ ପୋଲିସ୍ କିମ୍ବା ସୈନ୍ୟବାହିନୀର ପ୍ରବେଶ କ୍ଷମତା ଦେବା ଅତି ନିଷ୍ଠୁର କାର୍ଯ୍ୟ ହେଲେ ମଧ୍ୟ ତଦ୍‌ବ୍ୟତୀତ ଅନ୍ୟ କୌଣସି ବିକଳ୍ପ ପନ୍ଥା ନ ଥିଲା ବୋଲି ସେ ସ୍ୱୀକାର କରିଥିଲେ—For me it was an extremely painful decission to take at that moment. I said that there was no way out for me" ଏବଂ ସେ ନିଷ୍ପତ୍ତି ଥିଲା ତାଙ୍କ ସାରା ଜୀବନକାଳ ମଧ୍ୟରେ ନେଇଥିବା ନିଷ୍ପତ୍ତିମାନଙ୍କ ମଧ୍ୟରେ ସବୁଠାରୁ ବଳି ଯନ୍ତ୍ରଣା-ଦାୟକ । ସେ ଲୋକସଭାର ସଭ୍ୟମାନଙ୍କୁ କହିଥିଲେ—"ସେଭଳି ନିଷ୍ପତ୍ତି ନେଇ ମୁଁ ନିଜେ କଭଳି ଦାରୁଣ କଷ୍ଟ ଅନୁଭବ କରିଥିଲି, ତାହା ମୋର ସହକର୍ମୀମାନଙ୍କ ନିକଟରୁ ଆପଣମାନେ ଜାଣି ପାରନ୍ତି ।" "Perhaps this is the first and only time in my life when I didnot sleep But I felt that this had to be done in the national interest." †

ଶ୍ରୀମତୀ ଗାନ୍ଧୀ ବାରମ୍ବାର ଏବଂ ଅନେକ ସ୍ଥାନରେ ସ୍ପଷ୍ଟ କରି ଦେଇଥିଲେ ଯେ, ସେ ପଦକ୍ଷେପ ପଞ୍ଜାବର ଶିଖମାନଙ୍କ ବିରୁଦ୍ଧରେ ଆଦୌ ଉଦ୍ଦିଷ୍ଟ ନ ଥିଲା, ଥିଲା କେବଳ ସନ୍ତ୍ରାସବାଦୀ ଓ ବିଚ୍ଛିନ୍ନତାବାଦୀଙ୍କ ବିରୁଦ୍ଧରେ ।

ତଥାପି ସମଗ୍ର ଦେଶରେ ଶିଖମାନଙ୍କ ହୃଦୟରେ ତାହା ଏକ ଦାରୁଣ ଆଘାତ ସୃଷ୍ଟି କରିଥିଲା । ତେଣୁ ସେମାନେ ଉତ୍ତ୍ୟକ୍ତ ହୋଇ ଉଠିଥିଲେ ।

ଏବଂ ତାର ପରିଣାମ ହିଁ ହୋଇଥିଲା ଶ୍ରୀମତୀ ଗାନ୍ଧୀଙ୍କୁ ହତ୍ୟା । କେବଳ ସେଇ କାରଣରୁ ହିଁ ହନେ ହତ୍ୟାକାରୀମାନେ ସେମାନଙ୍କର ପବିତ୍ର ଧର୍ମାନୁଷ୍ଠାନରେ ଶପଥ ନେଇଥିଲେ ଶ୍ରୀମତୀ ଗାନ୍ଧୀଙ୍କୁ ହତ୍ୟା କରିବାପାଇଁ ।

□ □ □

---

† ୧୯୮୪ ମସିହା ଜୁଲାଇ ୨୫ ତାରିଖ ଦିନ ପଞ୍ଜାବ ସମ୍ପର୍କରେ ପ୍ରକାଶିତ "ଶ୍ୱେତପତ୍ର" ସମ୍ପର୍କରେ ଲୋକସଭାରେ ଆଲୋଚନା ବେଳେ ପ୍ରକାଶିତ ମନ୍ତବ୍ୟର ଅଂଶବିଶେଷ ।

॥ ଛବିଶ ॥

# ମୃତ୍ୟୁସହ ଗୁପ୍ତ ସନ୍ଧି



ଆତ୍ମାର ଅନ୍ୟ ଏକ ରୂପାନ୍ତର ମୃତ୍ୟୁ ।

ଭାରତର ଜନସାଧାରଣ ସେହି ଦାର୍ଶନିକ ତତ୍ତ୍ୱ ଯେତିକ ପରିମାଣରେ ହୃଦୟଙ୍ଗମ କରନ୍ତୁ ନା କାହିଁକି ଶ୍ରୀମତୀ ଗାନ୍ଧୀଙ୍କ ଅକାଳ ବିୟୋଗ ସାରାଦେଶରେ ମର୍ମାନ୍ତିକ ଯନ୍ତ୍ରଣାଦାୟକ ପରିବେଶ ସୃଷ୍ଟି କରିଥିଲା । ତାହାହିଁ ପ୍ରମାଣ କରି ଦେଇଥିଲା, ସେ ଥିଲେ ସମଗ୍ର ଭାରତର ଜନସାଧାରଣଙ୍କ ହୃଦୟ ସିଂହାସନର ଏକମାତ୍ର ଅଧିକାରୀ ।

**ଶେଷସୂର୍ଯ୍ୟର ରଶ୍ମି :—**

୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ସକାଳ ହିଁ ଶ୍ରୀମତୀ ଗାନ୍ଧୀଙ୍କ ପାର୍ଥିବ ଜୀବନରେ ପ୍ରଦର୍ଶନ କରିଥିଲା ଶେଷ ସୂର୍ଯ୍ୟୋଦୟ । ସେଦିନ ଅସ୍ତ ସୂର୍ଯ୍ୟର କିରଣ ଦେଖିବାକୁ ସେ ଆଉ ନ ଥିଲେ ।

ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁ ସ୍ୱାଭାବିକ ନ ଥିଲା । ଅସମୟରେ, ଅସ୍ୱାଭାବିକ ଭାବରେ ଜଣେ ଆତତାୟୀର ଗୁଳିରେ ସେ ପ୍ରାଣ ହରାଇଥିଲେ । ସବୁଠାରୁ ଅଧିକ ଦୁଃଖଦାୟକ ଥିଲା, ଦେଶର ନେତ୍ରୀ ହିସାବରେ ଭାରତରେ ଯେଉଁ ଶାନ୍ତି, ମୈତ୍ରୀ ଓ ସଦ୍‌ଭାବର ବାର୍ତ୍ତା ପ୍ରଚାର କରିବାପାଇଁ ସାରାଜୀବନ ଉଦ୍ୟମ ଚଳାଇଥିଲେ, ଯେଉଁ ହିଂସାକାଣ୍ଡ ଓ ସନ୍ତ୍ରାସବାଦର ସେ ସଦାସର୍ବଦା ବିରୋଧ କରୁଥିଲେ ପରିଶେଷରେ ତାହାର ହିଁ ଶିକାର ହୋଇଥିଲେ ସେ ନିଜେ । ଭାଗ୍ୟର ବିଡ଼ମ୍ବନା ବିଶ୍ୱର ଜଣେ ମହାନ୍ ଜନନାୟିକା ଶହୀଦ୍ ଦେବାପାଇଁ ହୋଇଥିଲା ତାଙ୍କର ନିଜ ନିରାପତ୍ତାରକ୍ଷୀଙ୍କ ବନ୍ଧୁକ ଗୁଳିରେ ।

ସେ ମୃତ୍ୟୁ ସମ୍ବାଦ ଦେଶବାସୀ ତଥା ପୃଥିବୀବାସୀଙ୍କ ପାଇଁ ତ ନିଶ୍ଚୟ ଦୁଃଖଦ, ତଥାପି ବିଶେଷକରି ଓଡ଼ିଶାବାସୀଙ୍କ ପାଇଁ ତାହା ଥିଲା ଦାରୁଣ ଦୁଃଖ-ଦାୟକ । କାରଣ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ଓଡ଼ିଶା ହିଁ ଥିଲା ଶେଷ କର୍ମସ୍ଥଳୀ । ଇନ୍ଦିରାଙ୍କ ମୃତ୍ୟୁ ବେଳକୁ ଓଡ଼ିଶାର ସମୃଦ୍ଧି ପାଇଁ ତାଙ୍କର ଚିନ୍ତା, ଏହି ଭୂଖଣ୍ଡର ସର୍ବାଙ୍ଗୀନ ଉନ୍ନତି ପାଇଁ ତାଙ୍କର ଉଦ୍ୟମ, ଓଡ଼ିଶାବାସୀଙ୍କ ପ୍ରତି ତାଙ୍କର ସ୍ନେହ, ମମତା ସଦ୍ୟ ଓ ଜୀବନ୍ତ ଥିଲା ଓଡ଼ିଶାର ଜନଗଣଙ୍କ ହୃଦୟରେ । ଓଡ଼ିଶାର ଜନଗଣ ତାଙ୍କ ମୃତ୍ୟୁର ପୂର୍ବ ଦୁଇଦିନ ତାଙ୍କ ସହ ଏକତ୍ର ଅର୍ଜନ କରିଥିବା ଅନୁଭୂତି ସବୁ ସମ୍ପୂର୍ଣ୍ଣ ସଚେତନ କରି ନିଜ ନିଜର ହୃଦୟରେ ସାଇତି ରଖିଥିଲେ । ଯେ ଓଡ଼ିଶା ଛାଡ଼ିବାର ମାତ୍ର ୧୬ ଘଣ୍ଟା ପୂର୍ବରୁ ପ୍ରଧାନମନ୍ତ୍ରୀଙ୍କ ମୃତ୍ୟୁ ସମ୍ବାଦ ଏ ଅଞ୍ଚଳବାସୀଙ୍କ ପାଇଁ ଯେ ମର୍ମାନ୍ତିକ ହେବ, ସେଥିରେ ସନ୍ଦେହ ବା କଣ ରହିପାରେ ?

ଦୁଇଦିନର ଓଡ଼ିଶା ରହଣି ପରେ ମୃତ୍ୟୁର ପୂର୍ବଦିନ ରାତିରେ ସେ ଫେରିଥିଲେ ଭାରତର ରାଜଧାନୀକୁ । ଓଡ଼ିଶାର ରହଣି କାଳରେ ସରକାରୀ କାର୍ଯ୍ୟ-ବ୍ୟସ୍ତତା ଭିତରେ ମଧ୍ୟ ପ୍ରକୃତି-ପ୍ରେମୀ ଇନ୍ଦିରା ଓଡ଼ିଶାର ପ୍ରାକୃତିକ ଶୋଭା ସମ୍ପଦ ଦେଖି ମୁଗ୍ଧ ହୋଇ ଯାଇଥିଲେ । ଗଞ୍ଜାମ ଜିଲ୍ଲାସ୍ଥ ଗୋପାଳପୁରଠାରେ ଆକାଶ ମାର୍ଗ ପ୍ରତିରକ୍ଷା କ୍ଷେପଣାସ୍ତ୍ର ତାଲିମ୍ କେନ୍ଦ୍ରର ଶିଳାନ୍ୟାସ କରିବା ପରେ ସମୁଦ୍ର ବେଳାଭୂମିର ଗୋଟିଏ କୁଡ଼ିଆ ଘରେ କିଛିସମୟ ଅତିବାହିତ କରିଥିଲେ; ନିରୀକ୍ଷଣ କରିଥିଲେ ଅନନ୍ତ ସମୁଦ୍ର ଓ ଆକାଶର ମିଳନସ୍ଥଳକୁ । ସେଠାରେ ଉପସ୍ଥିତ ସାମରିକ ଅଫିସରମାନେ ସେଠିକାର ସାମୁଦ୍ରିକ ବେଳାଭୂମିର ପ୍ରାକୃତିକ ସୌନ୍ଦର୍ଯ୍ୟ ସମ୍ପର୍କରେ ଚିନ୍ତାକରିବା ପାଇଁ ଓ ଉପଭୋଗ କରିବାପାଇଁ କିଛି କିଛି ଖୋରାକ ମଧ୍ୟ ମଝିରେ ମଝିରେ ଯୋଗାଇ ଦେଉଥିଲେ—ମନେ ପକାଇ ଦେଉଥିଲେ ସେ ସ୍ଥାନର ଅତୀତ ଐତିହ୍ୟ ।

ତତ୍ପୂର୍ବରୁ ରାଜ୍ୟ ସଂଗ୍ରହାଳୟର ସୁବର୍ଣ୍ଣ ଜୟନ୍ତୀ ସମାରୋହରେ ଗୌରବ-ମୟ ଇତିହାସ ମଣ୍ଡିତ ଅତୀତ ଓଡ଼ିଶାର କଳା, ସଂସ୍କୃତି ପ୍ରଭୃତି ନିରୀକ୍ଷଣ କରୁ କରୁ ସର୍ବଦା ସମୟ ସଚେତନ ରହୁଥିବା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମାତ୍ର ପଚିଶ ମିନିଟରେ ନିର୍ଦ୍ଧାରିତ କାର୍ଯ୍ୟକ୍ରମ କେତେବେଳେ ସରିଯାଇଥିଲା ତାହା ଜାଣିପାରି ନ ଥିଲେ । ସମ୍ପୂର୍ଣ୍ଣ ରୂପେ ମଜ୍ଜି ଯାଇଥିଲେ ଅତୀତ ଓଡ଼ିଶାର ଇତିହାସ ଭିତରେ । ପଚିଶ ମିନିଟ ପରିବର୍ତ୍ତେ ସେଠାରେ ବିତିଯାଇଥିଲା ପ୍ରାୟ ଏକଘଣ୍ଟା । ସେତିକିରେ ମଧ୍ୟ ମନ ସନ୍ତୁଷ୍ଟ ହୋଇ ନ ଥିଲା, ତେଣୁ ସେ ପୁଣି ମତପ୍ରକାଶ କରିଥିଲେ ଯେ ପ୍ରଧାନମନ୍ତ୍ରୀ ହିସାବରେ ନୁହେଁ, ଜଣେ ଭ୍ରମଣକାରୀ ହିସାବରେ ଓଡ଼ିଶାକୁ ପୁଣିଥରେ ଆସିବାଲାଗି ସେ ଅତ୍ୟନ୍ତ ଆଗ୍ରହୀ ।

ଓଡ଼ିଶାର ଅତୀତ ଓ ବର୍ତ୍ତମାନର ଇତିହାସ, କଳା, ସଂସ୍କୃତି ତଥା ପରମ୍ପରା ଶ୍ରୀମତୀ ଗାନ୍ଧୀଙ୍କ ମନରେ କି ପ୍ରଭାବ ବିସ୍ତାର କରିପାରିଥିଲା ଓ କିଭଳି ଭାବରେ ତାଙ୍କୁ ଆତ୍ମବିସ୍ମୃତ କରାଇ ଦେଇ ପାରିଥିଲା ତାହା ସେଥିରୁ ସ୍ପଷ୍ଟ ଅନୁମାନ କରାଯାଇପାରେ । କିନ୍ତୁ ତାଙ୍କର ସେ ଆକାଂକ୍ଷା ପୂରଣ ହୋଇପାରି ନ ଥିଲା । ଅକ୍ଟୋବର ୩୦ ତାରିଖ ଦିନ ସନ୍ଧ୍ୟାରେ ଭୁବନେଶ୍ୱର ପ୍ୟାରେଡ଼ ପଡ଼ିଆରେ ଏକ ବିରାଟ ଜନସମାବେଶରେ ଉଦ୍‌ବୋଧନ ଦେଇ ସେ ଫେରି ଯାଇଥିଲେ ଦିଲ୍ଲୀ । ତାହାହିଁ ଥିଲା ଶ୍ରୀମତୀ ଗାନ୍ଧୀଙ୍କ ଜୀବନର ଶେଷ ସାଧାରଣ ସଭା ।

ସେହି ଶେଷ ସାଧାରଣ ସଭାରେ ସେ ଦୃଢ଼ କଣ୍ଠରେ ଘୋଷଣା କରିଥିଲେ ଯେ, ସେ ତାଙ୍କର ମୃତ୍ୟୁ ପାଇଁ କେବେ ଚିନ୍ତିତ ନ ଥିଲେ । ସେ କେବେ ବିଚଳିତ ନ ଥିଲେ ତାଙ୍କର ସ୍ୱାଭାବିକ, ଅସ୍ୱାଭାବିକ କିମ୍ବା ଆତତାୟୀର ଆକ୍ରମଣଜନିତ ମୃତ୍ୟୁ ପାଇଁ । ଭାରତର ସମୃଦ୍ଧିପାଇଁ, ଦେଶକୁ ଶକ୍ତିଶାଳୀ କରି ଗଢ଼ି ତୋଳିବାପାଇଁ ଏବଂ ପୃଥିବୀ ସମକ୍ଷରେ ଭାରତକୁ ଯଥାଯଥ ଭାବେ ପ୍ରତିଷ୍ଠିତ କରାଇବା ପାଇଁ ସାରାଜୀବନ ଅତିବାହିତ କରିଥିଲେ ଏବଂ ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ମଧ୍ୟ ସେ ସେଥିପାଇଁ ଉଦ୍ୟମ କରିବେ ।

ସେଦିନ ଓଡ଼ିଶାର ରାଜଧାନୀରେ ଅନୁଷ୍ଠିତ ସାଧାରଣ ସଭାରେ ଅଭୂତପୂର୍ବ ଜନସମାବେଶ ହୋଇଥିଲା ଏବଂ ଉପସ୍ଥିତ ଜନତା ଉତ୍କଣ୍ଠିତ ହୋଇ ଚାହିଁ ରହିଥିଲେ ଶ୍ରୀମତୀ ଗାନ୍ଧୀଙ୍କୁ । ସେ ସେଠାରେ ଭାରତମାତାର ଜୟଗାନ କରି ଅତି ଅନ୍ତରଙ୍ଗ ଭାବେ ଆତ୍ମପ୍ରକାଶ କରିଥିଲେ—"ମୋ ଉପରେ ବାରମ୍ବାର ଆକ୍ରମଣ କରାଯାଉଛି । ସେଥିପାଇଁ କେତେବେଳେ ପିସ୍ତଲ ଓ ଆଉ କେତେବେଳେ ଲାଠି ବ୍ୟବହାର କରାଯାଇଛି । ଏହି ଭୁବନେଶ୍ୱରରେ ଇଟାଦ୍ୱାରା ମଧ୍ୟ ଆକ୍ରମଣ ହୋଇଛି । ତା'ଛଡ଼ା ପ୍ରତ୍ୟେକ ପ୍ରକାରର ଆକ୍ରମଣ ମଧ୍ୟ ହୋଇଛି । ଜୀବିତ ରହିବା ବା ନ ରହିବା ବିଷୟରେ ମୁଁ ଚିନ୍ତା କରୁନାହିଁ । ଦୀର୍ଘ ଆୟୁ ମୁଁ ଭୋଗ କରିବ । ମୋ ପକ୍ଷରେ ଏତିକି କେବଳ ଗୌରବର ବିଷୟ ଯେ ମୋର ଜୀବନ ଜନସେବାରେ ନିୟୋଜିତ ହୋଇଛି । ମୋର ଶ୍ୱାସପ୍ରଶ୍ୱାସ ଚାଲିଥିବା ପର୍ଯ୍ୟନ୍ତ ମୋର ଜୀବନ ଜନସେବାରେ ନିୟୋଜିତ ଥାଉ । ମୋର ଜୀବନ ଚାଲି ଯାଇପାରେ କିନ୍ତୁ ମୋର ପ୍ରତି ରକ୍ତବିନ୍ଦୁ ଭାରତକୁ ଦୃଢ଼ୀଭୂତ କରିବ । ଯୁବକ ବା ମହିଳା ଯେ ହୁଅନ୍ତୁ ନା କାହିଁକି ସେମାନେ ଆଜି ଏହି ବିଷୟରେ ଚିନ୍ତାକରି ଏ ଉତ୍ତର-ଦାୟିତ୍ୱ ବହନ କରିବେ ବୋଲି ମୁଁ ଆଶା କରେ । କାହାକୁ ନେତା ମାନି ଚାଲିବା ବା ନ ଚାଲିବା ବଡ଼ କଥା ନୁହେଁ । ନେତାମାନେ ଠିଆ ହୁଅନ୍ତି ଓ ଅପସରି ଯାଆନ୍ତି । ସ୍ୱାଧୀନତା ସଂଗ୍ରାମ ଚାଲିଥିବା ସମୟରେ ନେତାମାନେ ଅନେକ ସମୟରେ ଓ ବାରମ୍ବାର ଜେଲ୍‌ରେ ଅଟକ ରହୁଥିଲେ, ତଥାପି ସ୍ୱାଧୀନତା ସଂଗ୍ରାମ ଅଟକି ଯାଇ ନ ଥିଲା । କାରଣ

ପ୍ରତ୍ୟେକ ପ୍ରଦେଶରେ, ପ୍ରତ୍ୟେକ ଜିଲ୍ଲାରେ ନେତା ସୃଷ୍ଟି ହେଉଥିଲେ । ଆଦିବାସୀ ଅଧ୍ୟୁଷିତ ଓଡ଼ିଶାର ଲୋକେ ଜାତି ନିର୍ବିଶେଷରେ ଭାବିବା ଉଚିତ ଯେ ଏହା ଆମର ଦେଶ । ଏହାକୁ ଶକ୍ତିଶାଳୀ କରିବା ଆମର କର୍ତ୍ତବ୍ୟ ଓ ଆମକୁ ଏହାର ଅଖଣ୍ଡତାକୁ ମଜଭୁତ ରଖିବାକୁ ହେବ । ଏହାହିଁ ଆମର ଦାୟିତ୍ୱ । ଇନ୍ଦିରା ଗାନ୍ଧୀ, କଂଗ୍ରେସ ବା ଅନ୍ୟ କୌଣସି ନେତାଙ୍କର ଏ ଦାୟିତ୍ୱ ନୁହେଁ । ଏହା ଆମ ପ୍ରତ୍ୟେକ ନାଗରିକଙ୍କ ଦାୟିତ୍ୱ । ଏଭଳି ଚିନ୍ତାଧାରା ଏ ଦେଶରେ ସୃଷ୍ଟି ହେଉ—ଏହା ମୋର ଇଚ୍ଛା ।" ଜୀବନର ସେଇ ଶେଷ ଭାଷଣର ପରିସମାପ୍ତି କରି ସେ କହିଥିଲେ—"ମୁଁ ପୁନର୍ବାର ସ୍ମରାଇ ଦେବାକୁ ଚାହେଁ ଯେ, ଦେଶର ଏକତା ଓ ଅଖଣ୍ଡତା ପ୍ରତି ସର୍ବପ୍ରଥମେ ଲକ୍ଷ୍ୟ ରଖାଯିବା ଉଚିତ ଓ ତାପରେ ଅନ୍ୟାନ୍ୟ ସମସ୍ୟାଗୁଡ଼ିକର ସମାଧାନ କଥା ।" †

ସେ ଦେଶବାସୀଙ୍କୁ ଦୃପ୍ତକଣ୍ଠରେ ଏ ଆହ୍ୱାନ ଦେବାବେଳେ ତାଙ୍କ କଣ୍ଠରେ ଥିଲା ଦୃଢ଼ତା ଏବଂ ଦେଶପାଇଁ ଉତ୍ସର୍ଗୀକୃତ ଜୀବନର ସ୍ପଷ୍ଟ ଆଭାସ । କିନ୍ତୁ ତଥାପି ସେଇ ଘୋଷଣା କଲାବେଳେ ସେ କଣ ନିଜ ମାନସପଟରେ ଦେଖି ପାରିଥିଲେ, ତାହାଙ୍କୁ ପାଶବିକ ଭାବରେ ହତ୍ୟା କରିବାପାଇଁ ସମସ୍ତ ଦୃଢ଼ତା ଓ ଶକ୍ତି ସଞ୍ଚୟ କରୁଥିବା ବ୍ୟକ୍ତିମାନଙ୍କର ଅସ୍ପଷ୍ଟ ପ୍ରତିଚ୍ଛବି ! ସେ କଣ ଦେଖି ପାରିଥିଲେ ତାଙ୍କ ଶରୀର ଦରରେ ଓ ତାଙ୍କ ପାଇଁ ସଞ୍ଚିତଥିବା ପିସ୍ତଲ ଓ ଷ୍ଟେନ୍‌ଗନ୍‌ରୁ ନିର୍ଗତ ହେବାକୁ ଥିବା ଗୁଳି ବାରୁଦଗୁଡ଼ିକର ଅଗ୍ନି ସ୍ଫୁଲିଙ୍ଗ !!

ସେଇ ଦୃପ୍ତ ଘୋଷଣାର ମାତ୍ର ପନ୍ଦର ଘଣ୍ଟା ପରେ ପରେ ଯୋଦ୍ଧାଭଳି ଯୁଦ୍ଧ ଭୂମିରେ ଶ୍ରୀମତୀ ଗାନ୍ଧୀଙ୍କର ଗୁଳିବିଦ୍ଧ ରକ୍ତ ଜୁଡ଼ୁବୁଡ଼ୁ ଶରୀର ଲୋଟି ଯାଇଥିଲା । ସ୍ୱଧର୍ମ ପାଳନ କରି ପ୍ରଧାନମନ୍ତ୍ରୀ ପଦରେ କର୍ତ୍ତବ୍ୟରତ ଥିବାବେଳେ ସେ ମୃତ୍ୟୁକୁ ବରଣ କରିଥିଲେ; ହୋଇ ପାରିଥିଲେ ମୃତ୍ୟୁଞ୍ଜୟୀ ।

**କଳଙ୍କିତ ବୁଧବାର :—**

୧୯୮୪ ମସିହା ଅକ୍ଟୋବର ୩୧ ତାରିଖ, ବୁଧବାର ।

ଯଥାରୀତି ସୂର୍ଯ୍ୟ ପୂର୍ବ ଆକାଶରେ ଉଦୟ ହୋଇଥିଲା । ଚିରପୂର୍ବରୁ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ତାଙ୍କର ନିତ୍ୟକର୍ମ ଯଥାରୀତି ସମାପନ କରିଥିଲେ । ତାଙ୍କ ସହ ସାକ୍ଷାତ୍ କରିବାଲାଗି ଆସିଥିବା ବ୍ରିଟିଶ୍ ଟେଲିଭିଜନ୍ ଫିଲ୍ମ ସମ୍ବାଦ ଜଣେ ପ୍ରତିନିଧି ପିଟର ଉସ୍ତିନୋଭ୍‌ଙ୍କୁ ସାକ୍ଷାତ୍‌କାର ଦେବା

† ୧୯୮୪ ଅକ୍ଟୋବର ୩୦ ସନ୍ଧ୍ୟାରେ, ଭୁବନେଶ୍ୱରଠାରେ ଶ୍ରୀମତୀ ଗାନ୍ଧୀଙ୍କ ଶେଷ ସାଧାରଣ ସଭାରେ ଦେଇଥିବା ଭାଷଣର ଅଂଶବିଶେଷ ।

ଉଦ୍ଦେଶ୍ୟରେ ସେ ସକାଳେ ତାଙ୍କର ଅନ୍ୟାନ୍ୟ କାର୍ଯ୍ୟସବୁ ବାତିଲ୍ କରି ଦେଇଥିଲେ । ତେଣୁ ସେହି ଉଦ୍ଦେଶ୍ୟରେ ନିଜକୁ ପ୍ରସ୍ତୁତ କରିଥିଲେ ସକାଳ ପ୍ରାୟ ନଅଟାବେଳେ ।

ଶ୍ରୀମତୀ ଗାନ୍ଧୀଙ୍କ ୧, ଆକବର ରୋଡ଼ର ଘରେ ପିଟର ଉଷ୍ଟିନୋଭ୍ ଅପେକ୍ଷା କରିଥିଲେ । ତାହାଙ୍କୁ ସାହାଯ୍ୟ କରିବାପାଇଁ ଦିଲ୍ଲୀର ଦୂରଦର୍ଶନ କେନ୍ଦ୍ରର ଜଣେ ସହକାରୀଙ୍କୁ ସାଙ୍ଗରେ ନେଇ ଯାଇଥିଲେ ସେ । ତେଣୁ ନିର୍ଦ୍ଧାରିତ ସମୟରେ ୧, ସଫଦରଜଙ୍ଗ ରୋଡ଼ସ୍ଥ ଘରୁ ପ୍ରସ୍ତୁତ ହୋଇ ଆକବର ରୋଡ଼ସ୍ଥ ଘରକୁ ବାହାରିଥିଲେ ।

୧, ସଫଦରଜଙ୍ଗ ଓ ୧, ଆକବର ରୋଡ଼ର ଘର ଦୁଇଟି ପ୍ରଧାନମନ୍ତ୍ରୀଙ୍କ ବାସଭବନର ଦୁଇଟି ଅଙ୍ଗ । ବୁଧବାର ଦିନ ସକାଳ ନଅଟା ଅଠାଇଶ ମିନିଟରେ ଶ୍ରୀମତୀ ଗାନ୍ଧୀ ପ୍ରସ୍ତୁତ ହୋଇ ୧, ସଫଦରଜଙ୍ଗ ବାସଗୃହରୁ ବାହାରିଥିଲେ । ପିଟର ଉଷ୍ଟିନୋଭ୍ ଅପେକ୍ଷା କରିଥିବା ୧, ଆକବର ରୋଡ଼ସ୍ଥ କାର୍ଯ୍ୟାଳୟକୁ ଯିବା ରାସ୍ତାରେ ପ୍ରଧାନମନ୍ତ୍ରୀଙ୍କ ଜଣେ ସିକ୍ୟୁରିଟି ସବ୍‌ଇନସ୍‌ପେକ୍ଟର ଶ୍ରୀ ବେଅନ୍ତ ସିଂହ ଓ ଜଣେ କନ୍‌ଷ୍ଟେବଲ ସତବନ୍ତ ସିଂହ ତାଙ୍କ ଉପରକୁ ଅମାନୁଷିକ ଓ ବର୍ବରୋଚିତ ଭାବେ ଗୁଳି ଚାଳନା କରିଥିଲେ । ଉଭୟ ରୋଡ଼ ମଧ୍ୟସ୍ଥ ଟ୍ରେହିର ମଧ୍ୟବର୍ତ୍ତୀ ଲୌହ ଫାଟକ ନିକଟରେ ଦୁଇ ଆତତାୟୀ ଦ୍ୱାରା ପ୍ରଧାନମନ୍ତ୍ରୀଙ୍କ ସୁରକ୍ଷା କରିବାପାଇଁ ମୁତୟନ ହୋଇଥିଲେ ।

ରକ୍ଷକମାନେ ହିଁ ସେଦିନ ଭକ୍ଷକ ସାଜିଥିଲେ ।

ନିଜ ବାସଭବନ ଭିତରେ ଶ୍ରୀମତୀ ଗାନ୍ଧୀ ଚଳପ୍ରଚଳ ହେଉଥିବା ଯୋଗୁଁ ସମ୍ଭବତଃ ଗୁଳି ନିରୋଧକ ଜାକେଟ୍ ପରିଧାନ କରି ନ ଥିଲେ । ସେଇ ସୁଯୋଗର ସମ୍ପୂର୍ଣ୍ଣ ସଦ୍‌ବ୍ୟବହାର କରିଥିଲେ ଆତତାୟୀମାନେ । ସଫଦରଜଙ୍ଗ ବାସଗୃହରୁ ବାହାରି ଲୌହ ଫାଟକ ପାରିହେବା ପରେ ପରେ ପ୍ରଥମେ ପ୍ରାୟ ଅଣଚାଳିଶ ବର୍ଷ ବୟସ୍କ ସବ୍‌ଇନସ୍‌ପେକ୍ଟର ବେଅନ୍ତ ସିଂହ ନିଜ ରିଭଲ୍‌ଭର୍‌ରୁ ଛଅ ରାଉଣ୍ଡ ଗୁଳି ଚଳାଇଥିଲେ । ଶ୍ରୀମତୀ ଗାନ୍ଧୀ ଗୁରୁତର ଭାବେ ଆହତ ହୋଇ ତତ୍‌କ୍ଷଣାତ୍ ରକ୍ତ ଜୁଡ଼ୁବୁଡ଼ୁ ଅବସ୍ଥାରେ ଭୂଇଁ ଉପରେ ଲୋଟି ପଡ଼ିଥିଲେ । ତା ପରେ ପରେ ପ୍ରାୟ ୨୧ ବର୍ଷ ବୟସ୍କ ଯୁବକ କନ୍‌ଷ୍ଟେବଲ୍ ସତବନ୍ତ ସିଂହ ନିଜ ଷ୍ଟେନ୍‌ଗନ୍‌ରୁ ଗୁଳି ଶେଷ ହେବା ପର୍ଯ୍ୟନ୍ତ ବ୍ୟବହାର କରିଥିଲେ । ସବୁଓ ସେହି ଷ୍ଟେନ୍‌ଗନ୍ କାରବାଇନ୍‌ରେ ୩୨ଟି ପର୍ଯ୍ୟନ୍ତ ଗୁଳି ରହିବାର ବ୍ୟବସ୍ଥା ଥିଲା, ତଥାପି ସହଜ ଭାବରେ ନିର୍ବିଘ୍ନରେ ଅସ୍ତ୍ରଚାଳନା ପାଇଁ କିଛି କମ୍ ଗୁଳି ଭର୍ତ୍ତି କରାଯାଇ ରଖାଯାଇଥିଲା ।

ସାଧାରଣତଃ ଯେତେବେଳେ ଯେଉଁମାନେ କାର୍ଯ୍ୟରତ ରହୁଥିଲେ, ପର୍ଯ୍ୟାୟକ୍ରମେ ସେମାନେ ସେହି ଅସ୍ତ୍ରଗୁଡ଼ିକ ହିଁ ସାଙ୍ଗରେ ନେଇ ଯାଉଥିଲେ ।

ସେହି ସମୟରେ ସତ୍ୱନ୍ତ କାର୍ଯ୍ୟାଳୟକୁ ଆସିବାବେଳେ ଯେଉଁ ଷ୍ଟେନ୍‌ଗନ୍ ଆଣିଥିଲା, ସେଥିରେ ୩୦ ରାଉଣ୍ଡ ଗୁଳିଥିଲା ଏବଂ ବେଅନ୍ତ ସିଂହର ଗୁଳିମାଡ଼ରେ ଶ୍ରୀମତୀ ଗାନ୍ଧୀ ରକ୍ତାକ୍ତ ହୋଇ ତଳେ ଲେଟି ପଡ଼ିଥିଲେ ମଧ୍ୟ ସତବନ୍ତ ସିଂହ ତା ବନ୍ଧୁକରେ ଥିବା ୩୦ ରାଉଣ୍ଡ ଗୁଳି ଭୂ-ଲୁଣ୍ଠିତ ଶ୍ରୀମତୀ ଗାନ୍ଧୀଙ୍କ ଉପରକୁ ଲକ୍ଷ୍ୟକରି ନିଃ ବ୍ୟବହାର କରିଥିଲା । ସେହି ନାରକୀୟକାଣ୍ଡ ସଂଘଟିତ ହୋଇ ସାରିବା ବେଳକୁ ସେହି ନିକଟବର୍ତ୍ତୀ ସ୍ଥାନମାନଙ୍କରେ କାର୍ଯ୍ୟରତ ଇଣ୍ଡୋ-ତିବ୍ବତ ପୋଲିସବାହିନୀ ତଥା ପ୍ରଧାନମନ୍ତ୍ରୀଙ୍କ କମାଣ୍ଡୋ ବାହିନୀର ଅନ୍ୟ କର୍ମଚାରୀମାନେ ସେଠାରେ ଉପସ୍ଥିତ ହୋଇ ଯାଇଥିଲେ । ଅପର ପକ୍ଷରେ ଅପ୍ରସ୍ତୁତ ଅବସ୍ଥାରେ ତାଙ୍କ ବୋହୂ ଶ୍ରୀମତୀ ସୋନିଆ ଗାନ୍ଧୀଙ୍କ ସମେତ ଶ୍ରୀମତୀ ଗାନ୍ଧୀଙ୍କ ବାସଭବନର କର୍ମଚାରୀଗଣ ମଧ୍ୟ ସେଠାରେ ତତ୍‌କ୍ଷଣାତ୍ ରୁଣ୍ଡ ହୋଇ ଯାଇଥିଲେ ।

ଶ୍ରୀମତୀ ଗାନ୍ଧୀ ନିଜ ଗୃହତ୍ୟାଗ କରିବାର କିଛିକ୍ଷଣ ପୂର୍ବରୁ ତାଙ୍କ ଡାକ୍ତର ସ୍ୱାସ୍ଥ୍ୟ ପରୀକ୍ଷା କରିସାରି ଚାଲି ଯାଇଥିଲେ । ତେଣୁ ଆଖି ପିଛୁଳାକ ମଧ୍ୟରେ ତାଙ୍କୁ ଏକ ଗୁଳି ନିରୋଧକ ଗାଡ଼ିରେ ଶ୍ରୀମତୀ ସୋନିଆ ଗାନ୍ଧୀ ଓ ଶ୍ରୀ ଆର୍. କେ. ଧାଵନ ଅଲ୍‌ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ ଅଫ୍ ମେଡ଼ିକାଲ୍ ସାଇନ୍‌ସକୁ ନେଇ ଯାଇଥିଲେ । କେଜୁଆଲ୍‌ଟିରେ ପ୍ରାଥମିକ ଚିକିତ୍ସା ପରେ ତାଙ୍କୁ ଇଣ୍ଟେନ୍‌ସିଭ୍-କେର୍ ୟୁନିଟ୍‌କୁ ସ୍ଥାନାନ୍ତରିତ କରାଯାଇଥିଲା ଓ ସେଠାରେ Heart long mechine ଦ୍ୱାରା କୃତ୍ରିମ ଶ୍ୱାସକ୍ରିୟା ସମ୍ପାଦନର ବ୍ୟବସ୍ଥା କରାଯାଇଥିଲା ।

ଉକ୍ତ ଅମାନୁଷିକ ଗୁଳି ବର୍ଷଣ ଯୋଗୁଁ ଶ୍ରୀମତୀ ଗାନ୍ଧୀଙ୍କ ଶରୀରରେ ୨୨ଟି ଧ୍ୱନି ବିଦ୍ଧ ହୋଇଥିଲା ଏବଂ ଡାକ୍ତରମାନେ ଅସ୍ତ୍ରୋପଚାର କରି ସେଥିମଧ୍ୟରୁ ୧୪ଟି ଗୁଳି ବାହାର କରିଥିଲେ । ପ୍ରବଳ ସଂଗ୍ରାମ କରି ସୁଦ୍ଧା ସେମାନେ ଶ୍ରୀମତୀ ଗାନ୍ଧୀଙ୍କୁ ବଞ୍ଚାଇ ରଖି ପାରିବାକୁ ସମର୍ଥ ହୋଇ ନ ଥିଲେ । ଘୃଣ୍ୟ ଆତତାୟୀମାନଙ୍କ ନାରକୀୟ କାର୍ଯ୍ୟର ସମ୍ପୂର୍ଣ୍ଣ ବିଜୟ ହୋଇଥିଲା । କର୍ତ୍ତବ୍ୟରତ, କର୍ମନିଷ୍ଠ ଇତିହାସ-ସୃଷ୍ଟିକାରୀ ମଣିଷଟିଏ ନିଶ୍ଚଳ ହୋଇଯିବା ପାଇଁ ବାଧ୍ୟ ହୋଇଥିଲା ।

ମେଡ଼ିକାଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ସକାଳ ନଅ ଘଣ୍ଟା ଦଶ ମିନିଟରେ ଶ୍ରୀମତୀ ଗାନ୍ଧୀଙ୍କୁ ପହଞ୍ଚାଇ ଦିଆଗଲାବେଳେ ସେ ଅଚେତ୍ ଥିଲେ; କିନ୍ତୁ ପ୍ରାୟ ସାଢ଼େ ଦଶଟାବେଳକୁ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା ।

ଶ୍ରୀମତୀ ଗାନ୍ଧୀଙ୍କ ଉପରେ ମର୍ମନ୍ତୁଦ ଆକ୍ରମଣର ସମ୍ବାଦ ମାତ୍ର କେତୋଟି ମିନିଟ ମଧ୍ୟରେ ପ୍ରାୟ ଦେଶ ଓ ବିଦେଶରେ ମଧ୍ୟ ପ୍ରସାରିତ ହୋଇ ଯାଇଥିଲା । ସେ ସମ୍ବାଦ ପାଇବା ମାତ୍ରେ କେନ୍ଦ୍ର ମନ୍ତ୍ରିମଣ୍ଡଳର ସଦସ୍ୟ ଓ ପରିବାରର ବ୍ୟକ୍ତିବୃନ୍ଦ ଡାକ୍ତରଖାନାରେ ପହଞ୍ଚିଥିଲେ । ଡାକ୍ତରଖାନାର ସମ୍ମୁଖରେ କେନ୍ଦ୍ର ମନ୍ତ୍ରିମଣ୍ଡଳର

ଏକ ଅଣଆନୁଷ୍ଠାନିକ ବୈଠକ ବସି ଦିନ ପ୍ରାୟ ୧୧ଟା ବେଳେ ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁ ସମ୍ବାଦ ଅନୁଷ୍ଠାନ ପକ୍ଷରୁ ଘୋଷଣା କରାଯାଇଥିବା ବିଷୟ ପ୍ରକାଶ କରାଯାଇଥିଲା । ତେବେ ସେହି ଦୁର୍ଘଟଣା ସମ୍ପର୍କରେ ଭାରତୀୟ ଆକାଶବାଣୀ ପକ୍ଷରୁ ପୂର୍ବାହ୍ନ ୧୦-୪୫ ମିନିଟରେ ପ୍ରଥମେ ସମ୍ବାଦ ପରିବେଷଣ କରାଯାଇଥିଲେ ମଧ୍ୟ ବହୁ ବିଳମ୍ବରେ, ସନ୍ଧ୍ୟା ୬ ଘଣ୍ଟା ବେଳେ ଆନୁଷ୍ଠାନିକ ଭାବେ ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁ ଖବର ପ୍ରସାରିତ ହୋଇଥିଲା । ଉଲ୍ଲେଖଯୋଗ୍ୟ ଯେ ବି. ବି. ସି. ପକ୍ଷରୁ ସାଢ଼େ ଦଶଟାବେଳେ ଓ ପି. ଟି. ଆଇ. ସଂସ୍ଥା ପକ୍ଷରୁ ଦେଶରେ ସେ ସମ୍ବାଦ ପ୍ରସାରିତ ହୋଇ ସାରିଥିଲା ।

ସେ ଦାରୁଣ ଦୁର୍ଘଟଣା ଘଟିବା ବେଳକୁ ଶ୍ରୀ ରାଜୀବ ଗାନ୍ଧୀ ତଥା କେନ୍ଦ୍ର ମନ୍ତ୍ରିମଣ୍ଡଳର ଜଣେ ବରିଷ୍ଠ ସଭ୍ୟ ଶ୍ରୀ ପ୍ରଣବ ମୁଖାର୍ଜୀ ଥିଲେ ପଶ୍ଚିମବଙ୍ଗରେ । ଏ ମର୍ମନ୍ତୁଦ ଖବର ପାଇବା ସଙ୍ଗେ ସଙ୍ଗେ ରାଜୀବ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କରିଥିଲେ । ଅପରାହ୍ନ ପ୍ରାୟ ତିନିଟାବେଳେ ବିମାନ ବନ୍ଦରରେ ପହଞ୍ଚି ସେଠାରୁ ସିଧାସଳଖ ହାସ୍‌ପାତାଳକୁ ଯାଇଥିଲେ ।

କିନ୍ତୁ ସେତେବେଳକୁ ତାଙ୍କ ଜନ୍ମଦାତ୍ରୀଙ୍କ ଆତ୍ମା ନର ଶରୀରକୁ ଛାଡ଼ି ପରମାତ୍ମାଙ୍କ ସହିତ ମିଳିତ ହୋଇ ସାରିଥିଲା ।

ଭାରତର ରାଷ୍ଟ୍ରପତିଙ୍କ ସମେତ ମନ୍ତ୍ରିମଣ୍ଡଳର ଅନ୍ୟ ଯେଉଁମାନେ ରାଜଧାନୀଠାରୁ ଦୂରରେ ଥିଲେ, ସମସ୍ତେ ହତବାକ୍ ହୋଇ ଯଥାସମ୍ଭବ ଶୀଘ୍ର ଲେଉଟି ଆସିଥିଲେ ଦିଲ୍ଲୀ ।

ସମସ୍ତେ ଥିଲେ ପ୍ରାୟ ନିର୍ବାକ ! ସମସ୍ତେ ଥିଲେ ପ୍ରାୟ ନିସ୍ପନ୍ଦ !!

**ଆତତାୟୀଙ୍କ ବିଜୟ :—**

ମୃତ୍ୟୁର ଅଳ୍ପକାଳ ପୂର୍ବରୁ ଜଣେ ବିଦେଶୀ ସାମ୍ବାଦିକଙ୍କ ସହ କଥାବାର୍ତ୍ତା କଲାବେଳେ ଶ୍ରୀମତୀ ଗାନ୍ଧୀ ପ୍ରକାଶ କରିଥିଲେ ଯେ, ମୃତ୍ୟୁକୁ ତାଙ୍କର ଆଦୌ ଭୟ ନ ଥିଲା । ସେଇ ଏକା କଥା ମୃତ୍ୟୁ ପୂର୍ବଦିନ ସନ୍ଧ୍ୟାରେ ଭୁବନେଶ୍ୱରଠାରେ ଜୀବନର ଶେଷ ସାଧାରଣ ସଭାରେ ମଧ୍ୟ ପ୍ରକାଶ କରିଥିଲେ ଦୃଢ଼ତାର ସହିତ । ଗୀତାର ଦର୍ଶନ ପ୍ରତି ତାଙ୍କର ବିଶ୍ୱାସ ଥାଉ ବା ନ ଥାଉ, ଭାରତର ସାମଗ୍ରିକ ଉନ୍ନତି ପାଇଁ ସେ ତାଙ୍କର ସମସ୍ତ ସ୍ୱାର୍ଥ ଜଳାଞ୍ଜଳି ଦେବାପାଇଁ କୁଣ୍ଠିତ ନ ଥିଲେ । ମୋଟ ଉପରେ ଜାତୀୟତା ଭାବ ହିଁ ଥିଲା ତାଙ୍କ ଜୀବନର ପରମ ଆଦର୍ଶ । ତେଣୁ ଜାତିର ଉନ୍ନତି କଳ୍ପେ "ତାଙ୍କ ପିଠିରେ ଦେଶବାସୀ ଚାଲିଯିବା" ଭଳି ଗୋପବନ୍ଧୁଙ୍କ ନୀତି ଓ ଆଦର୍ଶ ଯାହା ଥିଲା, ଗାନ୍ଧୀ ଓ ନେହେରୁଙ୍କ ଆଦର୍ଶ ତାହାହିଁ ଥିଲା ଏବଂ ସେଇ ଆଦର୍ଶ ହିଁ ଶ୍ରୀମତୀ ଗାନ୍ଧୀଙ୍କୁ ଅନୁପ୍ରାଣିତ କରିଥିଲା । ସେଥିପାଇଁ ସେ ମୃତ୍ୟୁକୁ ଭୟ କରୁ ନ ଥିଲେ ।

ତଥାପି ତାଙ୍କୁ ହତ୍ୟା କରିବାପାଇଁ ଉଦ୍ୟମରେ ମଧ୍ୟ ଅବହେଳା ନ ଥିଲା । ଦେଶର ସ୍ୱାର୍ଥ ଦୃଷ୍ଟିରୁ ପ୍ରଧାନମନ୍ତ୍ରୀ ହିସାବରେ ସାମୂହିକ ମଙ୍ଗଳପାଇଁ ସେ ସ୍ୱତନ୍ତ୍ର ପଦକ୍ଷେପମାନ ନେଉଥିଲେ । ସେଥିମଧ୍ୟରୁ କେତେକ ହୁଏତ କୌଣସି ନା କୌଣସି ଧାର୍ମିକ କିମ୍ବା ସାଂପ୍ରଦାୟିକ କାରଣରୁ କିଛି ଲୋକଙ୍କୁ ଅସନ୍ତୁଷ୍ଟ କରୁଥିଲା । ତେଣୁ ସେମାନେ ସ୍ୱାଭାବିକ ଭାବେ ଉତ୍ତ୍ୟକ୍ତ ହୋଇ ଉଠୁଥିଲେ ଏବଂ ଚାହୁଁଥିଲେ ସେମାନଙ୍କ ସ୍ୱାର୍ଥରେ ଆଞ୍ଚ ଆଣୁଥିବା ବ୍ୟକ୍ତିଙ୍କୁ ଉଚ୍ଛିନ୍ନ କରିବେ । ହୁଏତ କେବଳ ସେହି କାରଣରୁ ହିଁ ଶ୍ରୀମତୀ ଗାନ୍ଧୀଙ୍କୁ ହତ୍ୟା କରିବା ଲାଗି ପୂର୍ବରୁ ଅନେକବାର ବିଫଳ ଉଦ୍ୟମ ହୋଇଥିଲା ।

ଆଲାହାବାଦ ହାଇକୋର୍ଟରେ ସାକ୍ଷ୍ୟ ଦେବାପାଇଁ ୧୯୭୫ ମସିହା ମାର୍ଚ୍ଚ ମାସ ୧୮ ତାରିଖ ଦିନ ସେ କୋର୍ଟକୁ ଯିବା ପୂର୍ବରୁ ସେଠାରେ ଜଣେ ସାମ୍ବାଦିକ ଗୁଳିଭରା ପିସ୍ତଲ୍‌ଟିଏ ନେଇ ସୁଯୋଗ ଅପେକ୍ଷାରେ ଥିଲେ । ପୋଲିସ୍ ଯଥାର୍ଥ ଭାବେ ସନ୍ଦେହ କରି ତାହାଙ୍କୁ ଶ୍ରୀମତୀ ଗାନ୍ଧୀଙ୍କ ନିକଟରେ ପହଞ୍ଚିବାର ଠିକ୍ ପୂର୍ବରୁ ଗିରଫ କରିଥିଲେ । ପୁଣି ୧୯୮୦ ମସିହା ଅପ୍ରେଲ ୧୪ ତାରିଖ ଦିନ ପାର୍ଲ୍ୟାମେଣ୍ଟ ଭବନରେ ବରୋଦାର ଜଣେ ବ୍ୟକ୍ତି ତାହାଙ୍କୁ ହତ୍ୟା କରିବାପାଇଁ ତାହାଙ୍କ ଉପରକୁ ଛୁରୀଟିଏ ଫୋପାଡ଼ି ବିଫଳ ଉଦ୍ୟମ କରି ଧରା ପଡ଼ିଥିଲା । ତତ୍ପରବର୍ତ୍ତୀ ଡିସେମ୍ବର ୩୦ ତାରିଖ ଦିନ ଉତ୍ତରପ୍ରଦେଶର ତାନ୍ଦାଠାରେ ଏକ ସାଧାରଣ ସଭାରେ ଭାଷଣ ଦେବାପାଇଁ ଯିବାର ଅବ୍ୟବହିତ ପୂର୍ବରୁ ସେଇ ବିରାଟ ଜନସମୁଦ୍ର ଭିତରୁ ଦେଶୀ ପିସ୍ତଲଧାରୀ ଜଣେ ୨୪ ବୟସ୍କ ଯୁବକକୁ ଗିରଫ କରାଯାଇଥିଲା ସଭାମଞ୍ଚ ନିକଟରୁ । ଆଉ ଥରେ ଜଣେ ବ୍ୟକ୍ତି ତାହାଙ୍କୁ ବନ୍ଧୁକ ଦେଖାଇଥିଲେ ମଧ୍ୟ ଗୁଳି ଫୁଟାଇ ପାରି ନ ଥିଲା ।

ତେବେ ଏହା ଥିଲା ଆତତାୟୀମାନଙ୍କ ପାଇଁ ଅବ୍ୟର୍ଥ ଉଦ୍ୟମ ।

ଆତତାୟୀମାନଙ୍କ ମଧ୍ୟରୁ ସତବନ୍ତ ସିଂହ ଥିଲେ ଦିଲ୍ଲୀ ସଶସ୍ତ୍ର ବାହିନୀର ଜଣେ ପୋଲିସ୍ କନ୍‌ଷ୍ଟେବଲ୍ । ଅଳ୍ପ କେତେ ମାସ ପୂର୍ବରୁ ସେ ପ୍ରଧାନମନ୍ତ୍ରୀଙ୍କ ନିରାପତ୍ତାରକ୍ଷୀ ଭାବରେ ଅବସ୍ଥାପିତ ହୋଇଥିଲେ । ତାଙ୍କର ଘର ପଞ୍ଜାବର ଗୁରୁଦାସପୁର ଜିଲ୍ଲାରେ । ନିଜ ଗ୍ରାମରେ ଦୁଇ ମାସ ଛୁଟି ବିତାଇବା ପରେ ସେ ଉକ୍ତ ନାରକୀୟକାଣ୍ଡ ଘଟାଇବାର ମାତ୍ର ତିନି ଦିନ ପୂର୍ବରୁ ଆସି କାର୍ଯ୍ୟରେ ଯୋଗ ଦେଇଥିଲେ । ନିଜର କାର୍ଯ୍ୟ ସାଧନ କରିବାପାଇଁ ସେ ବୋଧହୁଏ ଥିଲେ ଦୃଢ଼ ସଙ୍କଳ୍ପବଦ୍ଧ । ତେଣୁ ଶ୍ରୀମତୀ ଗାନ୍ଧୀ ଯେତେବେଳେ ତାଙ୍କ ନିକଟରୁ ମାତ୍ର ସାତଫୁଟ ଦୂରରେ ଓ ଭୂତଳଶାୟୀ, ସେତିକିବେଳେ ନିଜର ମାରଣାସ୍ତ୍ରରୁ ତିରିଶ ରାଉଣ୍ଡ ଗୁଳି ଚଳାଇଥିଲେ ।

ଅନ୍ୟ ଜଣେ ଆତତାୟୀ ସବ୍‌ଇନସ୍‌ପେକ୍ଟର-ବେଅନ୍ତ ସିଂହ ମଧ୍ୟ ଥିଲେ ସେହି ପଞ୍ଜାବର ଅଧିବାସୀ । 'ସେ ଦୀର୍ଘ ଦଶ ବର୍ଷ ଧରି ଭାରତର ପ୍ରଧାନମନ୍ତ୍ରୀଙ୍କ ସୁରକ୍ଷା କାର୍ଯ୍ୟରେ ନିଯୁକ୍ତ ଥିଲେ । ଅନେକ ସମୟରେ ଓ ଅନେକ ସ୍ଥାନରେ ଶ୍ରୀମତୀ ଗାନ୍ଧୀ ତାଙ୍କର ଭୂୟସୀ ପ୍ରଶଂସା କରୁଥିଲେ । ଅନେକ ସ୍ତରରେ ପଞ୍ଜାବର ଲୋକ ତଥା ସୈନ୍ୟ ବାହିନୀର କର୍ମଚାରୀମାନଙ୍କ ପ୍ରତି ଅନାସ୍ଥାଭାବ ପ୍ରକାଶ ପାଇବା ପରେ ଶ୍ରୀମତୀ ଗାନ୍ଧୀ ସମସ୍ତଙ୍କୁ ବେଅନ୍ତର ନଜିର ଦେଉଥିଲେ । କିନ୍ତୁ ସେ ହିଁ ପ୍ରଥମେ ଶ୍ରୀମତୀ ଗାନ୍ଧୀଙ୍କ ଉପରକୁ ନିଜ ପିସ୍ତଲ୍‌ରୁ ଗୁଳି ଚଳାଇଥିଲେ ।

ଉଭୟ ଆତତାୟୀ ସେହି ନାରକୀୟ ଘଟଣା ଘଟାଇ ସାରିବା ପରେ ପରେ ନିଜ ନିଜର ଅସ୍ତ୍ର ଫୋପାଡ଼ି ଦେଇଥିଲେ ଓ ହାତଠାରେ ଅନ୍ୟ ପ୍ରତିରକ୍ଷା କର୍ମଚାରୀଙ୍କ ନିକଟରେ ସର୍ବପ୍ରଥମେ ଆତ୍ମସମର୍ପଣ କରିଥିଲେ । ତତ୍‌କ୍ଷଣାତ୍ ସେଠାରେ ସେମାନଙ୍କୁ ଘେରି ଯାଇଥିବା ପ୍ରଧାନମନ୍ତ୍ରୀଙ୍କ କମାଣ୍ଡୋବାହିନୀ ସେମାନଙ୍କୁ ଗାର୍ଡ଼ ରୁମ୍‌କୁ ନେଇ ଯାଇଥିଲେ । ଘଟଣାସ୍ଥଳରେ ଅସ୍ତ୍ର ଫୋପାଡ଼ି ଦେଇଥିବା ଆତତାୟୀମାନେ ପୁଣିଥରେ ସେଠାରେ ଉପସ୍ଥିତ ଥିବା ପ୍ରଧାନମନ୍ତ୍ରୀଙ୍କ ଦେହରକ୍ଷୀ ଅଫିସରମାନଙ୍କ ନିକଟରୁ ଅସ୍ତ୍ରଶସ୍ତ୍ର ଛଡ଼ାଇ ନେବାପାଇଁ ଉଦ୍ୟମ କରିଥିଲେ । ତେଣୁ ସେମାନଙ୍କ ଉପରକୁ ଅନ୍ୟ ନିରାପତ୍ତା ରକ୍ଷୀମାନଙ୍କ ମଧ୍ୟରୁ ପାଞ୍ଚଜଣ ଗୁଳି ଚଳାଇଥିଲେ, ପରିଣାମତଃ ସବ୍‌ଇନସ୍‌ପେକ୍ଟର ବେଅନ୍ତ ସିଂହଙ୍କ ଘଟଣାସ୍ଥଳରେ ମୃତ୍ୟୁ ହୋଇ ଯାଇଥିଲା । ସେହି ଗୁଳିମାଡ଼ ଫଳରେ ଅନ୍ୟ ଆତତାୟୀ ସତବନ୍ତ ସିଂହ ଗୁରୁତର ଭାବେ ଆହତ ହୋଇଥିଲେ ।

ଆହତ ସତବନ୍ତ ସିଂହଙ୍କୁ ଚିକିତ୍ସା ଲାଗି ରାମ ମନୋହର ଲୋହିଆ ହାସ୍‌ପାତାଳକୁ ନିଆଯାଇଥିଲା ଏବଂ ସେଠାରେ ତାଙ୍କ ଦେହରେ ଅସ୍ତ୍ରୋପଚାର କରାଯାଇଥିଲା ।

ଶ୍ରୀମତୀ ଗାନ୍ଧୀଙ୍କ ହତ୍ୟା ଘଟଣା ପରେ ପରେ ତୋଗଲକ୍ ରୋଡ୍ ପୋଲିସ୍ ଷ୍ଟେସନ୍‌ରେ ଏ ସମ୍ପର୍କରେ ଅଭିଯୋଗ ଦାଖଲ କରାଯାଇଥିଲା ।

କେହି କଳ୍ପନା ମଧ୍ୟ କରି ନ ଥିଲେ ଯେ ରକ୍ଷକମାନେ ହିଁ ଦିନେ ଭକ୍ଷକ ସାଜିବେ । ପ୍ରାଥମିକ ଅନୁସନ୍ଧାନରୁ ହିଁ ଜଣାପଡ଼ିଥିଲା ଯେ, ଶ୍ରୀମତୀ ଗାନ୍ଧୀଙ୍କ ହତ୍ୟାପାଇଁ ଏକ ସୁଚିନ୍ତିତ ବିରାଟ ଯୋଜନା କରାଯାଇଥିଲା । ତଦନ୍ତକାରୀ ସଂସ୍ଥାମାନେ ୧୯୮୪ ନଭେମ୍ବର-୩ ତାରିଖ ଦିନ ସତବନ୍ତ ସିଂହଙ୍କୁ ଜେରା କରିବା ପରେ ଜାଣି ପାରିଥିଲେ ଯେ, ସେହି ନାରକୀୟ କାର୍ଯ୍ୟ ସମାପନ କରିବାପାଇଁ ଶେଷ ନିର୍ଦ୍ଦେଶ ଲଣ୍ଡନରୁ ହିଁ ଆସିଥିଲା । ସବ୍‌ଇନସ୍‌ପେକ୍ଟର ବେଅନ୍ତ ସିଂହ ଇନ୍ଦିରା ଗାନ୍ଧୀଙ୍କୁ ହତ୍ୟାକରିବା ପୂର୍ବଦିନ ଲଣ୍ଡନକୁ ଟେଲିଫୋନ୍ କରିଥିଲା ଓ ଶେଷ ନିର୍ଦ୍ଦେଶ ଆଣିଥିଲା ।

ବେଅନ୍ତ ସିଂହର ଯୋଜନା ଅନୁଯାୟୀ ସତବନ୍ତ ପ୍ରଥମେ ଶ୍ରୀମତୀ ଗାନ୍ଧୀଙ୍କ ଉପରକୁ ଗୁଳି ଚଳାଇଥାନ୍ତା ଓ ଇନ୍ଦିରାଜୀଙ୍କୁ ରକ୍ଷା କରିବା ବାହାନାରେ ବେଅନ୍ତ ପ୍ରଥମେ ସତବନ୍ତଙ୍କୁ ଗୁଳି କରିଦିଅନ୍ତା, ପରିଣାମତଃ ବାହାର ପୃଥିବୀ ଜାଣିପାରନ୍ତା ନାହିଁ ସେମାନଙ୍କର ସେଇ ପରିକଳ୍ପନା ।

କିନ୍ତୁ ଯୁବକ ସତବନ୍ତ ତାହା କରିପାରି ନ ଥିଲା ।

ଶ୍ରୀମତୀ ଗାନ୍ଧୀଙ୍କୁ ଅତି ନିକଟରେ ପାଇବା ପରେ ପରେ ତାର ରକ୍ତ ଯେମିତି ଶୀତଳ ହେବାକୁ ଆରମ୍ଭ ହୋଇ ଯାଇଥିଲା । ହାତ ଥରି ଉଠିଥିଲା । ହୃଦୟର ସ୍ପନ୍ଦନ ବୃଦ୍ଧି ପାଇଥିଲା ।

ଅପରପକ୍ଷରେ ବେଅନ୍ତ ସିଂହ ସେସବୁ ଅବସ୍ଥା ଯଥାର୍ଥ ଭାବେ ଲକ୍ଷ୍ୟ କରିସାରିଥିଲା ଏବଂ ଅନୁଭବ କରିଥିଲା ଯେ, ପରମ ନାରକୀୟ କାର୍ଯ୍ୟଲାଗି ମାହେନ୍ଦ୍ର ମୁହୂର୍ତ୍ତ ବିଗତ ହୋଇଯିବାକୁ ବସିଛି । ତେଣୁ ହାତକୁ ଦୃଢ଼ କରିଥିଲା ସେ । ବାଧ୍ୟ ହୋଇ ପ୍ରଥମେ ନିଜ ରିଭଲଭର୍ ଉଠାଇଥିଲା ।

ବାସ୍ ସେତିକି ! ସେତିକିରେ ବରଫଭଳି ତରଳି ଯାଇଥିବା ସତବନ୍ତର ହୃଦୟରେ ଆଗ୍ନେୟ ବିସ୍ଫୋରଣ ଘଟିଥିଲା । ଉନ୍ମତ୍ତ ହୋଇ ଉଠିଥିଲା ସେ । ବେଅନ୍ତ ଗୁଳିରେ ଶ୍ରୀମତୀ ଗାନ୍ଧୀ ଟଳି ପଡ଼ିଥିଲେ ମଧ୍ୟ ତାଙ୍କର ଉପରକୁ ଷ୍ଟେନ୍‌ଗନ୍‌ରୁ ଶେଷ ହେବା ପର୍ଯ୍ୟନ୍ତ ଗୁଳି ଗୁଳିକା କରିଥିଲା ।

ଏବେ ସେମାନେ ଅକାଲ ତାଖତରେ ନେଇଥିବା ଶପଥ ସେଦିନ କାର୍ଯ୍ୟରେ ପରିଣତ କରାଇଥିଲେ ।

## ଅନ୍ତିମ ଦର୍ଶନ ଓ ଶେଷ ଶ୍ରଦ୍ଧାଞ୍ଜଳି :—

ଅକ୍ଟୋବର ୩୧ ତାରିଖ ଦିନ ଶ୍ରୀମତୀ ଗାନ୍ଧୀଙ୍କ ମୃତ ଦେହକୁ ସାରାଦିନ ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ୍ ସାଇନ୍‌ସରେ ରଖାଯାଇଥିଲା । ସେଦିନ ରାତି ସାଢ଼େ ନଅଟା ବେଳେ ଭାରତୀୟ ସେନା ବାହିନୀର ଏକ କମାଣ୍ଡବାହୀ ଗାଡ଼ିରେ ଭାରତୀୟ ଜାତୀୟ ପତାକା ଆବୃତ ଶ୍ରୀମତୀ ଗାନ୍ଧୀଙ୍କ ମର ଶରୀରକୁ ନିଆଯାଇ ପ୍ରଧାନମନ୍ତ୍ରୀଙ୍କ ୧, ସଫଦରଜଙ୍ଗ ବାସଭବନରେ ରଖାଯାଇଥିଲା । ନଭେମ୍ବର ୧ ତାରିଖ ଗୁରୁବାର ସକାଳ ୭-୫୦ ମିନିଟରେ ଶୋକାକୁଳ ଜନତାଙ୍କ ଶେଷ ଦର୍ଶନ ନିମନ୍ତେ ତାହାଙ୍କୁ ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ତ୍ରିମୂର୍ତ୍ତି ଭବନଠାରେ ରଖାଯାଇଥିଲା । ତ୍ରିମୂର୍ତ୍ତି ଭବନ ପଣ୍ଡିତ ନେହେରୁଙ୍କ ସମୟରେ ପ୍ରଧାନମନ୍ତ୍ରୀଙ୍କ ବାସଭବନ ରୂପେ ବ୍ୟବହୃତ ହେଉଥିଲା । ସେହିଠାରେ ପଣ୍ଡିତଜୀ ମୃତ୍ୟୁବରଣ କରିଥିଲେ । ସେଠାରେ ଦୁଇଦିନ ମଧ୍ୟରେ କେବଳ ଦେଶର ନୁହେଁ, ବିଦେଶାଗତ

ଦର୍ଶନାଭିଳାଷୀମାନେ ମଧ୍ୟ ଅଶ୍ରୁପୂର୍ଣ୍ଣ ନୟନରେ ଶେଷ ଦର୍ଶନ କରିଥିଲେ ଶ୍ରୀମତୀ ଗାନ୍ଧୀଙ୍କ ମର ଶରୀରକୁ ।

ନଭେମ୍ବର ପହିଲା ତାରିଖ ଦିନ ପୂର୍ବାହ୍ଣରେ ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ, ଉପରାଷ୍ଟ୍ରପତି ଶ୍ରୀ ଭେଙ୍କଟ ରମଣ, ସୁପ୍ରିମ୍‌କୋର୍ଟର ମୁଖ୍ୟ ବିଚାରପତିଙ୍କ ସମେତ ୧୭ ଜଣ ବିଚାରପତି ଶ୍ରୀମତୀ ଗାନ୍ଧୀଙ୍କ ଶବାଧାର ଉପରେ ପୁଷ୍ପମାଲ୍ୟ ଅର୍ପଣ କରିଥିଲେ । ଜନତାଦଳ ସଭାପତି ଶ୍ରୀ ଚନ୍ଦ୍ରଶେଖର, ଡି. ଏମ୍. କେ. ପି. ନେତା ଶ୍ରୀ ଚରଣ ସିଂହ, ରାଷ୍ଟ୍ରୀୟ ଜନତାଦଳ ସଭାପତି ଶ୍ରୀ ରାଜନାରାୟଣ, ଜନବାଦୀଦଳ ସଭାପତି ଶ୍ରୀ ଚନ୍ଦ୍ରଜିତ୍ ଯାଦବ, କଂଗ୍ରେସ (ଏସ୍) ନେତା ସି. ଉନ୍ନିକୃଷ୍ଣନ୍, ଡି. ଏମ୍. କେ. ପି. ନେତା ଶ୍ରୀ ବହୁଗୁଣା, କମ୍ୟୁନିଷ୍ଟଦଳ ସମ୍ପାଦକ ଶ୍ରୀ ରାଜେଶ୍ୱର ରାଓ ପ୍ରମୁଖମାନେ ପୁଷ୍ପମାଲ୍ୟ ଅର୍ପଣ କରି ଶ୍ରୀମତୀ ଗାନ୍ଧୀଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳୀ ଜଣାଇଥିଲେ । ଅନ୍ୟମାନଙ୍କ ମଧ୍ୟରେ କେତେକ ରାଜ୍ୟର ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ତଥା କେନ୍ଦ୍ର ଓ ରାଜ୍ୟ ମନ୍ତ୍ରିମଣ୍ଡଳର ସଭ୍ୟମାନେ ଅଶ୍ରୁପୂର୍ଣ୍ଣ ତଥା ବାକ୍‌ସ୍ପନ୍ଦନହୀନ ହୋଇ ସେମାନଙ୍କ ଶ୍ରଦ୍ଧାଞ୍ଜଳି ଜଣାଇଥିଲେ ।

ଦୀର୍ଘ ୧୭ ବର୍ଷ ଧରି ଦେଶକୁ ନେତୃତ୍ୱ ଓ ଦିଗ୍‌ଦର୍ଶନ ଦେବା ସଙ୍ଗେ ସଙ୍ଗେ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଥିବା ଶ୍ରୀମତୀ ଗାନ୍ଧୀଙ୍କୁ ଶେଷ ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ ଦିଲ୍ଲୀ ନଗରୀ ଭରପୂର ହୋଇ ଉଠିଥିଲା । ଦେଶର ସବୁ ଅଞ୍ଚଳରୁ ଲୋକେ ସମବେତ ହୋଇଥିଲେ, ବିଦେଶରୁ ଆସିଥିଲେ ମଧ୍ୟ ବହୁ ଦେଶର ପ୍ରତିନିଧି, ରାଷ୍ଟ୍ରମୁଖ୍ୟ ତଥା ଜନନେତାଗଣ । ସେଠାରେ ଦୁଇଦିନ ମଧ୍ୟରେ ପ୍ରିୟ ନେତାଙ୍କ ଶେଷ ଦର୍ଶନ ଓ ଶ୍ରଦ୍ଧାଞ୍ଜଳି ଜଣାଇଥିଲେ ପ୍ରାୟ ୩୦ ଲକ୍ଷ ନରନାରୀ ।

ଶ୍ରୀମତୀ ଗାନ୍ଧୀଙ୍କ ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗ ଦେବାପାଇଁ ଆସିଥିବା ୧୦୪ଟି ଦେଶର ପ୍ରତିନିଧିମାନଙ୍କ ମଧ୍ୟରେ ଥିଲେ ୧୪ଟି ଦେଶର ରାଷ୍ଟ୍ରପତି, ଗୋଟିଏ ଦେଶର ଗଭର୍ଣ୍ଣର ଜେନେରାଲ, ଗୋଟିଏ ଦେଶର ରାଜା, ୨ଟି ଦେଶର ଯୁବରାଜ, ୭ଟି ଦେଶର ଉପରାଷ୍ଟ୍ରପତି, ୨୫ଟି ଦେଶର ପ୍ରଧାନମନ୍ତ୍ରୀ, ୭ଟି ଦେଶର ଉପପ୍ରଧାନମନ୍ତ୍ରୀଙ୍କ ସମେତ ଫିଲିପାଇନ୍‌ସର ଇମେଲଡା ମାର୍କସ୍, ପାଲେଷ୍ଟାଇନ୍ ମୁକ୍ତି ସଂଗଠନର ଚେୟାର୍‌ମ୍ୟାନ୍ ୟାସେର୍ ଆରାଫତ୍, ଜାତିସଂଘର ସେକ୍ରେଟାରୀ ଜେନେରାଲ ଶ୍ରୀ କୁଏଲ୍ଲାର, ଯୁଗୋସ୍ଲାଭିଆ ପ୍ରଧାନ ଶ୍ରୀ ସିଦ୍ଧାର୍ଥ ରାମଫାଲ୍, ସୀମାନ୍ତ ଗାନ୍ଧୀଙ୍କ ପୁତ୍ର ଖାଁ ଅବଦୁଲ୍ ୱାଲି ଖାଁ, ବଙ୍ଗଳାଦେଶ ଆୱାମୀଲିଗ୍ ସଭାନେତ୍ରୀ ଶ୍ରୀମତୀ ହାସିନା ୱାଜେଦ୍, ଶ୍ରୀଲଙ୍କାର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଶିରିମାଭୋ ବନ୍ଦର ନାୟକ ପ୍ରମୁଖ ପୃଥିବୀର ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତି ।

ଶ୍ରୀମତୀ ଗାନ୍ଧୀଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବା ଲାଗି ଜାତିସଂଘ ସାଧାରଣ ପରିଷଦର ଏକ ସ୍ୱତନ୍ତ୍ର ଅଧିବେଶନ ଅକ୍ଟୋବର ୩୧ ତାରିଖ ଦିନ

ଅନୁଷ୍ଠିତ ହୋଇଥିଲା । ସେଠାରେ ତାଙ୍କ ଆତ୍ମାର ମୁକ୍ତିପାଇଁ ଏକ ମିନଟ୍ ନୀରବ ପ୍ରାର୍ଥନା କରାଯାଇଥିଲା । ଉକ୍ତ ବୈଠକରେ ବିଶ୍ୱର ସମସ୍ତ ରାଷ୍ଟ୍ରର ପ୍ରତିନିଧି ଯୋଗ ଦେଇଥିଲେ ଏବଂ ସେହି ବର୍ବର ହତ୍ୟାକାଣ୍ଡର ତୀବ୍ର ନିନ୍ଦା କରିଥିଲେ । ବୈଠକରେ ବିଶ୍ୱଶାନ୍ତି ଓ ସଦ୍‌ଭାବ ପ୍ରତିଷ୍ଠା କ୍ଷେତ୍ରରେ ଶ୍ରୀମତୀ ଗାନ୍ଧୀଙ୍କ ଅବଦାନର ଭୂୟସୀ ପ୍ରଶଂସା କରାଯାଇ ସେ ବିଶ୍ୱର ଜଣେ ମହାନ୍ ନେତା ଥିଲେ ବୋଲି ମତପ୍ରକାଶ ପାଇଥିଲା ।

ସୋଭିଏତ୍ ଜନସାଧାରଣଙ୍କ ମନରେ ଶ୍ରୀମତୀ ଗାନ୍ଧୀ ଚିରସ୍ମରଣୀୟ ହୋଇ ରହିଥିବେ ବୋଲି ଉଲ୍ଲେଖ କରି ଋଷ ରାଷ୍ଟ୍ରପତି ଚେର୍‌ନେଙ୍କୋ ରାଷ୍ଟ୍ରପକ୍ଷରୁ ଶ୍ରଦ୍ଧାଞ୍ଜଳି ଜଣାଇ ଶ୍ରୀ ରାଜୀବ ଗାନ୍ଧୀଙ୍କ ନିକଟକୁ ଏକ ତାରବାର୍ତ୍ତା ପଠାଇଥିଲେ । ସେଥିରେ ସେ ଉଲ୍ଲେଖ କରିଥିଲେ ଯେ, ଋଷ ଓ ଭାରତ ମଧ୍ୟରେ ବନ୍ଧୁତାକୁ ଦୃଢ଼ କରାଇବା ଓ ପାରସ୍ପରିକ ସହଯୋଗ ବୃଦ୍ଧି କରାଇବା ଦିଗରେ ଶ୍ରୀମତୀ ଗାନ୍ଧୀଙ୍କ ଅବଦାନ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ । ସେ ମଧ୍ୟ ସେଥିରେ ଉଲ୍ଲେଖ କରିଥିଲେ ଯେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଆନ୍ତର୍ଜାତିକ ମର୍ଯ୍ୟାଦା ଓ ଏକତାକୁ ଦୃଢ଼ କରିବା ଦିଗରେ ଶ୍ରୀମତୀ ଗାନ୍ଧୀ ବିଶେଷ ପଦକ୍ଷେପମାନ ଗ୍ରହଣ କରିଥିଲେ । ସୁପ୍ରିମ୍ ସୋଭିଏତ୍‌ର ପ୍ରେସିଡ୍ରିୟମ୍ ଓ ମନ୍ତ୍ରୀ ପରିଷଦ ମଧ୍ୟ ସ୍ୱତନ୍ତ୍ର ଶୋକବାର୍ତ୍ତା ରାଷ୍ଟ୍ରପତିଙ୍କ ନିକଟକୁ ପଠାଇଥିଲେ । ଭାରତର ସେହି ଦୁଃସମ୍ବାଦ ମସ୍କୋ ରେଡ଼ିଓରୁ ବାରମ୍ବାର ପ୍ରଚାର କରାଯାଇଥିଲା । ସେ ସମ୍ବାଦରେ ସମଗ୍ର ଋଷରେ ଶୋକର ଛାୟା ବିଚ୍ଛୁରିତ ହୋଇ ଯାଇଥିଲା । ସେହି ମର୍ମାନ୍ତିକ ଖବର ଶୁଣିବାପାଇଁ ଜନସାଧାରଣ ସାରାଦିନ ରେଡ଼ିଓ ଖୋଲିରଖି ଉତ୍କଣ୍ଠିତ ଭାବେ ହତ୍ୟା ଉଦ୍ୟମ ଓ ମୃତ୍ୟୁ ଘଟଣାର ବିବରଣୀ ଶୁଣୁଥିଲେ । ଋଷର ବହୁ ପ୍ରସାରିତ ସମ୍ବାଦପତ୍ର 'ପ୍ରଭଦା'ରେ ସେ ସମ୍ବାଦ ଗୁରୁତ୍ୱପୂର୍ଣ୍ଣ ଭାବରେ ପ୍ରଚାର କରାଯାଇଥିଲା ।

ପାକିସ୍ଥାନର ରାଷ୍ଟ୍ରପତି ଶ୍ରୀ ଜିଆଉଲ୍ ହକ୍ ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁ ପାଇଁ ନିଜର ଦୁଃଖ ଟେଲିଫୋନ୍ ଯୋଗେ ଶ୍ରୀ ରାଜୀବ ଗାନ୍ଧୀଙ୍କୁ ଜଣାଇ ଦେଇଥିଲେ । ସେଇ ଅବସରରେ ଉଭୟ ଦେଶ ମଧ୍ୟରେ ଉଭୟେରର ଉନ୍ନତି ଘଟିବା ଆଶା ମଧ୍ୟ ପୋଷଣ କରିଥିଲେ ।

ଭାରତର ଯେ ଦୁଃସମ୍ବାଦ ବିଦେଶର ସମ୍ବାଦପତ୍ରମାନଙ୍କରେ ବହୁଳ ଭାବରେ ପ୍ରଚାରିତ ଓ ପ୍ରସାରିତ ହୋଇଥିଲା । ବ୍ରିଟେନ୍‌ର "ଗାର୍ଡିଆନ୍" ତାର ସମ୍ପାଦକୀୟରେ ମତବ୍ୟକ୍ତ କରିଥିଲା ଶ୍ରୀମତୀ ଗାନ୍ଧୀ ଭାରତର ପ୍ରଧାନମନ୍ତ୍ରୀ ହିସାବରେ ଯେତିକି ପରିଚିତ ଥିଲେ ତଦପେକ୍ଷା ଅଧିକ ଜନପ୍ରିୟ ଥିଲେ ନିଜର ବଳିଷ୍ଠ ବ୍ୟକ୍ତିତ୍ୱ ପାଇଁ । "ଫାଇନାନ୍‌ସିଆଲ୍ ଟାଇମ୍"—ବିଶ୍ୱ ଜଣେ ଅଦ୍ୱିତୀୟ ନେତାଙ୍କୁ ହରାଇ

ଥିବା ପ୍ରକାଶ କରିଥିଲା ତାର ସମ୍ପାଦକୀୟରେ । "ଟାଇମ୍" ଏକ ପୃଷ୍ଠାବ୍ୟାପୀ ଶ୍ରଦ୍ଧାଞ୍ଜଳି ପ୍ରକାଶ କରି ମତ ଦେଇଥିଲା ଯେ ଶ୍ରୀମତୀ ଗାନ୍ଧୀଙ୍କ ଅକାଳ ମୃତ୍ୟୁ ପୁଣି ଥରେ ଭାରତରେ ୧୯୪୮ ମସିହାରେ ଗାନ୍ଧିଜୀଙ୍କ ମୃତ୍ୟୁକାଳୀନ ଅବସ୍ଥା ସୃଷ୍ଟି କରିଥିଲା ।

ଆମେରିକା ରାଷ୍ଟ୍ରପତି ରୋନାଲ୍ଡ ରେଗାନ୍ ସେହି ଘଟଣାରେ ଗଭୀର ଶୋକ ପ୍ରକାଶ କରି ଏକ ବାର୍ତ୍ତାରେ ପ୍ରକାଶ କରିଥିଲେ ଯେ, ଶ୍ରୀମତୀ ଗାନ୍ଧୀଙ୍କ ନାରକୀୟ ହତ୍ୟା ଘଟଣାରୁ ସ୍ପଷ୍ଟ ହୋଇଯାଏ—ସବୁଦେଶର ନେତାମାନେ ସେଇ ଏକା ସମସ୍ୟାର ସମ୍ମୁଖୀନ । ସେ ମଧ୍ୟ ପ୍ରକାଶ କରିଥିଲେ ଯେ, ସେ ନିକଟ ଅତୀତରେ ଶ୍ରୀମତୀ ଗାନ୍ଧୀଙ୍କ ସହ ଆତଙ୍କବାଦୀ କାର୍ଯ୍ୟକଳାପ ସମ୍ପର୍କରେ କେତେକ ବିଶେଷ ଆଲୋଚନା କରିଥିଲେ ।

ଫ୍ରାନ୍ସ ରାଷ୍ଟ୍ରପତି ଫ୍ରାଙ୍କୋଇସ୍ ମିତେରାଁ ମତ ଦେଇଥିଲେ "ମାନବିକ ଅଧିକାରର ଜଣେ ମହାନ୍ ପ୍ରବକ୍ତା" ଥିଲେ ଶ୍ରୀମତୀ ଗାନ୍ଧୀ । ଇସ୍ରାଏଲ୍ ସରକାରଙ୍କ ପାଇଁ ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁ ଥିଲା "ବିଶ୍ୱ ଆତଙ୍କବାଦର ପ୍ରତ୍ୟକ୍ଷ ପରିଣତି ।" ବ୍ରାଜିଲ୍‌ର ରାଷ୍ଟ୍ରପତି ଗଭୀର ଶୋକ ପ୍ରକାଶ କରି ରାଷ୍ଟ୍ରରେ ତିନି ଦିନ ଶୋକ ପାଳନ କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ । ପୂର୍ବ ଜର୍ମାନୀର ରାଷ୍ଟ୍ରପତି ଏରିକ୍ ହୋନେକର ସେହି ଦୁର୍ଘଟଣାକୁ "ଏକ ନାରକୀୟ ହତ୍ୟାକାଣ୍ଡ" ବୋଲି ବର୍ଣ୍ଣନା କରିଥିଲେ ।

ଇଟାଲି, ଫିନ୍‌ଲ୍ୟାଣ୍ଡ, ଫିଜି ଫାଇନ୍‌ସ ତଥା ପୃଥିବୀର ଅନ୍ୟାନ୍ୟ ଅନେକ ରାଷ୍ଟ୍ରର ରାଷ୍ଟ୍ରପତିବୃନ୍ଦ ଏବଂ ନରୱେ, ଆୟାର୍‌ଲ୍ୟାଣ୍ଡ, ଅଷ୍ଟ୍ରେଲିଆ, ବ୍ରିଟେନ୍ ପ୍ରଭୃତି ଦେଶର ପ୍ରଧାନମନ୍ତ୍ରୀମାନେ ସେହି ଦୁର୍ଘଟଣାରେ ନିଜ ନିଜର ମର୍ମାନ୍ତିକ ବେଦନା ପ୍ରକାଶ କରି ବିଶ୍ୱ ରାଜନୀତିରେ ଶ୍ରୀମତୀ ଗାନ୍ଧୀଙ୍କ ଭୂମିକାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଉକ୍ତ ନାରକୀୟ ହତ୍ୟାକାଣ୍ଡର ନିନ୍ଦା କରିଥିଲେ । ଅନେକ ରାଷ୍ଟ୍ରରେ ସେଥିପାଇଁ ଶୋକ ପାଳନ କରାଯାଇଥିଲା ଓ ରାଷ୍ଟ୍ରୀୟ ପତାକାଗୁଡ଼ିକୁ ଅର୍ଦ୍ଧନମିତ କରି ଦିଆଯାଇଥିଲା ।

କର୍ତ୍ତବ୍ୟରତ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ଆକସ୍ମିକ ମୃତ୍ୟୁ ଯୋଗୁଁ ଦେଶରେ ୧୨ ଦିନ ପାଇଁ ଜାତୀୟ ଶୋକ ପାଳନ କରାଯାଇଥିଲା । ସେଥିପାଇଁ ସବୁ ସରକାରୀ କୋଠାବାଡ଼ିରେ ଜାତୀୟ ପତାକା ଅର୍ଦ୍ଧନମିତ କରି ରଖା ଯାଇଥିଲା । ନଭେମ୍ବର ପହିଲି ଦିନ ସବୁ କେନ୍ଦ୍ର ସରକାରୀ କାର୍ଯ୍ୟାଳୟ ବନ୍ଦ ରହିଥିଲା । ଉକ୍ତ ଦିନ ଅନେକ ରାଜ୍ୟ ସରକାର ମଧ୍ୟ ଛୁଟି ଘୋଷଣା କରିଥିଲେ ।

ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁ ଖବର ପ୍ରସାରିତ ହେବାମାତ୍ରେ ଏକା ସମୟରେ ସମଗ୍ର ଦେଶରେ ତାର ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ଗୋଟିଏ ସମ୍ପ୍ରଦାୟ

ବିରୁଦ୍ଧରେ ସାମୟିକ ଭାବେ ହେଲେ ମଧ୍ୟ ଦେଶର ସବୁ ଶ୍ରେଣୀର ଜନତା ବିଦ୍ରୋହ କରି ଉଠିଥିଲେ । ତାହାହିଁ ପ୍ରମାଣ କରି ଦେଇଥିଲା ଯେ ଶ୍ରୀମତୀ ଗାନ୍ଧୀ ଜନ-ସାଧାରଣଙ୍କ ନିକଟରେ ଅତି ମାତ୍ରାରେ ଜନପ୍ରିୟ ଥିଲେ । ଅବଶ୍ୟ ଖୁବ୍ କମ୍ ସମୟ ମଧ୍ୟରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ସେ ଉନ୍ମତ୍ତତା ଓ ଭାବପ୍ରବଣ-ପାଗଳାମିକୁ ଆୟତ୍ତାଧୀନ କରିବା ଲାଗି ସମର୍ଥ ହୋଇଥିଲେ । ଏହା ମଧ୍ୟ ପ୍ରମାଣ କରି ଦେଇଥିଲା ନୂତନ ପ୍ରଧାନମନ୍ତ୍ରୀଙ୍କ ରାଜନୈତିକ ବିଚକ୍ଷଣତା ଓ ପ୍ରଶାସନିକ ଦକ୍ଷତା । ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁଜନିତ ବେଦନାରେ ଅଧୀର ହୋଇ ଦେଶର ସବୁ ପ୍ରାନ୍ତରୁ ଅନେକ ଲୋକ ଆତ୍ମାହୁତି ଦେଇଥିଲେ । ଜନଗଣଙ୍କ ହୃଦୟରେ ଶ୍ରୀମତୀ ଗାନ୍ଧୀଙ୍କ ସ୍ଥାନ ନିରୂପଣ ପାଇଁ ଏହା ନିଶ୍ଚୟ ପ୍ରଣିଧାନ ଯୋଗ୍ୟ ।

**ଶାନ୍ତିବନକୁ ଯାତ୍ରା :—**

ନଭେମ୍ବର ୩ ତାରିଖ, ଶନିବାର, ୧୯୮୪ ମସିହା ।

ଶୋକାଭିଭୂତ ଲକ୍ଷ ଲକ୍ଷ ଜନତାର ଶୋକୋଚ୍ଛ୍ୱାସ ଭିତରେ ଶ୍ରୀମତୀ ଗାନ୍ଧୀଙ୍କ ମର ଶରୀରକୁ ପୂର୍ଣ୍ଣ ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ତ୍ରିମୂର୍ତ୍ତି ଭବନରୁ ଶାନ୍ତି ବନକୁ ନିଆଯାଇଥିଲା । ସେଦିନ ସତେ ଯେମିତି କେବଳ ଦିଲ୍ଲୀ ନୁହେଁ, ସମଗ୍ର ଦେଶ ଏକ ଶୋକ ସାଗରରେ ପରିଣତ ହୋଇ ଯାଇଥିଲା । ମଧ୍ୟାହ୍ନ ସାଢ଼େ ବାରଟା ବେଳେ ଅନ୍ତିମ ଯାତ୍ରା ଆରମ୍ଭ ହେବା ପୂର୍ବରୁ ବୈଦିକ ହିନ୍ଦୁ ରୀତିରେ ତାଙ୍କର ପୁଅ ରାଜୀବ ସଙ୍କଳ୍ପ କରିଥିଲେ ।

ଭାରତୀୟ ସୈନ୍ୟ ବିଭାଗର ଗୋଟିଏ କମାଣବାହୀ ଗାଡ଼ିରେ ଶ୍ରୀମତୀ ଗାନ୍ଧୀଙ୍କ ମୃତ ଦେହକୁ ସ୍ଥାପନ କରାଯାଇ ଫୁଲହାର ସଜାଇ ଦିଆ ଯାଇଥିଲା । ମଧ୍ୟାହ୍ନ ସାଢ଼େ ବାରଟାବେଳେ ଶବାଧାରବାହୀ ଗାଡ଼ିଟି ତ୍ରିମୂର୍ତ୍ତି ଭବନ ଛାଡ଼ିଥିଲା ଶାନ୍ତିବନ ଉଦ୍ଦେଶ୍ୟରେ । ସ୍ମରଣ କରାଯାଇପାରେ, କୋଡ଼ିଏ ବର୍ଷ ତଳେ ତାଙ୍କ ପିତା ପଣ୍ଡିତ ନେହେରୁଙ୍କ ଶବ ଶୋଭାଯାତ୍ରା ମଧ୍ୟ ଠିକ୍ ସେହି ସ୍ଥାନରୁ ବାହାରି ଶାନ୍ତିବନକୁ ଯାଇଥିଲା ।

ଶାନ୍ତିବନଠାରେ ଜବାହାରଲାଲଙ୍କ ସମାଧି ନିକଟରେ ଶ୍ରୀମତୀ ଗାନ୍ଧୀଙ୍କ ଶେଷକୃତ୍ୟ ପାଇଁ ଏକ ମଣ୍ଡପ ନିର୍ମାଣ କରାଯାଇଥିଲା । ଏହା ମଧ୍ୟ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ସମାଧିପୀଠଠାରୁ ପ୍ରାୟ ଷାଠିଏ ମିଟର ଦୂରରେ । ଶାନ୍ତିବନ ତଥା ରାଜଘାଟ ମଧ୍ୟରେ ଯାଇଥିବା ରାସ୍ତାଠାରୁ ପ୍ରାୟ ଦୁଇଶହ ମିଟର ଦୂରରେ ନିର୍ମିତ ଏହି ବେଦୀଟିର ଉଚ୍ଚତା ଥିଲା ପ୍ରାୟ ସାଢ଼େ ଦୁଇ ମିଟର ।

ଶ୍ରୀମତୀ ଗାନ୍ଧୀଙ୍କ ମର ଶରୀର ଉପରେ ଜାତୀୟ ପତାକା ଘୋଡ଼ାଇ ଦିଆ ଯାଇଥିଲା ଓ ଗୋଟିଏ କମାଣ ଗାଡ଼ିରେ ସମସ୍ତଙ୍କ ଦୃଷ୍ଟିଗୋଚର ହୋଇ ପାରିବା

ଭଳି ଶବାଧାର ସ୍ଥାପିତ ହୋଇଥିଲା । ପୁଷ୍ପଗୁଚ୍ଛ, ପୁଷ୍ପମାଲ୍ୟ ଓ ଗୋଲାପ ପାଖୁଡ଼ାରେ ସମଗ୍ର ଶବାଧାର ଆଚ୍ଛାଦନ ହୋଇ ପଡ଼ିଥିଲା । ତ୍ରିମୂର୍ତ୍ତି ଭବନରୁ ଶବ ଶୋଭା-ଯାତ୍ରା ବାହାରି ବାର କିଲୋମିଟର ପଥ ଅତିକ୍ରମ କରିବାପାଇଁ ଦୀର୍ଘ ଛଅଘଣ୍ଟା ଲାଗିଥିଲା । ରାଜୀବ ମାର୍ଗ, ଡ୍ୟୁପେକ୍ସ ରୋଡ ଓ କିଷ୍ଣ ମେନନ୍ ମାର୍ଗ ଦେଇ ଶୋକଯାତ୍ରା ବିଜୟ ଚୌକ ଅତିକ୍ରମ କରି ଜାତୀୟ ରାଜପଥକୁ ଯାଇଥିଲା । ସେଠାରୁ ତାହା ପ୍ରିନ୍ସେସ୍ ପାର୍କ, ତିଲକ ମାର୍ଗ, ବାହାଦୁର ସାହା ଜାଫେର ମାର୍ଗ ଦେଇ ଦିଲ୍ଲୀ ଗେଟ୍ ନିକଟରେ ପହଞ୍ଚିଥିଲା । ସେଠାରୁ ରିଙ୍ଗ୍ ରୋଡ୍ ଦେଇ ଶବ ଶୋଭାଯାତ୍ରା ଶାନ୍ତିବନଠାରେ ପ୍ରାୟ ଅପରାହ୍ନ ୩ଟା ୧୯ ମିନିଟରେ ପହଞ୍ଚିଥିଲା । ସମଗ୍ର ରାସ୍ତାର ଉଭୟ ପାର୍ଶ୍ୱରେ କ୍ରମାଗତ ଭାବେ ଲାଗି ରହିଥିଲା ଶୋକାପ୍ଳୁତ ଜନତାର ଜୁଆର ଏବଂ ପ୍ରାୟ ପ୍ରତ୍ୟେକ ସ୍ଥାନରୁ ଭାସି ଆସୁଥିଲା ଆକୁଳ କ୍ରନ୍ଦନର ରୋଳ ।

ଶବ ଶୋଭାଯାତ୍ରା ବେଳେ ରାସ୍ତାର ଉଭୟ ପାର୍ଶ୍ୱରେ ପ୍ରାୟ ପ୍ରତ୍ୟୁଷରୁ କେବଳ ଶେଷ ଦର୍ଶନ ପାଇଁ ଅପେକ୍ଷାରତ ଲକ୍ଷ ଲକ୍ଷ ଆବାଳ ବୃଦ୍ଧବନିତା ଶ୍ରୀମତୀ ଗାନ୍ଧୀଙ୍କ ଶବାଧାର ଉପରକୁ ପୁଷ୍ପାଞ୍ଜଳି ଦେଇ ଶେଷ ଶ୍ରଦ୍ଧା ଜଣାଇବା ସଙ୍ଗେ ସଙ୍ଗେ "ଇନ୍ଦିରା ଗାନ୍ଧୀ ଅମର ରହେ", "ଜବତକ୍ ସୁରଜ୍ ଚାନ୍ଦ୍ ରହେଗା – ଇନ୍ଦିରାଜୀ ତେରା ନାମ୍ ରହେଗା", "ଇନ୍ଦିରାଗାନ୍ଧୀ ଜିନ୍ଦାବାଦ୍" ପ୍ରଭୃତି ଧ୍ୱନିରେ ଗଗନ ପବନ ପ୍ରକମ୍ପିତ କରି ପକାଉଥିଲେ । ଶବାଧାର ଦୃଷ୍ଟିଗୋଚର ହେବା ମାତ୍ରେ ଦର୍ଶନକାରୀଙ୍କ ମଧ୍ୟରୁ ଅନେକେ ନିଜ ନିଜର ଅଶ୍ରୁ ସମ୍ବରଣ କରିପାରୁ ନ ଥିଲେ । ବିଶେଷ କରି ଉପସ୍ଥିତ ମହିଳାମାନେ ହୋ···ହୋ··· ହୋଇ କାନ୍ଦୁ-ଥିବାର ଦୃଶ୍ୟ ସମଗ୍ର ପରିବେଶକୁ ଅଧିକ ଉଦ୍‌ବେଳିତ କରି ପକାଉଥିଲା । କେବଳ ସେମାନେ ନୁହନ୍ତି; ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ, ଉପରାଷ୍ଟ୍ରପତି ଶ୍ରୀ ଭେଙ୍କଟ ରମଣ, ବଲରାମ ଝାକର, ପ୍ରଣବ ମୁଖାର୍ଜୀ, ବୁଟାସିଂ, ନରସିଂହ ରାଓ ଓ ପ୍ରମୁଖ ପ୍ରବୀଣ ନେତୃବୃନ୍ଦଙ୍କ ଆଖିରେ ବାରମ୍ବାର ସୃଷ୍ଟି ହେଉଥିଲା ଲୋତକର ବନ୍ୟା ।

ଶ୍ରୀ ରାଜୀବ ଗାନ୍ଧୀଙ୍କ ସମେତ ତିନି ସଶସ୍ତ୍ର ବାହିନୀର ମୁଖ୍ୟ ତିନିଜଣ ଥିଲେ ଶବବାହକ । ଶୋକଯାତ୍ରା ପରିଚାଳନା କରିଥିଲେ ଦିଲ୍ଲୀର ଜି. ଓ. ସି. ମେଜର ଜେନେରାଲ୍ ଜେ. ଏସ୍. ଜାମୱାଲ୍ । ସତଶଜଣ ବିଗୁଲ୍ ବାଦକଙ୍କ ସମେତ ୧୭୫ ଜଣ ସୈନିକ ଶବାଧାରକୁ ଘେରି ଚାଲିଥିଲେ । ଶବାଧାର ଥିବା କମାଣଗାଡ଼ି ପଛରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ କାର୍‌ରେ ତାଙ୍କ ପରିବାରର ସଦସ୍ୟମାନେ ଯାଉଥିଲେ । ତାଙ୍କ ପଛରେ ବିଦେଶୀ ନେତୃବୃନ୍ଦଙ୍କୁ ନେଇ କାର୍‌ଗୁଡ଼ିକ ଗୋଟି ଗୋଟି ହୋଇ ଧୀର ମନ୍ଥର ଗତିରେ ଚାଲିଥିଲା । ମଝିରେ ମଝିରେ ସେନାବାହିନୀର

ହେଲିକେପ୍ଟରସବୁ ଆକାଶମାର୍ଗରେ ଘୂରି ବୁଲୁଥିଲା । ସେଦିନ ରାଜଧାନୀରେ କଡ଼ା ନିରାପତ୍ତା ବ୍ୟବସ୍ଥା ଗ୍ରହଣ କରାଯାଇଥିଲା ।

ଅନ୍ତ୍ୟେଷ୍ଟି କ୍ରିୟାରେ ଦେଶର ପ୍ରମୁଖ ନେତୃବୃନ୍ଦ ଯୋଗ ଦେଇଥିଲେ । ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ ବିଦେଶରୁ ଫେରି ଆସିବା ପରମୁହୂର୍ତ୍ତରୁ ହିଁ ପ୍ରତ୍ୟେକ କାର୍ଯ୍ୟସହ ଓତଃପ୍ରୋତ ଭାବେ ସଶ୍ଳିଷ୍ଟ ରହି ଆସିଥିଲେ ଶ୍ରୀମତୀ ଗାନ୍ଧୀଙ୍କ ମରଶରୀର କେତେ ମୁଠା ପାଉଁଶରେ ପରିଣତ ହେବା ପର୍ଯ୍ୟନ୍ତ । ତାଙ୍କ ସହ ପୂର୍ଣ୍ଣ ପ୍ରାଣରେ ସହଯୋଗ କରୁଥିଲେ ଉପରାଷ୍ଟ୍ରପତି, ଲୋକସଭା ବାଚସ୍ପତି, କେନ୍ଦ୍ର ମନ୍ତ୍ରିମଣ୍ଡଳର ସଦସ୍ୟମାନେ, ବିଭିନ୍ନ ପ୍ରଦେଶର ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ସେନାବାହିନୀର ଅଧକ୍ଷଗଣ ତଥା ଦେଶର ବହୁ ପ୍ରମୁଖ ନେତୃବୃନ୍ଦ । ଅନେକ ସମୟରେ ସେମାନେ ସେମାନଙ୍କର ଅଶ୍ରୁ ସମ୍ବରଣ କରିପାରୁ ନ ଥିଲେ । ବିଶେଷକରି ବିଦେଶାଗତ ଅତିଥିମାନଙ୍କ ଆଖିର ଲୁହ କୌଣସି ବନ୍ଧ ମାନୁ ନ ଥିଲା ।

ଅନ୍ୟମାନଙ୍କ ମଧ୍ୟରେ ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗ ଦେଇଥିଲେ ଶ୍ରୀମତୀ ଗାନ୍ଧୀଙ୍କ ପିଉସୀ ଶ୍ରୀମତୀ ବିଜୟ ଲକ୍ଷ୍ମୀ ପଣ୍ଡିତ, ସାନବୋହୂ ମେନକାଗାନ୍ଧୀ, ନୋବେଲ୍ ପୁରସ୍କାର ବିଜେତା ମଦର ଟେରେସା, ବ୍ରିଟେନ୍ ପ୍ରଧାନମନ୍ତ୍ରୀ ମାର୍ଗାରେଟ୍ ଥାଚେର, ରୁଷ ପ୍ରଧାନମନ୍ତ୍ରୀ ନିକୋଲାଇ ଟିର୍କୋନୋଭ୍, ଫ୍ରାନ୍ସ ରାଷ୍ଟ୍ରପତି ଫ୍ରାଙ୍କୋଇସ୍ ମିତେଁରା, ପାକିସ୍ଥାନ ରାଷ୍ଟ୍ରପତି ଜିଆଉଲ୍ ହକ୍, ବାଂଲାଦେଶ ରାଷ୍ଟ୍ରପତି ଏଚ୍. ଏମ୍. ଏରସାଦ, ଶ୍ରୀଲଙ୍କା ରାଷ୍ଟ୍ରପତି ଜେ ଆର୍. ଜୟବର୍ଦ୍ଧନେ, ଜାପାନ ପ୍ରଧାନମନ୍ତ୍ରୀ ୟାସୁହିରୋ ନାକାସୋନ୍ ପ୍ରମୁଖ ୧୦୪ଟି ଦେଶର ପ୍ରତିନିଧି ।

ଶବ ଶୋଭାଯାତ୍ରା ଯାଇ ଶାନ୍ତିବନରେ ପହଞ୍ଚିବା ପରେ ମୁଖ୍ୟ ଶବବାହକମାନେ ଓ ସେମାନଙ୍କୁ ସାହାଯ୍ୟ କରୁଥିବା ତିନି ବାହିନୀର ଦୁଇଜଣ କରି ଜେନେରାଲ୍‌ପ୍ରୋଟୋକ ଅଫିସର କମାଣ୍ଡବାହୀ ଗାଡ଼ି ଉପରୁ ଶବାଧାରକୁ ଓହ୍ଲାଇ ଆଣିଥିଲେ । ତାପରେ ସ୍ୱର୍ଗତ ପ୍ରଧାନମନ୍ତ୍ରୀଙ୍କ ପୁତ୍ର ରାଜୀବ ଗାନ୍ଧୀ ମାତାଙ୍କ ଶବକୁ କିଛି ସମୟ ପାଇଁ କାନ୍ଧେଇ ନେଇଥିଲେ ।

ପାରମ୍ପରିକ ହିନ୍ଦୁ ରୀତିରେ ଶ୍ରୀମତୀ ଗାନ୍ଧୀଙ୍କ ପାର୍ଥିବ ଶରୀରକୁ ଚିତା ଉପରେ ରଖାଯାଇଥିଲା । ଶ୍ରୀ ରାଜୀବ ଗାନ୍ଧୀ ବୈଦିକ ମନ୍ତ୍ର ଉଚ୍ଚାରଣ କରି ସାତଥର ଚିତା ପରିକ୍ରମା କରିସାରିବା ପରେ ଅପରାହ୍ଣ ଘ ୩.୪୮ ମିନିଟରେ ମୁଖାଗ୍ନି ଦେଇଥିଲେ । ସୈନ୍ୟବାହିନୀର ବିଗୁଲ୍ ବାଜି ଉଠିଥିଲା । ସଶସ୍ତ୍ର ବାହିନୀ ପକ୍ଷରୁ ତୋପଧ୍ୱନି କରାଯାଇ ରାଷ୍ଟ୍ରର ଶେଷ ସମ୍ମାନ ଜ୍ଞାପନ କରାଯାଇଥିଲା । ତିନି ବାହିନୀର ମୁଖ୍ୟ ସ୍ୱର୍ଗତ ପ୍ରଧାନମନ୍ତ୍ରୀଙ୍କ ମରଶରୀରପ୍ରତି ଶେଷ ଅଭିବାଦନ ଜଣାଇଥିଲେ ।

ସମବେତ ବିପୁଳ ଜନତାର ଶୋକଜ୍ଞାମ ମିଶ୍ରିତ ଇନ୍ଦିରା ଗାନ୍ଧୀଙ୍କ ଜୟ-ଜୟକାର ଧ୍ୱନି ସହିତ ଚନ୍ଦନକାଠରେ ସଜ୍ଜିତ ଚିତାନଳ ମୃତ୍ତିକା ମଧ୍ୟରେ ଲେଲିହାନ ଶିଖା ହୋଇ ଜଳି ଉଠିଥିଲା । ଶ୍ମଶାନଘାଟରେ ଉପସ୍ଥିତ ବହୁ ନର-ନାରୀ ଅବାରିତ ଭାବରେ ଅଶ୍ରୁପାତ କରୁଥିଲେ । ତାହା କେବଳ ସେଠାରେ ଉପସ୍ଥିତ ଥିବା ନରନାରୀଙ୍କ ଅଶ୍ରୁପାତ ନ ଥିଲା—ଥିଲା ସେହି ଚିତାନଳରେ ବାସ୍ତବିକ୍ ସମଗ୍ର ଜାତିର ଅଶ୍ରୁ-ଆହୁତି ।

ବିଭିନ୍ନ ଧର୍ମର ପବିତ୍ର ଗ୍ରନ୍ଥସବୁ ସେଠାରେ ପାଠ କରାଯାଉଥିଲା । ଚିତାଗ୍ନି ନିକଟରେ ରାଜୀବ ଗାନ୍ଧୀ, ତାଙ୍କ ପତ୍ନୀ ସୋନିଆ ଗାନ୍ଧୀ, କନ୍ୟା ପ୍ରିୟଙ୍କା, ପୁତ୍ର ରାହୁଲ ଓ ସ୍ୱର୍ଗତ ସଞ୍ଜୟ ଗାନ୍ଧୀଙ୍କ ପୁତ୍ର ବରୁଣ ଉପସ୍ଥିତ ରହିଥିଲେ ।

ଚିତାରେ ଅଗ୍ନି ସଂଯୋଗ ହେବା ପରେ ପରେ ରାଷ୍ଟ୍ରପତି ଜୈଲ ସିଂହ, ମଦର ଟେରେସା, ଅନେକ ରାଜ୍ୟର ରାଜ୍ୟପାଳ, କେନ୍ଦ୍ର ମନ୍ତ୍ରୀମଣ୍ଡଳର ସଦସ୍ୟ-ବୃନ୍ଦ, ପରିବାରର ସମ୍ପର୍କୀୟ ବ୍ୟକ୍ତିବୃନ୍ଦ ତଥା ଅନେକ ବିଦେଶାଗତ ଅତିଥିଙ୍କ ସମେତ ଅନେକ ବ୍ୟକ୍ତି ପ୍ରଜ୍ୱଳିତ ଚିତାଗ୍ନି ପରିକ୍ରମା କରି ପବିତ୍ରତାର ପ୍ରତୀକ ସ୍ୱରୂପ ତୁଳସୀପତ୍ର, ଗଙ୍ଗାଜଳ ଓ ଶ୍ରେଷ୍ଠ ଶ୍ରେଷ୍ଠ ଚନ୍ଦନକାଠମାନ ଚିତାନଳରେ ଆହୁତି ସ୍ୱରୂପ ନିକ୍ଷେପ କରିଥିଲେ ।

ଶ୍ରୀମତୀ ଗାନ୍ଧୀଙ୍କ ପରିବାରର କୁଳପୁରୋହିତ ପଣ୍ଡିତ ଗିରିଧାରୀଲାଲ ଗୋସ୍ୱାମୀଙ୍କ ଦ୍ୱାରା ହିଁ ଶ୍ରୀମତୀ ଗାନ୍ଧୀଙ୍କ ମହାଯାତ୍ରାର ସମସ୍ତ ମନ୍ତ୍ର ସମ୍ପନ୍ନ ହୋଇ-ଥିଲା । ସ୍ମରଣ କରାଯାଇପାରେ ଯେ ପୂର୍ବରୁ ତାଙ୍କର ଦ୍ୱାରା ହିଁ ପଣ୍ଡିତ ଜବାହାରଲାଲ ନେହେରୁ ଓ ସଞ୍ଜୟ ଗାନ୍ଧୀଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦିତ ହୋଇଥିଲା ।

ଭାରତର ସ୍ୱାର୍ଥ ରକ୍ଷାକରିବା ସଙ୍ଗେ ସଙ୍ଗେ ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବା ଲାଗି ଉଦ୍ୟମରତ, ସମଗ୍ର ବିଶ୍ୱର କୋଟି କୋଟି ଲୋକଙ୍କ ହୃଦୟ ସିଂହାସନ ଅଧିକାର କରିଥିବା ତଥା ଦୀର୍ଘ ଷୋହଳ ବର୍ଷକାଳ ଦେଶର ନେତୃତ୍ୱ ନେଇ ଯଥାର୍ଥ ଦିଗ୍‌ଦର୍ଶନ ଦେଇ ଆସିଥିବା ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ମରଶରୀର ଧୀରେ ଧୀରେ କେତେମୁଠା ପାଉଁଶରେ ପରିଣତ ହୋଇ ଯାଇଥିଲା ।

ଚିତାଭସ୍ମ ବିସର୍ଜନ :—

୧୯୮୪ ମସିହା ନଭେମ୍ବର ୫ ତାରିଖ ଦିନ ଶ୍ରୀମତୀ ଗାନ୍ଧୀଙ୍କ ଚିତାଭସ୍ମ ୩୫ ଟି ତମ୍ବାପାତ୍ରରେ ସଂଗୃହୀତ ହୋଇଥିଲା । ସେଥିମଧ୍ୟରୁ ତିନୋଟି ନୂଆଦିଲ୍ଲୀର ତ୍ରିମୂର୍ତ୍ତି ଭବନ ଲନ୍‌ରେ ରଖାଯାଇ ଅବଶିଷ୍ଟ ପାତ୍ରଗୁଡ଼ିକ ସମ୍ମାନର ସହିତ ଦେଶର ବିଭିନ୍ନ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳର ରାଜଧାନୀଗୁଡ଼ିକୁ ନିଆଯାଇଥିଲା । ସେହି

ଉଦ୍ଦେଶ୍ୟରେ କେତେଗୁଡ଼ିଏ ସ୍ୱତନ୍ତ୍ର ଟ୍ରେନ୍ ତଥା ବିମାନର ବ୍ୟବସ୍ଥା କରା-ଯାଇଥିଲା ।.

ଦେଶର ବିଭିନ୍ନ ପ୍ରାନ୍ତରରେ ଲକ୍ଷ ଲକ୍ଷ ଲୋକ ସେମାନଙ୍କ ପ୍ରିୟନେତ୍ରୀ ସ୍ୱର୍ଗତ ଶ୍ରୀମତୀ ଗାନ୍ଧୀଙ୍କ ଦେହାବଶେଷର ଦର୍ଶନ ପାଇଁ ବ୍ୟାକୁଳ ହୋଇ ଉଠିଥିଲେ, ମଥା ନୁଆଁଇ ସମ୍ମାନ ଜଣାଇଥିଲେ ଏବଂ ଦୁଃଖର ସହିତ ସ୍ନେହ ଓ ଶ୍ରଦ୍ଧା ଜଣାଇ ପୁଷ୍ପଗୁଚ୍ଛରେ ସେ ସମଗ୍ର ସ୍ଥଳକୁ ଆଚ୍ଛାଦିତ କରି ପକାଇଥିଲେ । ଶ୍ରୀମତୀ ଗାନ୍ଧୀଙ୍କ ଓ ଅତୀତରେ ତାଙ୍କର କାର୍ଯ୍ୟକଳାପକୁ ସ୍ମରଣ କରି ଭାବବିହ୍ୱଳ ହୋଇ ଉଠିଥିଲେ । ସାଧାରଣ ଜନମାନସରେ ଭାବପ୍ରବଣତାର ଉଦ୍‌ବେଳନ ଏପରି ହୋଇଥିଲା ଯେ, ଦେଶର ସବୁ ପ୍ରାନ୍ତରରୁ ଆବାଳ-ବୃଦ୍ଧ-ବନିତା ଦାରୁଣ ବିଚ୍ଛେଦ ବେଦନାରେ ଆଖିରୁ ଲୁହ ନିଗାଡ଼ି ପକାଇଥିଲେ ଅଣଆୟତ୍ତ ହୋଇ । ଶ୍ରୀମତୀ ଗାନ୍ଧୀଙ୍କ ଜନ୍ମସ୍ଥଳୀ ଆହ୍ଲାବାଦଠାରେ ତାଙ୍କର ଦେହାବଶେଷ ଦର୍ଶନ ପାଇଁ ଓ ତାଙ୍କ ଆତ୍ମା ପ୍ରତି ଶେଷ ସମ୍ମାନ ଜଣାଇବା ପାଇଁ ସମବେତ ଜନତାର ଭିଡ଼ ସମ୍ଭାଳିବା ଶାନ୍ତିରକ୍ଷାବାହିନୀଙ୍କ ପାଇଁ ଏକ ବିରାଟ ସମସ୍ୟା ହୋଇ ପଡ଼ିଥିଲା । ଅନେକ ସ୍ଥାନରେ ଭାରତୀୟ ଜନଗଣ ଶ୍ରୀମତୀ ଗାନ୍ଧୀଙ୍କ ଚିତାଭସ୍ମପୂର୍ଣ୍ଣ ତାମ୍ର କଳସୀଗୁଡ଼ିକୁ ଠାକୁର ପ୍ରତିମା ଭଳି ପୂଜା କରିବାପାଇଁ ପଶ୍ଚାତ୍‌ପଦ ହୋଇ ନ ଥିଲେ ।

ପରେ ପରେ ସେ ପାତ୍ରଗୁଡ଼ିକ ସଂଗୃହୀତ ହୋଇ ହିଣ୍ଡୋନ୍ ବିମାନ ବନ୍ଦର ( Hindon Air Force Station )କୁ ନିଆଯାଇଥିଲା । ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ନଭେମ୍ବର ୧୧ ତାରିଖ ଦିନ ସେଗୁଡ଼ିକୁ ହିମାଳୟ ଗିରିଶୃଙ୍ଗ ଉପରେ ବିସର୍ଜନ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ, ଶ୍ରୀମତୀ ଗାନ୍ଧୀ ଗିରିଶୃଙ୍ଗଗୁଡ଼ିକୁ ଅନ୍ତରର ସହିତ ଭଲ ପାଉଥିଲେ ଓ ନିକଟରେ ପାଇ ଆତ୍ମବିଭୋର ହୋଇ ଉଠୁଥିଲେ । ପାର୍ଥିବ ପୃଥିବୀରେ ଶ୍ରୀମତୀ ଗାନ୍ଧୀଙ୍କ ପାର୍ଥିବ ଶରୀର ସେ ଭସ୍ମ ସହିତ ହିମାଳୟରେ ମିଶି ଯାଇଥିଲା ।

□ □ □

## ॥ ସତାଇଶ ॥

# ଜୀବନର ଆଦର୍ଶ



ଶ୍ରୀମଦ୍ ଭଗବଦ୍ ଗୀତାର ଭାଷ୍ୟ ଅନୁସାରେ ଦେହଧାରୀମାନଙ୍କ ପାଇଁ କୌମାର, ଯୌବନ ଓ ଜରା କ୍ରମାନ୍ୱୟରେ ଆତ୍ମାର ଗୋଟିଏ ଗୋଟିଏ ଅବସ୍ଥା ମାତ୍ର । ଠିକ୍ ସେହି କ୍ରମରେ ଦେହାନ୍ତର ପ୍ରାପ୍ତି ବା ମୃତ୍ୟୁ ମଧ୍ୟ ଆତ୍ମାର ଆଉ ଗୋଟିଏ ଅବସ୍ଥା । ସେଥିପାଇଁ ବିଜ୍ଞଜନମାନେ ଦେହାନ୍ତର ବିଷୟ ସମ୍ପର୍କରେ କେବେହେଁ ମୋହଗ୍ରସ୍ତ ହୋଇ ନ ଥାନ୍ତି । *

ଭଗବଦ୍ ଗୀତାର ସେ ଜୀବନ ଦର୍ଶନ ଓ ମହାନ୍ ଆଦର୍ଶ ମହାତ୍ମା ଓ ସିଦ୍ଧପୁରୁଷଙ୍କ ପାଇଁ ହୁଏତ ବେଶ୍ ପ୍ରଭାବଶାଳୀ । ବୋଧହୁଏ ସେହି କାରଣରୁ ହିଁ ମହର୍ଷି ଦଧୀଚ ଦେବକୁଳର ମଙ୍ଗଳ ପାଇଁ ସ୍ୱ-ଇଚ୍ଛାରେ ନିଜର ଅସ୍ଥି ଦାନ କରିବାକୁ ପ୍ରସ୍ତୁତ ହୋଇଥିଲେ । ଭୀଷ୍ମ ତାଙ୍କ ଇଚ୍ଛା-ମୃତ୍ୟୁ ବରଣ କରିବାକୁ ପଡ଼ିଥିଲା ।

ଠିକ୍ ସେହିଭଳି ଭାବେ ଭାରତୀୟ ଜନଗଣଙ୍କ ମଧ୍ୟରେ ଐକ୍ୟସ୍ଥାପନ ପାଇଁ ଓ ସାମାଜିକ ମଙ୍ଗଳ ପାଇଁ ଶ୍ରୀମତୀ ଗାନ୍ଧୀ ମଧ୍ୟ ନିଜର ଜୀବନ ଦାନ କରିଦେଇଥିଲେ ବୋଲି କୁହାଯାଇପାରେ । କାରଣ ସେ ହୁଏତ ଅସ୍ପଷ୍ଟ ଭାବରେ ନିଜ ଅଙ୍ଗେ ଅଙ୍ଗେ ଅନୁଭବ କରି ପାରିଥିଲେ ମୃତ୍ୟୁ ଦେବତାଙ୍କ ଶୀତଳ ପାପୁଲିର ସ୍ପର୍ଶ ଏବଂ ସେ ଅନୁଭବ ପରେ ମଧ୍ୟ ନିଜ କର୍ତ୍ତବ୍ୟପଥରୁ ଟଳେ ମଧ୍ୟ ବିଚ୍ୟୁତ ହୋଇ ନ ଥିଲେ— କର୍ମ ତତ୍ପର ହୋଇ ଉଠିଥିଲେ ଭାରତୀୟ ଜାତୀୟ ଏକତା ଓ ସଂହତିର ପ୍ରତିଷ୍ଠା

---

* ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ,
ଯୌବନଂ ଜରା ତଥା ଦେହାନ୍ତର ପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି ।
ଗୀତା— ୨ୟ ଅଧ୍ୟାୟ—୧୩ ଶ୍ଲୋକ ।

ପାଇଁ, ଭାରତର ସମୃଦ୍ଧି ପାଇଁ ଓ ଜୀବନର ମହାନ୍ ଆଦର୍ଶ ବଜାୟ ରଖିବାପାଇଁ । ତାଙ୍କର ପ୍ରତିଟି ମୂହୂର୍ତ୍ତ ଦେଶ ଓ ଦେଶବାସୀଙ୍କ ପାଇଁ ହିଁ ବ୍ୟୟିତ ହୋଇଥିଲା ।

ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ମୁଖ୍ୟ ଜୀବନାଦର୍ଶ ଥିଲା ତୀବ୍ର ଜାତୀୟତାବୋଧ ! ଭାରତର ଜାତୀୟ ଏକତା ରକ୍ଷା, ଭାରତର ପୁରାତନ ଐତିହ୍ୟର ସମୃଦ୍ଧି କରିବାପାଇଁ ଉଦ୍ୟମ ଓ ପ୍ରତ୍ୟେକ ଭାରତୀୟଙ୍କ ମନରେ ସ୍ୱାଭିମାନର ଉଦ୍ରେକ କରାଇବା । ସେଇଥିପାଇଁ ମୃତ୍ୟୁର ମାତ୍ର ଗୋଟିଏ ଦିନ ପୂର୍ବରୁ—୧୯୮୪ ମସିହା ଅକ୍ଟୋବର ୩୦ ତାରିଖ ସନ୍ଧ୍ୟାରେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ପ୍ୟାରେଡ଼ ପଡ଼ିଆରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ସେ ବଜ୍ରକଣ୍ଠରେ ଘୋଷଣା କରିଥିଲେ—"ମୁଁ ଜୀବିତ ରହେ ବା ନ ରହେ, ଦେଶର ସେବାରେ ସମସ୍ତ ଜୀବନକୁ ନିୟୋଜିତ କରି-ପାରିଥିବାରୁ ନିଜକୁ ଧନ୍ୟ ମନେକରୁଛି । ମୁଁ ନିଶ୍ଚିତ ଯେ ମୋର ପ୍ରତ୍ୟେକ ରକ୍ତବିନ୍ଦୁ ଦେଶକୁ ଆହୁରି ଦୃଢ଼ ଓ ଶକ୍ତିଶାଳୀ କରି ଗଢ଼ିତୋଳିବ ।" †

ଜାତି, ଧର୍ମ, ବର୍ଣ୍ଣ ଓ ଭାଷା ନିର୍ବିଶେଷରେ ବିଗତ ହଜାର ହଜାର ବର୍ଷ ଧରି ଏ ଦେଶର ସାଧୁ, ସନ୍ଥ, ଧର୍ମଗୁରୁ ଓ ପ୍ରଚାରକମାନେ ଯେଉଁ ଏକତାର ମନ୍ତ୍ର ପ୍ରଚାର କରି ଆସିଥିଲେ ଓ ଜାତୀୟ ଐକ୍ୟ ସ୍ଥାପନ ପାଇଁ ଜୀବନ ଦାନ କରିଥିଲେ, ତାହାର ପରିଣାମ ଶୁଭଙ୍କରୀ ପ୍ରମାଣିତ ହୋଇଛି ବୋଲି ଶ୍ରୀମତୀ ଗାନ୍ଧୀଙ୍କର ଆନ୍ତରିକ ଉପଲବ୍ଧି ହୋଇଥିଲା । ସେଇଥିପାଇଁ ହିଁ ଗୋଟିଏ ସଭ୍ୟ, ଶୃଙ୍ଖଳିତ ଜାତି ହିସାବରେ ଏହି ଭୂଖଣ୍ଡ ପୃଥିବୀରେ ତା'ର ସ୍ଥିତି ବଜାୟ ରଖିପାରିଛି ଏବଂ ସେହି ତତ୍ତ୍ୱ ହିଁ ଭାରତୀୟ ସମ୍ବିଧାନର ମଧ୍ୟ ମୂଳମନ୍ତ୍ର । ସେ ଯଥାର୍ଥରେ ଅନୁଭବ କରିଥିଲେ ଯେ ଭାରତର ଏକତା ରକ୍ଷା କରାଯାଇ ନ ପାରିଲେ ଦେଶର ସ୍ଥିତି ଟଳମଳ ହୋଇଯିବା ନିଶ୍ଚିତ; ଅତୀତର ଗୌରବମୟ ପରମ୍ପରା ଖଣ୍ଡ-ବିଖଣ୍ଡିତ ହେବା ନିଶ୍ଚିତ । ସେହି କାରଣରୁ 'ଭାରତୀୟତାବୋଧ' ହିଁ ଥିଲା ତାହାଙ୍କ ଜୀବନର ପରମ ଆଦର୍ଶ ।

ପଶ୍ଚିମ ଜର୍ମାନୀର ଗୋଟିଏ ସମ୍ବାଦପତ୍ରକୁ ଥରେ ସାକ୍ଷାତ୍ ଦେବା ଅବସରରେ ତାଙ୍କ ଜୀବନର ସବୁଠାରୁ ବଳି ବଡ଼ ଆତଙ୍କ କଣ ହୋଇପାରେ ବୋଲି ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ—"ଯଦି ଭାରତବର୍ଷର ସ୍ୱାଧୀନତା ଓ ଅଖଣ୍ଡତା ପ୍ରତି କୌଣସି ବିପଦ ଦେଖାଦିଏ, ତାହାହିଁ ହେବ ମୋ ଜୀବନର ସବୁଠାରୁ ବଡ଼ ଆତଙ୍କ ।" * ତେଣୁ ଯେତେବେଳେ ଏହି ଭାରତୀୟତା ବା ଭାରତର

---

† ଜୀବନର ଶେଷ ସାଧାରଣ ସଭାରେ ପ୍ରଦତ୍ତ ଭାଷଣର ଅଂଶବିଶେଷ ।

* ପୌରୁଷ ୧୮ଶ ବର୍ଷ—୫ମ ଓ ୬ଷ୍ଠ ସଂଖ୍ୟା—ପୃ-୩୭ ।

ମହାଜାତୀୟତା ଉପରେ କୌଣସି ପ୍ରକାର ଆଘାତ ଲାଗିବା, ସେ ଯେତେବେଳେ ଅନୁଭବ କରୁଥିଲେ; ସେତେବେଳେ ସାହସର ସହିତ ଯେ ପରିସ୍ଥିତିର ସମ୍ମୁଖୀନ ହେଉଥିଲେ ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଯେ କେବଳ ସେଇ ଜାତୀୟ ଏକତାକୁ ବଜାୟ ରଖିବାପାଇଁ ଭାରତମାତାର ଯଜ୍ଞ ବେଦୀରେ ନିଜକୁ ବଳିଦାନ କରିଥିଲେ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ଭଳି ।

ସାହସର ସହିତ ଦୃଢ଼ ପ୍ରତିଜ୍ଞ ହୋଇ ଯେକୌଣସି ପରିସ୍ଥିତିର ମୁକାବିଲା କରିବା ଥିଲା ଶ୍ରୀମତୀ ଗାନ୍ଧୀଙ୍କର ସ୍ୱାଭାବିକ ଗୁଣ । ସେ ଦିଗରେ ପଣ୍ଡିତ ନେହେରୁଙ୍କ ଅବଦାନ ଥିଲା ଯଥେଷ୍ଟ ଅଧିକ । 'ପିଲାଟି ଦିନରୁ ହିଁ ସାହସୀ ହେବାପାଇଁ ତାଙ୍କୁ ବରାବର ସେ ପରାମର୍ଶ ଦେଇ ଆସିଥିଲେ । ଆମ ଦେଶର ଐତିହାସିକ ପରମ୍ପରା ଓ ଆଦର୍ଶ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହେବା ଦିଗରେ ତାଙ୍କ ପିତା ଥିଲେ ଜଣେ ଶ୍ରେଷ୍ଠ ମାର୍ଗଦର୍ଶକ । ଜଣେ ପିତା ହିସାବରେ କାରାଗାରରୁ ବାପୁମଣି କନ୍ୟା ଇନ୍ଦିରାଙ୍କୁ ଦେଇଥିବା ପତ୍ରାବଳୀରୁ ତାହା ସ୍ପଷ୍ଟ । ସେଥିପାଇଁ ଐତିହ୍ୟପୂର୍ଣ୍ଣ ଅତୀତ ପରମ୍ପରାଗୁଡ଼ିକର ସ୍ଥିତି ସୁଦୃଢ଼ କରାଇବା ସଙ୍ଗେ ସଙ୍ଗେ ଦେଶର ହସ୍ତାର୍ଜିତ ସ୍ୱାଧୀନତା ରକ୍ଷାକରିବା ତାଙ୍କର ପରମ କର୍ତ୍ତବ୍ୟ ବୋଲି ସେ ଆନ୍ତରିକ ଉପଲବ୍ଧି କରିଥିଲେ ଏବଂ ସାରାଜୀବନ ସେଥିପାଇଁ ଥିଲେ କର୍ତ୍ତବ୍ୟରତ ।

ଦେଶର ସର୍ବାଙ୍ଗୀନ ଉନ୍ନତି ଓ ପୃଥିବୀ ଦରବାରରେ ଭାରତକୁ ଏକ ସମ୍ମାନଜନକ ଆସନରେ ପ୍ରତିଷ୍ଠିତ କରାଇଥିବା ଉଦ୍ଦେଶ୍ୟରେ ସେ ଆଜୀବନ ଉଦ୍ୟମ କରିଥିଲେ; ଉଦ୍ୟମରତ ଥିଲେ ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତକୁ ବାସ୍ତବରେ ପରିଣତ କରାଇବାପାଇଁ । ଦେଶର ନେତ୍ରୀ ହିସାବରେ ସେ ସାମାଜିକ, ଆର୍ଥନୀତିକ, ବୈଜ୍ଞାନିକ ତଥା ସାଂସ୍କୃତିକ ଅଭିବୃଦ୍ଧି ପାଇଁ ସଂଗ୍ରାମ ଚଳାଇଥିଲେ ଅବିଶ୍ରାନ୍ତ ଭାବେ । ମହାକାଶ ଗବେଷଣା ପାଇଁ ପ୍ରୋତ୍ସାହନ, ଦେଶର ଆର୍ଥନୀତିକ ପ୍ରଗତିପାଇଁ ଜରୁରୀକାଳରେ ଓ ପରେ ମଧ୍ୟ ବିଂଶସୂତ୍ରୀ କାର୍ଯ୍ୟକ୍ରମର ପ୍ରଚଳନ, କୃଷି-ବିଜ୍ଞାନ-ଶିଳ୍ପ କ୍ଷେତ୍ରରେ ପ୍ରଭୂତ ଉନ୍ନତି ପାଇଁ ଆନ୍ତରିକ ପ୍ରଚେଷ୍ଟା ଓ ନବମ ଏସୀୟ କ୍ରୀଡ଼ା ପ୍ରତିଯୋଗିତା ସମେତ ଆଉ ଦୁଇଟି ଆନ୍ତର୍ଜାତିକ ସମ୍ମେଳନ—ରାଷ୍ଟ୍ର ମୁଖ୍ୟମାନଙ୍କ ବୈଠକ ଓ ନିରପେକ୍ଷ ରାଷ୍ଟ୍ର ଗୋଷ୍ଠୀ ସମ୍ମେଳନର ସଫଳ ଆୟୋଜନ ପ୍ରଭୃତି ତାଙ୍କର ଆନ୍ତରିକ ଅଭିପ୍ସାର ପ୍ରତିଫଳନ ମାତ୍ର ।

ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱର ଶେଷ ପର୍ଯ୍ୟାୟରେ ଭାରତକୁ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠିତ କରାଇବା ପାଇଁ ଯେଉଁଭଳି ବ୍ୟାକୁଳତା ପ୍ରକାଶ ପାଇଥିଲା, ଠିକ୍ ସେହିଭଳି ନେତୃତ୍ୱ ଦେବାର ପ୍ରାକ୍‌କାଳରେ ଦେଶକୁ ସ୍ୱାବଲମ୍ବନଶୀଳ କରାଇବା ଉଦ୍ଦେଶ୍ୟରେ ଆଭ୍ୟନ୍ତରୀଣ ସମୃଦ୍ଧି ପାଇଁ ସେ ଯେଉଁ ପଦକ୍ଷେପଗୁଡ଼ିକ ଗ୍ରହଣ କରିଥିଲେ ସେଗୁଡ଼ିକ ନିଶ୍ଚୟ ଉଲ୍ଲେଖଯୋଗ୍ୟ ।

ଯଦି କୌଣସି ଆଦର୍ଶ, ଇଜମ୍ ବା ଚିନ୍ତାଧାରା ଶ୍ରୀମତୀ ଗାନ୍ଧୀଙ୍କୁ ସମ୍ପୂର୍ଣ୍ଣ କବଳିତ କରି ପାରିଥିଲା, ତାହାଥିଲା ଦେଶକୁ ଭଲ ପାଇବାର ଆଦର୍ଶ । ପ୍ରତ୍ୟେକ କାର୍ଯ୍ୟ କରିବାବେଳେ ସେଇ ଗୋଟିଏ ଚିନ୍ତାଧାରା ତାହାଙ୍କୁ ନିୟନ୍ତ୍ରଣ କରୁଥିଲା । ସେଥିଲାଗି ନିଜର ଚରମ ରାଜନୈତିକ ଦୁର୍ଦ୍ଦିନ କାଳରେ ଏବଂ ଶାସନ କ୍ଷମତାରୁ ଦୂରରେ ରହିଥିବା ସମୟରେ ମଧ୍ୟ ତାଙ୍କର ସ୍ପଷ୍ଟ ମତ ଥିଲା—"I know my first duty is to my Country." ଦେଶର ଚରମ ସ୍ୱାର୍ଥସିଦ୍ଧି ହେଲେ କୌଣସି ପୂର୍ବ ପ୍ରଚଳିତ ପରମ୍ପରା, ଆଦର୍ଶ ବା ଇଜମ୍‌କୁ ଅନ୍ଧଭାବରେ ଅନୁସରଣ ଲାଗି ସେ ପ୍ରସ୍ତୁତ ନ ଥିଲେ । ସେ ମନେ କରିଥିଲେ ଦେଶର ସୁରକ୍ଷା ହିଁ ତାଙ୍କର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ । ତେଣୁ କେବଳ ସେହି କାରଣରୁ ଦେଶରେ ଜରୁରୀ ଅବସ୍ଥା ପ୍ରଚଳନ କରାଇଥିଲେ ବୋଲି ମତପ୍ରକାଶ କରି କହିଥିଲେ—"...Strong action had to be taken and one cannot have qualms of conscience about saving one's Country. I do feel that I have saved the Country I don't know what would have happened if I had not taken strong action." †

ଶ୍ରୀମତୀ ଗାନ୍ଧୀ ହୃଦ୍‌ବୋଧ କରିଥିଲେ ଯେ ଦେଶର ଅଧିକାଂଶ ସାଧାରଣ ଜନତାର ସ୍ୱାର୍ଥରକ୍ଷା କରିବାପାଇଁ ସେତେବେଳେ ଦେଶରେ ଜରୁରୀ ଅବସ୍ଥା ପ୍ରଚଳନର ଆବଶ୍ୟକତା ଥିଲା । ପରକାଳରେ କେବଳ ସେଇଥିପାଇଁ ବହୁ ସମାଲୋଚନାର ଶିକାର ହେବାକୁ ପଡ଼ିଥିଲା ଓ ନିର୍ଯ୍ୟାତନା ମଧ୍ୟ ସହିଥିଲେ । ତଥାପି ସେତେବେଳେ ସେ ବିଶ୍ୱାସ କରିଥିଲେ ମୁଷ୍ଟିମେୟ ରାଜନୈତିକ ଓ ବ୍ୟକ୍ତିଗତ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ବଙ୍ଗଳାଦେଶ କିମ୍ବା ପାକିସ୍ଥାନ ଭଳି ଏ ଦେଶରେ ମଧ୍ୟ ସେତେବେଳେ ରାଜନୈତିକ ଅସ୍ଥିରତା ସୃଷ୍ଟି କରିବାପାଇଁ ଥିଲେ ପ୍ରବଳ ଉଦ୍ୟମରତ ।

ତେଣୁ ସେଇ ଅନାଗତ ଅସ୍ଥିର ପରିସ୍ଥିତିରୁ ଦେଶକୁ ରକ୍ଷା କରିବାପାଇଁ ଓ ଦେଶବାସୀଙ୍କ ସାମୂହିକ ମଙ୍ଗଳ ପାଇଁ ହିଁ ସେ ଆବଶ୍ୟକ ମନେ କରୁଥିବା ପଦକ୍ଷେପ ଗ୍ରହଣ କରୁଥିଲେ । ସେଥିରୁ ଦେଶ ଓ ଦେଶବାସୀଙ୍କ ପାଇଁ ତାଙ୍କ ଦରଦୀ ହୃଦୟର ଏକ ସ୍ପଷ୍ଟ ଚିତ୍ର ଅଙ୍କନ କରାଯାଇପାରେ ।

ତାଙ୍କରି ଶାସନ କାଳରେ ଦେଶର ବିଭିନ୍ନ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଆର୍ଥନୀତିକ ତାରତମ୍ୟ ହ୍ରାସ କରିବା ଉଦ୍ଦେଶ୍ୟରେ କେତେକ ଦୃଢ଼ ପଦକ୍ଷେପ ସେ

† ଜଣେ ବିଦେଶୀ ପ୍ରଫେସର ଶ୍ରୀମତୀ M. C. Carrasଙ୍କ ସହିତ ୧୯୭୮ ଖ୍ରୀଷ୍ଟାବ୍ଦରେ ସାକ୍ଷାତ୍କାର ବେଳେ ମତପ୍ରକାଶ ।

ଗ୍ରହଣ କରିଥିଲେ । ପଣ୍ଡିତ ନେହେରୁଙ୍କ ଭଳି ସେ ମନେକରିଥିଲେ ସମାଜବାଦର ଅର୍ଥ କେବଳ 'ବ୍ୟକ୍ତି-ବ୍ୟକ୍ତି' ମଧ୍ୟରେ ଥିବା ଆର୍ଥନୀତିକ ତାରତମ୍ୟକୁ ଦୂର କରିବା ନୁହେଁ, ତତ୍ସହିତ ଜାତି-ଜାତି ଓ ଅଞ୍ଚଳ-ଅଞ୍ଚଳ ମଧ୍ୟରେ ବିଶେଷ ଆର୍ଥନୀତିକ ତଫାତ୍ ରହିବା ଉଚିତ ନୁହେଁ । ସେଭଳି ପଦକ୍ଷେପଗୁଡ଼ିକ ମଧ୍ୟରୁ କେତେକ ଉଲ୍ଲେଖଯୋଗ୍ୟ ଥିଲା ରାଜାରାଜୁଡ଼ାମାନଙ୍କ ହାତପାଣ୍ଠି ଓ ସୁବିଧା ସୁଯୋଗର ଉଚ୍ଛେଦ, କେତେକ ବଡ଼ ବଡ଼ ବ୍ୟାଙ୍କର ଜାତୀୟକରଣ, ଦେଶରେ ସବୁଜ ବିପ୍ଳବ ଅଣାଇବାର ପ୍ରଚେଷ୍ଟା ଏବଂ ବିଂଶସୂତ୍ରୀ କାର୍ଯ୍ୟକ୍ରମର ପ୍ରଚଳନ ପ୍ରଭୃତି । ସେଭଳି ଅନେକ କାର୍ଯ୍ୟକ୍ରମ ଗ୍ରହଣ କରାଯିବାବେଳେ ତାହାଙ୍କୁ ବିଭିନ୍ନ ପ୍ରକାରର ସମାଲୋଚନା ତଥା ପ୍ରତିବନ୍ଧକର ମୁକାବିଲା କରିବାକୁ ପଡ଼ିଥିଲା । ଏପରିକି କେତେକ କ୍ଷେତ୍ରରେ ନିଜ ଦଳ ଭିତରୁ ମଧ୍ୟ ସେ ବିଶେଷ ଭାବରେ ସମାଲୋଚିତ ହୋଇଥିଲେ । ସେତେବେଳେ କଂଗ୍ରେସ ଭିତରେ ଥିବା ବରିଷ୍ଠ ତଥା ପ୍ରମୁଖ ନେତାମାନଙ୍କୁ ନେଇ ତଥାକଥିତ ସିଣ୍ଡିକେଟ୍ ଗୋଷ୍ଠୀ ତାହାଙ୍କୁ ଏକ ସମୟରେ ବିଶେଷ ଭାବେ ବିରୋଧ କରିଥିଲେ । ୧୯୬୯ ମସିହାରେ ନିଜକୁ ସେସବୁ ଚିନ୍ତା ମଧ୍ୟରୁ ମୁକ୍ତ କରି ଦେଶର ପ୍ରଗତି ପାଇଁ ସେ ଦୃଢ଼ ସଙ୍କଳ୍ପ କରିଥିଲେ । ଠିକ୍ ସେହିଭଳି ୧୯୭୭ ମସିହାରେ, ତାଙ୍କର ଚରମ ରାଜନୈତିକ ବିପର୍ଯ୍ୟୟ କାଳରେ, ଦଳର ନୀତି ଓ କାର୍ଯ୍ୟକ୍ରମଗୁଡ଼ିକୁ ବ୍ୟକ୍ତିମାନଙ୍କଠାରୁ ଉଚ୍ଚ ସ୍ତରରେ ରଖିବାକୁ ଯାଇଥିବାରୁ ପୁଣି ଥରେ ଦଳର ବିଭାଜନ ଆବଶ୍ୟକ ଓ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ସେଭଳି ପଦକ୍ଷେପଗୁଡ଼ିକରୁ ସ୍ପଷ୍ଟ ପ୍ରତୀୟମାନ ହେଉଥିଲା ଯେ ଦେଶ ଓ ଜାତିର ସମସ୍ତ ପ୍ରକାର ଉନ୍ନତି କରିବାପାଇଁ ତାହାଙ୍କର ଆକାଂକ୍ଷା ଥିଲା ପ୍ରବଳ ।

ସେଭଳି ଗୁରୁତର ସମସ୍ୟାଗୁଡ଼ିକର ମୁକାବିଲା କରିବାପାଇଁ ଶ୍ରୀମତୀ ଗାନ୍ଧୀଙ୍କର ଯେଉଁ ଦୃଢ଼ତା ଥିଲା, ତାହା ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ତଥା ତାଙ୍କର ରାଜନୈତିକ ଶିକ୍ଷାଗୁରୁ ଓ ପିତାଜୀ ପଣ୍ଡିତ ନେହେରୁଙ୍କର ମଧ୍ୟ ନ ଥିଲା । ତାଙ୍କ ଜୀବନକାଳ ମଧ୍ୟରେ ଶ୍ରୀମତୀ ଗାନ୍ଧୀ ଯେଉଁ ସମସ୍ୟାଗୁଡ଼ିକର ସମ୍ମୁଖୀନ ହୋଇଥିଲେ, ସେଭଳି ପରିବେଶ ଓ ପରିସ୍ଥିତି ଉଦାରପନ୍ଥୀ ନେତା ପଣ୍ଡିତ ନେହେରୁଙ୍କ ଅମଳରେ ହୋଇଥିଲେ ସେ ହୁଏତ ରାଜନୀତି କ୍ଷେତ୍ରରୁ ସ୍ୱେଚ୍ଛାରେ ଅପସରି ଯାଇଥାନ୍ତେ ସେଥିରେ ସନ୍ଦେହ ନାହିଁ । ଇନ୍ଦିରାଜୀଙ୍କ ଭଳି ଦୃଢ଼ତାର ସହିତ ହୁଏତ ସେ ସେଭଳି ଝଡ଼ଗୁଡ଼ିକର ମୁକାବିଲା କରିପାରି ନ ଥାନ୍ତେ ।

ସେସବୁ ସାମୟିକ ଝଡ଼ର ମୁକାବିଲା କରିବା ମୂଳରେ ସମାଜରେ ସେ ନିଜକୁ ପ୍ରତିଷ୍ଠିତ କରାଇବା ଉଦ୍ଦେଶ୍ୟ ନ ଥିଲା, ଥିଲା ମାତୃଭୂମି ଓ ଦେଶବାସୀଙ୍କ ଉନ୍ନତି ପାଇଁ ଉଦ୍ୟମ କରିବା । ସେ ମୁକ୍ତ କଣ୍ଠରେ ଘୋଷଣା କରିଥିଲେ ଯେ, ସେ

ଯାହା ପ୍ରକୃତରେ ଦେଶ ଭିତରେ ଓ ବିଦେଶରେ ମଧ୍ୟ ପ୍ରତିଷ୍ଠିତ ହୋଇ ପାରିଥିଲେ ତାହା ସମ୍ଭବ ହୋଇଥିଲା ଆମ ଦେଶର ବିରୋଧୀଦଳଗୁଡ଼ିକ ଯୋଗୁଁ । ଅନେକ ସମୟରେ କେବଳ କ୍ଷମତାକୁ ବିରୋଧ କରିବାପାଇଁ ଓ କ୍ଷମତାସୀନ ଦଳ ତଥା ବ୍ୟକ୍ତିବୃନ୍ଦଙ୍କୁ ବିରୋଧ କରିବାପାଇଁ ସେମାନେ ବିରୋଧ କରୁଥିଲେ । ସେମାନଙ୍କର କୌଣସି ଗଠନମୂଳକ ଭୂମିକା ନ ଥିଲା । ସେମାନେ ଅନବରତ ଉଦ୍ୟମ କରୁଥିଲେ ଶ୍ରୀମତୀ ଗାନ୍ଧୀଙ୍କର ବ୍ୟକ୍ତିଗତ କୁତ୍ସା ପ୍ରଚାରପାଇଁ । ପରିସ୍ଥିତିର ବିଡ଼ମ୍ବନା ସେସବୁ କୁତ୍ସାପ୍ରଚାର ଅନେକ ସମୟରେ ଅଭିଶାପ ନହୋଇ ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ଆଶୀର୍ବାଦରେ ପରିଣତ ହେଉଥିଲା । ଦେଶ ଭିତରେ ଓ ବିଦେଶରେ ଜନଗଣ ତାହାଙ୍କୁ କ୍ରମେ ଅଧିକରୁ ଅଧିକ ହିଁ ଭଲ ପାଇ ବସୁଥିଲେ । ତାଙ୍କ ବ୍ୟକ୍ତିତ୍ୱର ପରିପ୍ରକାଶ ଦିଗରେ ସେ କୁତ୍ସା ଅଧିକାଂଶ ସମୟରେ ସହାୟକ ହେଉଥିଲା ।

ହୁଏତ ହୋଇପାରେ ପରିବେଶ ଓ ପରିସ୍ଥିତିର ପ୍ରଭାବ, ଶ୍ରୀମତୀ ଗାନ୍ଧୀଙ୍କ ଜାତୀୟତା ଭାବ, ଜନ୍ମମାଟି ପ୍ରତି ପ୍ରଗାଢ଼ ମମତା ପିଲାଟି ଦିନରୁ ହିଁ ପ୍ରକାଶ ଲାଭ କରିଥିଲା । ବାଲ୍ୟ ବୟସରେ କଣେଇ ଇଂରେଜ ସେନାବାହିନୀ ଉପରେ ଦେଶୀୟ ସେନାବାହିନୀର ବିଜୟ ଉତ୍ସବ ପାଳନ କରାଇବା, କିଶୋରୀ ବୟସରେ ବାନର ସେନା ଗଠନ କରାଇବା ପ୍ରଭୃତି କାର୍ଯ୍ୟକଳାପ ଦେଶମାତୃକା ପ୍ରତି ମମତାମୟୀ ହେବା ତଥା ସ୍ୱାଧୀନତା ସଂଗ୍ରାମରେ ଗୁଣ୍ଡୁଚି ମୂଷାର ଅବଦାନକୁ ସାଧାରଣ ଭାବରେ ଏଡ଼ାଇ ଦିଆଯାଇ ନ ପାରେ । ପୁଣି ଯୌବନରେ ବିଦେଶରେ ଅଧ୍ୟୟନରତ ଥିବାବେଳେ, ବିଶ୍ୱବିଦ୍ୟାଳୟର କୌଣସି ଅନ୍ତିମ ପରୀକ୍ଷା ନ ଦେଇ ଅଧା ସମୟରୁ ମାତୃଭୂମିକୁ ଫେରି ଆସିଥିଲେ । ତାର ଏକମାତ୍ର କାରଣ ଥିଲା ଦେଶ ମୁକ୍ତି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବାଲାଗି ଆନ୍ତରିକ ପ୍ରେରଣା ।

ସବୁଠାରୁ ବିଶେଷ ଉଲ୍ଲେଖଯୋଗ୍ୟ ଥିଲା ବିବାହ କରିସାରିବା ପରେ ମଧ୍ୟ ଶ୍ରୀମତୀ ଗାନ୍ଧୀ ମୁଖ୍ୟତଃ ରହୁଥିଲେ, 'ବିପତ୍ନୀକ ବୃଦ୍ଧ ପଣ୍ଡିତ ନେହେରୁଙ୍କ ନିକଟରେ । ଉଦ୍ଦେଶ୍ୟ ଥିଲା, ଦେଶ ମାତୃକାର ଉନ୍ନତି ଦିଗରେ ନିଜକୁ ସମ୍ପୂର୍ଣ୍ଣ ରୂପେ ସମର୍ପି ଦେଇଥିବା ପିତାଜୀଙ୍କ ସେବା କରିବା ମାଧ୍ୟମରେ ଜନ୍ମଭୂମିର ସେବା କରିବା; ଦେଶର ଉନ୍ନତି ପଥରେ ସହାୟକ ହେବା ।

ଶ୍ରୀମତୀ ଗାନ୍ଧୀଙ୍କର ସେ ସ୍ୱପ୍ନ ସାର୍ଥକ ହୋଇଥିଲା ନିଶ୍ଚୟ; ଯଦିଓ ଗାନ୍ଧିଜୀଙ୍କ ସ୍ୱପ୍ନ-ସୁନାର ଭାରତ ଗଠନ-ବର୍ତ୍ତମାନ ମଧ୍ୟ ମେଘାଚ୍ଛନ୍ନ । ତଥାପି ତାଙ୍କର ନେତୃତ୍ୱ କାଳରେ ଦେଶର ପ୍ରଭୂତ ଉନ୍ନତି ସମ୍ଭବ ହୋଇ ପାରିଥିଲା ଓ ପୃଥିବୀର ଉନ୍ନତ ରାଷ୍ଟ୍ରମାନଙ୍କ ମଧ୍ୟରେ ଭାରତ ତା'ର ଆସନ ସୁପ୍ରତିଷ୍ଠିତ କରିପାରିଥିଲା ।

ଜବାହାରଲାଲ ଓ ଶାସ୍ତ୍ରୀଜୀଙ୍କ ପରେ ପରେ ଯେତେବେଳେ ଶ୍ରୀମତୀ ଗାନ୍ଧୀ କଣ୍ଟକମୟ ମୁକୁଟ ପରିଧାନ କରିଥିଲେ, ପୂର୍ବସୂରୀମାନଙ୍କ ଭଳି ବ୍ୟକ୍ତିତ୍ୱ ଇନ୍ଦିରାଜୀ

ଆହରଣ କରିପାରିବେ ବୋଲି କୌଣସି ବ୍ୟକ୍ତି ତଥା ରାଜନୈତିକ ନେତା ଓ ଟୀକାକାର ସେତେବେଳେ ବିଶ୍ୱାସ କରିପାରି ନ ଥିଲେ । କାରଣ କଂଗ୍ରେସର ଉଚ୍ଚ ନେତୃବର୍ଗଙ୍କ ସମେତ ଅନ୍ୟମାନଙ୍କର ଧାରଣା ଥିଲା ଯେ ପ୍ରତ୍ୟକ୍ଷ ରାଜନୀତି ଓ ଶାସନ କ୍ଷେତ୍ରରେ ବିଶେଷ ଭାବେ ଅନଭିଜ୍ଞ ଶ୍ରୀମତୀ ଗାନ୍ଧୀ ମାତ୍ର ପ୍ରଶୀ-କଣ୍ଟେଇଟିଏ ଭଳି କାର୍ଯ୍ୟ କରିବାକୁ ବାଧ୍ୟହେବେ । ତେଣୁ ସ୍ୱାଭାବିକ ଭାବେ ତାଙ୍କୁ ଉଚ୍ଚ ଆସନରେ ପ୍ରତିଷ୍ଠିତ କରାଇଥିବା କୁଶଳୀ କଳାକାରମାନଙ୍କୁ ଅନ୍ତତଃ ସେ ଉପେକ୍ଷା କରି ପାରିବେ ନାହିଁ । କିନ୍ତୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଭାରତୀୟ ଶାସନ କ୍ଷେତ୍ରରେ ସମ୍ପୂର୍ଣ୍ଣ ନିଜସ୍ୱ ଅଲୌକିକ ଶୈଳୀର ପ୍ରଦର୍ଶନ କରି କେବଳ ଭାରତରେ ନୁହେଁ, ବିଶ୍ୱର ମହାନ୍ ନାରୀନେତ୍ରୀ ଓ ଶାନ୍ତିକାମୀ ଦୂତ ଆଉ ଜଣେ ପ୍ରଧାନ ନେତ୍ରୀ ରୂପେ ସବତ୍ର ଆଦୃତ ହୋଇ ପାରିଥିଲେ । ତାହା କେବଳ ସମ୍ଭବ ହୋଇ ପାରିଥିଲା ନିଜର ବ୍ୟକ୍ତିତ୍ୱ ଯୋଗୁଁ; ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ଜାତୀୟ ସ୍ୱାର୍ଥକୁ ଉଚ୍ଚତର ଆସନ ଦେଇ ପାରିଥିବା ଯୋଗୁ; ଜନ୍ମମାଟିକୁ ଜୀବନରେ ସର୍ବାଧିକ ଭଲ ପାଇଥିବା ଯୋଗୁଁ ଓ ସମଗ୍ର ମାନବଜାତି ଶାନ୍ତି ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତା-ବରଣ ଭିତରେ ରହିବା ଲାଗି ତାଙ୍କର ଆନ୍ତରିକ ଉଦ୍ୟମ ଯୋଗୁଁ । ସେହି ଆଦର୍ଶ ମଧ୍ୟ ଥିଲା ତାଙ୍କର ବୈଦେଶିକ ନୀତିର ନିୟାମକ ।

ଭାରତର ସର୍ବାଙ୍ଗୀନ ଉନ୍ନତି ଓ ଭାରତବାସୀଙ୍କ ସମୃଦ୍ଧି ପାଇଁ ଶ୍ରୀମତୀ ଗାନ୍ଧୀ ଚାହିଁଥିଲେ ସମଗ୍ର ଭାରତୀୟ ଉପମହାଦେଶରେ ଶାନ୍ତି ପ୍ରତିଷ୍ଠା । ତା'ର ଜ୍ୱଳନ୍ତ ଉଦାହରଣ ଥିଲା ୧୯୭୨ ମସିହାରେ ଅନୁଷ୍ଠିତ ସିମଲା ସମ୍ମିଳନୀ । ଭାରତୀୟ ସୈନ୍ୟବାହିନୀ ଦ୍ୱାରା ଅଧିକୃତ ପାଞ୍ଚହଜାର ବର୍ଗ ମାଇଲ ପରିମିତ ଅଞ୍ଚଳକୁ ପାକିସ୍ଥାନକୁ ଫେରାଇଦେବା ଘୋଷଣା ସେଠାରେ ସେ କରି ଶାନ୍ତି ପ୍ରତିଷ୍ଠା ପାଇଁ ନିଜ ଆନ୍ତରିକତାର ସ୍ପଷ୍ଟ ପରିଚୟ ଦେଇଥିଲେ । କିନ୍ତୁ ତା'ର ଅର୍ଥ ନ ଥିଲା ଯଦି କେହି ଭାରତକୁ ଆକ୍ରମଣ କରେ, ସେ ନୀରବଦରେ ଫେରିଯିବ । ତାର ଯଥାର୍ଥ ଜବାବ ଦେବାକୁ ଯାଇ ଦ୍ୱି ପାକିସ୍ଥାନ ଯୁଦ୍ଧରେ ପ୍ରବୃତ୍ତ ହୋଇ ନିଜର ନେତୃତ୍ୱ ପ୍ରମାଣ କରିଥିଲେ । ତାହା କେବଳ ଶ୍ରୀମତୀ ଗାନ୍ଧୀଙ୍କର ନେତୃତ୍ୱର ସ୍ୱାଭିମାନ କମ୍ବା ଯଥାର୍ଥ ପରିଚୟ ନ ଥିଲା, ଥିଲା ଏ ଜାତିର, ଥିଲା ଶାନ୍ତିକାମୀ ଭାରତୀୟ ଜନଗଣଙ୍କର ।

ତଦ୍‌ବ୍ୟତୀତ ଭାରତର ପଡ଼ୋଶୀ ଦେଶ ଚୀନ ସହିତ ରାଷ୍ଟ୍ରଦୂତସ୍ତରୀୟ ସମ୍ପର୍କ ସ୍ଥାପନ, ରୁଷ ସହିତ ଭାରତର ଶାନ୍ତି-ମୈତ୍ରୀ ଓ ସହଯୋଗ ପାଇଁ ଦୀର୍ଘମିଆଦୀ ଚୁକ୍ତି, ପାକିସ୍ଥାନ ସହ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ପାଇଁ ପରିବେଶ ସୃଷ୍ଟି କରିବା ଲାଗି ଆନ୍ତରିକ ଉଦ୍ୟମ ତଥା ସମଗ୍ର ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ରଗୁଡ଼ିକ ସହ ଭ୍ରାତୃତ୍ୱପୂର୍ଣ୍ଣ ସହଯୋଗ ସ୍ଥାପନ ପାଇଁ ଆନ୍ତରିକ ଆଗ୍ରହ ଯଥାର୍ଥରେ ଶ୍ରୀମତୀ ଗାନ୍ଧୀଙ୍କୁ ପୃଥିବୀର

ଜଣେ ଶ୍ରେଷ୍ଠ ନେତ୍ରୀ ରୂପେ ପ୍ରତିଷ୍ଠିତ କରାଇ ପାରିଥିଲା । ଉତ୍ତମ ଆନ୍ତର୍ଜାତିକ ବୁଝାମଣା ସୃଷ୍ଟି ଓ ସେବା ମନୋବୃତ୍ତି ଯୋଗୁଁ ୧୯୬୦ ମସିହାରେ ହୋଲାଣ୍ଡ ପୁରସ୍କାର, ୧୯୬୫ ମସିହାରେ ଇଟାଲି ସରକାରଙ୍କ ଦ୍ୱାରା ପ୍ରଦତ୍ତ "ଇସାବେଲ୍-ଡି-ଇଷ୍ଟେ ପୁରସ୍କାର, ୧୯୭୨ରେ ବଙ୍ଗଳାଦେଶର ସ୍ୱାଧୀନତା ପାଇଁ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଯୋଗୁଁ ମେକ୍ସିକାନ୍ ଏକାଡେମୀ ପୁରସ୍କାର, ୧୯୭୩ ମସିହାରେ ଜାତିସଂଘ ପକ୍ଷରୁ ଏଫ୍. ଏ. ଓ. ଦ୍ୱିତୀୟ ବାର୍ଷିକ ମେଡ଼ାଲ, ୧୯୮୩ରେ ଆନ୍ତର୍ଜାତିକ ଅଲମ୍ପିକ୍ କମିଟି ଦ୍ୱାରା ସ୍ୱର୍ଣ୍ଣପଦକ ଓ ସେବାମୂଳକ ଭାରତୀୟ ସର୍ବୋଚ୍ଚ ସମ୍ମାନଜନକ ଉପାଧୀ ପ୍ରଶଂସା ସମେତ 'ଭାରତ ରତ୍ନ' ୧୯୭୧ ମସିହାରେ ସେ ଲାଭ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ମୃତ୍ୟୁ ବେଳକୁ ସେ ଥିଲେ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଅଧ୍ୟକ୍ଷା । ତାହା ମଧ୍ୟ ଥିଲା ତାଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିପ୍ରତି ଏକ ନିଦର୍ଶନ ।

ପୃଥିବୀରୁ ଉପନିବେଶବାଦ ତଥା ସାମ୍ରାଜ୍ୟବାଦର ବିଲୋପ ହୋଇ ଗୋଷ୍ଠୀ ବିବାଦ ଓ ଉତ୍ତେଜନା ହ୍ରାସ ହେଲେ ହିଁ ବିଶ୍ୱଶାନ୍ତି ଓ ମୈତ୍ରୀ ପ୍ରତିଷ୍ଠା ହୋଇପାରିବ ବୋଲି ସେ ମନେ କରୁଥିଲେ । ସେ ଚାହୁଁଥିଲେ—"ସମଗ୍ର ବିଶ୍ୱ ଏକ ହେଉ । ବିଭିନ୍ନ ଅଞ୍ଚଳରେ ବିଭକ୍ତ ନ ହେଉ—ଏହାହିଁ ମୋର କାମନା । ଜନସାଧାରଣଙ୍କ ମଧ୍ୟରେ ପରସ୍ପର ସହିତ ସାହାଯ୍ୟ ସହଯୋଗ ରହିବା ମନୋଭାବ ସୃଷ୍ଟି ହେବା ଉଚିତ ।" ତାହାଙ୍କର ଅଭିଳଷିତ ପୃଥିବୀ ଓ ତା'ର ଜନସାଧାରଣଙ୍କ ସମ୍ପର୍କରେ ସେ ମତ ଦେଇଥିଲେ—"କିଭଳି ପୃଥିବୀ ଆମେ ଚାହୁଁ କେବଳ ସେତିକି ଚିନ୍ତାକଲେ ଚଳିବ ନାହିଁ । କିଭଳି ମନୁଷ୍ୟ ଏହି ପୃଥିବୀରେ ବାସ କରିବେ ତାହାହିଁ ଆମକୁ ଦୃଷ୍ଟି ଦେବାକୁ ହେବ । ଯେଉଁମାନେ ନିଜର ବିବେକ ବୁଦ୍ଧିର ସଦ୍-ବିନିଯୋଗ କରି ଚିନ୍ତା କରିପାରିବେ, ସ୍ୱତଃପ୍ରବୃତ୍ତ ଭାବେ କାର୍ଯ୍ୟକ୍ରମ ସବୁକୁ ସୁପରିଚାଳିତ କରିପାରିବେ ଏବଂ ଯେଉଁମାନେ ଅନ୍ୟମାନଙ୍କର ସୁଖ-ଦୁଃଖରେ ଯଥାଯଥ ସହାନୁଭୂତି ପ୍ରଦର୍ଶନ କରିପାରିବେ, ସେଭଳି ମଣିଷ ଆମେ ଆଶାକରୁ । ସେଭଳି ପୃଥିବୀଟିଏ ଗଢ଼ି ତୋଳିବାପାଇଁ ସମସ୍ତଙ୍କ ଉଦ୍ୟମ ଆବଶ୍ୟକ ।" †

ଶ୍ରୀମତୀ ଗାନ୍ଧୀଙ୍କ ସେହି ଚିନ୍ତାଧାରା ହିଁ ତାଙ୍କ ଆଦର୍ଶର ସ୍ପଷ୍ଟ ପରିଚୟ ଦେଇଥାଏ ।

ମୃତ୍ୟୁର ସ୍ୱଳ୍ପକାଳ ପୂର୍ବରୁ ଶ୍ରୀମତୀ ଗାନ୍ଧୀ ଗୋଟିଏ ଉଇଲ୍ ଧରଣର ପତ୍ରରେ ଲେଖିଥିଲେ—"ମତେ ହତ୍ୟା କରିବାପାଇଁ କେତେକ ଲୋକ ଷଡ଼ଯନ୍ତ୍ର ଚଳାଇଥିଲେ ମଧ୍ୟ ମୃତ୍ୟୁର ଭୟ ମତେ ଗ୍ରାସ କରିନାହିଁ ।…ଯଦି ମୁଁ ଏକ ହିଂସାଜନିତ ମୃତ୍ୟୁର

---

† ମାଇଁ ଟ୍ରୁଥ୍—ଶ୍ରୀମତୀ ଇନ୍ଦିରା ଗାନ୍ଧୀ ।

ଶିକାର ହୁଏ, ତେବେ ମୁଁ ଜାଣେ ସେହି ହିଂସା କେବଳ ହତ୍ୟାକାରୀର ଶରୀର ଓ କାର୍ଯ୍ୟକଳାପରେ ହିଁ ପ୍ରତିଫଳିତ ହେବ; ତାହା ମୋ ମୃତ୍ୟୁରେ ନୁହେଁ । ତା'ର କାରଣ ମୋର ଦେଶ ତଥା ଦେଶବାସୀମାନଙ୍କ ପ୍ରତି ମୁଁ ଯେଉଁ ଶ୍ରଦ୍ଧା ଓ ସ୍ନେହ ଦେଇ ଆସିଛି; ତାହାକୁ ଆଚ୍ଛାଦିତ କରିବାପାଇଁ କୌଣସି ହିଂସା ଓ ଘୃଣାର କଳାଛାଇ କଦାପି ସକ୍ଷମ ହୋଇପାରିବ ନାହିଁ ।"

ଏ ଥିଲା ନିଜ ଦେଶ, ନିଜ ଦେଶବାସୀ ଓ ନିଜ ଦେଶର ଗୌରବମୟ ପରମ୍ପରାକୁ ଅନ୍ତରଙ୍ଗ ଭାବେ ଭଲ ପାଉଥିବା ଶ୍ରୀମତୀ ଗାନ୍ଧୀଙ୍କ ହାର୍ଦ୍ଦିକ ଅଭିବ୍ୟକ୍ତି । ଜାତୀୟତାବାଦୀ ଇନ୍ଦିରାଙ୍କ ଜୀବନାଦର୍ଶ ଥିଲା ଗଭୀର ଦେଶାତ୍ମବୋଧ ଏବଂ ସେଥିପାଇଁ ଦେଶକୁ ନେତୃତ୍ୱ ଦେଉଥିବା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ନିଜ ମନର ଭାବ ସେହି ଲେଖାରେ ବ୍ୟକ୍ତ କରିଥିଲେ "ଏହି ଦେଶକୁ ପ୍ରଗତିର ପଥରେ ଆଗେଇ ନେବାପାଇଁ ମୋର ଉଦ୍ୟମ ଓ ସଙ୍କଳ୍ପରୁ ମୋତେ କୌଣସି ଶକ୍ତି କଦାପି ବିଚ୍ୟୁତ କରିପାରିବ ନାହିଁ ।"

ଅତି ଅନ୍ତରଙ୍ଗ ଭାବେ ଦେଶକୁ ଭଲ ପାଉଥିଲେ ଇନ୍ଦିରା ଗାନ୍ଧୀ ଏବଂ ଜଣେ ଭାରତୀୟ ବୋଲି ଗର୍ବ ମଧ୍ୟ କରୁଥିଲେ । କାରଣ ଏ ଭୂଖଣ୍ଡର ଅତୀତ ପରମ୍ପରାଗୁଡ଼ିକ ଯେତିକି ବୈଚିତ୍ର୍ୟପୂର୍ଣ୍ଣ ଥିଲା, ସେତିକି ମଧ୍ୟ ଥିଲା ଗୌରବମୟ । ଜନ୍ମମାଟିର ମହତ୍ତ୍ୱରେ ସେ ନିଜକୁ ହଜାଇ ଦେଇଥିଲେ । ଆତ୍ମବିଭୋର ହୋଇ ଉଠୁଥିଲେ ସ୍ୱର୍ଗଠାରୁ ଗରୀୟାନ୍ ଜନ୍ମଭୂମିର ଗରିମା ଚିନ୍ତା କଲାବେଳେ । ଶ୍ରୀମତୀ ଗାନ୍ଧୀଙ୍କର ସେହି ଭାବମୟ ଅଭିବ୍ୟକ୍ତି ବାସ୍ତବିକ୍ ଉଲ୍ଲେଖଯୋଗ୍ୟ । ଜଣେ କବି ତାଙ୍କ 'ପ୍ରେମ' ବିଷୟରେ ଲେଖିଥିଲେ—"ମୋ ନିକଟରେ ତୁମର ସ୍ଥିତି ହିଁ ମୋର ପରମ ସମ୍ପଦ ଏବଂ ସେଥିରେ ହିଁ ମୋର ସମସ୍ତ ଗର୍ବ ଓ ଗୌରବ ନିହିତ ।" ସେହିଭଳି ମୁଁ ମଧ୍ୟ ମୋର ପ୍ରିୟ ଦେଶ ଭାରତ ସମ୍ପର୍କରେ କହିପାରେ । ମୁଁ ବୁଝିପାରେନା ଜଣେ ନିଜ ଦେଶ ଭାରତବର୍ଷର ଗୌରବମୟ ପରମ୍ପରା ଓ ଅସୀମ ବୈଚିତ୍ର୍ୟରେ ଗର୍ବବୋଧ ନକରି କିପରି ନିଜକୁ ଭାରତୀୟ ବୋଲି କହି ପାରିବ ?"

ଶ୍ରୀମତୀ ଗାନ୍ଧୀଙ୍କ ଏହି ସ୍ୱୀକାରୋକ୍ତିଟି ଅକାଳ ମୃତ୍ୟୁର କିଛିକାଳ ପୂର୍ବରୁ ଏକ ଭାବପ୍ରବଣ ମୁହୂର୍ତ୍ତରେ ସେ ଲେଖିଥିଲେ ବୋଲି ମନେହୁଏ ଏବଂ କର୍ତ୍ତବ୍ୟର ତାଡ଼ନାରେ ସେ ଉକ୍ତ ଲେଖାଟିକୁ ସମ୍ପୂର୍ଣ୍ଣ କରିପାରି ନ ଥିଲେ । ଭାବପ୍ରବଣତା ଅନେକ ସମୟରେ ସ୍ଥାନ, କାଳ, ପାତ୍ର ସମ୍ପର୍କରେ ସଚେତନତା ସୃଷ୍ଟି କରିବାପାଇଁ ସମର୍ଥ ହୋଇପାରି ନଥାଏ । ସେଇଥିପାଇଁ ବୋଧହୁଏ, ଉକ୍ତ ଲେଖାଟିରେ ତାରିଖ ମଧ୍ୟ ଦେଇପାରି ନ ଥିଲେ ଶ୍ରୀମତୀ ଗାନ୍ଧୀ । ହୁଏତ ଇଚ୍ଛା କରିଥିଲେ ସମୟକ୍ରମେ ତାହାକୁ ସଂପୂର୍ଣ୍ଣ କରିବେ । ସେଇ ଇଚ୍ଛାରେ, ସେଇ ହୃଦସ୍ପର୍ଶୀ ମନର ପ୍ରତି-

ଫଳନକୁ ତାଙ୍କ 'ସଫଦରଜଙ୍ଗ ରୋଡ଼ସ୍ଥିତ ଟେବୁଲ ଉପରେ ଲେଖି ରଖିଥିଲେ । ଦୁର୍ଭାଗ୍ୟର ବିଡ଼ମ୍ବନା ତାହା ସେଭଳି ଅସମ୍ପୂର୍ଣ୍ଣ ରହିଯାଇଥିଲା; ସମ୍ପୂର୍ଣ୍ଣ କରିବାପାଇଁ ଅବକାଶ ପାଇ ନ ଥିଲେ । ସେହିଭଳି ଅବସ୍ଥାରେ ତାଙ୍କ ଟେବୁଲ ଉପରୁ ସେହି ଲେଖାଖଣ୍ଡିକୁ ଉଦ୍ଧାର କରାଯାଇଥିଲା ।

ଏକ ଭୟାବହ ହିଂସାକାଣ୍ଡର ଶିକାର ହେବା ସମ୍ଭାବନା ନେଇ ସେ ଯେଉଁ ଆଶଙ୍କା ପ୍ରକାଶ କରିଥିଲେ, ତାହା ସତ୍ୟରେ ପରିଣତ ହୋଇଥିଲା । ନିଜ ହୃଦୟର ଅଭିଳାଷ ସମ୍ପୂର୍ଣ୍ଣ କରିବା ପୂର୍ବରୁ ହିଂସାପ୍ରମତ୍ତ ଆତତାୟୀଙ୍କ ଗୁଳିର ଶିକାର୍ ହୋଇଥିଲେ ପ୍ରିୟଦର୍ଶିନୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ।

